ଗୋପବନ୍ଧୁ ରଚନାବଳୀ ଷଷ୍ଠ ଖଣ୍ଡ—ଅସହଯୋଗ ଆନ୍ଦୋଳନ ଓ ସତ୍ୟାଗ୍ରହ

# ଗୋପବନ୍ଧୁ ରଚନାବଳୀ



ଜନ୍ମ ଶତବାର୍ଷିକୀ ସମିତି, କଟକ

ଗୋପବନ୍ଧୁ ରଚନାବଳୀ ( ଷଷ୍ଠ ଖଣ୍ଡ )

# ଅସହଯୋଗ ଆନ୍ଦୋଳନ ଓ ସତ୍ୟାଗ୍ରହ

ପ୍ରକାଶକ :

**ଗୋପବନ୍ଧୁ ଜନ୍ମଶତବାର୍ଷିକୀ ସମିତି**

ଗୋପବନ୍ଧୁ ଭବନ, କଟକ

# ଗୋପବନ୍ଧୁ ରଚନାବଳୀ (ଷଷ୍ଠ ଖଣ୍ଡ)

ପ୍ରକାଶକ—
ଗୋପବନ୍ଧୁ ଜନ୍ମ ଶତବାର୍ଷିକୀ ସମିତି,
ଗୋପବନ୍ଧୁ ଭବନ, କଟକ—୭୫୩୦୦୧

ପ୍ରଥମ ପ୍ରକାଶ
ତା ୫।୧। ୧୯[illegible]

ମୁଦ୍ରାକର—
ଶ୍ରୀ ଉଦୟନ ଷଡଙ୍ଗୀ
ସତ୍ୟବାଦୀ ପ୍ରେସ,
ଭବନ, କଟକ—୭୫୩୦୦୧

ମୂଲ୍ୟ- ଏପର ଟଙ୍କା

# ମୁଖବନ୍ଧ

ଶ୍ରୀ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଲିଖିତ ରଚନାବଳୀ ଏବଂ 'ସମାଜ' ଓ 'ସତ୍ୟବାଦୀ'ର ସମ୍ପାଦକୀୟ ଲେଖା ଓ ଟିପାଟିପ୍ପଣୀକୁ ସଙ୍କଳିତ କରି ଗୋପବନ୍ଧୁ ଜନ୍ମ ଶତବାର୍ଷିକ ଉତ୍ସବ ଉପଲକ୍ଷେ ପ୍ରକାଶ କରଯାଉଛି । ଏଥି ପୂର୍ବରୁ ୧୯୭୭ ଅକ୍ଟୋବର ୯ ତାରିଖ ଶତବାର୍ଷିକ ଉତ୍ସବର ଉଦ୍‌ଯାପନ ଦିବସରେ ପାଞ୍ଚ ଖଣ୍ଡ ପୁସ୍ତକ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀଯୁକ୍ତ ଭଗବତଦୟାଲ ଶର୍ମାଙ୍କଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ଅବଶ୍ୟ ଏଥିପୂର୍ବରୁ ଭୂତପୂର୍ବ ମୁଖ୍ୟମନ୍ତ୍ରୀଙ୍କଦ୍ୱାରା ମଧ୍ୟ ଅନୁଷ୍ଠାନିକ ଭାବରେ ପ୍ରକାଶ ପାଇଥିଲା । ବର୍ତ୍ତମାନ "ଅସହଯୋଗ ଆନ୍ଦୋଳନ ଓ ସତ୍ୟାଗ୍ରହ" ବିଷୟକ ତାଙ୍କର ଲେଖାଗୁଡ଼ିକ ସଙ୍କଳିତ ହୋଇ ତାଙ୍କ ରଚନାବଳୀର ଷଷ୍ଠ ଖଣ୍ଡରୂପେ ପ୍ରକାଶ ପାଉଛି ।

ହିମାଳୟର ଶୀର୍ଷଦେଶରୁ ଭଗୀରଥ ଯେପରି ଗଙ୍ଗାଙ୍କୁ ଭାରତବର୍ଷକୁ ପ୍ରବାହିତ କରି ଆଣିଥିଲେ, ସେହିପରି ଭାରତର ସ୍ୱାଧୀନତା ସଂଗ୍ରାମର ପବିତ୍ର ସ୍ରୋତ ୧୯୨୦ ସେପ୍ଟେମ୍ବର ମାସରେ କଲିକତାରେ ପୁରୁଷସିଂହ ଲାଲ ଲାଜପତ ରାୟଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ ସ୍ୱ ଅଧିବେଶନରେ ଏ ଯୁଗର ଅହିଂସାତ୍ମକ ସ୍ୱାଧୀନତା ସଂଗ୍ରାମର ସେନାପତି ମହାତ୍ମା ଗାନ୍ଧିଙ୍କ ପ୍ରେରଣାରେ ପଣ୍ଡିତ ଗୋପବନ୍ଧୁଙ୍କଦ୍ୱାରା ଉତ୍କଳ ଭୂମିକୁ ପ୍ରବାହିତ ହୋଇ ଆସିଲା । ସେ ଉତ୍କଳରେ ସଂଗ୍ରାମର ନେତା ଚାଳକ ଥିଲେ । ଏ ସ୍ୱାଧୀନତା ସଂଗ୍ରାମ ବିଷୟରେ ସେ ଯାହାସବୁ ଲେଖିଥିଲେ ମଧ୍ୟ ସଙ୍କଳିତ ହୋଇ ଏହି ପୁସ୍ତକରେ ସନ୍ନିବେଶିତ ହୋଇଛି । ଏହି ସଙ୍କଳିତ ପୁସ୍ତକର ବିଷୟବସ୍ତୁ ଯୁଗ ଯୁଗ ଧରି ଦେଶବାସୀଙ୍କୁ ଯେ ଉଦ୍‌ବୁଦ୍ଧ କରିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଆମ୍ଭେମାନେ ସେ ଅମର ଆତ୍ମା ପ୍ରତି ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ତାଙ୍କ ରଚନାବଳୀର ଏହି ଷଷ୍ଠ ଖଣ୍ଡକୁ ଦେଶବାସୀଙ୍କ ହାତରେ ସମର୍ପଣ କରୁଛୁ ଏବଂ ଭଗବାନଙ୍କଠାରେ ପ୍ରାର୍ଥନା କରୁଛୁ—

"ସର୍ବେ ଭବନ୍ତୁ ସୁଖିନଃ
ସର୍ବେ ସନ୍ତୁ ନିରମୟାଃ,
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା କଶ୍ଚିତ୍ ଦୁଃଖଭାଗ୍ ଭବେତ୍"

**ରାଧାନାଥ ରଥ**
ଗୋପବନ୍ଧୁ ଜନ୍ମ ଶତବାର୍ଷିକ
ଚେୟାରମ୍ୟାନ, ଲୋକସେବକମଣ୍ଡଳି,
ଓଡ଼ିଶା ଶାଖା

କଟକ
ତା ୫।୭।୧୯୭୮

# ସହଯୋଗୀଙ୍କ କର୍ତ୍ତବ୍ୟ

ନୂତନ ଶାସନସଂସ୍କାର ବିଧାନରେ ପ୍ରଜାମାନେ ମତ ଦେଇ ଆପଣା ମଧ୍ୟରୁ ଲୋକ ବାଛି ଲେଜିସ୍‌ଲେଟିଭ୍ ଏବଂ ବଡ଼ଲାଟ ସଭାକୁ ଓ ଜିଲ୍ଲାବୋର୍ଡ଼କୁ ମେମ୍ବର ପଠାଇବେ । ଓଡ଼ିଶାରେ ଯେଉଁମାନେ ଟ ୧୬୵ ଖଜଣା ବା ଟ ୦ ୩ ପଥକର ଦେଉଥିବେ ସେମାନେ ଲେଜିସ୍‌ଲେଟିଭ୍ ସଭାକୁ ମେମ୍ବର ପଠାଇବା ବିଷୟରେ ମତ ଦେଇ ପାରିବେ । ଏହିପରି ଲୋକଙ୍କର ତାଲିକା ବର୍ତ୍ତମାନ ପ୍ରସ୍ତୁତ ହେଉଅଛି । ଗ୍ରାମମାନଙ୍କରେ ଚୌକିଦାରୀ ପଞ୍ଚାୟତମାନେ ଲୋକଙ୍କ ଖଜଣା ବା ପଥକର ପରିମାଣ ବୁଝି ତାଲିକା ତିଆରି କରୁଛନ୍ତି । ଅନେକ ସ୍ଥାନରେ ଲୋକେ ଏହାର ଉଦ୍ଦେଶ୍ୟ ନ ବୁଝି ପ୍ରକୃତ ସମ୍ବାଦ ଦେବାକୁ ଡରୁଛନ୍ତି ବୋଲି ସମ୍ବାଦ ମିଳୁଅଛି । ସରକାର କୌଣସି ସମ୍ବାଦ ସଂଗ୍ରହ କଲେ କିଛି ଗୋଟାଏ ନୂଆ ଟିକସ ବସିବ ବୋଲି ଲୋକଙ୍କର ଅଧିକାଂଶ ସମୟରେ ପ୍ରାୟ ଆଶଙ୍କା ହୋଇଥାଏ । ଏ ଘଟଣାରେ ସେହି ଆଶଙ୍କା ହୋଇଅଛି । ଅନେକ ଚୌକିଦାରୀ ପଞ୍ଚାୟତ ମଧ୍ୟ ବର୍ତ୍ତମାନ ଉଦ୍ଦେଶ୍ୟ ବୁଝିଛନ୍ତି କି ନାହିଁ ସନ୍ଦେହ । ଲୋକଙ୍କ ଅଜ୍ଞତାର ସୁବିଧା ନେଇ କେହି ପଞ୍ଚାୟତ ଦୁଇପଇସା ଅସୁରି ଦାଟ ଦେଖିବା ଆଶ୍ଚର୍ଯ୍ୟ ନୁହେଁ । ଲୋକ ସାଧାରଣଙ୍କୁ ସରକାର ଯେ ଗୋଟାଏ ନୂଆ ଅଧିକାର ଦେଉଛନ୍ତି, ଏହା ସେମାନେ ବୁଝିବା ଦରକାର । ତାହା ଜାଣିଲେ ସେମାନେ ସତ୍ୟ ସମ୍ବାଦ ଦେବେ, କିଛି ଲୁଚାଇବେ ନାହିଁ । ଲୋକେ ବୁଝିବା ଭଳି ଭାଷାରେ ଏ ବିଷୟ ଭଲରୂପେ ଲେଖାଯାଇ ଗ୍ରାମେ ଗ୍ରାମେ ପ୍ରଚାରିତ ହେଲେ ବଡ଼ ଉପକାର ହୁଅନ୍ତା । ଆରଥର ଆମ୍ଭେମାନେ ଏ ବିଷୟରେ ଲେଖିଥିଲୁ । ଇତିମଧ୍ୟରେ ଅନେକ ସ୍ଥାନରୁ ଏ ସମ୍ବନ୍ଧେ ସମ୍ବାଦ ଆସିଅଛି । ଏ ବିଷୟଟି ବଡ଼ ଗୁରୁତର, ଲୋକେ ଭଲରୂପେ ବୁଝିବା ଦରକାର । ତେଣୁ ସମ୍ବାଦପତ୍ରରେ ଏଥିର ବାରମ୍ବାର ଆଲୋଚନା ହେବା ପ୍ରୟୋଜନ । ଆମ୍ଭେମାନେ ଆଶା କରୁ ଅନ୍ୟାନ୍ୟ ସହଯୋଗୀମାନେ ଲୋକସାଧାରଣଙ୍କୁ ଏ ନୂତନ ଶାସନବିଧାନ ବୁଝାଇବା ନିମନ୍ତେ ଯତ୍ନ କରିବେ ।

('ସମାଜ', ତା ୧୦ । ୪ । ୨୦)

---

# ଭାରତ ସରକାରଙ୍କ ଖସଡ଼ା

ଶାସନସଂସ୍କାର ଆଇନ ଅନୁସାରେ କେତେକ ନିୟମ ତିଆରି ହେବା ଆବଶ୍ୟକ । ଭିନ୍ନ ଭିନ୍ନ ପ୍ରଦେଶର ସରକାର ଏବଂ ଲୋକସାଧାରଣଙ୍କ ମତ ନିଆଯାଇ ଏହି ନିୟମମାନଙ୍କର ଚଠା ପ୍ରସ୍ତୁତ ହୋଇଅଛି । ଭାରତ ସରକାର ଏହି ଖସଡ଼ାର ବିଗ୍ରର କରି ତାଙ୍କ ନିଜ ମତ ସହିତ ଭାରତ ମନ୍ତ୍ରୀଙ୍କଠାକୁ ବିଲାତ ପଠାଇ ସାରଲେଣି ।ଏହାସବୁ ପୁଣି ବିଲାତର ପାର୍ଲିଆମେଣ୍ଟରେ ପଡ଼ି ବିଗ୍ରର ହେବ । ଏହି ନିୟମମାନଙ୍କ ଉପରେ ଶାସନ ସଂସ୍କାରର ଫଳାଫଳ ବହୁତ ନିର୍ଭର କରେ । ଆଇନରେ ଯାହାଥାଉ, ନିୟମରେ ଯେବେ ପେଚ ମୋଡ଼ାହେବ ତେବେ ଫଳରେ ହେବ—ସବୁ ତିିଆର, କାହିଁରେ ହାତ ଦେବୁ ନାହିଁ । ବିଲାତରେ ଏହି ନିୟମମାନଙ୍କର ଆଲୋଚନା ହେବାବେଳେ ସେଠାରେ ଉପସ୍ଥିତ ରହି ଭାରତ ଲୋକଙ୍କ ପକ୍ଷରୁ ତଦ୍‌ବିର କରିବା କାରଣ ଭାରତ ଜାତୀୟ ମହାସମିତି ମାନ୍ୟବର ପଟେଲଙ୍କୁ ପଠାଇଛନ୍ତି । ଖିଲାଫତ ପ୍ରସଙ୍ଗରେ ଗାନ୍ଧୀଙ୍କର ଯେ ବିଲାତ ଯିବାର ଥିଲା, ଶୁଣାଯାଏ ତାହା ସ୍ଥଗିତ ହୋଇଅଛି । ଭାରତରେ ଆଉ କେହି ସେପରି ପ୍ରଧାନନେତା ବର୍ତ୍ତମାନ ବିଲାତରେ ନାହାନ୍ତି । ସୁତରାଂ ପଟେଲଙ୍କୁ ବହୁ କଷ୍ଟ ଏବଂ ଅଧ୍ୟବସାୟ ସ୍ୱୀକାର କରିବାକୁ ହେବ । ଶାସନସଂସ୍କାର ଆଇନ ବିଗ୍ରରବେଳେ ଭାରତ ମନ୍ତ୍ରୀ ମଣ୍ଟେଗୁ ସାହେବ ଯେ ଉଦାରଭାବ ଦେଖାଇଥିଲେ ସେହି ଭାବ ତାଙ୍କର ଅକ୍ଷୁଣ୍ଣ ଥିଲେ ନିୟମରେ କିଛି ଗୋଳମାଳ ଘଟିବ ନାହିଁ ବୋଲି ସମସ୍ତଙ୍କର ବିଶ୍ୱାସ ।

× × ×

ବିହାର ଓଡ଼ିଶା ଲାଟସଭାକୁ ଏ ପ୍ରଦେଶର କେଉଁ ଅଞ୍ଚଳରୁ କିପରି କେତେ ମେମ୍ବର ଯିବେ ତହିଁର ବିବରଣୀ ଏଥିମଧ୍ୟରେ ପ୍ରକାଶ ପାଇଅଛି । ଆମ୍ଭେମାନେ ପାଠକମାନଙ୍କ ଜାଣିବା ନିମନ୍ତେ ଏଠାରେ କେବଳ ଓଡ଼ିଶା ବିଷୟରେ ଲେଖୁଅଛୁଁ । ଓଡ଼ିଶାର ସମସ୍ତ ମ୍ୟୁନିସିପାଲିଟିରୁ ଜଣେ ମାତ୍ର ଯିବେ । ଆଗେ ମ୍ୟୁନିସିପାଲିଟି କମିଶନରମାନେ ତାଙ୍କୁ ବାଛୁଥିଲେ, ଏଣିକି କରଦାତାମାନେ ମତ ଦେଇ ବାଛିବେ । ଓଡ଼ିଶାର ଜମିଦାରମାନଙ୍କ ତରଫରୁ ଜଣେ ଯିବେ । ଓଡ଼ିଶାର ଗ୍ଭରି ଜିଲାର ମଫସଲ ନିବାସୀ ମୁସଲମାନମାନେ ଆପଣା ମଧ୍ୟରୁ ଜଣକୁ ଭୋଟ ଦେଇ ପଠାଇବେ । ମୁସଲମାନମାନଙ୍କ ଛଡ଼ା ଅନ୍ୟାନ୍ୟ ମଫସଲ ଅଧିବାସୀମାନଙ୍କ ନିମନ୍ତେ ତଳଲିଖିତ ପ୍ରକାରେ ଜିଲା ବିଭକ୍ତ କରାଯାଇଅଛି । ପ୍ରତ୍ୟେକ ବିଭାଗରୁ ଜଣେ ଲେଖାଏ ସଭ୍ୟ ଯିବେ ।

କଟକ ସଦର ସବ୍‌ଡିଭିଜନ, କେନ୍ଦ୍ରାପଡ଼ା ଏବଂ ଯାଜପୁର। ବାଲେଶ୍ୱର ସଦର ସବ୍‌ଡ଼ିଭିଜନ (ଅନନ୍ତପୁର ଏବଂ ସିମିଳିଆ ଥାନା ବାଦ), ଭଦ୍ରଖ ସବ୍‌ଡ଼ିଭିଜନ (ଅନନ୍ତପୁର ଓ ସିମିଳିଆ ଥାନା ସହିତ), ପୁରୀ ସଦର ସବ୍‌ଡ଼ିଭିଜନ (ପିପିଲି ଡେଲାଙ୍ଗ ଥାନା ବାଦ; ଖୋର୍ଦ୍ଧା ସବ୍‌ଡ଼ିଭିଜନ (ପିପିଲି ଓ ଡେଲାଙ୍ଗ ଥାନା ସହିତ) ଓ ସମ୍ବଲପୁର। ଏହିପରି ଓଡ଼ିଶାରୁ ମୋଟ ୧୦ ଜଣ ମେମ୍ବର ଯିବେ। ସିଂହଭୂମି ମଫସଲରୁ ଜଣେ ଯିବାର କଥା। ଆମ୍ଭେମାନେ ବହୁବର କହି ଆସୁଅଛୁଁ, ସିଂହଭୂମିର ସଦର ଗୁଇଁବାସା ସହରକୁ ଛାଡ଼ିଦେଲେ ମଫସଲରେ ଆଦିମ ଅଧିବାସୀ 'ହୋ' ମାନଙ୍କ ତଳକୁ ଓଡ଼ିଆ-ମାନଙ୍କ ସଂଖ୍ୟା ଅଧିକ। ଆଦିମ ଅଧିବାସୀଙ୍କ ପ୍ରତିନିଧି ସରକାର ମନୋନୀତ କରିବେ। ସୁତରାଂ ସିଂହଭୂମି ମଫସଲର ପ୍ରତିନିଧି ଜଣେ ଓଡ଼ିଆ ହେବା ଉଚିତ। ଦେଖାଯାଉ ଫଳରେ କଅଣ ହେଉଛି।

('ସମାଜ' ତା ୧୭।୪।୨୦)

---

# ଅସହଯୋଗର ଆରମ୍ଭ

ବମ୍ବେଇ ସେଣ୍ଟ୍ରାଲ ଖିଲଫତ୍ କମିଟି ବର୍ତ୍ତମାନ ଅସହଯୋଗ ନୀତିବିଷୟରେ ଦେଶବାସୀଙ୍କୁ ଉପଦେଶ ଦେଇଛନ୍ତି । ସେମାନେ କହନ୍ତି ଯେ ପାରୁପର୍ଯ୍ୟନ୍ତ ଚେଷ୍ଟାକରି ମଧ୍ୟ ଏ ପର୍ଯ୍ୟନ୍ତ ତୁରସ୍କ ସନ୍ଧିର ପୁନର୍ବିଚାର ନ ହେଲା । ଏଣୁ ଆସନ୍ତା ଅଗଷ୍ଟ ପହିଲା ଅର୍ଥାତ୍ କାଲିଠାରୁ ଅସହଯୋଗ ନୀତିର କାର୍ଯ୍ୟ ଆରମ୍ଭହେବ । ସେଦିନ ସର୍ବତ୍ରେ ହରତାଲ ମାନିବେ । ମାତ୍ର ମିଲ, କାରଖାନା, ଡାକ୍ତରଖାନା ଆଦିର କର୍ମଚାରୀମାନେ କାର୍ଯ୍ୟ ବନ୍ଦ କରିବେ ନାହିଁ । ସେଦିନଯାକ ଲୋକେ ପୂଜାପାଠରେ ଲଗିବେ ଓ ଦେଶର ଗୃହଆଡ଼େ ସଭାସମିତିମାନ କରି ତୁରସ୍କ ସନ୍ଧିର ତୀବ୍ର ପ୍ରତିବାଦ କରି ତହିଁର ପୁନର୍ବିଚାର ପାଇଁ ସରକାରଙ୍କଠାରେ ଦାବୀ କରିବେ । ନିର୍ଦ୍ଧାରଣର ନକଲ ସରକାର ଓ ଖିଲଫତ କମିଟିକୁ ପଠାଇବାକୁ ହେବ । ଏ ଉପଲକ୍ଷରେ ବାଟଘାଟରେ ମେଳା କରିବେ ନାହିଁ । ଯେଉଁଠାରେ ସରକାର ସଭାସମିତି କରିବାକୁ ମନା କରିବେ ସେଠାରେ ଯେପରି ସରକାରୀ ହୁକୁମ ଅମାନ୍ୟ ନ ହୁଏ, ସେଥିଲାଗି ଖିଲଫତ କମିଟି ବଡ଼ ସାବଧାନ କରାଇଛନ୍ତି । ଏ କମିଟି ଅନୁରୋଧ କରିଛନ୍ତି ଯେ ଉପାଧିଧାରୀମାନେ, ଅନାରାରୀ ମାଜିଷ୍ଟ୍ରେଟ, କାଉନ୍‌ସିଲ ମେମ୍ବରମାନେ ମୁସଲମାନମାନଙ୍କ ଦୁଃଖରେ ସହାନୁଭୂତି କରି ଯେପରି ପଦତ୍ୟାଗ କରନ୍ତି ।

X X X

ଏ ସମ୍ପର୍କରେ ପଣ୍ଡିତ ମଦନମୋହନ ମାଲବ୍ୟ ଭିନ୍ନ ମତ ପ୍ରକାଶ କରିଛନ୍ତି । ସେ କହନ୍ତି ଯେ ଏ ପ୍ରଶ୍ନର ବିଚାରପାଇଁ ସ୍ୱତନ୍ତ୍ର କଂଗ୍ରେସ ବୈଠକ କଲିକତାରେ ହେବାର ସ୍ଥିର ହୋଇଅଛି । ସେଠାରେ ଦେଶର ମୁଖିଆ ମୁଖିଆ ଲୋକଙ୍କ ଦ୍ୱାରା ଅସହଯୋଗ ନୀତିର ବିଚାର ନ ହେବାଯାଏ ଏହାର କାର୍ଯ୍ୟ ଆରମ୍ଭ କରିବା ଭଲ ନୁହେଁ । ସେ ଏ ବିଷୟରେ ଦେଶ ଲୋକଙ୍କୁ ସାବଧାନ କରାଇ ମହାତ୍ମାଗାନ୍ଧୀଙ୍କୁ ଏହି ଜନ୍ତୁ କଂଗ୍ରେସଯାଏ ସ୍ଥଗିତ ରଖିବାକୁ ଅନୁରୋଧ କରିଛନ୍ତି ଏହା ଅବଶ୍ୟ ବଡ ସଙ୍ଗତ ପ୍ରସ୍ତାବ । ଆଶାକରାଯାଏ ମହାତ୍ମାଗାନ୍ଧୀ ଏହାର ବିଚାର କରିବେ ।

X X X

ପଞ୍ଜାବ ଅତ୍ୟାଚାର ବିଷୟର ଆଲୋଚନା ଗଲସପ୍ତାହରେ ବିଲାତର ଲର୍ଡ଼ ସଭାରେ ପଡ଼ିଥିଲା । ଏ ସଭାର ଅଧିକାଂଶ ସଭ୍ୟ ଡାଏରଙ୍କ କାର୍ଯ୍ୟରେ ସହାନୁଭୂତି

ଦେଖାଇଛନ୍ତି । କ୍ରୂରକର୍ମା ଡାଏର୍ ଭାରତର ଶତ ଶତ ଅସହାୟ ରାଜଭକ୍ତ ପ୍ରଜାଙ୍କୁ ତୋପ ମୁହଁରେ ମାରି ଶୁଆଇ ଦେଲେ । ତାଙ୍କୁ ପୁଣି ସହାନୁଭୂତି ଦେଖାଇ ତାଙ୍କ କାର୍ଯ୍ୟର ସମର୍ଥନ କରିବା ଇଂରେଜ ଜାତି ପକ୍ଷରେ ଘୋର କଳଙ୍କର କଥା । ଲର୍ଡ଼ ସଭାର ଏ ବିଚାର ଭାରତୀୟ ପ୍ରାଣରେ ସେମାନଙ୍କ ପ୍ରତି ଘୃଣା ଓ ଅଭକ୍ତି ଜନ୍ମାଇବ ସିନା । ଏହି ବିଚାରର ପ୍ରତିବାଦ କରି ଓ ନୈରାଶ୍ୟ ପ୍ରକାଶ କରି ମାନ୍ଦ୍ରାଜର ଲିବରାଲ୍ ଲିଗ୍ ସରକାରଙ୍କ ଠାକୁ ତାର କରିଛନ୍ତି ଓ ହିନ୍ଦୁ ପତ୍ରିକାର ସମ୍ପାଦକ କସ୍ତୁରିରଙ୍ଗାୟା ଯୁବରାଜଙ୍କ ଅଭ୍ୟର୍ଥନା ସଭାର ମେମ୍ବରପଦ ତ୍ୟାଗ କରି ଅଛନ୍ତି । ଲାହୋରର ସରକାରୀ କଲେଜର ପ୍ରଫେସର ରୁଚିରାମ ସାହାନି ମଧ୍ୟ ତାଙ୍କର ରାୟ ସାହେବ ପଦ ତ୍ୟାଗ କରିଅଛନ୍ତି ।

('ସମାଜ' ତା ୩୧ । ୭ । ୨୦)

———

# ବଳାତଲୋକଙ୍କ ମନରେ ଆତଙ୍କ

ଗାନ୍ଧୀଙ୍କ ଅସହଯୋଗ ନୀତି ବଳାତ ଲୋକଙ୍କ ମନରେ ଟିକିଏ ଆତଙ୍କ ଜନ୍ମାଇ ଥିଲାପରି ଜଣାଯାଏ । ଭାରତମନ୍ତ୍ରୀ ମଣ୍ଟେଗୁ ସାହେବଙ୍କୁ ପାର୍ଲିଆମେଣ୍ଟରେ କେହି କେହି ଏ ସମ୍ବନ୍ଧେ ପ୍ରଶ୍ନ ପଚାରିଥିଲେ, । ମଣ୍ଟେଗୁଙ୍କ ଜବାବରୁ ଜଣାଯାଏ ଯେ ଗାନ୍ଧୀଙ୍କପ୍ରତି ଏଣିକି କଠୋର ବ୍ୟବହାର କରିବାକୁ ସରକାର ବିଚାରୁଛନ୍ତି । ମଣ୍ଟେଗୁ କହିଥିଲେ କି ଭାରତ ସରକାର ଏବଂ ପ୍ରାଦେଶିକ ସରକାରମାନେ ଗାନ୍ଧୀଙ୍କ ଗତିବିଧି ପ୍ରତି ବେଶ୍ ନଜର ରଖିଛନ୍ତି ଏବଂ ଅବସ୍ଥା ଦେଖି ବ୍ୟବସ୍ଥା ମଧ୍ୟ କରିପାରିବେ ।

ଏଥିରୁ ଭାରତ ମନ୍ତ୍ରୀଙ୍କ ମତଲବ ସଫା ଜଣାପଡୁଛି, ଭାରତର ଭିନ୍ନ ଭିନ୍ନ ଦଳର ନେତାମାନେ ମଣ୍ଟେଗୁଙ୍କର ଏ ଭାବକୁ କେହି ଭଲ କହୁନାହାନ୍ତି । ମହାତ୍ମାଗାନ୍ଧୀ ଭାରତବାସୀଙ୍କ ଆଖିରେ ଆଉ ମନୁଷ୍ୟ ହୋଇ ନାହାନ୍ତି । ସେ ଦେବତା । ତାଙ୍କ ପ୍ରତି କୌଣସି ପ୍ରକାର ଅପମାନ, ଅନ୍ୟାୟ ବା ଅତ୍ୟାଚାର ହେଲେ ଯେ ଦେଶରେ କି ଉତ୍ପାତ ଘଟିପାରେ କହି ହେଉନାହିଁ । ସରକାର ଅନେକ ସମୟରେ ଦେଶକାଳ ପାତ୍ର ନ ବିଚାରି କେତେ କାଣ୍ଡ କରି ବସନ୍ତି; ତାହା ରାଜ୍ୟ ଶାସନ ଓ ପ୍ରଜସାଧାରଣଙ୍କ ପକ୍ଷରେ ଘୋର ଅନିଷ୍ଟ ଘଟାଏ । ଆମ୍ଭେମାନେ କହୁ—

"ବିଚାରି କାର୍ଯ୍ୟ କରୁଥିଲେ
ପ୍ରମାଦ ନ ପଡ଼ଇ ଭଲେ ।"

ଗାନ୍ଧୀ ତ ରାଜନୀତିର କୂଟ ଫାନ୍ଦରେ ଚାଲିବା ଲୋକ ନୁହନ୍ତି । ତାଙ୍କର ପେଟରେ ଯାହା, ମୁହଁରେ ତାହା । "ଉଦୟତି ଯଦି ଭାନୁଃ ପଶ୍ଚିମେ ଦିଗ୍‌ବିଭାଗେ; ନଚଳତି ଖଳୁ ବାକ୍ୟଂ" ଏହା ଗାନ୍ଧୀଙ୍କ ନୀତି । ସେ ମଣ୍ଟେଗୁ ସାହେବଙ୍କ କଥା ଶୁଣି ତାଙ୍କ ମନ ଖୋଲି ଲେଖିଛନ୍ତି । ସେ କହନ୍ତି, ସରକାରଙ୍କ କଥା ନ ମାନି ତାଙ୍କର ବିଦ୍ରୋହାଚରଣ କରିବା ଭାରି ଖରାପ, ସେଥିରେ ବେଶୀ କ୍ଷତି ଏବଂ ଅନିଷ୍ଟ ହୁଏ । ସରକାରଙ୍କ କାର୍ଯ୍ୟରେ ଯୋଗ ନ ଦେଲେ ସେତେ ଅନିଷ୍ଟ ହୁଏ ନାହିଁ । ମାତ୍ର ଅସହଯୋଗ ନୀତିର

ପରିଣାମ ବଡ଼ ଗୁରୁତର । ଏହାଦ୍ୱାରା ଶାସନକଳ ଏକାବେଳକେ ବନ୍ଦ ହୋଇ ଯାଇ-ପାରେ । ଏପରି ଅବସ୍ଥାରେ ମଣ୍ଟେଗୁ ସାହେବ ଗାନ୍ଧୀଙ୍କ ସ୍ୱାଧୀନତା ଲୋପ କରିବା ଲାଗି ଧମକ ଦେବାରେ ଆଶ୍ଚର୍ଯ୍ୟ କଅଣ ? କିନ୍ତୁ ଗାନ୍ଧୀ କହନ୍ତି, "ମୋତେ ଦଣ୍ଡଭୟ ନ ଦେଖାଇ ମୁସଲମାନ ଏବଂ ପଞ୍ଜାବ ପ୍ରତି ନ୍ୟାଯ୍ୟ ବିଚାରର ବ୍ୟବସ୍ଥା କରିଥିଲେ ତ କଥା ସହଜରେ ଛିଡ଼ି ଯାଇଥାନ୍ତା ।" ଆହୁରି ମଧ୍ୟ ସେ କହୁଛନ୍ତି, ଅସହଯୋଗମାର୍ଗ ବନ୍ଦ କରିବେ ବୋଲି ସରକାର ମୋତେ ଗିରଫ କରିବେ; ନ ହେଲେ ଲୋକେ ଯାହା ଚାହୁଁଛନ୍ତି ତାହା ମଞ୍ଜୁର କରିବେ । ସୁତରାଂ ସରକାରଙ୍କ କାର୍ଯ୍ୟରେ ହଠାତ୍ ତାତି ନ ଯାଇ କୌଣସି ପ୍ରକାର ଗଣ୍ଡଗୋଳ ନ କରି ଅସହଯୋଗ ମାର୍ଗ ଚଳାଇବାକୁ ହେବ, ଏହା ଉପରେ ଆଉ କଥା କଅଣ ?

('ସମାଜ', ତା ୭ । ୮ । ୧୯୨୦)

— —

# ଅସହଯୋଗର ପ୍ରସାର

ମହାତ୍ମାଗାନ୍ଧୀ ଏବେ ପ୍ରୟାଗ, ଦିଲ୍ଲୀ, ପଞ୍ଜାବ ପ୍ରଭୃତି ଅଞ୍ଚଳରେ ବୁଲୁଛନ୍ତି । ପୁରୀ ଆସିବା ବିଷୟରେ ତାଙ୍କଠାରୁ ଏଥି ମଧ୍ୟରେ ଯେ ଟେଲିଗ୍ରାମ ଆସିଅଛି ସେଥିରୁ ଜଣାଯାଏ ଯେ ଆଗାମୀ ନଭେମ୍ବର ମାସ ଶେଷସୁଦ୍ଧା ତାଙ୍କର ଏଆଡ଼େ ଆସିବାର ସମ୍ଭାବନା ନାହିଁ । ସେ ଏଥିମଧ୍ୟରେ ଆଲିଗଡ଼ କଲେଜ, ପଞ୍ଜାବର ଇସ୍‌ଲାମିଆ କଲେଜ ଓ ଖାଲସା କଲେଜ ପ୍ରଭୃତିକି ଯାଇଥିଲେ । ଏହିସବୁ କଲେଜରେ ଛାତ୍ରମାନେ ଅସହଯୋଗ ନୀତିରେ କଲେଜ ଛାଡ଼ିବାକୁ ଗୋଡ଼ଟେକି ବସିଲେଣି । ମାତ୍ର ଅନେକଙ୍କର ମୁରବିଙ୍କ ମତ ହେଉନାହିଁ । କଲେଜ ଅଧ୍ୟକ୍ଷ ଏବଂ ପରିଚାଳକମାନେ ବିଶ୍ୱବିଦ୍ୟାଳୟ ସମ୍ପର୍କ ହଠାତ୍ ତୁଟାଇବାକୁ ସମସ୍ତେ ସହଜରେ ରାଜି ହେଉନାହାନ୍ତି । ମୁସଲମାନମାନଙ୍କର ପ୍ରଧାନ କଲେଜ ଆଲିଗଡ଼ରେ । ଏହାକୁ ଏହିମାସ ମଧ୍ୟରେ ଜାତୀୟ ବିଶ୍ୱବିଦ୍ୟାଳୟ କରିବା ସକାଶେ ସବୁ ଆୟୋଜନ ଠିକ୍ ହୋଇଗଲାଣି । କଲେଜର ଟ୍ରଷ୍ଟିମାନଙ୍କ ସଙ୍ଗେ ବର୍ତ୍ତମାନ ଏ ବିଷୟରେ କଥା ଚାଲିଅଛି । ଆଲିଗଡ଼ରେ ଜାତୀୟ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲେ ଭାରି ଗୋଟାଏ ବଡ଼ କାର୍ଯ୍ୟ ହେବ ସନ୍ଦେହ ନାହିଁ । ଇସ୍‌ଲାମିଆ କଲେଜର ଟ୍ରଷ୍ଟୀମାନେ ସେ କଲେଜକୁ ବିଶ୍ୱବିଦ୍ୟାଳୟରେ ସାମିଲ କରିବାକୁ ଏକ ପ୍ରକାର ସ୍ଥିର କରି ସାରିଲେଣି । ଯେପରି ଦେଖାଯାଉଛି, ଜାତୀୟ ବିଶ୍ୱବିଦ୍ୟାଳୟ ଅନ୍ତର୍ଭୁକ୍ତ ନ ହେଲେ ଏ ସବୁ କଲେଜରୁ ଅନେକ ଛାତ୍ର ନାମ କଟାଇ ଚାଲିଯିବେ ।

× × ×

କଂଗ୍ରେସ ଅସହଯୋଗ ନୀତିକି ମାନି ଏଥିମଧ୍ୟରେ ଭାରତବର୍ଷର ଭିନ୍ନ ଭିନ୍ନ ପ୍ରଦେଶରୁ ଅନେକ ପ୍ରଧାନ ପ୍ରଧାନ ଲୋକେ କାଉନ୍‌ସିଲକୁ ଯିବା ଉଦ୍ୟମ ଛାଡ଼ି ଦେଇଛନ୍ତି । କେତେ ଓକିଲ ଓକାଲତି ଛାଡ଼ି ଦେଲେଣି ଏବଂ ଅନେକ ଛାତ୍ର ସ୍କୁଲ କଲେଜ ଛାଡ଼ି ଦେଉଛନ୍ତି । କେତେକ ସ୍କୁଲମଧ୍ୟ ସରକାରୀ ସାହାଯ୍ୟ ସମ୍ପର୍କ ତ୍ୟାଗ କରୁଛନ୍ତି । ଅବଶ୍ୟ ଭାରତବର୍ଷକୁ ଚାହିଁଲେ ଏମାନଙ୍କ ସଂଖ୍ୟା ଖୁବ୍ ବେଶୀ ନୁହେଁ । ତଥାପି ଏହି ଯେ ସୁଅ ପଡ଼ିଲାଣି ଏହା କ୍ରମେ ବଢ଼ିବ, ସିନା କଦାପି ଛୁଟିବ ନାହିଁ । ଯେଉଁସବୁ ନାମ ଏ ସମ୍ବାଦରେ ବିଭିନ୍ନ ଅଞ୍ଚଳର ଖବର କାଗଜରେ ପ୍ରକାଶିତ ହେଉଅଛି ତାହା କ୍ରମଶଃ ଆମ୍ଭେମାନେ ସମାଜରେ ପ୍ରକାଶ କରୁଅଛୁଁ ।

ମିରଟ -ମୌଲଭୀ ସୟେଦ ମହମ୍ମଦ ହୋସେନ, ବାରଷ୍ଟର, ଇସ୍‌ମାଇଲ ଖାଁ, ବାରଷ୍ଟର ଓ ମୁଙ୍ଗେରରୁ ସା ମୋହମୁଦ ଯବର, ବାରଷ୍ଟର ଅସହଯୋଗ ନୀତ ଧର ନଜ ନଜର ଓକାଲ୍‌ତ ବ୍ୟବସାୟ ଛାଡ଼ିଅଛନ୍ତ ।

ନମ୍ନଲିଖିତ ଭଦ୍ରଲୋକମାନେ ନୂତନ ବ୍ୟବସ୍ଥାପକ ସଭାକୁ ମେମ୍ବର ହୋଇ ଯିବାର ଚେଷ୍ଟା କରୁଥିଲେ, ଅସହଯୋଗ ନୀତଫଳରେ ନ ଯିବାର ସ୍ଥିର କଲେ ।

୧—ଶ୍ରୀଯୁକ୍ତ ଆର. ପି. କରଣ୍ଡିକର ସତାରା, ବମ୍ବେଇ
୨—ଡାକ୍ତର ମୃଗେନ୍ଦ୍ର ଲାଲ ମିତ୍ର, କଲ୍‌କତା
୩ - ଶ୍ରୀଯୁକ୍ତ ସୁଦର୍ଶନ ଚକ୍ରବର୍ତ୍ତୀ, ରାଜସାହୀ
୪—ଏସ୍. ଏ. ହାସିମ, କୋମିଲ୍ଲା
୫—ଡାକ୍ତର ଶରତଚନ୍ଦ୍ର ବସାକ, ଢାକା
୬—ଶ୍ରୀ ଚନ୍ଦ୍ରବଂଶୀ ସହାୟ, ବାରଷ୍ଟର, ବାଙ୍କିପୁର
୭—ବାବୁ ଦେବୀପ୍ରସାଦ ଅଇତାନ, କଲ୍‌କତା
୮ —,, ରଜେଶକାନ୍ତ ରାୟ, ରାଜସାହୀ

ଧରଓ୍ୱାର ଜିଲାରୁ ଶ୍ରୀଯୁକ୍ତ ଗଙ୍ଗାଧର ରାଓ ଦେଶପାଣ୍ଡେ ଓ ଶ୍ରୀଯୁକ୍ତ ମାଜ୍ଜୀ ନଜ ନଜର ଓକାଲତ ଛାଡ଼ ଦେଇଅଛନ୍ତ ।

('ସମାଜ', ତା ୩୦ । ୧୦ । ୨୦)

— — —

# ଅସହଯୋଗରେ ସବୁ ଖୋଲା ଓ ସରଳ

ମହାତ୍ମାଗାନ୍ଧୀ ଖଣ୍ଡେ ବେନାମୀ ଚିଠି ପାଇଛନ୍ତି । ସେଥିରେ ଲେଖାଅଛି କି ଯାହା କରିବାର ଗୁପ୍ତଦଳ ଦ୍ୱାରା କର, ଏପରି ବାଇଦ ବଜାଇ କରିନାହିଁ; ଖୋଲି ଧମକାଅ ନାହିଁ, ମାର ଏବଂ ମାର ଯେ ମୂଳରେ ମାର, ଡାଳରେ ମାରି ଫଳ ନାହିଁ । ବୋଧହୁଏ ଅସହଯୋଗନୀତିର ଯେ ସବୁ କଥା ଖୋଲା, ସରଳ ଏବଂ ସିଧା ଭାବରେ ହୋଇଅଛି ତାହା ଏ ବେନାମୀ ପତ୍ରର ଲେଖକଙ୍କ ମନକୁ ଆସୁନାହିଁ । ମାତ୍ର ଏହାହିଁ ତ ଅସହଯୋଗନୀତିର ବିଶେଷତ୍ୱ । ଅସହଯୋଗନୀତିରେ କାହାରି ବିଦ୍ୱେଷ କି ନିନ୍ଦା ନାହିଁ । କାହାରିକୁ ଘାତ କରିବାର ଉଦ୍ୟମ ନାହିଁ । ଅସହଯୋଗନୀତି ଏକ କଠୋର ସାଧନା । ଏଥିରେ ନିଜକୁ ଗଢ଼ିବାକୁ ହେବ । ଆପଣା ଆତ୍ମାକୁ ଶୁଦ୍ଧ କରିବାକୁ ହେବ । ଅନ୍ୟାୟ ଏବଂ ଅଧର୍ମ ସାଙ୍ଗରୁ ସମସ୍ତ ସମ୍ପର୍କ ତୁଟାଇବାକୁ ହେବ । ଏଥିରେ କାହାରିକୁ ମାରିବାର କଥା ନାହିଁ । କେବଳ ଧର୍ମ ଏବଂ ନ୍ୟାୟର ଶକ୍ତି ପ୍ରବଳ ଏବଂ ଉଜ୍ଜ୍ୱଳ ହେଲେ ଅଧର୍ମ ଏବଂ ଅନ୍ୟାୟ ମଳିନ ଏବଂ କ୍ଷୀଣ ହେବ । ଅସହଯୋଗନୀତି ଦୃଷ୍ଟିରେ ଗୁପ୍ତଦଳଦ୍ୱାରା କାର୍ଯ୍ୟ ସାଧନ ନିନ୍ଦିତ ଏବଂ ଘୃଣିତ କ୍ରିୟା । ଏହା ଏ ଯୁଗର ଉପଯୋଗୀ ନୁହେଁ, ଅନ୍ତତଃ ଧର୍ମପ୍ରାଣ ଭାରତୀୟ ପ୍ରଜା ଶକ୍ତିର ଉପଯୁକ୍ତ ନୁହେଁ । ଅବଶ୍ୟ

ଦୁର୍ଗମ ପଥ ଏ ଭଜନ
ଭୟେ ଭଜନ୍ତି ଯୋଗୀଜନ ।

ମାତ୍ର ଏହାହିଁ ପନ୍ଥା । ଏହାଛଡ଼ା ଅନ୍ୟପନ୍ଥା ନାହିଁ । ଭାରତର ବର୍ତ୍ତମାନ ଅବସ୍ଥାରେ ଗୁପ୍ତଦଳର କଥା କେହି କେହି ବିଚାରିବା ସ୍ୱାଭାବିକ । ମାତ୍ର ଏହାଦ୍ୱାରା ଅନିଷ୍ଟଛଡ଼ା ଇଷ୍ଟ ନାହିଁ । ଅସ୍ମମାନଙ୍କର ମନେ ହୁଏ ସ୍ୱଦେଶୀ ଆନ୍ଦୋଳନ ଦ୍ୱାରା ବଙ୍ଗଳାରେ ଯେଉଁ ନୂତନ ଶକ୍ତି ଜାଗି ଆସୁଥିଲା, କେତେକ ଗୁପ୍ତଦଳର କ୍ରିୟାଦ୍ୱାରା ତାହା ଅକାଳେ ନଷ୍ଟ ହେଲା । ଗୁପ୍ତଦଳର କାର୍ଯ୍ୟ ଶାସନକୁ ସୁଧାରିବାର ଉପାୟ ନହେ । ଏହାଦ୍ୱାରା ଶାସନର ବିଶୃଙ୍ଖଳା ହୁଏ ଏବଂ ଧନ ପ୍ରାଣର ଅନିଷ୍ଟସୃଷ୍ଟି ଘଟେ । ଦଳ ଗଠିତ ହୋଇ ଦେଶର ଯେପରି କୌଣସି ପ୍ରକାର ଅନିଷ୍ଟ ନ କରନ୍ତି ସମସ୍ତଙ୍କର ଏ ବିଷୟରେ ସାବଧାନ ହେବା ଉଚିତ । ବିନା ଆଘାତ ଉତ୍ପାତରେ ଅସହଯୋଗନୀତି ଚଳାଇବାକୁ ହେବ । ଏଥିରେ କାହାରି ଅନିଷ୍ଟ ନାହିଁ । ଅଥଚ "ଯତୋଧର୍ମସ୍ତତୋ ଜୟଃ ।"

('ସମାଜ', ତା ୧୧ । ୧୨ । ୨୦)

# ପୋଲିସ ଅତ୍ୟାଚାର

ବିହାରର ଚମ୍ପାରନ୍ ଜିଲ୍ଲାରେ ପୋଲିସ ଅତ୍ୟାଚାର ଫଳରେ ଘୋର ଉତ୍ପାତ ଆରମ୍ଭ ହୋଇଅଛି । ସମ୍ବାଦପତ୍ରମାନଙ୍କରୁ ଜଣାଯାଏ ଦୁଇଜଣ ସାଧାରଣ ଲୋକଙ୍କ ମଧ୍ୟରେ ବିବାଦ ଥିଲା । ସେଥିମଧ୍ୟରୁ ଜଣକ ସଙ୍ଗେ ସ୍ଥାନୀୟ ପୋଲିସର ମଧ୍ୟ ଅପଡ଼ । ଏହି ପୋଲିସ ଅପଡ଼ ଲୋକର ଚାକର ନାମରେ ଅନ୍ୟ ବିରୋଧୀ ଲୋକ ପୋଲିସରେ କି ଇତଲା ଦେଲା । ପୋଲିସ ପରାମର୍ଶରେ ଚାକର ସଙ୍ଗେ ଖାମିନ୍ଦକୁ ଯୋଗକରି ଦିଆ ଯାଇଥିଲା । ପୋଲିସ ତାହାଁ ଆସି ଖାମିନ୍ଦକୁ ଗିରଫ୍ କଲା । ଗ୍ରାମ ଲୋକେ ମିଳି ପୋଲିସଠାରୁ ଖାମିନ୍ଦକୁ ଛଡ଼ାଇ ଆଣିଲେ । ହୁଏତ ଦଙ୍ଗାହେଙ୍ଗାମ ହୋଇଥିବ, ମାଡ଼ ମରାମରି ହୋଇଥିବା ଅସମ୍ଭବ ନୁହେଁ । ସେ ଯାହାହେଉ, ଏଥିରେ ପୋଲିସ ବିରୁଦ୍ଧରେ ଗ୍ରାମବାସୀମାନେ ଉଠିଛନ୍ତି ବୋଲି ପୋଲିସ ସଙ୍ଗେ ସଙ୍ଗେ ଟେଲିଗ୍ରାମ କରି ହାତହତିଆର ଧରା ସିପାହୀ ମଗାଇଲେ । ଏହି ସୈନ୍ୟମାନେ ଆସି ଲୋକମାନଙ୍କୁ ଧରାମରା ଓ ଘର ଲୁଟିକରି ସ୍ତ୍ରୀଲୋକଙ୍କର ଇଜ୍ଜତ ନେଇଥିବାର ଶୁଣାଯାଏ । ସାଧାରଣଙ୍କ ପକ୍ଷରୁ ମଜହରଲ ହକ୍, ରାଜେନ୍ଦ୍ର ପ୍ରସାଦ ଓ ବାବୁ ଚନ୍ଦ୍ରବଂଶୀ ସହାୟ କେତେକ ସ୍ୱେଚ୍ଛାସେବକଙ୍କୁ ସଙ୍ଗେ ଘେନି ଲୋକଙ୍କୁ ସହାୟତା କରିବା ଲାଗି ସରଜମିନ୍‌କୁ ଯାଇଛନ୍ତି । ସେମାନଙ୍କ ରିପୋର୍ଟରୁ ଜଣାଯାଏ ଯେ କେତେକ ଗ୍ରାମର ଲୋକେ ତ୍ରସ୍ତବ୍ୟସ୍ତ ହୋଇ ଘରଦ୍ୱାର ଛାଡ଼ି ପଳାଇଛନ୍ତି । ଗାଁ ଜନଶୂନ୍ୟ ହୋଇଯାଇଛି । ପୋଲିସ ପ୍ରଭାବରେ ଯେ କି ଉତ୍ପାତ ନ ହୋଇପାରେ ? ଶାସନର ତାଳୁଠାରୁ ତଳପା ଯାଏ ପ୍ରତି ପଦ ଗଣ୍ଠିରେ ଏଣିକି ଡାୟାର ବ୍ୟାଧି ଘୋଟିଲା ନା କଅଣ ? ଲୋକଙ୍କର ଯାହା ଅବସ୍ଥା ହେବାର ହେଲା । ଏହାପରେ ହୁଏତ କେହି କେହି ମେମ୍ବର କାଉନ୍‌ସିଲରେ ଏ ପ୍ରସଙ୍ଗରେ ଦୁଇଚାରିଟା ପ୍ରଶ୍ନ ଉଠାଇବେ । ସରକାର ସବୁକୁଳ ଜଗି ସାପ ନ ମରିବ କି ବାଡ଼ି ନ ଭାଙ୍ଗିବ ନୀତିରେ ଜବାବ ଦେଲେ କାମ ସରିଲା । ଏହାହିଁ ସହଯୋଗୀତାର ଫଳ । ତେବେ କଥାରେ ଅଛି ସୁନାମୁଦିଆଙ୍କ ହାତେ ଠୋକର ଖାଇଲେ ଗଙ୍ଗାସ୍ନାନ ଫଳ । ଫଳରେ କିଛି ନ ହେଲେତ କଅଣ ହେଲା ?

('ସମାଜ', ତା ୧୧ । ୧୨ । ୨୦)

---

# ନିର୍ବାଚନରେ ଅସହଯୋଗ

ଊଣାଅଧିକେ ଭାରତବର୍ଷର ପ୍ରତ୍ୟେକ ପ୍ରଦେଶରେ କାଉନ୍‌ସିଲ ମେମ୍ବର୍ ନିର୍ବାଚନରେ ଅସହଯୋଗ ନୀତିର ଫଳ ଦେଖାଯାଇଅଛି । କୌଣସି କୌଣସି ଜିଲାରେ କେହି ଆଦୌ ମେମ୍ବର ହେବାଲାଗି ପ୍ରାର୍ଥୀ ହୋଇ ନାହାନ୍ତି । କେତେ ଯାଗାରେ ପାଞ୍ଚଶ ଛଅଶ ବା ହଜାର ଭୋଟରଙ୍କ ମଧ୍ୟରୁ କେହି ଜଣେସୁଦ୍ଧା ଭୋଟ ଦେଇନାହାନ୍ତି । ଯେଉଁ ସ୍ଥାନରେ ଭୋଟ ଦେଇଛନ୍ତି ସେଠାରେ ସମୁଦାୟ ଭୋଟରଙ୍କ ତୁଳନାରେ ଅତି ଅଳ୍ପ ଭୋଟ ହୋଇ ଅଛି । କେତେ ଅଞ୍ଚଳରେ ଅନେକ ଉପଯୁକ୍ତ ଲୋକ ଥିଲେ ସୁଦ୍ଧା ଜଣେ ଜଣେ ଅନୁପଯୁକ୍ତ ଲୋକ ବିନା ବିବାଦରେ ମେମ୍ବର ହୋଇ ଯାଇଛନ୍ତି । ଅତି ଅଳ୍ପସମୟ ମଧ୍ୟରେ ସାଧାରଣଙ୍କ ମଧ୍ୟରେ ଅସହଯୋଗ ନୀତି ଆନ୍ଦୋଳନର ଏପରି ଫଳ ଦେଖି ଏହାର ନିନ୍ଦୁକମାନଙ୍କୁ ଅବଶ୍ୟ ଟିକିଏ ଆଶ୍ଚର୍ଯ୍ୟ ଲାଗିଥିବ । ଆମ୍ଭେମାନେ କହୁଁ ଲୋକେ ଠିକ୍ ଅଛନ୍ତି ଏବଂ ଯେକୌଣସି ବିଷୟ ସେମାନଙ୍କୁ ଭଲରୂପେ ବୁଝାଇଦେଲେ ସେମାନେ କାର୍ଯ୍ୟ କରିବାକୁ ପିଚ୍ଛାଇବେ ନାହିଁ । ଓଡ଼ିଶାରେ ଯେଉଁସବୁ ସ୍ଥାନରେ କାଉନ୍‌ସିଲ ନିର୍ବାଚନ ବିଷୟରେ ଅସହଯୋଗ ନୀତି ଆନ୍ଦୋଳନ ହୋଇଥିଲା ସେଠାରେ ଆଶାତୀତ ଫଳ ହୋଇଅଛି କହିଲେ ଚଳେ । ପୁରୀ ଜିଲ୍ଲାର କୌଣସି କୌଣସି ଥାନାରେ ଦୁଇଶହ ଭୋଟରୁ ତିନିଶ ଦୁଇଖଣ୍ଡି ମାତ୍ର ଭୋଟ ବାକ୍‌ସରେ କାଗଜ ପଡ଼ିଛି । ଅଧିକାଂଶ ଥାନାରେ ଶତକଡ଼ା ୨୦ରୁ ବେଶୀ ଭୋଟର ଭୋଟ ଦେଇନାହାନ୍ତି । କେତେକ ମଫସଲ ପୋଲିସ ନିମ୍ନ କର୍ମଚାରୀ କେତେକ ପ୍ରାର୍ଥୀଙ୍କ ପକ୍ଷର ଲୋକେ ଭୋଟ ନ ଦେଲେ ବିପଦ ହେବ ବୋଲି ଲୋକଙ୍କୁ ଭୟ ଦେଖାଇ ନ ଥିଲେ ଏତିକ ସୁଦ୍ଧା ହୋଇ ନ ଥାନ୍ତା । ପୁରୀ ମ୍ୟୁନିସିପାଲିଟିରେ ଶତକଡ଼ା ୨୦ ଭୋଟ ହୋଇଅଛି । ସମ୍ବଲପୁର ମ୍ୟୁନିସିପାଲିଟିରେ ପ୍ରାୟ ୩୦୦ ଭୋଟରଙ୍କ ମଧ୍ୟରୁ ୨୮ ଜଣ ମାତ୍ର ଭୋଟ ଦେଇଛନ୍ତି । କେହି ମୁସଲମାନ ଭୋଟ ଦେଇନାହାନ୍ତି । ଏହିପରି ଅଳ୍ପ ଭୋଟପାଇ ଯେଉଁମାନେ ପ୍ରତିନିଧି ହୋଇଯିବେ ସେମାନେ ଲୋକସାଧାରଣଙ୍କର ପ୍ରକୃତ ପ୍ରତିନିଧି ବୋଲାଇବେ କି ? ସେ ଯାହାହେଉ, ଲୋକସାଧାରଣ ଦେଶର ପ୍ରକୃତ ଅବସ୍ଥା ଏବଂ ସରକାରଙ୍କର ଗତିବିଧି ବୁଝି କାଉନ୍‌ସିଲକୁ ମେମ୍ବର ପଠାଇବା ବୃଥା ବୋଲି ସ୍ଥିର କଲେଣି, ଏଥିରେ ସନ୍ଦେହ ନାହିଁ । କାଉନ୍‌ସିଲ ତାଣ୍ଡବ ସରିଲା । ଅସହଯୋଗ ନୀତିର ଅନ୍ୟାନ୍ୟ କାର୍ଯ୍ୟ ଏଣିକି ଆରମ୍ଭ ହେବା ଆବଶ୍ୟକ । କେହି କେହି ଆଗାମୀ ନାଗପୁର କଂଗ୍ରେସକୁ ଅପେକ୍ଷା କରିଛନ୍ତି । ସେଠାରେ ଅସହଯୋଗ ନୀତିରେ କେତେକ ପରିବର୍ତ୍ତନ

ହୋଇପାରେ; ମାତ୍ର କଲିକତା କଂଗ୍ରେସରେ ଯେ ଯେ କାର୍ଯ୍ୟ ଧାର୍ଯ୍ୟ ହୋଇଛି ସେଥିରୁ ଯେ ବର୍ତ୍ତମାନ କଣ କରାଯାଇପାରେ ଆମ୍ଭେମାନେ ଦେଖି ପାରୁନାହୁଁ । ସ୍ୱଦେଶୀ ଦ୍ରବ୍ୟର ବହୁଳ ବ୍ୟବହାର, ପଲ୍ଲୀରେ ପଞ୍ଚାୟତ ବିଚାରାଳୟ ସ୍ଥାପନ, ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା ପ୍ରଭୃତି ଯେ ଜାତୀୟ ଉନ୍ନତିଲାଗି ଏକାନ୍ତ ଆବଶ୍ୟକ ଏହା କିଏ ଅସ୍ୱୀକାର କରିବ ? ଏହି କେତେଦିନ ମଧ୍ୟରେ ବମ୍ବେ, ମଧ୍ୟପ୍ରଦେଶ, ପଞ୍ଜାବ ପ୍ରଭୃତି କେତେ ପ୍ରଦେଶରେ ଅନେକ-ଗୁଡ଼ିଏ ଜାତୀୟ ବିଦ୍ୟାଳୟ ଆରମ୍ଭ ହୋଇଅଛି । ଗୁଜରାଟରେ ଜାତୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇଅଛି । ସ୍ୱଦେଶୀ ଭଣ୍ଡାରର ସଂଖ୍ୟା ଦିନକୁ ଦିନ ବଢ଼ୁଅଛି । ଅନେକେ ଅରଟରେ ସୂତା କାଟିଲେଣି । ଅନେକେ କପାଚାଷ କଲେଣି । ଏସବୁ ବିଷୟରେ ବିଶେଷ ଉତ୍ସାହ ଦିଆଯିବା ଆବଶ୍ୟକ । ଏହା ଅସହଯୋଗ ନୀତିର ପ୍ରଧାନ କାର୍ଯ୍ୟ । ଆମ୍ଭମାନଙ୍କର ଉତ୍କଳ ସମ୍ମିଳନୀ ଆରମ୍ଭରୁ ସରକାରଙ୍କ ସହିତ କୌଣସି ସମ୍ପର୍କ ନ ରଖି ଏହିସବୁ ଦେଶହିତକର ପ୍ରସ୍ତାବମାନ କରୁଥିଲେ । ଏହାକୁ ଅସହଯୋଗ ନୀତି ବୋଲନ୍ତୁ ବା ଆତ୍ମନିର୍ଭର ନୀତି ବୋଲନ୍ତୁ କାର୍ଯ୍ୟ ଏକା । ଓଡ଼ିଶାରେ ଯେଉଁମାନେ ଅସହଯୋଗ ନୀତିର ପକ୍ଷପାତୀ ନୁହନ୍ତି ସେମାନେ ନିତାନ୍ତ ପକ୍ଷେ ସମ୍ମିଳନୀର ପକ୍ଷପାତୀ ଏବଂ ସ୍ୱଦେଶୀ ପଞ୍ଚାୟତ, ବିଚାର ଅଦାଲତ ପ୍ରଭୃତି ସ୍ଥାପନ ବିଷୟରେ ସମ୍ମିଳନୀ ଭକ୍ତମାନେ ଏକଯୋଗ ହୋଇ କାର୍ଯ୍ୟକଲେ ବର୍ତ୍ତମାନ ସମୟର ଜାତୀୟ ଆନ୍ଦୋଳନରେ ଓଡ଼ିଆ ଭାଇମାନେ କଦାପି ପଛରେ ପଡ଼ି ରହିବେ ନାହିଁ ।

('ସମାଜ', ତା ୧୧ । ୧୨ । ୨୦)

---

# ଅସହଯୋଗର କାହ୍ନବୀ ବୋହଲାଣି

ଏଣିକି ଅସହଯୋଗ ନୀତିର ଢେର ଅଧିକ ପ୍ରସାର ହେଲା । ଗଲା ସେପ୍ଟେମ୍ବର ମାସରେ କଲିକତା କଂଗ୍ରେସରେ ଅସହଯୋଗ ନୀତିର ବିଗ୍ଭର ହେଲାବେଳେ ଦେଶର ଅନେକ ମୁଖିଆ ଲୋକ ଏଥିରେ ମହାତ୍ମାଗାନ୍ଧୀଙ୍କ ସଙ୍ଗେ ଏକମତ ହୋଇ ନ ଥିଲେ । ତେଣୁ କେତେ ସରକାରୀ ଲୋକ କହୁଥିଲେ ଯେ, ଗାନ୍ଧି କେତେକ ସ୍କୁଲ କଲେଜ ପିଲା ଏବଂ ବଜାରୀ ଲୋକଙ୍କୁ ଧରି କଂଗ୍ରେସରେ ଅସହଯୋଗ ନୀତି ନିର୍ଦ୍ଧାରଣ ମଞ୍ଜୁର କରାଇ ନେଲେ; ମାତ୍ର ଦେଶର ପ୍ରଧାନ ନେତାମାନେ ଏହା ଗ୍ରହଣ କରୁନାହାନ୍ତି । କେବଳ ସରକାରୀ ଲୋକେ ନୁହନ୍ତି, ସମଶୀତଳ ଉଦାର ମାଗୁଣିଆ ଦଳ ମଧ୍ୟ ଏହାହିଁ କହୁଥିଲେ । ସେମାନଙ୍କର ବିଶ୍ୱାସ ଥିଲା ଯେ ନାଗପୁର ବୈଠକରେ ଖୁବ୍ ସମ୍ଭବ କଲିକତା ନିର୍ଦ୍ଧାରଣ ଫେରିଯିବ । ମାତ୍ର ଫଳରେ ଏ ବିଶ୍ୱାସ ଭ୍ରମ ବୋଲି ଏବେ ଦେଖାଗଲା । କଲିକତା କଂଗ୍ରେସବେଳେ ଯେଉଁମାନଙ୍କର ଅମତ ଥିଲା, ସେମାନଙ୍କ ମଧ୍ୟରୁ ସାମାନ୍ୟ କେତେଜଣଙ୍କୁ ଛାଡ଼ି ଆଉ ପ୍ରାୟ ସମସ୍ତେ ଏବେ ଅସହଯୋଗ ନୀତି ସମର୍ଥନ କରିଅଛନ୍ତି । କଲିକତା କଂଗ୍ରେସରେ ଯେଉଁ ମଧ୍ୟପ୍ରଦେଶ ମହାତ୍ମାଗାନ୍ଧୀଙ୍କ ପ୍ରସ୍ତାବିତ ଅସହଯୋଗ ନୀତି ବିରୁଦ୍ଧରେ ମତ ଦେଇଥିଲେ ଆଜି ସେହି ମଧ୍ୟପ୍ରଦେଶ ଷୋଳଅଣା ଅସହଯୋଗ ନୀତି ଧରିଅଛି । ମୁଖିଆ ନେତାଙ୍କଠାରୁ ଆରମ୍ଭକରି ନାଗପୁରର ଗାଡ଼ିବାଲା ପର୍ଯ୍ୟନ୍ତ ସମସ୍ତେ ଏକାବାଟରେ ଚାଲିଅଛନ୍ତି । ବାରିଷ୍ଟର୍ ଚିତ୍ତରଞ୍ଜନ ଦାସ ପ୍ରଭୃତି କେତେକ ନେତା ଅସହଯୋଗ ନୀତିର କେତେକ କାର୍ଯ୍ୟରେ ମତଭେଦ କରିବାରେ ଯେଉଁ ସ୍ୱତନ୍ତ୍ର ଏକଦଳ ସୃଷ୍ଟି କରିଥିଲେ ତା ଆଉ ରହିଲା ନାହିଁ । ନିଜେ ଦାସ ମହାଶୟ ଏଥର ନାଗପୁର କଂଗ୍ରେସରେ ଅସହଯୋଗ ନୀତିର ନିର୍ଦ୍ଧାରଣ ଆଗତ କଲେ । କଂଗ୍ରେସର ସଭାପତି ବୀର ରାଘବଚାରିଆ କଲିକତା କଂଗ୍ରେସରେ ଅସହଯୋଗ ନୀତି ପକ୍ଷରେ ନ ଥିଲେ । ପରେ କଂଗ୍ରେସ କଥାକୁ ମାନି କାଉନ୍ସିଲକୁ ଗଲେ ନାହିଁ । ଏଥର ନାଗପୁର କଂଗ୍ରେସରେ ସେ ଆପଣା ବକ୍ତୃତାରେ ସାପ ନ ମରିବ, ବାଡ଼ି ନ ଭାଙ୍ଗିବ ନୀତି ଧରି ଅନିଶ୍ଚିତ ଭାବରେ ଅସହଯୋଗ ନୀତି ସମ୍ବନ୍ଧେ କେତେକ କଥା ଲେଖିଥିଲେ ସତ; ମାତ୍ର ଶେଷକୁ ତାଙ୍କର ଆଉ ସେ ଭାବ ରହିଲା ନାହିଁ । ସେ ଭ୍ରମ ବୁଝି ହାରିଥିବାର ମାନିଲେ । କେହି କେହି ବିଗ୍ଭରିଥିଲେ ଯେ

ପାର୍ଲିଆମେଣ୍ଟ ମେମ୍ବର ବେନ୍‌ଷ୍ଟ୍ରର, ୱେଜ୍‌ଉଡ୍‌ ଏବଂ ନାଇଟ ସାହେବମାନେ ନାଗପୁର-ଠାରେ ଅସହଯୋଗ ସୂଅ ଫେରାଇ ଦେବେ । ମାତ୍ର ସେ-ସୂଅ ଫେରିବାର ନୁହେଁ, ବରଂ ବେନଷ୍ଟ୍ରର ସାହେବ କଂଗ୍ରେସର କାର୍ଯ୍ୟପ୍ରଣାଳୀ ଓ ଉଦ୍ୟମ ବିଷୟରେ ଯେ ମତପ୍ରକାଶ କରିଥିଲେ ତଦ୍ଦ୍ୱାରା ସେ ଅସହଯୋଗ ସ୍ରୋତରେ ଫୁଲଚନ୍ଦନ ପକାଇଅଛନ୍ତି । ଯେଉଁମାନେ ଏ ସ୍ରୋତର ଶକ୍ତି ଏବଂ ସମ୍ଭାବନା ଦେଖି ପାରୁନାହାନ୍ତି ସେମାନେ କିଛି ଦେଖୁନାହାନ୍ତି । ଭଗୀରଥ ସ୍ୱର୍ଗରାଜ୍ୟରୁ ମର୍ତ୍ତ୍ୟକୁ ଗଙ୍ଗା ଆଣିଲାପରି ମହାତ୍ମାଗାନ୍ଧୀଙ୍କ ତପସ୍ୟା ଫଳରେ ଏ ମହାସ୍ରୋତ ଭାରତରେ ପ୍ରବର୍ତ୍ତି ଅଛି । ଭଗୀରଥଙ୍କ ପରି ଗାନ୍ଧୀ ଆଗେ ଆଗେ ଚାଲି ଏହାର ବାଟ କଢ଼ାଇଛନ୍ତି । ପଞ୍ଜାବ ଅତ୍ୟାଚାରର କଳଙ୍କ ଏହି ପୁଣ୍ୟ ସ୍ରୋତରେ ଧୋଇ ହୋଇ ପରିଷ୍କୃତ ହେବ, ମୁସଲମାନ ପ୍ରାଣର ଦାବାନଳ ଏଥିରେ ଶୀତଳ ହେବ । ଏହି ଅସହଯୋଗ ଜାହ୍ନବୀ ଭାରତରେ ସ୍ୱର୍ଗରାଜ୍ୟ ସ୍ଥାପନ କରିବ ।

('ସମାଜ', ତା ୮ । ୧ । ୧୯୨୦)

---

# ଅସହଯୋଗଙ୍କୁ ସ୍ୱୀକୃତ

ଅସହଯୋଗ ନୀତରେ ସ୍ୱରାଜ୍ୟ ମିଳିବ ବୋଲି କଂଗ୍ରେସ ଧାର୍ଯ୍ୟ କରିଛନ୍ତି । ଗଲା ସେପ୍‌ଟେମ୍ବର ମାସରେ କଲିକତା କଂଗ୍ରେସରେ ଏହା ନିଶ୍ଚୟ ହୋଇଥିଲା ସତ; ମାତ୍ର ଏଥିରେ ଅନେକଙ୍କ ମନ ମାନି ନ ଥିଲା । ସେମାନେ କହୁଥିଲେ ଯେ ଦେଶ ଏ ବିଷୟରେ ଭଲରୂପେ କିଛି ଭାବିଚିନ୍ତି ମତ ସ୍ଥିର କରିନାହିଁ । ହଠାତ୍ ଅସହଯୋଗ ନୀତ କରିବା ଭଲ ନୁହେଁ । ସେମାନଙ୍କ କଥା ଚହଲା ନାହିଁ । ଅଧିକାଂଶଙ୍କ ମତରେ ପ୍ରସ୍ତାବ ଧାର୍ଯ୍ୟ ହୋଇ ଗଲା । ସେପ୍‌ଟେମ୍ବର ପରେ ଓ ଡିସେମ୍ବର ମାସରେ ପୁଣି କଂଗ୍ରେସର ବୈଠକ ହେଲା । ଭାବିଚିନ୍ତି ସ୍ଥିର କରିବାକୁ ଦେଶ ତିନିମାସ ସମୟ ପାଇଲା । ବାସ୍ତବିକ ଗଲା ଅକ୍‌ଟୋବର, ନଭେମ୍ବର ଓ ଡିସେମ୍ବର ମାସ ମଧ୍ୟରେ ଭାରତବର୍ଷରେ ଯେତେକାମ ହୋଇଛି କଂଗ୍ରେସ ହେବା ଦିନୁଁ ଗଲା ୩୫ ବର୍ଷ ମଧ୍ୟରେ ସେପରି କେବେ ହୋଇ ନ ଥିଲା । ଫଳରେ ଏଥର ନାଗପୁର ବୈଠକରେ ଦେଖାଗଲା ଯେ ଦେଶ ଅସହଯୋଗ ନୀତ ଗ୍ରହେ । ଯେଉଁମାନେ ଏଥିରେ ବିଶ୍ୱାସ କରୁ ନ ଥିଲେ ଏହି ୩ ମାସ ମଧ୍ୟରେ ସେମାନଙ୍କ ମତିଗତି ଫେରିଅଛି । ସେମାନେ ନିଜ ଭୁଲ ସ୍ୱୀକାର କରିଛନ୍ତି । ଏଥର ଅସହଯୋଗ ନୀତ ଏବଂ ତହିଁର କାର୍ଯ୍ୟ ପ୍ରଣାଳୀ ସମ୍ବନ୍ଧରେ କାହାରି ହେଲେ ଆପତ୍ତି ଉଠିଲା ନାହିଁ । ସୁତରାଂ ଏଥର କଂଗ୍ରେସରେ ଭାରତ ଜାତିର ଉଦ୍ଦେଶ୍ୟ ସ୍ଥିର ହେବା ସଙ୍ଗେ ସଙ୍ଗେ ତାହାର ପ୍ରାପ୍ତି ଲାଗି ଉପାୟ ମଧ୍ୟ ନିରୂପିତ ହୋଇଅଛି । ଆଣ୍ଠୁ ମାଡ଼ିବସି ଦେହି ଦେହି ବୋଲି ମାଗିଲେ କେହି ଦେବ ନାହିଁ, ଏକଥା ଭାରତ ଜାତୀୟ ମହାସମିତି ଏତେଦିନ ଭଲକରି ବୁଝିଲେ । ଏଣିକି ଆଣ୍ଠୁରେ ଭାର ନ ଦେଇ ସାଧାରଣ ସ୍ୱାଧୀନ ମନୁଷ୍ୟପରି ନିଜ ପାଦରେ ଭରାଦେଇ ଗୋଡ଼ରେ ଛିଡ଼ାହେବା, ଦୁଇହାତ ନ ଯୋଡ଼ି ସିଧାରଖି ନିଜ ବାହାପିଟି ଚାଲିବାକୁ ଚେଷ୍ଟା କରିବା । ଯାହା ଯୋଗଥିବ । ଭାରତବାସୀର ଏହା ପଣ ।

× × ×

ଭାରତବର୍ଷର ବଡ଼ଲାଟ ପଦ କେତେ ଲୋକଙ୍କୁ ଯଗ୍ରୁ ହେଲା; କେହିଁ ରାଜି ହେଲେ ନାହିଁ । ଏବେ ଖବରକାଗଜମାନଙ୍କରୁ ପ୍ରକାଶ ଯେ ଲର୍ଡ଼ ରିଡ଼ିଂ ଏହା ସ୍ୱୀକାର କରିଛନ୍ତି । ଲର୍ଡ ରିଡିଂ ବିଲାତରେ ଜଣେ ପ୍ରଧାନ ଜଜ୍ ଥିଲେ, ସେ ଖ୍ରୀଷ୍ଟାନ ନୁହନ୍ତି । ସେ ଇହୁଦୀ ଜାତୀୟ ଲୋକ । ଭାରତ ମନ୍ତ୍ରୀ ମଣ୍ଟେଗୁ ସାହେବଙ୍କର ଏହି ଧର୍ମ । ଏଥିଲାଗି ମଣ୍ଟେଗୁ ସାହେବଙ୍କୁ ତ କେତେ ଲୋକ ଅଣ୍ଟାକରି କେତେଥର ଅନେକ କଥା କହିଛନ୍ତି ।

ଲର୍ଡ଼ ରିଡ଼ିଂଙ୍କ ପ୍ରତି ଧର୍ମ ହ୍ରସାବରେ ଖିଲାଫତର କେତେକଙ୍କର ମତ ନ ହେବାର କଥା । ସେ ଯାହାହେଉ କଥା ସ୍ଥିର ହୋଇଗଲାଣି । ଭାରତବାସୀଙ୍କର କିଛି କହିବାର ନାହିଁ । ଏହିପରି କେତେ ଲାଟ ଆସିବାବେଳେ ତାଙ୍କର ପୂର୍ବ ଗୁଣକିର୍ତ୍ତୀ ଆଲୋଚନା କରି ଭାରତବର୍ଷ ଲୋକେ କେତେକଥା କହିଛନ୍ତି, କେତେ ଆଶାଭରସା ଆଦର ଉତ୍ସାହ ଦେଖାଇଛନ୍ତି । କିନ୍ତୁ ଶେଷକୁ ବୁଝିଛନ୍ତି ଯେ—

"ଅନଳ କଣିକା ଯେସନ
ଅନଳୁଁ ନୁହନ୍ତି ସେ ଭିନ୍ନ"

× × ×

ଏନ୍. ଯୋଷୀ ଭାରତ ସେବକ ସମ୍ପ୍ରଦାୟର ଜଣେ ପ୍ରଧାନ ସଭ୍ୟ । ସେ ଏ ଦେଶର ମଜୁରିଆ ଏବଂ ଅନ୍ୟାନ୍ୟ ଦରିଦ୍ର ଶ୍ରମଜୀବୀମାନଙ୍କ ନିମନ୍ତେ ବହୁତ କାମ କରିଅଛନ୍ତି । ଏବେ ମଧ୍ଯ କରୁଛନ୍ତି । ଏଥର ସରକାର ତାଙ୍କୁ ସି. ଆଇ. ଇ. ଉପାଧି ଦେଇଛନ୍ତି । ରାୟବାହାଦୁର, ରାଜାବାହାଦୁର ଯେପରି ପଦବୀ, ସେହିପରି ସି. ଆଇ. ଇ. ଏକ ପଦବୀ ।

ଆମ ଓଡ଼ିଶାରେ ଏକା ମଧୁବାବୁଙ୍କର ସି. ଆଇ. ଇ. ଉପାଧି ଅଛି । ସେ ଅନେକ ଦିନରୁ ପାଇଛନ୍ତି । ସରକାରଙ୍କଠାରୁ ଉପାଧିଟି ପାଇବାକୁ ଅନେକ ଲୋକଙ୍କୁ ଅନେକ ଖର୍ଚ୍ଚ କରିବାକୁ ପଡ଼େ । ନାନା ଯୋଗାଡ଼ଯନ୍ତ୍ର କରିବାକୁ ପଡ଼େ । ମାତ୍ର ଏହାର ସମ୍ମାନ ରାୟବାହାଦୁର ଅପେକ୍ଷା ବେଶୀ ପାଇଲେ ଛାଡ଼େ କିଏ ? ମାତ୍ର ଯୋଷୀ ତାଙ୍କର ସି.ଆଇ.ଇ. ଉପାଧି ଛାଡ଼ି ଦେଇଛନ୍ତି । ସେ ସରକାରଙ୍କୁ ଏହି ମର୍ମରେ ଲେଖିଛନ୍ତି କି ମୁଁ ନିଜେ ଗରିବ ଲୋକ । ଗରିବ ଭାବରେ ରହି ଗରିବ ମୂଲିଆ ମଜୁରିଆଙ୍କ ଭିତରେ ମିଳିମିଶି ସେମାନଙ୍କ ଲାଗି କିଛି କାର୍ଯ୍ୟ କରିବା ମୋର ଉଦ୍ଦେଶ୍ୟ, ନିମା ନାମରେ ସି. ଆଇ. ଇ. ଲଗାଇ ବଡ଼ଲୋକ ହୋଇ ଚଳିବା ମୋ ପକ୍ଷେ କଠିନ । ଯୋଷି ମହାଶୟ ଏହିପରି କରିବା-ଦ୍ୱାରା ନିଜ ନାମରେ ବାସ୍ତବିକ୍ ସି. ଆଇ. ଇ. ନ ଲଗାଇ ଆପଣାକୁ ପୂର୍ବପରି ନିର୍ମଳ ରଖି ସମସ୍ତଙ୍କ ପ୍ରଶଂସାର ପାତ୍ର ହୋଇ ଅଛନ୍ତି । ଅନେକେ ମନେ କରନ୍ତି ଯେ ସରକାର ଯାହା ଯାଚିକରି ଦେଉଛନ୍ତି ତାହା ନ ନେଲେ ସେ ରାଗ କରିବେ । ଆଜିକାଲି ଅନେକେ ଏହିପରି କରୁଛନ୍ତି, ଭାରତ ସେବକ ସମିତିର ପ୍ରତିଷ୍ଠାତା ସ୍ୱର୍ଗୀୟ ଗୋଖଲେ ମଧ୍ୟ ଏହା ଅପେକ୍ଷା ଆହୁରି ଉଚ୍ଚ ସାର ଉପାଧି ଗ୍ରହଣ କରିବାକୁ ରାଜି ହୋଇ ନ ଥିଲେ । ଏମାନେ ସମସ୍ତେ ସରକାର ସଙ୍ଗେ ଅସହଯୋଗ ନୀତି କରି ଅବଶ୍ୟ ଉପାଧି ଫେରସ୍ତ ଦେଉନାହାନ୍ତି ; ମାତ୍ର ଯେ ନୀତିରୁ ହେଉ ବା ଯେ କାରଣରୁ ହେଉ ସେ ଶିକୁଳୀକି ଏଡ଼ାଇବାରେ

ଅସହଯୋଗନୀତିର ଏକ କାର୍ଯ୍ୟ ସିଦ୍ଧ । ଆମ୍ଭେମାନେ ଜୋଷୀଙ୍କୁ ଧନ୍ୟବାଦ ଦେଉଅଛୁଁ ।

× × ×

ସମ୍ରାଟଙ୍କ ବଡ଼ପୁଅ ଭାରତବର୍ଷକୁ ବିଜେ କରିବା କଥା ଥିଲା । ତାଙ୍କ ଶ୍ରୀଅଙ୍ଗ ଅସୁଖ ହେଉ ବା ଅସହଯୋଗନୀତି ପ୍ରଭାବରୁ ହେଉ ତାଙ୍କ ଆସିବା ସ୍ଥଗିତ ରହିଛି । ଏବେ ତାଙ୍କ ପରିବର୍ତ୍ତେ ତାଙ୍କ କକା ଡ଼ିଉକ୍ ଅବ କନଟ ଆସିଛନ୍ତି । ସେ ଏ ମାସ ୧୦ ତାରିଖ ମାନ୍ଦ୍ରାଜରେ ପହଞ୍ଚିଛନ୍ତି । ତାଙ୍କ ଅଭ୍ୟର୍ଥନା ଅଭିନନ୍ଦନ ଆଦି ବିଷୟରେ ମାନ୍ଦ୍ରାଜର ଲୋକସାଧାରଣଙ୍କର ବହୁତ ଆପତ୍ତି ଉଠିଥିଲା । ଲୋକେ ତେତେ ମଧ୍ୟ ଯୋଗ ଦେଇ ନାହାନ୍ତି । ମାନ୍ଦ୍ରାଜ ମ୍ୟୁନିସିପାଲଟିରୁ ସେ ଯେଉଁ ଅଭ୍ୟର୍ଥନା ପାଇଥିଲେ ସେଥିର ଉତ୍ତରରେ ସେ କେତେ କଥା କହିଛନ୍ତି । ଗଲା ଯୁଦ୍ଧରେ ଭାରତବାସୀଙ୍କ କାର୍ଯ୍ୟକୁ ସେ ବହୁ ପ୍ରଶଂସା କରିଛନ୍ତି । ଏଭଳି ପ୍ରଶଂସା ବଡ଼ଠାରୁ ସାନପର୍ଯ୍ୟନ୍ତ ସମସ୍ତଙ୍କଠାରୁ ଶୁଣି ଶୁଣି ଭାରତବାସୀ ବଧିର ହେଲେଣି ; ଅଧିକ ଶୁଣିବାକୁ କାହାକୁ ଆଉ ଭଲ ଲାଗୁନାହିଁ । କନଟର ଡ଼ିଉକ୍ ଆଉଥରେ ଏ ଦେଶକୁ ଆସିଥିଲେ; ସେ ଦିନଠାରୁ ଆଜି ମଧ୍ୟରେ ଏ ଦେଶ ବହୁଦୂର ଉନ୍ନତି କରିଅଛି । ଭାରତରେ ବର୍ତ୍ତମାନ ନୂତନଯୁଗର ଆରମ୍ଭ ହୋଇଅଛି । ସେ କହନ୍ତି କଳହ ବିବାଦ ଅଶାନ୍ତି ଉତ୍ପାତ ଆଦି ଗୋଳମାଳ କରି ଭାରତର ଉନ୍ନତି ପଥରେ ବାଧା ଘଟାଇବା ଉଚିତ ନୁହେଁ । ଭାରତ ଜାତୀୟ ମହାସମିତି ମଧ୍ୟ ଏପରି ପନ୍ଥାର ଘୋର ବିରୋଧୀ । କଂଗ୍ରେସ ନିର୍ଦ୍ଦେଶ ଅନୁସାରେ ଭାରତବାସୀ ଆପଣା ଆପଣା ଭିତରେ ପୂର୍ଣ୍ଣ ସହଯୋଗିତା କରିବେ । କଳହ ବିବାଦ ଆପଣା ଭିତରେ ମେଣ୍ଟାଇବେ, ନିଜ ଭିତରେ ଯେପରି ପୂର୍ଣ୍ଣ ଶାନ୍ତି ରହେ ତହିଁର ବ୍ୟବସ୍ଥା କରିବେ । ଆଉ ସରକାରଙ୍କ ସଙ୍ଗେ ତ ଯେତେ ପ୍ରକାରେ ପାରନ୍ତି ସମ୍ପର୍କ ରଖିବେ ନାହିଁ । ଦି ହାତ ନ ହେଲେ ତାଳି ନ ବାଜେ । ଫଳରେ ସରକାରଙ୍କ ସଙ୍ଗେ କଳହ ବିବାଦର କୌଣସି ଘଟନା ହେବାର ଆଶଙ୍କା ନାହିଁ । ତେବେ ଲଣ୍ଠାବାଡ଼ରେ ଲୁଗା ପକାଇ କେହି ଯେବେ ଅଶାନ୍ତି ଉତ୍ପାତ ସୃଷ୍ଟି କରି ଭାରତବାସୀଙ୍କ ମୁଣ୍ଡରେ ଦୋଷ ଢାଳନ୍ତି ସେଥିଲାଗି ସେମାନେ ନାଗୁର ।

× × ×

ରାଏ ବରେଲି ଜିଲାର କୃଷକ ରଇତମାନଙ୍କ ମଧ୍ୟରେ ବହୁଦିନରୁ ଅଶାନ୍ତି ଚାଲି ଆସୁଅଛି । ତାଲୁକଦାରମାନଙ୍କ ବ୍ୟବହାରରେ ସେମାନେ ବଡ଼ ଉତ୍ୟକ୍ତ ହୋଇଅଛନ୍ତି । ଏମାନଙ୍କ ମଧ୍ୟରେ ସେପରି କେହି ମୁଖିଆ ନାୟକ ନାହାନ୍ତି । ଅତ୍ୟାଚାର ସହି ସହି

ସେମାନେ ଯେ ସବୁବେଳେ ପ୍ରତିକାରର ଉପାୟ ଖୋଜୁଥିବେ ଏଥିରେ ସନ୍ଦେହ ନାହିଁ । ଏଥି ମଧ୍ୟରେ ସେଠାରେ ବଡ଼ ଗୋଳମାଳ ଉପସ୍ଥିତ ହୋଇଅଛି । ବଜାର ଲୁଟି ହୋଇଛି । ସାଧାରଣ ଲୋକଙ୍କ ଘରେ ଲୁଟ୍‌ତରାଜ୍ ହୋଇଛି, ଫସଲ ବରବାଦ କରା-ଯାଇଛି । ତାଲୁକଦାର ଏବଂ ସରକାରୀ ଲୋକେ କହନ୍ତି ଯେ ପ୍ରଜା କୃଷକମାନେ ଏହି ସବୁ ଦୌରାତ୍ମ୍ୟ କରିଛନ୍ତି । ମାତ୍ର ପ୍ରଜାତରଫରୁ ଶୁଣାଯାଏ ଯେ କୃଷକମାନଙ୍କୁ ବିପଦରେ ପକାଇ ହଇରାଣ କରିବା ମତଲବରେ ତାଲୁକଦାରମାନେ ଲୋକ ଲଗାଇ ଏପରି କରିଛନ୍ତି । କେତେବେଳେ କ୍ଷମତାଶାଳୀ ଜମିଦାର ବା ତାଲୁକଦାରମାନେ ପ୍ରଜାମାନଙ୍କୁ ଜବଦ କରିବାଲାଗି ଏପରି କରିଥିବା ନୂଆକଥା ନୁହେଁ । ଯାହାହେଉ ରାଏ ବରେଲିରେ ଏହି ଘଟଣା ମହାଆତଙ୍କ ଜନ୍ମାଇଅଛି । ସରକାର ତରଫରୁ ପୋଲିସ ଏବଂ ସୈନ୍ୟ ସିପାହୀ ଯାଇ ଲୋକଙ୍କ ଉପରେ ଗୁଳି ଚଳାଇଛନ୍ତି । ଅନେକ ଲୋକ ମଲେଣି । କେତେ ଆହତ ହୋଇଛନ୍ତି । ଦଳ ଦଳ ହୋଇ ଲୋକେ ହାଜତ ଯାଉଛନ୍ତି । ଲୋକେ ମଧ୍ୟ ଡରୁ ନାହାନ୍ତି । ପଣ୍ଡିତ ମୋତିଲାଲ ନେହେରୁ ସେ ସ୍ଥାନକୁ ଯାଇ ପ୍ରକୃତ ହାଲ ବୁଝି ପ୍ରତିକାରର ଚେଷ୍ଟା କରୁଅଛନ୍ତି । ଜିଲ୍ଲା ମେଜେଷ୍ଟର ଲୋକଙ୍କୁ ସଭାସମିତି କରାଇ ଦେଉନାହାନ୍ତି । ଅବସ୍ଥା ବଡ଼ ଗୁରୁତର ହୋଇଅଛି । ଶାସନ ସଂସ୍କାରର ଆରମ୍ଭରେ ଏହିପରି ଘଟଣା ବଡ଼ ଶୁଭ ଲକ୍ଷଣ ନୁହେଁ । ଜିଲ୍ଲା ମେଜେଷ୍ଟରମାନଙ୍କ ବ୍ୟବହାର 'ଯଥା ପୂର୍ବଂ ତଥା ପରଂ' । ଆଉ ବିଶେଷ ପରିବର୍ତ୍ତନ କେଉଁଠାରେ ?

('ସମାଜ' ତା ୧୫ । ୧ । ୨୧)



# ସର୍ବତ୍ର ଅସହଯୋଗର ଧାର

ନାଗପୁର କଂଗ୍ରେସ ପରେ ବଙ୍ଗଳାରେ ଅସହଯୋଗ ନୀତିର କାର୍ଯ୍ୟ ଖୁବ୍ ପ୍ରବଳ ବେଗରେ ଚାଲିଅଛି । ବଙ୍ଗଳାର ପ୍ରଧାନ ନେତା ବାରିଷ୍ଟର ଚିତ୍ତରଞ୍ଜନ ଦାସ ଏବେ ଆପଣାର ବାରିଷ୍ଟରି ଛାଡ଼ି ଦେଇଛନ୍ତି । ମାସକୁ ଚାଳିଶ ପଚାଶ ହଜାର ଟଙ୍କା ସରିକି ତାଙ୍କର ଆୟ ହେଉଥିଲା । ଏପରି ସ୍ୱାର୍ଥତ୍ୟାଗ ବଡ଼ କମ ଲୋକ କରନ୍ତି । ବଙ୍ଗଳା ଏବଂ ଅନ୍ୟାନ୍ୟ ପ୍ରଦେଶର କେତେ ଲୋକ ଓକିଲାତି ଛାଡ଼ି ଦେଇଥିଲେ । ଏବେ ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସଙ୍କ ଉଦାହରଣରେ ଆଉ ଅନେକେ ଛାଡ଼ିବେ, ସନ୍ଦେହ ନାହିଁ । ବାରିଷ୍ଟରି ଛାଡ଼ି ଦେଶବନ୍ଧୁ ଚିତ୍ତରଞ୍ଜନ ଅସହଯୋଗ ନୀତିର ପ୍ରଚାରରେ ଲାଗିଯାଇଛନ୍ତି । ସେ ତାଙ୍କ ଜିଲ୍ଲା ଢାକାରେ ଏକ ଜାତୀୟ କଲେଜ ବସାଇବାର ଆୟୋଜନ କରି ସାରିଲେଣି । ଏବେ କଲିକତାର ପିଲାମାନଙ୍କୁ କଲେଜ ଏବଂ ବିଶ୍ୱବିଦ୍ୟାଳୟ ସମ୍ପର୍କ ଛାଡ଼ିବାକୁ ବୁଝାଉଛନ୍ତି ।

× × ×

ଗଲା ଏକସପ୍ତାହ ମଧ୍ୟରେ ଅସହଯୋଗ ନୀତିର କାର୍ଯ୍ୟ କଲିକତାର ଛାତ୍ରସମାଜରେ ସଞ୍ଚରି ଅଛି । ସ୍ୱଦେଶୀ ଆନ୍ଦୋଳନର ଖୁବ୍ ପ୍ରବଳ ସମୟରେ ସୁଦ୍ଧା ସେପରି ହୋଇ ନ ଥିଲା । ପ୍ରତିଦିନ ଛାତ୍ରମାନଙ୍କର ବିରାଟ ସଭାସମିତି ହେଉଅଛି । ଗୋଟିଏ ଗୋଟିଏ ସଭାରେ ଦଶ ପନ୍ଦର କୋଡ଼ିଏ ହଜାର ତକ ଛାତ୍ର ଜମା ହେଉଛନ୍ତି । ଯେଉଁ କଲେଜରେ ଦୁଇହଜାର ଅଢ଼େଇ ହଜାର ଛାତ୍ର ପଢ଼ୁଥିଲେ ସେଥିରେ ଚାରି ପାଞ୍ଚଜଣ ମାତ୍ର ରହିଛନ୍ତି । ବଙ୍ଗବାସୀ, ରିପନ, ସିଟି, ସେଣ୍ଟ ଜେଭିଅର ପ୍ରଭୃତି କେତୋଟି କଲେଜ ଏପରି ଅବସ୍ଥାରେ ଖାଲି ପଡ଼ିଲଣି । କୌଣସି କୌଣସି କଲେଜର ଅଧ୍ୟକ୍ଷ ଆପଣା କଲେଜକୁ ଜାତୀୟ କଲେଜ କରିବାକୁ ପ୍ରସ୍ତୁତ ହେଲେଣି । ଏବର୍ଷ ଯେଉଁ ଛାତ୍ରମାନେ ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ସେ ଉଦ୍ୟମ ଛାଡ଼ିଦେଲେଣି । ବିଶ୍ୱ-ବିଦ୍ୟାଳୟର ବି: ଏଲ୍: ଏବଂ ଏମ: ଏ: କ୍ଲାସରୁ କେତେଛାତ୍ର ବାହାରି ଆସିଲେଣି । ଜାତୀୟ ଶିକ୍ଷା ସମିତି ପକ୍ଷରୁ ଏବର୍ଷର ମାଟ୍ରିକ୍ୟୁଲେସନ, ଇଣ୍ଟର ମିଡ଼ିଏଟ, ବି:ଏ: ପରୀକ୍ଷାର୍ଥୀ-ମାନଙ୍କର ସ୍ୱତନ୍ତ୍ର ପରୀକ୍ଷା ହେବାର ଆୟୋଜନ ହୋଇଅଛି । ଅଳ୍ପଦିନ ମଧ୍ୟରେ ବଙ୍ଗ ଦେଶରେ ଜାତୀୟ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବ ସନ୍ଦେହ ନାହିଁ ।

× × ×

ବିହାରରେ ଅନେକ ଛାତ୍ର ଏଥିପୂର୍ବେ ସ୍କୁଲ କଲେଜ ଛାଡ଼ିଥିଲେ । ଏ ମାସ ୮ ତାରିଖ ପାଟଣାଠାରେ ଜାତୀୟ କଲେଜର କାର୍ଯ୍ୟ ଆରମ୍ଭ ହୋଇଅଛି । ବିହାରର ଉତ୍ସାହୀ ଓକିଲ ବାବୁ ରାଜେନ୍ଦ୍ର ପ୍ରସାଦ ଓକିଲାତି ଛାଡ଼ି ଏହି କଲେଜର ଅଧ୍ୟକ୍ଷ ହୋଇଛନ୍ତି । ବିହାର ଛଡ଼ା ବନାରସ କଲିକତା ପ୍ରଭୃତିରୁ ଛାତ୍ରମାନେ ଯାଇ ଏହି କଲେଜରେ ଯୋଗ ଦେଉଛନ୍ତି । ଏବର୍ଷର ମାଟ୍ରିକ୍ୟୁଲେସନ ପରୀକ୍ଷାର୍ଥୀମାନଙ୍କଠାରୁ କଲେଜ କର୍ତ୍ତୃପକ୍ଷମାନେ ପରୀକ୍ଷା ନେବାର ବନ୍ଦୋବସ୍ତ କରିଅଛନ୍ତି । ବିହାର ଛାତ୍ର ସମ୍ମିଳନୀରେ ଏବେ ଗୋଟିଏ ବିଶେଷ ଅଧିବେଶନ ହୋଇଥିଲା । ସେଥିରେ ଅସହଯୋଗ ନୀତି ଗୃହୀତ ହୋଇଅଛି । ବୋଧହୁଏ ସେଥିର ଫଳରେ ଅଳ୍ପଦିନ ମଧ୍ୟରେ ଆଉ ଅନେକ ଛାତ୍ର ସ୍କୁଲ କଲେଜ ଛାଡ଼ିବେ ।

× × ×

ବିହାର ଅନ୍ତର୍ଗତ ମୋଜାଫରପୁରରେ ଗୋରା ସାହେବମାନଙ୍କର ଗୋଟିଏ ସମିତି ଅଛି । ଏଥିମଧ୍ୟରେ ବିହାର ଓଡ଼ିଶାର ଲାଟ ଲର୍ଡ଼ ସିଂହଙ୍କ ଠାରେ ଏହି ସମିତି ପକ୍ଷରୁ ଏକ ଆବେଦନ ଦେବା ନିମନ୍ତେ କେତେଜଣ ମେମ୍ବର ଉପସ୍ଥିତ ହୋଇଥିଲେ । ଅସହଯୋଗନୀତିଦ୍ୱାରା ଦେଶରେ ଯେ ବିପ୍ଲବ ଘଟୁଛି ତାହା ନିବାରଣ କରିବାକୁ ଏମାନେ ପ୍ରାର୍ଥନା କରିଥିଲେ । ବିପ୍ଲବ ଘଟିଲେ ତହିଁର ସୁସଙ୍ଗତ ଓ ଉଚିତ ପ୍ରତିକାର କରାଯିବ ବୋଲି ଲର୍ଡ଼ ସିଂହ ଜବାବ ଦେଲେ । ଅସହଯୋଗ ନୀତିଦ୍ୱାରା ଏପର୍ଯ୍ୟନ୍ତ କୌଣସିଠାରେ କିଛି ବିପ୍ଲବ ଘଟିବାର କେହି ଜାଣିନାହାନ୍ତି କି ଶୁଣିନାହାନ୍ତି । ମାତ୍ର ଏ ଦେଶବାସୀ କେତେକ ଗୋରା ଅସହଯୋଗ ନୀତି ନାମରେ ସମୟେ ସମୟେ ଭୂତ ଦେଖୁଛନ୍ତି । ଜଣେ ରେଲ କଲ ଡ୍ରାଇଭର ଗାନ୍ଧିଙ୍କି ସ୍ୱପ୍ନରେ ଦେଖି ରାତିଯାକ ଆପେ ଯେପରି ହିନସ୍ତା ହୋଇ ଅନ୍ୟମାନଙ୍କୁ ହିନସ୍ତା କରିଥିଲେ କର୍ମବୀର କାଗଜରୁ ଆମ୍ଭେ ଗଲାଥର ତହିଁର ବିବରଣ ଉଦ୍ଧାର ଦେଇଥିଲୁ । ବୃଥାରେ ଏପରି ଭେଲକି ଲାଗିବା ତ ଶୁଭଲକ୍ଷଣ ନୁହେଁ । ଅନ୍ୟକୌଣସି ପ୍ରଦେଶର ଇଂରେଜ ସଭା ପ୍ରାଦେଶିକ ଲାଟଙ୍କଠାରେ ଅସହଯୋଗ ବିଷୟରେ ଆବେଦନ ନିବେଦନ କରିନାହାନ୍ତି। ବିହାରବାସୀ ଇଂରେଜମାନେ କଅଣ ଲର୍ଡ଼ ସିଂହଙ୍କୁ ଦେଶୀ ଲୋକ ଦେଖି ଏପରି ଆଗୁଆ ହେଲେ ନା କଅଣ ?

× × ×

ମଧୁପୁରଠାରେ ସାହେବମାନଙ୍କ ଚାକରମାନେ ଦରମା ବଢ଼ିବା ସକାଶେ ଧର୍ମଘଟ କରିଛନ୍ତି । ମେହେନ୍ତର, ଚାକର, ଅର୍ଦ୍ଦଳି, ବବୁର୍ଚ୍ଚି, ଖାନସମା ସମସ୍ତେ ଛାଡ଼ି ଯାଇଛନ୍ତି ।

ଯାହା ପାଉଛନ୍ତି ତହିଁର ଦେଢ଼ଗୁଣ ନ ପାଇଲେ କାମ କରିବେ ନାହିଁ ବୋଲି ଜବାବ ଦେଇଛନ୍ତି । ଏହି ଚାକରମାନଙ୍କ ସଙ୍ଗେ ସହାନୁଭୂତି ଦେଖାଇ ହାଟବଜାର ଲୋକେ ମଧ୍ୟ ସାହେବଙ୍କୁ ଜିନିଷ ବିକୁ ନାହାନ୍ତି । ପାଇଖାନା ସଫା କରିବାଠାରୁ ଖାନା ତିଆରି ହେବାଯାଏ ସବୁକାମ ସାହେବ ଓ ମେମ୍‌ମାନେ ହାତେ ହାତେ କରୁଛନ୍ତି । ଆମ୍ଭେମାନେ ଆଶାକରୁ ଚାକରମାନଙ୍କ ଦାବୀର ସୁବିଚାରକରି ସାହେବମାନେ ଶୀଘ୍ର ଏ ଅବସ୍ଥାର ପ୍ରତିକାର କରିବେ । ହୁଏତ କେହି କେହି ଏଥିଲାଗି ଅସହଯୋଗ ନୀତି ମୁଣ୍ଡରେ ଦୋଷ ବୋଳିବେ । ମାତ୍ର ପେଟ ନ ପୂରିବାରୁ ନୌକର ମଜୁରିଆମାନେ ଅସହଯୋଗ ନୀତି ଆସିବାରୁ ଏପରି ଧର୍ମଘଟ କରୁଥିଲେ, ଏବେ କରୁଛନ୍ତି । ଅସହଯୋଗକୁ ଦୋଷ ନ ଦେଇ ମାଲିକମାନେ ନିଜକୁ ଦୋଷିବା ଉଚିତ । ଦେଖାଯାଉଛି କେତେକ ଲୋକ ଏବଂ କୌଣସି କୌଣସି ଖବରକାଗଜ କଥା କଥାକେ ଅସହଯୋଗ ନୀତିକି ଦାୟୀ କରୁଛନ୍ତି । କୌଣସିଠାରେ ଚୋରି ହେଲାତ ସେଥିଲାଗି ଅସହଯୋଗ ନୀତି ଦାୟୀ । କୌଣସିଠାରେ ପୋଲିସ ଦଙ୍ଗା କଲାତ ଅସହଯୋଗ ନୀତିର ଦୋଷ । ନିନ୍ଦୁକ ଅସହଯୋଗ ଆନ୍ଦୋଳନକୁ ବ୍ୟର୍ଥ କରିବାର ଏହା କି ପନ୍ଥା ?

(‘ସମାଜ’ ତା ୫ । ୨ । ୨୧)

———

# ଅସହଯୋଗରେ ଯୁବଛାତ୍ରଙ୍କ କର୍ତ୍ତବ୍ୟ

ଅସହଯୋଗ ବର୍ତ୍ତମାନ ଭାରତର ଛାତ୍ର ସମାଜ ମଧ୍ୟରେ ଦାବାନଳ ପରି ବ୍ୟାପି ଯାଉଛି । ବମ୍ବେଇ, ପଞ୍ଜାବ, ବଙ୍ଗଳା, ବିହାର, ଓଡ଼ିଶା ପ୍ରଦେଶମାନଙ୍କରେ ଏ ଆନ୍ଦୋଳନ ବିଶେଷ କାର୍ଯ୍ୟକାରୀ ହୋଇଅଛି । ବମ୍ବେଇରେ ପ୍ରାୟ ୮୦୦ ସରିକି ପିଲା କଲେଜ ଛାଡ଼ି ମଫସଲରେ ପ୍ରଚାର କରିବାକୁ ପ୍ରସ୍ତୁତ ହୋଇଛନ୍ତି । ଡାକ୍ତରୀ କଲେଜରୁ ୫୦ ଜଣ ପର୍ଯ୍ୟନ୍ତ ଛାଡ଼ିଛନ୍ତି । ଜାତୀୟ କଲେଜ ସ୍ଥାପନର ଆୟୋଜନ ହୋଇଅଛି । କଲିକତାରେ ତ ନିଆଁ ଜଳୁଛି । ଛାତ୍ରମାନେ ବିଶ୍ୱବିଦ୍ୟାଳୟ ପରୀକ୍ଷା ଛାଡ଼ି ଚାଲି ଆସୁଛନ୍ତି । ସହର ମଫସଲ ସ୍କୁଲ କଲେଜ ମାନଙ୍କରୁ ଛାତ୍ରମାନେ ଶତ ଶତ ସହସ୍ର ସହସ୍ର ସଂଖ୍ୟାରେ ଛାଡ଼ି ଆସିଛନ୍ତି । ମଫସଲ ପ୍ରଚାର କାର୍ଯ୍ୟଲାଗି ଅନେକଙ୍କୁ ଶିକ୍ଷା ଦିଆଯାଉଛି । ଅନେକ ଜାତୀୟ ସ୍କୁଲ କଲେଜରେ ନାମ ଲେଖାଇଅଛନ୍ତି । କେତେ ସ୍କୁଲ କଲେଜ ଫାଙ୍କା ହୋଇ-ଗଲାଣି । ପଞ୍ଜାବର କେତେକ କଲେଜରୁ ପିଲାମାନେ ଏକାବେଳେକେ ଛାଡ଼ି ଚାଲିଆସିଛନ୍ତି । ଆଉ କେତେକ କଲେଜରୁ ଛାଡ଼ି ଛାଡ଼ି ହୋଇ ବସିଛନ୍ତି । ପାଟନାର ସରକାରୀ ଏବଂ ସରକାର ସାହାଯ୍ୟପ୍ରାପ୍ତ କଲେଜମାନଙ୍କ ଅବସ୍ଥା ଏହିପରି । କଲେଜ ବୋର୍ଡିଂରୁ ପିଲାମାନେ ଛାଡ଼ି ଆସିଛନ୍ତି । ନୂତନ ହୋଇଥିବା ଜାତୀୟ କଲେଜ ଓ ସ୍କୁଲରେ ଛାତ୍ର ସଂଖ୍ୟା ଦିନକୁ ଦିନ ବଢ଼ୁଛି ଏବଂ ପ୍ରଚାର କାର୍ଯ୍ୟରେ ଦିବାଲାଗି ଅନେକ ନାମ ଲେଖାଉ-ଛନ୍ତି । ପାଟନାଛଡ଼ା ମଫସଲର ସ୍କୁଲ ମାନଙ୍କରେ ଦୁଇଣା ଅଧିକେ ଏହିପରି ଦଶା ଘଟିଅଛି । ଓଡ଼ିଶାର ଛାତ୍ରସମାଜ ଅବଶ୍ୟ ନିଶ୍ଚିନ୍ତ ନାହିଁ । କେତେକ କଲେଜ ଛାଡ଼ିଛନ୍ତି । ସ୍କୁଲ ମାନଙ୍କରୁ ଅତି ଅଳ୍ପ ବାହାରିଛନ୍ତି । ସତ୍ୟବାଦୀ ସ୍କୁଲର ପରିଚାଳକମାନେ ସମସ୍ତର ଗତି ବୁଝି ସ୍କୁଲକୁ ଜାତୀୟ ବିଦ୍ୟାଳୟ କରି ଦେଇଛନ୍ତି । ସମ୍ବଲପୁର ଓ ଚକ୍ରଧରପୁରରେ ଜାତୀୟ ବିଦ୍ୟାଳୟ ହୋଇଅଛି । କଟକରେ ଜାତୀୟ ସ୍କୁଲ କଲେଜର କାର୍ଯ୍ୟ ମଧ୍ୟ ଆରମ୍ଭ ହୋଇଗଲାଣି । ପ୍ରୟୋଜନ ହେଲେ ଅନ୍ୟାନ୍ୟ ସ୍ଥାନରେ ଜାତୀୟ ବିଦ୍ୟାଳୟ ହୋଇପାରେ । ଓଡ଼ିଶାର ଅନ୍ୟାନ୍ୟ ସହରମାନଙ୍କରେ ଛାତ୍ରଦଳ ମଧ୍ୟରେ ଉଦବେଗ ଓ ଚଞ୍ଚଳତା ଉପସ୍ଥିତ ହୋଇଅଛି । ସ୍କୁଲର ପରିଚାଳକ ଓ ଶିକ୍ଷକମାନେ କେତେସ୍ଥଳେ ସେମାନଙ୍କୁ ଚପାଇ ଦେଇଛନ୍ତି । ପୁଣି କେତେକ ଛାତ୍ର ମଧ୍ୟ ନ ବୁଝି ନ ବିଚାରି କେବଳ ହୋମତା ହୋଇ ବାହାରି ପଡ଼ୁଛନ୍ତି ଦିନେ ଦୁଇଦିନ ମଧ୍ୟରେ ମନ ବଦଳାଇ ପୁଣି ଫେରି ଯାଉଛନ୍ତି ।

କେତେକଙ୍କ ମୁରବି ମଧ୍ୟ ବଡ଼ ଜୋର ଜୁଲୁମ କରୁଛନ୍ତି । ଆମ୍ଭେମାନେ କହୁଁ ହଠାତ୍ ନ ବୁଝି ନ ଶୁଝି କିଛି କରିବା ଉଚିତ ନୁହେଁ । ଷୋଳବର୍ଷରୁ ଯେଉଁମାନଙ୍କ ବୟସ କମ୍ ମୁରବିମାନଙ୍କ ଅନୁମତି ବିନା ସେମାନଙ୍କର କିଛି କରିବା ଅନ୍ୟାୟ । ଷୋଳବର୍ଷ ବା ତହିଁରୁ ଅଧିକ ବୟସର ପିଲାମାନଙ୍କର ମନ ମାନିଲେ ଓ ଅସହଯୋଗନୀତିରେ ବିଶ୍ୱାସ ହେଲେ ସେମାନେ ନିଜ ଇଚ୍ଛାରେ ସ୍କୁଲ୍ କଲେଜ ଛାଡ଼ି ଆସି ପାରନ୍ତି । ମାତ୍ର ମୁରବିମାନଙ୍କ ଅନୁମତି ଘେନି ଆସିଲେ ଆହୁରି ଭଲ । ଦୁଃଖର କଥା ଅତି ଅଳ୍ପ ମୁରବି ଦେଶକାଳପାତ୍ର ବିବେଚନା କରି ଅନୁମତି ଦେବାକୁ ପ୍ରସ୍ତୁତ । ପିଲାମାନେ ବୁଝି ସୁଝି କାର୍ଯ୍ୟ କଲେ ସୁଦ୍ଧା ସେମାନଙ୍କୁ ଅବାଧ୍ୟ ବୋଲି କହି କେହି କେହି ସେମାନଙ୍କୁ ଉତ୍କଟ ପ୍ରକାର ତାଡ଼ନା କରୁଛନ୍ତି । ମୁରବିମାନଙ୍କର ମନେ ରଖିବା ଉଚିତ ଯେ "ପ୍ରାପ୍ତେତୁ ଷୋଡଶେ ବର୍ଷେ ପୁତ୍ରଂ ମିତ୍ରବଦାଚରେତ୍ ।" ଷୋଳବର୍ଷ ପରେ ପିଲାମାନଙ୍କ ଉପରେ ଜୋର ଜବରଦସ୍ତି କରିବା ଠିକ୍ ନୁହେଁ ।" ପିଲାମାନଙ୍କର ବୁଝିବା ଉଚିତ ଯେ ସ୍କୁଲ କଲେଜରେ ଭଲ ଶିକ୍ଷା ଦିଆଯାଉନାହିଁ ବୋଲି ଜାତୀୟ ସ୍କୁଲରେ ଭଲ ଶିକ୍ଷା ପାଇବା ଲାଗି ସେମାନେ ଯେ ସ୍କୁଲ୍ କଲେଜ ଛାଡ଼ୁଛନ୍ତି ତାହା ନୁହେଁ । ସରକାରଙ୍କର ଭାରତବାସୀଙ୍କ ପ୍ରତି ଦୁର୍ବ୍ୟବହାରର ଅପମାନରେ ସରକାରୀ ସମ୍ପର୍କ ତୁଟାଇବାଲାଗି ସ୍କୁଲ୍ କଲେଜ ଛାଡ଼ିବା ଦରକାର ହୋଇଅଛି । ଏହିପରି କରିବା ଦ୍ୱାରା ସ୍ୱରାଜ୍ୟ ପ୍ରାପ୍ତିରେ ସେମାନେ ସହାୟତା କରିବେ । ମାତ୍ର ସ୍କୁଲ କଲେଜଛାଡ଼ି ଜାତୀୟ ସ୍କୁଲ୍ କଲେଜରେ ପଢିବା ଅପେକ୍ଷା ମଫସଲର ପ୍ରଚାର କାର୍ଯ୍ୟରେ ଯୋଗଦେଲେ ବହୁତ କାର୍ଯ୍ୟ କରିପାରିବେ । ଦେଶର ବର୍ତ୍ତମାନ ଅବସ୍ଥାରେ ଏହାହିଁ ଅତି ଆବଶ୍ୟକ କାର୍ଯ୍ୟ । ଆଉ କିଛି ନ କରି ସେମାନେ ଯେବେ ନିଜ ଗାଁରେ ବସି ଆପେ ଅରଟରେ ସୂତା କାଟନ୍ତି ଏବଂ ଗ୍ରାମବାସୀମାନଙ୍କୁ ଏହି ସୂତାକଟା ଶିଖାନ୍ତି ତେବେ ମଧ୍ୟ ଅସହଯୋଗ ନୀତିର ସଫଳତା ଲାଗି ଯଥେଷ୍ଟ କାର୍ଯ୍ୟ କଲେ ବୋଲି କୁହାଯିବ । ଯେଉଁମାନେ ଏଭଳି କରି ନ ପାରିବେ ଏବଂ ସ୍କୁଲ୍ କଲେଜ ଛାଡ଼ି ସୁଦ୍ଧା ପୁଣି ପଢିବାକୁ ଲୋଡ଼ିବେ ସେହିମାନଙ୍କ ନିମନ୍ତେ କେବଳ ଜାତୀୟ ସ୍କୁଲ କଲେଜ ଦରକାର । ଆମ୍ଭେମାନେ କହୁଁ ବର୍ଷେ ଦୁଇବର୍ଷ ପଢ଼ା ବନ୍ଦ କରିଦେବାରେ ଦେଶର ବା କୌଣସି ଛାତ୍ର ବିଶେଷର ସେପରି ବିଶେଷ କ୍ଷତି ହେବନାହିଁ । ଦେଶର କେତେ ପିଲା ପଢି ପଢି ପାଠଗଇଁଆ ହୋଇ ଗଲେଣି । ବର୍ଷେ ଦୁଇବର୍ଷ ବିଶ୍ରାମ ନେଇ ସେମାନେ ଦେଶକୁ ଚାହାନ୍ତୁ । ନିଜ ଆଖିରେ ଦେଶର ଅବସ୍ଥା ଦେଖନ୍ତୁ । ନିଜ କାନରେ ଦେଶବାସୀଙ୍କ ଆର୍ତ୍ତନାଦ ଶୁଣନ୍ତୁ । ନିଜେ ଯାହା ବୁଝୁଛନ୍ତି ଦେଶବାସୀଙ୍କି ତାହା ବୁଝାନ୍ତୁ । ମୋଟକଥା ଦେଶ ସଙ୍ଗେ ପ୍ରତ୍ୟକ୍ଷ ଭାବରେ ପରିଚୟ କରନ୍ତୁ, ଏହା ଖୁବ୍ ଉତ୍କୃଷ୍ଟ

ଶିକ୍ଷା । ବର୍ତ୍ତମାନ ପିଲମାନଙ୍କୁ ଏହି ଶିକ୍ଷା ଦେବାଲାଗି ଆମ୍ଭେମାନେ ଉତ୍କଳ ଦେଶର ପ୍ରତ୍ୟେକ ପିତାମାତା ଓ ମୁରବିଙ୍କି ଅନୁରୋଧ କରୁଁ । ଅବଶ୍ୟ ୧୬ ବର୍ଷରୁ କମ ବୟସର ପିଲାମାନେ ଜାତୀୟ ବିଦ୍ୟାଳୟରେ ପଢ଼ିବେ । କିନ୍ତୁ ଅଧିକ ବୟସର ଛାତ୍ରମାନେ ପଢ଼ିବା ତେତେ ଜରୁରୀ ନୁହେଁ । ପୃଥିବୀରେ ସ୍ୱାଧୀନତା ନିମନ୍ତେ ଯେତେବେଳେ ଯେଉଁଠାରେ ସଂଗ୍ରାମ ହୋଇଅଛି ଦେଶର ଛାତ୍ରମାନେ ଶିକ୍ଷିତ ଯୁବକମାନେ ସର୍ବପ୍ର ଅଗ୍ରସର ହୋଇ ଅଛନ୍ତି । ଇଟାଲୀୟ ଯୁବକମାନଙ୍କଦ୍ୱାରା ମାଜିନି ଇଟାଲୀର ସ୍ୱାଧୀନତା ଆଣିଥିଲେ । ଜାପାନର ଉନ୍ନତମୂଳରେ ସେ ଦେଶର ଯୁବକମାନଙ୍କ ଶକ୍ତି ଓ ସ୍ୱାର୍ଥତ୍ୟାଗ ବିଦ୍ୟମାନ । ସ୍ୱରାଜ୍ୟପ୍ରାପ୍ତି ନିମନ୍ତେ ଭାରତରେ ଆଜି ଯେଉଁ ନୈତିକ ସଂଗ୍ରାମ ଆରମ୍ଭ ହୋଇଅଛି ସେଥିରେ ଯୋଗଦେବା କାରଣ ଦେଶର ଯୁବକମାନଙ୍କୁ ଯେ ଆହ୍ୱାନ ଆସିଅଛି, ଉତ୍କଳର ଛାତ୍ରଗଣ ତାହା ରକ୍ଷା କରିବେ ନା ଉପେକ୍ଷା କରିବେ ।

('ସମାଜ' ତା ୫ । ୨ । ୨୧)

---

# ଓଡ଼ିଶାବାସୀଙ୍କୁ ନିବେଦନ

ଦେଶବାସୀ ସମସ୍ତେ ଜାଣନ୍ତି ଯେ ନାଗପୁର କଂଗ୍ରେସ ପରେ ଓଡ଼ିଶା ଭାରତୀୟ ଆନ୍ଦୋଳନରେ ପ୍ରଥମ ଯୋଗଦାନ କରିଛି । ଉତ୍କଳ ପ୍ରଦେଶର ବିଭିନ୍ନ ଜିଲାମାନଙ୍କରେ କଂଗ୍ରେସ ଶାଖାସମିତି ଗଠିତ ହୋଇଅଛି । ଅଳ୍ପଦିନ ମଧ୍ୟରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଗଠିତ ହେବ ଓ କଟକରେ ତାହାର ସ୍ଥାୟୀସଭା ରହିବ । ସ୍ୱରାଜ୍ୟ ବର୍ତ୍ତମାନ ଭାରତ ଜାତିର ପ୍ରଧାନ ଲକ୍ଷ୍ୟ । କଂଗ୍ରେସ ମଧ୍ୟ ଏହା ନିରୂପଣ କରିଅଛନ୍ତି ଏ ପ୍ରତ୍ୟେକ ପ୍ରଦେଶ ତାହା ଅନୁସରଣ କରିବା ଉଚିତ । ଅସହଯୋଗ ସମ୍ବନ୍ଧେ ଲୋକଙ୍କ ମଧ୍ୟରେ ମତଭେଦ ଘଟିପାରେ । ମାତ୍ର ସ୍ୱଦେଶୀ ପ୍ରଚାର, ଜାତୀୟ ବିଦ୍ୟାଳୟ ଓ ଅଦାଲତ ସ୍ଥାପନ ପ୍ରଭୃତି ଯେ ପ୍ରସ୍ତାବମାନ ଅସହଯୋଗ ନୀତି ମଧ୍ୟରେ ରହିଅଛି, ତାହା ଯେ ଜାତିଧର୍ମମତ ନିର୍ବିଶେଷରେ ଆଦରଣୀୟ ହେବ ଏଥିରେ ସନ୍ଦେହ ନାହିଁ । ଏ ସବୁଥିରେ ସଫଳତା ନିମନ୍ତେ ଦେଶରେ ପ୍ରଚାର କାର୍ଯ୍ୟ ଏକାନ୍ତ ଆବଶ୍ୟକ ଏବଂ ସେଥିନିମନ୍ତେ ଉତ୍କଳ ସ୍ୱରାଜ୍ୟ ସେବକସଙ୍ଘ ଗଠିତ ହୋଇଅଛି । ଉତ୍କଳ ପ୍ରାଦେଶିକ କଂଗ୍ରେସସଭା ସ୍ଥାପିତ ହେଲେ ତାହା ଅଧୀନରେ ସଙ୍ଘ କାର୍ଯ୍ୟ କରିବ ।

ଜାତୀୟ ବିଦ୍ୟାଳୟ କଟକ, ସମ୍ବଲପୁର, ସତ୍ୟବାଦୀ ଏବଂ ଚକ୍ରଧରପୁରଠାରେ ସ୍ଥାପିତ ହୋଇଅଛି ଏବଂ ଦରକାର ହେଲେ ଅନ୍ୟାନ୍ୟ କେନ୍ଦ୍ରରେ ଆଉ ଅଧିକ ବିଦ୍ୟାଳୟ ବସିପାରେ । ଅରଟ, ସୂତାକଟା ଏବଂ ପ୍ରଚାର କାର୍ଯ୍ୟ ଶିକ୍ଷା ଦେବା ନିମନ୍ତେ କଟକରେ ସ୍ୱରାଜ୍ୟ ଆଶ୍ରମ ସ୍ଥାପିତ ହୋଇଅଛି । ସମଗ୍ର ଉତ୍କଳ ପ୍ରଦେଶରେ ଏହି ଆନ୍ଦୋଳନ ଚଳାଇବା ଲାଗି ମାସକୁ ୫୪୦୦୦୦ ବା ୫୫୦୦୦୦ ଲାଗିବ । ଏଥିଲାଗି ଉତ୍କଳ ସ୍ୱରାଜ୍ୟ ପାଣ୍ଠି ଗଢ଼ା ଯାଇଅଛି । ଦେଶର ଜନସାଧାରଣ ଏଥିନିମନ୍ତେ ନିଜ ନିଜ ଶକ୍ତି ଅନୁସାରେ ସାହାଯ୍ୟ କରିବେ ବୋଲି ଆଶା କରାଯାଏ । ଏ ଜାତିର ପ୍ରାର୍ଥନା, ଜାତିର କଲ୍ୟାଣ କାମନା ଯେଉଁମାନଙ୍କ ପ୍ରାଣରେ ଜାଗ୍ରତ ଅଛି, ସେମାନେ ଆଦର ଏବଂ ଆଗ୍ରହ ସହକାରେ ଏ ପ୍ରାର୍ଥନା ଅବଶ୍ୟ ପୂରଣ କରିବେ । ଯାହାଠାରୁ ଯାହା ସାହାଯ୍ୟ ମିଳିବ ସେଥିଲାଗି ତାଙ୍କୁ ରସିଦ ମିଳିବ । ରସିଦରେ ନିମ୍ନସ୍ୱାକ୍ଷରକାରୀଙ୍କର ଦସ୍ତଖତ ଥିବା ମନିଅର୍ଡର ମଧ୍ୟ ନିମ୍ନସ୍ୱାକ୍ଷରକାରୀ ଗ୍ରହଣ କରିବେ ।

('ସମାଜ' ତା ୧୨ । ୨ । ୨୧)

---

# ଅସହଯୋଗ ଓ କଂଗ୍ରେସ

କଲିକତାରେ ଗଲା ଜାନୁଆରି ୩୧ ତାରିଖଠାରୁ ଫେବୃଆରି ୪ ତାରିଖ ପର୍ଯ୍ୟନ୍ତ ଲଗେ ଲଗେ ନିଖିଳ ଭାରତ ଜାତୀୟ କଂଗ୍ରେସ କମିଟିର କାର୍ଯ୍ୟନିର୍ବାହକ ସଭା ବସିଥିଲା । ମହାତ୍ମାଗାନ୍ଧୀ, ପଣ୍ଡିତ ମୋତିଲାଲ୍ ନେହେରୁ, ଚିତ୍ତରଞ୍ଜନ ଦାସ, ମହମ୍ମଦ ଆଲ୍ଲି ପ୍ରଭୃତି ମୁଖିଆ ସଭ୍ୟ ଉପସ୍ଥିତ ଥିଲେ । କଂଗ୍ରେସ ପାଣ୍ଠି ସଂଗ୍ରହ, ତହିଁର ପରିଚାଳନା, ଅସହଯୋଗ ନୀତିର କାର୍ଯ୍ୟପ୍ରଣାଳୀ, ଜାତୀୟ ଶିକ୍ଷାପଦ୍ଧତି ପ୍ରଭୃତି ଅନେକ ଗୁରୁତର ବିଷୟ ଆଲୋଚନା ହୋଇ କେତେକ ପ୍ରସ୍ତାବ ଧାର୍ଯ୍ୟ ହୋଇଅଛି । ପ୍ରତ୍ୟେକ ପ୍ରଦେଶରେ କଂଗ୍ରେସ କାର୍ଯ୍ୟ ଚଳାଇବା ନିମନ୍ତେ ସେ ପ୍ରଦେଶର କଂଗ୍ରେସ କମିଟି ଦାୟୀ । କଂଗ୍ରେସ ସମ୍ପର୍କରେ ଯେ ଟଙ୍କା କଉଡ଼ି ଆଦାୟ ହେବ ତାହା ସମୁଦାୟ ପ୍ରାଦେଶିକ କଂଗ୍ରେସ କମିଟିର ସମ୍ପତ୍ତି । ତହିଁରୁ ୪ ଭାଗରୁ ୩ଭାଗ ପ୍ରାଦେଶିକ କଂଗ୍ରେସ କମିଟି ନିଜ ହାତରେ ରଖି ବାକି ଏକଭାଗ ନିଖିଳ ଭାରତ କଂଗ୍ରେସ କମିଟିଙ୍କ କୋଷାଧ୍ୟକ୍ଷଙ୍କ ପାଖକୁ ପଠାଇବେ ।

ଅସହଯୋଗ ଆନ୍ଦୋଳନର ତତ୍ତ୍ୱାବଧାନ ଏବଂ ପରିଚାଳନା ନିମନ୍ତେ ଉଲ୍ଲିଖିତ କାର୍ଯ୍ୟକାରୀ ସଭାର କେତେକ ଲୋକ ନିଯୁକ୍ତ ହୋଇଅଛନ୍ତି । ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ ବଙ୍ଗ, ଉତ୍କଳ ଓ ଆସାମର ଭାର ଗ୍ରହଣ କରିଅଛନ୍ତି । କେଉଁ ପ୍ରଦେଶରେ କେତେ ଜାତୀୟ ବିଦ୍ୟାଳୟ ବସିଲା, କେତେ ଓକିଲ ବ୍ୟବସାୟ ଛାଡ଼ିଲେ ଓ କେତେ ପଞ୍ଚାୟତ ଅଦାଲତ ସ୍ଥାପିତ ହେଲା, ସ୍ୱଦେଶୀର ପ୍ରଚାର କିପରି ଚାଲିଅଛି ମୋଟରେ ଅସହଯୋଗ ନୀତି ସମ୍ବନ୍ଧୀୟ ସମସ୍ତ ଉଦ୍ୟମ ଏବଂ ଆୟୋଜନ ବିଷୟରେ ଏହି ତତ୍ତ୍ୱାବଧାରକମାନେ ନିଖିଳ-ଭାରତ କଂଗ୍ରେସ କମିଟିକୁ ଜଣାଇବେ ।

× × ×

ଯେଉଁମାନେ ସ୍ୱରାଜ୍ୟପ୍ରାପ୍ତି ନିମିତ୍ତ କାର୍ଯ୍ୟ କରିବେ କଂଗ୍ରେସ ଅଧୀନରେ ରହିବାକୁ ଇଚ୍ଛାକଲେ ସେମାନେ ଭାରତୀୟ ସ୍ୱରାଜ୍ୟ ସେବାସଂଘର ଅନ୍ତର୍ଭୁକ୍ତ ହେବେ, ସେମାନେ ବେତନ ପାଇବେ । ପ୍ରତ୍ୟେକ ଲୋକ ଖାଇବା ପିନ୍ଧିବାକୁ ପାଇବେ । ସେମାନଙ୍କ ପରିବାରଙ୍କୁ ଖାଇବାକୁ ଦେବାକଥା ମଧ୍ୟ ବିଚାର କରାଯିବ । ମାତ୍ର କେହି ମାସିକ ୫୦୦ରୁ ବେଶୀ

ପାଇବ ନାହିଁ । ଯାହାର ପରିବାର ଲାଗି ବେଶୀ ଟଙ୍କା ଦରକାର ତାଙ୍କର ଅନ୍ୟ ଉପାୟ ନ ଥିଲେ ଏହି ଭାରତୀୟ ସେବାସଂଘରେ ସେ ଯୋଗ ଦେଇ ପାରିବେ ନାହିଁ । ପ୍ରତ୍ୟେକ ସେବକର ବୟସ ୧୮ରୁ ଊଣା ହେବନାହିଁ । ଏମାନଙ୍କୁ ନିଯୁକ୍ତ କରିବାଲାଗି ପ୍ରାଦେଶିକ କଂଗ୍ରେସ ପକ୍ଷର ଗୋଟିଏ ସ୍ୱତନ୍ତ୍ର ବୋର୍ଡ ରହିବ ।

('ସମାଜ' ତା ୧୨ । ୨ । ୨୧)

———

# ରକ୍ତଶୁଦ୍ଧି ଲାଗି ତ ସ୍ୱରାଜ୍ୟ ଲୋଡ଼ା

ବଡ଼ଲାଟ ସଭାର ଅଧିବେଶନ ଚଳିତ ୫ ତାରିଖଠାରୁ ଆରମ୍ଭ ହୋଇଅଛି । ଏ ଅଧିବେଶନରେ କେତେକ ଗୁରୁତର ପ୍ରସଙ୍ଗ ପକାଇବା ଲାଗି କେହି କେହି ସଭ୍ୟ ଆଗରୁ ନୋଟିସ ଦେଇଛନ୍ତି । ଶ୍ରୀନିବାସ ଶାସ୍ତ୍ରୀ ଏକ କମିଟି ଲାଗି ପ୍ରସ୍ତାବ କରିବେ । ଯେଉଁସବୁ ଆଇନ ଦ୍ୱାରା ଭାରତବାସୀଙ୍କ କ୍ଷମତା ଲୋପ କରିବାର ଚେଷ୍ଟା ହୋଇଅଛି ଏବଂ ଅନ୍ୟାୟ ଭାବରେ ସେମାନଙ୍କୁ ଜବତ କରାଯାଇଅଛି ସେହି ଆଇନମାନଙ୍କ ବିଷୟ ବିଚାର କରି ତାହାସବୁ ଉଠାଇବା କାରଣ ଏହି କମିଟି ପରାମର୍ଶ ଦେବେ । ବେରାରର ମେମ୍ବର ଖପର୍ଦେ ରାଉଲତ ଆଇନ, ଛାପାଖାନା ଆଇନ ଏବଂ ସେହିପରି ଅନ୍ୟାନ୍ୟ କେତେକ ଅନ୍ୟାୟ ଓ ଅବୈଧ ଆଇନମାନ ଉଠାଇ ଦେବା କାରଣ ପ୍ରସ୍ତାବ କରିବେ ବୋଲି ଶୁଣାଯାଏ । ବମ୍ବେଇର ଯମୁନାଦାସ ଦ୍ୱାରକାଦାସ ପଞ୍ଜାବ ଅତ୍ୟାଚାରର ପ୍ରସଙ୍ଗ ପୁଣି ଉଠାଇବେ । ଏସବୁ ପ୍ରସ୍ତାବମାନ ଆଗତ କରିବାଲାଗି ମେମ୍ବରମାନେ ଅନୁମତି ପାଇଛନ୍ତି । ପୁରୁଣା କାଉନ୍‌ସିଲର ଶେଷ ବୈଠକରେ ପଞ୍ଜାବ ବିଷୟରେ କଥା ପକାଇବା ଲାଗି ଶ୍ରୀନିବାସ ଶାସ୍ତ୍ରୀ ଅନୁମତି ପାଇ ନ ଥିଲେ । ଆଜି ପୁଣି ଅନୁମତି ମିଳିଲା କିପରି ? ଶାସ୍ତ୍ରୀ ସେଥର ବୁଝିଥିଲେ ବୋଲି, ନା ସମଗ୍ର ଭାରତ ଜାତି ବୁଝିଛନ୍ତି ବୋଲି ? ଆମ୍ଭେମାନେ ଜାଣୁ କାଉନ୍‌ସିଲ୍ ମେମ୍ବରମାନଙ୍କ ମନ ନେବାଲାଗି ଏବଂ ନୂଆ କାଉନ୍‌ସିଲର କାର୍ଯ୍ୟକାରିତା ଓ ଅସହଯୋଗ ନୀତିର ଅନାବଶ୍ୟକତା ଦେଖାଇବାଲାଗି ବର୍ତ୍ତମାନ କେତେ ବେସରକାରୀ ଲୋକଙ୍କ କଥା ଶୁଣାଯିବ । ସେ ଯାହାହେଉ ରୋଗର ନିଦାନ ଏ ଉପାୟରେ ଘୁଞ୍ଚିବ ନାହିଁ । ଏପରି ନିରଖି କରି ଗୋଟି ଗୋଟି ଘିମିର କାଢୁ ଚପୁଥିଲେ ଦେହକଯାକ ଗ୍ଲାଇଥିବ ସିନା; ମାତ୍ର ରକ୍ତଶୁଦ୍ଧି ନ ହେବାଯାଏ ପୁଣି ଗୋଟିକ ପରେ ଗୋଟିଏ କାଢୁ ବାହାରୁଥିବ । ଏହି ରକ୍ତଶୁଦ୍ଧି ଲାଗିତ ସ୍ୱରାଜ୍ୟ ଲୋଡ଼ା ।

× × ×

ଏ ସପ୍ତାହ ମଧ୍ୟରେ ମହାତ୍ମାଗାନ୍ଧୀ କଲିକତା, ପାଟନା ଏବଂ କାଶୀରେ ଜାତୀୟ ବିଶ୍ୱବିଦ୍ୟାଳୟ ବା ମହାବିଦ୍ୟାପୀଠମାନ ଫିଟାଉ ଅଛନ୍ତି । ପ୍ରତ୍ୟେକ ବିଶ୍ୱବିଦ୍ୟାଳୟରେ ସ୍କୁଲ କଲେଜର ଛାତ୍ରମାନେ ଅରଟରେ ସୂତାକଟା, ହିନ୍ଦୁସ୍ଥାନୀ ଭାଷା ଶିକ୍ଷା କରିବାକୁ

ବାଧ୍ୟ । କଲେଜ ଶ୍ରେଣୀମାନଙ୍କରେ ଭାରତ ଇତିହାସ, ଦର୍ଶନ, ରାଜନୀତି, ଅର୍ଥନୀତିମାନ ବିସ୍ତୃତ ଭାବରେ ପଢ଼ାଯିବ । ଦେଶୀୟ ଭାଷାରେ ସମୁଦାୟ ଶିକ୍ଷା ଦିଆଯିବ । ସୁଖର କଥା ଉତ୍କଳ ସ୍ୱରାଜ ଶିକ୍ଷା ପରିଷଦ ମଧ୍ୟ ଏହି ପ୍ରକାର ଶିକ୍ଷା ପ୍ରଣାଳୀର ବ୍ୟବସ୍ଥା କରିଅଛନ୍ତି । ମହାତ୍ମାଗାନ୍ଧୀଙ୍କର ଓଡ଼ିଶାକୁ ଶୁଭାଗମନ ବେଳେ ଉତ୍କଳ ଜାତୀୟ ବିଶ୍ୱବିଦ୍ୟାଳୟ ଯଥାବିଧି ପ୍ରତିଷ୍ଠା ହେବାର ଦେଖିଲେ ଆମ୍ଭେମାନେ ସୁଖୀ ହେବୁଁ ।

('ସମାଜ' ତା ୧୨ । ୨ । ୨୧)

———

# ସ୍ୱରାଜ୍ୟ ହିଁ ରାଜ୍ୟ

ଲାଭ ଆଶାରେ, ଡରକରି ଦ୍ୱେଷ ବା ଅନ୍ୟ ଯେ କୌଣସି କାରଣରୁ କେହି କେହି ଅସହଯୋଗନୀତିରେ ପ୍ରକାଶ୍ୟରେ ଯୋଗ ନ ଦେଲେ ସୁଦ୍ଧା ସମସ୍ତେ ଯେ ଏହାର ସଫଳତା ଅନ୍ତରରେ ବାଞ୍ଛା କରନ୍ତି ଏଥିରେ କୌଣସି ସନ୍ଦେହ ନାହିଁ । ଭାରତରେ କୌଣସି ଆନ୍ଦୋଳନ ଏତେଦୂର ଲୋକପ୍ରିୟ ବା ସର୍ବବ୍ୟାପୀ ହୋଇନାହିଁ । ଏହି ତିନି ଚାରି ମାସ ମଧ୍ୟରେ ଅସହଯୋଗ ବା ନନ୍‌-କୋ ଅପରେସନ କଥାଟା ସହର ଗ୍ରାମ ହାଟ ବାଟ ଘରଆଡ଼େ ସମସ୍ତଙ୍କ ମୁହଁରେ ଶୁଣାଗଲାଣି । ତହିଁ ସଙ୍ଗେ ସଙ୍ଗେ ଏଥିର ମୂଳାଧାର ମହାତ୍ମାଗାନ୍ଧୀଙ୍କ ନାମ ମଧ୍ୟ ଦେଶର ସବୁ ଶ୍ରେଣୀର ଲୋକଙ୍କ ମଧ୍ୟରେ ପ୍ରଚାରିତ ହୋଇଅଛି । ଭାରତରେ କେହି ନେତା ଏପରି ପ୍ରଶସ୍ତି କେବେ ପାଇ ନ ଥିଲେ, ପୃଥିବୀର ଅନ୍ୟାନ୍ୟ ଦେଶରେ ମଧ୍ୟ ଏପରି ଲୋକପ୍ରୀତି ପାଇଥିବା ନେତା ଅତି ଅଳ୍ପ ମିଳିବେ । ଭାରତର ରାଜନୈତିକ ଆନ୍ଦୋଳନରେ ଓଡ଼ିଶା ଚିରକାଳ ନୀରବ ଥିଲା । ସେ ସୁଦ୍ଧା ଏବେ ଜାଗିଅଛି । ଓଡ଼ିଶାରେ ଆଜି କେବଳ ଓଡ଼ିଆ ସ୍ୱାର୍ଥଲାଗି ଉଦ୍ୟମ ଆୟୋଜନ ନାହିଁ, ଓଡ଼ିଆ ବଙ୍ଗାଳୀ ବିବାଦ ନାହିଁ । ଏ ସବୁ କ୍ଷୁଦ୍ର ବିବାଦ ତ ଚାକିରି ଲାଗି ନ ହେଲେ ବା ସ୍କୁଲ କଲେଜର ବୃତ୍ତିଲାଗି କିମ୍ବା କାଉନସିଲ ମେମ୍ବର ପଦ ଲାଗି । ଅସହଯୋଗ ନୀତି ପ୍ରଭାବରେ ଆଜି ସେ ମୋହ ଅନେକଙ୍କର ତୁଟିଅଛି । ତେଣୁ ବିବାଦର କାରଣ ଘୁଞ୍ଚିଅଛି । ବାସ୍ତବରେ ଅସହଯୋଗ ନୀତିଦ୍ୱାରା ଭାରତରେ ଏକ ମହାସମ୍ମିଳନୀର ସୂତ୍ରପାତ ହୋଇଅଛି । ହିନ୍ଦୁ ମୁସଲମାନ ବିବାଦ ମେଣ୍ଟିଯାଇ ଥିବା ସ୍ଥଳେ ଆଉ ସାମାନ୍ୟ ସାମାନ୍ୟ ପ୍ରାଦେଶିକ ବା ଦଳଗତ ବିବାଦ କି କେବେ ରହିପାରେ ? ଏବେ ଭାରତବାସୀ ବୁଝିଛନ୍ତି ଯେ ସେମାନେ ସମସ୍ତେ ଜେଲଖାନାରେ । ଏପରି ସାମାନ୍ୟ କଥାରେ ବେଳେ ବେଳେ କଏଦୀମାନେ କଳିଗୋଳ କରିଥାନ୍ତି ଆମ୍ଭେମାନେ ଏତେଦିନ ସେହିପରି କରି ଆସିଅଛୁ । ଏପରି କ୍ଷୁଦ୍ର କଳହ ବିବାଦ ଲାଗି ରହିଥିବାଯାଏ ଆମ୍ଭମାନଙ୍କର ଦୁର୍ଗତି ଯିବନାହିଁ । ଓଡ଼ିଶାରେ ମଧ୍ୟ ଏହି ଚେତନା ଆସିଅଛି । ଭାରତ ଜାତୀୟ ମହାସମିତି ପ୍ରତି ଓଡ଼ିଶା ଜନସାଧାରଣଙ୍କର ବିଶେଷ ଆଗ୍ରହ ଅନୁରାଗ ଦେଖା ଯାଉଅଛି । କଟକ ଜିଲ୍ଲା କଂଗ୍ରେସ କମିଟିରେ ସାଧାରଣ ଦୋକାନଦାରମାନେ ମଧ୍ୟ ମେମ୍ବର ହେଉଅଛନ୍ତି । 'ଓଡ଼ିଆ, ବଙ୍ଗାଳୀ, ମାରବାଡ଼ୀ, ତେଲେଙ୍ଗା, ହିନ୍ଦୁ ମୁସଲମାନ ସକଳଧର୍ମ ଓ ସମାଜର ଲୋକେ ଆଜିକାଲି ଓଡ଼ିଶାର ସାଧାରଣ ସଭାସମିତିରେ ଯୋଗ ଦେଉଛନ୍ତି ଏବଂ ମିଳାମିଶି କାର୍ଯ୍ୟ କରୁଛନ୍ତି ।

ଏହି ଫେବୃୟାରୀ ୬ ତାରିଖ ଗଲ ରବିବାର ଓଡ଼ିଶାର ବେଙ୍ଗଲ ସେଲଟର ଆସୋସିଏସନର ବାର୍ଷିକ ସଭା ହୋଇଥିଲା । ଦେଶର ବର୍ତ୍ତମାନ ସାର୍ବଜନୀନ ଆନ୍ଦୋଳନ ଦୃଷ୍ଟିରେ ଏପରି କ୍ଷୁଦ୍ର ଦଳଗତ ଅନୁଷ୍ଠାନର ଆବଶ୍ୟକତା ନ ଥିବାର କୌଣସି କୌଣସି ସଭ୍ୟ ପ୍ରକାଶ କଲେ । ଏକଥା ମଧ୍ୟ ଅନେକଙ୍କ ମନକୁ ଘେନିଲା । ମାତ୍ର ସେ ଦିନର କମିଟିରେ ଏପରି ଗୁରୁତର ପ୍ରସଙ୍ଗର ମୀମାଂସା ହେବା ସଙ୍ଗତ ନୁହେଁ ବୋଲି ସେଟଲର ସମ୍ମିଳନୀ ପର୍ଯ୍ୟନ୍ତ ସ୍ଥଗିତ ରହିଲା । ଏହା ସମ୍ମିଳନୀର ଅଧିକାଂଶ ସଭ୍ୟଙ୍କ ମତ । ଯେତେ ଦୂର ବୁଝାଯାଇଅଛି ସେମାନେ ଏ ସମୟରେ ସଙ୍କୀର୍ଣ୍ଣ ଦଳଗତ ଆନ୍ଦୋଳନର ସପକ୍ଷରେ ନୁହନ୍ତି । ଯଥାର୍ଥରେ ଏ ଭଳି ଆନ୍ଦୋଳନର ଦିନ ଆଉ ନାହିଁ । ଏହି ସବୁ ଆନ୍ଦୋଳନ ଏତେଦିନ ଆମ୍ଭମାନଙ୍କୁ ଏପରି ଦୁର୍ଗତିରେ ପକାଇଅଛି । ଆମ୍ଭେମାନେ ଅଲଗା ଅଲଗା ହୋଇ ନିଜ ମଧ୍ୟରେ କଳି ବିବାଦ କରି ନାରଖାର ହୋଇଅଛୁଁ । ଆଜି ସମସ୍ତଙ୍କ ଆଖି ଫିଟିଛି; ସମସ୍ତେ ସ୍ୱରାଜ୍ୟ ଆଡକୁ ଅନାଇଛନ୍ତି । ସେହି ଏକଆଡେ ସମସ୍ତଙ୍କ ପ୍ରାଣର ପ୍ରବାହ ଧାଇଁଅଛି । ଏ ପ୍ରବାହ କୌଣସି ବାଧା ମାନିବ ନାହିଁ । ଦେଶର ଭିନ୍ନ ଭିନ୍ନ ସମ୍ପ୍ରଦାୟର ଲୋକମାନଙ୍କୁ ଆମ୍ଭେମାନେ କହୁଁ ସମୟ ବୁଝି ଏତେବେଳେ ଏ ପ୍ରବାହର ବାଟ ଫିଟାଇ ଦିଅନ୍ତୁ । ପ୍ରବାହ ଆମ୍ଭମାନଙ୍କୁ ସ୍ୱରାଜ୍ୟରେ ପହଁଚାଇବ । ସ୍ୱରାଜ୍ୟ ହିଁ ରାଜ୍ୟ ।

× × ×

ଅସହଯୋଗ ଆନ୍ଦୋଳନରେ ଯେପରି କୌଣସି ପ୍ରକାର ଗୋଳମାଳ ବା ମାରଧର ନ ହୁଏ ଏ ବିଷୟରେ ପ୍ରତ୍ୟେକ ଅସହଯୋଗୀର ସର୍ବଦା ବିଶେଷ ସାବଧାନ ହେବା ଆବଶ୍ୟକ । ମହାତ୍ମାଗାନ୍ଧୀ ଏହା ବାରମ୍ବାର କହୁ ଅଛନ୍ତି, ଏ ଆନ୍ଦୋଳନର ଅନ୍ୟାନ୍ୟ ନେତାମାନେ ମଧ୍ୟ ଏହାହିଁ କହୁଅଛନ୍ତି । ଅସହଯୋଗ ଏକ ସାଧନା । ଏହା ଶାନ୍ତ, ଧୀର, ସ୍ଥିର, ନ୍ୟାଯ୍ୟ ଓ ନିର୍ମଳ ଭାବରେ ପ୍ରତ୍ୟେକ ବ୍ୟକ୍ତିର ଆଚରଣ କରିବା ଉଚିତ, ଇଂରେଜ ସରକାର ଭାରତବାସୀଙ୍କ ଉପରେ ଦୌରାତ୍ମ୍ୟ କଲେ ବୋଲି ତାହାର ନିବାରଣ ଲାଗି ଏ ଉପାୟ । ମାତ୍ର ଉପାୟରେ ଯେବେ ଦୌରାତ୍ମ୍ୟ ପ୍ରକାଶ ପାଏ ତେବେ ପ୍ରତିକାର ସଫଳ ହେବାର ଆଶା ଅତି କମ । "ବିଷସ୍ୟ ବିଷମୌଷଧମ୍" ବିଧାନଟା ବଡ଼ ସାଘାତିକ ଏବଂ ବିପଦପୂର୍ଣ୍ଣ । ଅସହଯୋଗ ନୀତିର ବିପକ୍ଷମାନେ ଯେପରି ଆମ୍ଭମାନଙ୍କ କାର୍ଯ୍ୟରେ କୌଣସି ପ୍ରକାର ଛିଦ୍ର ଦେଖି ନ ପାରନ୍ତି ପ୍ରତ୍ୟେକ ଅସହଯୋଗୀର ସେଥିପ୍ରତି ସର୍ବଦା ଦୃଷ୍ଟି ଦେବା ଆବଶ୍ୟକ । ବିଶେଷତଃ ଛାତ୍ର ଓ ଯୁବକମାନଙ୍କୁ ଏ କ୍ଷେତ୍ରରେ କାର୍ଯ୍ୟ ଓ କଥାରେ ବିଶେଷ ସଂଯତ ଓ ସତର୍କ ହେବାକୁ ହେବ ।



('ସମାଜ', ତା ୧୯ । ୨ । ୨୧)

# ଅସହଯୋଗ

ଗଞ୍ଜାମର ବରଗଡ଼, ସେରଗଡ଼ ଏବଂ ଧବ୍ଳେକୋଟର କେତେକ ଅଂଶରେ ଭୟଙ୍କର ଅନ୍ନକଷ୍ଟ ଘଟିଥିବା ସଂବାଦ ମିଳୁଅଛି ଏହିସବୁ ଅଞ୍ଚଳରେ ଗଲସନ ବଡ଼ ମରୁଡ଼ି ବାଧା ହୋଇଥିଲା । ମରୁଡ଼ିରେ ଫସଲତ ନଷ୍ଟ ହୁଏ ପୁଣି ଜଳକଷ୍ଟ ମଧ୍ୟ ହୁଏ । ସାଧାରଣ ବର୍ଷ ମାନଙ୍କରେ ଉତ୍କଳ ଦେଶର ମଫସଲ ଗ୍ରାମମାନଙ୍କରେ ଖରାଦିନେ ଲୋକେ ପାଣି-ବିନା ବଡ଼ କଷ୍ଟ ଭୋଗିଥାନ୍ତି । ଗୋରୁ ଗାଈଙ୍କ କଥା ଛାଡ଼, ମନୁଷ୍ୟଙ୍କୁ ସୁଦ୍ଧା ଅନେକ ସ୍ଥଳରେ ଗୋଳିଆ ପଙ୍କପାଣି ଟିକେ ପିଇବାକୁ ମିଳେ ନାହିଁ । ଏବର୍ଷ ଗଞ୍ଜାମର ବଡ଼ଗଡ଼ ପ୍ରଭୃତି କେତେକ ମରୁଡ଼ିଆ ଯାଗାରେ ଏହିଦିନୁଁ ଏ ଦୁର୍ଗତି ଘଟିଲାଣି । କେନ୍ଦ୍ରାପଡ଼ା, ଯାଜପୁର ପ୍ରଭୃତି ଧୋଇଆ ଅଞ୍ଚଳର ଅବସ୍ଥା ମଧ୍ୟ ଗୁରୁତର ହୋଇ ଆସିଲାଣି । ଠାଏ ଠାଏ ଯେ ମୁଗ ବିରି ଆଦି ରବି ଫସଲ ହୋଇଥିଲା ତାହା ବିଲରୁ ଅମଳ ହେଉ ହେଉ ଶେଷ ପଡ଼ୁଛି କହିଲେ ଚଳେ । ଜମିଦାରମାନେ ଖଜଣାଲାଗି ଟାକ ବସିଛନ୍ତି । ଫସଲହାନି ଯୋଗୁଁ ତ କେବେ ଖଜଣା ଛାଡ଼ନାହିଁ । ବଡ଼ ବେଶୀ ଯେବେ ଗୋଟାଏ କିସ୍ତି ମୁକଲ ହେଲା ଆଉ କିସ୍ତିକି ଷୋଳପଣ ବୋଝ ମୁଣ୍ଡରେ ବସିଲା । ପ୍ରଜାଙ୍କ ଘରେ ବା ବିଲରେ କିଛି ଥିବାର ଦେଖିଲେ ମହାଜନମାନେ ପିଆଦା ଲଗାଇଲେ । ନ ହେଲେ ବେଲଜାଣି ଡିଗ୍ରୀଜାରି କରି ମାଲ କୋରକ କଲେ । ପ୍ରଜାଙ୍କର କେବେହେଲେ ମୁହୂର୍ତ୍ତେ ବିଶ୍ରାମ ବା ଶାନ୍ତି ନାହିଁ । ପୁରୀ ଜିଲାର ପଥରପଦା ଅଞ୍ଚଳରେ ବେସରକାରୀ ଦୁର୍ଭିକ୍ଷ ସାହାଯ୍ୟ କମିଟି ତରଫରୁ ଏବେସୁଦ୍ଧା ଊଣାଅଧିକେ କାମ ଲାଗିଛି । ସେ କେତେଖଣ୍ଡ ଗାଁର ନିକଟରେ କିଛି ଆଶାଭରସା ନାହିଁ । ବାଲେଶ୍ୱରର କେତେକ ଧୋଇଆ ଅଞ୍ଚଳ ଅବସ୍ଥା ତଥୈବଚ । ମୋଟରେ ଉତ୍କଳ ପ୍ରଦେଶର ପ୍ରାୟ ପ୍ରତ୍ୟେକ ଜିଲାର କୌଣସି ନା କୌଣସି ଅଞ୍ଚଳରେ ବର୍ତ୍ତମାନ ଦାରୁଣ ଅନ୍ନକଷ୍ଟ ରହିଅଛି । ବୈଶାଖ ଜ୍ୟେଷ୍ଠ ବେଳକୁ ଅବସ୍ଥା ଯେ କି ଭୀଷଣ ଏବଂ ଗୁରୁତର ହେବ କହି ହେଉନାହିଁ । ସେହି ସମୟରେ ପୁଣି ନାଟବନ୍ଧ କିସ୍ତି । ଏଣେ ପଡ଼ିଆରେ ଟୋପାଏ ପାଣି ନ ଥିବ, ପଡ଼ିଆରେ ଗୋଟିଏ ଦୁବଘାସ ନ ଥିବ, ଘରେ ଦାନା ନ ଥିବ, ହାତରେ ପଇସା ନ ଥିବ ସେତିକିବେଳେ ଜମିଦାର ମହାଜନମାନଙ୍କର ଚପଟ । ଖାଇବା ପିଇବାକୁ ନ ପାଇ ହଇଜା ବସନ୍ତ ଆଦି ନାନା ରୋଗରେ ଲୋକେ ମରିବେ । ବର୍ଷକୁ ବର୍ଷ ଏହି କରୁଣଦୃଶ୍ୟ

କେତେ ଦେଖିବାକୁ ହେବ ? ଶେଷକୁ ହୁଏତ ଜିଲ୍ଲାବୋର୍ଡ କୌଣସି କୌଣସି ଯାଗାକୁ ଜଣେ ଜଣେ ଡାକ୍ତର ପଠାଇ ଟୋପାଏ ଲେଖାଏଁ ଔଷଧ ଯାହା କରି କରି ବାହାଦୁରି ନେବେ । କେତେ ଯାଗାରେ ପୋଖରୀ କିମ୍ବା କୂଅ ଖୋଳା ହେବା ଆୟୋଜନ ହେଉ ହେଉ ବର୍ଷାଦିନ ଆସି ପହଞ୍ଚିଯିବ ଯେ ପୁଣି ଓଡ଼ ପାଇଟି ଦୋଡ଼ ହେବାକୁ ବାଟ ମିଳିଯିବ। ଦରିଦ୍ର ପଲ୍ଲିବାସୀଙ୍କର ଏ ଦୁର୍ଦ୍ଦଶା କେବେ ସତେ ଘୁଞ୍ଚିବ ! ନୂତନ କାଉନ୍‌ସିଲ୍‌କୁ ଯିବାଲାଗି ଭୋଟ ନେବାବେଳେ ମେମ୍ବରମାନେ ଲୋକଙ୍କୁ କେତେ ଆଶାର କଥା କହିଛନ୍ତି, କେତେ ଭଙ୍ଗୀରେ ଫୁସୁଲାଇଛନ୍ତି । ସଡ଼କ ବନ୍ଧାଇ ଦେବେ, ପୋଖରୀ ଖୋଳାଇ ଦେବେ, ଧାନଚାଉଳ ଶସ୍ତା କରାଇଦେବେ, ସ୍କୁଲ ବସାଇଦେବେ—ମୋଟରେ ଯାହା ନାହିଁ ନ ଥିବ ଚନ୍ଦ୍ରପୁରରେ କିମ୍ବା ଯାହା ଇଂରେଜ ରାଜତ୍ୱରେ ଦେଢ଼ଶବର୍ଷ ଭିତରେ କୌଣସିଠାରେ ହୋଇନାହିଁ କିମ୍ବା ସହଜରେ ହେବା ସମ୍ଭବ ନୁହେଁ ତାହାସବୁ ଗାଁ ଲୋକଙ୍କ ହାତେ ଧରାଇ ଦେବେ ବୋଲି ଦମ୍ଭ ଏବଂ ବିଶ୍ୱାସ ଦେଇଛନ୍ତି । ମାତ୍ର ଏହି ବୈଶାଖ ଜ୍ୟେଷ୍ଠରେ ଲୋକେ ଅନ୍ନ ଜଳ, ବସ୍ତ୍ର, ବାସ ଅଭାବରେ ଛଟପଟ ହେଉଥିବା ବେଳେ ମେମ୍ବରମାନଙ୍କ ମଧ୍ୟରୁ କେହି କେହି ଯାଇ ସେମାନଙ୍କ ଅବସ୍ଥା ଆଖିରେ ଦେଖିବେ କି ? ପ୍ରତିକାରର କୌଣସି ବ୍ୟବସ୍ଥା କରିବେ କି ? ନା ବେଣ୍ଡ ଉପରେ କୋରଡ଼ା ଦେବେ ? ଏବଂ ଯାହାର ଯେପରି ଗ୍ରେଟବଡ଼ ଇଲାକାଥିବ ସେ ଖଜଣା ଆଦାୟ ଲାଗି ବା କରଜ ଧାନ ଅସୁଲ ଲାଗି ମାଡ଼ଧର ଲଗାଇବେ ? ଲୋକଙ୍କୁ କାମ ଦେବାଲାଗି ସରକାର ତରଫରୁ କୌଣସି କୌଣସିଠାରେ ମାଟିକାମ କିଛି ହୋଇପାରେ । ମାତ୍ର ସେଥିରେ ମଜୁରିର ଦର ଏପରି ହେବ ଯେ କେହି କାମ କରିବାକୁ ହୁଏତ ଆଗ୍ରହ ଦେଖାଇବେ ନାହିଁ । ଆମ୍ଭେମାନେ ଶୁଣିଅଛୁଁ ବରଗଡ଼, ଶେରଗଡ଼ ପ୍ରଭୃତି ଗଞ୍ଜାମର ଅନ୍ନକଷ୍ଟ ଅଞ୍ଚଳରେ ମାଟିକାମ ଖୋଲି ଥିଲା । ସେଥିରେ କାମକଲେ ପୁରୁଷ ଲୋକେ ଦିନକୁ ଦଶପଇସା ଏବଂ ସ୍ତ୍ରୀଲୋକେ ଦୁଇଅଣା ମଜୁରି ପାଇବେ । ଏଥିରେ ସେମାନେ କେତେ ଚାଉଳ କିଣିବେ । ଏଣେ ଅନ୍ନକଷ୍ଟରେ ଟଳଟଳ ହେଉଛନ୍ତି । ନଇଟ ମାଟି ହାଣିବାକୁ ବଳ ନାହିଁ । ଯାହା ମଜୁରି ମିଳିବ ତାହା ଆପଣା ପେଟକୁ ନଅଣ୍ଟ । ଘରେ ପୁଣି ପିଲାକୁଟୁମ୍ବ ଅଛନ୍ତି । ଏ ଅବସ୍ଥାରେ ଲୋକେ ଯେବେ କାମକୁ ଅଧିକ ସଂଖ୍ୟାରେ ନ ଆସନ୍ତି ତାହା ଅନ୍ନକଷ୍ଟ ନ ଥିବାର ପ୍ରମାଣ ବୋଲି ଧରାଯାଇପାରେ । ଦୁଃଖରକଥା ଏହିପରି ପ୍ରମାଣ ଦେଖାଇ ସରକାର ତରଫ ଲୋକେ ଅନେକ ସମୟରେ ଦୁର୍ଭିକ୍ଷ ଲୁଚାଇ ରଖିବାର ଚେଷ୍ଟା କରିଥାନ୍ତି । ଲୋକଙ୍କର ଅନ୍ନକଷ୍ଟ ସମ୍ବନ୍ଧରେ ଏହିପରି ଦୁଃଖ କାହାଣୀ କହି କହି ଆମ୍ଭେମାନେ ଥକିଲୁଣି । ଅଧିକ କହିବାରେ

ଲଭ ଅଛୁ ବୋଲି ବିଶ୍ୱାସ ନାହିଁ । ସରକାରଙ୍କ ଆଡ଼େ ଗୁହିଁବା ବୃଥା ବୋଲି ପ୍ରଜାସାଧାରଣ ମଧ୍ୟ ବେଶ୍ ବୁଝିଲେଣି । ଏଣିକି—

"କର୍ମ ଆଦର ସହେ ଦୁଃଖ
କେବେହେଁ ନୋହିବ ବିମୁଖ ।"

ନୀତିଧର ଉଦ୍ୟମ ଦେଖିବା ଉଚିତ । ସରକାରଙ୍କଠାରୁ ଅଧିକାର ଦାବି ନ କରି ଆପଣାପ୍ରତି ଆପଣାର କର୍ତ୍ତବ୍ୟ ସ୍ୱପ୍ରଯତ୍ନେ ପାଳନ କରିବା ଧର୍ମ ହୋଇଅଛୁ । ଏହାହିଁ ଅସହଯୋଗ ନୀତିର ଶିକ୍ଷା ।

('ସମାଜ' ତା ୧୯ । ୨ । ୨୧)

---

## ଅସହଯୋଗ ବିରୋଧରେ ସରକାରୀ ଦମନ

ବିହାର ଓଡ଼ିଶା ସରକାର ଅସହଯୋଗ ନୀତି ବିରୁଦ୍ଧରେ ଗୋଟାଏ ସର୍କୁଲର ବାହାର କରିଛନ୍ତି । ପ୍ରତି ଜିଲା ମେଜେଷ୍ଟ୍ରରମାନଙ୍କୁ ଏଥିରେ ଆଦେଶ କରାଯାଇଅଛି ଯେ ସେମାନେ ଏ ଆନ୍ଦୋଳନକୁ ଚପାଇବା ଲାଗି ଚେଷ୍ଟା କରିବେ । ସେ ଏବଂ ତାଙ୍କ ସବ୍‌ଡିଭିଜନାଲ ଅଫିସରମାନେ ନିଜ ନିଜ କାମଗୁଡ଼ା ମଫସଲରେ ବୁଲି ଅସହଯୋଗ ନୀତି ବିରୁଦ୍ଧରେ ଲୋକମାନଙ୍କୁ ବୁଝାଇବେ । ପୋଲିସ କର୍ମଚାରୀଙ୍କଛଡ଼ା ଅନ୍ୟ ସରକାରୀ କର୍ମଚାରୀ କେହି ଅସହଯୋଗ ବିରୋଧସମିତିରେ ଯୋଗଦେଇ ପାରିବେ ନାହିଁ । ଅସହଯୋଗ ଆନ୍ଦୋଳନକୁ ବ୍ୟର୍ଥ କରିବାଲାଗି ଯାହା ଉଚିତ ଏବଂ ଆବଶ୍ୟକ ମନେ କରିବେ ନିମ୍ନସ୍ଥ କର୍ମଚାରୀମାନେ ତାହା କରିପାରିବେ । କୌଣସି ସ୍ଥାନରେ ଅସହଯୋଗ ନୀତି ଫଳରେ ଯଦି କିଛି ଦୁର୍ଘଟନା ଘଟେ ସେଥିଲାଗି ସ୍ଥାନୀୟ ମୁଖିଆ ଲୋକମାନଙ୍କୁ ଦାୟୀ କରାଯିବ । ରାଜା ଜମିଦାର ଓ ଅନ୍ୟାନ୍ୟ ସଙ୍ଗତିସମ୍ପନ୍ନ ଲୋକଙ୍କ ସହାୟତାରେ ଏ ଆନ୍ଦୋଳନକୁ ଦମନ କରିବାର ଉଦ୍ୟମ ହେବ । ଅନ୍ୟ କୌଣସି ପ୍ରଦେଶର ସରକାର ଏପର୍ଯ୍ୟନ୍ତ ଏଭଳି ଆଦେଶ କରିନାହାନ୍ତି । ଆମ୍ଭମାନଙ୍କର ବିଶ୍ୱାସ ସର ଏଡ୍‌ୱାର୍ଡ଼ ଗେଟ୍ ବିହାରର କର୍ତ୍ତା ଥିଲେ ଏପରି ସର୍କୁଲର କଦାପି ହଠାତ୍ ଜାରି କରି ନ ଥାନ୍ତେ । ଲର୍ଡ ସିଂହ ଜଣେ ଦେଶୀ ଲୋକ । ଉଚ୍ଚପଦ ପାଇ ତାଙ୍କର ଏପରି କାର୍ଯ୍ୟମତ ଦେଖାଇବା ବଡ଼ ଆକ୍ଷେପର କଥା । ଅସହଯୋଗ ଆନ୍ଦୋଳନଦ୍ୱାରା ଏପର୍ଯ୍ୟନ୍ତ ଏ ପ୍ରଦେଶରେ କୌଣସି ଦୁର୍ଘଟଣା ହୋଇନାହିଁ, ଶାନ୍ତିଭଙ୍ଗ ଘଟିନାହିଁ । ଅସହଯୋଗ ନୀତି ଫଳରେ ଲୋକସାଧାରଣଙ୍କ ମଧ୍ୟରେ ସ୍ୱଦେଶୀ ଦ୍ରବ୍ୟର ପ୍ରଚାର କରାଯିବ । ସେମାନଙ୍କୁ ଅରଟ ସୂତାକଟା ଓ ସେ ସୂତାରେ ଦେଶୀ ତନ୍ତରେ ଲୁଗାବୁଣାପାଇଁ ପ୍ରବର୍ତ୍ତାଇବାକୁ ହେବ । ନିଶାଦ୍ରବ୍ୟର ବ୍ୟବହାର ବନ୍ଦ କରିବାକୁ ହେବ । ପଞ୍ଚାୟତ ଅଦାଲତଦ୍ୱାରା ମାମଲା ମକଦ୍ଦମା ଆପୋଷରେ ମେଣ୍ଟାଇବାର ବ୍ୟବସ୍ଥା କରାଯିବ । ଜାତୀୟ ବିଦ୍ୟାଳୟ ବସାଇବାକୁ ହେବ । ଏହିସବୁ କାର୍ଯ୍ୟ ମଧ୍ୟରେ କେଉଁଟା ମାରାତ୍ମକ । ଲର୍ଡ଼ ସିଂହ ପରା ବମ୍ବେଇଠାରେ ବକ୍ତୃତାରେ ଏହିସବୁ କାର୍ଯ୍ୟର ଉଲ୍ଲେଖ କରି କହିଥିଲେ ଯେ ଏହା ସରକାରଙ୍କ କାର୍ଯ୍ୟରେ ସହାୟତା କରିବ ବୋଲି । ଜିଲା ମେଜେଷ୍ଟ୍ରର ବା ସବ୍‌ଡିଭିଜନାଲ ଅଫିସରମାନେ ମଫସଲରେ

ଅସହଯୋଗ ନୀତି ବିରୁଦ୍ଧରେ ଲୋକମାନଙ୍କୁ କଅଣ ବୁଝାଇବେ ? ସ୍ୱଦେଶୀ ବ୍ୟବହାର, ଆପୋଷରେ ବିବାଦ ନିଷ୍ପତ୍ତି ପ୍ରଭୃତି କାର୍ଯ୍ୟ ନ କରାଇଦେବା ଏ ସର୍କୁଲାରର ଉଦ୍ଦେଶ୍ୟ ନୁହେଁତ ଆଉ କଅଣ ? ଲୋକଙ୍କ ମୁଖରେ ଏବେ ଶୁଣାଯାଏ ବିଲାତି ଲୁଗା ଚଳାଇବା ଲାଗି ପ୍ରଥମେ ପ୍ରଥମେ ପୋଲିସ ଏବଂ କେତେକ ସରକାରୀ କର୍ମଚାରୀ ଏ ଦେଶର ଲୋକମାନଙ୍କୁ ଧମକ ଚମକ ଦେଇ କପାଚାଷ ଏବଂ ଅରଟ ସୂତାକଟା ବନ୍ଦ କରାଇ ଥିଲେ । ଏ ଦେଶ ତନ୍ତୀଙ୍କ ଆଙ୍ଗୁଠି କଟା ହୋଇଥିଲା ବୋଲି ଏପର୍ଯ୍ୟନ୍ତ ଲୋକଶ୍ରୁତିରେ ରହିଛି । ବିହାର ଓଡ଼ିଶା ସରକାରଙ୍କ ସର କ୍ୟୁଲାରରେ ଏହିଭଳି କିଛି କରିବାଲାଗି ହାକିମମାନଙ୍କୁ ଇଙ୍ଗିତ ଦିଆ ଯାଉନାହିଁ ତ ? ଗଡ଼ଜାତ ଶାସନ ତୁଳନାରେ ଲୋକେ ଇଂରେଜ ରାଜ୍ୟ ଶାସନକୁ ଭଲ କୁହନ୍ତି । ଦେଶୀ ଲାଟଙ୍କର ଏପରି ବ୍ୟବହାରରେ ଲୋକସାଧାରଣ ଗୋରାଲୋକଙ୍କୁ କୋଟିଗୁଣେ ଭଲ ବୋଲି ଜ୍ଞାନ କରିବା ସହଜ କଥା । ଆମ୍ଭମାନଙ୍କର ବରାବର ଆଶଙ୍କା ଯେ ଅସହଯୋଗ ଆନ୍ଦୋଳନ ଯେତେ ଧୀର ସ୍ଥିର ଶାନ୍ତ ଓ ନ୍ୟାଯ୍ୟ ନିର୍ମଳ ଭାବରେ ଚାଲିଲେ ସୁଦ୍ଧା ସରକାର ତରଫରୁ କୌଣସି କୌଣସି ଠାରେ କଣ୍ଟାବାଡ଼ରେ ଲୁଗାପକାଇ କଳହର ସୂତ୍ରପାତ ହୋଇପାରେ । ବିହାର ଓଡ଼ିଶା ସରକାର ନିମ୍ନକର୍ମଚାରୀମାନଙ୍କୁ ଯେପରି କ୍ଷମତା ଦେଇଛନ୍ତି ସେଥିରେ କେହି କେହି ଅତି ଉତ୍ସାହୀ ନିମକସଚା କର୍ମଚାରୀ କେଉଁ ସୀମାପର୍ଯ୍ୟନ୍ତ ଯିବେ କହି ହେଉନାହିଁ । ଆମ୍ଭେମାନେ କହୁଁ ଅସହଯୋଗ ଆନ୍ଦୋଳନ ନ୍ୟାଯ୍ୟ ସତ୍ୟ ଏବଂ ଧର୍ମ ମାର୍ଗରେ ଚାଲୁଅଛି । କୌଣସି ସରକାରୀ ସରକ୍ୟୁଲାର ବା ସ୍ଥାନୀୟ କର୍ମଚାରୀଙ୍କ ଉଦ୍ୟମ ଏଥିରେ ବାଧା ଘଟାଇ ପାରିବ ନାହିଁ ।

× × ×

କନାଟର ଡ୍ୟୁକ୍ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭା ଫିଟାଇଲା ବେଳେ କହିଅଛନ୍ତି କି ଏହା ଭାରତୀୟମାନଙ୍କ ସ୍ୱରାଜ୍ୟର ପ୍ରାରମ୍ଭ । ନୂତନ ବ୍ୟବସ୍ଥାପକ ସଭାମାନ ସ୍ୱରାଜ୍ୟର ପ୍ରାରମ୍ଭ ନୁହେଁ । ଏହିସବୁ କାଉନ୍‌ସିଲରୁ ଭାରତୀୟମାନେ ବିଶେଷ କିଛି ଆଶା କରନ୍ତି ନାହିଁ । ଦେଶୀୟ ଲୋକଙ୍କ ପକ୍ଷରୁ ଅନେକଗୁଡ଼ିଏ ମେମ୍ବର ଏହିସବୁ କାଉନ୍‌ସିଲରେ ଅଛନ୍ତି ସତ; ମାତ୍ର ସେମାନେ ସେଠାରେ ନ ରହି ବାହାରେ ଥିଲେ ଲୋକମତ ଅଧିକ ପ୍ରବଳ ଏବଂ ଶକ୍ତିଶାଳୀ ହୋଇଥାନ୍ତା । ଦେଶୀ ଲୋକଙ୍କର ପଦବୃଦ୍ଧି ଦ୍ୱାରା ଅନେକ କ୍ଷେତ୍ରରେ "ବୃଶ୍ଚିକ କର୍କଟ ପରି; ଯିନା ତାହାଙ୍କ ମାଧୁରୀ" ହେଉଅଛି ? ଅଧିକ ମେମ୍ବର ହେଲେ ଅଧିକ ରଡ଼ି ପକାଇ ପାରନ୍ତି । ମାତ୍ର ତାହା ଶୁଣୁଛି କିଏ ? ଖାଲି ଭୁକିବାରେ ଲାଭନାହିଁ । ଭାରତବାସୀ ଏହା ବେଶ୍ ଜାଣିଲେଣି । ଯାହାହେଉ ସ୍ୱରାଜ୍ୟ ଯେ ଭାରତବାସୀଙ୍କର ବର୍ତ୍ତମାନ ଏକାନ୍ତ

ଆକାଂକ୍ଷା, କନଷ୍ଟର ଉଡ଼ିକ୍ ଏହା ବୁଝିପାରି ଅଛନ୍ତି । ମାତ୍ର ନୂତନ କାଉନ୍‌ସିଲ ବା ଶାସନସଂସ୍କାର ବ୍ୟବସ୍ଥାଦ୍ୱାରା ସେ ଆକାଂକ୍ଷା ପୂରଣ ହେବାର ନୁହେଁ । ଏଣିକି ସ୍ୱରାଜ୍ୟ କଥାଟା ଅନେକଙ୍କ ନିକଟରେ ସେତେ ଦୋଷାବହ ବୋଲି ସେତେ ବୋଧ ହେବନାହିଁ । ସୁତରାଂ କଂଗ୍ରେସ ଉଦ୍ଦେଶ୍ୟ ଗ୍ରହଣ କରିବା ନିମନ୍ତେ କାହାର ତେତେ ଆପତ୍ତି ହେବ ନାହିଁ ।

('ସମାଜ' ତା ୫ । ୮ । ୨୧)

---

# ଅସହଯୋଗର କୁହୁକ

ସୁରେନ୍ଦ୍ର ନାଥ ବାନର୍ଜ୍ଜି ଦିନେ ବଙ୍ଗଳାର ସର୍ବପ୍ରଧାନ ନାୟକ ଥିଲେ । ଭାରତ-ବର୍ଷରେ ତାଙ୍କୁ ମଧ୍ୟ ସମସ୍ତେ ନେତା ବୋଲି ମାନୁଥିଲେ । ଏବେ ସରକାର ତରଫ ଲୋକ ବୋଲି ତାଙ୍କୁ କେହି ଖାତିର କରୁନାହାନ୍ତି । ସେ ସର ଉପାଧି ପାଇଛନ୍ତି । ବଙ୍ଗଳା ଲାଟ ସଭାର ମନ୍ତ୍ରୀ ହୋଇଛନ୍ତି । ମାସକୁ ପାଞ୍ଚହଜାର ଲେଖାଏଁ ଟଙ୍କା ଦରମା ପାଉଛନ୍ତି । ମାତ୍ର ଏସବୁ ସଙ୍ଗେ ସଙ୍ଗେ ଲୋକଙ୍କ ଭକ୍ତି ଓ ସମ୍ମାନ ହରାଇଛନ୍ତି । ଏଥିମଧ୍ୟରେ ସେ ବର୍ଦ୍ଧମାନକୁ ଏକ ପ୍ରଦର୍ଶନୀ ଖୋଲିବାକୁ ଯାଇଥିଲେ । ତାଙ୍କ ପହଞ୍ଚିବାରେ ସେ ସହରର ଦୋକାନବଜାର ସବୁ ବନ୍ଦ ହୋଇଗଲା । ସାଧାରଣ ଲୋକେ କେହି ତାଙ୍କ ପାଖକୁ ଆସିଲେ ନାହିଁ । ସୁର ବୋଲି ଆଉ ଏକ ସହରକୁ ବାନର୍ଜ୍ଜି ସାହେବ ଯିବାର କଥା ଶୁଣି ସେଠା ଲୋକେ ମଧ୍ୟ ଏହିପରି କରିଥିଲେ । ବଙ୍ଗଳାର ସ୍ୱଦେଶୀ ଆନ୍ଦୋଳନର ସୁରେନ୍ଦ୍ର-ନାଥ ଆଉ ଏବେ ନାହାନ୍ତି । ଦିନେ ବଙ୍ଗଳାରେ ସେ ବିନା ମୁକୁଟରେ ରାଜସମ୍ମାନ ପାଉ-ଥିଲେ । ଲୋକେ ସ୍ୱଇଚ୍ଛା ଏବଂ ଆଗ୍ରହରେ ତାଙ୍କ ଗାଡ଼ି ଟାଣି ନେଉଥିଲେ । ତାଙ୍କ ମୁଣ୍ଡରେ ଫୁଲର ମୁକୁଟ ଦେଇ ତାଙ୍କୁ ପୂଜା କରୁଥିଲେ । ଆଜି ସେହି ସୁରେନ୍ଦ୍ର ନାଥଙ୍କୁ କେହି ଟିକିଏ ଆଉ ଆଖିରେ ଚାହୁଁନାହାନ୍ତି । ଦିନ ଥିଲା ସୁରେନ୍ଦ୍ର ନାଥ କୌଣସି ସହରକୁ ଗଲେ ଲୋକଙ୍କର ଆନନ୍ଦ ଉତ୍ସାହର ସୀମା ରହୁ ନ ଥିଲା । କେତେ ଉତ୍ସବ ହେଉଥିଲା । ଆଜି ତାଙ୍କ ଆଗମନରେ ଲୋକସାଧାରଣଙ୍କର ଘୋର ନିରାନନ୍ଦ, ଘୋର ଅଶ୍ରଦ୍ଧା ଏବଂ ଅଭକ୍ତି । "ସେହି ଅର୍ଜୁନ ସେହି ପାର୍ଥ; ସେହି ଗାଣ୍ଡିବ ସେହି ହାତ ।" ଯେ ଦେଶ ବା ଜାତିକ ଗୁରୁତ୍ୱ ଦେଶ ଓ ଜାତି ତାଙ୍କୁ ଗୁରୁତ୍ୱ । ସେଥିରେ କିଛି ବିଚିତ୍ରତା ନାହିଁ । ଏପରି ଅଧୋଗତି ଅବଶ୍ୟ ଘୋର ଆକ୍ଷେପର ବିଷୟ ।

× × ×

ଆଗେ କୌଣସି ସହରକୁ ଲାଟସାହେବ ଗଲେ ସେଠାରେ ଗୋଟାଏ ଚହଳ ପଡ଼ି ଯାଉଥିଲା । ଏବେ ଲୋକେ ଲାଟସାହେବଙ୍କ ଆଗମନରେ ତେତେ ଉତ୍ସାହିତ ବା ସମ୍ମାନିତ

ବୋଧ କରୁନାହାନ୍ତି । ବିହାର ଓଡ଼ିଶାର ଲାଟ ଲର୍ଡ ସିଂହ ଏଥିମଧ୍ୟରେ ମୁଙ୍ଗେରକୁ ଯାଇ ଥିଲେ । ତାଙ୍କ ଆଗମନ ଯୋଗୁଁ ସେଠା ଲୋକେ ହରତାଲ କରିଥିଲେ, ଅର୍ଥାତ୍ ସମସ୍ତ ହାଟବଜାରର କାରବାର ବନ୍ଦ ହୋଇଥିଲା । ଲୋକଙ୍କର ନିତ୍ୟଦରକାରୀ ଜିନିଷପତ୍ର ଖରିଦ କରିବାକୁ ମିଳି ନ ଥିଲା । ଜିଲା ମେଜେଷ୍ଟର ସାହେବ ଏପରି ହେବ ବୋଲି ଆଗରୁ ଜାଣିଥିଲେ । ଦୋକାନପତ୍ର ବନ୍ଦ କଲେ ଦୋକାନୀମାନେ ଫୌଜଦାରୀ ସୁପର୍ଦ୍ଦ ହେବେ ବୋଲି ହୁକୁମ ଜାରି କରିଥିଲେ । ମାତ୍ର କେହି ଏ ହୁକୁମ ମାନିଲେ ନାହିଁ । ଲୋକଙ୍କ ମନ ଯେତେବେଳେ ପିତା ପଡ଼ିଯାଇଛି, ଏହିପରି ଧମକ ଚମକଦ୍ୱାରା କେତେଦିନ କାର୍ଯ୍ୟ ଚଳିବ ? ସତ୍ୟେନ୍ଦ୍ର ପ୍ରସାଦ ସିଂହ ଦିନେ ଦେଶର ଏକ ମୁଖ୍ୟନେତା ଥିଲେ । ସେତେବେଳେ ଦେଶ ତାଙ୍କୁ ଯେ ଆଦର ଅଭ୍ୟର୍ଥନା କରୁଥିଲା ଆଜି ଗୋଟିଏ ପ୍ରଦେଶର ଲାଟ ହୋଇ ସେ ତାହା ହରାଇଅଛନ୍ତି । ଆଗକାର ସମୟ ଥିଲେ ଦେଶୀ ଲୋକ ଲାଟ ହୋଇଛନ୍ତି ବୋଲି ଲୋକଙ୍କ ବୁକୁ କୁଣ୍ଢେମୋଟ ହୋଇ ଯାଉଥାଆନ୍ତା; ମାତ୍ର ଲୋକଙ୍କର ସେ ଭ୍ରମ ଭାଙ୍ଗିଛି । ଦେଶୀ ବିଦେଶୀରେ ବିଶେଷ କିଛି ତଫାତ୍ ନାହିଁ । ସରକାର ଶାସନକଳରେ ସର ମାଇକେଲ ଓଡ଼ାୟାର ଯାହା ଲର୍ଡ ସିଂହ ତାହା । ଲୋକେ ଏହା ବୁଝିସାରିଛନ୍ତି ।

× × ×

ଯମୁନାଦାସ ଦ୍ୱାରକାଦାସ ବଡ଼ଲାଟ ସଭାରେ ପଞ୍ଜାବ ବିଷୟରେ ଏକ ପ୍ରସ୍ତାବ ଆଗତ କରିଥିଲେ । ପଞ୍ଜାବ ଅତ୍ୟାଗ୍ରୁର ଭୋଗିଥିବା ଲୋକଙ୍କୁ ବା ସେମାନଙ୍କ ପରିବାର-ମାନଙ୍କୁ ଆର୍ଥିକ ସାହାର୍ଯ୍ୟ ଦିଆଯାଉ । ସରକାର ପଞ୍ଜାବ କାର୍ଯ୍ୟଲାଗି ଦୁଃଖପ୍ରକାଶ କରନ୍ତୁ । ଗୋରାକଳା ଭେଦ ରକ୍ଷା ନ ଯାଉ ଏବଂ ପଞ୍ଜାବ ଅତ୍ୟାଗ୍ରୁରର ଦୋଷୀମାନଙ୍କର ଦଣ୍ଡ ବ୍ୟବସ୍ଥା ହେଉ । ପ୍ରସ୍ତାବର ଏହି କେତୋଟି ଅଂଗ ମଧ୍ୟରୁ ଶେଷ କଥାଟି ଛଡ଼ା ଆଉସବୁ ମଞ୍ଜୁର କରାଗଲା । ଅନ୍ୟ ସବୁ ଅଙ୍ଗର ଯଥାର୍ଥରେ କିଛି ଅର୍ଥ ନାହିଁ । ଗୋରା କଳାର ଭେଦ ନ ରହିବା କଥା କେତେକାଳରୁ ଶୁଣାଯାଉଛି । ପଞ୍ଜାବ ଘଟନାଲାଗି ଦୁଃଖପ୍ରକାଶ ଏଥିପୂର୍ବରୁ ସରିଛି । ଏସବୁରେ ଦେବାନେବାକୁ ପଡ଼ୁ ନାହିଁ । ଆହତ ଲୋକଙ୍କୁ କିଛି ସାହାଯ୍ୟ ଦେଲେ ଯଦି ଲୋକେ ଶାନ୍ତ ହୋଇଯାଆନ୍ତି ତାହା କରିବାରେ ହାନି ନାହିଁ ବରଂ ଲାଭ ! ପୁଣି ସେ ସାହାଯ୍ୟ ଲାଗି ବିଲାତରୁ ଟଙ୍କା ଆସିବ ନାହିଁ । ତୁମରି ମାଲ୍ ତୁମକୁ ଦେଇ ଯେବେ ଦାତା ବୋଲାଇବାର ହେଲା ତାହା କିଏ ନ କରେ ? ମାତ୍ର ପଞ୍ଜାବ ଅତ୍ୟାଗ୍ରୁରର ଦୋଷୀ-ମାନଙ୍କ କଥା ପଡ଼ିଲା ବେଳକୁ ଉଦାରତା ଓ ଦାତବ୍ୟତାର ସ୍ରୋତ ଶୁଖିଗଲା । ସେଥିରେ

ଯେ ତାଏର ସାହେବ ଏବଂ ତାଙ୍କ ଜାତର ଅନ୍ୟମାନେ ପଡ଼ିଯିବେ, ସେମାନଙ୍କ ଶ୍ରୀଅଙ୍ଗରେ ଘାଉଡ଼ ଲଗିବ ନାହିଁ । ଶାସନ ସଂସ୍କାରରେ ନୂଆ କାଉନ୍‌ସିଲପାଇଁ ଯେଉଁମାନେ ନାଚୁଛନ୍ତି ଏହିପରି କେତେ ଘଟନା ଦେଖି କ୍ରମେ ସେମାନଙ୍କ ମନ ମାନିଯିବାକୁ ବେଶୀଦିନ ଲଗିବ ନାହିଁ ।

('ସମାଜ', ତା ୭ । ୩ । ୨୧)

——

# ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନ

ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲାପରି ବାଲେଶ୍ୱରରେ କଂଗ୍ରେସ ଆନ୍ଦୋଳନ କେବେ ନ ଥିଲା । ଅବଶ୍ୟ ବାଲେଶ୍ୱରବାସୀ କେହି କେହି କଂଗ୍ରେସରେ ଯାଇ ଯୋଗ ଦେଉଛନ୍ତି ସତ୍ୟ; ମାତ୍ର ସେ କାଣିଆଖିରେ କଜଳଗାର ପରି । ବାଲେଶ୍ୱରର 'ନାସନାଲ ସୋସାଇଟି'ବହୁଦିନରୁ ସାଧାରଣ ଅନୁଷ୍ଠାନ ହେଲେହେଁ ବର୍ତ୍ତମାନ ତାହା ଏକପ୍ରକାର ମୃତ । ବନ୍ୟା, ମ୍ୟାଲେରିଆ ଓ ଦୁର୍ଭିକ୍ଷରେ ବାଲେଶ୍ୱରବାସୀଙ୍କ ଅବସ୍ଥା ଶେଷ । ବାଲେଶ୍ୱର ସହର ଗଲା ଛଅବର୍ଷ ମଧ୍ୟରେ ଛାରଖାର ହୋଇଗଲାଣି । ମଫସଲର ଅବସ୍ଥା କହିଲେ ନ ସରେ । ବାଲେଶ୍ୱର ଜିଲ୍ଲା ଏକ ସମୟରେ ଓଡ଼ିଶାର ସାଧାରଣ କାର୍ଯ୍ୟକ୍ଷେତ୍ରରେ ବିଶେଷ ଶକ୍ତି ଏବଂ ଉଦ୍ୟମ ଦେଖାଇଥିଲା । ନବଯୁଗର କବି ରାଧାନାଥଙ୍କର ଜନ୍ମ ବାଲେଶ୍ୱରରେ । ସ୍ୱର୍ଗୀୟ ଫକୀରମୋହନ ବାଲେଶ୍ୱରରେ ରହି ଓଡ଼ିଆ ସାହିତ୍ୟର ରଥୀରୂପେ ଆଜୀବନ କାର୍ଯ୍ୟ କରିଥିଲେ । ସ୍ୱର୍ଗୀୟ ରାଜା ଶ୍ୟାମାନନ୍ଦ ଏବଂ ତାଙ୍କ ପୁତ୍ର ବୈକୁଣ୍ଠନାଥ ଓ ସାମନ୍ତ ଗଙ୍ଗାନାରାୟଣ ଏବଂ ତାଙ୍କ ପୁତ୍ର ରାଧାଚରଣ ସେସମୟର ରୀତିରେ ସାଧାରଣ କାର୍ଯ୍ୟରେ ଯୋଗ ଦେଇଥିଲେ । ଓଡ଼ିଆ ଓ ନବ ସମ୍ବାଦ ଏବଂ ସମ୍ବାଦବାହିକା ଆଜି ଲୁପ୍ତ ପ୍ରାୟ ହେଲେହେଁ ଦିନେ ବଡ଼ ତେଜରେ ଦେଶର ଅଭାବ ଅଭିଯୋଗମାନ ପ୍ରକାଶ କରୁଥିଲେ । ଆଜି ବାଲେଶ୍ୱରରେ ଏସବୁ କିଛି ନାହିଁ । ବାଲେଶ୍ୱର ନିର୍ଜୀବ । କେତେବର୍ଷ ତଳେ ଯେଉଁ ବାଲେଶ୍ୱରକୁ ଲୋକେ ଜଳ ହାଉଆ ପରିବର୍ତ୍ତନ କରିବାକୁ ଆସୁଥିଲେ ଆଜି ସେଠାକୁ କେହି ଯିବାକୁ ସାହସ କରୁନାହାନ୍ତି । ନିରୋଗ ହୋଇ ଗୋଟାଏ ଘର ନାହିଁ । ଅନେକ ସ୍ଥାନରେ ଲୋକଙ୍କୁ ଅଶୌଚ ଛାଡ଼ୁ ନାହିଁ । ଏ ଅବସ୍ଥାରେ ରାଜନୈତିକ ଆନ୍ଦୋଳନ କରିବ କିଏ ? ସାଧାରଣ ଶକ୍ତି ବା ବିକାଶ ପାଇବ କପରି ? ଖୁସିର କଥା ଏତେ ଅବସ୍ଥାରେ ପଡ଼ିଲେ ସୁଦ୍ଧା ବାଲେଶ୍ୱରର ପ୍ରକୃତ ଓ ସ୍ୱାଭାବିକ ଶକ୍ତି ଏକାବେଳକେ ନଷ୍ଟ ହୋଇନାହିଁ । ଗଲା ସପ୍ତାହରେ ସର୍ବପ୍ରଥମେ କଂଗ୍ରେସ ଆନ୍ଦୋଳନ ଏ ଜିଲ୍ଲାରେ ଆରମ୍ଭ ହୁଏ । ଏଥର ସମାଜରେ ଏ ସମ୍ପର୍କୀୟ ସଭାସମିତିର ଯେ ବିବରଣ ପ୍ରକାଶିତ ହୋଇଅଛି, ସେଥିରୁ ସାଧାରଣ ଲୋକଙ୍କର କଂଗ୍ରେସ ପ୍ରତି ଉତ୍ସାହ ଏବଂ ଆଗ୍ରହ ଜଣା ପଡ଼ିବ । ଓକିଲ, ମୁକ୍ତିଆର, ଦୋକାନୀ, କୃଷକ, ହିନ୍ଦୁ, ମୁସଲମାନ, ଓଡ଼ିଆ, ବଙ୍ଗାଳୀ,

ମାରଓ୍ବାଡ଼ି ଏବଂ ଗୁଜରାଟୀ ସବୁଶ୍ରେଣୀର ଲୋକେ ଯୋଗ ଦେଇଅଛନ୍ତି ଏବଂ ସଭ୍ୟ ଶ୍ରେଣୀରେ ନାମ ଲେଖାଇ ଅଛନ୍ତି । କଂଗ୍ରେସ ଆନ୍ଦୋଳନରେ ଆଉ ଏଣିକି ଆବେଦନ ନିବେଦନର କଥା ନାହିଁ । ଦେଶୀ ଲୋକଙ୍କୁ ଅଧିକ ଚାକିରି ଦିଆଯାଉ । ଗୋରାକଲାର ସମାନ ବିଚାର କରାଯାଉ କିମ୍ବା ଗୋଟାଏ ଖରାପ ଆଇନ ଉଠାଇ ଦିଆଯାଉ ବୋଲି ସରକାରଙ୍କଠାରେ ଅଳି ବା ଆପତ୍ତି କରାଯାଉନାହିଁ । ଏ ଦେଶ ଲୋକେ ଏବେ ବୁଝିଲେଣି ଯେ ଭିକ ମାଗିଲେ ପେଟ ପୂରିବ ନାହିଁ । ଗୋଟି ଗୋଟି କରି ଅଭାବ ମେଣ୍ଟାଇବାକୁ ବସିଲେ ଅଭାବ ଅଭିଯୋଗ ଶେଷ ହେବ ନାହିଁ । ଏବେ ସରକାରଙ୍କ ଆଶା ତୁଟାଇ ନିଜ ଉପରେ ନିର୍ଭର କରିବାକୁ ହେବ । ଅନ୍ତରୁ ରୋଗ ନ ମଲେ ଆମ ବ୍ୟାଧି ବରାବର ଲାଗି ରହିଥିବ । ତେଣୁ କଂଗ୍ରେସ ଏବେ ଆଉ ଦେଶୀ ଲୋକଙ୍କପାଇଁ ଚାକିରି ଖୋଜୁ ନାହାନ୍ତି । ଦେଶ କପଡ଼ା ରହିବ ସେଥିରେ ଲୋକେ କପଡ଼ା ଖାଇପିଇ ବଞ୍ଚିବେ ଏବଂ ମନୁଷ୍ୟ ପରି ବଞ୍ଚିବେ ଏହାହିଁ ବର୍ତ୍ତମାନ କଂଗ୍ରେସର ଉଦ୍ୟମ । ଏବେ ବଙ୍ଗାଳୀ, ଓଡ଼ିଆ, ପଞ୍ଜାବୀ, ତେଲଙ୍ଗା, ମାରଓ୍ବାଡ଼ି, ମୁସଲମାନ, ଭାରତବାସୀ ସମସ୍ତେ ବୁଝିପାରିଛନ୍ତି ଯେ ସେମାନଙ୍କର ସମସ୍ତଙ୍କର ଦଶା ସମାନ । ଦେଶରେ କେତେଟା ଇସ୍କୁଲ ବସିଲେ ବା କେତେଟା ପିଲା ବୃତ୍ତି ପାଇଲେ, କେତେଜଣ କାଉନ୍‌ସିଲକୁ ଗଲେ ଅଥବା କେତେ ଲୋକ ବଡ଼ ବଡ଼ ଚାକିରି ପାଇଲେ ଏ ଦଶା ଘୁଞ୍ଚିବ ନାହିଁ । ଏତେ ଦିନଯାଏ ଏହିସବୁ ସାମାନ୍ୟ ସାମାନ୍ୟ ବିଷୟ ଘେନି ଭିନ୍ନ ଭିନ୍ନ ପ୍ରଦେଶ ଓ ସମ୍ପ୍ରଦାୟ ମଧ୍ୟରେ ଯେ ବିବାଦ ଓ ମନାନ୍ତର ଚାଲି ଆସୁଥିଲା ଅସହଯୋଗ ସୁଅରେ ତାହାସବୁ ଭାସି ଯାଇଅଛି । ପାଠୁଆ, ଅପାଠୁଆ, ବଡ଼ଲୋକ, ସାନଲୋକ ଏବେ ସମସ୍ତେ ଅଣ୍ଟାଭିଡ଼ି କଂଗ୍ରେସରେ ଯୋଗଦେବାକୁ ପ୍ରସ୍ତୁତ ହୋଇ ଅଛନ୍ତି । ଯଥାର୍ଥରେ ଏହି ଦୁଇ ତିନିମାସ ମଧ୍ୟରେ କଂଗ୍ରେସ କଥା ଦେଶର ଶିରାପ୍ରଶିରାରେ ଯେପରି ଭେଦିଛି ଗଲା ପଞ୍ଚତିଂଶ ବର୍ଷ ମଧ୍ୟରେ ସେପରି ହୋଇ ନ ଥିଲା । ଏ ମାହେନ୍ଦ୍ର ମୁହୂର୍ତ୍ତରେ ଓଡ଼ିଶାର ନିଦ ଭାଙ୍ଗି ଅଛି, ବଡ଼ ଆଶାର କଥା । ଆମ୍ଭମାନଙ୍କର ସମ୍ବାଦଦାତା ଲେଖିଅଛନ୍ତି, କଂଗ୍ରେସ କମିଟି ବସାଇବାଲାଗି ଭଦ୍ରଖରେ ଯେ ସଭା ହୋଇଥିଲା ସେଥିରେ ପନ୍ଦର ମିନିଟ ମଧ୍ୟରେ ପ୍ରାୟ ଦେଢ଼ଶ ଲୋକ ସଙ୍ଗେ ସଙ୍ଗେ ଫିସ୍ ଦାଖଲ କରି ମେମ୍ବର ଶ୍ରେଣୀଭୁକ୍ତ ହୋଇଥିଲେ । ଅନ୍ୟ କାର୍ଯ୍ୟ ଯୋଗୁଁ ଯେବେ ନାମ ଲେଖା ବନ୍ଦ କରାଯାଇ ନ ଥାନ୍ତା, ତେବେ ଘଣ୍ଟାକମଧ୍ୟରେ ସହସ୍ରାଧିକ ଲୋକ ମେମ୍ବର ହୋଇଥାନ୍ତେ ବୋଲି ଅନୁମାନ ହୁଏ । ଦେଶରେ ଏହି ଯେ ଜାତୀୟ ଆନ୍ଦୋଳନ ପ୍ରତି ମମତା ଓ ଉତ୍ସାହ ଦେଖା ଯାଉଅଛି ଏହା ଅସହଯୋଗ ନୀତିର ଫଳ ନୁହେଁ କି ? ଆମ୍ଭେମାନେ ଆଶାକରୁଁ ଏ ଆନ୍ଦୋଳନ କ୍ରମେ କ୍ରମେ ଗ୍ରାମମାନଙ୍କରେ ପ୍ରବେଶ କରିବ । ଅନ୍ୟାନ୍ୟ ପ୍ରଦେଶର

ଗ୍ରାମମାନଙ୍କରେ ଖୁବ୍ ଚହଳ ପଡ଼ିଲାଣି । ଓଡ଼ିଶାରେ ମଧ୍ୟ ଆରମ୍ଭ ହେଲାଣି । କୌଣସି ପ୍ରଦେଶରେ ଏପରି ଗ୍ରାମ ରହିବ ନାହିଁ, ଯହିଁରେ କି କଂଗ୍ରେସ କମିଟି ନ ଥିବ ଏବଂ କୌଣସି ଗ୍ରାମରେ ଏପରି ପରିବାର ରହିବେ ନାହିଁ ଯହିଁରେ କି ଖଣ୍ଡେ ଦୁଇଖଣ୍ଡ ଅରଟ ଚଳୁ ନ ଥିବ । ଏହା ଯେଉଁଦିନ ହେବ ସେହିଦିନ ଭାରତବାସୀଙ୍କ ହାତେ ହାତେ ସ୍ୱରାଜ୍ୟ ମିଳିବ । ସେହିଦିନ ଆଉ ବେଶୀ ବିଳମ୍ବ ନୁହେଁ ।

('ସମାଜ', ତା ୫ । ୩ । ୨୧)

---

# ଅବକାରୀରେ ଅସହଯୋଗ

ଯେଉଁଠାରେ ସ୍ଥାନୀୟ ସରକାରୀ ହାକିମମାନେ ବେଶୀ କଡ଼ା ସେହିଠାରେ ଅସହଯୋଗନୀତିର ବେଶୀ ଜୟ । ମାନଭୂମ ଜିଲ୍ଲାର ଡେପୁଟି କମିଶନର ଅସହଯୋଗ ବିରୁଦ୍ଧରେ ଭାରି ଆଣ୍ଠୁରେ ଅଣ୍ଟା ଭିଡ଼ିଛନ୍ତି । ଓକିଲଖାନାରେ ଅସହଯୋଗ କଥା ପକାଇବାକୁ ନିଷେଧ ଆଜ୍ଞା ଜାରିକରି ସେ କ୍ଷାନ୍ତ ନାହାନ୍ତି । ଏଥି ମଧ୍ୟରେ ସେ ଜିଲ୍ଲାରେ ଅବକାରୀ ଦୋକାନମାନ ନିଲାମ ହୋଇଅଛି, ନିଲାମର ଆଗଦିନ ପୁରୁଲିଆରେ ମାଦକ ନିବାରଣ ବିଷୟରେ ଏକ ସଭା ହେବାର କଥା ଥିଲା । ଡେପୁଟି କମିଶନର ଫୌଜଦାରୀ କାର୍ଯ୍ୟବିଧି ଆଇନର ୧୪୪ ଧାରା ଅନୁସାରେ ଏ ସଭା ବନ୍ଦ କଲେ । ଅବକାରୀ ଡେପୁଟୀ ବାବୁ ନିଲାମ ଡାକିବା ଲୋକ କେତେ ଜଣଙ୍କୁ ନିଜ ବଙ୍ଗଳାକୁ ଆମନ୍ତ୍ରଣ କରି ଜଳଖିଆ ଦେଇ ବହୁତ ବୁଝା ସୁଝା କରାଇ ଥିଲେ । ଏତେ କଲେ ସୁଦ୍ଧା ଅବକାରୀ ନିଲାମ ସମୟରେ ସାମାନ୍ୟ କେତେଜଣ ଉପସ୍ଥିତ ଥିଲେ । କିନ୍ତୁ ବୋଲି କୌଣସି ପ୍ରକାରେ ସେମାନଙ୍କ ନାମରେ ନିଲାମ କରାଗଲା । ଏହି ନିଲାମ ଧରିବା ଲୋକଙ୍କ ସଙ୍ଗେ ପୋଲିସ ପହରା ଦିଆଯାଇ ସେମାନଙ୍କୁ ଯେ ଯାହା ଘରକୁ ପଠାଇ ଦିଆଗଲା । ତହିଁ ଆରଦିନ ନିଲାମ ରଦ୍ କରିବା କାରଣ ଏମାନେ ଯାଇ ପ୍ରାର୍ଥନା କରିଛନ୍ତି । ଜିଲ୍ଲାର କେହି ନିଶା ଖାଇବେ ନାହିଁ କି ଦୋକାନରୁ ନିଶା ଜିନିଷ କିଣିବେ ନାହିଁ । ତାହା ହେଲେ ପଟ୍ଟାଦାରମାନଙ୍କ ଜମା ଉଠିବା ଅସମ୍ଭବ । ସେମାନେ ବୁଝି ପାରୁଛନ୍ତି ଯେ "ହାତ ଓଠ ଧରି ଅଲତା ଦେଇ, ବେଦୀରେ ବସାଇ କଉଡ଼ି ନେଇ" ନୀତିରେ ଅବକାରୀ ହାକିମମାନେ ତାଙ୍କୁ ଶେଷକୁ ହରକତ କରିବେ । ତେଣୁ ସମସ୍ତ ବିଷୟ ଜଣାଇ ନିଲାମ ରଦ୍ କରିବା କାରଣ ସେମାନେ ଉପରିସ୍ଥ ହାକିମଙ୍କଠାରେ ଆପତ୍ତି କରିଛନ୍ତି ।

('ସମାଜ', ତା ୧୨ । ୩ । ୨୧)

———

# ଅସହଯୋଗନୀତି ବିଶୁଦ୍ଧ ଗଙ୍ଗାଜଳ

ଏ ମାସ ୮ ତାରିଖ ପୁରୀ ଜିଲ୍ଲା ମେଜେଷ୍ଟର ଅସହଯୋଗନୀତି ବିରୁଦ୍ଧରେ ଏକ ସଭା ବସାଇଥିଲେ । ସହର ଓ ଆଖପାଖ ମଫସଲର କେତେଜଣ ଜମିଦାର, ମହନ୍ତ ଓ ମହାଜନଙ୍କୁ ଏଥିକୁ ଡାକରା ହୋଇଥିଲା । ବିହାର ଓଡ଼ିଶା ସରକାରଙ୍କ ସରକୁଲାର ଅନୁସାରେ ଧନୀ ଓ ଜମିଦାରମାନଙ୍କୁ ହାତକରି ଅସହଯୋଗ ଆନ୍ଦୋଳନ ଦବାଇବାର ଏହା ଉଦ୍ୟମ । କେତେଦିନ ତଳେ ଖୋର୍ଦ୍ଧା ସବ୍‌ଡିଭିଜନାଲ ଅଫିସର ତାଙ୍କ ଇଲାକାର ସରବରାକାରମାନଙ୍କୁ ଡକାଇ ଏହିପରି ଉଦ୍ୟମ କରିଥିଲେ । ଅନ୍ୟାନ୍ୟ ଜିଲ୍ଲା ଓ ସବ୍‌ଡିଭିଜନ ହାକିମମାନେ ମଧ୍ୟ ଏହିପରି କରୁଥିବେ । ସେମାନଙ୍କ ଗୁରି କଅଣ ? ସେମାନେତ ଗୋଟାଏ କଳରେ କାମ କରନ୍ତି । କଳ ଯେପରି ମୋଡ଼ା ହେଲା ସେମାନେ ସେହିପରି ଗ୍ଲଲେ । ଦୁଃଖର କଥା ଜିଲ୍ଲା ଓ ସବ୍‌ଡିଭିଜନ ହାକିମମାନେ ଏହି ଯେ ସଭାମାନ କରୁଛନ୍ତି, ସେଥିରେ କାର୍ଯ୍ୟାବଳୀ ପ୍ରକାଶ୍ୟ ଭାବରେ ହେଉନାହିଁ । ଯେଉଁସବୁ ବିଷୟବନ୍ତ ଲୋକ ଏ ସଭାମାନଙ୍କୁ ଡକା ହେଉଛନ୍ତି ସେମାନଙ୍କ କାନରେ କି ମନ୍ତ୍ର ଫୁଙ୍କା ଯାଉଛି ତାହା ଆମ୍ଭେମାନେ କହି ନ ପାରୁ । ମାତ୍ର ହାକିମମାନେ ଜାଣି ବିଶ୍ୱାସ କରନ୍ତି ଯେ ଏହି ସବୁ ଲୋକେ ସ୍ୱରାଜ୍ୟ ପାଇବାକୁ ଇଚ୍ଛା କରନ୍ତି ନାହିଁ । ଜମିଦାର ମହାଜନମାନଙ୍କୁ ଆଉ କେତେବେଳେ ସରକାରଙ୍କର ଡକରା ପଡ଼େ ନାହିଁ । କେବଳ ଗୃନ୍ଦା ଉଠାଇବା ଦରକାର ହେଲେ, କୁଲି ଯୋଗାଇବା ଲୋଡ଼ା ପଡ଼ିଲେ ବା ଅନ୍ୟ କୌଣସି ପ୍ରକାର ସାହାଯ୍ୟ ପ୍ରୟୋଜନ ହେଲେ ଏମାନଙ୍କୁ ତଲବ । ଏମାନେ ଯେ ପାଆନ୍ତି ବା ଯନ୍ତ୍ର କାଞ୍ଚିତ ସାହାଯ୍ୟ କରନ୍ତି ତାହା କଅଣ ମନ ସୁଖରେ ? କେବଳ ଟଣା ଓଟରା ବା ଡର ଭୟରେ ଯାହା କରନ୍ତି । ଲୋକେ ବେଶ୍ ଜାଣିଲେଣି ଯେ ସରକାର ଭେଦ ନୀତିରେ ଏ ରାଜ୍ୟ ଚଳାଉଛନ୍ତି । ମୋ ପିଠି ଆଉଁସି ମୋ ଭାଇ ପିଠିରେ ବିଧା ମାରୁଛନ୍ତି । ଦରକାର ପଡ଼ିଲେ କେତେ ଜମିଦାର ଅନ୍ୟାନ୍ୟ ଧନୀ ଲୋକଙ୍କୁ ଚପାଇବାକୁ ବ୍ୟବସ୍ଥା ହେଉଛି । ପୁଣି ଅନ୍ୟବେଳେ ଗରିବ ପ୍ରଜାଙ୍କୁ ଦବାଇବା ଲାଗି ସେମାନଙ୍କୁ ନଜର କରି ନିଆଯାଉଛି । ମୋଟକଥା ପ୍ରଜାଶକ୍ତି ଯେପରି କେବେ ଏ ଦେଶରେ ଜାଗ୍ରତ ନ ହୁଏ କିମ୍ବା ଜମିଦାର ବା ଅନ୍ୟ କୌଣସି କ୍ଷମତାଶାଳୀ ଶ୍ରେଣୀର ବଳପରାକ୍ରମ ନ ରହେ । ଏଥିପ୍ରତି ସବୁବେଳେ ନଜର ରଖି କାର୍ଯ୍ୟ କରାଯାଉଛି । ଏହି ନୀତିରେ ବାଘ ବକରୀ ଏକା ତୁଠରେ ପାଣି



ପିଉଛନ୍ତି । ମାତ୍ର ଆମ୍ଭେମାନେ ପଚାରୁ ଏ ଦେଶରେ ବାଘ ଅଛନ୍ତି କି ନା ସବୁ ବକଷ୍ଣ ହୋଇ ଗଲେଣି । ଆମଦେଶର ଜମିଦାର ଓ ରଜାମାନେ ଆଗେ ପ୍ରଜାମାନଙ୍କୁ ନିଜର ପୁଅପରି ଦେଖୁଥିଲେ । ଧୋଇ ମରୁଡ଼ି ହେଲେ ବା ପ୍ରଜା ଉପରେ ଅନ୍ୟ କୌଣସି ପ୍ରକାର ବଜ୍ରପାତ ହେଲେ କର ଛାଡ଼ି ଦେଉଥିଲେ ଏବଂ ନାନା ଭାବରେ ସାହାଯ୍ୟ କରୁଥିଲେ । ପ୍ରଜାର ଝିଅପୁଅ ବାହା ବ୍ରତରେ ମଧ୍ୟ ଜମିଦାର ଆପଣାର ବନ୍ଧୁତା ଓ ମମତା ଦେଖାଉଥିଲେ । ଆଜି ଏ ସବୁ ଭାବ କାହିଁ ? ଇଂରେଜ ସରକାରଙ୍କଠାରୁ ଯେ ଢଙ୍ଗ ଶିଖିଛନ୍ତି, ଜମିଦାରମାନେ ସେହିପରି କରୁଛନ୍ତି । ଧୋଇ ମରୁଡ଼ିରେ ପ୍ରଜା ଉଚ୍ଛନ୍ନ ହେଲେ ସୁଦ୍ଧା ସରକାରଙ୍କର ଖଜଣାଛାଡ଼ ନାହିଁ । ଜମିଦାରମାନେ ଛାଡ଼ିବେ କିପରି ? ଇଂରେଜ ସରକାର ବାଟ ଘାଟରେ ଟିକସ ବସାଇ ଯେପରି ଆଦାୟ କରୁଛନ୍ତି, ଜମିଦାରମାନେ ମଧ୍ୟ ସେହିପରି ଫନ୍ଦିରେ ପ୍ରଜାଙ୍କୁ ଶୋଷୁଛନ୍ତି । ରାଜା ବା ଜମିଦାର ଦିଲ୍ଲୀ ଦରବାରକୁ ଯିବେ ଯୁଦ୍ଧରେ ସରକାରଙ୍କୁ ଟଙ୍କା ସାହାଯ୍ୟ କରିବେ, ସେ ସବୁ ଗରିବ ପ୍ରଜାଙ୍କଠାରୁ ଆଦାୟ ହେବ । କାହାଘରେ ସୋରିଷ ଫୁଟିଲେ ସରକାରଙ୍କୁ ତାହା ଜଣାଯାଉଛି, ଜମିଦାରଙ୍କର ଏ କାଣ୍ଡ କାରଖାନା କି ତାଙ୍କୁ ଗୋଚର ହେଉନାହିଁ । ଏ ସବୁ କ୍ଷେତ୍ରରେ ଚେଇଁ ଶୋଇବାକୁ ହୁଏ । ଏ ରାଜତ୍ୱରେ ଅଧିକାଂଶ ଜମିଦାରଙ୍କ ବ୍ୟବହାର ଯେପରି ହୋଇଛି ସେଥିରେ ପ୍ରଜାମାନଙ୍କର ସେମାନଙ୍କଠାରୁ ସ୍ନେହ ଆଦର ଆଦୌ ନାହିଁ । ପ୍ରଜାମାନେ ମୂର୍ଖ, ଦରିଦ୍ର; କେବଳ ଜୋର ଜୁଲୁମକୁ ଡରି କରି ଥାଆନ୍ତି । ଅତ୍ୟାଚାର ଭୋଗିଲେ ସୁଦ୍ଧା ପ୍ରତିକାର ପାଇବାର ଉପାୟ ନାହିଁ । ଇଂରେଜ ବିଚାର ଅଦାଲତରେ ନ୍ୟାୟ ବିକା ହୁଏ । ଯାହାର ଟଙ୍କା ଅଛି ଏବଂ କ୍ଷମତା ଅଛି ନ୍ୟାୟ, ଧର୍ମ, ସତ୍ୟ, ସବୁ ତାହାର ପକ୍ଷରେ । ଫଳରେ ଗରିବ ପ୍ରଜା ମାଡ଼ଖାଇ କାନମୁଣ୍ଡା ଆଉଁସି ଘରେ ରହେ । ଜମିଦାର ବା ମହାଜନ ସର୍ବସ୍ୱ ନେଇ ଗଲେ ବି ତାହାର କହିବାକୁ ଜୋର ନାହିଁ । ଏହି ପ୍ରକାର ଦୁଃଖ ଦୁର୍ଗତି ଏ ରାଜତ୍ୱରେ ବହୁଦିନ ଭୋଗି ଭୋଗି ଭାରତୀୟ ପ୍ରଜାଙ୍କର ଇଂରେଜ ସରକାରଙ୍କଠାରେ ବିଶ୍ୱାସ ନାହିଁ କି ଆପଣା ରାଜା ବା ଜମିଦାର ଉପରେ ବିଶ୍ୱାସ ନାହିଁ । ଆଜି ଲୋକ ସାଧାରଣ ମହାତ୍ମାଗାନ୍ଧିଙ୍କି ଏତେ ମାନିଛନ୍ତି, ତାହାର କାରଣ କଣ ? ସେମାନେ ବୁଝିଛନ୍ତି ଯେ ଗାନ୍ଧି ଯେ ବାଟ ଦେଖାଉଛନ୍ତି ସେ ବାଟରେ ଗଲେ ଏ ଚିର ଅତ୍ୟାଚାରରୁ ମୁକ୍ତି ମିଳିବ । ସେମାନେ ଖାଇବାକୁ ଓ ପିନ୍ଧିବାକୁ ପାଇବେ । ଲୋକଙ୍କର ଏବେ ଜୀବନ ଉପରେ ପଡ଼ିଛି । ଆତ୍ମରକ୍ଷା ଲାଗି ସେମାନେ ଅସହଯୋଗନୀତି ଧରିଛନ୍ତି । ଏହା ଛଡ଼ାଇବା ଲାଗି ସେମାନଙ୍କ ଉପରେ ଜୋର ଜୁଲମ କଲେ ମନ୍ଦ ଛଡ଼ା ଭଲ ଫଳ ହେବ ନାହିଁ । ନାହିଁ, ସେମାନଙ୍କୁ ବୁଝାଇ ସୁଝାଇ ଅସହଯୋଗନୀତି

ଛଡ଼ାଇବାକୁ ହେଲେ ଜମିଦାରମାନେ କଅଣବୋଲି ବୁଝାଇବେ ? ସେମାନେ କଣ କହିବେ କପାଗୃଷ କରନାହିଁ, ଅରଟରେ ସୂତା କାଟ ନାହିଁ ? ଦେଶୀ ଲୁଗା ନ ପିନ୍ଧି ବିଲାତିଲୁଗା ପିନ୍ଧ ନିଜ ଭିତରେ ମାମଲା ମକଦ୍ଦମା ନିଷ୍ପତ୍ତି ନ କରି ସରକାରଙ୍କୁ କୋର୍ଟ ଫିସ୍ ଦେଇ ହାଇକୋର୍ଟ ଯାଏ ଯାଇ ହବସ୍ୱାନ୍ତ ହୁଅ; ମାରପିଟ କରି ପୋଲିସଙ୍କୁ ଟଙ୍କା ଦିଅ ? ମେଞ୍ଚେଷ୍ଟରରେ ମାମଲି କର; ଘରଦ୍ୱାର ବିକ ଅଫିମ ଗଞ୍ଜେଇ ମଦ ଖୁବ୍ ଖାଅ ଯେତେ ଟଙ୍କା ପଡ଼ୁ ପଛକେ ସରକାରି ସ୍କୁଲରେ ପିଲଙ୍କୁ ପାଠ ପଢ଼ାଇ ଅମନୁଷ୍ୟ କର, ନିଜ ଜାତୀୟ ବିଦ୍ୟା ପଢ଼ାଅ ନାହିଁ ? ଏହାସବୁ କହିଲେ ଲୋକେ ଶୁଣିବେ ତ ? ଏ ଭଳି ଉପଦେଶ ଦେବାକୁ କାହା ପାଟି ଫିଟିବ ? ଆମ୍ଭେମାନେ କହୁଁ ଅସହଯୋଗ-ନୀତିରେ ଦୋଷ ଦେବାଭଳି କିଛି ନାହିଁ । ଏହା ସ୍ୱଚ୍ଛ ଗଙ୍ଗାଜଳ । ବିଷ୍ଣୁଙ୍କ କୃପାରୁ ବହୁଅଛି । ମହାତ୍ମାଗାନ୍ଧୀ ଭଗୀରଥ ରୂପେ ଏହାକୁ ଚଳାଉ ଅଛନ୍ତି । ଏ ମହାସ୍ରୋତର ଗତିରୋଧ କରିବାର କାହାର କ୍ଷମତା ନାହିଁ । ଗ୍ରାମେ ଗ୍ରାମେ ଘରେ ଘରେ ଏହା ପ୍ରବାହିତ ହୋଇ ପ୍ରଜାସାଧାରଣଙ୍କର ଦୁଃଖ ସନ୍ତାପ ଶାନ୍ତ କରିବ ।

('ସମାଜ', ତା ୧୨ । ୩ । ୨୧)

---

# ମନ୍ତ୍ରୀଙ୍କ ହାତେ ମଲ୍‌କଙ୍କଡ଼ା ଲେଉଟୁ ନାହିଁ

ଶାସନସଂସ୍କାର ନିୟମ ଅନୁସାରେ ଦେଶୀ ଲୋକଙ୍କ ମଧ୍ୟରୁ କେତେଜଣ ମନ୍ତ୍ରୀ ହୋଇଛନ୍ତି । ସରକାର କହନ୍ତି କି ଲୋକମାନଙ୍କୁ ଏହା ଗୋଟାଏ ବଡ଼ ଅଧିକାର ଦିଆଯାଇଛି । ଏ ମନ୍ତ୍ରୀମାନେ ମାସକୁ ପାଞ୍ଚହଜାର ଲେଖାଏଁ ମୋଟା ଦରମା ପାଉଛନ୍ତି । ଏହି ଅର୍ଥ ଏବଂ ଅଧିକାର ଲୋଭରେ କେତେ ଲୋକ କାଉନ୍‌ସିଲ୍‌କୁ ମେମ୍ବର ହୋଇ ଯାଇ-ଥିବା ଅସମ୍ଭବ ନୁହେଁ । ମାତ୍ର କାର୍ଯ୍ୟରେ ଦେଖାଯାଉଅଛି ଯେ ଏ ମନ୍ତ୍ରୀମାନଙ୍କ ହାତେ ମଲ୍‌କଙ୍କଡ଼ା ଲେଉଟାଇବାର କ୍ଷମତା ନାହିଁ । ବିହାର ଓଡ଼ିଶାର ଜଣେ ମନ୍ତ୍ରୀ ମାନ୍ୟବର ମଧୁସୂଦନ ଦାସ ନିଜ ମୁହଁରେ ଏକଥା କହି ସାରିଲେଣି । ଆମ୍ଭେମାନେ ଆଦ୍ୟରୁ ଏହା କହି ଆସୁଅଛୁଁ । ଆଗେ ପୋଲିସ, ଜେଲ୍ ଓ ବିଚାର ବିଭାଗ ପ୍ରଭୃତିର ଆୟବ୍ୟୟ ନିରୂପଣ ହୋଇଯିବ । ସରକାରଙ୍କ କାର୍ଯ୍ୟକାରୀ ମେମ୍ବରମାନେ ଏହା ସ୍ଥିର କରିବେ । ପରେ ଯାହା ନ ଖାଇବେ ଝିଅ, ତାହା ଜ୍ୱାଇଁଙ୍କ ପତରେ ଦିଅ । ଯାହା କିଛି ରାଜସ୍ୱ ବଳିଲା ଶିକ୍ଷା ସ୍ୱାସ୍ଥ୍ୟ ଆଦିରେ ଖର୍ଚ୍ଚ କରିବା ଲାଗି ଦିଆଯିବ । କାଉନ୍‌ସିଲ୍‌ର ବେସରକାରୀ ସଭ୍ୟମାନେ ମନ୍ତ୍ରୀଙ୍କି ଦୋଷିଲେ ସେ ଗରିବ ନାଚାର । ଯଥାର୍ଥରେ ବର୍ଷର ଆୟବ୍ୟୟ ନିରୂପଣରେ ମନ୍ତ୍ରୀମାନଙ୍କର ବିଶେଷ ହାତ ଅଛି ବୋଲି କୁହାଯାଇ ନ ପାରେ । ପୁଣି ସେମାନେ ବେତନ ଖାଇ ସରକାରଙ୍କ କଳରେ ଜଡ଼ିତ ହୋଇ ଯାଇଥିବାରୁ ନିଜତ୍ୱ ଦେଖାଇ କାର୍ଯ୍ୟ କରିବା ସେମାନଙ୍କ ପକ୍ଷେ ସହଜ ନୁହେଁ । ନୂତନ କାଉନ୍‌ସିଲ୍‌କୁ ଯେଉଁମାନେ କଳ୍ପଦ୍ରୁମ ବୋଲି ମନେ କରିଥିଲେ ବୋଧହୁଏ ସେମାନଙ୍କ ଭ୍ରମ ଏଥିମଧ୍ୟରେ ଭାଙ୍ଗିଯିବଣି । ପ୍ରତ୍ୟେକ ପ୍ରାଦେଶିକ କାଉନ୍‌ସିଲ ମେମ୍ବରମାନେ ବଜେଟ ବିଷୟରେ ବୁଝି ବାହୁନିଛନ୍ତି । ମାତ୍ର ଯଥାପୂର୍ବ ତଥା ପର । ସହଯୋଗରୁ ଆଉ କିଛି ଅଧିକ ଫଳ ଆଶାକରାଯାଏ କି ?

('ସମାଜ' ତା ୧୯ । ୩ । ୨୧)

# ତର ରାଜ୍ୟପାଇଁ ଶୁଭ ନୁହେଁ

ଏଥିମଧ୍ୟରେ ଅସହଯୋଗ ନୀତି ଓଡ଼ିଶା ମଫସଲର କେତେକ ସ୍ଥାନରେ ପ୍ରଗୃହୀତ ହୋଇଅଛି । ଅନେକ ଗ୍ରାମରେ କମିଟି ସ୍ଥାପିତ ହୋଇଅଛି । ଗ୍ରାମପଞ୍ଚାୟତ ବସିଗଲାଣି । ମାମଲା ମୋକଦ୍ଦମା ମଧ୍ୟ ଲୋକେ ଆପଣା ଆପଣା ମଧ୍ୟରେ ଭାଙ୍ଗୁଛନ୍ତି । ମଦ, ଗଞ୍ଜାଇ, ଅଫିମ୍ ଖାଇବା କେତେ ଯାଗାରେ ନିଷେଧ ହୋଇଅଛି । ଏସବୁ କାର୍ଯ୍ୟରେ କୌଣସିଠାରେ ଶାନ୍ତିଭଙ୍ଗ ହୋଇନାହିଁ କିମ୍ବା ହେବାର କାରଣ ନାହିଁ । ତଥାପି ସ୍ଥାନେ ସ୍ଥାନେ କେହି ସବ୍‌ଡିଭିଜନାଲ ଅଫିସର, ଅଧିକାଂଶ ସ୍ଥାନରେ ପୋଲିସ କର୍ମଚାରୀ ଲୋକଙ୍କୁ ଧମକ ଦେବାକୁ ଆରମ୍ଭ କରିଥିବାର ଖବର ମିଳୁଅଛି । ଏମାନଙ୍କ ଧମକର ଉଦ୍ଦେଶ୍ୟ କଣ ? ଲୋକେ ଦେଶୀ ଲୁଗା ନ ପିନ୍ଧି ବିଲାତି ଲୁଗା ପିନ୍ଧିବେ, ନିଶା ଖୁବ୍ ଖାଇବେ, ମାମଲା ମକଦ୍ଦମା ବେଶି କରିବେ—ଏହିସବୁ ପ୍ରବର୍ତ୍ତନା ଦେଇ ଏହି ସୂତ୍ରରେ ଲୋକଙ୍କଠାରୁ ଅର୍ଥ ସଂଗ୍ରହକରି ଏ ଶାସନ ଆଉ କେତେଦିନ ଚଳିପାରେ ? ଲୋକେ ତ ସର୍ବସ୍ୱାନ୍ତ ହେଲେଣି । ଅସହଯୋଗ ଆନ୍ଦୋଳନ ବିରୁଦ୍ଧରେ ଲୋକଙ୍କୁ ଏପରି ବୁଝାଇବାଦ୍ୱାରା ସରକାର ନିଜ ମାନ ହରାଉଛନ୍ତି । ଲୋକେ ସରକାରଙ୍କ ଅଭିପ୍ରାୟ ବେଶ୍ ବୁଝି ପାରୁଛନ୍ତି । ଲୋକଙ୍କୁ ଷୋଳଅଣା ବାଧା ହେଲାଣି । ତେଣୁ ସେମାନେ ଅସହଯୋଗ ନୀତି ଗ୍ରହଣ କରିବାକୁ ପ୍ରସ୍ତୁତ ।

ସେମାନେ ବୁଝି ପାରୁଛନ୍ତି ଯେ ଅସହଯୋଗ ନୀତି ଅନୁସାରେ କାର୍ଯ୍ୟ କଲେ ସେମାନଙ୍କର ଅବସ୍ଥା କ୍ରମେ ବଦଳିଯିବ; ମାତ୍ର ସରକାରଙ୍କର ସ୍ୱାର୍ଥରେ ବାଧା ପଡ଼ୁଛି ବୋଲି ସରକାରଙ୍କ ତରଫରୁ ଏପରି ବିରୁଦ୍ଧ ଆନ୍ଦୋଳନ ଚାଲୁଛି । ପୋଲିସ ଉତ୍ପାତକୁ ଡରି କେହି କେହି ଅସହଯୋଗ ନୀତି ଅନୁସାରେ କାର୍ଯ୍ୟ କରିବାକୁ ପଛେଇ ପାରନ୍ତି । ମାତ୍ର ଏହିପରି ଡରାଇ ଲୋକଙ୍କୁ କେତେଦିନ ଜବତରେ କିଏ ରଖିବ ?ଏପରି ଡରଭୟରେ ଫଳ କୌଣସିଠାରେ ରାଜ୍ୟ ପକ୍ଷରେ ଶୁଭ ହୋଇନାହିଁ ।

('ସମାଜ', ତା ୧୯ । ୩ । ୨୧)

———

# କର୍ମଚାରୀଙ୍କୁ ଗାନ୍ଧିଜୀଙ୍କ ଉପଦେଶ

ବିହାର ଓଡ଼ିଶା ସରକାର ଅସହଯୋଗ ଆନ୍ଦୋଳନ ଦମନ କରିବାପାଇଁ ସାମାନ୍ୟ ଚୌକିଦାରଠାରୁ ଆରମ୍ଭ କରି ଜିଲ୍ଲା ମେଜେଷ୍ଟର ପର୍ଯ୍ୟନ୍ତ ସମସ୍ତଙ୍କୁ ସାମ, ଦାନ, ଦଣ୍ଡ, ଭେଦ ପ୍ରଭୃତି ସବୁପ୍ରକାର ନୀତିରେ କାର୍ଯ୍ୟ କରିବାକୁ ଆଦେଶ ଦେଇଅଛନ୍ତି । ଅଶିକ୍ଷିତ ବା ଅଳ୍ପ ଶିକ୍ଷିତ ମଫସଲର ନିମ୍ନକର୍ମଚାରୀମାନେ ନିରୀହ ଗରିବ ପ୍ରଜାମାନଙ୍କ ପ୍ରତି ଉପରିସ୍ଥ ହାକିମମାନଙ୍କ ପ୍ରେରଣାରେ ନାନାପ୍ରକାର ନିଷ୍ଠୁର ଅତ୍ୟାଚାର କରିବା ବିଚିତ୍ର ନୁହେଁ । ମୋଜାଫରପୁର ପ୍ରଭୃତି କେତେକ ଜିଲ୍ଲାରେ ଏହିପରି ଅନେକପ୍ରକାର ଅତ୍ୟାଚାର ହେଲଣି । ଲୋକସାଧାରଣଙ୍କର ମଙ୍ଗଳ ସକାଶେ ଅସହଯୋଗ ନୀତିର ପ୍ରଚାର । ଏଥିରେ ସମସ୍ତ ଭାରତବାସୀଙ୍କି ସରକାରୀ କି ବେସରକାରୀ ସମସ୍ତଙ୍କର ସହାୟତା ଆବଶ୍ୟକ । ଯେଉଁମାନେ ସରକାରୀ ଚାକିରି କରିଛନ୍ତି ସେମାନଙ୍କୁ ଚାକିରି ଛାଡ଼ିବାକୁ ଏପର୍ଯ୍ୟନ୍ତ ଡାକରା ଆସିନାହିଁ । ମାତ୍ର ଦେଶର ଏ ବିପଦ କାଳରେ ଭାଇ ବନ୍ଧୁ ଓ ଆତ୍ମୀୟ ଭାବରେ ସେମାନେ ଯାହା କରିପାରିବେ ତାହା କରିବା ବିଧେୟ । ସରକାର ପୋଲିସ କର୍ମଚାରୀଙ୍କୁ ଛାଡ଼ି ଅନ୍ୟାନ୍ୟ ସରକାରୀ କର୍ମଚାରୀମାନଙ୍କୁ ଅସହଯୋଗ ସଭାରେ ଯୋଗ ନ ଦେବାପାଇଁ ଓ ଜାତୀୟ ପାଣ୍ଠିକୁ କୌଣସିପ୍ରକାର ଅର୍ଥ ସାହାଯ୍ୟ ନ କରିବାପାଇଁ କିମ୍ବା ଅରଟ ପ୍ରଚାରରେ କୌଣସିପ୍ରକାର ଅର୍ଥ ସାହାଯ୍ୟ ନ କରିବାପାଇଁ କିମ୍ବା ଅରଟ ପ୍ରଚାରରେ କୌଣସିପ୍ରକାର ସହାୟତା ନ କରିବାପାଇଁ ବା ଏହି ସମ୍ପର୍କୀୟ କୌଣସି ପ୍ରକାର ସଭାସମିତିରେ ବକ୍ତୃତା ନ ଦେବାପାଇଁ ନିଷେଧଆଜ୍ଞା ପ୍ରଚାର କରିଅଛନ୍ତି । ଏ ବିଷୟରେ ବିହାର ସରକାର କର୍ମଚାରୀଙ୍କୁ ମହାତ୍ମା ଗାନ୍ଧୀ ଯେଉଁ ଉପଦେଶ ଦେଇଅଛନ୍ତି ତାହା ନିମ୍ନରେ ଉଦ୍ଧୃତ ଦିଆଗଲା -

"ମୁଁ ଆଶାକରେ ବିହାର ସରକାରୀ କର୍ମଚାରୀମାନେ ତାଙ୍କର ଏହି ଆଜ୍ଞାରେ ବାଧ୍ୟ ନ ହୋଇ ଅସହଯୋଗ ସଭାସମିତିମାନଙ୍କରେ ଦଳବଦ୍ଧ ହୋଇ ଯୋଗଦେବେ ଓ ଏହାର ଫଳରେ ଯଦି ଚାକିରିରୁ ବରଖାସ୍ତ ହୁଅନ୍ତି ସେଥିପାଇଁ ସୁଦ୍ଧା ପ୍ରସ୍ତୁତ ହେବେ । ସଭାସମିତିରେ ବକ୍ତୃତା ଦେବା ପାଇଁ ଯେ ସରକାରୀ କର୍ମଚାରୀଙ୍କୁ ନିଷେଧ କରା ହୋଇଅଛି । ଏହାର ଅର୍ଥ ବେଶ୍ ବୁଝା ଯାଉଅଛି । କିନ୍ତୁ ଅସହଯୋଗ ସଭାସମିତିରେ ଯୋଗ ଦେବାପାଇଁ ଓ ଜାତୀୟ

ପାର୍ଟିକୁ ଅର୍ଥ ସାହାଯ୍ୟ କରିବାକୁ ବା ଅନ୍ୟ ପ୍ରକାରରେ ସହାୟତା ନ କରିବାକୁ ଯେ ନିଷେଧ କରାଯାଇଅଛି ତାହା ବ୍ୟକ୍ତିଗତ ସ୍ୱାଧୀନତା ଉପରେ ପ୍ରବଳ ଅତ୍ୟାଚାର ବୋଲିବାକୁ ହେବ । ମୋର ବିଶ୍ୱାସ ଏହି ସରକାରୀ କର୍ମଚାରୀମାନେ ଏହିପ୍ରକାର ଅନ୍ୟାୟ ଆଦେଶରେ ବାଧ୍ୟ ହେବାକୁ ଅସ୍ୱୀକାର କରିବେ ।" ଆମ୍ଭେମାନେ ଆଶାକରୁଁ ମହାତ୍ମାଙ୍କ ଉପଦେଶ ବିହାର ସରକାରୀ କର୍ମଚାରୀଙ୍କଠାରେ ବ୍ୟର୍ଥ ହେବ ନାହିଁ ।

('ସମାଜ', ତା ୧୯ । ``। ୨୧)

---

## ଗ୍ରାମବାସୀଙ୍କ ପ୍ରତି

ଭାଇମାନେ !

ଅନେକ ଗ୍ରାମରେ ଜପାଗ୍ରହ ହୋଇଅଛି । ଅରଟରେ ସୂତାକଟା ହେଲାଣି । ଲୋକେ ନିଜ ନିଜ ମଧ୍ୟରେ ପଞ୍ଚାୟତ ବସାଇ କଳହ ମକଦ୍ଦମା ପ୍ରଭୃତି ସବୁ ମେଣ୍ଟାଉଛନ୍ତି । ଅସହଯୋଗ ନୀତିର ଏହିସବୁ କାର୍ଯ୍ୟ ବନ୍ଦ କରିବା ଲାଗି ସରକାର ତରଫରୁ ପୋଲିସ ବା ଅନ୍ୟ କେହି ସ୍ଥାନୀୟ କର୍ମଚାରୀ ଆପଣମାନଙ୍କୁ କୌଣସି କୌଣସିଠାରେ ଧମକାଉ ଥିବାର ସମ୍ବାଦ ମିଳିଅଛି । ଏଥକୁ ମୋର ଆପଣଙ୍କୁ ଏହି ପରାମର୍ଶ ଯେ ଆପଣମାନେ ଏଥିରେ କଦାପି ବିଚଳିତ ହେବେ ନାହିଁ । ଆପଣମାନେ ଯେସବୁ କାର୍ଯ୍ୟ କରୁଛନ୍ତି ସେଥିରେ କିଛି ବେଆଇନ ବା ରାଜଦ୍ରୋହ ନାହିଁ । ପୋଲିସ ବା ଅନ୍ୟ କେହି ସେଥିଲାଗି ଆପଣମାନଙ୍କର କିଛି କରି ପାରିବ ନାହିଁ । ଆପଣମାନଙ୍କୁ ଅନ୍ଧାରରେ ଏତେକାଳ ଅଜ୍ଞ ଭାବରେ ରଖି ସରକାର ତାଙ୍କ ଶାସନ ଚଳାଉଥିଲେ । ପ୍ରଜାମାନଙ୍କୁ ଚପାଇ ରଖି ସ୍ୱେଚ୍ଛାଚାରୀ ଭାବରେ ଶାସନ କରିବାକୁ ହେଲେ ରାଜଶକ୍ତି ସବୁବେଳେ ଏହିପରି କରିଥାଏ । ଆଜି ବହୁକାଳ ପରେ ଆମ ଲୋକଙ୍କର ଆଖି ଫିଟୁଛି । ସେମାନେ ନିଜ ଅବସ୍ଥା ବୁଝି ପାରୁଛନ୍ତି । ସେଥିର ପ୍ରତିକାର କରିବାକୁ ମଧ୍ୟ ଯତ୍ନ କରୁଛନ୍ତି । ଏ ଯତ୍ନରେ କେହି ସରକାରଙ୍କ ସଙ୍ଗେ ଦଙ୍ଗା ହେଙ୍ଗାମ କରିବାକୁ ଯାଇନାହିଁ କିମ୍ବା ଆଇନର କୌଣସି ନିୟମ ଲଙ୍ଘନ କରୁନାହିଁ । ଅତଏବ ଆପଣମାନେ ନିଶ୍ଚିନ୍ତ ଥାଆନ୍ତୁ ଏବଂ ଗ୍ରାମେ ଗ୍ରାମେ ଯେପରି ପଞ୍ଚାୟତ ବସେ ଓ ଅରଟ ପ୍ରଚାର ହୁଏ ତହିଁର ଉଦ୍ୟମ କରନ୍ତୁ । ଏଥିରେ କୌଣସି ପ୍ରକାର ବାଧା ବିପଦ ନାହିଁ ।

"ଯେ ପ୍ରାଣୀ ଥାଏ ଧର୍ମପଥେ
ନାହିଁ ବିପଦ କଦାଚତେ"

ଅସହଯୋଗ ବର୍ତ୍ତମାନ ଆମ୍ଭମାନଙ୍କର ଧର୍ମ । ଏହାଦ୍ୱାରା ଆମ୍ଭମାନଙ୍କର ସ୍ୱଧର୍ମ ରକ୍ଷାହେବ ଏବଂ ସ୍ୱରାଜ୍ୟ ମିଳିବ । ଧୀର, ସ୍ଥିର, ଶାନ୍ତ ସରଳଭାବରେ ଅସହଯୋଗ ନୀତିର କାର୍ଯ୍ୟ କରୁଥିଲେ କେବେ କୌଣସି ପ୍ରମାଦ ନାହିଁ । ଏହା ଧ୍ରୁବ ସତ୍ୟ ।

('ସମାଜ', ତା ୧୯ । । ୨୧)

# "ନଷ୍ଟସ୍ୟ କାନ୍ୟାଗତ"

ଅସହଯୋଗ ଆନ୍ଦୋଳନର ଫଳ ଏହି ଅଳ୍ପଦିନ ମଧ୍ୟରେ ଭାରତ ବର୍ଷର ଗ୍ରାମ- ଆଞ୍ଚଳ ବେଶ୍ ଦେଖାଯାଇଛି । ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ବିହାର ଓଡ଼ିଶା ପ୍ରଦେଶରେ କେତେକ ବିଷୟରେ ଖୁବ୍ ଭଲକାର୍ଯ୍ୟ ହୋଇଅଛି । ବିହାରର କେତେ ଜିଲ୍ଲାରେ ମଦ ଗଞ୍ଜେଇ ବିକ୍ରୀ ଏକାବେଳକେ ବନ୍ଦ ହୋଇଗଲାଣି । ଅବକାରୀ ଦୋକାନ ନିଲାମରେ କେହି ଡାକୁ ନାହାନ୍ତି । ଧର୍ମ ଓଗଲାକର କର୍ତ୍ତାମାନେ କାହାର କାହାର ମୁଣ୍ଡରେ ଲଦିଲେ ସୁଦ୍ଧା ସେମାନେ ମୁଣ୍ଡାଇବାକୁ ରାଜି ହେଉ ନାହାନ୍ତି । ଅବକାରୀ ଇଲାକାରୁ ବିହାର ଓଡ଼ିଶା ସରକାରଙ୍କର ଖୁବ୍ ବେଶୀ ଆୟ ହୁଏ । ଗଲାବର୍ଷ ଶହେ ଦଶଶ ଲକ୍ଷ ଟଙ୍କା ସରକ ଆଦାୟ ହୋଇଥିଲା । ଏ ବର୍ଷ ବଜେଟରେ ଦେଢ଼ଶଲକ୍ଷ ଆନୁମାନିକ ଆୟ ଧରି ଯାଇଥିଲା । ମାତ୍ର ଗ୍ରାମଆଞ୍ଚଳ ଯେପରି ଅବସ୍ଥା ଦେଖାଯାଉଛି ସେଥିରେ ଅବକାରୀ ଆୟ ବହୁତ କମିଯିବ ସନ୍ଦେହ ନାହିଁ । ଏହାଦେଖି ସରକାରଙ୍କର ଚିନ୍ତା ପଡ଼ିଗଲାଣି । ଲୋକେ କିପରି ମଦ ଗଞ୍ଜେଇ ବେଶି ଖାଇବେ ସରକାରଙ୍କର ଏବେ ସେହି ଉଦ୍ୟମ ଲାଗିଛି । ନିଶା ବିରୁଦ୍ଧରେ କେହି ପ୍ରଚାର କଲେ ସେ ବର୍ତ୍ତମାନ ସରକାରଙ୍କର ଚକ୍ଷୁଶୂଳ ହେଉଅଛନ୍ତି । ମଦ ଗଞ୍ଜାଇଆଦି ମାଦକ ଦ୍ରବ୍ୟର ପ୍ରଚାରଲାଗି ନାନା ପ୍ରକାର ଯତ୍ନ ଚାଲିଛି । ଏପରିକ ସର୍କାରୀ ଗେଜେଟରେ ମଦର ପ୍ରଶଂସା ବାହାରୁଛି । ନିୟମିତ ପରିମାଣରେ ମଦ ଖାଇବା ଭଲ, ମଦ ଖାଇଲେ ଲୋକ ଶୋଷ ଜଣା ପଡ଼ିବ ନାହିଁ, ମଦ ଖାଇଲେ ବୁଦ୍ଧି ବାହାରେ । ମୋଜେସ, ସିକନ୍ଦର, ସେକ୍ସପିଅର, ବିସମାର୍କ, ଟେନିସନ ପ୍ରଭୃତି ପୃଥିବୀର ପ୍ରସିଦ୍ଧ କବି ସିଦ୍ଧ ସାଧକ ବୀର ଓ ଦେଶ ନାୟକମାନେ ମଦ ଖାଉଥିଲେ । ଏହି ପ୍ରକାରେ ସରାପ ସନ୍ଦର୍ଭ ବିହାର ଓଡ଼ିଶା ସରକାରଙ୍କ ଗେଜେଟରେ ଦେଖି କେହି କେହି ଆଶ୍ଚର୍ଯ୍ୟ ହୋଇଛନ୍ତି । ମାତ୍ର ଟିକିଏ ତଳାଇ ସରକାରଙ୍କ ନୀତିକି ପରୀକ୍ଷାକରି ଦେଖିଲେ ଏଥିରେ ଆଶ୍ଚର୍ଯ୍ୟର କୌଣସି କାରଣ ନାହିଁ । ଶିକ୍ଷା ସଭ୍ୟତା ଆଦିର ଯେ କୃତ୍ରିମ ସରକାରୀ ବରାବର ଏତେକାଳ ବଜାଇ ଆସୁଛନ୍ତି, ତହିଁର ପ୍ରକୃତ ଅର୍ଥ କିଛି ନାହିଁ । ସରକାର ପ୍ରଜାଙ୍କଠାରୁ ବାଜବାଟରେ ଅର୍ଥ ନେଉଛନ୍ତି । ସେଥିଲାଗି ଗୋଟାଏ କିଛି କାରଣ ଦେଖାଇବେ ତ ? ସରକାର କହୁନ୍ତି କି ସେ ଶିକ୍ଷା ଦେଉଛନ୍ତି । ଶାନ୍ତି ରଖିଛନ୍ତି, ଲୋକଙ୍କୁ ସଭ୍ୟ କରୁଛନ୍ତି । ଏବେ ଫଳରେ ଦେଖାଗଲା ସେ ସବୁ ବାହାନା

ମାତ୍ର । ଯେ ଶିକ୍ଷା ସରକାରୀ ସ୍କୁଲ କଲେଜରେ ଦିଆଯାଉଛି ତାହା କେବଳ ସରକାରଙ୍କ କଳ ଚଳାଇବା ଲାଗି ମଜ୍‌ଦୁରୀଦାର ତିଆରି କରିବା ଛଡ଼ା ଆଉ କିଛି କରୁନାହିଁ । ଲୋକେ ବେଶୀ ମଦ ଗଞ୍ଜାଇ ଖାଇଲେ ଅବକାରୀ ଇଲାକାରୁ ବେଶି ଆୟ ହେବ । ଲୋକେ ବେଶୀ ନିଶା ଖାଇଲେ ଅଧିକ ଶାନ୍ତିଭଙ୍ଗ ଘଟିବ । ଆଦିମବାସୀଙ୍କ ମଧ୍ୟରେ ଏହି କାରଣରୁ ପ୍ରାୟ ଶାନ୍ତିଭଙ୍ଗ ଘଟିଥାଏ । ବିହାର ଓଡ଼ିଶା ସରକାରଙ୍କର ରାଜସ୍ୱ ବିଭାଗୀୟ ମେମ୍ବର ଲମା-ସୁରିଅର ସାହେବ ଥରେ ବଜେଟ ବୈଠକରେ ଏହା ସ୍ୱୀକାର କରିଥିଲେ । ନିଶା ଖାଇବା ଦ୍ୱାରା ଲୋକଙ୍କର ବହୁ ଅନିଷ୍ଟ ହେଉଛି, କେହି ଅସ୍ୱୀକାର କରିବେ ନାହିଁ । କାଉନ୍‌ସିଲରେ ବେସରକାରୀ ମେମ୍ବରମାନେ ଅବକାରୀ ବିଭାଗର ଆୟ ବୃଦ୍ଧି ଉପରେ ବର୍ଷକୁ ବର୍ଷ ତୀବ୍ର ମନ୍ତବ୍ୟ ପ୍ରକାଶକରି ଆସୁଛନ୍ତି । ସରକାର ଠକାଠକ କରି ଟ୍ଟଗୋଟିଏ ଗୋଟିଏ ଜବାବ ଦେଉଥାନ୍ତି । ସରକାର ଯେ ଲୋକଙ୍କର ପ୍ରକୃତ ଶିକ୍ଷା, ସଂଯମ, ଶାନ୍ତି ଓ ସଭ୍ୟତା ଚାହାନ୍ତି ନାହିଁ । ସେ କେବଳ ଚାହାନ୍ତି ଟଙ୍କା—ଏହା ଏବେ ସଫା ଜଣାପଡ଼ିଲା । ଲୋକଙ୍କୁ ନିଶା ଖୁଆଇ ସେମାନଙ୍କ ଧନ ଶୋଷଣର ଉଦ୍ୟମ ଯେ ଶାସନରେ ହୁଏ ତାହା ସୁସଭ୍ୟ ଶାସନ ? ସମସ୍ତେ ପୁଣି ଲାଜକୁ ଲୁଗା ପିନ୍ଧିଛନ୍ତି । ଲୋକ ନିନ୍ଦାକୁ ନାଗି ଚଳୁଛନ୍ତି । ମାତ୍ର ବିହାର ସରକାର ସେ ମର୍ଯ୍ୟାଦାକୁ ଲଙ୍ଘିଗଲେ । ସେ ସିକନ୍ଦର, ସେକ୍‌ସପିଅର ବା ଟେନିସନ ମଦ ଖାଉଥିଲେ । ସେ ବୋଧହୁଏ ଲୁଚାଇ କରି ବା ନିଜର ଅନ୍ତରଙ୍ଗ ବନ୍ଧୁମାନଙ୍କ ସଙ୍ଗେ ଖାଉଥିଲେ । ଆଜି ସେମାନେ ଜୀବିତ ଥିଲେ ବିହାର ଓଡ଼ିଶା ସରକାର ସେମାନଙ୍କ ନାମ ଏପରି ପ୍ରକାଶ ଭାବରେ ଗେଜେଟରେ ଛପାଇବାକୁ ସାହସ କରି ନ ଥାନ୍ତେ । ମଦ ଖାଇବାରୁ ସେକ୍‌ସପିଅର ଓ ଟେନିସନଙ୍କର କବିତ୍ୱ, ମୋଜେସଙ୍କର ମହାତ୍ମ୍ୟ, ସିକନ୍ଦରଙ୍କର ବୀରତ୍ୱ ପ୍ରକାଶ୍ୟ ପାଇଲା ବୋଲି ବିହାର ସରକାର ଲୋକରେ ପ୍ରକାଶ କରିବାକୁ ଚାହାନ୍ତି । ବିହାର ଓଡ଼ିଶାର ସରକାର ମା' ବାପ ବୋଲାଇ ଆସୁଛନ୍ତି । ପିଲାଙ୍କର ଯେପରି ବୁଦ୍ଧି ଖୋଲିବ ସେହିପରି ଉପଦେଶ ଦେବା ତାଙ୍କର ଧର୍ମ । ଆମ୍ଭେମାନେ ମନେକରୁ ଖାଲି ଏତିକି ଉପଦେଶ ଦେଇ କ୍ଷାନ୍ତ ରହିଲେ କାମ ପୂରା ପଡ଼ିବ ନାହିଁ । ୧୯୨୧-୨୨ ସାଲରେ ଯେଉଁମାନେ ମଦ ଖାଇବେ ସେମାନଙ୍କର ତାଲିକା ରଖାଯାଉ । ସର୍ବାପେକ୍ଷା ଯେ ଅଧିକ ମଦ ଖାଇବେ ସେପରି କେତେ ଜଣଙ୍କୁ ଦେଖି ଗୁହିଁ ରାୟ ବାହାଦୁର, ରାଜା ବାହାଦୁର, ଖାଁ ବାହାଦୁର ବା ଏହିଭଳି ଆଉ କିଛି ଉପାଧି ଦିଆ-ଯିବାର ବ୍ୟବସ୍ଥା ହେଉ । ମଦ୍ୟପାନରେ ଯେତେବେଳେ ଏତେଦୂର ବୁଦ୍ଧି ବିଚକ୍ଷଣତା, ବୀରତ୍ୱ କବିତ୍ୱ ଜନ୍ମେ, ସ୍କୁଲ କଲେଜ ପିଲାମାନଙ୍କୁ ମୂଳରୁ ଟିକିଏ ଟିକିଏ ଧରାଇଲେ ମନ୍ଦ ହୁଅନ୍ତା ନାହିଁ । ପ୍ରଥମେ ପ୍ରଥମେ ଇଂରେଜୀ ପାଠପଢ଼ା ହେଲାବେଳେ ଲୋକେ ସ୍କୁଲକୁ

ପିଲାଙ୍କୁ ପଠାଉ ନ ଥିଲେ । ସେମାନେ ବୁଝିଥିଲେ କି ଇସ୍କୁଲ ପଢ଼ୁଆମାନେ ମଦ ଖାଆନ୍ତି । ଏବେ କାର୍ଯ୍ୟରେ ଦେଖାଗଲା ଯେ ସେମାନେ ଯାହା ବୁଝିଥିଲେ ଠିକ୍ । ସ୍କୁଲ୍ ପଢ଼ୁଆମାନେ ଶିକ୍ଷାର ପ୍ରଭାବରେ ଅବସନ୍ନ ହୋଇ ପଡ଼ିଛନ୍ତି । ସେମାନଙ୍କର ନିଜତ୍ୱ ନାହିଁ, ମନୁଷ୍ୟତ୍ୱ ଲୋପ ପାଇଛି । ଏହା ଉପରେ ବର୍ତ୍ତମାନ ସ୍କୁଲ କଲେଜରେ ପଢ଼ୁଥିବା ପିଲାଙ୍କ ଲାଗି ଖେଳକୁଟି ବେଳେ ବା ଅନ୍ୟ କୌଣସି ସୁବିଧା ସମୟରେ ଟୋପାଏ ଟୋପାଏ ମଦର ବ୍ୟବସ୍ଥା ହେଲେ ଆମ୍ଭମାନଙ୍କ ସଭ୍ୟତା ପୂର୍ଣ୍ଣ ହେଲା । ଅସହଯୋଗ ଆନ୍ଦୋଳନକୁ ବନ୍ଦ କରିବାର ଏହାହିଁ ପ୍ରକୃଷ୍ଟ ଉପାୟ । ବିହାର ଓଡ଼ିଶା ସରକାର ଏ ଉପାୟ ଗ୍ରହଣ କରିବେ କି ? ଧନ୍ୟ ମା' ବାପ ସରକାର । ଭେକ ବିକଳରେ ତାଟିଆ-କାମୁଡ଼ିଲେ ତୃଷା ମେଣ୍ଟିବ ? ଅବକାରୀ ସମ୍ବନ୍ଧ ସରକାରଙ୍କ ଉପଦେଶ ଓ ସ୍ଥାନେ ସ୍ଥାନେ ସରକାରୀ କର୍ମଚାରୀଙ୍କ କାର୍ଯ୍ୟଗତି ଦେଖିଲେ ମନେ ହୁଏ "ନଷ୍ଟସ୍ୟ କାନ୍ୟା ଗତି ।"

("ସମାଜ" ତା ୧୯ । ୩ । ୨୧)

---

# ସତ୍ୟାଗ୍ରହ ସପ୍ତାହ

୧୯୧୯ ମସିହା ଏପ୍ରିଲମାସ ୬ ଓ ୧୩ ତାରିଖମାନଙ୍କରେ ପଞ୍ଜାବ ପ୍ରଦେଶରେ ଇଂରେଜ ସରକାର ଦ୍ୱାରା ଯେ ରକ୍ତପାତ ଘଟିଥିଲା, ଶତ ଶତ ଲୋକ ଯେ ନିର୍ଦ୍ଦୟ ନିଷ୍ଠୁର ଖାବରେ ହତ୍ୟା ଖାଇଥିଲେ ସେ ଦୁଃଖ କାହାଣୀ ଆଜି ଭାରତବାସୀଙ୍କ ପ୍ରାଣରୁ ଲିଭିନାହିଁ କି ଲିଭିବ ନାହିଁ । ପଞ୍ଜାବରେ ଯେ କୌଣସି ଗ୍ରାମକୁ ଯାଅ. ଯେ କୌଣସି ସ୍ତ୍ରୀ ପିଲା ବା ପୁରୁଷକୁ ପଚାର ସେ ତାହାର ଦୁଃଖ ଅତ୍ୟାଚାର କାହାଣୀରେ ତୁମ୍ଭଙ୍କୁ କନ୍ଦାଇଦେବେ । ଗଲା ଦୁଇବର୍ଷ ହେଲା ଏହି ୬ ଓ ୧୩ ତାରିଖ ମାନଙ୍କରେ ଲୋକମାନେ ଉପବାସ ଓ ଉପାସନା କରି ଏହି ଅତ୍ୟାଚାରୀ ସରକାରଙ୍କ କବଳରୁ ରକ୍ଷା ପାଇବା ସକାଶେ ଭଗବାନଙ୍କଠାରେ ପ୍ରାର୍ଥନା କରି ଆସୁଛନ୍ତି । ୧୯୨୧ ସାଲର ଏପ୍ରିଲମାସ ୬ ଓ ୧୩ ତାରିଖ ଆସି ମୁଣ୍ଡ ଉପରେ ହେଲଣି । ଏହି ୬ ତାରିଖଠାରୁ ୧୩ ତାରିଖ ପର୍ଯ୍ୟନ୍ତ ଏକ ସପ୍ତାହକୁ ମହାତ୍ମାଗାନ୍ଧୀ ସତ୍ୟାଗ୍ରହ ସପ୍ତାହ ବୋଲି ଘୋଷଣା କରିଛନ୍ତି । ୬ ଓ ୧୩ ତାରିଖ ଦୁଇଦିନ ଭାରତବର୍ଷର ଚାରିଆଡ଼େ ଲୋକମାନେ ଉପବାସ ରହିବେ ଓ ନିଜ ନିଜ ଧର୍ମ ମନ୍ଦିରମାନଙ୍କରେ ଉପାସନା କରିବେ । ଏହାଛଡ଼ା ସମସ୍ତେ ନିଯ୍ୟମ କରିବେ ଯେ କାହାରି ପ୍ରତି ଅନ୍ୟାୟ ଓ ଅତ୍ୟାଚାର କରିବେ ନାହିଁ । ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ମନୋମାଳିନ୍ୟ ନରଖି ଏକତା ସ୍ଥାପନ କରିବେ । ଗ୍ଲେଟଜାତିମାନଙ୍କୁ ହୀନଦୃଷ୍ଟିରେ ନ ଦେଖି ସମଦୃଷ୍ଟିରେ ଦେଖିବେ । ଏହାଛଡ଼ା ଏହି ସତ୍ୟାଗ୍ରହ ସପ୍ତାହ ମଧ୍ୟରେ ମଦ ଓ ଅବକାରୀ ବିକେତାମାନଙ୍କୁ ଏହିସବୁ ଜିନିସର ବିକ୍ରୀପଟା ଫେରସ୍ତ ଦେବାପାଇଁ ଅନୁରୋଧ କରାଯିବ ଓ ପ୍ରତ୍ୟେକଙ୍କ ଘରେ ଏହି ସପ୍ତାହରୁ ଅରଟ କାର୍ଯ୍ୟ ଆରମ୍ଭ କରାଯିବ ଏବଂ ପ୍ରାଣପଣେ ଚେଷ୍ଟାକରି ତିଲକ ସ୍ୱରାଜ ପାଣ୍ଠି ସକାଶେ ଚାନ୍ଦା ଅସୁଲ କରାଯିବ । ମହାତ୍ମାଗାନ୍ଧୀ ଆଶାକରନ୍ତି ସ୍ୱରାଜ ପାଣ୍ଠିର ଆବଶ୍ୟକ ଏକକୋଟି ଟଙ୍କା ଏହି ଏକସପ୍ତାହରେ ସଂଗ୍ରହ ହୋଇ ପାରିବ । ଆମ୍ଭେମାନେ ଆଶାକରୁଁ ଓଡ଼ିଶାର ପୁରପଲ୍ଲୀରେ ଲୋକସାଧାରଣ ଏହି ବ୍ରତ ପାଳନ କରି ସ୍ୱରାଜ୍ୟ ସ୍ଥାପନରେ ସହାୟତା କରିବେ ।

('ସମାଜ' ତା ୨୮ । ୩ । ୨୧)

---

# ସରକାରଙ୍କ ମତିଭ୍ରମ

ଅସହଯୋଗ ଆନ୍ଦୋଳନ ଦବାଇବା ଲାଗି ବିହାର ଓଡ଼ିଶା ସରକାର ଗୋଟିକ ପରେ ଗୋଟିଏ ନୂଆ ହୁକୁମ ଜାରି କରୁଛନ୍ତି । ପ୍ରଥମେ ହୁକୁମ ହେଲା ସରକାରୀ କର୍ମଚାରୀମାନେ ଅସହଯୋଗ ସଭାରେ ଉପସ୍ଥିତ ହୋଇ ପାରିବେ ନାହିଁ । ଜିଲା ମେଜେଷ୍ଟର ଏବଂ ସବ୍‌ଡିଭିଜନ ଅଫିସରମାନେ ଗ୍ରାମମାନଙ୍କରେ ବୁଲି ବୁଲି ଅସହଯୋଗ ବିରୁଦ୍ଧରେ ପ୍ରଚାର କରିବେ, ଜମିଦାର ଓ ଅନ୍ୟାନ୍ୟ ଧନୀ ଓ କ୍ଷମତାଶାଳୀ ଲୋକଙ୍କ ସହାୟତାରେ ଅସହଯୋଗକୁ ଚପାଇବା ଲାଗି ଯାହା କରିବାର କରିବେ । ସରକାରଙ୍କର ଏ ହୁକୁମ ବିରୁଦ୍ଧରେ ଚାରିଆଡ଼େ ଆପତ୍ତି ଉଠିଲା । ଅସହଯୋଗବିରୋଧୀ ହେଲେ ସୁଦ୍ଧା ଲାଟସଭାର କେହି କେହି ମେମ୍ବର ଏଥିରେ ପ୍ରତିବାଦ କଲେ । ସାଧାରଣସଭାରେ ଏବଂ ଖବରକାଗଜମାନଙ୍କରେ ସରକାରଙ୍କର ନିନ୍ଦା ହେଲା । ଶେଷକୁ ସରକାର ଦୋଷ ମାନିଲାପରି ଜଣାଗଲା । ସରକାର କହିଲେ କି ଏପରି ହୁକୁମ ହୋଇଥିଲେ ସୁଦ୍ଧା କ୍ଷମତାର ଅଯଥା ଅପବ୍ୟବହାର ନ କରିବାଲାଗି ସ୍ଥାନୀୟ କର୍ମଚାରୀମାନଙ୍କୁ ସାବଧାନ କରାଇ ଦିଆଯାଇଅଛି । ପଙ୍କରେ ପଶି ଏପରି ଗୋଡ ଧୋଇବା ଦରକାର କଅଣ ? ଏହାପରେ ବିହାର ଓଡ଼ିଶା ସରକାରଙ୍କ ପୋଲିସ ଗେଜେଟରେ ସୁରା ସନ୍ଦର୍ଭ ପ୍ରକାଶ ପାଇଲା । ଏଥିରେ ମଧ୍ୟ ସରକାରଙ୍କର ଭାରି ନିନ୍ଦା ହେଲା । କାଉନ୍‌ସିଲରେ ପ୍ରଶ୍ନ ଉଠିଲା । ସେତେବେଳେ କେହି ଧରା ଛୁଆଁ ଦେଲେ ନାହିଁ, ସରକାରଙ୍କର ପ୍ରତି କଥାରେ ଛୁଞ୍ଚିମାଛ ପରୀକ୍ଷା ହୁଏ; ପୁଣି ଧରାପଡ଼ା ବେଳକୁ କେହି ଦାୟିତ୍ୱ ସ୍ୱୀକାର କରନ୍ତି ନାହିଁ । "କ୍ଷମାଶ୍ଚର୍ଯ୍ୟମତଃ ପରଂ ।" ଅସଲକଥା ଏହି ଯେ ରାଜସ୍ୱହାନି ହେବାର ଦେଖି ସରକାରଙ୍କର ମତିଭ୍ରମ ଘଟିଛି । ଅତି ଆତୁର ହୋଇ ସେ ସରାପ ସଙ୍କୀର୍ତ୍ତନ ଆରମ୍ଭ କରିଛନ୍ତି । ପରେ ଏହାଦ୍ୱାରା ନିନ୍ଦା ହେବାରୁ ଚୈତନ୍ୟ ଆସିଛି । ସେତେବେଳେ ଲଜ୍ଜାରେ ମୁଣ୍ଡ ନୁଆଁଇ ଦାୟିତ୍ୱ ସ୍ୱୀକାର କରିବାକୁ କେହି ରାଜି ନୁହନ୍ତି । ସରକାର ବୁଝିଲେ ଯେ "ଏଥିଁ ଅଧିକେ ଫଳ, ଅପବାଦ କେବଳ ।" ମାତ୍ର ବିହାର ଓଡ଼ିଶା ସରକାର ଏହିଠାରେ କ୍ଷାନ୍ତ ରହିଲେ ନାହିଁ । ଏବେ ମ୍ୟୁନିସିପାଲିଟି ଏବଂ ଜିଲାବୋର୍ଡ଼ ମେମ୍ବରମାନଙ୍କ ଉପରେ ଏକ ନୂତନ ସରକୁଲାର୍ ବାହାରିଛି । ଏ ସରକୁଲାର୍ ଅନୁସାରେ ମ୍ୟୁନିସିପାଲିଟି କମିଶନର ଓ ଜିଲା ବୋର୍ଡ ମେମ୍ବରମାନେ ଅସହଯୋଗ ସଭାରେ ଯୋଗ ଦେବେ ନାହିଁ ଏବଂ ସେମାନଙ୍କ ଅଧୀନ ବୋର୍ଡ଼ ଓ ମ୍ୟୁନିସିପାଲିଟିର କର୍ମଚାରୀମାନଙ୍କୁ ଯୋଗ ନ ଦେବାଲାଗି ତାଗିଦ କରିବେ । କେବଳ ସଭାରେ ଯୋଗ

ଦେବା ନ ଦେବା ନୁହେଁ, କୌଣସିପ୍ରକାରେ ଅସହଯୋଗ ଆନ୍ଦୋଳନରେ ସହାୟତା ବା ସହାନୁଭୂତ ଦେଖାଇବା ସେମାନଙ୍କ ପକ୍ଷେ ଦୋଷାବହ ହେବ । ଲୋକସାଧାରଣଙ୍କୁ ଅସହଯୋଗରୁ ନିବର୍ତ୍ତାଇବା ଲାଗି ଏହି ମେମ୍ବରମାନଙ୍କୁ ପରାମର୍ଶ ଦିଆ ହୋଇଅଛି । ମୋଟକଥା ଏହି ମେମ୍ବରମାନଙ୍କୁ ସରକାର ଆପଣା ଗୃହର ବୋଲି ଜ୍ଞାନ କରନ୍ତି । ଜିଲା ବୋର୍ଡ଼ ଓ ମ୍ୟୁନିସିପାଲଟିରେ ସ୍ୱାୟତ୍ତଶାସନ ଲୋକଙ୍କୁ ଦିଆ ହୋଇଅଛି ବୋଲି ଏତେକାଳ ସରକାର ଲୋକଙ୍କୁ କହି ଆସୁଛନ୍ତି । ଲୋକେ ମଧ୍ୟ ଏହି ବ୍ୟାମୋହରେ ପଡ଼ି ପାଲ ପକାଇ ଉଚ୍ଚ ହୋଇ ବସିଛନ୍ତି । ମାତ୍ର ପ୍ରକୃତପକ୍ଷରେ ଜିଲାବୋର୍ଡ଼ ଓ ମ୍ୟୁନିସିପାଲଟି-ମାନ ସରକାରଙ୍କ ଶାସନକଳର ଅଙ୍ଗ । ଏହିପରି ଅଙ୍ଗ ହୋଇ ରହିଥିବା ଯାଏ ଏ ସବୁକୁ ସ୍ୱାୟତ୍ତଶାସନ ବୋଲି କହିବା ବିଡ଼ମ୍ବନା ମାତ୍ର । ନୂତନ ସରକୁଲରଦ୍ୱାରା ଏହିସବୁ ବୋର୍ଡର ମେମ୍ବରମାନେ ଆପଣାର ପଦମର୍ଯ୍ୟାଦା ବୁଝି ପାରୁଥିବେ । ଅଧିକାଂଶ ବୋର୍ଡ଼ର ମେମ୍ବରମାନେ ଜିଲ୍ଲା ମେଜେଷ୍ଟର ବା ସରକାରୀ ଚେୟାରମ୍ୟାନଙ୍କୁ ହାଜି କହିଥାନ୍ତି । ଏପରିକି ବେସରକାରୀ ଚେୟାରମ୍ୟାନ ଅନେକଙ୍କର ନିଜତ୍ୱ ନାହିଁ । ଖ୍ରୀମ ବଲ କୋଇନ୍ଥାକୁ ଜଣା । ଏହିସବୁ ବୋର୍ଡର ମେମ୍ବରମାନଙ୍କ ବଳବିକ୍ରମ ସରକାରଙ୍କୁ ବେଶ୍ ଜଣା । ତାହା ନ ହୋଇଥିଲେ ସେ ଏଭଳି ହୁକୁମଜାରି କରି ନ ଥାନ୍ତେ । ହୁଏତ ବୋର୍ଡର ଅନେକ ମେମ୍ବର ଏ ହୁକୁମକୁ ମୁଣ୍ଡନୁଆଇଁ ମାନିଯିବେ । ମନ ନ ମାନୁଥିଲେ ସୁଦ୍ଧା ପାଟି ଫିଟାଇବେ ନାହିଁ । ମାତ୍ର ଏହିପରି ଅନ୍ୟାୟ ଓ ଅସଙ୍ଗତ ଆଦେଶଦ୍ୱାରା କ୍ରମେ ଲୋକେ ସରକାରଙ୍କ ଅଭିପ୍ରାୟ ବୁଝି ପାରୁଛନ୍ତି ଏବଂ ସରକାରଙ୍କ କାର୍ଯ୍ୟରୁ କ୍ରମେ ସେମାନଙ୍କ ବିଶ୍ୱାସ ତୁଟି-ଯାଉଛି ସନ୍ଦେହ ନାହିଁ । ଏ ସରକୁଲର୍ ବିଷୟରେ କାଉନ୍‌ସିଲରେ ପ୍ରଶ୍ନ ଉଠିଲା । ଅନେକ ମେମ୍ବର ଏଥିର ବିରୁଦ୍ଧରେ ମତବ୍ୟକ୍ତ କରିଛନ୍ତି । ସରକାର ପୂର୍ବପରି ମଧ୍ୟ ଧରାଛୁଆଁ ଦେଉନାହାନ୍ତି । ସରକାର ଯାହାଇଚ୍ଛା ତାହା କହନ୍ତୁ ଏହାସବୁ ଗୋଟିଏ କଳରୁ ବାହାରୁଛି, କାହିଁରେ ବା ମନ୍ତ୍ରୀମାନେ ପରାମର୍ଶ ଦେଉଛନ୍ତି, କାହିଁରେ ବା କାର୍ଯ୍ୟକାରୀ ମେମ୍ବରମାନେ ପରାମର୍ଶ ଦେଉଛନ୍ତି । ନୂତନ ସରକୁଲର୍‌ରେ ମନ୍ତ୍ରୀଙ୍କ କାରେଣୀ ପ୍ରକାଶ ପାଇଛି । ପୂର୍ବ ସରକୁଲରମାନଙ୍କରେ ଗୋରା ଲୋକଙ୍କ ହାତ ଥିଲା ବୋଲି ସମସ୍ତେ ଦୋଷ ଦେଉଥିଲେ । ଏବେ ଦେଖାଗଲା ଯେ ଗୋରା ମେମ୍ବର ବା କଳା ମନ୍ତ୍ରୀ ସମସ୍ତେ ସମାନ । କଳରେ ଯେ ପଶିଛନ୍ତି ତାଙ୍କ ଭିତରେ ତଫାତ୍ ବଡ଼ କମ୍ । "କେହି କାହାକୁ ନୁହନ୍ତି ଊଣା, ଅଳପ ଟିକିଏ ତାଲ ଦେଉଲେ ଧାରଣା ।" ଜିଲାବୋର୍ଡ, ଲୋକାଲ-ବୋର୍ଡ଼, ମ୍ୟୁନିସିପାଲଟି, କାଉନ୍‌ସିଲ ପ୍ରଭୃତିକି ଯେଉଁମାନେ ଲୋକସାଧାରଣଙ୍କ ପ୍ରତିନିଧି ସଭା କହି ସେଥିରେ ପଶି ସହଯୋଗୀଦ୍ୱାରା ଶକ୍ତି ଓ ସଂସ୍କାର ଲାଭ କରିବାକୁ କହନ୍ତି ଏହିସବୁ ସରକୁଲର ଦେଖି ସେମାନଙ୍କର ଚେତନା ଆସିବ କି ?

('ସମାଜ' ତା ୨୮ । ୩ । ୨୧)

# ମହାତ୍ମାଙ୍କ କଥା ଶୁଣ

( ୧୯୨୧ ରେ ସାରା ଭାରତରେ ଅସହଯୋଗ ଆନ୍ଦୋଳନର ପ୍ରବଳ ଘୂର୍ଣ୍ଣିବାତ୍ୟା ଖେଳିଗଲା । ଗୋପବନ୍ଧୁ ଓଡ଼ିଶାକୁ ସେହି ଆନ୍ଦୋଳନର ଶୁଭ-ବାର୍ତ୍ତା ବହନକରି ଆଣିଥିଲେ । ସେହିବର୍ଷ ମାର୍ଚ୍ଚ ମାସ ୨୩ ତାରିଖରେ ଅସହଯୋଗ ଆନ୍ଦୋଳନର ଜନ୍ମଦାତା ମହାତ୍ମାଗାନ୍ଧୀ କଟକର କାଠଯୋଡ଼ି ବାଲିରେ ଓଡ଼ିଆ ଜାତିକୁ ପ୍ରଥମ ଉଦ୍‌ବୋଧନ ଦେଇଥିଲେ । ଭଗୀରଥ ଯେପରି ସ୍ୱର୍ଗରୁ ଗଙ୍ଗାଙ୍କୁ ପୃଥିବୀକୁ ବାଟ କଢ଼ାଇ ଆଣିଥିଲେ, ଗୋପବନ୍ଧୁ ଠିକ୍ ସେହିପରି ମହାତ୍ମା ଗାନ୍ଧୀଙ୍କୁ ଓଡ଼ିଶାକୁ ବାଟ କଢ଼ାଇଆଣି ଏ ରାଜ୍ୟରେ ଅସହଯୋଗ ଆନ୍ଦୋଳନର ମନ୍ଦାକିନୀଧାରା ଛୁଟାଇ ଦେଲେ । ସେଦିନ ସେ କାଠଯୋଡ଼ି ବାଲିରେ ମହାତ୍ମା ଗାନ୍ଧୀଙ୍କୁ ଚିହ୍ନାଇବାକୁ ଯାଇ ସଂକ୍ଷେପରେ ଯେଉଁ କେତେପଦ କଥା କହିଥିଲେ ତାହା ଏଠାରେ ଦିଆଯାଉଛି )

ଭାଇମାନେ ! ଯେ ମହାତ୍ମାଗାନ୍ଧୀଙ୍କୁ ଆପଣମାନେ ଦେଖିବେ ବୋଲି ଏତେ ଦିନ ବ୍ୟାକୁଳ ହେଉଥିଲେ, ସେ ଆଜି ଆପଣମାନଙ୍କ ସମ୍ମୁଖରେ ବିଦ୍ୟମାନ । ସେ ଭାରତର ଘରେ ଘରେ ଗ୍ରାମେ ଗ୍ରାମେ ଆବାଳ-ବୃଦ୍ଧବନିତାଙ୍କ ନିକଟରେ ପରିଚିତ । ଅତଏବ ତାଙ୍କର ପରିଚୟ ଦେଇ ସଭାର ନିଧିରକ୍ଷା କରିବା ମୋ ପକ୍ଷରେ ବିଡ଼ମ୍ବନା ମାତ୍ର । ଉତ୍କଳରେ ପ୍ରତ୍ୟେକ ସ୍ତ୍ରୀ ପୁରୁଷ ଏ ମହାପୁରୁଷଙ୍କୁ ଜାଣନ୍ତି । ରାଜନୀତି କ୍ଷେତ୍ରରେ ଉତ୍କଳ ଭାରତରେ ଆଶାନୁରୂପ ଅଗ୍ରସର ହୋଇନାହିଁ । କିନ୍ତୁ ଧର୍ମ ବିଷୟରେ ଏହା ଅଗ୍ରସ୍ଥାନ ଚିରକାଳରୁ ପାଇ ଆସୁଅଛି । ଏପର୍ଯ୍ୟନ୍ତ ଯେ ସମସ୍ତ ମହାପୁରୁଷ ଭାରତରେ ଜନ୍ମଗ୍ରହଣ କରି ନିଜର କୀର୍ତ୍ତି ଏ ପୁଣ୍ୟଭୂମିରେ ଛାଡ଼ି ଯାଇଅଛନ୍ତି, ସେମାନେ ସମସ୍ତେ ଉତ୍କଳରେ ପଦାର୍ପଣ କରି ଯାଇଅଛନ୍ତି । ବୁଦ୍ଧଦେବଙ୍କଠାରୁ ଆରମ୍ଭ କରି କବୀର, ରାମାନୁଜ, ଶଙ୍କର, ନାନକ, ଚୈତନ୍ୟ ପ୍ରଭୃତି ଯେ ସମସ୍ତ କ୍ଷଣଜନ୍ମା ଏ ପବିତ୍ର ଭାରତରେ ଜନ୍ମଗ୍ରହଣ କରିଥିଲେ, ସମସ୍ତେ ଉତ୍କଳରେ ନିଜର ଚିହ୍ନ ରଖିଯାଇଛନ୍ତି । ଆହୁରିମଧ୍ୟ ଆଜକୁ ପ୍ରାୟ ୩୦୦ ବର୍ଷ ତଳେ ଠିକ୍ ଆଜିର ଦୋଳପୂର୍ଣ୍ଣିମା ତିଥିରେ ଚୈତନ୍ୟ ମହାପ୍ରଭୁ ଏହି ନଦୀର ବାଲୁକାରେ ପ୍ରେମଧର୍ମ ପ୍ରଚାର କରିଥିଲେ । ଆଜି ଅନ୍ୟ ଜଣେ ମହାପୁରୁଷ ପୁଣି ୩୦୦ ବର୍ଷ ପରେ

ଏହି ବାଲୁକାରେ ସେହି ତଥିରେ ରାଜନୈତିକ ପ୍ରେମଧର୍ମ ପ୍ରଚାର କରିବାକୁ ଆସିଅଛନ୍ତି । ଆମ୍ଭର ଉତ୍କଳ ଧର୍ମ ନିମିତ୍ତ ଯୁଗେ ଯୁଗେ ପ୍ରତିଷ୍ଠା ପାଇଅଛି । ଆଜ ପୁଣି ଏହି ମହାତ୍ମାଙ୍କ ଯୋଗୁ ରାଜନୀତି ପୁଣି ଧର୍ମ ଉପରେ ପ୍ରତିଷ୍ଠିତ । ଏହି ଧର୍ମାତ୍ମା ଓ ପୁଣ୍ୟାତ୍ମାଙ୍କ ରାଜନୀତିରେ କୂଟରାଜନୀତିର ସତ୍ତା ନାହିଁ । ତାଙ୍କ ପ୍ରଚାରିତ ଭାରତବାସୀଙ୍କ ଦ୍ୱାରା ଗୃହୀତ ନୀତିକୁ ଆପଣମାନେ ମନସ୍ଥ ହୋଇ ଅନୁସରଣ କରିବାକୁ ଉପସ୍ଥିତ । ଉତ୍କଳ ଯୁଗେ ଯୁଗେ ଧର୍ମ ବିଷୟରେ ଉଦାରତା ଦେଖାଇଛି । ନାନା ଧର୍ମ, ବର୍ଣ୍ଣ ସମ୍ପ୍ରଦାୟର ଲୋକେ ଉତ୍କଳରେ ଏକୀଭୂତ । ପୁରୀଧାମରେ ଜାତିଭେଦ ନାହିଁ । ଆଜ ମହାତ୍ମାଗାନ୍ଧୀଙ୍କ ଶୁଭାଗମନ ଉତ୍କଳ ଇତିହାସରେ ଏକ ନୂତନ ଓ ଚିରସ୍ମରଣୀୟ ଘଟଣା । ଆପଣମାନେ ଉତ୍କଳୀୟଙ୍କର ପୂର୍ବ ଗୌରବ ଓ ଧର୍ମଉଦାରତା ସ୍ମରଣ ରଖି ମହାତ୍ମାଙ୍କ କଥା ଶ୍ରବଣ କରନ୍ତୁ ।

( 'ସମାଜ', ତା ୨ । ୪ । ୨୧)

———

# ରାଜ୍ୟପାପ ସରକାରଙ୍କୁ

ଭାଇମାନେ, ତାଳି ମାରିବା ବନ୍ଦ କର । ବିହାର ସରକାର ଏବେ ସରକୁଲାରରେ ଶାନ୍ତିଭଙ୍ଗର ଆଶଙ୍କା କରିଅଛନ୍ତି । କିନ୍ତୁ ମୁଁ କହେଁ, ଆମ୍ଭମାନଙ୍କର ଅସହଯୋଗ ଆନ୍ଦୋଳନ ଶାନ୍ତିପୂର୍ଣ୍ଣ ସାଧନାରେ ପ୍ରତିଷ୍ଠିତ । ଯେଉଁ ଦିନ ଅସହଯୋଗ ଆନ୍ଦୋଳନରେ ଶାନ୍ତିଭଙ୍ଗ ହେବ, ସେଦିନ ସେ ଆନ୍ଦୋଳନର ନାଶ ହେବ । କେବଳ ଆମ୍ଭମାନଙ୍କ ସଭା ସମିତିରେ ବେଳେ ବେଳେ ତାଳି ମରାଯାଏ । ଏହି ତାଳି ମରାକୁ ଯେବେ ଶାନ୍ତିଭଙ୍ଗ ମଧ୍ୟରେ ଗ୍ରହଣ କରାଯାଏ ତେବେ ମୁଁ ସ୍ୱୀକାର କରୁଅଛି ଯେ ଅସହଯୋଗରେ ଶାନ୍ତିଭଙ୍ଗ ଅଛି । ପ୍ରକୃତରେ ସରକାର ତାଳିମରାକୁ ଆଶଙ୍କା କରନ୍ତି । କାରଣ ତିରିଶ କୋଟି ଭାରତବାସୀ ତାଳି ମାରିଦେଲେ ଲକ୍ଷେ ଇଂରେଜଙ୍କ ପତ୍ତା ରହିବ ନାହିଁ । କଟକରେ ଜଣେ କଲେକ୍ଟର ଓ ଖୋରଧାରେ ଜଣେ ଡିଭିଜନ ସାହେବ କୁକୁର ଭୁକା ଓ ସଙ୍କୀର୍ତ୍ତନ ଶବ୍ଦରେ ତାଙ୍କ ନିଦ ଭାଙ୍ଗିଯାଏ ବୋଲି ଫୌଜଦାରୀ ମକଦ୍ଦମା ଆଣୁଥିଲେ । ଯାହାହେଉ, ତାଳିମରା ଟିକିଏ ବନ୍ଦ କରିଦେଲେ ଅମ୍ଭର ଶାନ୍ତିଭଙ୍ଗ ଆଶଙ୍କାର ଆଉ କିଛି କାରଣ ନାହିଁ ।

ମୁଁ ମହାତ୍ମାଗାନ୍ଧୀଙ୍କୁ ଆପଣଙ୍କ ନିକଟରେ କି ପରିଚୟ କରାଇବି । ଏହି ମହାତ୍ମାଙ୍କ ଶରୀର ଏଡ଼େ କ୍ଷୀଣ, ଆକାର ଏଡ଼େ କୃଶ । କିନ୍ତୁ ଏଥି ମଧ୍ୟରେ କି ଶକ୍ତି ନିହିତ ଅଛି ଯେ, କେତେ ଦୂରରୁ ପଲ୍ଲୀଗ୍ରାମ ଓ ସହରରୁ ଏତେ ଏତେ ଲୋକଙ୍କୁ ଟାଣି ଆଣିଅଛି । ଏହି ଶକ୍ତି ଦକ୍ଷିଣ ଆଫ୍ରିକାରେ ଭାରତର ଜୟ ବୈଜୟନ୍ତୀ ଉଡ଼ାଇଥିଲା । ଏହି ଶକ୍ତି ଚମ୍ପାରଣ ଜିଲ୍ଲାର ପ୍ରଜାଙ୍କୁ ନୀଳସାହେବଙ୍କ ଅତ୍ୟାଚାରରୁ ରକ୍ଷା କରିଥିଲା । ଏହି ଶକ୍ତି କାଇରା ଜିଲ୍ଲାର ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କୁ କରଜ୍ୱାଳାରୁ ମୁକ୍ତ କରିଥିଲା । ପୁରୀଜିଲ୍ଲା କଥା ବା କିଅଣ କହିବି ? ମହାତ୍ମାଙ୍କ ନାମ ଆଜି ଗୃହେ ଗୃହେ କୀର୍ତ୍ତିତ । ସେ ମନୁଷ୍ୟ ନୁହନ୍ତି, ସେ ଦେବତା ବା ଦେବଦୂତ । ଆପଣ ଜାଣନ୍ତି, ପୁରୀରେ ଗତ ଦୁର୍ଭିକ୍ଷରେ କେତେ କେତେ ଲୋକ ମଲେ । କେତେ ଝଡ଼ଝଞ୍ଜା ସହିବାକୁ ହେଲା । ସରକାରଙ୍କ ନିକଟରେ ପ୍ରାର୍ଥନା କରାଗଲା । ଶେଷରେ ଲାଟ ସାହେବଙ୍କ ଆସନ ଟଳିବାରୁ ସେ ନିଜେ ଆସି କହିଲେ, ଯାହା ହେବାର ଉଚିତ ଥିଲା ତାହା ହୋଇନାହିଁ । କିନ୍ତୁ ଫଳରେ ହେଲା ଯେ ଦୁର୍ଭିକ୍ଷ ଘୋଷଣା କରିବାର ସମୟ ହୋଇନାହିଁ ।

ସରକାରୀ ଲାଟ ଏପରି କଲେ । କିନ୍ତୁ ଏହି ପୁରୀର ଠିକ୍ ପଶ୍ଚିମରେ ଦ୍ୱାରକା-ଧାମରେ ଆମ୍ଭମାନଙ୍କର ହୃଦୟର ଲାଟ ମହାତ୍ମାଗାନ୍ଧୀ ଗୁଜରାଟରେ ଥାଇ ପୁରୀକୁ ନ ଦେଖି ନ ଆସି ପୁରୀ ଜିଲାରେ ଦୁର୍ଭିକ୍ଷ ଘୋଷଣା କଲେ । ସେ ଘୋଷଣା ସଙ୍ଗେ ସଙ୍ଗେ ସହସ୍ର କୋଶ ଦୂରରୁ, କେବଳ ଗୁଜରାଟରୁ ନୁହେଁ, ସମସ୍ତ ଭାରତରୁ ଗଣି ଗଣି ଟଙ୍କା ଜମା ହେଲା । ସରକାରଙ୍କ ସ୍ତୋକଦାନ ଏହା ତୁଳନାରେ କିଛି ନୁହେଁ । ମହାତ୍ମାଙ୍କ ବଳରେ ଆଶ୍ୱସନାରେ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକ ନବଜୀବନ ପାଇଛନ୍ତି । ଦେଖ ପୁରୀବାସୀ, ଆମ୍ଭ ପ୍ରାଣଦାତା ହୃଦୟର ବାଦଶାହ ଏଠାରେ ବିଦ୍ୟମାନ । ମୁଁ ସେହି ଦୁର୍ଭିକ୍ଷ ସମ୍ବନ୍ଧରେ ତୁମ୍ଭମାନଙ୍କୁ ଦେଖିଅଛି । ମୋର ଚକ୍ଷୁ ଆଗରେ ଲୋକ ମରିଥିବାର ମଧ୍ୟ ମୁଁ ଦେଖିଛି । ଏହି ଦୁର୍ଭିକ୍ଷରେ ଯେଉଁ ଲୋକ ମରିଛନ୍ତି । ସେଥିରୁ ପାତକ ଗଭର୍ଣ୍ଣମେଣ୍ଟଙ୍କ ଉପରେ । ପଞ୍ଜାବ ସମସ୍ୟା ଭାରତର ଏକ ବ୍ୟାପାର, ଖିଲାଫତ ସମସ୍ୟା ଜଗତର ଧର୍ମ ମଣ୍ଡଳର ଏକ ବ୍ୟାପାର । ଆମ୍ଭ ଆଖି ଆଗରେ ଯେଉଁ ଦୁର୍ଭିକ୍ଷ ବ୍ୟାପାର ଲାଗିଅଛି ସେ ପାପ ସକାଶେ ଦାୟୀ କିଏ ? ମୁଁ ଏକଥା କାଉନ୍‌ସିଲରେ କହିଥିଲି ଯେ ଏ ପ୍ରଦେଶର କୌଣସି ନିର୍ଜନ କୋଣରେ ଯେବେ ଗୋଟିଏ ସାମନ୍ୟ ଲୋକ ନ ଖାଇ ମରିଯାଏ ତେବେ ତାହା ସକାଶେ ପାପ ସରକାରଙ୍କୁ, ସରକାରଙ୍କ କଳର ପ୍ରତ୍ୟେକ ଚାଳକଙ୍କୁ ଓ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବରେ ଏହି କାଉନସିଲ ମୁଣ୍ଡରେ ଲଦା ହେବ । ମୁଁ ସେତେବେଳେ କାଉନ୍‌ସିଲରେ ଥିଲି । ମୁଁ ମଧ୍ୟ ସେ ପାପର ଭାଗୀଦାର । ରାଜ୍ୟ ପାପ ରାଜା ମୁଣ୍ଡରେ । ସେହି ହେତୁ ଏହି ଯେଉଁ ପାପ ହେଉଅଛି, ତାହାର ସମ୍ପର୍କ ଛାଡ଼ିବାକୁ ମହାତ୍ମାଜୀ ଏକ ନୂତନ ଧର୍ମ ପ୍ରଚାର କରୁଅଛନ୍ତି, ଏହାହିଁ ଅସହଯୋଗ । ସମ୍ପର୍କ ତ୍ୟାଗ ଧର୍ମ ଭାରତ ଜାତୀୟ ମହାସମିତି ଏକ ବାକ୍ୟରେ ଗ୍ରହଣ କରିଅଛନ୍ତି । ଆଉ ଗୋଟିଏ କଥା —

ଗଲା ସେପ୍‌ଟେମ୍ବର ମାସରେ କଲିକତାରେ ବିଶେଷ କଂଗ୍ରେସ ଅଧିବେଶନ ସମୟରେ ମହାତ୍ମାଙ୍କୁ ପୁରୀ ଆସିବା ନିମିତ୍ତ ପ୍ରାର୍ଥନା କଲାବେଳେ ସେ କହିଲେ, ମୁଁ ଓଡ଼ିଶାକୁ ଗଲେ ଅସହଯୋଗ (Non Co-operation) ଭୁଲିଯିବି । କାରଣ ସେଠାରେ କେବଳ ଦୁର୍ଭିକ୍ଷର ବିକଟ ମୂର୍ତ୍ତି ଦେଖିବି । କିନ୍ତୁ ଆଜ ମହାତ୍ମାଙ୍କ ସମ୍ମୁଖରେ ମୁଁ କହୁଅଛି ଯେ, ଉତ୍କଳବାସୀ ପୁରୀବାସୀ ଦୁର୍ଭିକ୍ଷ ପ୍ରପୀଡ଼ିତ ହେଲେ ସୁଦ୍ଧା ସେମାନେ ଅସହଯୋଗ ମହାଯଜ୍ଞରେ ପ୍ରାଣ ବିସର୍ଜନ କରି ଜାତୀୟତାର ପ୍ରମାଣ ଦେଖାଇଅଛନ୍ତି ।

ଉତ୍କଳ ଏତେ ନିର୍ଯ୍ୟାତନା ଭୋଗକରି ଏତେ ଦିନଯାଏ ତିଷ୍ଠି ଅଛୁ, ତାହା ବୃଥା ନୁହେଁ । ଏଥିର ଅବଶ୍ୟ କିଛି ଉଦ୍ଦେଶ୍ୟ ଅଛି । ଭାରତ ଜାତୀୟ ମହାଯଜ୍ଞରେ ଏହାର ଅଂଶ ଅଛି । ଉତ୍କଳ ତାହାର ସହିଷ୍ଣୁତାର ଓ ନିର୍ଯ୍ୟାତନାର ସଫଳତା ଏତେ କାଳକେ ଦେଖାଉଛି ।

ପୁରୀ ପୁରାଣ ପ୍ରସିଦ୍ଧ ସ୍ଥାନ । ଭାରତରେ ଯେତେ ମହାତ୍ମା ଜନ୍ମିଛନ୍ତି, ସେମାନେ ପୁରୀକୁ ମହାଧାମ କରିଛନ୍ତି । ପୁରୀରେ ବୁଦ୍ଧଙ୍କର ଦନ୍ତ, କବୀରଙ୍କ ସମାଧି, ରାମାନୁଜଙ୍କର ମଠ ଓ ନାନକଙ୍କର ମଧୁମୟ ଗାନ ରହିଅଛି ଓ ଚୈତନ୍ୟଙ୍କ ଲୀଳା ସମ୍ବନ୍ଧ ଉତ୍କଳରେ ବିଦ୍ୟମାନ । କବୀର ହିନ୍ଦୁ ମୁସଲମାନମାନଙ୍କୁ ଏକ କରିବାକୁ ବସିଥିଲେ । ମାତ୍ର ତାଙ୍କର କାର୍ଯ୍ୟ ଅପୂର୍ଣ୍ଣ ହୋଇ ରହିଥିଲା- ଆଜି ଏ ଦ୍ୱିତୀୟ କବୀର ହିନ୍ଦୁ ମୁସଲମାନମାନଙ୍କୁ ଏକକରି ସେ ଅପୂର୍ଣ୍ଣତାକୁ ପୂର୍ଣ୍ଣକରି ଅଛନ୍ତି । ଆଜି ଗଙ୍ଗା ଯମୁନା ସ୍ୱରୂପ ହିନ୍ଦୁ ମୁସଲମାନମାନଙ୍କୁ ଏକାଠି ମିଳାଇ ମହାତ୍ମାଗାନ୍ଧୀ ଭାରତରେ ଏକ ମହାପ୍ରୟାଗ ସୃଷ୍ଟି କରିଛନ୍ତି । ଆଜି ମହାତ୍ମା ତାଙ୍କ ଈଶ୍ୱରବାଣୀକୁ ଏ ପବିତ୍ର ଧାମରେ ପ୍ରକାଶ କରନ୍ତୁ । ମୋର ପୂର୍ଣ୍ଣ ବିଶ୍ୱାସ ପୁରୀବାସୀ ବର୍ଣ୍ଣ ଧର୍ମ ନିର୍ବିଶେଷରେ ଉକ୍ତ ଈଶ୍ୱରବାଣୀକୁ ଗ୍ରହଣ କରିବାକୁ ପ୍ରାଣ ଉନ୍ମୁକ୍ତ କରି ଅଛନ୍ତି, ଜଗନ୍ନାଥ ଆମ୍ଭମାନଙ୍କୁ ସାହାଯ୍ୟ କରନ୍ତୁ । ଆମ୍ଭମାନଙ୍କ ଉଦ୍‌ଯୋଗ ସଫଳ ହେଉ । ତାଙ୍କର ନୀଳଚକ୍ର ଓ ବାନାତଳେ ଆମ୍ଭେମାନେ ଏକ ମହାଭାରତୀୟ ଜାତି ହେଉଁ ।

## ସଭା ଭାଷଣ

ବର୍ତ୍ତମାନ ଅସହଯୋଗ ଯୁଗରେ ଯେତେବେଳେ ସ୍ୱରାଜ୍ୟ ଆମ୍ଭମାନଙ୍କ ଲକ୍ଷ୍ୟ ସେତେବେଳେ ଓଡ଼ିଆ ତେଲେଙ୍ଗା କଳିଭଳି ଏକ ଗୃହଚ୍ଛିଦ୍ରକୁ ଆମ୍ଭମାନଙ୍କୁ ଶୀଘ୍ର ବିଦୂରିତ କରିବାକୁ ହେବ । ଆସନ୍ତା ସୂର୍ଯ୍ୟ ଉଦୟ ପୂର୍ବରୁ ହୃଦୟକୁ ନିର୍ମଳ ରଖି ଆନ୍ଧ୍ର ଉତ୍କଳୀୟମାନେ ମହାତ୍ମାଙ୍କ ନିର୍ଦ୍ଦେଶକୁ ଶିରୋଧାର୍ଯ୍ୟ କରନ୍ତୁ ଏହାହିଁ ମୋହର ବିନୀତ ନିବେଦନ । ମହାତ୍ମାଙ୍କ ବ୍ରହ୍ମପୁର ଅବସ୍ଥିତି ଗଞ୍ଜାମ ପକ୍ଷରେ ଏକ ମାହେନ୍ଦ୍ର ଯୋଗ । ଏଠାରୁ ସମସ୍ତେ ଦୃଢ଼ସଙ୍କଳ୍ପ ହୋଇ ସ୍ୱରାଜ୍ୟ ଏ ବର୍ଷ ଭିତରେ ପାଇବାକୁ ଚେଷ୍ଟା କରି ଯାଆନ୍ତୁ । ପୁଣ୍ୟ ବେଳ ଘଡ଼ିଏ । ଯେ ଯାହା ତିଳକ ସ୍ୱରାଜ୍ୟ ପାଣ୍ଠିକୁ ଦେବାର ଦିଅନ୍ତୁ ।

('ସମାଜ', ତା ୨ । ୪ । ୨୧)

---

# ମହାତ୍ମାଙ୍କ ସମ୍ବନ୍ଧେ

ମହାତ୍ମାଗାନ୍ଧୀ ଓଡ଼ିଶା ବୁଲିଗଲେ । ଗତ ଛ ମାସ ଧରି ଲୋକେ ମହାତ୍ମାଙ୍କର ଦର୍ଶନ ପାଇବାପାଇଁ ଅପେକ୍ଷା କରୁଥିଲେ । ମହାତ୍ମାଙ୍କର ଓଡ଼ିଶା ଭ୍ରମଣ ସଙ୍ଗେ ସଙ୍ଗେ ଓଡ଼ିଶାରେ ଜୀବନର ନୂତନ ବିକାଶ ଦେଖାଗଲା ଯେପରିକି ଗୋଟିଏ ଜୀବନ ଲହରି ଓଡ଼ିଶା ଉପରେ ଖେଳିଗଲା । ଆମ୍ଭମାନଙ୍କର ବିଶ୍ୱାସ କେବଳ ଲହଡ଼ି ପରି ଏ ଜୀବନ ଉପରେ ଉପରେ ଭାସିଯିବ ନାହିଁ । ନ ଯିବାର କଥା । ପୁରୀରେ ବିଶେଷତଃ ମହାତ୍ମାଙ୍କର ଯେ ଅଭ୍ୟର୍ଥନା ହେଲା ତାହା ଓଡ଼ିଶାରେ କାହିଁକି ଭାରତବର୍ଷରେ ବଡ଼ କ୍ୱଚିତ ଦେଖାଯାଇଥିବ । ୨୫।୩୦ କୋଶ ବାଟରୁ କିଏ ଶଙ୍ଖ ଧରି, କିଏ ମହୁରି ଧରି, କିଏ ବା ସଂକୀର୍ତ୍ତନ ପଞ୍ଝା ଧରି ଯାହାର ଯାହା ଦେଖାଇବାର ଥିଲା ସବୁ ଧରି ଲୋକେ ମହାତ୍ମାଜୀଙ୍କର ଦର୍ଶନ ପାଇଁ ପୁରୀରେ ଆସି ଜମା ହୋଇଥିଲେ । ଏତେ ଉତ୍ସାହ ଓ ଲୋକସମାଗମ କୌଣସି ରଥ ଯାତରେ ମଧ୍ୟ ଏପର୍ଯ୍ୟନ୍ତ ଦେଖାଯାଇନାହିଁ । ମହାତ୍ମା ଓଡ଼ିଶାର ପ୍ରାୟ ପ୍ରତ୍ୟେକ ଜିଲା ବୁଲିଗଲେ । କେବଳ ସମ୍ବଲପୁର ଯାଇଥିଲେ ସମସ୍ତ ଓଡ଼ିଶା ଦେଖି ପାରିଥାନ୍ତେ। ଏଥର ଅବଶ୍ୟ ସମୟ ଅଭାବରୁ ସମ୍ବଲପୁର ଯାଇ ନ ପାରି ଦୁଃଖପ୍ରକାଶ କଲେ । ଆସନ୍ତା ମଇ ମାସରେ ଯିବେ ବୋଲି କହୁଛନ୍ତି । ଗଲେ ସେ ଜିଲାରେ ମଧ୍ୟ ଲୋକଙ୍କର ଉତ୍ସାହ ଓ ନବଜୀବନ ସଞ୍ଚାରର ପରିଚୟ ପାଇବେ । ତେବେ ଆମ୍ଭମାନଙ୍କର ବିଶ୍ୱାସ ଏ ଜୀବନର ବିକାଶ କେବଳ ମହାତ୍ମାଙ୍କ ଦର୍ଶନରେ ଶେଷ ହେବ ନାହିଁ । ଲୋକେ ମହାତ୍ମାଙ୍କ ପ୍ରଚ୍ଚରିତ ଅସହଯୋଗ ଦୀକ୍ଷାରେ ପୂର୍ଣ୍ଣ ବିଶ୍ୱାସ କରନ୍ତୁ । ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ଓଡ଼ିଶାର ଅସହଯୋଗରେ ବିଶ୍ୱାସ ଅଧିକ ହେବାର କଥା । ଏତେକାଳ ଇଂରେଜ ଶାସନରେ ରହି ଓଡ଼ିଆମାନେ ଏପର୍ଯ୍ୟନ୍ତ କୌଣସି ଗୋଟିଏ ମାତ୍ର ଜାତୀୟ ଅଭାବ ସରକାରଙ୍କଦ୍ୱାରା ମୋଚନ କରି ପାରି ନାହାନ୍ତି । ଦେଶମିଶ୍ରଣ ବୋଲି, ବନ୍ୟା ବଜ୍ରପାତ ଓ ଦୁର୍ଭିକ୍ଷ ବୋଲି କୌଣସି ଗୋଟିଏ ଗୁହାରି ଏପର୍ଯ୍ୟନ୍ତ ସରକାରଙ୍କ କାନରେ ବାଜିଲା ନାହିଁ । ଅଥଚ ଦେଶମିଶ୍ରଣ ଆନ୍ଦୋଳନ ଏତେକାଳ ଚାଲିଲା । ପ୍ରାୟ ପ୍ରତିବର୍ଷ ବନ୍ୟା ଓ ଦୁର୍ଭିକ୍ଷରେ ଏତେ ଲୋକ ମରୁଛନ୍ତି । ମାତ୍ର ଅସହଯୋଗରେ କେବଳ ବିଶ୍ୱାସ କଲେ ଚଳିବ ନାହିଁ । ମହାତ୍ମାଜୀଙ୍କର ଆଦେଶ ଅନୁସାରେ କାର୍ଯ୍ୟ କରିବାକୁ ହେବ । ମହାତ୍ମାଜୀ କହନ୍ତି ଆସନ୍ତା ଜୁନ୍ ମାସ ୩୦ ତାରିଖ ମଧ୍ୟରେ ଏକ କୋଟି ଲୋକ କଂଗ୍ରେସର ସଭ୍ୟ ହେବେ । ତିଲକ ସ୍ୱରାଜ ପାଣ୍ଠି ସକାଶେ ୧ କୋଟି ଟଙ୍କା ସଂଗ୍ରହ କରାଯିବ ଏବଂ ୨୦ ଲକ୍ଷ ଅରଟ ପ୍ରାୟ

ପ୍ରତ୍ୟେକ ଘରେ ଚାଲିବ । ଏତକ ହେଲେ ଦେଶରେ ସ୍ୱରାଜ୍ୟ ପ୍ରତିଷ୍ଠିତ ହେବ । ଓଡ଼ିଶାର ଲୋକସଂଖ୍ୟା ଏକକୋଟି । ଭାରତବର୍ଷର ପ୍ରାୟ ୩୦ ଭାଗରୁ ଭାଗେ । ଓଡ଼ିଶା ଭାଗରେ ପଡ଼ୁଛି ପ୍ରାୟ ୩ ଲକ୍ଷ କଂଗ୍ରେସ ସଭ୍ୟ; ତିଲକ ପାଣ୍ଠି ପାଇଁ ତିନିଲକ୍ଷ ଟଙ୍କା ଏବଂ ଦୁଇଲକ୍ଷ ଚରଖା । ଏତକ ଓଡ଼ିଶାରେ ଜୁନ୍ ୩୦ ତାରିଖ ପୂର୍ବରୁ ହେବ । ଏହା କିଛି ଅସମ୍ଭବ ନୁହେଁ । ଓଡ଼ିଶାର ପ୍ରତ୍ୟେକ ଲୋକ ଜଣ ପିଛା ଯଦି ଦୁଇଟି କରି ପଇସା ଦିଅନ୍ତି ତିନିଲକ୍ଷ ଟଙ୍କା ଅକ୍ଲେଶରେ ହେବ । ଲୋକେ ଯେ ନ ଦେବେ ତା ନୁହେଁ । କେବଳ ଆଦାୟ କରି ପାରିଲେ ହେଲା । ଆମ୍ଭେମାନେ ଆଶାକରୁ ଦେଶର ଏ ଦୁର୍ଗତି ସମୟରେ ମାତାର ଆହ୍ୱାନ ଲଙ୍ଘନ ନ କରି ଦେଶର ଶିକ୍ଷିତ ଓ ଶିକ୍ଷା ପାଉଥିବା ଯୁବକମାନେ ଏ କାର୍ଯ୍ୟଭାର ଶୀଘ୍ର ଗ୍ରହଣ କରିବାକୁ ପ୍ରସ୍ତୁତ ହେବେ ।

('ସମାଜ', ତା ୨ । ୪ । ୨୧)



# ବଡ଼ଲାଟଙ୍କ ତତ୍ପରତା

ଭାରତର ବଡ଼ଲାଟ ଲର୍ଡ ରିଡ଼ିଂ ଏ ମାସ ଦୁଇ ତାରିଖ ବମ୍ବେଇଠାରେ ପହଞ୍ଚି ଏଥିମଧ୍ୟରେ ଦିଲ୍ଲୀ ଆସି ବିରାଜମାନ କରିଅଛନ୍ତି । ସେ ଶୀଘ୍ର ପଞ୍ଜାବ ଯାଇ ସବୁ ଘଟଣା ନିଜ ଆଖିରେ ଦେଖିବେ ଏବଂ ସମ୍ପ୍ରଦାୟ କଥା ନିଜ କାନରେ ଶୁଣିବେ ବୋଲି ଇଚ୍ଛାପ୍ରକାଶ କରିଛନ୍ତି । ଏଥିମଧ୍ୟରେ ତାଙ୍କୁ କେତେ ଜାଗାରେ ମ୍ୟୁନିସିପାଲିଟି ପ୍ରଭୃତି ପକ୍ଷରୁ ଅଭିନନ୍ଦନ ପତ୍ର ଆଦି ଦିଆଯାଇଛି । ଅସହଯୋଗୀ ଦଳ ଏଥିରେ କୌଣସିଠାରେ କିଛି ଆପତ୍ତି ଉଠାଇ ନାହାନ୍ତି । ଲର୍ଡ ରିଡ଼ିଂ ନୂଆ ହୋଇ ଏ ଦେଶକୁ ଆସୁଛନ୍ତି । ତାଙ୍କର ଭାବଗତି ଏପର୍ଯ୍ୟନ୍ତ କିଛି ଜଣା ପଡ଼ିନାହିଁ । ଅବଶ୍ୟ ସେ କେତେ ଜାଗାରେ କେତେ ଭଲ ଭଲ କଥା କହିବାର ଶୁଣାଗଲାଣି । ନ୍ୟାୟରେ ରାଜ୍ୟ ଚଲାଇବେ ବୋଲି ଆଶା ଆଶ୍ୱାସନା ଦେଉଛନ୍ତି । ମାତ୍ର ଏଭଳି କଥାମାନ ଭାରତବାସୀ ଆଜି ନୂଆ ଶୁଣୁନାହାନ୍ତି । ଏସବୁରେ ଏ ଦେଶ ଲୋକେ ଭୁଲିବା ଦିନ ଗଲାଣି । ଏଣିକି "ଫଲେନ ପରିଚୀୟତେ ।" ନୂତନ ଲାଟଙ୍କର ଗୁଣନିଷ୍ଠା କିଛି ଜଣା ନ ପଡ଼ିବାଯାଏ ଅସହଯୋଗୀମାନେ ତାଙ୍କ ସମ୍ବନ୍ଧେ ଯେ ନୀତି ଧରିଛନ୍ତି ତାହା ଠିକ୍ ହୋଇଅଛି । ସେମାନେ ସରକାରଙ୍କ ଶାସନକଳ ସଙ୍ଗେ ଯେତେବେଳେ କୌଣସି ସମ୍ପର୍କ ରଖି ନାହାନ୍ତି ସେ କଳକୁ କିଏ କେବେ ଆସୁଛନ୍ତି ବା ସେ କିପରି ଲୋକ ବା କଳ କିପରି ଚଲାଇବେ ଏସବୁ କଥା ବୁଝିବା ସେମାନଙ୍କର ଦରକାର କଣ ? ମାତ୍ର ଶୁଣାଯାଏ ଲର୍ଡ୍ ରିଡ଼ିଂ ପଞ୍ଜାବ ଗଲାପରେ ଦେଶର ମୁଖିଆ ମୁଖିଆ ଲୋକଙ୍କୁ ଡକାଇ ସେମାନଙ୍କ ଅଭିପ୍ରାୟ ବୁଝିବେ । ଖୁବ୍ ସମ୍ଭବ ମହାତ୍ମାଗାନ୍ଧୀ ଏବଂ ଅସହଯୋଗ ସମ୍ପ୍ରଦାୟର ଅନ୍ୟ କୌଣସି କୌଣସି ନେତାଙ୍କୁ ଡାକରା ହେବ । ଏଥିର ପରିଣାମରେ କଅଣ ହେବ ବର୍ତ୍ତମାନ ତହିଁର ଅନୁମାନ କରିବା ଠିକ୍ ନୁହେଁ । ମାତ୍ର ଦିଲ୍ଲୀ ପଞ୍ଜାବ ପ୍ରଭୃତି ସ୍ଥାନର ଉତ୍କଟ ଗ୍ରୀଷ୍ମରେ ବୁଲି ବୁଲି ସିମଲାରେ ପହଞ୍ଚିଲା ପରେ କେତେଦିନ ଏ ନୂଆ ଭାବ ରହିବ ଏହାହିଁ ଘୋର ଆଶଙ୍କାର ବିଷୟ ।

('ସମାଜ', ତା ୯ । ୪ । ୨୧)

— ——

# କଂଗ୍ରେସର ବେଜଓ୍ୟାଡ଼ା ବୈଠକ

ଗଲା ମାର୍ଚ୍ଚ ୩୧ ତାରିଖ ଓ ଏ ମାସ ପହିଲା ଦିନ ବେଜଓ୍ୟାଡ଼ାଠାରେ ନିଖିଳ-ଭାରତ କଂଗ୍ରେସ କମିଟିର ଏକ ବୈଠକ ହୋଇଥିଲା । କମିଟିର ମେମ୍ବର ୧୦୦ ଜଣ ମଧ୍ୟରୁ ୬୦ ଜଣ ସଭ୍ୟ ଉପସ୍ଥିତ ଥିଲେ । ପ୍ରାୟ ସବୁ ପ୍ରଦେଶରୁ ସଭ୍ୟ ଆସିଥିଲେ । ଅସହଯୋଗ ଆନ୍ଦୋଳନ ସମ୍ବନ୍ଧରେ ଏ ସଭାରେ ଅନେକ କଥା ପଡ଼ିଥିଲା । ନିମ୍ନଲିଖିତ କେତୋଟି ପ୍ରଧାନ ନିର୍ଦ୍ଧାରଣ ସ୍ଥିର କରାଯାଇଥିଲା । * ।

୧ । (କ) ଅସହଯୋଗ ନୀତିର ସବୁ କାର୍ଯ୍ୟରେ ହାତ ନ ଦେଇ ବର୍ତ୍ତମାନ ଅରଟ ସୂତାକଟାରେ ବିଶେଷ ଜୋର ଦେବାକୁ ହେବ । ଆଗାମୀ ଦୁଇମାସ ଭିତରେ ସମଗ୍ର ଭାରତବର୍ଷରେ ଯେପରି ୨୦ ଲକ୍ଷ ଅରଟ ଚଳିଲା ଭଳିଆ ଆୟୋଜନ କରିବାକୁ ହେବ ।

(ଖ) ପ୍ରତ୍ୟେକ ଜିଲାରେ କଂଗ୍ରେସ କମିଟିମାନ ଦୃଢ଼ କରିବାକୁ ହେବ । ଗ୍ରାମ ସହର ସର୍ବତ୍ର କଂଗ୍ରେସ କାର୍ଯ୍ୟ ବିସ୍ତାର କରାଯିବ । ଜୁନ୍‌ମାସ ଶେଷସୁଦ୍ଧା ସମଗ୍ର ଭାରତବର୍ଷରେ ଏକକୋଟି କଂଗ୍ରେସ ସଭ୍ୟ ହେବା ଆବଶ୍ୟକ ।

(ଗ) ତିଲକ ସ୍ୱରାଜ୍ୟ ଫଣ୍ଡ ନିମନ୍ତେ ଏହି ସମୟ ମଧ୍ୟରେ ସମଗ୍ର ଦେଶରୁ ଏକକୋଟି ଟଙ୍କା ସଂଗ୍ରହ କରିବାକୁ ହେବ ।

୨ । ଅସହଯୋଗ ଆନ୍ଦୋଳନ ଚପାଇବା ଲାଗି ସରକାର ବେଳେ ବେଳେ କୌଣସି କୌଣସି ଜାଗାରେ ଯେ ବିଧାନ ଓ ବ୍ୟବସ୍ଥା କରୁଛନ୍ତି ତାହା ସମ୍ପୂର୍ଣ୍ଣ ବେଆଇନ ଏବଂ ଅନ୍ୟାୟ ହେଲେହେଁ ଦେଶବାସୀ ଯେ ଶାନ୍ତି, ଧୈର୍ଯ୍ୟ ଓ ସଂଯମର ସହିତ ସେସବୁ ସହୁଛନ୍ତି ତାହାସବୁ ଅତି ଆଶ୍ଚର୍ଯ୍ୟର ବିଷୟ ଏବଂ ସେଥିନିମନ୍ତେ ସେମାନେ ଭାରତ ଜାତୀୟ ମହାସମିତିଙ୍କ ପ୍ରଶଂସାର ପାତ୍ର । ଉପରେ ଉପରେ ଏହିପରି ସରକାର ବେଆଇନ ବ୍ୟବହାର କରିବାରୁ ଦେଶର କେହି କେହି କହନ୍ତି ଯେ ଏଣିକି ସରକାରଙ୍କ ଆଇନ ନ ମାନି କାର୍ଯ୍ୟ କରିବାକୁ ହେବ । ମାତ୍ର କଂଗ୍ରେସ କମିଟିଙ୍କ ମତରେ ବର୍ତ୍ତମାନ ଆଇନ ନ ମାନିବାର ସମୟ ଆସିନାହିଁ ।

୩ । ଅସହଯୋଗ ନୀତି ଅନୁସାରେ ପଞ୍ଚାୟତ ଅଦାଲତ ବସାଇବାରେ ଦେଶର

---

* ଓଡ଼ିଶାରୁ ଏହି ବୈଠକରେ ଏକମାତ୍ର ସଭ୍ୟ ପଣ୍ଡିତ ଗୋପବନ୍ଧୁ ଦାସ ଯୋଗ ଦେଇଥିଲେ ।

ଗୃହଆଡ଼େ ବିଶେଷ ଆଗ୍ରହ ଓ ଉତ୍ସାହ ଦେଖା ଯାଉଥିବା ସୁଖର କଥା ଏବଂ ସେଥିଲାଗି କଂଗ୍ରେସ କମିଟି ଦେଶବାସୀଙ୍କି ଧନ୍ୟବାଦ ଦେଉଅଛନ୍ତି ଏବଂ ପଞ୍ଚାୟତ ଅଦାଲତ ସଂଖ୍ୟା ଯେପରି ବଢ଼େ ତହିଁର ଯତ୍ନ କରିବା ଲାଗି ଅନୁରୋଧ କରୁ-ଅଛନ୍ତି ।

। ଆତ୍ମଶୁଦ୍ଧି ଅସହଯୋଗ ଧର୍ମର ପ୍ରଥମ ବିଧାନ । ଅସହଯୋଗ ମହାଯଜ୍ଞରେ ଫଳ ପାଇବାକୁ ହେଲେ ଦେଶବାସୀମାନେ ଆଗେ ଶୁଦ୍ଧ ଏବଂ ସଫା ହେବା ଆବଶ୍ୟକ । ଏହି ଆତ୍ମଶୁଦ୍ଧିରେ ଦେଶବାସୀମାନେ ଏଥିମଧ୍ୟରେ ଯେତେଦୂର ଆଗୁଆ ହୋଇଛନ୍ତି ତାହା ହେବ ବୋଲି କେହି ଆଶା କରି ନ ଥିଲେ । ମଦ ଗଞ୍ଜାଇ ଆଦି ନିଶା ଅନେକ ଲୋକ ଛାଡ଼ିଦେଲେଣି । କଂଗ୍ରେସ କମିଟି ସେମାନଙ୍କୁ ଧନ୍ୟବାଦ ଦେଉଛନ୍ତି ଏବଂ ଅନ୍ୟମାନେ ଶୀଘ୍ର ଛାଡ଼ିଦେବେ ବୋଲି ଆଶା କରନ୍ତି । ମୋଟକଥା ଅସହଯୋଗ ନୀତିକୁ ସମଗ୍ର ଦେଶବାସୀ ଯେପରି ଗ୍ରହଣ କରିଅଛନ୍ତି ଏବଂ ତଦନୁସାରେ କାର୍ଯ୍ୟରେ ଲାଗିଅଛନ୍ତି, ତାହା ଅତ୍ୟନ୍ତ ଆଶା ଏବଂ ଆହ୍ଲାଦର ବିଷୟ ।

ଉଲ୍ଲିଖିତ ପ୍ରସ୍ତାବମାନଙ୍କ ଛଡ଼ା ୟାକୁବ ହୋସେନ ଓ ଅନ୍ୟାନ୍ୟ ଯେଉଁ ନେତାମାନେ ଅନ୍ୟାୟରେ ଦଣ୍ଡ ଭୋଗୁଛନ୍ତି, ସେମାନଙ୍କ ନିମନ୍ତେ ସହାନୁଭୂତି ପ୍ରକାଶ କରାଗଲା । ଆହୁରି ମଧ୍ୟ ବ୍ରହ୍ମଦେଶବାସୀଙ୍କର ରାଜନୈତିକ ଅଧିକାର ପାଇବା ଆନ୍ଦୋଳନକୁ ସମର୍ଥନ କରାଗଲା ଏବଂ ସେମାନଙ୍କର ଆନ୍ଦୋଳନରେ କଂଗ୍ରେସର ସହାନୁଭୂତି ବ୍ୟକ୍ତ କରାଗଲା ।

ନିଖିଳ-ଭାରତ କଂଗ୍ରେସ କମିଟିରେ ଏକଶହ ମେମ୍ବର ଅଛନ୍ତି । ନୂତନ ନିୟମ ଅନୁସାରେ ୩୬୦ ଜଣ ମେମ୍ବର ହେବେ । ଏଥିମଧ୍ୟରୁ ଉତ୍କଳ ପ୍ରଦେଶକୁ ୭ ଜଣ ମାତ୍ର ଦିଆ ଯାଇଥିଲା । ଉତ୍କଳ ପ୍ରଦେଶର ଲୋକସଂଖ୍ୟା ହିସାବରେ ଏ ସଂଖ୍ୟା ଅତି କମ୍‌ଥିବାରୁ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଆପତ୍ତି କରିଥିଲେ । ଏହି ବୈଠକରେ ସେ ଆପତ୍ତିର ବିଚାର ପରେ ଉତ୍କଳକୁ ୧୬ ଜଣ ମେମ୍ବର ଦିଆଯିବାର ସ୍ଥିର ହୋଇଅଛି । ବେଜୱାଡ଼ା କଂଗ୍ରେସ କମିଟିରେ ଧାର୍ଯ୍ୟ ହୋଇଥିବା ପ୍ରସ୍ତାବ ଅନୁସାରେ ଅସହଯୋଗ ଆନ୍ଦୋଳନ ଚାଲିଲେ ସ୍ୱରାଜ୍ୟର ବାଟ ପରିଷ୍କାର ହେବ ।

"ବିଚାରି କାର୍ଯ୍ୟ କରୁଥିଲେ
ପ୍ରମାଦ ନ ପଡ଼ଇ ଭଲେ ।"

('ସମାଜ' ତା ୧ । ୪ । ୨୧)

—

# ସରକାର ଏବେ ଢ଼ି କଡ଼ା

ପାଠକେ ଜାଣନ୍ତି ବିହାର ଓଡ଼ିଶା ସରକାର କେତେଦିନ ତଳେ ମଦ ' ମହିମା ପ୍ରକାଶ କରିଥିଲେ । ତା ପରେ ଅସହଯୋଗ ନୀତି ବିରୁଦ୍ଧରେ କାର୍ଯ୍ୟ କରିବାଲାଗି ଜିଲା-ବୋର୍ଡ଼ ଓ ମ୍ୟୁନିସିପାଲିଟି ମେମ୍ବରମାନଙ୍କ ଉପରେ ହୁକୁମ ବାହାରିଲା । ଆଗରୁ ସରକାରଙ୍କ ପ୍ରଧାନ ସେକ୍ରେଟେରି ରେନି ସାହେବଙ୍କ ସ୍ୱାକ୍ଷରରେ ଅସହଯୋଗ ଆନ୍ଦୋଳନ ଚପାଇବା କାରଣ ଜିଲା ହାକିମ ଓ ଅନ୍ୟାନ୍ୟ ସରକାରୀ କର୍ମଚାରୀମାନଙ୍କ ଉପରେ ହୁକୁମ ଜାରି ହୋଇଥିଲା । ଏ ପ୍ରକାର ଲେଖା ବିଷୟରେ କାଉନ୍‌ସିଲରେ ପ୍ରଶ୍ନ ଉଠିଲା; ଖବର କାଗଜରେ ସମାଲୋଚନା ହେଲା; ସାଧାରଣ ସଭାସମିତିରେ ପ୍ରତିବାଦ ହେଲା । ଫଳରେ ସରକାର ଢ଼ି କଡ଼ାର ହୋଇଗଲେ । ମଦ ମାହାତ୍ମ୍ୟର ଲେଖା କେହି ମୁଣ୍ଡକୁ ନେଲେ ନାହିଁ । ଜିଲାବୋର୍ଡ଼ ମ୍ୟୁନିସିପାଲିଟି ସମ୍ପର୍କୀୟ ଆଦେଶ ଯେଉଁ ମନ୍ତ୍ରୀଙ୍କ ମହକୁମାରୁ ବାହାରିଥିଲା ସେ ତାହା ମୁଣ୍ଡରେ ମୁଣ୍ଡାଇ ନେଲେ; ମାତ୍ର କଥାରୁ ଯେତେଦୂର ବୁଝାଯାଉଛି । ସେଥିଲାଗି ବାସ୍ତବରେ ସେ ଡେତେ ଦାୟୀ ନୁହନ୍ତି । ଯେଉଁ ସେକ୍ରେଟେରୀଙ୍କ ନାମରେ ସେ ହୁକୁମ ବାହାରିଥିଲା ଯଥାର୍ଥରେ ତାହା ତାଙ୍କର କାରସାଦି । ପ୍ରଧାନ ସେକ୍ରେଟେରି ରେନି ସାହେବ ଜିଲା ହାକିମମାନଙ୍କ ପ୍ରତି ଯେ ଆଦେଶ କରିଥିଲେ, ପ୍ରଦେଶର ଲାଟ ଲର୍ଡ଼ ସିଂହଙ୍କ ଅଜ୍ଞାତରେ ତାହା ହୋଇଥିବା ଆଶ୍ଚର୍ଯ୍ୟ ନୁହେଁ । ମୋଟକଥା ବିହାର ସରକାରଙ୍କ ଅନେକ ଗୋରା ସିଭିଲିଆନ ସେକ୍ରେଟେରି ଦଳ ମନଇଚ୍ଛା ମୁତାବକ ସ୍ୱଚ୍ଛନ୍ଦ ଭାବରେ ଚଳାଇବାକୁ ଆରମ୍ଭ କରିଛନ୍ତି । ବ୍ୟୁରୋକ୍ରେସି ବା ଗୋରା ସିଭିଲିଆନ ଦଳର କବଳରେ ନ ରହି ନିଜ ଇଚ୍ଛାରେ ଲୋକଙ୍କ ଆଡକୁ ଟିକିଏ ଢଳି କାର୍ଯ୍ୟକଲେ ଆଛା ଚଉକସ ଗୋରା ଗ୍ରେଟଲାଟ୍ ଓ ବଡ଼ଲାଟମାନେ ଏହି ସେକ୍ରେଟେରି ଦଳର ଉତ୍ପାତରୁ ଅନେକ ସମୟରେ ରକ୍ଷା ପାଆନ୍ତି ନାହିଁ । ଦେଶୀଲାଟ୍ ବା ଦେଶୀ ମନ୍ତ୍ରୀଙ୍କର କାବୁ କେତେ ?

ଦେଶୀଲୋକ ଲାଟ ହେଲେ ବା ଦେଶୀଲୋକ ମନ୍ତ୍ରୀ ହେଲେ ବୋଲି ଯେଉଁମାନେ ଚିନ୍ତନ୍ତି ଯେ ଭାରତୀୟମାନଙ୍କୁ ଅଧିକ ଅଧିକାର ଦିଆଯାଇଅଛି ଏବଂ ଏହି ସୂତ୍ରରେ କ୍ରମେ ସେମାନଙ୍କୁ ସ୍ୱରାଜ୍ୟ ମିଳିବ, ସେମାନଙ୍କର ବୁଝିବା ଉଚିତ ଯେ ଦେଶୀ ଲୋକଙ୍କର ଏ

କଳରେ କୌଣସି ସ୍ୱାତନ୍ତ୍ର୍ୟ ନାହିଁ । ଦେଶୀଲୋକ କେହି ଘୋଡ଼ା ଉପରେ ବସିଲେ ସୁଦ୍ଧା ଲଗାମ ତାଙ୍କ ହାତେ ନାହିଁ । ଏପର ଅବସ୍ଥାରେ ଦେଶୀୟ କର୍ତ୍ତାମାନଙ୍କର ଗତି କଅଣ ? "ଗ୍ରେର ମା ଲଜେ ନ କାନ୍ଦେ, ଯେବେ କାନ୍ଦେ ଦୁଆର ଦେଇ କାନ୍ଦେ ।" ଲର୍ଡ଼ ସିଂହ କହନ୍ତୁ ବା ମାନନୀୟ ମଧୁସୂଦନ ଦାସ କହନ୍ତୁ ଏମାନଙ୍କର କାହାରି ବୁଦ୍ଧି ବଗ୍ଭର ଓ ଦେଶାନୁରାଗ କମ୍ ନୁହେଁ । ନ ବୁଝି ନ ସୁଝି ଏପର ହୁକୁମ ବା ପ୍ରସ୍ତାବ କରିବେ ଯାହାକ ଦୁଇଦିନ ବାଦ ରଦ୍ଦ ହେବ—ଏପର କାର୍ଯ୍ୟ କରିବାର ଲୋକ ଏମାନେ ନୁହନ୍ତି । ମାତ୍ର ଯେ କଳରେ ସେମାନେ ପଶିଛନ୍ତି, ସେଥିରେ ଅନ୍ୟଥା ହେବାର ସେମାନଙ୍କ ଉପାୟ ନାହିଁ ।

"ଭ୍ରାମୟନ୍ ସର୍ବଭୂତାନି
ଯନ୍ତ୍ରାରୂଢ଼ାନି ମାୟୟା"

ସେ କଳ ନ ଭାଙ୍ଗିବାଯାଏ ତାଳୁରୁ ତଳପାଯାଏ ଦେଶୀଲୋକ ଖଦ୍ଦା ହେଲେ ସୁଦ୍ଧା କୌଣସି ଫଳ ହେବ ନାହିଁ ।

ମ୍ୟୁନସିପାଲଟି ଓ ଜିଲାବୋର୍ଡ଼ ସମ୍ବନ୍ଧରେ ଯେ ହୁକୁମନାମା ବାହାରିଥିଲା ତାହା ଏଥି ମଧ୍ୟରେ ରଦ୍ଦ ହେଲାଣି । ମଦ ମାହାତ୍ମ୍ୟ ବିଷୟରେ ଆଉ ଅଧିକ ଉଚ୍ଚବାଚ ନ କରି ମାଦକ ନିବାରଣ କରିବାକୁ ସରକାର ଏବେ ମତ ପ୍ରକାଶ କରିଅଛନ୍ତି । ଅସହଯୋଗ ଆନ୍ଦୋଳନ ଦବାଇବା ଲାଗି ଜିଲା ହାକିମମାନଙ୍କ ପ୍ରତି ଯେ ଆଦେଶ ବାହାରିଥିଲା, ତହିଁର ପ୍ରତିଷେଧକ ସ୍ୱରୂପ ଗୁପ୍ତ ଆଦେଶ ସେମାନଙ୍କଠାକୁ ପଠାଯାଇ ସେମାନଙ୍କୁ ସାବଧାନ କରାଇ ଦିଆଯାଇଅଛି । ଫଳରେ ଅସହଯୋଗ ବିରୁଦ୍ଧରେ ବିହାର ଓଡ଼ିଶା ସରକାର ଯେ ସବୁ ହୁକୁମ ଓ ପ୍ରସଙ୍ଗ ପ୍ରକାଶ କରିଥିଲେ ତାହା ଏଥି ମଧ୍ୟରେ ଏକପ୍ରକାର ସମୁଦାୟ ରଦ୍ଦ କରାଯାଇଅଛି । ଅବଶ୍ୟ ଦୋଷ ବୁଝିଲେ ଆପଣା ଗତି ସଙ୍ଗେ ସଙ୍ଗେ ବଦଳାଇବା ମହତ୍ ଲୋକର କାର୍ଯ୍ୟ । ମାତ୍ର ଅନେକ ସମୟରେ ଏପରି ଅପରିଣାମ-ଦର୍ଶିତାର ଫଳକୁ ପ୍ରଶଂସା କରାଯାଇ ନ ପାରେ । ଆମ ଦେଶରେ ଗୋଟିଏ ପୁରୁଣା ସାରକଥା ମଧୁବାବୁ ଅନେକ ସମୟରେ କହିଥାନ୍ତି,

"ଆଲୋ ସଖି, ଆପଣା ମହତ ଆପେ ରଖି ।"

ମନୁଷ୍ୟ ନିଜ ହାତରେ ନିଜ ମହତ୍ତ୍ୱ ରଖେ, ନିଜ ହାତରେ ନିଜ ମହତ୍ତ୍ୱ ହରାଏ । ଏପରି ଜାଗାରେ ବସିବ ଯେଉଁଠାରୁ କେହି ଉଠ୍ ବୋଲି ନ କହିବ, ଏପରି କଥା ଭାଷିବ ଯାହାକି ଉଠାଇ ନେ ବୋଲି ନ କହିବ, ଦୁଃଖର କଥା ବିହାର ଓଡ଼ିଶା ସରକାର ନିଜ ମହତ୍ତ୍ୱ ନିଜେ ରଖି ପାରିଲେ ନାହିଁ । ଏଥିଲାଗି ଆମ୍ଭେମାନେ ଲର୍ଡ଼ ସିଂହ କିମ୍ବା ତାଙ୍କର ଦେଶୀୟ ମନ୍ତ୍ରୀମାନଙ୍କୁ ଦୋଷ ଦେଉନାହୁଁ । ବରଂ ସେମାନଙ୍କ ପ୍ରତି ସହାନୁଭୂତି କରୁଅଛୁଁ । ସେମାନଙ୍କଠାରୁ ଆହୁରି ଅଧିକ ଶକ୍ତିଶାଳୀ ଲୋକ ହୋଇଥିଲେ ମଧ୍ୟ ଏ ଦଶାରେ ପଡ଼ନ୍ତେ, ସନ୍ଦେହ ନାହିଁ । ଦେଶୀଲାଟ ଓ ମନ୍ତ୍ରୀମାନେ ଯେବେ ଏତିକିରେ ନିଜର ଅବସ୍ଥା ବୁଝିଥାନ୍ତି, ତାହାହେଲେ କାଳର ସମ୍ପର୍କ ତୁଟାଇବା ଉଚିତ । ସେମାନଙ୍କ ମଧ୍ୟରୁ କେହି ହେଲେ ଅନ୍ୟମାନଙ୍କୁ କହନ୍ତୁ—

'ଏଥୁଁ ଅଧିକେ ଫଳ, ଅପବାଦ-କେବଳ
ଗୃହ ସଙ୍ଗିନି, ଯିବାରେ ।
ଗଲାଣି ଜଣା, ସଖି, ଗୃହ, ସଙ୍ଗିନି ଯିବାରେ ।'

('ସମାଜ', ତା ୯ । ୪ । ୨୧)

# ରାଜନୀତି

କ୍ରମେ ଅସହଯୋଗ ଦୀକ୍ଷା ପୃଥିବୀର ଚାରିଆଡ଼େ ବ୍ୟାପି ଯିବାକୁ ବସିଲାଣି । ଆୟରଲାଣ୍ଡ ଲୋକେ ସ୍ୱତନ୍ତ୍ର ପାର୍ଲିଆମେଣ୍ଟ ଏବଂ ସ୍ୱତନ୍ତ୍ର ଶାସନ କ୍ଷମତା ପାଇବେ ବୋଲି ବହୁକାଳ ଇଂଲଣ୍ଡ ସଙ୍ଗେ ଲଢ଼େଇ ଝଗଡ଼େଇ କରି ଆସୁଛନ୍ତି । କେତେମାସ ତଳେ ଆୟରଲାଣ୍ଡ "ହୋମରୁଲ୍" ପ୍ରସଙ୍ଗ ବିଲାତ ପାର୍ଲିଆମେଣ୍ଟରେ ପଡ଼ିଥିଲା ବେଳେ ଆୟରଲାଣ୍ଡରେ ବହୁତ ହାଣକାଟ ହୋଇଯାଇଛି । ଆୟରଲାଣ୍ଡ ଯେ ଅଧିକାର ଚାହେଁ ବିଲାତର ପାର୍ଲିଆମେଣ୍ଟ ତାହା ଖୋଲଣା ଦେଉନାହିଁ । ଏବେ ଆୟରଲାଣ୍ଡର ଲୋକେ ସ୍ୱାଧୀନତା ଘୋଷଣା କରିଅଛନ୍ତି । ସେମାନେ ଆପଣା ମଧ୍ୟରେ ସାଧାରଣତନ୍ତ୍ର ଶାସନ ଚଳାଇ ଅଛନ୍ତି । ଇଂରେଜମାନଙ୍କ ସଙ୍ଗେ ଲଢ଼େଇରୁ କ୍ଷାନ୍ତ ରହିବାଲାଗି ସ୍ଥିର କରିଅଛନ୍ତି ଏବଂ ବିଲାତରୁ କୌଣସି ଜିନିଷ ବ୍ୟବହାର ନ କରିବା କଥା ମଧ୍ୟ ଧାର୍ଯ୍ୟ ହୋଇଅଛି । ଏହାହିଁ ଭାରତର ଶାନ୍ତିପୂର୍ଣ୍ଣ ଅସହଯୋଗନୀତି ବୋଲି ପାଠକମାନଙ୍କର ମନେଥିବ । କେତେ ସପ୍ତାହତଳେ ଜର୍ମାନୀ ସନ୍ଧିସର୍ତ୍ତ ଅନୁସାରେ କାର୍ଯ୍ୟ କରିବାକୁ ରାଜି ନ ହେବାରୁ ଇଂରେଜମାନେ ଜର୍ମାନୀର କେତେକ ସ୍ଥାନ ଦଖଲ କରିବାକୁ ସୈନ୍ୟ ପଠାଇବାର ପ୍ରସ୍ତାବ କଲାରୁ ଜର୍ମାନୀ ତହିଁର କୌଣସି ପ୍ରତିକାର ନ କରି ସ୍ଥିରହୋଇ ରହିବାର ସ୍ଥିର କରିଥିଲା । ଏହା ମହାତ୍ମାଗାନ୍ଧୀଙ୍କ ସତ୍ୟାଗ୍ରହନୀତି । ଭାରତରେ ଯେ ସତ୍ୟାଗ୍ରହ ଏବଂ ଅସହଯୋଗ ଦୀକ୍ଷା ଉଦ୍ଭବ ହୋଇଅଛି ତାହା ଭବିଷ୍ୟତରେ ମାନବ ସମାଜ ସମସ୍ତେ ଅନୁସରଣ କରିବେ, ଏଥିରେ ସନ୍ଦେହ ନାହିଁ । ପୂର୍ବକାଳରେ ଭାରତବର୍ଷ ପୃଥିବୀକୁ ଯେପରି ଅନେକ ବିଷୟରେ ଶିକ୍ଷା ଦେଇଅଛି ଏ ଯୁଗରେ ପୁଣି ସେହିପରି ଶିକ୍ଷା ଦେବ ।

× × ×

କାଲିକଟଠାରେ ପୋଲିସ କର୍ମଚାରୀମାନେ ସେଠା କଂଗ୍ରେସ କମିଟି ଅଫିସର ଚାରିଆଡ଼େ ଘେରାଉକରି ରାଜବିଦ୍ରୋହ ବିଷୟକ କାଗଜପତ୍ର ଜବତ୍ କରିବାକୁ ଘର ଖାନତଲାସ କରିଥିଲେ, ମାତ୍ର କିଛି ପାଇଲେ ନାହିଁ । କଂଗ୍ରେସର କାଗଜପତ୍ର ସବୁ ତ ବଜାରରେ ରହିଛି । କିଛି ଲୁଚାଛପା ନୁହେଁ । ଆଉ ଖାନତଲାସ କାହିଁକି ?

ପ୍ରକୃତି ନୈଙ୍ଗମ୍ୟ ଚ୍ୟତେ ।

ଅପ୍ରେଲ୍ ୪ ତାରିଖ ମାନ୍ଦ୍ରାଜରେ, ବାଙ୍ଗାଲୋରଠାରେ ମୌଲନା ସଉକତ ଅଲି, ମହମ୍ମଦ ଅଲି ଓ ଅନ୍ୟ କେତେକ ଅସହଯୋଗ ନେତା ସଭାରେ ବକ୍ତୃତା କରିଥିଲେ । ପ୍ରାୟ ୬୦ ହଜାର୍ ଲୋକ ସ୍ୱେଚ୍ଛା ସଭାରେ ମିଳିଥିଲେ ।

## ସମ୍ବାଦ ଓ ସଙ୍କେତ

ଭାରତ ଷ୍ଟେଟ କାଉନ୍‌ସିଲର ଜଣେ ମେମ୍ବର ରଜା ଆଲମ ମହାଗାନ୍ଧୀଙ୍କୁ ଅନୁରୋଧ କରିଛନ୍ତି କି ନୂଆ ଲାଟ ଆସି ବର୍ତ୍ତମାନ ଦେଶର ଅବସ୍ଥା ଦେଖି ବ୍ୟବସ୍ଥା କରିବେ । ତେଣୁ ମହାତ୍ମାଜୀ ବର୍ତ୍ତମାନ କିଛିଦିନ ପାଇଁ ଦୟାକରି ଅସହଯୋଗ ଆନ୍ଦୋଳନ ବନ୍ଦ କରନ୍ତୁ । ମାତ୍ର ଚରଖା ପ୍ରଚାର, ପଞ୍ଚାୟତ ସ୍ଥାପନ, କଂଗ୍ରେସ ମେମ୍ବର ବୃଦ୍ଧି କରିବା ଓ ପାଣ୍ଠି ସଂଗ୍ରହ ଦ୍ୱାରା ନୂଆଲାଟଙ୍କ କାର୍ଯ୍ୟରେ କିଛି ବାଧା ପଡୁନାହିଁ । ତେବେ ଅସହଯୋଗ ବନ୍ଦ କରିବାକୁ ଏତେ ବ୍ୟାକୁଳ କାହିଁକି ?

× × ×

ରୁଷିଆର ବଲସେଭିମାନେ ଏବେ ଆଫଗାନସ୍ଥାନକୁ ଆସି ଇଂରେଜମାନଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର ଆରମ୍ଭ କଲେଣି । ଏବେ "ଏଣୁ ଶବର କାଣ୍ଡମାରେ ତେଣୁ ଶବର କାଣ୍ଡମାରେ ।"

× × ×

ପଞ୍ଜାବର ନାନକାନା ସାହେବଠାରେ ମହନ୍ତ ନାରାୟଣ ଦାସ ନିଷ୍ଠୁର ଭାବରେ ଅନେକ ଲୋକଙ୍କୁ ପୋଡ଼ି ମାରିପକାଇଥିବା କଥା ପାଠକମାନେ ଜାଣନ୍ତି । ଏବେ ସେ ମହନ୍ତ ଓ ଆଉ ୫୭ ଜଣ ଲୋକ ଦୋଷୀ ସାବ୍ୟସ୍ତ ହୋଇ ବିଚାରାଧୀନ ଅଛନ୍ତି ।

('ସମାଜ' ତା ୧୭ । ୪ । ୨୧)

———

# ଅସହଯୋଗ ପାଇଁ ସହଯୋଗ

ଭାରତରେ ଜାତୀୟ ସପ୍ତାହ ଏ ମାସ ୬ତାରିଖରେ ଆରମ୍ଭ ହୋଇ ୧୩ ତାରିଖରେ ଶେଷ ହୋଇଅଛି । ସମଗ୍ର ଦେଶ ଏ ସପ୍ତାହକୁ ଯଥାବିଧି ପାଳିଅଛି । ୬ ଓ ୧୩ ତାରିଖ ଦୁଇଦିନ ସହର ଓ ମଫସଲର ଲୋକେ ଦୋକାନ ଓ ହାଟ ବନ୍ଦ କରିଅଛନ୍ତି । ଅନେକେ ଉପବାସ କରିଛନ୍ତି ଏବଂ ହିନ୍ଦୁମାନେ ମନ୍ଦିରରେ ଓ ମୁସଲମାନମାନେ ମସ୍‌ଜିଦ୍‌ରେ ଈଶ୍ୱର ଉପାସନା କରିଛନ୍ତି । ସାତଦିନଯାକ ସ୍ୱରାଜ୍ୟ ଫଣ୍ଡ ନିମନ୍ତେ ଅର୍ଥସଂଗ୍ରହ ହୋଇଅଛି । ଅନେକେ ମାଦକ ସେବନରୁ କ୍ଷାନ୍ତି ରହିଛନ୍ତି । ଏହି ଜାତୀୟ ସପ୍ତାହ ପାଳନରେ ଉତ୍କଳ ପ୍ରଦେଶରୁ ଯେ ଆଗ୍ରହ ଓ ଉତ୍ସାହ ଦେଖା ଯାଇଅଛି ତାହା ଆଶ୍ଚର୍ଯ୍ୟଜନକ । ଅତି ଗଣ୍ଡ ମଫସଲ ଗାଁରେ ସ୍ତ୍ରୀଲୋକମାନେ ସୁଦ୍ଧା ଯଥାବିଧାନରେ ସମସ୍ତ କାର୍ଯ୍ୟ କରିଅଛନ୍ତି । ୬ ତାରିଖ ଦିନ କି ସ୍ତ୍ରୀ କି ପୁରୁଷ ସମସ୍ତେ ସୂତାକଟା ଆରମ୍ଭ କରିଛନ୍ତି । ଅରଟ ଅଖିବରୁ ଅନେକ ସୂତାକାଟି ନ ପାରି ବିଧିରକ୍ଷା କରିବାଲାଗି ଅରଟକୁ କେବଳ ମାତ୍ର ଛୁଇଁଛନ୍ତି । ଅନେକ ଗ୍ରାମରେ ଘରେ ଘରେ ଅରଟର ପୂଜା ହୋଇଅଛି । ଅରଟକୁ ସୁଦର୍ଶନଚକ୍ର ବୋଲି ଲୋକେ ବିଶ୍ୱାସ କରି ତାହାର ଶରଣ ନେଇଅଛନ୍ତି । ସହରରେ ଦୋକାନ ଖୋଲିଇବା ଲାଗି ସ୍ଥାନେ ସ୍ଥାନେ ପୋଲିସ ମୁତୟନ ଥିଲେ ସୁଦ୍ଧା କୌଣସିଠାରେ ଗୋଟାଏ ହେଲେ ଦୋକାନ ଖୋଲି ନ ଥିଲା । ଏପରିକି ଯେଉଁ ସହରକୁ ଅସହଯୋଗ ହାଓଆ ଏପର୍ଯ୍ୟନ୍ତ ଛୁଇଁ ନ ଥିଲା, ସେଠାରେ ସୁଦ୍ଧା ଲୋକେ ଲିଡର୍ କିମ୍ବା ଅନ୍ୟାନ୍ୟ ହାକିମମାନଙ୍କ କଥାକୁ ଖାତିର ନ କରି ହରତାଳ କରିଥିଲେ । ଏପରି ଅଦ୍ଭୁତ ପ୍ରକାରର ଏକତା ଏ ଦେଶରେ କେବେ ଦେଖାଯାଇ ନ ଥିଲା । କେହି କାହାରିକୁ କହିବାକୁ ନାହିଁ, କେହି ଶିଖାଉ ନାହିଁ, ଖବରକାଗଜରେ ଏ ବିଷୟରେ ଲୋକଙ୍କୁ ସେତେ ପ୍ରବର୍ତ୍ତନା ଦିଆ ଯାଇନାହିଁ । ତଥାପି କେଜାଣି କି ଦୈବୀଶକ୍ତି ବଳରେ ବିମୋହିତ ହୋଇ କାର୍ଯ୍ୟ କଲାପରି ସମଗ୍ର ଦେଶବାସୀ ଏ ଜାତୀୟ ବ୍ରତରେ ମାତିଗଲେ । ଅସହଯୋଗ ଆନ୍ଦୋଳନ ସଫଳ ହେବାର ଏହା ପୂର୍ବ ଲକ୍ଷଣ ବୋଲି ଅନେକଙ୍କର ବିଶ୍ୱାସ ଜନ୍ମିଅଛି । ଆମ୍ଭେମାନେ ବରାବର କହି ଆସୁଅଛୁଁ ସରକାରଙ୍କ ସଙ୍ଗେ ଅସହଯୋଗ କରି ଦେଶବାସୀ ଆପଣା ମଧ୍ୟରେ ପୂର୍ଣ୍ଣ ସହଯୋଗ ନ ଦେଲେ କାର୍ଯ୍ୟ ସିଦ୍ଧି ହେବ ନାହିଁ । ଏହି ଜାତୀୟ ସପ୍ତାହରେ ଦେଶବାସୀଙ୍କର ଗାଢ଼ ସହଯୋଗିତା ପ୍ରକାଶ ପାଇଅଛି । କେହି କେହି କହିପାରନ୍ତି

ଏପରି ଦୋକାନ ହାଟ ନଜର କାମଧନ୍ଦା ଆଦି ବନ୍ଦକରି ଆପେ କ୍ଷତିଗ୍ରସ୍ତ ହେବାରେ ଲାଭ କଅଣ ? ଯଥେଷ୍ଟ ଲାଭ ଅଛି । ନିଜର ଆୟରେ କ୍ଷତିକରି ପୋଲିସ ପ୍ରରୋଚନାକୁ ନ ମାନି ଲୋକେ ଯେ ଜାତୀୟ ଆଦେଶକୁ ଧର୍ମ ଭାବରେ ଏପରି ନିଷ୍ଠାର ସହିତ ପାଳନ କରିଛନ୍ତି ଏହା ସମସ୍ତ ଜାତି ପକ୍ଷରେ ପରମ ଲାଭ । ସମଗ୍ର ଜାତି ପକ୍ଷରେ ଏହା ଏକ ଉତ୍କୃଷ୍ଟ ଶିକ୍ଷା । କେତେଦିନ ତଳେ ଅନେକେ କହୁଥିଲେ ଆମ୍ଭମାନଙ୍କ ଭିତରେ ଏକତା ନାହିଁ କିମ୍ବା କେବେ ହୋଇପାରିବ ନାହିଁ । ଇଂରେଜମାନେ ତ ବରାବର କହି ଆସୁଛନ୍ତି କି ଏ ଦେଶରେ ଏତେ ବର୍ଣ୍ଣ, ଏତେ ଜାତି, ଏତେ ଧର୍ମ ଏତେ ଭାଷା ଯେ ଏକତା ଏକାବେଳକେ ଅସମ୍ଭବ । ମାତ୍ର ଆମ୍ଭେମାନେ ପଚାରୁଁ ଅସହଯୋଗ ନୀତି ଫଳରେ ସେ ଅସମ୍ଭବ ଆଜି ବହୁ ପରିମାଣରେ ସମ୍ଭବ ହୋଇନାହିଁ କି ? ବର୍ଣ୍ଣ, ଧର୍ମ, ଜାତି ଭାଷାର ଭେଦ ଭୁଲି ଭାରତବାସୀ ଏବେ ମହା ଜାତୀୟ ଭାବରେ ଜାଗ୍ରତ ଅଛି । ଆଜି ଭାରତରେ ଯେ ନୂତନ ଧର୍ମ ପ୍ରବର୍ତ୍ତି ଅଛି ତାହା ସମସ୍ତଙ୍କ ପ୍ରେମଡୋରରେ ବାନ୍ଧିଲାଣି । ଏହା ସ୍ୱରାଜ୍ୟ ଧର୍ମ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ ପ୍ରଭୃତି ଧର୍ମ ଭିନ୍ନ ଭିନ୍ନ ସଂପ୍ରଦାୟର ଲୌକିକ ଧର୍ମ । ମାତ୍ର ସ୍ୱରାଜ୍ୟ ସମସ୍ତ ସଂପ୍ରଦାୟର ସହଜ ଓ ସାଧାରଣ ଧର୍ମ । ଆପଣାର ଲୌକିକ ଧର୍ମ ଓ କୁଳାଚାରରେ ରହି ସମସ୍ତେ ସ୍ୱରାଜ୍ୟ ଧର୍ମ ପାଳନ କରିବେ ଏହାହିଁ ମହାତ୍ମାଗାନ୍ଧିଙ୍କର ଅଭିପ୍ରାୟ । ସ୍ୱରାଜ୍ୟ ଧର୍ମରେ କାହାରି ପ୍ରତି ହିଂସା, ଦ୍ୱେଷ, ରୋଷ କରିବାକୁ ହେବନାହିଁ । ମନରୁ ଉଚ୍ଚ ନୀଚ ଭେଦଭାବ ତୁଟାଇବାକୁ ହେବ । ସରାପ, ଗଞ୍ଜାଇ, ଅଫିମ ଆଦି ନିଶାଦ୍ରବ୍ୟ ଖାଇ ଆତ୍ମାକୁ ଅପବିତ୍ର କରିବାକୁ ହେବ ନାହିଁ । ବିଦେଶୀ ବସ୍ତ୍ର ଭୂଷା ଆଦି ପିନ୍ଧି ଶରୀରକୁ ଅଶୁଦ୍ଧ କରିବାକୁ ହେବ ନାହିଁ । ଜାତୀୟ ସପ୍ତାହରେ ସ୍ୱରାଜ୍ୟ ଧର୍ମର ଏହି ସକଳ ସାଧନା ଆରମ୍ଭ ହୋଇଅଛି ମାତ୍ର; କ୍ରମେ ଭାରତବାସୀଙ୍କି ଏହି ସାଧନାମାର୍ଗରେ ଚାଲିବାକୁ ହେବ, ସିଦ୍ଧି ଅବଶ୍ୟ ମିଳିବ । ସତ୍ୟାଗ୍ରହ ସପ୍ତାହ ଭାରତରେ ଏଣିକି ସ୍ୱରାଜ୍ୟଧର୍ମର ପ୍ରଧାନ ବ୍ରତ ଏବଂ ପୁଣ୍ୟ ସମୟ ହୋଇ ରହିଲା । ମୁସଲମାନର ମହରମ, ହିନ୍ଦୁର ଦୋଲ, ଦଶହରା ବା ରାମନବମୀ ପର୍ବ ପରି ଭାରତର ପ୍ରତ୍ୟେକ ନରନାରୀ ଏହା ବର୍ଷକୁ ବର୍ଷ ପାଳନ କରିବେ ଅପ୍ରେଲ ୬ ତାରିଖ ମହାତ୍ମା ଗାନ୍ଧୀ ପ୍ରଥମେ ସତ୍ୟାଗ୍ରହ ଦୀକ୍ଷା ଭାରତରେ ପ୍ରଚାର କଲେ, ଅପ୍ରେଲ ୧୩ ତାରିଖ ପଞ୍ଜାବର ଜାଲିଆନୱାଲାବାଗରେ ଇଂରେଜ ଗୁଳା ବନ୍ଧୁକ ଯୋଗେ ଶତ ଶତ ନିର୍ଦ୍ଦୋଷ ଭାରତବାସୀ ହତ୍ୟା ହୋଇଥିଲେ, ଏକଥା ଭାରତବାସୀ ମନରୁ କେବେ ଭୁଲିବ ନାହିଁ ।

('ସମାଜ' ତା ୧୬ । ୪ । ୨୧)

———

# ଏହି କଣ ନ୍ୟାୟ୍ଯ ବିଚାର ?

ଇଂରେଜୀରେ "ଫରଗିଭ୍ ଆଣ୍ଡ ଫରଗେଟ୍" ବୋଲି ଗୋଟିଏ କଥା ଅଛି । ତାର ଓଡ଼ିଆ ଅର୍ଥ "ଭୁଲ ସେ କଥା, ଗୁଡ଼ ସେ କଥା ।" ଏବେ ଏ ଦେଶ ଶାସକମାନେ ଏହି କଥାଟାକୁ ସମ୍ବଳ କରିଛନ୍ତି । ପଞ୍ଜାବ ଅତ୍ୟାଚାର ଆଜକୁ ୨ବର୍ଷ ହୋଇଗଲା । ଇତିମଧ୍ୟରେ ଅନେକ ବଡ଼ ବଡ଼ ରାଜପୁରୁଷ ଏ ଦେଶକୁ ଆସିଲେଣି । ମାତ୍ର ସମସ୍ତେ ଏ ଅତ୍ୟାଚାର ପ୍ରସଙ୍ଗରେ ଭାରତବାସୀଙ୍କୁ କହୁଛନ୍ତି "ଭୁଲ ସେ କଥା, ଗୁଡ଼ ସେ କଥା ।" ଭାରତର ବର୍ତ୍ତମାନ ଲାଟ ଲର୍ଡ ରିଡ଼ିଂ ମଧ୍ୟ ପଞ୍ଜାବରେ ଯାଇ ସେହି କଥା କହି ଆସିଛନ୍ତି । ସେ ଗଲା ସପ୍ତାହରେ ଜାଲିଓ୍ୱାନଓ୍ୱାଲାବାଗ ଓ ଅମୃତସହର ସ୍ଥାନମାନ ଦେଖି ଆସିଛନ୍ତି । ଏହି ସ୍ଥାନମାନଙ୍କରେ କେତେକ ଗୋରା କର୍ମଚାରୀ ଗଲା ୧୯୧୯ ମସିହା ଅପ୍ରେଲ ମାସରେ ଯେ ଅତ୍ୟାଚାର କରିଛନ୍ତି ତାହା ପ୍ରତ୍ୟେକ ଭାରତବାସୀର ହୃଦୟକୁ କାତର କରି ଟିକି ଟିକି କରି କାଟୁଛି । ପଞ୍ଜାବର କୁଳକାମିନୀମାନଙ୍କୁ ଘର ଭିତରୁ ଓଟାରି ଆଣି ବିଚ ଦାଣ୍ଡରେ ଲଙ୍ଗଳା କରିଦେଇ ଯେଉଁମାନେ ହସ ହସ ମୁହଁରେ ସେମାନଙ୍କ ଆଡ଼କୁ ଚାହିଁଥିଲେ, ଅଶିକ୍ଷିତ ରାଜଭକ୍ତ ନିରୀହ ପଞ୍ଜାବୀମାନଙ୍କୁ ଯେଉଁମାନେ ସଡ଼କ ଧୂଳିରେ ନାକ ଘୋଷାରି ଥିଲେ, ପେଟରେ ବୁଟ୍ ଚଳାଇଥିଲେ, ସରଳ ନିର୍ଦ୍ଦୋଷ ଗ୍ରେଟ ଗ୍ରେଟ ସ୍କୁଲ ପିଲାମାନଙ୍କୁ ଯେଉଁମାନେ ତାତିଲା ବାଲିରେ ୧୬ ମାଇଲ କରି ଖରାରେ ଦଉଡ଼ାଇଲେ, ସହସ୍ର ସହସ୍ର ଅସହାୟ ଲୋକଙ୍କୁ ଯେଉଁମାନେ କମାଣ ମୁହଁରେ ପୋଡ଼ିମାରି ପକାଇଥିଲେ, ସେଇମାନେ ଆଜି ପଞ୍ଜାବ ଲୋକଙ୍କର "ବାପ ମା ସରକାର" ହୋଇଅଛନ୍ତି । ସେଇ ଡାୟାର ଏ ଦେଶରୁ ମୋଟା ପେନ୍‌ସନ ପାଇ ବିଲାତରେ ଏ ଦେଶ ଲୋକଙ୍କୁ ହାଣିମାରି ଜବତ କରିବାକୁ ବକ୍ତୃତା କରୁଛନ୍ତି । ସେମାନେ ବର୍ତ୍ତମାନ ସରକାରଙ୍କ ବାହୁଚ୍ଛାୟାରେ ରହି କୁରୁଡ଼ି ମାରୁଛନ୍ତି । ଗୋରାଙ୍କ ଆତ୍ମ ମର୍ଯ୍ୟାଦାରେ ବାଧା ପଡ଼ିବ ବୋଲି କେହି ଜଣେହେଲେ ଶାସନତନ୍ତ୍ରୀ ଏମାନଙ୍କୁ ପଦେ ଟାଣ ଭାଷା କହିଲା ନାହିଁ । ଯେଉଁମାନଙ୍କର ଆତ୍ମମର୍ଯ୍ୟାଦା ଏତେ ବେଶୀ ସେମାନେ କେଉଁ ମୁହଁରେ ଭାରତବାସୀଙ୍କୁ ଏ ଘୋର ଅପମାନ ଭୁଲିଯିବାକୁ କହୁଛନ୍ତି ? ଏମାନଙ୍କର କଣ ଆଉ ଆତ୍ମମର୍ଯ୍ୟାଦା ନାହିଁ ? ଲର୍ଡ ରିଡ଼ିଂଙ୍କ ନ୍ୟାୟ୍ଯ ବିଚାର କଣ ଏତିକରେ ଶେଷ ?

('ସମାଜ' ତା ୨୩ । ୪ । ୨୧)

———

# ଅସହଯୋଗକୁ ଭଣ୍ଡୁର କରିବା ପ୍ରଚେଷ୍ଟା

ଅସହଯୋଗ ଆନ୍ଦୋଳନ ସମ୍ବନ୍ଧେ ବିହାର ଓଡ଼ିଶା ସରକାର ଏବେ ତାଙ୍କ ନୀତି ବଦଳାଇଛନ୍ତି । ମାଦକ ନିବାରଣ ଲାଗି ଉଦ୍ୟମ କରୁଛନ୍ତି, ଅରଟ ପ୍ରଚାରର ଆୟୋଜନ ହେଉଛି । ସ୍କୁଲ୍ କଲେଜମାନଙ୍କରେ ଅରଟରେ ସୂତାକଟା ଶିଖାଯିବ ବୋଲି ଶୁଣାଯାଉଛି । ଗ୍ରାମ୍ୟପଞ୍ଚାୟତମାନଙ୍କୁ ମାମଲା ମକଦ୍ଦମା ରଫା କରିବା କ୍ଷମତା ଦିଆଯିବାର ପ୍ରସ୍ତାବ ଚାଲିଛି । ଅବଶ୍ୟ ଏହାସବୁ କାର୍ଯ୍ୟରେ ହେଲେ ଭଲକଥା । ଏହି ସବୁ ତ ଅସହଯୋଗର କାର୍ଯ୍ୟ ; ସରକାର ଯେବେ ଏହିସବୁ କାର୍ଯ୍ୟ କରନ୍ତି ତେବେ ଅସହଯୋଗ ଆନ୍ଦୋଳନରେ ଦୋଷ କଅଣ ରହିଲା ? ହୁଏତ ସରକାର କହିବେ ଏହିସବୁ କାର୍ଯ୍ୟ ସରକାର ତରଫରୁ ହେଲେ ଅସହଯୋଗ ଆନ୍ଦୋଳନର ଆଉ ଦରକାର କଅଣ ? ସରକାର କାହିଁକି ଅନେକ ସାଧାରଣ ଲୋକ ମଧ୍ୟ ଏହିପରି କହି ପାରନ୍ତି । ଆମ୍ଭମାନଙ୍କର ଆଶଙ୍କା ହୁଏ ଖୁବ୍ ସମ୍ଭବ ସରକାର ପକ୍ଷରୁ ଲୋକମାନଙ୍କୁ ଏହିପରି ସମୁଝାଇ ଅସହଯୋଗ ଆନ୍ଦୋଳନରୁ କ୍ଷାନ୍ତ ରଖାଇବାର ଚେଷ୍ଟା ହେବ । ହାତି ଲଗାଇ ହାତି ଧରାଯାଏ । କଣ୍ଟାରେ କଣ୍ଟା କଢ଼ାଯାଏ । ଏହା ନ ଜାଣେ କିଏ ? ଅସହଯୋଗ ଆନ୍ଦୋଳନର କାର୍ଯ୍ୟ ଦ୍ୱାରା ସରକାର ସେ ଆନ୍ଦୋଳନକୁ ବ୍ୟର୍ଥ କରିବାର ଉଦ୍ୟମ କରୁଅଛନ୍ତି ବୋଲି ଲୋକେ ବେଶ୍ ବୁଝିପାରୁଛନ୍ତି । ତାହା ନ ହେଲେ ପନ୍ଦରଦିନ ତଳେ ଯେ ସରକାର ସୁରାସନ୍ଦର୍ଭ ପ୍ରକାଶ କରୁଥିଲେ ତାଙ୍କର ଆଜି ନିଶାନିବାରଣର ଉଦ୍ୟମ କାହିଁକି ? ମଦ କିଣିବାକୁ ଯାଉଥିବା କୌଣସି ଲୋକକୁ କେହି ବାରଣ କଲେ ସେ ଫୌଜଦାରୀ ସୁପର୍ଦ୍ଦ ହେବେ ବୋଲି ଅଳ୍ପଦିନତଳେ କେହି ମେଜେଷ୍ଟର ପରା ହୁକୁମ ଦେଇଥିଲେ । ଅର୍ଥାତ୍ ମଦୁଆଙ୍କୁ ଉତ୍ସାହ ଓ ପ୍ରଶ୍ରୟ ଦିଆଯିବାର ବ୍ୟବସ୍ଥା କରିଥିଲେ । ବିହାର ଓଡ଼ିଶା ସରକାରଙ୍କ ଶିଳ୍ପ ବାଣିଜ୍ୟ ବିଭାଗର ଡାଇରେକ୍ଟର ସାହେବ କେତେକଦିନ ପୂର୍ବେ ଲେଖିଥିଲେ କି ଅରଟରେ ସୂତା କାଟିବା ଭାରତବର୍ଷରେ ଦରକାର ନାହିଁ । ଏ ଦେଶର କଳରେ ଯେ ସୂତା ତିଆରି ହୁଏ ତାହା ଏ ଦେଶ ପକ୍ଷରେ ଯଥେଷ୍ଟ । ବରଂ ବିଦେଶକୁ ସେଥିରୁ ବହୁତ ରପ୍ତାନି ହୁଏ । ସେ ବିଭାଗ ଡାଇରେକ୍ଟର ସାହେବଙ୍କର ଯେବେ ଏହି ମତ ତେବେ ସରକାରଙ୍କର ଅରଟ ସୂତା କଟାଇବା କି ପ୍ରୟୋଜନ ? ମୋଟକଥା ଶାମ, ଦାନ, ଦଣ୍ଡ, ଭେଦ ସବୁ ନୀତି ପ୍ରୟୋଗ କରି ଅସହଯୋଗକୁ ବ୍ୟର୍ଥ କରିବାର ଉଦ୍ୟମ ଚାଲିଛି । ଦମନର ଚେଷ୍ଟା

ହେଲା, ଦଣ୍ଡ ବି ଅନେକସ୍ଥଳେ ଦିଆଗଲା । ସେ ସବୁରେ କିଛି ଫଳ ହେଲାନାହିଁ । ଏଥର ସାମ ନୀତି ପ୍ରୟୋଗ କରାଯାଉଛି । ସଙ୍ଗେ ସଙ୍ଗେ ମଧ୍ୟ ଭେଦ ନୀତି ଚଳୁଛି । ଅସହଯୋଗ ବିରୁଦ୍ଧରେ ପ୍ରଚାର କରିବା ଲାଗି ପ୍ରଚାରକ ନିଯୁକ୍ତ ହେଉଛନ୍ତି । ଖବରକାଗଜ ମଧ୍ୟ ବାହାରୁଅଛି । ଏସବୁ ଦେଖି ଲୋକଙ୍କର ସରକାରଙ୍କ କାର୍ଯ୍ୟରେ ବିଶ୍ୱାସ ହେବ କିପରି ? ସେମାନେ ସହଜେ କହିବେ—

"ବଙ୍କଲୋଚନ ବୀର ଥିଲା
ଭିରଯା ରୂପେ ତା ମାଇଲା"

ମାତ୍ର ଆମ୍ଭେମାନେ କହୁଁ ସରକାରଙ୍କର ଦୁରଭିସନ୍ଧି ନ ଥିଲେ ସୁଦ୍ଧା ଏବଂ ସେ ନିଜ ଭୁଲ ତ୍ରୁଟି ପାରି ସରଳଭାବରେ ନୀତି ଓ ଗତି ପରିବର୍ତ୍ତନ କରୁଥିଲେ ସୁଦ୍ଧା ଲୋକ-ସାଧାରଣଙ୍କର ତାଙ୍କ ଉପରେ ନିର୍ଭର କରି ଅସହଯୋଗ ଆନ୍ଦୋଳନ ଛାଡ଼ି ନିଶ୍ଚିନ୍ତ ରହିବା ଉଚିତ ନୁହେଁ । ପର ଉପରେ ବରାବର ନିର୍ଭର କରି ଆମ୍ଭେମାନେ ପରାଧୀନ ହୋଇଅଛୁଁ । ସରକାର କରାଇଲେ କରିବା, ଏ ଭାବ ଏଣିକି ଛାଡ଼ି ଦେବାକୁ ହେବ । ଏହି ଭାବ ଯୋଗୁଁ ଏ ଦେଶ ଲୋକଙ୍କର ପୁରୁଷପଣିଆ ଲୋପ ପାଇଛି । ଆଗେ ସରକାରୀ ସ୍କୁଲ ନ ଥିବାବେଳେ ପ୍ରତି ଗାଁରେ ପ୍ରାୟ ଚାଟଶାଳୀ ଥିଲା, ଉଣାଅଧିକେ ପ୍ରତି ବ୍ରାହ୍ମଣ ଗାଁରେ ଏପରିକି ପ୍ରତି କ୍ଷତ୍ରିୟ, କରଣ ପ୍ରଭୃତିଙ୍କ ମଧ୍ୟରେ କେତେ ସ୍ଥାନରେ ସଂସ୍କୃତ ଜାଣିବା ବ୍ୟକ୍ତି ଥିଲେ । ଲୋକେ ପାଠପଢ଼ି ଖାଲି ଚାକରୀକି ଚାହିଁ ବସି ନ ଥିଲେ । ସରକାରୀ ସ୍କୁଲ ହେବାଦିନୁ ପାଠପଢ଼ି ଲୋକେ ଅକର୍ମଣ୍ୟ ହେଲେ ; ସରକାରଙ୍କ ଦ୍ୱାରେ ମୁଣ୍ଡ କୋଡ଼ି କେବଳ କହୁଛନ୍ତି "ଦେହି ମେ ପଦ ପଙ୍କଜମୁଦାରଂ" । ଆଗେ ଗାଁରେ ପଞ୍ଚାୟତ ଦ୍ୱାରା ମାମଲା ମକଦ୍ଦମା ନିଷ୍ପତ୍ତି ହେଉଥିଲାବେଳେ ଗାଁରେ ଏତେ କଳହ ବିବାଦ ନ ଥିଲା । ସରକାରୀ ବିଚାର ବିଧାନ ପଶିବା ଦିନୁଁ ଗ୍ରାମ ଜୀବନ ନଷ୍ଟ ହୋଇଅଛି, ଏକତା ନାହିଁ । ମାମଲା ମକଦ୍ଦମାରେ ଗ୍ରାମ ଛାରଖାର ହେଲାଣି । ଅବକାରୀ ବିଭାଗ ନ ଥିଲା ବେଳେ ଏ ଦେଶରେ ଏତେ ନିଶାଖିଆ ନ ଥିଲେ । ଏବେ ସର୍ବସ୍ୱାନ୍ତ ହୋଇ ଲୋକେ ନିଶା ଖାଉଛନ୍ତି । ଅରଟରେ ସୂତାକାଟି ଏ ଦେଶ ଲୋକେ ଲୁଗା ବୁଣୁଥିଲା ବେଳେ ନିଜେ ପିନ୍ଧି ପୃଥିବୀର ଅନ୍ୟାନ୍ୟ ଦେଶକୁ କୋଟି କୋଟି ଟଙ୍କାର କପଡ଼ା ଯୋଗାଉ ଥିଲେ । ବିଦେଶରୁ ଲୁଗା ଆମଦାନି ଦ୍ୱାରା ଆଜି ଏ ଦେଶର ଦୁର୍ଗତି କଅଣ ହୋଇଛି ତାହା ସମସ୍ତେ ଜାଣୁଛନ୍ତି । ଅଧିକ କହିବା ଦରକାର ନାହିଁ । ତେଣୁ ଆମ୍ଭେମାନେ କହୁଁ ସରକାର ଆମ୍ଭମାନଙ୍କ

କାର୍ଯ୍ୟରେ ସହାୟତା କରୁଛନ୍ତି ତ କରନ୍ତୁ ଭଲକଥା । ମାତ୍ର ସରକାରଙ୍କ ଉପରେ ବା ଅନ୍ୟ କାହାର ଉପରେ ଆମ୍ଭମାନଙ୍କର ନିର୍ଭରକରିବା ଉଚିତ ନୁହେଁ । ଏହାହିଁ ଅସହଯୋଗ ନୀତିର ମୂଳମନ୍ତ୍ର । ଏହି ମନ୍ତ୍ରର ସାଧନା କରିପାରିଲେ ପ୍ରତ୍ୟେକ ସ୍ୱାଧୀନ ଏବଂ ସ୍ୱରାଜ୍ୟ ମନୁଷ୍ୟର ନିଜ ହାତରେ । କଥାରେ ଅଛି "ମା ଝିଅ ଦହେଁଯାକ ଦାଅଁ ଘର ଗଲେ, ଯେଝା ଶୁଭି ସେ ମନାସିଲେ" । ଅସହଯୋଗ ଆନ୍ଦୋଳନଦ୍ୱାରା ଆମ୍ଭେମାନେ ଆମ ନିଜର ମଙ୍ଗଳ ବାଞ୍ଛା କରୁଅଛୁଁ । ସରକାର ଆପଣା କାର୍ଯ୍ୟ କୌଶଳଦ୍ୱାରା ତାଙ୍କ ନିଜ ନିଜ ମଙ୍ଗଳ ବାଞ୍ଛା କରୁଛନ୍ତି । ଦୁଃଖର କଥା ଭାରତରେ ପ୍ରଜା ରାଜାଙ୍କ ମଙ୍ଗଳ ଏକ ଏବଂ ଅଭିନ୍ନ ନୁହେଁ । ସେଥିଲାଗି ତ ସ୍ୱରାଜ୍ୟ ଲୋଡ଼ା । ସ୍ୱରାଜ୍ୟ ହେଲେ ଭାରତବାସୀ ସରଳ ନିର୍ମଳ ମନରେ କହି ପାରିବେ—

"ରାଜ୍ଞଃ ପ୍ରଜାନାଂ ଚ ଶାନ୍ତିର୍ଭବତୁ" ।

('ସମାଜ' ତା ୨୩ । ୪ । ୨୧)

———

# ସମ୍ବଲପୁରରେ ଅସହଯୋଗ

ଓଡ଼ିଶା ମଧ୍ୟରେ ପୁରୀକୁ ଛାଡ଼ିଦେଲେ ସମ୍ବଲପୁରରେ ଅସହଯୋଗ ଆନ୍ଦୋଳନର ଆରମ୍ଭ ସର୍ବ ପ୍ରଥମ । ଗ୍ରେଟଲାଟ୍ ସଭାକୁ ମେମ୍ବର ନିର୍ବାଚନ ବେଳେ ସମ୍ବଲପୁର ସହରରୁ ତିରିଶଜଣ ଭୋଟ ଦେଇଥିଲେ । ଡିସେମ୍ବର କଂଗ୍ରେସର ଠିକ୍‌ପରେ ସମ୍ବଲପୁର ଜିଲାସ୍କୁଲ ଛାଡ଼ି ଶତାଧିକ ଛାତ୍ର ଚାଲି ଆସିଥିଲେ । ଏପରିକି ସମ୍ବଲପୁର ଛାତ୍ରମାନଙ୍କ ଉଦାହରଣ କଲିକତା ସଭାସମିତିରେ ସେଠାଁ ସ୍କୁଲ କଲେଜ ଛାତ୍ରମାନଙ୍କୁ ଦିଆଯାଇଥିଲା । କଲିକତା ବିଶ୍ୱବିଦ୍ୟାଳୟର କାର୍ଯ୍ୟ ଛାଡ଼ି ଶ୍ରୀମାନ୍ ନୀଳକଣ୍ଠ ଦାସ ସେହିଦିନୁ ସମ୍ବଲପୁର ଜାତୀୟ ବିଦ୍ୟାଳୟର ପ୍ରଧାନ ଆଚାର୍ଯ୍ୟରୂପେ କାର୍ଯ୍ୟ ଚଳାଉ ଅଛନ୍ତି ଏବଂ ଶିଳ୍ପ ଶିକ୍ଷକ ସହିତ ବର୍ତ୍ତମାନ ୧୭ ଜଣ ଉତ୍ସାହୀ ସୁଶିକ୍ଷିତ ଯୁବକ ଏହି ବିଦ୍ୟାଳୟରେ ଶିକ୍ଷକ ଅଛନ୍ତି । କେବଳ ଜାତୀୟ ବିଦ୍ୟାଳୟରେ ସମ୍ବଲପୁରର ଅସହଯୋଗ ଆନ୍ଦୋଳନ ଶେଷ ହୋଇ-ନାହିଁ । ଗ୍ରାମେ ଗ୍ରାମେ ପ୍ରଚାର କାର୍ଯ୍ୟ ଆରମ୍ଭ ହୋଇଅଛି । ମାତ୍ର ଅତି ଦୁଃଖର କଥା, ସମ୍ବଲପୁରର କେତେକ ସରକାରୀ କର୍ମଚାରୀ ବୃଥାରେ ଆନ୍ଦୋଳନରେ ବାଧା ଘଟାଇବାର ଉଦ୍ୟମ କରୁଅଛନ୍ତି । ସେମାନଙ୍କ ସଙ୍ଗେ କେତେଜଣ ବେସରକାରୀ ସାଧାରଣ ଲୋକଙ୍କର ଯୋଗଥିବା ଅଧିକ ଆକ୍ଷେପର ବିଷୟ । ଯେଉଁମାନେ ଏତେଦିନ ପର୍ଯ୍ୟନ୍ତ ସମ୍ବଲପୁରର ନେତାବୋଲି ଆପଣାକୁ ପରିଚୟ ଦେଇଆସୁଥିଲେ ଏବଂ ଯେଉଁମାନେ ନୂତନ ନେତା ହେବାକୁ ବାହାରିଛନ୍ତି ସେମାନଙ୍କ ମଧ୍ୟରୁ କେହି କେହି ହୁଏତ ସାମାନ୍ୟ ସ୍ୱାର୍ଥପାଇଁ ଏପରି କାର୍ଯ୍ୟ କରିବା ଅତ୍ୟନ୍ତ ନିନ୍ଦନୀୟ । ସମ୍ବଲପୁରର ଡେପୁଟୀ କମିଶନର ଇଂଲିଶ ସାହେବ ଜିଲାରେ ଜଣେ ଲୋକପ୍ରିୟ ହାକିମବୋଲି ଜଣାଥିଲା । ମାତ୍ର ସାତ କଥାରେ ସତୀ ଭୁଲେ । ଏହିପରି କେତେଜଣ "ନିମକ ସଚ୍ଚା" ସରକାରୀ ବେସରକାରୀ ଲୋକଙ୍କ ପ୍ରରୋଚନାରେ କିସ ଟିକିଏ ବିଚଳିତ ହୋଇ ଏବେ ସେ ଲୋକପ୍ରୀତି ଅନେକ ପରିମାଣରେ ହରାଇଛନ୍ତି । ଏ ମାସ ୧୯ ତାରିଖ ମଙ୍ଗଳବାର ସମ୍ବଲପୁର ସହରରେ ସ୍ଥାନୀୟ ସରକାରୀ କର୍ମଚାରୀ ମାନଙ୍କ କାର୍ଯ୍ୟର ପ୍ରତିବାଦ କରି ଯେ ସଭା ହୋଇଥିଲା ତାହାର ବିସ୍ତାରିତ ବିବରଣ ଆମ୍ଭେମାନେ ଏଥର ସମାଜର ଅନ୍ୟ ସ୍ତମ୍ଭରେ ପ୍ରକାଶ କରିଅଛୁଁ । ସେଥିରୁ ଜଣାଯାଉଛି ଯେ ଅସହଯୋଗ ଆନ୍ଦୋଳନକୁ ଦବାଇବା ନିମନ୍ତେ ନାନା ଢଙ୍ଗରେ ଚେଷ୍ଟା କରାଯାଇଅଛି । ସତ୍ୟାଗ୍ରହ ସପ୍ତାହରେ ୬ ଓ ୧୩ ତାରିଖର ହରତାଲ ବନ୍ଦ କରିବା,

ସହରର ବିଶିଷ୍ଟ ପଦସ୍ଥ ବ୍ୟକ୍ତିମାନଙ୍କୁ ହଇରାଣ କରିବା, ମଫସଲ ଲୋକଙ୍କୁ ଧମକାଇ ପ୍ରକୃତ କାର୍ଯ୍ୟ ବନ୍ଦ କରାଇବା ପ୍ରଭୃତି ନାନା ପ୍ରକାର ଉଦ୍ୟମ ହୋଇଅଛି । ଜାତୀୟ ବିଦ୍ୟାଳୟରୁ ପ୍ରଧାନ ଅଗ୍ରଯ୍ୟ ପଣ୍ଡିତ ନୀଳକଣ୍ଠ ଦାସଙ୍କ ବିରଚିତ "ସ୍ୱରାଜ୍ୟ ଭୟ୍ୟା ଅନ୍ୟବତ ହୋଗୀ" ଜାତୀୟଗୀତ ସ୍ଥାନୀୟ ମିଶ୍ର ଛାପାଖାନାରେ ଛାପା ହୋଇଥିଲା । ମାତ୍ର ସେଥିରେ ପ୍ରକାଶକ ନାମ ନ ଥିବା ଏବଂ ତହିଁର ଛାପା ନକଲ ଜିଲ୍ଲା ମେଜେଷ୍ଟର ଅଫିସକୁ ପଠାଯାଇ ନ ଥିବା କାରଣ ଦେଖାଇ ପ୍ରେସର ମାଲିକ ଓ ପ୍ରିଣ୍ଟର ପଣ୍ଡିତ ଶ୍ରୀ ଧରଣୀଧର-ମିଶ୍ର ବାନପ୍ରସ୍ଥଙ୍କଠାରୁ ଟ ୨୫୦ ଦଣ୍ଡ ସ୍ୱରୂପ ନିଆଯାଇଅଛି । ଅବକାରୀ ପଟ୍ଟାଦାରମାନେ ପଟ୍ଟା ଫେରସ୍ତ ଦେଇ ଚୁକ୍ତିରୁ ଅବ୍ୟାହତି ପାଇବାର ପ୍ରାର୍ଥନା କରିବାରୁ ପରମେଶ୍ୱର ବେହେରାଙ୍କ ପରି ବ୍ୟକ୍ତିଙ୍କୁ ଡେପୁଟି କମିଶନରଙ୍କ ଆଦେଶରେ ଧକ୍କା ଦିଆଯାଇ ଡେପୁଟି କମିଶନରଙ୍କ ହତାରୁ ବାହାରି କରି ଦିଆଯାଇଅଛି । ମୋଟକଥା ଏହି ଅଳ୍ପଦିନ ମଧ୍ୟରେ ସମ୍ବଲପୁରରେ ବୃଥାରେ ଯେତେକାଣ୍ଡ ହୋଇଯାଇଛି ସେଥିରେ ସମ୍ବଲପୁର ବାସୀମାନେ ଉତ୍ତ୍ୟକ୍ତ ହୋଇଯିବା ଆଶ୍ଚର୍ଯ୍ୟ ନୁହେଁ । ପ୍ରତିବାଦ ସଭାରୁ ଡେପୁଟି କମିଶନର ଲୋକମାନଙ୍କ ଖିଆଲ ବୁଝି ଯାଇଥିବେ । ଏବେ ସମ୍ବଲପୁରରେ କାହିଁକି ଓଡ଼ିଶାର ଯେ କୌଣସି ଜିଲ୍ଲାରେ ଅସହଯୋଗ ଆନ୍ଦୋଳନରେ ଏ ପର୍ଯ୍ୟନ୍ତ ଶାନ୍ତିଭଙ୍ଗ ବା କୌଣସି ପ୍ରକାର ଗୋଳମାଳର ଆଶଙ୍କା ହୋଇନାହିଁ । ଜିଲ୍ଲା ହାକିମମାନେ ନିଜେ ନ ବୁଝି ନ ସୁଝି କାନ କୁହା କଥାରେ ଭୁଲି ନିଜଆଡ଼ୁ ଶାନ୍ତିଭଙ୍ଗ ଘଟାଇଲେ ଫଳ ବଡ଼ ବିଷମ ହେବ । ଶୁଣି ସୁଖୀ ହେଲୁ ଯେ କାନକୁହା ଲୋକଙ୍କ ଚେଷ୍ଟାର ରହସ୍ୟ ଓ ଅଭିପ୍ରାୟ ଡେପୁଟି କମିଶନର ବୁଝିପାରି ଆଉ ଅଧିକଦୂର ଆଗେଇବାରୁ କ୍ଷାନ୍ତ ଅଛନ୍ତି । ଅସହଯୋଗ ବିରୋଧୀ ସରକାରୀ ଓ ବେ-ସରକାରୀ ନାୟକମାନେ ଏତିକରେ କାନମୁଣ୍ଡା ଆଉଁସି ରହିଲେ ରକ୍ଷା । ଅନ୍ୟାନ୍ୟ ଜିଲ୍ଲା ଓ ସବ୍‌ଡିଭିଜନର କାନକୁହା ରାଜବଲ୍ଲଭ ନାୟକମାନେ ଏଥିରୁ ଶିକ୍ଷାପାଇ "ଆଲୋ ସଖି, ଆପଣା ମହତ ଆପେ ରଖି" ନୀତି ଧରିବା ଉଚିତ ।

('ସମାଜ' ତା ୩୦ । ୪ । ୨୧)

———

# ଏଥିରେ କଣ ପଞ୍ଜାବ ଅତ୍ୟାଚାରର ଦାଗ ଲିଭିବ ?

ଲର୍ଡ଼ ରିଡ଼ିଂ ନ୍ୟାୟ ଦେବା ନିମନ୍ତେ ଭାରତକୁ ବଡ଼ଲାଟ ହୋଇ ଆସିଥିବାର ସେ ନିଜେ ବହୁବାର ପ୍ରକାଶ କରିଥିବା କଥା ପାଠକମାନଙ୍କୁ ଜଣାଇଅଛୁଁ । ବଡ଼ଲାଟଙ୍କ କଥାରୁ ସ୍ପଷ୍ଟ ଜଣାଯାଇ ଅଛି ଯେ ଏଣିକି ସେ ନ୍ୟାୟରେ ଶାସନ କରିବେ । କିନ୍ତୁ ତାଙ୍କ ପୂର୍ବବର୍ତ୍ତୀ ଲାଟମାନେ ଭାରତକୁ ଅନ୍ୟାୟରେ ଶାସନ କରୁଥିଲେ । ସେ ଯାହାହେଉ, ଦିଲ୍ଲୀରେ ପାଦ ଦେଉଁ ଦେଉଁ ସେ ହଠାତ୍ ପଞ୍ଜାବର ଲାହୋର ଓ ଅମୃତ ସହର ଦେଖିବାକୁ ଗଲେ । ଲୋକେ ବହୁ ଆଶା ପୋଷି ବସିଲେ; ମନେକଲେ ଏତେଦିନେ ପ୍ରକୃତ ନ୍ୟାୟ ବିଚାର ଅବା ମିଳିବ । ମାତ୍ର ତାଙ୍କ ପୂର୍ବବର୍ତ୍ତୀ ଲାଟ ଓ ଡ୍ୟୁକ୍ ଅଫ୍ କନାଟ "ଛାଡ଼ ସେ କଥା ଭୁଲ ସେ କଥା" ବୋଲି ଭାରତବାସୀଙ୍କୁ ଯେ ବୃଥା ଆଶ୍ୱାସନା ଦେଉଥିଲେ, ଲର୍ଡ ରିଡ଼ିଂଙ୍କ ମୁଖରୁ ମଧ୍ୟ ସେହି "ନ୍ୟାୟ ବିଚାର" ବାହାରିଲା । ବଡ଼କରି ଲର୍ଡ଼ ରିଡ଼ିଂ ଆଶ୍ୱାସନା ଦେଲେ ଅମୃତ ସହର ପ୍ରଭୃତିରେ ମରିଥିବା ଲୋକଙ୍କ ପରିବାରମାନଙ୍କୁ କିଛି କିଛି କ୍ଷତି ପୂରଣ ସ୍ୱରୂପ ଅର୍ଥ ଦିଆଯିବ । କେବଳ କେତୋଟା ଟଙ୍କା ଦେଲେ କିଅଣ ପଞ୍ଜାବ ତଥା ଭାରତ ପ୍ରତି ନ୍ୟାୟ ବିଚାର ହୋଇଗଲା ? ଭାରତର ଅଶାନ୍ତି ଏବଂ ଅମୃତ-ସହରର ନୃଶଂସ ହତ୍ୟାକାଣ୍ଡ ପଞ୍ଜାବ ହୃଦୟରୁ ଓ ଭାରତ ଇତିହାସରୁ ଏହାଦ୍ୱାରା କିଅଣ ସମ୍ପୂର୍ଣ୍ଣ ପୋଛି ହୋଇଯିବ ?

ପୁଣି ଯେଉଁ ଅର୍ଥ କ୍ଷତିପୂରଣ ଦିଆଯିବ, ତାହା ଆସିବ କାହୁଁ ? ଡାୟାର-ସାହେବ ଯେପରି ଭାରତ ରାଜକୋଷରୁ ମୋଟା ପେନସନ୍ ପାଇ ବିଲାତରେ ମହା ସମ୍ଭୋଗରେ ରହିଲେ, ଲର୍ଡ ରିଡ଼ିଂ ପଞ୍ଜାବ ଲୋକଙ୍କୁ ସୁଖ ଓ ସନ୍ତୋଷରେ ରଖିବାପାଇଁ ବିଲାତ ରାଜକୋଷରୁ କଣ ଅର୍ଥ ଆଣି ସେମାନଙ୍କୁ କ୍ଷତି ପୂରଣ ଦେବେ ନା ଭାରତର ଗରିବ କାଙ୍ଗାଳମାନଙ୍କ ରାଜସ୍ୱରୁ ଦିଆଯିବ ? ଯାହାହେଉ ଲର୍ଡ଼ ରିଡ଼ିଂ ନ୍ୟାୟ ବିଚାର କରି "ପଞ୍ଜାବ-କ୍ଷତି" ନାମରେ ଏକ ନୂଆ ଟିକସ ନ ବସାଇଲେ ରକ୍ଷା । ପଞ୍ଜାବଲୋକେ ଲର୍ଡ଼ ରିଡ଼ିଂଙ୍କ ଏ ନ୍ୟାୟପରାୟଣତା ଦେଖି ମନେ ମନେ କହୁଥିବେ,

"ନେଲ ଯାହା ଦେଲ ତାହା
ନ୍ୟାୟପଣେ କିଆଁ ପତାକା ବାନ୍ଧିଲ ହେ
ମହାପ୍ରଭୁ ।"

× × ×

ନାଗପୁରଠାରେ କେତେ କଂଗ୍ରେସ ପ୍ରଚାରକ ଲୋକମାନଙ୍କୁ ମଦ ଖାଇବାରୁ ନିବୃତ୍ତ କରାଇଥିଲେ । କେତେକ ମଦଖିଆଙ୍କ ସଙ୍ଗେ ପ୍ରଚାରକଙ୍କ ମଧ୍ୟରୁ କାହାର କାହାର କଳିକଜିଆ ଲାଗିବାରୁ ପୁଲିସ ଆସି ଉଭୟପକ୍ଷ ଉପରେ ଅତ୍ୟାଚାର ଆରମ୍ଭ କଲେ । ଫଳରେ କେତେଲୋକ ଗୁଳିଖାଇ ମରି ଯାଇଛନ୍ତି । ଏଥିପାଇଁ ପଞ୍ଜାବପରି ଏଠାରେ ପୁଣି ଅନୁସନ୍ଧାନ କମିଟି ବସୁଛି । ଦେଖାଯାଉ ଏ କଣ କରୁଛି ।

('ସମାଜ ତା ୭ । ୫ । ୨୧)

———

# ସ୍ୱରାଜ୍ୟ ଧର୍ମ ପାଳନ

କଂଗ୍ରେସ ଆଦେଶ ଅନୁସାରେ ଆଗାମୀ ଜୁନ୍ ମାସ ମଧ୍ୟରେ ସମଗ୍ର ଭାରତବର୍ଷରେ ଏକକୋଟି ସଭ୍ୟ, ତିଲକ ସ୍ୱରାଜ୍ୟ ପାଣ୍ଠି ନିମନ୍ତେ ଏକ କୋଟି ଟଙ୍କା ଏବଂ କୋଡ଼ିଏ ଲକ୍ଷ ଅରଟ ପ୍ରସ୍ତୁତ କରିବାକୁ ହେବ । ଲୋକସଂଖ୍ୟା ଅନୁସାରେ କେଉଁ ପ୍ରଦେଶ ଭାଗରେ ଏଥିରୁ କେତେ ପଡ଼ିବ ତାହା ସ୍ଥିର ହୋଇଗଲାଣି । ସମୁଦାୟ ଓଡ଼ିଆଭାଷୀ ପ୍ରଦେଶକୁ କଂଗ୍ରେସ ବା ଭାରତ ଜାତୀୟ ମହାସମିତି ଉତ୍କଳ ଦେଶ ବୋଲି ସ୍ୱୀକାର କରିଅଛନ୍ତି । ଏହି ଉତ୍କଳ ଦେଶର ମୋଟ ଲୋକସଂଖ୍ୟା ଦେଢ଼କୋଟି; ଏ ସବୁଯାକ ଅବଶ୍ୟ ଓଡ଼ିଆ ନୁହନ୍ତି । ଏଥିରେ ତେଲଙ୍ଗା, ବଙ୍ଗାଳୀ ଏବଂ ହିନ୍ଦୀଭାଷୀ ଲୋକେ ପ୍ରାୟ ତିରିଶ ଲକ୍ଷ ସରିକି ହେବେ । ମାତ୍ର କୌଣସି ପ୍ରଦେଶର ଲୋକସଂଖ୍ୟା ଧରିଲା ବେଳେ ଏପରି ଫାଙ୍କ ଫାଙ୍କ କରି ହିସାବ କରିବା ଉଚିତ ନୁହେଁ । ଯେଉଁମାନେ ଉତ୍କଳ ପ୍ରଦେଶରେ ବାସ କରନ୍ତି ସେମାନଙ୍କ ବର୍ଣ୍ଣ, ଧର୍ମ, ଜାତି ବା ଭାଷା ଯାହାହେଉ, ସେ ସମସ୍ତେ ଉତ୍କଳୀୟ ବୋଲି ଧରାଯିବା ଉଚିତ । ଏହି ହିସାବରେ ସମଗ୍ର ଭାରତର ଲୋକସଂଖ୍ୟା ମୋଟରେ ୩୦ କୋଟି ଧରିଲେ ଉତ୍କଳ ପ୍ରଦେଶର ଲୋକସଂଖ୍ୟା ଏଥିର କୋଡ଼ିଏ ଭାଗରୁ ଏକଭାଗ । ଫଳରେ ଏକକୋଟି କଂଗ୍ରେସ ମେମ୍ବର ମଧ୍ୟରୁ ଓଡ଼ିଶା ଭାଗରେ ୫ଲକ୍ଷ ପଡ଼ୁଅଛି । ତିଲକ ସ୍ୱରାଜ୍ୟ ଫଣ୍ଡ ନିମନ୍ତେ ସେହିପରି ମଧ୍ୟ ୫ ଲକ୍ଷ ଟଙ୍କା ହେଉଅଛି ଏବଂ କୋଡ଼ିଏ ଲକ୍ଷ ଅରଟ ମଧ୍ୟରୁ ଏକଲକ୍ଷ ଉତ୍କଳ ପ୍ରଦେଶକୁ ଯୋଗାଇବାକୁ ହେବ । ଏହି ହିସାବରେ ଓଡ଼ିଶାର ଗଡ଼ଜାତ ରାଜ୍ୟମାନ ଧରାଯାଇଅଛି । ମାତ୍ର ଗଡ଼ଜାତ ରାଜ୍ୟରେ ଉପସ୍ଥିତ ଆନ୍ଦୋଳନର କାର୍ଯ୍ୟ ଆଦୌ ପ୍ରସାର ହୋଇନାହିଁ ଏବଂ ନିକଟରେ ହେବାର ଆଶା ଦେଖା ଯାଉନାହିଁ । ଏହାଛଡ଼ା ମେଦିନୀପୁର ଜିଲ୍ଲାର କାନ୍ଥି ସବ୍ ଡିଭିଜନ, ଗଞ୍ଜାମ ଓ ଜୟପୁର ଏଜେନସି, ସିଂହଭୂମି ଜିଲ୍ଲା ଓ ବିଲାସପୁର ଏବଂ ରାୟପୁର ଜିଲ୍ଲାର ଉତ୍କଳଭାଷୀ ଅଞ୍ଚଳମାନ ଉତ୍କଳ-ପ୍ରଦେଶର ଅନ୍ତର୍ଗତ ହେଲେ ସୁଦ୍ଧା ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଅଧୀନରେ ଏସବୁ ସ୍ଥାନରେ ଏପର୍ଯ୍ୟନ୍ତ ନିବନ୍ଧନରେ ଷୋଳଅଣା ସୁବିଧାରୂପେ କାର୍ଯ୍ୟ ହୋଇ ପାରିନାହିଁ । ମୋଟିକିଆ ଉତ୍କଳ ପ୍ରଦେଶ ହିସାବରେ ଯାହା ପଡ଼ୁଛି ତହିଁର ଅଧିକଭାଗ ଫଳରେ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଏହି ଚାରି ଜିଲ୍ଲାକୁ ପୂରଣ କରିବାକୁ ପଡ଼ିବ । ଅବଶ୍ୟ ପ୍ରାନ୍ତୀୟ ଉତ୍କଳ ଜିଲା ଏବଂ ଗଡ଼ଜାତ ରାଜାମାନଙ୍କୁ ଏହା ବୋଲି ଛାଡ଼ିବାକୁ ହେବ ନାହିଁ । ସେସବୁ ସ୍ଥାନରେ ଯେତେଶୀଘ୍ର ସମ୍ଭବ ଆନ୍ଦୋଳନ ସୂତ୍ରପାତ କରିବାକୁ

ହେବ । ମାତ୍ର ମଇ ଜୁନ ଦୁଇମାସ ମଧ୍ୟରେ ସେସବୁ ଅଞ୍ଚଳରେ ଉପସ୍ଥିତ ଅବସ୍ଥାରେ କେତେଦୂର ଯେ କାର୍ଯ୍ୟ ସଫଳ ହେବ କୁହାଯାଇ ପାରୁନାହିଁ । ଯାହାହେଉ ଦେଢ଼କୋଟି ଲୋକଙ୍କ ମଧ୍ୟରୁ ପାଞ୍ଚଲକ୍ଷ ମେମ୍ବର ହେବା ବଡ଼ ବେଶୀ ନୁହେଁ । ହାରାହାରି ତିରିଶଜଣରେ ଜଣେ ମେମ୍ବର ହେବା ଦରକାର ପଡ଼ୁଅଛି । ସ୍ତ୍ରୀ ପୁରୁଷ ଉଭୟେ ମେମ୍ବର ହୋଇ ପାରନ୍ତି । ଏକୋଇଶ ବର୍ଷ ବା ତହିଁରୁ ଅଧିକ ବୟସର ସ୍ତ୍ରୀ ପୁରୁଷ ସମଗ୍ର ଉତ୍କଳ ପ୍ରଦେଶର ଦେଢ଼କୋଟି ଲୋକଙ୍କ ମଧ୍ୟରେ ନିତାନ୍ତ କମ୍‌ରେ ଏକକୋଟି ହେବେ । ବର୍ଷକୁ ଚାରିଅଣା ଦେବାର କ୍ଷମତା ଅଧିକାଂଶଙ୍କର ଅଛି । ଏପରିକି ଦିନକୁ ଦୁଇଅଣା ମଜୁରି ଲାଗନ୍ତି କମ୍ବା ଭିକ ମାଗନ୍ତି ଇଚ୍ଛାକଲେ ବର୍ଷକୁ ସେ ଚାରିଅଣା ସ୍ୱଚ୍ଛନ୍ଦରେ ଦେଇ ପାରିବେ । ମେମ୍ବର ହେବା ଲାଗି ଜାତି କୁଳଧର୍ମର କିଛି ବିଚାର ନାହିଁ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, ହାଡ଼ି, ବାଉରି, କେଳା, କଣ୍ଡରା, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ ସବୁ ବର୍ଣ୍ଣ ଓ ଧର୍ମର ଲୋକେ ମେମ୍ବର ଶ୍ରେଣୀଭୁକ୍ତ ହୋଇ ପାରିବେ । ଏଥିଲାଗି ଧନସମ୍ପତ୍ତି ବା ଯୋଗ୍ୟତା ଦରକାର ନାହିଁ । ସାହୁ, ଖାତକ, ଜମିଦାର, ପ୍ରଜା, ମୂଲିଆ, ମହାଜନ ସମସ୍ତେ ଭାରତ ଜାତୀୟ ମହାସମିତିର ମେମ୍ବର ହେବାକୁ ସମାନ ଅଧିକାରୀ । ପାଠର ଯୋଗ୍ୟତା ମଧ୍ୟ ଲୋଡ଼ା ନାହିଁ । ଯେ ନାମ ପର୍ଯ୍ୟନ୍ତ ଲେଖି ନ ଜାଣନ୍ତି ସେ ମେମ୍ବର ହୋଇ ପାରିବେ । ଦରକାର ପଡ଼ିଲେ ଦସ୍ତଖତ ଯାଗାରେ ତାଙ୍କୁ ଟିପଚିହ୍ନ ଦେବାକୁ ହେବ । ଏ ବିଷୟରେ ଓଡ଼ିଶାର ଟିକିଏ ସୁବିଧା ଅଛି । ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଓଡ଼ିଶାରେ ଲେଖାପଢ଼ା ଜାଣିବା ଲୋକଙ୍କ ସଂଖ୍ୟା ଅଧିକ । ଅନେକେ ନାମ ଲେଖି ଜାଣନ୍ତି, ମଧ୍ୟ ପୋଥି ପଢ଼ି ଜାଣନ୍ତି । ସଭ୍ୟ, ଟଙ୍କା ଓ ଅରଟ ଏହି ତିନି ପଦରୁ ପ୍ରତ୍ୟେକଟି ଷୋଳଅଣା ପୂରଣ କରି ନ ପାରିଲେ ସୁଦ୍ଧା ପାଞ୍ଚଲକ୍ଷ ସଭ୍ୟ ନ କରି ପାରିବା ଉତ୍କଳ ପ୍ରଦେଶ ପକ୍ଷରେ ଘୋର ନିନ୍ଦାର ବିଷୟ ହେବ । କଂଗ୍ରେସର ମେମ୍ବର ହେବାର ଅର୍ଥ ସ୍ୱରାଜ୍ୟ ଧର୍ମଗ୍ରହଣ କରିବା । ଯେ ମେମ୍ବର ବା ସଭ୍ୟ ହେବେ ତାଙ୍କୁ ସ୍ୱରାଜ୍ୟ ଦୀକ୍ଷା ସ୍ୱୀକାର କରିବାକୁ ହେବ । ଏଥିରେ ନିମ୍ନ ବର୍ଣ୍ଣମାନଙ୍କର ଆତ୍ମସମ୍ମାନ ବଢ଼ିବ । ମନରେ ଗୌରବ ଆସିବ । ଦୁଃଖୀ ନିମ୍ନ ଲୋକଙ୍କ ପ୍ରାଣରେ ଆଶା ଓ ଉତ୍ସାହ ଜନ୍ମିବ । ଉଚ୍ଚ ଜାତିର ଧନୀ ଓ ଶିକ୍ଷିତ ଲୋକେ ଯହିଁରେ ସଭ୍ୟ, ଦରିଦ୍ର ନିରକ୍ଷର ବାଉରି, ଶବର, ସାନ୍ତାଳ ସେଥିରେ ସଭ୍ୟ ହେଲେ ତାହାଁର ନଷ୍ଟପ୍ରାୟ ଆତ୍ମମର୍ଯ୍ୟାଦା ଜ୍ଞାନ ହେବ । ସ୍ୱରାଜ ପତାକା ତଳେ ସମସ୍ତ ସମାନ, ଏହି ଭାବ ଦେଶରେ ପ୍ରଚାରିତ ହେବ । ଏତେକାଳ ପର୍ଯ୍ୟନ୍ତ ଭାରତ ଜାତୀୟ ମହାସଭାର ଆନ୍ଦୋଳନ କେବଳ କେତେଜଣ ଉପର ଶ୍ରେଣୀର ଶିକ୍ଷିତ ଧୋବଧାଉଳିଆଙ୍କର କାର୍ଯ୍ୟ ହୋଇଥିଲା । ତେଣୁ ମହାସଭାର ତେତେ ଶକ୍ତି ପ୍ରକାଶ ପାଇ ନ ଥିଲା । ମାତ୍ର ସ୍ୱରାଜ୍ୟ କେବଳ କେତେଜଣ

ଧର୍ମୀଙ୍କର ନୁହେଁ । ଯେ ଭାରତମାତାଙ୍କର ସନ୍ତାନ ଧନୀ ହୁଅନ୍ତୁ ବା ଦରିଦ୍ର ହୁଅନ୍ତୁ, ପଣ୍ଡିତ ହୁଅନ୍ତୁ ବା ମୂର୍ଖ ହୁଅନ୍ତୁ ତାଙ୍କର ସ୍ୱରାଜ୍ୟରେ ଅନ୍ୟମାନଙ୍କ ସଙ୍ଗେ ସମାନ ଅଧିକାର । ଜଗନ୍ନାଥ ମହାପ୍ରଭୁଙ୍କ କୃପାରେ ଉତ୍କଳରେ ଯେ ସାମ୍ୟଭାବ ବିଦ୍ୟମାନ ଅଛି, ଉପସ୍ଥିତ କଂଗ୍ରେସ ଆନ୍ଦୋଳନ ଦ୍ୱାରା ତାହା ଅଧିକ ଦୃଢ଼ ଏବଂ ବିସ୍ତୃତ ହେବ ସନ୍ଦେହ ନାହିଁ । ଆମ୍ଭେମାନେ ଆଶାକରୁ ଉତ୍କଳ ପ୍ରଦେଶର ପ୍ରାଦେଶିକ ପରିବାରରେ ଗ୍ରାମରେ ପ୍ରତି ଥାନା, ସବ୍‌ଡିଭିଜନ ଏବଂ ଜିଲାର ଓ ମଫସଲରେ ଏକୋଇଶ ବର୍ଷ ବା ତହିଁରୁ ଅଧିକ ବୟସର ପ୍ରତ୍ୟେକ ସ୍ତ୍ରୀ ପୁରୁଷ କଂଗ୍ରେସ ମେମ୍ବର ହୋଇ ଦେଶର ଗୌରବ ରକ୍ଷା କରିବେ । ଯେଉଁମାନେ ଦୁର୍ଭିକ୍ଷ ଜ୍ୱାଳାରେ ଛଟପଟ ହେଉଛନ୍ତି, ମେମ୍ବର ହେବାକୁ ଇଚ୍ଛା କଲେ ଦୁର୍ଭିକ୍ଷ ସାହାଯ୍ୟ କମିଟି ବା କୌଣସି ସଦାଶୟ ଥିବା ଲୋକ ସେମାନଙ୍କ ଲାଗି ନିର୍ଦ୍ଦିଷ୍ଟ ଫିସ୍ ଚାରିଅଣା ଦେବା ଉଚିତ । ଗ୍ରାମବାସୀମାନଙ୍କୁ କଂଗ୍ରେସ ସଭ୍ୟ ଶ୍ରେଣୀଭୁକ୍ତ କରି ଗ୍ରାମସଭା ଓ ପଞ୍ଚାୟତ ସ୍ଥାପନ କରିବା ଦ୍ୱାରା ସ୍ୱରାଜ୍ୟର ମୂଳଦୁଆ ପଡ଼ିବ । ଉତ୍କଳ ପ୍ରଦେଶରେ ଆଜି ସୁଦ୍ଧା ଅନେକ ସ୍ଥାନରେ ପୂର୍ବ ଗ୍ରାମ ସଂହତି ଏକାବେଳକେ ଲୋପ ପାଇ ନାହିଁ । ବର୍ତ୍ତମାନ ଆନ୍ଦୋଳନଦ୍ୱାରା ତାହା ପୁନରାୟ ଜାଗ୍ରତ ହେବ ଏବଂ ଆମ୍ଭମାନଙ୍କ ଗ୍ରାମ ଜୀବନ ଦୃଢ଼, ସବଳ ଓ ସତେଜ ହେବ ।

('ସମାଜ' ତା ୭ । ୫ । ୨୧)

---

# ଖୋର୍ଦ୍ଧାରେ ଆପତ୍ତି ଓ ଅଭିଯୋଗ

ମୁଁ ଏତେଦିନଯାଏ ଖୋର୍ଦ୍ଧା ସବ୍‌ଡ଼ିଭିଜନ ଭିତର ଦେଖି ନ ଥିଲି । ବାଣପୁର ଖୋର୍ଦ୍ଧା ପ୍ରଭୃତି ଧାରରେ ଥିବା ଦୁଇ ତିନୋଟି ସ୍ଥାନ ଦେଖିଥିଲି ମାତ୍ର । ବର୍ତ୍ତମାନ ଅସହଯୋଗ ପ୍ରଚାର ଲାଗି ଖୋର୍ଦ୍ଧାରେ ଏକ ସପ୍ତାହ ବୁଲିଅଛି । ଜଙ୍ଗଲ ଉତ୍ପୀଡ଼ନ ଖୋର୍ଦ୍ଧା ଲୋକଙ୍କର ପ୍ରଧାନ ଆପତ୍ତିର ବିଷୟ । ଖୋର୍ଦ୍ଧା ସବ୍‌ଡ଼ିଭିଜନରେ ସମସ୍ତଙ୍କୁ ଜଙ୍ଗଲକର ଦେବାକୁ ପଡ଼େ । ଏଥିର ପରିବର୍ତ୍ତିରେ ପ୍ରଜାମାନେ ଜଙ୍ଗଲରୁ ଜାଳିବାକୁ ଓ ଘର କରିବାକୁ କାଠ ପାଇବାର କଥା । ମାତ୍ର ଏପରି କେତେ ସ୍ଥାନ ଅଛି ଯେ ସେଠାରେ ଦାନ୍ତକାଠି କରିବାକୁ ଗୋଟାଏ ଗଛ ନାହିଁ । ବାହାର ଜଙ୍ଗଲକୁ ସରକାର ଏବେ କୁପ ବା କଆର କରିଛନ୍ତି । ଗୋଟାଏ କୁପରୁ ଏକବର୍ଷ କାଠ ନେବାକୁ ହେବ । ଆରବର୍ଷକୁ ସେ କୁପ୍ ଛାଡ଼ିଦେଇ ଅନ୍ୟ କୁପରୁ ନେବାକୁ ହେବ । ଏହିପରି ଯେ କୌଣସି ଅଞ୍ଚଳର ବାହାର ଜଙ୍ଗଲର ସବୁ କୁପ୍ ସରିଗଲେ ପୁଣି ଆଦ୍ୟ କୁପ୍‌ରେ ହାତ ଦେବାକୁ ହେବ । ଜଙ୍ଗଲ ଆଇନ ଅନୁସାରେ ଜଙ୍ଗଲ୍ କର ଦେଉଥିବା ଖୋର୍ଦ୍ଧାବାସୀ ପ୍ରଜା ଯେକୌଣସି ଜଙ୍ଗଲର ନିର୍ଦ୍ଦିଷ୍ଟ କୁପ୍‌ରୁ କାଠ ନେଇ ପାରିବେ । ମାତ୍ର ଜଙ୍ଗଲ ସାହେବ ଓ ସବ୍‌ଡ଼ିଭିଜନ ଅଫିସରଙ୍କ ପରାମର୍ଶରେ ଗୋଟିଏ କୁପ୍‌ରୁ ତହିଁର ନିକଟବର୍ତ୍ତୀ କେତେକ ମୌଜାର ଲୋକେ କେବଳ ନେଇ ପାରିବେ । ପର ହିସାବରେ ଦେଖାଯାଉଛି ଯେ ଘରକେ ଅଧଗାଡ଼ିଏ ଲେଖାଏଁ ଜାଳେଣି କାଠ ବର୍ଷକୁ ପଡ଼ିବା କଷ୍ଟ । ପ୍ରଜାମାନେ ଆପତ୍ତି କଲାରୁ ଶୁଣାଯାଏ ହାକିମମାନେ କହିଲେ କି କାଠର ଅଭାବ ହେଲେ ପଥର ଜାଳ । ସ୍ଥାନୀୟ ହାକିମମାନେ ପୁଣି ସରବରାକାର ପଞ୍ଚାୟତ ନିଯୁକ୍ତ କରିଛନ୍ତି । ପ୍ରଜାର କାଠ ଦରକାର ହେଲେ ସରବରାକାର ପାଖେ ଦରଖାସ୍ତ କରିବେ । ସରବରାକାର ସାର୍ଟିଫିକେଟ ଦେବେ । ତାକୁ ନେଇ ଜଙ୍ଗଲ ଗାର୍ଡ଼କୁ ଦେଖାଇବାକୁ ହେବ । ଏତେ ଜଞ୍ଜାଳ ଉତ୍ପାତକୁ ଡରି ଅନେକ ପ୍ରଜା କାଠ ଆଣିବାକୁ ସାହସୀ ହେଉନାହାନ୍ତି । ଜଙ୍ଗଲର ସୀମା ପ୍ରଜାମାନଙ୍କ ବାରିଆଡ଼ୁ ଆରମ୍ଭ ହୋଇଛି । ଘରୁ ବାହାରିବାକୁ ପ୍ରଜାମାନଙ୍କର ଉପାୟ ନାହିଁ । ଗୋରୁଗାଈ ଗୋଟିଏ ବାହାରିଲାତ ଜଙ୍ଗଲରେ ପଶିଲା । ସେଥିରେ ପ୍ରଜାମାନଙ୍କୁ ନାନାଦହସତ ସହିବାକୁ ହେଉଛି । କେତେ ଲୋକଙ୍କୁ ବାଘ ଭାଲୁ ଖାଉଛନ୍ତି । କେହି ସେକଥା ବୁଝିବାକୁ ନାହିଁ । ଗୋରୁଗାଈ, ମେଣ୍ଢା, ଛେଳିତ ଦିନେଛାଡ଼ା ଦିନେ

ବାଘ, ଗଧିଆ ମୁହଁରେ ପଡ଼ୁଛନ୍ତି । ଖୋର୍ଦ୍ଧା ପ୍ରଜାମାନଙ୍କର ଧନ ଜୀବନର କି କିଛି ମୂଲ୍ୟ ନାହିଁ ?

ସରବରାକାରଙ୍କ ଅବସ୍ଥା ଖୋର୍ଦ୍ଧାରେ ଅତ୍ୟନ୍ତ ଶୋଚନୀୟ । ଇଂରେଜ ରାଜତ୍ୱ ପୂର୍ବେ ଏମାନଙ୍କର ବେଶ ପଦମର୍ଯ୍ୟାଦା ଥିଲା । କ୍ରମେ ଏମାନଙ୍କ ପଦର ଗୌରବ ଲୋପ ପାଇଲାଣି । ଆଜିକାଲି ଏମାନେ ସରକାରଙ୍କର ଗୁମାସ୍ତା । ସରକାର ଇଚ୍ଛାକଲେ ମୁହୂର୍ତ୍ତିକେ ଏମାନଙ୍କୁ ବରଖାସ୍ତ କରି ଦେଉଛନ୍ତି । ସରବରାକାରୀ ରଖିବାଲାଗି ଖୋର୍ଦ୍ଧା ସରବରାକାରଙ୍କୁ ସାମାନ୍ୟ ଚପରାଶି ଓ ଅର୍ଦ୍ଧଲିଠାରୁ ସବ୍‌ଡିଭିଜନ ସାହେବ ଓ ଜିଲ୍ଲା ସାହେବ ପର୍ଯ୍ୟନ୍ତ ସମସ୍ତଙ୍କୁ ସବୁମତେ ସନ୍ତୁଷ୍ଟ ରଖିବା ଦରକାର । ଏଥିମଧ୍ୟରେ ଖୋର୍ଦ୍ଧାର ଜଣେ ମୁଖ୍ୟ ସରବରାକାର ବାବୁ ଶ୍ରୀ ଚୈତନ୍ୟ ପଟ୍ଟନାୟକଙ୍କୁ ସରକାରୀ ଚାକିରୀରୁ ବରଖାସ୍ତ କରାଯାଇଅଛି । ଦୋଷ ତାଙ୍କର ଯେ ସେ ଅସହଯୋଗ ଆନ୍ଦୋଳନକୁ ପ୍ରଶ୍ରୟ ଦେଉଛନ୍ତି । ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାକୁ ମେମ୍ବର ବଛା ହେଲାବେଳେ ସେ କାହାରି ଲାଗି ଭୋଟ ଦେଇ ନ ଥିଲେ ଏବଂ ଗାଁରେ ପଞ୍ଚାୟତ କରି ତହିଁର କାର୍ଯ୍ୟ ତତ୍ତ୍ୱାବଧାନ କରୁଛନ୍ତି । ଏହାହିଁ ଯଦି ବରଖାସ୍ତ ହେବାର କାରଣ ହୁଏ ତେବେ କିଏ ବା କେଉଁଦିନ ବରଖାସ୍ତ ହେବ ତହିଁର କି ପରିଷ୍କାର ଅଛି । ବାସ୍ତବିକ୍ ସରବରାକାରମାନଙ୍କୁ ଯେପରି ବ୍ୟବହାର କରାଯାଏ ଏବଂ ସେମାନଙ୍କ ପଦ ଯେପରି ଅନିଶ୍ଚିତ ସେଥିରେ କୌଣସି ମର୍ଯ୍ୟାଦାବନ୍ତ ଲୋକ ସରବରାକାର ହେବାକୁ ମନ ବଳାଇବା ଉଚିତ ନୁହେଁ । ଏଥିମଧ୍ୟରେ ଅନ୍ୟ ଏକ ପ୍ରଧାନ ସରବରାକାର ବାବୁ ଦାଶରଥି ପଟ୍ଟନାୟକଙ୍କ ଉପରେ ନୋଟିସ ହୋଇ ଅଛି ଯେ ଗଲା ଅପ୍ରେଲମାସ ୬ ତାରିଖ ହରତାଲ କରିବାଲାଗି ଖୋର୍ଦ୍ଧା ଦୋକାନଦାର-ମାନଙ୍କୁ ପ୍ରବର୍ତ୍ତାଇଥିବାର ପ୍ରମାଣ ମିଳିଥିବା ସ୍ଥଳେ କାହିଁକି ସରକାରୀ ଚାକିରୀରୁ ବରଖାସ୍ତ ନ ହେବେ କାରଣ ଦେଖାଇବେ । ସ୍ଥାନୀୟ ଅନୁସନ୍ଧାନରୁ ଯେତେଦୂର ଦେଖାଯାଏ ଏସବୁ ଅମୂଳକ । ତଥାପି ହାକିମମାନଙ୍କ ଶୁଣ୍ଢରେ ସବୁକଥା ସାଜେ । ଆମ୍ଭେମାନେ ଆଶାକରୁଁ ଦାଶରଥି ବାବୁ ଏଥିର ଉଚିତ ଉତ୍ତର ଦେବେ ।

('ସମାଜ', ତା ୮ । ୫ । ୨୧)

# ବାଙ୍କିରେ ଅସହଯୋଗ ଦମନର ବୃଥା ଉଦ୍ୟମ

ଖୋର୍ଦ୍ଧା ସବ୍‌ଡିଭିଜନ ସୀମାକୁ ବାଙ୍କି ଲଗିଛି । ବାଙ୍କି କଟକ ଜିଲାର ଅନ୍ତର୍ଭୁକ୍ତ ଥିଲେ ସୁଦ୍ଧା ପ୍ରାକୃତିକ ଅବସ୍ଥାରେ ଏହା ଖୋର୍ଦ୍ଧାର ଅଂଶ ବିଶେଷ ପରି ବୋଧହୁଏ । ଖୋର୍ଦ୍ଧା ଗସ୍ତପରେ ମୁଁ ବାଙ୍କିରେ ପଶିଲି । କଳାପଥର ଖୋର୍ଦ୍ଧା ସୀମାକୁ ଲଗି ବାଙ୍କି ଭିତରେ । ୪ ତାରିଖରେ ସେଠାରେ ପହଞ୍ଚି ମୁଁ ଶୁଣିଲି ଯେ ସେଠାରେ ଆମ୍ଭମାନଙ୍କୁ ଯେପରି ବସା ବା କିଛି ଖାଦ୍ୟସାମଗ୍ରୀ ନ ମିଳିବ ଏବଂ କେହି ଯେପରି ଲୋକ ସଭାରେ ଉପସ୍ଥିତ ନ ହେବେ ସେହିପରି ବ୍ୟବସ୍ଥା ହୋଇଛି । ସ୍ଥାନୀୟ ଲୋକଗୁଡ଼ିକ ଭିତରେ ଫୁସ୍ ଫାସ ହେଉଛନ୍ତି । ବାଙ୍କି ସଦର ମହକୁମାରୁ ପୋଲିସ ଏବଂ ଆଉ କେତେଜଣ ସରକାର ତରଫ ଲୋକ ଆସି ଆଗରୁ ଏଠାରେ ଜଗି ବସିଛନ୍ତି । ଦୁଇମାଇଲ ଦୂରରେ ବାଙ୍କିର ହାକିମ ମଧ୍ୟ ଜଗି ବସିଥିବାର ଖବର ମିଳିଲା । ବାଙ୍କି ବହୁବର୍ଷ ହେଲା ଖାସ୍ ହେଲଣି ସତ, ମାତ୍ର ଏ ପର୍ଯ୍ୟନ୍ତ ଏହାର ଗଡ଼ଜାତ ପ୍ରକୃତି ବଦଳି ନାହିଁ । ଢେଙ୍କାନାଳ, ବଡ଼ମ୍ବା ପ୍ରଭୃତି ଗଡ଼ଜାତ ମାହାଲକୁ ଏହା ଲଗିଛି; ତେଣୁ ଲୋକଙ୍କ ଢଙ୍ଗ ରଙ୍ଗ ପ୍ରଭୃତି ମଧ୍ୟ ବହୁ-ପରିମାଣରେ ଗଡ଼ଜାତିଆ । ବାଙ୍କିକି ଯେ ତହସିଲଦାର ଯାଆନ୍ତି ସେ ସେଠାର ହର୍ତ୍ତା କର୍ତ୍ତା; ଅପଣାକୁ ବାଙ୍କିର ରାଜା ବୋଲି ଜ୍ଞାନ କରନ୍ତି । ଫଳରେ ପ୍ରଜାମାନେ ବରାବର ଚପିକରି ଅଛନ୍ତି । ମାତ୍ର ମହାତ୍ମାଗାନ୍ଧିଙ୍କ ପ୍ରତି ଲୋକମାନଙ୍କର ସବୁଠି ଯେପରି ଭକ୍ତି ବାଙ୍କି ଲୋକଙ୍କର ମଧ୍ୟ ସେହିପରି ଭକ୍ତି । କଳାପଥର ଲୋକଙ୍କ ମନର ଭାବ ଚପି ରହି ପାରିଲା-ନାହିଁ । ମୁଁ ଓ ମୋର ସହଯୋଗୀମାନେ କେତେଘଣ୍ଟା ଲଗି ସେଠାରେ ଡେରା ପକାଇଲୁ । ଉପରବେଳା ୫ଟା ବେଳେ ସଭା ହେଲା । ଗୃହୁଁ ଗୃହୁଁ ଲୋକ ତିନି ହଜାର ଉପରେ ଜମା ହୋଇଗଲେ । ବକ୍ତୃତାରେ ସମସ୍ତେ ବିଶେଷ ଆଗ୍ରହ ଓ ଉତ୍ସାହ ଦେଖା-ଇଲେ । ବାଙ୍କିର କୋର୍ଟ ଇନ୍‌ସପେକ୍‌ଟର ଜଣେ ବଙ୍ଗଦେଶୀ ମୁସଲମାନ୍ । ମୋ ବକ୍ତୃତାପରେ ସେ ଏବଂ ଆଉ ଦୁଇଜଣ ସରକାର ତରଫ ଲୋକ ଅସହଯୋଗ ବିରୁଦ୍ଧରେ କେତେକଥା କହିଥିଲେ । ସେ କଥାଶୁଣି ଲୋକେ ଉଠିବାକୁ ବସିଲେ । ଆମ୍ଭମାନଙ୍କ ଅନୁରୋଧରେ ରହିଲେ । ପରେ ମୁଁ ପ୍ରତିବାଦର ଜବାବ ଦେଲାରୁ ଲୋକେ "ମହାତ୍ମା-ଗାନ୍ଧୀଙ୍କି ଜୟ" ଜୟକାର କରି ସଭାସ୍ଥାନ ଛାଡ଼ିଲେ ।

## ଚର୍ଚ୍ଚିକା

ଚର୍ଚ୍ଚିକା ବାଙ୍କିର ସଦର ମହକୁମା । ଜଳାପଥର ଠାରୁ ସେଠାକୁ ଯିବା ବାଟରେ ଭିନ୍ନ ଭିନ୍ନ ଗ୍ରାମର ଲୋକେ ମତେ କହିଲେ କି ଆମ୍ଭମାନଙ୍କୁ ସଭାରେ ଯୋଗ ନ ଦେବା କାରଣ ସରବରାକାରମାନଙ୍କ ଜରିଆରେ ପ୍ରଜାଙ୍କ ଉପରେ ପରବାନା ହୋଇଅଛି, ଲୋକଙ୍କର ଏ କଥା ଅବିଶ୍ୱାସ କରିବାର ମୋର କୌଣସି କାରଣ ନାହିଁ । ଚର୍ଚ୍ଚିକାରେ ମଧ୍ୟ ଅନେକ ଲୋକଙ୍କଠାରୁ ଏହିପରି କେତେକଥା ଶୁଣାଗଲା । ଇଂରେଜ ସରକାରଙ୍କ ନୀତି ଯାହା ହେଉ ସ୍ଥାନୀୟ କର୍ମଚାରୀମାନଙ୍କ କାର୍ଯ୍ୟ ଦୋଷରେ ଶାସନର ଅନେକ ସମୟରେ ନିନ୍ଦା ଏବଂ ଅନିଷ୍ଟ ହୁଏ; ଏଥିରେ ସନ୍ଦେହ ନାହିଁ । ଶାନ୍ତିଭଙ୍ଗର ଆଶଙ୍କା ନ ଥିଲେ ଅସହଯୋଗ ବା ସଭାସମିତି ବା ଆନ୍ଦୋଳନରେ ବାଧା ଦେବା ବା କୌଣସି ପ୍ରକାର ହସ୍ତକ୍ଷେପ କରିବା ଅଦ୍ୟାପି ସରକାରଙ୍କର ନୀତି ନୁହେଁ ବୋଲି ପ୍ରକାଶ । ମାତ୍ର ସ୍ଥାନୀୟ କର୍ମଚାରୀମାନେ ଅତ୍ୟଧିକ ଉତ୍କଟ ପ୍ରଭୁଭକ୍ତି ଦେଖାଇ ଏ ନୀତି ଲଙ୍ଘନ କରୁଛନ୍ତି । ଆଗନ୍ତୁକ କାହାରିକୁ ବସା ବା ଖାଦ୍ୟ ବା ଅନ୍ୟ ପ୍ରକାର ଅସୁବିଧା ଓ କଷ୍ଟରେ ପକାଇବାର ବ୍ୟବସ୍ଥା କରିବା ଅମାନୁଷିକ ବ୍ୟବହାର । ଯାହାହେଉ ଚର୍ଚ୍ଚିକାରେ ୫ ତାରିଖ ସନ୍ଧ୍ୟା ସାଢ଼େ ୫ଟାରେ ପହଞ୍ଚିବା ସଙ୍ଗେ ସଙ୍ଗେ ମୁଁ ସଭା ଆରମ୍ଭ କଲି । ସଙ୍ଗେ ସଙ୍ଗେ ସାଢ଼େ ୩ ହଜାର ଉପରେ ଲୋକ ଜମା ହୋଇଗଲେ । ବକ୍ତୃତା ଶୀଘ୍ର ଶେଷ କରିବାକୁ ହେଲା । ମେଘ ଓ ଝଡ଼ ନ ଆସିଥିଲେ ଆଉ ଅଧିକ ସମୟ ବସିବାକୁ ଲୋକଙ୍କର ଆଗ୍ରହ ଥିଲା, ପୁଣି ନୂତନ ଅନେକ ଅନେକ ଲୋକ ଆସି ଯୋଗ ଦେଇଥିଲେ । ଝଡ଼ ପବନ ଛାଡ଼ିଗଲାରୁ ସନ୍ଧ୍ୟାପରେ ବହୁସଂଖ୍ୟକ ସଂକୀର୍ତ୍ତନ ଦଳ ଆସି ସ୍ୱରାଜ୍ୟରେ ଜୟ ଜୟକାର କରିଥିଲେ ।

## ବାଙ୍କିରେ ଇଉନିଅନ ଉତ୍ପାତ

ଚୌକିଦାରୀ ଟିକସରେ ସବୁଠାଲୋକେ ଯେପରି ପ୍ରପୀଡ଼ିତ ବାଙ୍କି ଲୋକ ମଧ୍ୟ ସେହିପରି । ବାଙ୍କି ଚର୍ଚ୍ଚିକାର ଲୋକଙ୍କର ବିଶେଷ ଆପତ୍ତିର ବିଷୟ ଇଉନିଅନ ଟିକସ । ଏବେ ବର୍ଷେ ଦୁଇବର୍ଷ ହେଲା, ଏଠାରେ ଗୋଟାଏ ଇଉନିଅନ କମିଟି ବସିଛି । ଖାଜ ଚର୍ଚ୍ଚିକା ବାହାରେ ଏକ ମାଇଲ ଦୁଇମାଇଲ ଅନ୍ତରରେ ଥିବା ପାଟପୁର ପ୍ରଭୃତି ଗାଁମାନ ଏହି ଇଉନିଅନର ଅନ୍ତର୍ଭୁକ୍ତ ହୋଇଥିବାରୁ ପଲ୍ଲୀବାସୀମାନଙ୍କର ଅକାରଣ କରପୀଡ଼ା ହେଉଛି । ଇଉନିଅନର ପରିଚୟ ସ୍ୱରୂପ ଏହିସବୁ ଗ୍ରାମ ମୁଣ୍ଡରେ ଗୋଟାଏ

ଗୋଟାଏ ଚକ ଚକଆ କଲି ଚୂନ ଲିପା ପାଇଖାନା ଛିଡ଼ା କରି ଦିଆଯାଇଛି । ପାଇଖାନା ତୁଳନାରେ ଲୋକଙ୍କ ବାସଗୃହ କି ସାମାନ୍ୟ ? ଗୃହଆଡେ ବଳି ପଡ଼ିଆ ପଡ଼ିଛି । ଲୋକେ ପାଇଖାନାକୁ ଯିବେ ବା କାହିଁକି ? କିନ୍ତୁ ଗ୍ରାମ ମୁଣ୍ଡରେ ଗୋଟାଏ ବଡ଼ ବିଭବ ପାଇଛନ୍ତି ଯେତେବେଳେ ଇଉନିଅନ ଟିକସ ଦେବାକୁ ବାଧ୍ୟ । ଲୋକାଲସେଲ୍ଫ ଗଭର୍ଣ୍ଣମେଣ୍ଟ ନିୟମ ଅନୁସାରେ ଏ ଗ୍ରାମଗୁଡ଼ିକ ଇଉନିଅନର ଅନ୍ତର୍ଭୁକ୍ତ ହେବା ଉଚିତ ନ ଥିଲି । ଲୋକଙ୍କ ଘରେ ମେହେନ୍ତର ପଶି ଟିକସଲାଗି କଂସା ଛାଟିଆ ଯେନି ଆସୁଛି; ଅଥଚ ଲୋକେ ଏ ଟିକସ ପରିବର୍ତ୍ତେ କିଛି ଉପକାର ପାଉ ନାହାନ୍ତି ଏବଂ ଇଉନିଅନ ହେବା ସେମାନଙ୍କର ଇଚ୍ଛା ନୁହେଁ । ସ୍ୱରାଜ୍ୟ ନ ହେବାଯାଏ ଲୋକଙ୍କ ଇଚ୍ଛା ବୁଝୁଛି କିଏ ନା ଆପତ୍ତି ଶୁଣୁଛି କିଏ ?

('ସମାଜ', ତା '୪ । ୫ । ୨୧)

---

# ଓକିଲ ଓକିଲାତି ଛାଡ଼

ଅସହଯୋଗ ଆନ୍ଦୋଳନ ମୂଳରୁ ଓକିଲମାନଙ୍କୁ ଡ଼ାକରାପଡ଼ିଛି । ଗଲା ସେପ୍ଟେମ୍ବର ମାସରେ କଲିକତାରେ କଂଗ୍ରେସ ବିଶେଷ ଅଧିବେଶନରେ ଅସହଯୋଗ ପ୍ରସ୍ତାବ ଅଧିକାଂଶଙ୍କ ମତରେ ଧାର୍ଯ୍ୟ ହୋଇଥିଲେ ସୁଦ୍ଧା ମୁଖିଆ ମୁଖିଆ କେତେକ ନେତାଙ୍କର ସେଥିରେ ମତ ନ ଥିଲା । ଅନେକେ ମନେ କରିଥିଲେ ଯେ ଆଗାମୀ ନାଗପୁର ଅଧିବେଶନରେ ଡ଼ିସେମ୍ବର୍ ମାସରେ ଅସହଯୋଗ ପ୍ରସ୍ତାବର କେତେକ ଅଂଶ ବଦଳିଯିବ । ଅବଶ୍ୟ କଲିକତା ନିର୍ଦ୍ଧାରଣକୁ ମାନି କେତେ ଜଣ ଓକିଲ ଓକିଲାତି ଛାଡ଼ିଥିଲେ । ମାତ୍ର ନାଗପୁର କଂଗ୍ରେସରେ ବାରିଷ୍ଟର ଚିତ୍ତରଞ୍ଜନ ଦାସ ଅସହଯୋଗ ନିର୍ଦ୍ଧାରଣ ପ୍ରସ୍ତାବ ନ କରିବାଯାଏ ଓକିଲ ବାରିଷ୍ଟର ମହଲରେ ସେତେ ଚହଲ ପଡ଼ି ନ ଥିଲା । ଦେଶବନ୍ଧୁ ଚିତ୍ତରଞ୍ଜନ ଆପଣା ପ୍ରସ୍ତାବ ଅନୁସାରେ ଯେତେବେଳେ ଜାନୁୟାରୀ ମାସରେ ବାରିଷ୍ଟରୀ ଛାଡ଼ିଦେଲେ ସମସ୍ତେ ତାଙ୍କ ତ୍ୟାଗ ଦେଖି ଚକିତ ହୋଇଗଲେ । ସେହିଦିନୁ କ୍ରମେ କ୍ରମେ ପ୍ରତ୍ୟେକ ପ୍ରଦେଶରୁ ନାମବଡ଼ କେତେଜଣ ଓକିଲ ବାରିଷ୍ଟର ନିଜର ବ୍ୟବସାୟ ଛାଡ଼ିଛନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଛନ୍ତି । ଯେତେ ସଂଖ୍ୟାରେ ଓକିଲ ବ୍ୟବସାୟ ଛାଡ଼ିବା ଦରକାର, ସେତେ ସଂଖ୍ୟାରେ ଛାଡ଼ି ନାହାନ୍ତି ସତ, ମାତ୍ର ଛାଡ଼ିବା ଯେ ଉଚିତ ଏବଂ କର୍ତ୍ତବ୍ୟ ଅନେକେ ଏହା ବେଶ୍ ବୁଝିପାରିଛନ୍ତି ଏବଂ ନିଜ ମୁହଁରେ ମଧ୍ୟ ସ୍ୱୀକାର କରୁଛନ୍ତି । ତେବେ ସ୍ୱାର୍ଥହାନି ଭୟରେ କିମ୍ବା ଚଳିବାର ଅନ୍ୟ କୌଣସି ରାସ୍ତା ନ ଦେଖି ଛାଡ଼ିପାରୁ ନାହାନ୍ତି । ଏହି କେତେଦିନ ମଧ୍ୟରେ ଭାରତବର୍ଷର ଅଧିକାଂଶ ଜିଲାରେ ପଞ୍ଚାଏତ ଅଦାଲତ ସ୍ଥାପନ ହେବା ଫଳରେ ମାମଲା ମୋକଦ୍ଦମା ଯେପରି କମି ଆସିଛି, ଅନେକ ଆଇନ ବ୍ୟବସାୟୀଙ୍କର ଚିନ୍ତା ପଡ଼ିଗଲାଣି । ଓକିଲମାନେ ମୂଳରୁ ଏ ଆନ୍ଦୋଳନରେ ଯୋଗ ଦେଇଥିଲେ ଜନ ସାଧାରଣଙ୍କର ପଞ୍ଚାଏତ ଅଦାଲତରେ ବିଶେଷ ଆସ୍ଥା ଓ ବିଶ୍ୱାସ ଜନ୍ମିଥାନ୍ତା ଏବଂ ଏଥି ମଧ୍ୟରେ ଆହୁରି ଅଧିକ କାର୍ଯ୍ୟ ହୋଇଥାନ୍ତା । ଓକିଲମାନେ ଏ ପର୍ଯ୍ୟନ୍ତ ରାଜନୈତିକ କ୍ଷେତ୍ରରେ ଦେଶର ନେତା ବୋଲାଇ ଆସିଥିଲେ । ଆଜିଯାଏ ରାଜନୈତିକ କ୍ଷେତ୍ରରେ କେବଳ ଫାଙ୍କା ଆବାଜ ହେଉଥିଲା । ବର୍ତ୍ତମାନ ଅଗ୍ନି ପରୀକ୍ଷାରେ ସେମାନଙ୍କ ମଧ୍ୟରୁ ଅନେକେ ଧରା ପଡ଼ିଗଲେ । ଏଥିଲାଗି ସେମାନଙ୍କୁ କେହି ଦୋଷ ଦେଉନାହିଁ । ଇଂରେଜୀ ଶିକ୍ଷା ଆମଦେଶରେ

ପୁରୁଷପଣିଆ ଲୋପକରି ଦେଇଅଛୁ ଏବଂ ଆମ ନିଜଠାରେ ଆମ ନିଜର ବିଶ୍ୱାସ ନାହିଁ । ସେ ଯାହାହେଉ ଏବେ ମଇ ଜୁନ୍ ଏହି ଦୁଇମାସ ମଧ୍ୟରେ କଂଗ୍ରେସ ଆଦେଶ ଅନୁସାରେ ଯେ କାର୍ଯ୍ୟ କରିବାର ସ୍ଥିର ହୋଇଅଛି ସେଥିରେ ଓକିଲମାନଙ୍କର ପ୍ରତ୍ୟକ୍ଷ ଭାବରେ କୌଣସି ପ୍ରକାର ସ୍ୱାର୍ଥହାନି ନାହିଁ । କଂଗ୍ରେସ ମେମ୍ବର କରିବା, ସ୍ୱରାଜ୍ୟ ଫଣ୍ଡ ନିମନ୍ତେ ଅର୍ଥସଂଗ୍ରହ ଏବଂ ଅରଟ ପ୍ରସ୍ତୁତ କରିବାରେ ଓକିଲମାନଙ୍କର ଅମତ ହେବାର କୌଣସି କାରଣ ନାହିଁ । ଏହାଦ୍ୱାରା ଆମ୍ଭମାନଙ୍କର ସ୍ୱରାଜ୍ୟର ମୂଳଦୁଆ ପଡ଼ିବ ଏବଂ ଗ୍ରାମ୍ୟଜୀବନ ଦୃଢ଼ଭାବେ ସଙ୍ଗଠିତ ହେବ, ସନ୍ଦେହ ନାହିଁ । ଏଥିଲାଗି ବହୁସଂଖ୍ୟକ ଲୋକ କାର୍ଯ୍ୟ କରିବା ଦରକାର । ସ୍କୁଲ କଲେଜ ପିଲାମାନେ ସ୍ୱେଚ୍ଛାସେବକରୂପେ ନାନାସ୍ଥାନରେ କାର୍ଯ୍ୟ କରୁଛନ୍ତି ସତ, କିନ୍ତୁ ଓକିଲମାନେ ସେମାନଙ୍କର ନାୟକ ରୂପେ ଭିନ୍ନ ଭିନ୍ନ କେନ୍ଦ୍ରରେ ଯୋଗଦେଲେ କାର୍ଯ୍ୟ ଶୀଘ୍ର ଅଗ୍ରସର ହେବ । ଦେଶର ଗୁରୁତର ସନ୍ଧିସମୟରେ ଅନ୍ତତଃ ଦୁଇମାସ ଲାଗି ଉତ୍ସାହୀ ଶକ୍ତିଶାଳୀ ଓକିଲମାନେ ନିଜ ନିଜ କାମ ବନ୍ଦକରି କଂଗ୍ରେସ କାର୍ଯ୍ୟରେ ଯୋଗଦେବା ଉଚିତ । ବଙ୍ଗଳାର କେତେ ଜିଲ୍ଲାରେ ଅନେକ ଓକିଲ ଏହିପରି କରିଛନ୍ତି । ଓଡ଼ିଶାର ସମ୍ବଲପୁରର ସୁପରିଚିତ ପ୍ରବୀଣ ଓକିଲ ବାବୁ ରାମନାରାୟଣ ମିଶ୍ର, ବାବୁ ଚନ୍ଦ୍ରଶେଖର ବେହେରା ଓ ଉତ୍ସାହୀ ନଟବର ଗଡ଼ତିଆ ଏହିପରି କରିବା ସୁଖର ବିଷୟ । ପୁରୁଲିଆର କେତେଜଣ ପ୍ରସିଦ୍ଧ ଓକିଲ ଏହି ଦୁଇମାସ ଲାଗି କାର୍ଯ୍ୟରେ ଲାଗି ଯାଇଛନ୍ତି । ଆମ୍ଭେମାନେ ଆଶାକରୁ ଉତ୍କଳ ପ୍ରଦେଶର ଭିନ୍ନ ଭିନ୍ନ ଜିଲ୍ଲାରେ ଉତ୍ସାହୀ ଓକିଲମାନେ ଏହି ପନ୍ଥା ଅନୁସରଣ କରିବେ ।

"ସର୍ବନାଶେ ସମୁତ୍ପନ୍ନେ
ଅର୍ଦ୍ଧଂ ତ୍ୟଜତି ପଣ୍ଡିତଃ"

('ସମାଜ' ତା ୧୪ । ୫ । ୨୧)

---

# ଗାନ୍ଧୀ ବଡ଼ଲାଟ ଭେଟ

ପଣ୍ଡିତ ମଦନମୋହନ ମାଳବ୍ୟଙ୍କ ଅନୁରୋଧକ୍ରମେ ମହାତ୍ମାଗାନ୍ଧି ବଡ଼ଲାଟ ଲର୍ଡ଼ ରିଡ଼ିଂଙ୍କ ସଙ୍ଗେ ଦେଖା କରିବାକୁ ସିମଳା ଯାଇଥିଲେ । ଏ ମାସ ୧୩ ତାରିଖ ଉପରବେଳା ଏବଂ ୧୪ ତାରିଖ ସକାଳେ ମହାତ୍ମାଙ୍କର ଲାଟଙ୍କ ସଙ୍ଗେ ମୁଲାକାତ ହୋଇ ଥିଲା । ସ୍ୱରାଜ ଏବଂ ଅସହଯୋଗ ଦଳର ଉଦ୍ଦେଶ୍ୟ ଓ ଆକାଂକ୍ଷା ମହାତ୍ମାଗାନ୍ଧି ଲାଟଙ୍କ ନିକଟରେ ବ୍ୟକ୍ତ କରିଅଛନ୍ତି । ଲାଟ ମହୋଦୟ ଶାସନ ସମ୍ପର୍କୀୟ କେତେକ ଅସୁବିଧାର କଥା କହିଥିବାର ମହାତ୍ମାଗାନ୍ଧିଙ୍କ କଥାରୁ ପ୍ରକାଶ । ଲାଟଙ୍କ ମୁଲାକାତ ପରେ ସିମଳାଠାରେ ସାଧାରଣ ସଭାରେ ଗାନ୍ଧି କହିଛନ୍ତି କି ଶାନ୍ତି ଏବଂ ସ୍ୱାର୍ଥତ୍ୟାଗ ସହକାରେ ଅସହଯୋଗ ଆନ୍ଦୋଳନ ଚଳାଇଲେ ଭାରତବାସୀଙ୍କି ସ୍ୱରାଜ୍ୟ ମିଳିବ ହିଁ ମିଳିବ । ପୃଥିବୀର କୌଣସି ଶକ୍ତି ଭାରତବାସୀଙ୍କି ଏଥିରୁ ବଞ୍ଚିତ କରିପାରିବ ନାହିଁ । ମହାତ୍ମାଗାନ୍ଧି କାହାରିକୁ ଡରିବାର ଲୋକ ନୁହନ୍ତି କିମ୍ବା ମନ ନ ମାନିଲେ ସହଜରେ ନଇଁଯିବା ତାଙ୍କ ପ୍ରକୃତି ନୁହେଁ । ଭାରତ ଜାତୀୟ ମହାସଭା ଯେ ଲକ୍ଷ୍ୟ ନିରୂପଣ କରିଛନ୍ତି ଲର୍ଡ ରିଡ଼ିଂ ତାହା ସ୍ୱୀକାର ନ କଲେ ମହାତ୍ମାଗାନ୍ଧି ଏବଂ ତାଙ୍କ ମତାବଲମ୍ବୀମାନେ ଅନ୍ୟକୌଣସି ପ୍ରସ୍ତାବରେ ରାଜି ହେବେ ନାହିଁ । ଲାଲ ଲଜପତ୍ ରାୟ ସଫା ଏହା ପ୍ରକାଶ କରି ସାରିଲେଣି । ଏଥିପୂର୍ବେ ମହାତ୍ମାଗାନ୍ଧି ଥରେ କହିଥିଲେ ନୂଆ ବଡ଼ଲାଟ ଭାରତବାସୀଙ୍କର ଦାବୀ ଉଚିତ ଏବଂ ନ୍ୟାୟ ସଙ୍ଗତ ବୋଲି ଯଦି ମନେ କରନ୍ତି ତାହାହେଲେ ଉକ୍ତ ଦାବୀ ପୂରଣ କରିବାଲାଗି ଯତ୍ନ କରନ୍ତୁ ଏବଂ ଯତ୍ନରେ କୃତକାର୍ଯ୍ୟ ନ ହେଲେ ନିଜେ ସରକାରଙ୍କ ସଙ୍ଗେ ଅସହଯୋଗ ଦୀକ୍ଷା ଗ୍ରହଣ କରନ୍ତୁ । ଏହା ଅବଶ୍ୟ ଉନ୍ନତ ରାଜନୀତି ଏବଂ ଉଦାର ଚରିତ୍ରର ଉପଯୋଗୀ ହେବ । ମାତ୍ର ହେବା ସମ୍ଭବ କି ?

× × ×

ଭାରତବର୍ଷର ଭିନ୍ନ ଭିନ୍ନ ପ୍ରଦେଶରେ ଅସହଯୋଗ ଦଳର କେତେକ ଲୋକଙ୍କୁ ସରକାର ଟର୍ପେଡୋ କରୁଛନ୍ତି । '୪୪ ଧାରାରେ କେତେ ଲୋକଙ୍କର ବକ୍ତୃତା ଦେବା ଏବଂ କେତେକ ସ୍ଥାନକୁ ଯିବା ବନ୍ଦ କରୁଛନ୍ତି । ପୁଣି କାହାରି କାହାରି ଉପରେ ରାଜଦ୍ରୋହ ମକଦ୍ଦମା ଚଳାଇ ସେମାନଙ୍କୁ ଜେଲ ଦେଉଛନ୍ତି । ସ୍ୱାମୀ ଗୋବିନ୍ଦାନନ୍ଦଙ୍କୁ ପାଞ୍ଚବର୍ଷ ଲାଗି ଦ୍ୱୀପାନ୍ତର କରାଯାଇଛି । ଆଉ କେତେଜଣ ଜେଲରେ ପ୍ରବେଶ କଲେଣି । ଗଲା

ସପ୍ତାହରେ ନାଗପୁରର ଜଣେ ନେତା ସୁନ୍ଦରଲାଲ ରାଜବିଦ୍ରୋହ ଅପରାଧରେ ଧରା ହୋଇଛନ୍ତି । କେହି କୌଣସିଠାରେ ମକଦ୍ଦମା ଲଢ଼ୁ ନାହାନ୍ତି । ଦଣ୍ଡ ପାଇବାରେ କାହାର ଲେଶ ଭୟ ନାହିଁ କି ଚିନ୍ତା ନାହିଁ । ସୁଖର କଥା ଏପରି ଦଣ୍ଡ ଦେଖି ଅନ୍ୟ ଲୋକେ ଦବିଯିବା ଦୂରେ ଥାଉ, ଅଧିକ ଉତ୍ସାହିତ ହୋଇ କାର୍ଯ୍ୟରେ ମାତୁଛନ୍ତି । ଉତ୍ତ୍ୟକ୍ତ ନହେବା ଏବଂ ଗୋଳମାଳ ନ କରିବା ଲାଗି ମହାତ୍ମାଗାନ୍ଧି ଏବଂ ଅନ୍ୟାନ୍ୟ ନେତାମାନେ ଲୋକ-ସାଧାରଣଙ୍କୁ ସର୍ବଦା ପରାମର୍ଶ ଦେଉଅଛନ୍ତି ।

× × ×

ଏହି ପରାମର୍ଶ ମାନି କୌଣସିପ୍ରକାର ଶାନ୍ତିଭଙ୍ଗ ନ କରି ଲୋକେ ଯେବେ ବରାବର ଅସହଯୋଗ କାର୍ଯ୍ୟ କରିବେ ଏବଂ ଅକାତରେ ଜେଲ ଯିବେ ବା ଅନ୍ୟ ଯେକୌଣସି ପ୍ରକାର ଦଣ୍ଡ ଭୋଗିବାକୁ ପ୍ରସ୍ତୁତ ହେଲେ ସ୍ୱରାଜ୍ୟ ଯେ ଏହିବର୍ଷ ମଧ୍ୟରେ ମିଳିବ ଏଥିରେ ଲେଶ ସନ୍ଦେହ ନାହିଁ ।

× × ×

ବିହାର ଓଡ଼ିଶା ସରକାର ଏକ ନୂତନ ଗ୍ରାମପଞ୍ଚାୟତ ଆଇନ ପ୍ରସ୍ତାବ କରିଛନ୍ତି । ମଫସଲ ଲୋକଙ୍କୁ ଏଥିରେ କେତେକ ଛୋଟ ଛୋଟ ଫୌଜଦାରୀ ଦେବାନୀ ମକଦ୍ଦମାର ଭାର ଦିଆଯିବ ବୋଲି କଥା ହେଉଅଛି । ଅସହଯୋଗ ନୀତି ଫଳରେ ଆଜିକାଲି ପ୍ରତି ଗାଁରେ ଯେସବୁ ସ୍ୱରାଜ୍ୟ ପଞ୍ଚାୟତ ବସିଛି ଏ ପଞ୍ଚାୟତ ସେପରି ନୁହେଁ । ଏପର୍ଯ୍ୟନ୍ତ ସହରମାନଙ୍କରେ ଯେସବୁ ଆଇନ ଜାଲ ବିସ୍ତାରିତ ହୋଇଥିଲା ସରକାରଙ୍କ ଗ୍ରାମପଞ୍ଚାୟତ ହେଲେ କ୍ରମେ ସେ ଜାଲ ପ୍ରତି ଗାଁରେ ବିଛା ହେବ । ଲୋକେ ଅଧିକ ଖର୍ଚ୍ଚାନ୍ତ ହେବେ । ଚୌକିଦାରୀ ପଞ୍ଚାୟତ ଦ୍ୱାରା ଗ୍ରାମବାସୀ ଯେ ଦାରୁଣ ଦୁଃଖ ଭୋଗୁଛନ୍ତି ତାହା କିଏ ନ ଜାଣେ ? ସରକାରଙ୍କ ଏ ନୂଆ ଆଇନଦ୍ୱାରା ସେହି ଦୁଃଖ ବଢ଼ିବ । ଗାଁର ମାମଲତକାର ଧୋବଧାଉଳିଆ କେତେଜଣଙ୍କର କ୍ଷମତା ବଢ଼ିପାରେ; ମାତ୍ର ଜନସାଧାରଣଙ୍କର ସର୍ବନାଶ ହେବ । ମଫସଲର ଗୋଟାଏ ଗୋଟାଏ ଯାଗାରେ ଇଉନିଅନ ବସି ଲୋକଙ୍କର ଯେ କଷ୍ଟ ଅସୁବିଧା ହେଉଅଛି ତାହାତ ଅନେକେ ଅଙ୍ଗେ ଭୋଗୁଛନ୍ତି । ଆଉ ଅଧିକ ଭାଗ୍ୟ ଲୋଡ଼ା ନାହିଁ ।

('ସମାଜ', ତା ୨୧ । ୫ । ୨୧)

---

# ଅସହଯୋଗ ମୁଣ୍ଡରେ ଅଠା

ଏବେ ସରକାର ତରଫ ଲୋକେ ଅସହଯୋଗ ବିରୁଦ୍ଧରେ ଗୋଟାଏ ବୋଲି ଧରିଛନ୍ତି । ଯାହା ଯେଉଁଠାରେ ଘଟୁଛି ଅନ୍ୟାୟ ବା ଉତ୍ପାତ ହେଉଛି ଅସହଯୋଗୀ ଦଳଙ୍କ ଦ୍ୱାରା ତାହାସବୁ ହେଉଛି ବୋଲି ସରକାର ତରଫରୁ ସ୍ୱର ଉଠୁଛି । ପୋଲିସଙ୍କର ପ୍ରଥମେ ଅସହଯୋଗୀଙ୍କଠାରେ ସନ୍ଦେହ, ସ୍ଥାନୀୟ ହାକିମମାନଙ୍କର ଅସହଯୋଗୀଙ୍କ ଉପରେ ନଜର । ଅସହଯୋଗ ବିରୋଧୀ କୌଣସି କୌଣସି ବେସରକାରୀ ଲୋକଙ୍କର ମଧ୍ଯ ସେହି ଆଶଙ୍କା । ଡନବୁଣ୍ଡରେ ଛେଳି କୁକୁର । ଏହିପରି ଜଣକୁ ପାଞ୍ଚଜଣ କହିଲେ ଲୋକଙ୍କର ବିଶ୍ୱାସ ହେବା ଆଶ୍ଚର୍ଯ୍ୟ ନୁହେ । ଏଣେ ପୁଣି ଅସହଯୋଗୀ ଦଳ ପାଟି ଫିଟାଉ ନାହାନ୍ତି । ମିଛରେ ଟଣାଓଟରା ହୋଇ ମକଦ୍ଦମାରେ ପଡ଼ିଲେ ସୁଦ୍ଧା କିଛି ଆପତ୍ତି କରୁ ନାହାନ୍ତି । ଫଳରେ ସେମାନଙ୍କ ବିରୁଦ୍ଧରେ ଯେ ଯାହା କହୁଛନ୍ତି ବା କରୁଛନ୍ତି ତାହା ଏକତରଫା ହେଉଅଛି । ପୋଲିସ ବା ସ୍ଥାନୀୟ ହାକିମମାନେ ସରକାରଙ୍କର ନିଜ ଲୋକ । ପାଖରେ ଶୁଏ କାନରେ କହେ, ତା' କଥା କି ଅନ୍ୟଥା ହୁଏ ? ସୁତରାଂ ଅସହଯୋଗୀଙ୍କ ବିଷୟରେ ତାଳୁଠାରୁ ତଳପା ପର୍ଯ୍ୟନ୍ତ ସରକାରୀ ଲୋକ ସମସ୍ତଙ୍କର ଗୋଟାଏ ମତ । ନିଜେ ବଡ଼ଲାଟ ମଧ୍ଯ ଏହି ସ୍ୱର ଧରିଥିବାର ଦେଖାଯାଉଛି । ଅବଶ୍ୟ ନାସିକର ମାଲିଗାଁ-ଠାରେ ଯେ ଘଟଣା ହୋଇଛି ତାହା ଅତ୍ୟନ୍ତ ଦୋଷାବହ ଏବଂ ଅସହଯୋଗର ସମ୍ପୂର୍ଣ୍ଣ ପ୍ରତିକୂଳ । ସେଥିଲାଗି ଅସହଯୋଗୀ ଦଳ ସମସ୍ତେ ଲଜ୍ଜିତ ଏବଂ ଦୁଃଖିତ । ମାତ୍ର ମୋଟରେ ଅସହଯୋଗ ଆନ୍ଦୋଳନ ଏପର୍ଯ୍ୟନ୍ତ ଯେ ଧୀରସ୍ଥିର ଏବଂ ଶାନ୍ତ ଭାବରେ ଚାଲି ଆସିଛି ଏହା ଅସ୍ୱୀକାର କରାଯାଇ ନପାରେ । ଲାଲା ଲଜପତ ରାୟ କହନ୍ତି ପୃଥିବୀର ଅନ୍ୟାନ୍ୟ ଦେଶର ଲୋକଙ୍କ ଭାବଗତି ତୁଳନାରେ ଦେଖିଲେ ଭାରତବାସୀ ଖୁବ୍ ଶାନ୍ତ ଏବଂ ସୁଧୀର । ଯେଉଁ ଦେଶରେ ଖାଇବା ବିନା ଲୋକେ ମଲେ ସୁଦ୍ଧା ପାଟି ଫିଟାନ୍ତି ନାହିଁ, ସେ ଦେଶ ଲୋକଙ୍କଠାରେ ଏଥା କଥାକେ ଶାନ୍ତିଭଙ୍ଗ ବା ଅନ୍ୟ କୌଣସି ଅପରାଧ ଆରୋପ କରିବା ଗୁରୁତର ପ୍ରମାଦ । ଗିରିଡ଼ିହରେ ଅସହଯୋଗ ହେତୁ ଶାନ୍ତିଭଙ୍ଗ ଘଟିଲା ବୋଲି ଗୁଣ୍ଡଆଡ଼େ ରାଷ୍ଟ୍ରହେଲା । କଥା କଅଣ ନା ପଞ୍ଚାୟତ ହୁକୁମ ନ ମାନିବାରୁ ଜଣକୁ ନିଆଁ ପାଣି ବାସନ୍ଦ ହୋଇଥିଲା । ତାଙ୍କ ଝିଅ କୂଅରୁ ପାଣି ନେଲାବେଳକୁ ଅନ୍ୟ ଲୋକ ବାରଣ କଲେ । ସେଥିକୁ କଥା ବାହାରିଲା ଯେ ସେ ଝିଅର ପାଣି ମାଠିଆ ଭାଙ୍ଗି ତାର ଇଜ୍ଜତ ନେଇଛି ।

ଝିମିଟି ଖେଳରୁ ମହାଭାରତ ପର୍ଯ୍ୟନ୍ତ ଗଲା । ଶେଷକୁ ଏବେ ମେଜେଷ୍ଟରଙ୍କ ଅଦାଲତରେ ପ୍ରକାଶ ଯେ ସେ ଝିଅର ମାଠିଆ କେହି ଭାଙ୍ଗି ନାହିଁ । ପାଣି ବାସନ୍ଦ କରାଯାଇଥିବାରୁ ତାହାର ନିଜ ଦେଢ଼ୁତା ପୁଅ ଭାଇ ଦୂରରେ ରହି ପାଣି ନେବାକୁ ମନା କରୁଥିଲା ମାତ୍ର । ରାୟବରେଲିରେ କୃଷକମାନେ ବହୁକାଳରୁ ସରଦାରମାନଙ୍କ ଅତ୍ୟାଚାର ସହି ସହି ଶେଷକୁ ମେଲବାନ୍ଧି ଉଠିଲେ । ସରକାରୀ ଏବଂ ବେସରକାରୀ ତଦନ୍ତରେ ଏକଥା ଜଣାପଡ଼ିଲା । ତଥାପି ଅସହଯୋଗ ମୁଣ୍ଡରେ ସେ ବିଷୟରେ ଅଠା ଲଗିଲା । ଏସବୁତ ଦୂର ପ୍ରଦେଶର କଥା । ଆମ୍ଭମାନଙ୍କର ଏହି ଓଡ଼ିଶାରେ ସରକାରୀ କର୍ମଚାରୀମାନେ କେତେକ ଘଟନାରେ ଏପରି କରିବାକୁ ଉଦ୍ୟତ ହୋଇଛନ୍ତି ।

କଟକ ଡେପୁଟୀ ଇନ୍‌ସପେକ୍‌ଟରଙ୍କ ଅଫିସ ପୋଡ଼ିଗଲା, ଖୋର୍ଦ୍ଧା ସ୍କୁଲ୍ ପୋଡ଼ିଗଲା ଏହାସବୁ ଅସହଯୋଗୀ ଦଳ କାମ ବୋଲି ସରକାର ତରଫ ଲୋକେ କହିଲେ । ଏହା ଶୁଣି ଚୁପ୍ ରହିବା ଛଡ଼ା ଅସହଯୋଗୀମାନଙ୍କର ଉପାୟ କଅଣ ? କୌଣସିଠାରେ କେହି ଦୁଷ୍ଟଲୋକ ଅସହଯୋଗ ନାମରେ କିଛି ଅନିଷ୍ଟ ବା ଉତ୍ପାତ ଘଟାଇପାରେ । ଅସହଯୋଗ ସୁବିଧାରେ କୌଣସି ଦୁଷ୍ଟ ଲୋକ ସ୍କୁଲ କଲେଜ ଭାଙ୍ଗି କିଛି ବଦ୍‌କାର୍ଯ୍ୟ କରି ପାରେ । ମାତ୍ର ସେସବୁ ଦୋଷ ଅସହଯୋଗ ମୁଣ୍ଡରେ ଲଦିବା ତ କଦାପି ଉଚିତ ନୁହେଁ । ସରକାରୀ ଲୋକଙ୍କ ମନର ଏହିଭଳି ଭାବଗତି ଦେଖି ଯେ କେହି ଦୁଷ୍ଟ ଲୋକ ଆପଣାର କୌଣସି ବିବାଦୀ ଲୋକ ଉପରେ ଶତ୍ରୁତା ସାଧିବାଲାଗି ମିଥ୍ୟା ନାଲିସ କରି ସେଥିରେ ଟିକିଏ ଅସହଯୋଗ ଅଧା ଲଗାଇ ଦେଇପାରେ । ସରକାରୀ କର୍ମଚାରୀମାନେ କୌଣସି ଘଟନାର ସତ୍ୟାସତ୍ୟ ନ ବୁଝି ଏଭଳି "ଅଳେଇ ବଳେଇ ବାନରକା ଶିର" ଧାଖା ଧରିବାଦ୍ୱାରା ଅସହଯୋଗର ଯେତେ ଅନିଷ୍ଟ କରୁନାହାନ୍ତି ସରକାର ଶାସନର ତଦପେକ୍ଷା ଅଧିକ ଅନିଷ୍ଟ କରୁଛନ୍ତି । ଅସହଯୋଗ ଦଳର କେହି କୌଣସିଠାରେ ଶାନ୍ତିଭଙ୍ଗ ଘଟିବା ଭଳି କଥା କହୁଥିଲେ ବା କାର୍ଯ୍ୟ କରୁଥିଲେ ଆମ୍ଭେମାନେ ତାହା କଦାପି ସମର୍ଥନ କରୁନାହୁଁ । ଅସହଯୋଗ ଏକ ସାଧନା, କଠିନ ତପସ୍ୟା । ଶାନ୍ତି, ସଂଯମ ଓ ସ୍ୱାର୍ଥତ୍ୟାଗ ସହକାରେ ଏହାକୁ ପାଳନ କରିବାକୁ ହେବ । ଏପର୍ଯ୍ୟନ୍ତ ଯାହା ଦେଖାଯାଇଅଛି ଯେଉଁଠାରେ ଶାନ୍ତ ଓ ସଂଯତ ଭାବରେ କାର୍ଯ୍ୟ ହୋଇଛି , ସେଠାରେ ଅସହଯୋଗର ଜୟ ହୋଇଛି । ଚିତ୍ତରଞ୍ଜନ ଦାସଙ୍କ ଉପରେ ୧୪୪ ଧାରା ଜାରି ହେଲାବେଳେ ଏହା ଦେଖାଯାଇଛି । ଏବେ ପୁଣି ବଙ୍ଗଳାର ଚାଟଗାଁ କଂଗ୍ରେସ କମିଟି ମେମ୍ବରମାନଙ୍କ ଉପରେ ସେହିପରି ହୁକୁମ ହେଲାବେଳେ ସେହିପ୍ରକାର ଫଳ ଫଳିଅଛି । ଧୀର ପାଣି ପଥର କାଟେ ।

ଅସହଯୋଗୀ ଦଳର ସବୁବେଳେ ଏହା ମନେ ରଖିବା ଉଚିତ୍। ବିଶେଷତଃ ଅସହଯୋଗକୁ ବ୍ୟର୍ଥ କରିବାଲାଗି ଯେତେବେଳେ ଗୃରଆଡ଼େ ଶତ୍ରୁ ଗୃହୁଁ ବସିଛନ୍ତି ଅସହଯୋଗ ଦଳର ପ୍ରଚାରକ ଏବଂ ଅନ୍ୟାନ୍ୟ କର୍ମୀମାନେ ଅତ୍ୟନ୍ତ ସାବଧାନ ହୋଇ ଶାନ୍ତ ସଂଯମ ଧୈର୍ଯ୍ୟସହ କାର୍ଯ୍ୟ କରିବା ଉଚିତ।

('ସମାଜ' ତା ୨୧।୫।୨୧)

———

# ଶିଖଙ୍କ ଅସହଯୋଗ

ପଞ୍ଜାବରେ ଶିଖ୍‌ମାନଙ୍କର ହିନ୍ଦୁ ମନ୍ଦିରପରି ଅନେକ ଗୁରୁଦ୍ୱାର ରହିଛି । ଏହିସବୁ ଗୁରୁଦ୍ୱାର କେତେକ ଶିଖ ବାବାଜୀଙ୍କ ଦ୍ୱାରା ପରିଚାଳିତ ହୁଏ । ଓଡ଼ିଶାରେ ମଠ ମହନ୍ତମାନଙ୍କର ମଠ ସମ୍ପତ୍ତି ଯେପରି ଅଳଙ୍କାର ହୋଇଅଛି, ଶିଖ ବାବାଜୀମାନେ ସେହିପରି ଗୁରୁଦ୍ୱାରକୁ ନିଜ ନିଜ ସମ୍ପତ୍ତି କରି ସାରିଲେଣି । ମଠବାଡ଼ି ବା ଗୁରୁଦ୍ୱାର ସବୁ ସାଧାରଣ ଲୋକଙ୍କର ସମ୍ପତ୍ତି । ଏଥିରେ ତ୍ୟାଗୀ, ପଣ୍ଡିତ ଓ ସାଧୁ ସନ୍ନ୍ୟାସୀମାନେ ନିଯୁକ୍ତାରୂପେ ରଖାଯାଇ ସମ୍ପତ୍ତିର ଆୟ ସାଧାରଣ ହିତ କାର୍ଯ୍ୟରେ ଲାଗିବାର କଥା । ମାତ୍ର ବର୍ତ୍ତମାନ ମଠ ବା ଗୁରୁଦ୍ୱାରର ଯେଉଁମାନେ କର୍ତ୍ତା ହୋଇ ବସିଛନ୍ତି ସେମାନଙ୍କ ମଧ୍ୟରୁ କେତେକ ଏସବୁକୁ ନିଜର ପିତୃ ଅର୍ଜିତ ସମ୍ପତ୍ତିପରି ଦାସ ଦାସୀ, ସାଜ ସଜ୍ଜା, ସରକାରୀ କର୍ମଚାରୀଙ୍କ ସକାଶେ ଗାର୍ଡ଼ନ ପାର୍ଟିରେ ଖର୍ଚ୍ଚ କରୁଛନ୍ତି । ଏତିକି ନୁହେଁ, ସେମାନଙ୍କ ଅଧୀନ ସାଧାରଣ ପ୍ରଜାମାନଙ୍କ ଉପରେ ଯେ ଅନ୍ୟାୟ ଅତ୍ୟାଚାର ଏମାନେ କରନ୍ତି ତାହା ସମସ୍ତଙ୍କୁ ଜଣା । ଧନବଳରେ ଅତ୍ୟାଚାରୀ ସରକାରୀ କର୍ମଚାରୀମାନଙ୍କ ସହିତ ମିଳିମିଶି ଏମାନେ ଲୋକଙ୍କ ପ୍ରତି ଯେ ନିଷ୍ଠୁର ବ୍ୟବହାର କରନ୍ତି ତାହାର କୌଣସି ପ୍ରତିକାର କରି ହେଉନାହିଁ । ପଞ୍ଜାବ ଗୁରୁଦ୍ୱାର ବାବାଜୀମାନଙ୍କ ମଧ୍ୟରୁ କେତେକ ଏହିପରି କ୍ରୂର ଓ ନିଷ୍ଠୁର କାର୍ଯ୍ୟରେ ଲିପ୍ତଥାଇ ଶିଖ୍ ଜାତିର ବଡ଼ ଅପ୍ରୀତିଭାଜନ ହୋଇଛନ୍ତି । ଏଥି ସକାଶେ ଶିଖ୍‌ମାନେ ଗୋଟିଏ ସାଧାରଣ ସଭାକରି ଏହିସବୁ ଗୁରୁଦ୍ୱାରର ପରିଚାଳନା କରିବାକୁ ସ୍ଥିର କରିଛନ୍ତି । ମାତ୍ର ପଞ୍ଜାବ ସରକାର ସେମାନଙ୍କର ଏ ଚେଷ୍ଟାରେ ବାଧା ଦେଇ କେତେକ ମଠବାଡ଼ି ସମ୍ପତ୍ତି ବାଜ୍ୟାପ୍ତି କରି ନେଇଛନ୍ତି । ଏହାର ବନ୍ଦୋବସ୍ତ ସରକାରଙ୍କ ଅଧୀନରେ ରହିବ ବୋଲି ଏକ ଆଇନ ପ୍ରଚଳନ କରିବେ । ଲୋକସାଧାରଣ ଏହାର ଘୋର ପ୍ରତିବାଦ କଲେସୁଦ୍ଧା କିଛି ଫଳ ହେଲା ନାହିଁ । ୫୦୦ ଶିଖ ବାବାଜୀମାନଙ୍କ ମଧ୍ୟରୁ ପ୍ରାୟ ୫୦ ଜଣଙ୍କୁ ଛାଡ଼ିଦେଲେ ଅନ୍ୟାନ୍ୟମାନେ ଲୋକମାନଙ୍କ ପକ୍ଷ ଧରିଲେଣି । ନାନକାନାଠାରେ ମହନ୍ତ ନାରଣ ଦାସ ୧୫୦ ଜଣ ଶିଖ୍‌ଙ୍କୁ ପୋଡ଼ି ମାରି ପକାଇଥିବା ଅଭିଯୋଗରେ ବର୍ତ୍ତମାନ ଅଭିଯୁକ୍ତ । ସେ ଏବଂ ଆଉ କେତେକ ବାବାଜି ସାଧାରଣସଭା ବିରୁଦ୍ଧରେ ଅଛନ୍ତି । ସରକାର ଏମାନଙ୍କୁ ଭିତରେ ଭିତରେ

ସାହାଯ୍ୟ ଦେଉଥିବାର ଅନୁମାନ କରାଯାଏ । ସରକାରଙ୍କ ଏ ବ୍ୟବହାରରେ ଶିଖ୍‌ମାନେ ଉତ୍ତ୍ୟକ୍ତ ହୋଇ ଅସହଯୋଗ ପାଳନ କରିଛନ୍ତି । କର୍ ନ ଦେବା ଓ ସରକାରଙ୍କ କୋର୍ଟକୁ ନ ଯିବା ଏମାନେ ସ୍ଥିର କଲେଣି । ଦୁର୍ବଳ ଓ ସାଧୁଲୋକଙ୍କର ଅସହଯୋଗ ଆତ୍ମରକ୍ଷାର ଏକମାତ୍ର ଉପାୟ ।

('ସମାଜ', ତା ୨୮ । ୪ । ୨୧)

---

# ଛାପାଖାନା ଆଇନ ପରିବର୍ତ୍ତନ

ଭାରତ ସରକାର ବର୍ତ୍ତମାନ ଛାପାଖାନା ଆଇନର ପରିବର୍ତ୍ତନ ବା ଏକାବେଳକେ ଏହା ଉଠାଇଦେବା ସକାଶେ ଅନୁସନ୍ଧାନ କରିବା କାରଣ ଏକ କମିଟି ବସାଇଛନ୍ତି । ଏଥିରେ ଭାରତ କାର୍ଯ୍ୟକାରୀ ସଭାର ସଭ୍ୟ ଡାକ୍ତର ତେଜ ବାହାଦୁର ସାପ୍ରୁ ସଭାପତି ଓ ୫ ଜଣ ସରକାରୀ ବେସରକାରୀ ସଭ୍ୟ ଅଛନ୍ତି । ଏମାନେ ବର୍ତ୍ତମାନ ସିମଲା ପାହାଡ଼ ଉପରେ ଭାରତର ବଡ ବଡ଼ ଖବର କାଗଜର ସମ୍ପାଦିକ ଓ ନରମ ଗରମ ଦଳର ମୁଖ୍ୟ ଲୋକମାନଙ୍କ ମଧ୍ୟରୁ କେତେକଙ୍କଠାରୁ ସାକ୍ଷ୍ୟ ଗ୍ରହଣ କରୁଛନ୍ତି । ଏ ପର୍ଯ୍ୟନ୍ତ ଯେତେ ଖବରକାଗଜ ସମ୍ପାଦକ ସାକ୍ଷ୍ୟ ଦେଲେଣି ସେଥିମଧ୍ୟରୁ ପ୍ରାୟ ସମସ୍ତେ ନରମ ଦଳର ଲୋକ; ଅମୃତ ବଜାର, ବମ୍ବେ କ୍ରନିକଲ, ୟଙ୍ଗ ଇଣ୍ଡିଆ ପ୍ରଭୃତି ବଡ ବଡ଼ ଖବର କାଗଜର ସମ୍ପାଦକମାନଙ୍କୁ ବା ଅସହଯୋଗ ଦଳର ନେତାମାନଙ୍କ ମଧ୍ୟରୁ କାହାକୁ ମଧ୍ୟ ଏ କମିଟି ଡାକି ନାହାନ୍ତି । କେବଳ ମାନ୍ଦ୍ରାଜରେ ହିନ୍ଦୁ ଖବର କାଗଜର ସମ୍ପାଦକ ସାକ୍ଷ୍ୟ ଦେଇଛନ୍ତି । ସେ ଯାହାହେଉ ନରମଦଳ ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ଏ ଘୃଣ୍ୟ ଆଇନକୁ ଏକାବେଳକେ ଉଠାଇଦେବା ସକାଶେ ମତ ପ୍ରକାଶ କରିଥିବାର ଜଣାଯାଏ । ଆଗରୁ କେତେକ ଖବର କାଗଜରେ ପ୍ରକାଶ ପାଇଅଛି ଯେ ବିଲାତ ମନ୍ତ୍ରି ପରିଷଦ ଛାପାଖାନା ଆଇନ୍ ଓ ରାଓଲାଟ ଆଇନ ଉଠାଇ ଦେବାପାଇଁ ଭାରତ ସରକାରଙ୍କୁ ମନ୍ତ୍ରଣା ଦେଇଛନ୍ତି । ସ୍ୱରାଜ୍ୟ ଆନ୍ଦୋଳନ ଦବାଇବା ସକାଶେ ବୋଧହୁଏ ଏ ଆୟୋଜନ, କିନ୍ତୁ ଭାରତବାସୀ କଣ ଏତିକରେ ସନ୍ତୁଷ୍ଟ ରହିବେ ? କେବଳ ଆମ୍ବିଖିଆ ପୁଅକୁ ଟାକୁଆ ଦେଇ ଭୁଲାଇବା କଥା ।

('ସମାଜ', ତା ୨୮।୫।୨୧)

---

# ସ୍ୱରାଜ୍ୟ ଯୁଦ୍ଧରେ ଅରଟ ସୁଦର୍ଶନ ଚକ୍ର

ଅସହଯୋଗ ଆନ୍ଦୋଳନ ସମ୍ବନ୍ଧେ ଯାହାର ଯେ ମତ ହେଉ ପଛକେ ଅରଟରେ ସୂତାକଟା ଓ ସ୍ୱଦେଶୀ ପ୍ରଚାର ବିଷୟରେ କାହାର ଆପତ୍ତି ନାହିଁ । ସ୍କୁଲମାନଙ୍କରେ ସରକାର ଅରଟ ଦେବାର ପ୍ରସ୍ତାବ କରୁଛନ୍ତି ବୋଲି ଶୁଣାଯାଏ । ସରକାରୀ କର୍ମଚାରୀ ଅନେକେ ଆପଣାଘରେ ଅରଟ ଚଲାଇଲେଣି, ଓକିଲମାନେ ଓକାଲତି ନ ଛାଡ଼ିଲେ ମଧ୍ୟ ଅରଟ ପ୍ରଚାରରେ ସହାୟତା କରିବାକୁ ପ୍ରସ୍ତୁତ ଅଛନ୍ତି । କେତେକଙ୍କ ଘରେ ଅରଟ ଚାଲିଲଣି । ତଥାପି ଅସହଯୋଗ ବିରୁଦ୍ଧରେ ପ୍ରଚାର କଲାବେଳେ କେହି କେହି ଦେଶୀଲାଟ ସଭାର ମେମ୍ବର ମଧ୍ୟ ଅରଟ ପ୍ରଚାର ବିଷୟରେ ଲୋକଙ୍କୁ ଭାଙ୍ଗୁଣିଆ କଥା କହିବାର ଶୁଣାଯାଏ । ଅରଟ ସୂତାରେ ଏ ଦେଶକୁ ଲୁଗା ଯୋଗାଇ ହେବ ନାହିଁ; ଲୁଗା ସେତେ ସରୁ ହେବ ନାହିଁ ଏବଂ ଦାମ ବହୁତ ପଡ଼ିବ; ଏହିପରି ଲୋକଙ୍କୁ ବୁଝାଉଛନ୍ତି । ଏଭଳି କଥାର ଜବାବ ଲୋକେ ସଙ୍ଗେ ସଙ୍ଗେ ଦେଉଛନ୍ତି । ଆମ୍ଭମାନଙ୍କର ବିଶେଷ କହିବା ଆବଶ୍ୟକ ନାହିଁ । ପରିବାରରେ ଅରଟ ପ୍ରତି ଲୋକଙ୍କର ଯେପରି ଆଗ୍ରହ ଦେଖାଯାଉଛି ଜୁନ୍ ମାସ ମଧ୍ୟରେ ସମଗ୍ର ଭାରତବର୍ଷରେ କୋଡ଼ିଏ ଲକ୍ଷ ଅରଟ ପ୍ରସ୍ତୁତ ହେବାରେ ତେତେ କଷ୍ଟ ହେବ ନାହିଁ । ଓଡ଼ିଶା ଲୋକଙ୍କର ଆଗ୍ରହ ଉତ୍ସାହ କମ୍ ନୁହେଁ । ତଥାପି ଉତ୍କଳର ହିସା ଏକଲକ୍ଷ ପୂରଣ ହେବା ସହଜ ବୋଧ ହେଉନାହିଁ । ସହରରେ ଅରଟ ତିଆରି କରି ମଫସଲ ଲୋକଙ୍କୁ ଯୋଗାଇବା ସୁବିଧାଜନକ ନୁହେଁ । ଗୋଟାଏ ଗୋଟାଏ ଅରଟର ଦାମ ଚାରି ପାଞ୍ଚଟଙ୍କା ଦେଇ ଗାଁର ସାଧାରଣ ଲୋକେ ଖରିଦ କରିବା ସହଜ ନୁହେଁ । ସମସ୍ତେ ଶସ୍ତା ଦରରେ ଚାହାନ୍ତି । ଗାଁରେ ଅରଟ ତିଆରି ନ କଲେ ଶସ୍ତା ଦରରେ ମିଳିବା ଅସମ୍ଭବ । ମାତ୍ର ଗାଁମାନଙ୍କରେ ବଢ଼ାଇ ସଂଖ୍ୟା ଅତି କମ୍ । କୌଣସି ଗାଁରେ ଘରେ ଦୁଇଘର, କୌଣସିଠାରେ ଦୁଇ ଚାରି ଗାଁରେ ଦୁଇ ଚାରିଘର ମାତ୍ର ଅଛନ୍ତି । ସେହି ବଢ଼େଇମାନଙ୍କ ମଧ୍ୟରୁ ଅଧିକାଂଶ ଅରଟ ଦେଖି ନାହାନ୍ତି । ନମୁନା ନ ଦେଖିଲେ ତିଆରି କରିପାରିବେ ନାହିଁ । ସୁତରାଂ ଅନ୍ତତଃ ପ୍ରତ୍ୟେକ ଗାଁକୁ ଗୋଟିଏ ଗୋଟିଏ ନମୁନା ଅରଟ ଯୋଗାଇବା ଆବଶ୍ୟକ । ସହରରେ ତିଆରି କରାଇ ଓଡ଼ିଶାର ପ୍ରତି ଗାଁକୁ ଗୋଟାଏ ଗୋଟାଏ ଅରଟ ଯୋଗାଇବା ମଧ୍ୟ ସହଜ ବ୍ୟାପାର ନୁହେଁ । ଆଜିକାଲି ପୁଣି ଗାଁ ବଢ଼େଇଙ୍କି ବିଶ୍ରାମ ନାହିଁ । ଚାଷଲାଗି ଲଙ୍ଗଳ ତିଆରି କରିବାରେ

ସେମାନେ ସମସ୍ତେ ବ୍ୟସ୍ତ । ଗ୍ରାମବାସୀମାନେ ଲଙ୍ଗଳ ଗଢ଼ାଇବା ଲାଗି ବଢ଼ାଇ ଦୁଆରେ ଗାଡଦାନ ଧାରଣା ଦେଇ ବସିଛନ୍ତି । ଅନେକ ଗାଁରେ ପୁଣି ଆଜିକାଲି ଘର ତିଆରି ଲାଗିଛି । ବର୍ଷା ପୂର୍ବରୁ ସେ କାମ ସରିବା ଦରକାର । ଏହାବାଦ ପୁରୀ ଜିଲାରେ ଅନ୍ୟ ଏକ ବାଧା । ଜଗନ୍ନାଥଙ୍କ ରଥ ତିଆରିରେ ମଫସଲ ବଢ଼ାଇ ଅଧିକାଂଶ ପୁରୀ ସହରରେ ଯାଇ କାମ କରୁଛନ୍ତି । ମୋଟ କଥା ବଢ଼ାଇ ଅଭାବରେ ଅରଟ ତିଆରି ହୋଇପାରୁନାହିଁ । ପୁଣି ମୋଗଲବନ୍ଦୀ ଜିଲାର ମଫସଲ ଗାଁମାନଙ୍କରେ କାଠର ଅଭାବ । ସୂତା କାଟିବାକୁ ତୂଳା ମିଳୁ ନ ଥିବା ଆଉ ଏକ ବାଧା । ଏ ଅବସ୍ଥାରେ ଉତ୍କଳ ପ୍ରଦେଶ ହିସାବରେ ଯେ ପରିମାଣର ଅରଟ ପଡ଼ିଛି ତାହା ପୂରଣ ହେବା ସନ୍ଦେହ ଲାଗୁଛି । ତଥାପି ଯେପରି ଲୋକେ ଲଙ୍ଗଳ ତିଆରି କରାଉଛନ୍ତି ଅରଟ ତିଆରିରେ ସେହିପରି ଆଗ୍ରହ ଦେଖାଇଲେ ଅଭାବ ରହନ୍ତା ନାହିଁ । ଅନ୍ନବସ୍ତ୍ର ଦୁଇଟାଯାକ ନିତାନ୍ତ ଆବଶ୍ୟକ । ଘରେ ଯେପରି ଢିଙ୍କିଟାଏ ରହିବା ଦରକାର ସେହିପରି ନିତାନ୍ତ ପକ୍ଷରେ ଖଣ୍ଡେହେଲେ ଅରଟ ରହିବା ଆବଶ୍ୟକ, ଏହା ସମସ୍ତଙ୍କର ବୁଝିବା ଉଚିତ । କେତେକ ଗାଁରେ ପୁରୁଣା ଅରଟ ଅଛି । କେତେ ଯାଗାରେ ଏବେ ସୁଦ୍ଧା ଲୋକେ ସେ ଅରଟ ଚଲାଇ ସୂତା କାଟୁଛନ୍ତି । ସମ୍ବଲପୁର ଓ ଗଞ୍ଜାମ ଜିଲାରେ ଏ ବିଷୟରେ କେତେକ ସୁବିଧା ଅଛି । ଗଡ଼ଜାତରେ ଅନେକ ଲୋକ ଅରଟ ହିତା କରନ୍ତି । ସେଠାରେ ଅରଟ ତିଆରିରେ ତେତେ ଖର୍ଚ୍ଚ ଲାଗେ ନାହିଁ । ଗଡ଼ଜାତ ରାଜା ଏବଂ ସୁପରିଣ୍ଟେଣ୍ଡେଣ୍ଟମାନଙ୍କର ଆପଣା ରାଜ୍ୟରେ ବହୁ ପରିମାଣରେ ଅରଟ ଚଲାଇବା ବିଷୟରେ ଆପତ୍ତି ହୋଇ ନ ପାରେ । ବରଂ ସମସ୍ତଙ୍କୁ ଅରଟ ଚଲାଇବା ଲାଗି ସେମାନଙ୍କର ବାଧ୍ୟ କରିବା ଉଚିତ । ଏହାଦ୍ୱାରା ଲୋକମାନଙ୍କର ଆର୍ଥିକ ଅବସ୍ଥା ଭଲହେବ, ସନ୍ଦେହ ନାହିଁ । ଏଥି ମଧ୍ୟରେ କୌଣସି ଅସହଯୋଗ ପ୍ରଚାରକଙ୍କ ପ୍ରତି କୌଣସି କୌଣସି ଗଡ଼ଜାତ ଦେବାନ ଓ ସୁପରିଣ୍ଟେଣ୍ଡେଣ୍ଟଙ୍କର ଯେପରି ବ୍ୟବହାରର ଖବର ମିଳିଅଛି ତାହା ଅତ୍ୟନ୍ତ ନୃଶଂସ ଏବଂ ଶୋଚନୀୟ । ସେ ଯାହାହେଉ, ଅରଟ ଚଲାଇବା ବିଷୟରେ ପ୍ରଜାସାଧାରଣଙ୍କୁ ଉତ୍ସାହ ଓ ସାହାଯ୍ୟ ନ ଦେଲେ ସେମାନେ କ୍ଷେତ୍ରର ହାନି କରିବେ । ଆମ୍ଭେମାନେ ଆଶାକରୁ ଗଡ଼ଜାତର ଉତ୍କଳୀୟମାନେ ଆଉ କିଛି ନ କରି ପାରିଲେ ସୁଦ୍ଧା ବହୁ ପରିମାଣରେ ଅରଟ ଚଲାଇ ଓଡ଼ିଶା ସହିତ ଉପସ୍ଥିତ କାର୍ଯ୍ୟରେ ଯୋଗଦେବେ ଏବଂ ଉତ୍କଳ ଜାତିରମାନ ଭାରତ ନିକଟରେ ରକ୍ଷା କରିବେ । ଉତ୍କଳ ପ୍ରଦେଶର ସହର ମଫସଲର ସମସ୍ତ ବଢ଼ାଇ ଉପସ୍ଥିତ କ୍ଷେତ୍ରରେ ଉଦାସୀନ ହୋଇ ରହିଲେ ଚଳିବ ନାହିଁ । ୟୁରୋପରେ ଯେତେବେଳେ ଜର୍ମାନୀ ଯୁଦ୍ଧ ଲାଗିଥିଲା ସେତେବେଳେ ସବୁ କାରଖାନାରେ ଅନ୍ୟାନ୍ୟ ସକଳ ପ୍ରକାର କାମ ବନ୍ଦ

କରାଯାଇ କେବଳ ଅସ୍ତ୍ର ଶସ୍ତ୍ର ଗୁଳି ବାରୁଦ ତିଆରି ଲାଗିଥିଲା । ଆମ୍ଭମାନଙ୍କର ବର୍ତ୍ତମାନ ସ୍ୱରାଜ୍ୟ ନିମନ୍ତେ ଯେ ଧର୍ମଯୁଦ୍ଧ ଲାଗିଛି ସେଥିରେ ଅରଟ ଏକମାତ୍ର ଶସ୍ତ୍ର ସୁଦର୍ଶନ ଚକ୍ର । ଦେଶର ସମୁଦାୟ ବଢ଼େଇ ଅନ୍ୟାନ୍ୟ ସବୁକାମ ବନ୍ଦ କରି ଏହି ଅରଟ ତିଆରିରେ ଲାଗିଯିବା ଉଚିତ । ସମସ୍ତେ ଏ କାର୍ଯ୍ୟକୁ ଅତି ଜରୁରୀ ଏବଂ ଗୁରୁତର ବୋଲି ମନେ-କଲେ ଏକଲକ୍ଷ ଅରଟ ଏକମାସ ମଧ୍ୟରେ ପ୍ରସ୍ତୁତ ହେବା ଅସମ୍ଭବ ନୁହେଁ, କପାର ଅଭାବ ସେପରି ଗୁରୁତର ବାଧା ନୁହେଁ । ଅନେକ ସ୍ଥାନରେ ଆଉ ପନ୍ଦର କୋଡ଼ିଏ ଦିନ ମଧ୍ୟରେ ନୂଆ କପା ତୋଳା ହେବ । ଏଥି ମଧ୍ୟରେ କଟକରେ ଆସି କପା ବିକ୍ରି ହେଲାଣି । ଅରଟ ତିଆରି ହେଲେ କପା ମିଳିବାରେ କିଛି କଷ୍ଟ ହେବ ନାହିଁ । ପ୍ରତ୍ୟେକ ଜିଲାର କଂଗ୍ରେସ କମିଟିମାନ ଏ ବିଷୟରେ ବର୍ତ୍ତମାନ ଯତ୍ନବାନ ହେଉଅଛନ୍ତି ଏବଂ ପ୍ରାଦେଶିକ କଂଗ୍ରେସ କମିଟି ତୁଳା ଅଣାଇ ବାଣ୍ଟୀ କରୁଛନ୍ତି । ଦେଶବାସୀ କେବଳ ଲାଗିଲେ ହେଲା ।

('ସମାଜ' ତା ୨୮ । ୫ । ୨୧)

———

# ପୃଥିବୀର ନଜର ଭାରତ ଉପରେ

ମହାତ୍ମାଗାନ୍ଧୀ ବଡ଼ଲାଟ ଲର୍ଡ଼ ରିଡ଼ିଂଙ୍କ ସଙ୍ଗେ ଦେଖା କରିଥିଲେ । ଲାଗେ ଲାଗେ ଛ ଦିନ କଥାବାର୍ତ୍ତା ଚାଲିଲା । ଫଳ ଜାଣିବାକୁ ଦେଶ ଲୋକେ ବଡ ଉଦ୍‌ବିଗ୍ନ ହୋଇ ରହିଛନ୍ତି । ସମସ୍ତ କଥାବାର୍ତ୍ତାର ବିସ୍ତାରିତ ବିବରଣ ପ୍ରକାଶ ପାଇନାହିଁ; ମଧ୍ୟ ତାହା ଦରକାର ନାହିଁ । ମହାତ୍ମାଗାନ୍ଧୀ ଏ ସମ୍ବନ୍ଧରେ ଯାହା ଲେଖିଛନ୍ତି ସେଥିରୁ ଜଣାଯାଏ ଯେ ବଡ଼ଲାଟ ସାହେବଙ୍କର ସହାନୁଭୂତି ଥିଲେ ସୁଦ୍ଧା ଭାରତୀୟମାନଙ୍କୁ ସ୍ୱରାଜ୍ୟ ଦେବାର କ୍ଷମତା ନାହିଁ । ଆମ୍ଭମାନଙ୍କୁ ନିଜ ହାତରେ ସ୍ୱରାଜ୍ୟ ଗଢ଼ିବାକୁ ହେବ । ନିଜର ଧର୍ମବଳ ଏବଂ କର୍ମବଳରେ ସ୍ୱରାଜ୍ୟ ନେବାକୁ ହେବ । ତେବେ ଆମ୍ଭମାନଙ୍କର ଏ ଉଦ୍ୟମରେ ଆମ୍ଭେମାନେ ଯେତେଆଡ଼ୁ ଯେତେ ସାହାଯ୍ୟ ସହାନୁଭୂତି ପାଇବା ତେତେ ଭଲ । ସମସ୍ତ ଜଗତକୁ ଆମ୍ଭମାନଙ୍କ ପକ୍ଷରେ ନେବାକୁ ହେବ । ଆମ୍ଭେମାନେ ସରକାରଙ୍କ କାର୍ଯ୍ୟର ବହୁ ପ୍ରତିବାଦ କରି ଆସିଅଛୁଁ । ଏକମାତ୍ର ତାଙ୍କ ସଙ୍ଗେ ସହଯୋଗିତା କରୁ-ଥିବାରୁ ଜଗତର ଲୋକେ ଆମ ଅବସ୍ଥା ବୁଝୁ ନ ଥିଲେ । କିଏ କିପରି ଜାଣିବ ? ବାପ ପୁଅ ଦୁହିଁଙ୍କର ଘର ଭିତରେ ଯେତେ କଳିଗୋଳ ଲାଗୁ ଦୁହେଁ ଯେତେଦିନ ଯାଏ ଏକ ଅନ୍ନ ଏକ ବାସ୍ନରେ ରହି ଇଜ୍‌ମାଇଲ ସମ୍ପତ୍ତି ଏକହେ ବୁଝାସୁଝା କରି ଚଳାଉଛନ୍ତି ସେତେଦିନ-ଯାଏ ଭିତରର କଥା କିଏ କାହିଁକି ବୁଝିବାକୁ ଯିବ ? ମାତ୍ର ଯେଉଁଦିନ ବାପ ପୁଅ ଭିନ୍ନ ହୋଇ ଅଲଗା ଅଲଗା ହେବେ ସେଦିନ ସମସ୍ତଙ୍କର ନଜର ପଡ଼ିବ । ଆଜି ଅସହଯୋଗ ପ୍ରଭାବରେ ପୃଥିବୀର ନଜର ଭାରତବାସୀଙ୍କ ଉପରେ ପଡ଼ିଛି । ଅସହଯୋଗର ଫଳ ବର୍ତ୍ତମାନ ଷୋଳଅଣା ହେଉ ବା ନ ହେଉ ଏଥିରୁ ଭାରତବାସୀଙ୍କ ଅବସ୍ଥା ଓ ଅଭିପ୍ରାୟ ବେଶ୍ ଜଣାପଡ଼ୁଛି । ମାତ୍ର ଭାରତବାସୀଙ୍କ ନିଜ ଯତ୍ନ ଉପରେ ସବୁ ନିର୍ଭର କରେ । ତେବେ ମହାତ୍ମାଗାନ୍ଧୀ ବିଶ୍ୱାସ କରନ୍ତି ଯେ ବର୍ତ୍ତମାନ ବଡ଼ଲାଟ ଆମ୍ଭମାନଙ୍କର ଏ ଯତ୍ନରେ ସାହାଯ୍ୟ କରିବେ । କଥୋପକଥନ ଦ୍ୱାରା ବଡ଼ଲାଟ ଏବଂ ମହାତ୍ମାଗାନ୍ଧୀ ଉଭୟେ ଭଲରୂପେ ଚିହ୍ନା ଚିହ୍ନି ହୋଇ ଯାଇଛନ୍ତି ଏବଂ ଉଭୟେ ଉଭୟଙ୍କୁ ବୁଝି ପାରିଛନ୍ତି । ଏହାଛଡ଼ା ୬ ଦିନର ଦେଖାଚାହିଁରେ ଆଉ ଅଧିକ କିଛି ଲାଭ ହୋଇନାହିଁ । ପରସ୍ପରକୁ ବୁଝିବା ଏକ ସାମାନ୍ୟ ଲାଭ ନୁହେଁ ବୋଲି ମହାତ୍ମାଗାନ୍ଧୀ ବା ତାଙ୍କର ପରି କେତେଜଣ ସ୍ଥିର ଧୀର ଲୋକେ କହିପାରନ୍ତି । ମାତ୍ର ଏତିକି ଲାଭରେ ଲୋକଙ୍କ ମନ ସହଜରେ ମାନିବ ନାହିଁ ।

('ସମାଜ', ତା ୪ । ୬ । ୨୧)

# ଭାରତମାତାଙ୍କ ଜୟ

ଏଇମାସ ମଧ୍ୟରେ ଭାରତବର୍ଷର କେତେକ ପ୍ରଦେଶରେ କନଫରେନ୍‌ସ ବା ସମ୍ମିଳନୀମାନ ହୋଇ ଯାଇଅଛି । ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ମହାରାଷ୍ଟ୍ର ଏବଂ ଉତ୍ତର ପଶ୍ଚିମ ପ୍ରଦେଶର ସମ୍ମିଳନୀରେ ଅସହଯୋଗନୀତି ପୂର୍ଣ୍ଣମାତ୍ରାରେ ଗୃହୀତ ହୋଇଅଛି । ଉତ୍ତର ପଶ୍ଚିମ ପ୍ରଦେଶ ସମ୍ମିଳନୀର ବୈଠକ ଆଲ୍ଲାହାବାଦଠାରେ ହେଉଥିବାବେଳେ ଅନେକ ଆଶଙ୍କା କରିଥିଲେ ଯେ ସରକାର ସେଠାରେ ସାମରିକ ଆଇନ ଜାରିକରି ମହମ୍ମଦ ଅଲି, ମୋତିଲାଲ ନେହେରୁ ପ୍ରଭୃତି ନେତାମାନଙ୍କୁ ଧରି ନେଇଯିବେ । ମାତ୍ର ଏପରି ଅଶଙ୍କାର କିଛି କାରଣ ନ ଥିଲା । ଫଳରେ କୌଣସିଠାରେ କିଛି ଗୋଳମାଳ ହୋଇନାହିଁ । ପ୍ରାଦେଶିକ ସମ୍ମିଳନୀମାନ ଏହି ସମୟରେ କିମ୍ବା ବଡ଼ଦିନ ଛୁଟିବାଦ ବର୍ଷର ଅନ୍ୟ କୌଣସି ସୁବିଧାଜନକ ସମୟରେ ହେବା ଉଚିତ । ଉତ୍କଳ ସମ୍ମିଳନୀ ସାଧାରଣ ବଡ଼ଦିନ ଛୁଟିରେ ହେବାର ଯେ ନିୟମ ଅଛି ତାହା ବଦଳିବା ଦରକାର । ଉତ୍କଳଦେଶ କଂଗ୍ରେସରୁ ଅଲଗା ଥିଲାବେଳେ ସମ୍ମିଳନୀ ବଡ଼ଦିନ ଛୁଟିରେ ହେଉଥିଲା । ତଥାପି ସେ ସମୟ ବିଷୟରେ ଅନେକଙ୍କର ଆପତ୍ତି ଥିଲା । ସେ ଯାହାହେଉ ବର୍ତ୍ତମାନ, ଉତ୍କଳ - ଭାରତ ମହାସମିତିରେ ଯୋଗ ଦେଇଛି । ଉତ୍କଳ ଏକ ସ୍ୱତନ୍ତ୍ର କଂଗ୍ରେସ ପ୍ରଦେଶ ବୋଲି ଗଣ୍ୟ ହୋଇଛି । ଉତ୍କଳ ସମ୍ମିଳନୀ ଷୋଳ ସତରବର୍ଷ ମଧ୍ୟରେ ଏ ପ୍ରଦେଶରେ ଯେ ଭାବ ଯେ ଜୀବନ ଆଣିପାରି ନ ଥିଲା, ଆଜ ତିନ ଚାରି ମାସ ମଧ୍ୟରେ ଉତ୍କଳର ସହର ମଫସଲରେ ସେ ଭାବ ଏବଂ ସେ ଜୀବନ ପ୍ରକାଶ ପାଇଅଛି । ଗ୍ରାମସଭାମାନ ଗଠିତ ହୋଇଅଛି । ଗ୍ରାମପଞ୍ଚାୟତମାନେ ଗ୍ରାମର କଳହ ବିବାଦ ନିଷ୍ପତ୍ତି କରୁଛନ୍ତି । ଗ୍ରାମର ଇତର ସାଧାରଣ ଲୋକେ ସୁଦ୍ଧା ଆଗ୍ରହ ସହକାରେ କଂଗ୍ରେସ ମେମ୍ବର ହେଉଛନ୍ତି ଏବଂ ସାଧ୍ୟ ଅନୁସାରେ ସ୍ୱରାଜ୍ୟ ପାଣ୍ଠିକୁ ଦାନ କରୁଛନ୍ତି । ସ୍ଥାନେ ସ୍ଥାନେ ପଲ୍ଲୀର ଅତି ନିମ୍ନ ଶ୍ରେଣୀର ଲୋକେ ସୁଦ୍ଧା "ଭାରତମାତାଙ୍କୁ ଜୟ" "ହିନ୍ଦୁ ମୁସଲମାନଙ୍କୁ ଜୟ" ଧ୍ୱନି ଉଠାଉଛନ୍ତି । ଏ ସବୁ ଦେଖିଲେ ମନେହୁଏ ଉତ୍କଳରେ ଏତେବେଳଯାଏ ଭାରତଭାବ ଯେ ପ୍ରକାଶ ପାଇ ନ ଥିଲା ତାହା କେବଳ ଶିକ୍ଷିତ ନେତାମାନଙ୍କ ଦୋଷରେ । ଉତ୍କଳର ଜନସାଧାରଣଙ୍କର ଜାତୀୟ ଭାବ ଓ ଜାତୀୟ ମମତା ଅନ୍ୟାନ୍ୟ ପ୍ରଦେଶ ଲୋକଙ୍କଠାରୁ କୌଣସି ମତେ ହୀନ ନୁହେଁ । ଆଜ ଯେ ଭାବର ବିକାଶ ହୋଇଅଛି, ତାହା କ୍ରମେ ଯେପରି ବଢ଼ିବ ସେ ବିଷୟରେ ସମସ୍ତଙ୍କର ଯତ୍ନବାନ ହେବା ଉଚିତ । ଅସହଯୋଗ

ବିରୋଧୀମାନେ ଏ ଭାବ ଏବଂ ଉତ୍ସାହକୁ ନଷ୍ଟ କରିବାକୁ ଉଦ୍ୟତ ନ ହୁଅନ୍ତୁ ଏହା ଆମ୍ଭମାନଙ୍କର ବିନୀତ ଅନୁରୋଧ ।

ଆଗାମୀ ବଡ଼ଦିନ ଛୁଟିରେ ଅହମଦାବାଦ ଠାରେ ଭାରତ ମହାସମିତିର ବୈଠକ ହେବ । ସେଥିରେ ଉତ୍କଳ ପ୍ରଦେଶରୁ ଅନେକେ ଯୋଗ ଦେବାର ଆଶା କରାଯାଏ । ସେ ସମୟରେ ଉତ୍କଳ ସମ୍ମିଳନୀର ଅଧିବେଶନ ନ ହୋଇ ଆଗରୁ ହୋଇଯିବା ଭଲ । ମଧ୍ୟ-ପ୍ରଦେଶ ଅନ୍ତର୍ଗତ ଓଡ଼ିଆଭାଷୀ ଅଞ୍ଚଳରେ ଏଥର ସମ୍ମିଳନୀ ବସିବାର କଥା ହୋଇଅଛି । ମଧ୍ୟ ପ୍ରଦେଶରେ ବହୁତ ଓଡ଼ିଆ ଅଛନ୍ତି । ଅନେକ ଓଡ଼ିଆ ରାଜ୍ୟ ଅଛି, ଓଡ଼ିଶାର ଶିକ୍ଷିତ ଲୋକଙ୍କର ଏହିପରି ଗୋଟାଏ ମୋଟା ମୋଟି ଅନିର୍ଦ୍ଦିଷ୍ଟ ଧାରଣା ମାତ୍ର ଅଛି । ମାତ୍ର କେତେ ଓଡ଼ିଆ କେଉଁଠାରେ ଅଛନ୍ତି, କି ଅବସ୍ଥାରେ ଥାଆନ୍ତି ସେମାନଙ୍କର ଆଶା ଆକାଂକ୍ଷା କଣ ଏ କଥା ବୁଝିବା ଲାଗି ଓଡ଼ିଶାରେ କେହି ସେପରି ଉଦ୍ୟମ କରି ନାହାନ୍ତି । ଆମ୍ଭେମାନେ ଯେତେଦୂର ଜାଣୁ ମଧ୍ୟପ୍ରଦେଶର ଓଡ଼ିଆମାନେ ଛିନ୍ନ ଭିନ୍ନ ହୋଇ ଯେପରି ଭାବରେ ଥାଆନ୍ତି ଏବଂ ସେମାନଙ୍କ ମଧ୍ୟରେ ଶୃଙ୍ଖଳାର ଯେପରି ଅଭାବ ସେଥିରେ ଆଗାମୀ ଉତ୍କଳ ସମ୍ମିଳନୀର ଅଧିବେଶନ ସେଠାରେ ଭଲରୂପେ ହୋଇ ପାରିବ ବୋଲି କୁହାଯାଇ ପାରୁନାହିଁ । ମଧ୍ୟପ୍ରଦେଶର ଓଡ଼ିଆଭାଷୀ ଅଞ୍ଚଳର ଅଧିକ ଭାଗ ଆଗେ ସମ୍ବଲପୁର ଜିଲାର ଅନ୍ତର୍ଗତ ଥିଲା । ସମ୍ମିଳନୀର ଆଗାମୀ ଅଧିବେଶନ ଲାଗି ସମ୍ବଲପୁର ଭାଇମାନଙ୍କୁ ଏହିଦିନରୁ ଚେଷ୍ଟା କରିବାଲାଗି ଆମ୍ଭେମାନେ ଅନୁରୋଧ କରୁ । ବଡ଼ଦିନ ଛୁଟିଯାଏ ନ ରଖି ପୂଜା ବନ୍ଦ ସମୟରେ କଲେ କାହାର ଆପତ୍ତି ହେବନାହିଁ । ଅବଶ୍ୟ ସମ୍ବଲପୁର ଏବଂ ମଧ୍ୟ-ପ୍ରଦେଶର ଉତ୍କଳୀୟମାନଙ୍କ ସୁବିଧା ଉପରେ ଏ ପ୍ରସଙ୍ଗର ନିଷ୍ପତ୍ତି ନିର୍ଭର କରେ । ଗଞ୍ଜାମରେ ପୂଜାଛୁଟି ହୁଏ ନାହିଁ ବୋଲି ସେଠାର କେହି କେହି ଆପତ୍ତି ଉଠାଇ ପାରନ୍ତି । ମାତ୍ର ସମସ୍ତଙ୍କର ବୁଝିବା ଉଚିତ ଯେ ଏଣିକି ଛୁଟିଦିନଆ ରାଜନୀତି ଚର୍ଚ୍ଚା ଆଉ ହେବନାହିଁ । ଯେଉଁମାନେ ସାଧାରଣ କାର୍ଯ୍ୟ କ୍ଷେତ୍ରରେ କାର୍ଯ୍ୟ କରିବେ ସେମାନେ ସ୍ୱାର୍ଥ ତ୍ୟାଗଲାଗି ପ୍ରସ୍ତୁତ ହେବା ଉଚିତ ।

('ସମାଜ' ତା ୮ । ୬ । ୨୧)

---

# ଗାନ୍ଧୀ ଲର୍ଡ଼ ଉଇଲିଂଡନଙ୍କ ସାକ୍ଷାତ୍‌କାର ଫଳାଫଳ ପ୍ରତୀକ୍ଷା

ମହାତ୍ମାଗାନ୍ଧୀଙ୍କର ବଡ଼ଲାଟ ଲର୍ଡ଼ ଉଇଲିଂଡନଙ୍କ ସହିତ ମୁଲାକାତର କଥା ଏବେ ବିଲାତର ପାର୍ଲିଆମେଣ୍ଟରେ ଉଠିଲାଣି । ଭାରତ ସେକ୍ରେଟେରୀଙ୍କୁ ଜଣେ ସଭ୍ୟ ଏ ସମ୍ବନ୍ଧେ ପ୍ରଶ୍ନ ପଚାରିଥିଲେ କି ଗାନ୍ଧୀ ଯେ କହି ବୁଲୁଛନ୍ତି ଲର୍ଡ଼ ଉଇଲିଂଡନ ଅସହଯୋଗରେ ସହାନୁଭୂତି କରିବାର ସମ୍ଭବ ଏହା ସତ କି ? ମହାତ୍ମାଗାନ୍ଧୀ ଏପରି କୌଣସିଠାରେ କହିଥିବା ସେକ୍ରେଟେରୀ ଦେଖି ନ ଥିବାର କହିଲେ । ଗାନ୍ଧୀ ଏବଂ ଉଇଲିଂଡନଙ୍କ କଥା-ବାର୍ତ୍ତାର ସାରମର୍ମ ପାର୍ଲିଆମେଣ୍ଟରେ ପ୍ରକାଶ କରିବାକୁ ମେମ୍ବର ଚାହିଁଥିଲେ । ତାହାର ଜବାବରେ ସେକ୍ରେଟେରୀ ମଣ୍ଟେଗୁ ସାହେବ କହିଲେ କି ଲାଟ ଯେତେବେଳେ ପ୍ରକାଶ୍ୟ ଭାବରେ ବିଧି ମୁତାବକ ମୁଲାକାତ ନ ଦେଇ ଏକ ପ୍ରକାର ଘରୋଇ ଭାବରେ କଥାବାର୍ତ୍ତା କରିଥିଲେ ତାହା ଲେଖାହୋଇ ରହିନାହିଁ । ଏପରି ମୁଲାକାତର ପ୍ରସଙ୍ଗ ମଧ୍ୟ ଲେଖା ହୁଏ ନାହିଁ । ତେବେ କଥୋପକଥନର ଫଳାଫଳ ଲର୍ଡ଼ ଉଇଲିଂଡନ ଗଭର୍ଣ୍ଣମେଣ୍ଟଙ୍କର ଏକ ସ୍ୱତନ୍ତ୍ର ଲେଖାଦ୍ୱାରା ପ୍ରକାଶ କରି ପାରନ୍ତି । ମନ୍ତ୍ରୀ ମଣ୍ଟେଗୁ ସାହେବ ଆହୁରି ମଧ୍ୟ କହିଲେ କି ସେ ଯେତେଦୂର ଖବର ପାଇଛନ୍ତି, ମହାତ୍ମାଗାନ୍ଧୀ ଆପଣା ସତ୍ୟପାଳନ କରି ଏପର୍ଯ୍ୟନ୍ତ କୌଣସିଠାରେ କିଛି ପ୍ରକାଶ କରି ନାହାନ୍ତି ।

ମହାତ୍ମାଗାନ୍ଧୀ ଏବଂ ଲର୍ଡ଼ ଉଇଲିଂଡନଙ୍କ ମଧ୍ୟରେ ହୋଇଥିବା କଥାବାର୍ତ୍ତା ଜାଣିବାକୁ ଆମଦେଶ ଲୋକେ ଯେପରି ଉଦ୍‌ବିଗ୍ନ ବିଲାତ ଲୋକେ ମଧ୍ୟ ସେହିପରି । ପାର୍ଲିଆମେଣ୍ଟର ଉଲ୍ଲିଖିତ ପ୍ରଶ୍ନରୁ ଏହା ସ୍ପଷ୍ଟ ଜଣାପଡ଼ୁଛି । ସରକାର ତରଫର ପ୍ରଧାନ ପ୍ରତିନିଧିଙ୍କ ସଙ୍ଗେ ଲୋକଙ୍କର ମୁଖ୍ୟ ନେତାଙ୍କର ଯେ କଥାବାର୍ତ୍ତା ହେଲା ତାହା କି ଅବସ୍ଥାରେ କି ଭାବରେ ଏବଂ କି ଉଦ୍ଦେଶ୍ୟରେ ହୋଇଛି ସମସ୍ତଙ୍କର ଜାଣିବାକୁ ଏଡ଼େ ଅଧୀର ହେବା ଠିକ୍ ନୁହେଁ ।

('ସମାଜ', ତା ୧୮ । ୬ । ୨୧)

# ରବୀନ୍ଦ୍ରଙ୍କୁ ଗାନ୍ଧୀଙ୍କ ଉତ୍ତର

କବି ରବୀନ୍ଦ୍ରନାଥ ଠାକୁର ପ୍ରଥମେ ପ୍ରଥମେ ବଡ଼ ଅସହଯୋଗୀ ଥିଲେ । ସରକାରଙ୍କ ନଜର ସର୍ ଉପାଧି ସେ ଫେରାଇ ଦେଇଛନ୍ତି । ସରକାରୀ ସ୍କୁଲରେ ପାଠ ପଢ଼ିବାରେ ଇଷ୍ଟ ନାହିଁ; ବରଂ ଅନିଷ୍ଟ ବୋଲି ତାଙ୍କର ମତ ବୋଲି ସେ ବାରମ୍ବାର ପ୍ରକାଶ କରିଛନ୍ତି । ବୋଲପୁରରେ ସେ ବହୁଦିନରୁ ଜାତୀୟ ରୀତିରେ ଶିକ୍ଷା ଦେବାର ବ୍ୟବସ୍ଥା କରିଛନ୍ତି । ମାତ୍ର ପରେ ପୁଣି ଅସହଯୋଗ ବିଷୟରେ ତାଙ୍କ ମତ ଟିକିଏ ବଦଳି ଯାଇଛି । ଅସହଯୋଗର କେତେକ ବିଷୟରେ ସେ ପ୍ରତିବାଦ କରି ଏ ଦେଶକୁ କେତେଖଣ୍ଡ ପତ୍ର ଲେଖିଛନ୍ତି । ସେଥିରେ ଅସହଯୋଗ ବିରୋଧୀ ଅନେକେ ନାଚି ଉଠିଥିଲେ । ମାତ୍ର ମହାତ୍ମା ଗାନ୍ଧୀ ଏ ସବୁର ଜବାବ ଦେଇଛନ୍ତି ।

ରବୀନ୍ଦ୍ରନାଥଙ୍କର ଆଶଙ୍କା ଯେ ଅସହଯୋଗ ଦ୍ୱାରା ପୂର୍ବ ପଶ୍ଚିମ ଅର୍ଥାତ୍ ଇଉରୋପୀୟ ଓ ଭାରତୀୟଙ୍କ ମଧ୍ୟରେ ମନାନ୍ତର ଓ ଭେଦଭାବ ଜନ୍ମିବ । ଏହା ଭାରତୀୟ ତଥା ମନୁଷ୍ୟ ସମାଜ ପକ୍ଷରେ ମଙ୍ଗଳକର ନୁହେଁ । ସେ ବିଶ୍ୱାସ କରନ୍ତି ଅସହଯୋଗରେ କେବଳ ତ୍ୟାଗହିଁ ସାର, ମୁକ୍ତି ବା ସୁଖ ନାହିଁ । ମହାତ୍ମାଜୀ ଏ ମତର ପ୍ରତିବାଦ କରି କହନ୍ତି କି ଅସହଯୋଗଦ୍ୱାରା ଇଉରୋପୀୟ ଓ ଭାରତୀୟଙ୍କ ମଧ୍ୟରେ ମନାନ୍ତର ନ ଘଟି ପ୍ରକୃତ ଭ୍ରାତୃଭାବ ଜନ୍ମିବ । ବାସ୍ତବିକ୍, ଭୟରେ ଜଡ଼ସଡ଼ ହୋଇ ଦାସତ୍ୱରେ ଆବଦ୍ଧ ରହି ଘୃଣାରେ ଆନ୍ତରିକ ଅଶାନ୍ତି ଭୋଗକରି ଯେଉଁ କେତେକ ଭାରତବାସୀ ବାହାରେ ମୁହଁରେ ଯେଉଁ ଭ୍ରାତୃଭାବ ଦେଖାଉଛନ୍ତି ତାହା ଘୃଣ୍ୟ ଓ ଅମଙ୍ଗଳକର । ପ୍ରକୃତ ଭ୍ରାତୃଭାବ ଓ ସହୃଦୟତା ଜନ୍ମାଇବାକୁ ହେଲେ ଉଭୟ ଜାତି ଓ ଶାନ୍ତିରେ ଏବଂ ପରସ୍ପର ପ୍ରତି ବିଶ୍ୱସ୍ତ ବନ୍ଧୁ ଭାବରେ ବ୍ୟବହାର କରିବା ଉଚିତ । ଯେତେଦିନଯାଏ ଭାରତବାସୀଙ୍କୁ ଇଂରେଜମାନେ ପାଦତଳେ ରଖି ଗୋଲାମପରି ବ୍ୟବହାର କରୁଥିବେ, ରାଜନୀତି କଳରେ ନାନା ଉପାୟରେ ପ୍ରଜାଙ୍କର ଧନ ଶୋଷଣ କରୁଥିବେ, ପଞ୍ଜାବ ଅତ୍ୟାଚାର ପରି ପାଶବିକ ବ୍ୟବହାର ଦ୍ୱାରା ଭାରତୀୟଙ୍କର ଇଜ୍ଜତ ମହତ ଅପହରଣ କରୁଥିବେ, ସେତେଦିନଯାଏ ଉଭୟଙ୍କ ମଧ୍ୟରେ ଭ୍ରାତୃଭାବ ଅସମ୍ଭବ । ମହାତ୍ମାଜୀଙ୍କର ବରାବର ମତ ଯେ ଇଂରେଜ ନୀତି ଏହି କୁଟିଳ ପନ୍ଥାରେ ଚାଳିତ । ସେ ନୀତି ପାପପୂର୍ଣ୍ଣ । ଯେଉଁ ରାଜମନ୍ତ୍ରୀ ବା ରାଜ କର୍ମଚାରୀମାନେ ଏ ନୀତିର ଚାଳକ ସେମାନେ ମିଥ୍ୟାଚାର ଓ ବିଶ୍ୱାସଘାତକତା ମଧ୍ୟ

ଅବଲମ୍ବନ କରିବାକୁ କୁଣ୍ଠିତ ନୁହନ୍ତି । ସେମାନେ ଏ ପାପମୟ ନୀତିର ସମ୍ପର୍କରେ ଆସି ପ୍ରତ୍ୟେକେ ପାପଭାଗୀ ହୋଇଛନ୍ତି । ବର୍ତ୍ତମାନ ଏ ପାପରୁ ମୁକ୍ତହେବା ସକାଶେ ଅସହଯୋଗହିଁ ଏକମାତ୍ର ପନ୍ଥା । ଏହି ପାପଠାରୁ ଦୂରରେ ରହିବାହିଁ ସାଧୁ ଓ ଧାର୍ମିକ ଲୋକର କାର୍ଯ୍ୟ । ଭାରତର ମଙ୍ଗଳ ସକାଶେ ଭାରତୀୟ ଓ ଇଂଲଣ୍ଡର ମଙ୍ଗଳ ସକାଶେ ଇଂରେଜମାନେ ଏ ପନ୍ଥା ଗ୍ରହଣ କରିବା ଉଚିତ । ଭାରତୀୟମାନେ ସ୍ୱରାଜ୍ୟ ଲାଭକଲେ ଓ ଇଂରେଜମାନେ ସେଥିରେ ସାହାଯ୍ୟ କଲେ ଇଂରେଜ ଓ ଭାରତୀୟମାନଙ୍କ ମଧ୍ୟରେ ପ୍ରକୃତ ବନ୍ଧୁତା ଓ ସହୃଦୟତା ଜନ୍ମିବ ।

ତ୍ୟାଗ ବିଷୟରେ ରବୀନ୍ଦ୍ରନାଥଙ୍କର ଯେ ଆଶଙ୍କା ତା ଉତ୍ତରରେ ମହାତ୍ମାଜୀ କହନ୍ତି, ମୁକ୍ତି ବା ସୁଖ ଲାଭର ପନ୍ଥା ଦୁଇଟି ବର୍ଜନ ଓ ଗ୍ରହଣ । ସତ୍ୟକୁ ଗ୍ରହଣ କରିବାରେ ଯେ ଆନନ୍ଦ ମିଥ୍ୟାକୁ ବର୍ଜନ କରିବାରେ ସେହି ଆନନ୍ଦ । ଅତଏବ ତ୍ୟାଗରେ ଯେ ସୁଖ ବା ମୁକ୍ତିନାହିଁ, ଏହା ଯଥାର୍ଥ ନୁହେଁ । ଚିରକାଳ ସନ୍ନ୍ୟାସରେ ଭାରତର ମୁକ୍ତି ।

('ସମାଜ' ତା ୧୮ । ୬ । ୨୧)

---

# ନିଷ୍ଠାପର ଅଲ୍ଲିଭାଇ

ମୌଲନା ମହମ୍ମଦ ଅଲ୍ଲି ଓ ସୌକତ୍ ଅଲ୍ଲି ମାନ୍ଦ୍ରାଜ ଓ ଯୁକ୍ତପ୍ରଦେଶରେ ବକ୍ତୃତା ଦେଲବେଳେ କେତେକ ଶାନ୍ତିଭଙ୍ଗର କଥା ସେମାନଙ୍କ ବକ୍ତୃତାରେ ରହିଥିଲା । ମହାତ୍ମାଗାନ୍ଧୀଙ୍କ ସହିତ ବଡ଼ଲାଟଙ୍କର କଥାବାର୍ତ୍ତା ହେଲବେଳେ ବଡ଼ଲାଟ ଦୁଃଖକରି ମହାତ୍ମାଜୀଙ୍କୁ ଏସବୁ ବକ୍ତୃତା ଦେଖାଇଥିଲେ । ମହାତ୍ମାଜୀ ଆଗରୁ ଏହାର ଖବର ପାଇ ନ ଥିଲେ । ସେ ଏ ବକ୍ତୃତା ଅସହଯୋଗ ନୀତି ବିରୁଦ୍ଧ ହୋଇଥିବା ମନେକରି ଅଲ୍ଲିଭାଇ-ମାନଙ୍କୁ ତା ଫେରାଇ ନେଇ ସେଥିସକାଶେ ଦୁଃଖପ୍ରକାଶ କରିବା ପାଇଁ ପରାମର୍ଶ ଦେଇ-ଥିଲେ । ଅଲ୍ଲିଭାଇମାନେ ମଧ୍ୟ ମହାତ୍ମାଜୀଙ୍କ ଅନୁରୋଧ ଅନୁସାରେ ଲୋକମାନଙ୍କଠାରେ ନିଜର ଭ୍ରମ ସ୍ୱୀକାର କରିଛନ୍ତି । ସରକାର ପରା ତାଙ୍କୁ ଏଥିପାଇଁ ଗିରଫଦାର କରିବେ ବୋଲି ବିଚାର କରୁଥିଲେ । ସେମାନେ ଏପରି ଦୁଃଖପ୍ରକାଶ କରିବାରୁ ତାଙ୍କୁ ଗିରଫଦାର ନ କରି ଏବେ କହୁଛନ୍ତି କି ଅଲ୍ଲିଭାଇମାନେ ସରକାରଙ୍କ ଚରଣରୁ ତଳେ ଶୋଇ ପଡ଼ିଲେ । ଏ ବିଷୟରେ ଗୁରିଆଡ଼େ ସରକୁଲର ଜାରି ହେଉଥିବାର ଶୁଣାଯାଏ । ଅଲ୍ଲିଭାଇମାନେ ଏହାର ପ୍ରତିବାଦ କରିଛନ୍ତି । ସେମାନେ ସରକାରଙ୍କ ଦଣ୍ଡ ଭୟରେ ଦୁଃଖପ୍ରକାଶ କରି ନାହାନ୍ତି । କେବଳ ଅସହଯୋଗ ନୀତି ବିରୁଦ୍ଧ ହୋଇଥିବାରୁ ଦୁଃଖ ପ୍ରକାଶ କରିଅଛନ୍ତି । ସେମାନେ ଯେତେଦିନଯାଏ ମହାତ୍ମାଗାନ୍ଧୀଙ୍କ ଅସହଯୋଗ ନୀତି ପାଳନ କରୁଥିବେ ସେତେଦିନଯାଏ ଶାନ୍ତିଭଙ୍ଗ କରିବେ ନାହିଁ । ସରକାରଙ୍କ ଦଣ୍ଡ ପ୍ରତି ସେମାନଙ୍କର ଭୟ ନାହିଁ । ସେମ ନେ ଇଂରେଜମାନଙ୍କ କୂଟ ରାଜନୀତିର ଚରିଣରୁ । ସେଥିପାଇଁ ବହୁବାର ଦଣ୍ଡ ଭୋଗିଛନ୍ତି ଓ ଭୋଗିବାକୁ ପ୍ରସ୍ତୁତ ଅଛନ୍ତି । ସରକାର ବିଚାରିଲେ ବର୍ତ୍ତମାନ ଦଣ୍ଡ ଦେଇପାରନ୍ତି । ସେଥିସକାଶେ ତାଙ୍କର ଭୟ ନାହିଁ । ବାସ୍ତବିକ ଶତ ଶତ ସ୍ୱରାଜ୍ୟ ସେବକ ବର୍ତ୍ତମାନ ସରକାରଙ୍କ ଅତ୍ୟାଚାର ହେତୁ ବିନା ସାକ୍ଷୀ ସୁଦ୍ଧା ଓ ପ୍ରମାଣରେ ହସି ହସି ସ୍ୱଇଚ୍ଛାରେ ଜେଲଖାନା ଓ ଦ୍ୱୀପାନ୍ତର ଯାଉଛନ୍ତି । ସେଥିପ୍ରତି କାହାରି ଦୁଃଖ ବା ଭୟ ନାହିଁ । ଅଲ୍ଲିଭାଇଙ୍କ ପରି ନିଷ୍ଠାପର ଅସହଯୋଗୀମାନେ ଦଣ୍ଡ ଭୟରେ ଶୋଇ ପଡ଼ିଲେ ବୋଲି ଯେଉଁମାନେ କହନ୍ତି ସେମାନେ ଲଜ୍ଜାବୋଧ କରିବା ଉଚିତ । ନାନାପ୍ରକାର ମିଥ୍ୟାଗୁର ଓ ଅନାଚାରଦ୍ୱାରା ଲୋକମାନଙ୍କୁ ଭୁଲାଇ ଜବତ କରିବା ହେତୁ ସରକାରଙ୍କ ପାପ ବଢ଼ୁଛି ସିନା କମୁନାହିଁ ।

( 'ସମାଜ', ତା୧୮ । ୬ । ୨୧)

—•—

# ବିଲାତ ଲୋକଙ୍କ କାରସାଦ୍

ମୋଜାଫରପୁରର ପ୍ରିନ୍ସପାଲ ଖୋସଲା ଦକ୍ଷତାର ସହିତ କାର୍ଯ୍ୟ କରୁଅଛନ୍ତି । ସେ ଯେପରି ପଣ୍ଡିତ ସେହିପରି ଦକ୍ଷ ଏବଂ ଲୋକପ୍ରିୟ । ଏବେ ତାଙ୍କୁ କେବଳ ଅଧ୍ୟାପକ ପଦରେ ରଖାଯାଇ ତାଙ୍କ ଜାଗାରେ ଜଣେ ଗୋରା ପ୍ରିନ୍ସପାଲ ହୋଇ ଆସିବାର କଥା ସ୍ଥିର ହୋଇଅଛି । ଯେ ଗୋରା ଆସିବାର କଥା ହେଉଛି ସେ ଦେଶର ଶିକ୍ଷା ବିଭାଗରେ ନୁହେଁ । ବିଲାତରୁ ଯେ-କେହି ଅନାମଧେୟ ଏ ଦେଶକୁ ଆସିଲେ ସେ ଏଠାରେ ବିଦ୍ୟାବାଗୀଶ । ଏ ଖେଳ ଆଜିଯାଏ ବହୁବର୍ଷ ହେଲା ଚାଲିଆସିଛି । ଶାସନସଂସ୍କାର ଫଳରେ ଦେଶୀୟ ମନ୍ତ୍ରୀଙ୍କ ହାତରେ ଶିକ୍ଷାବିଭାଗ ରହିଲା ବୋଲି ଯେଉଁମାନେ ମନେ ମନେ ମୁଆଁ ଖାଉଥିଲେ ଏଭଳି ଘଟଣା ଦେଖି କ୍ରମେ ସେମାନଙ୍କ ଭ୍ରମ ଭାଙ୍ଗିଯିବ । ଏପର୍ଯ୍ୟନ୍ତ ଯାହା ଜଣାପଡ଼ୁଛି ବିହାର ଓଡ଼ିଶାର ଦେଶୀ ମନ୍ତ୍ରୀ ବା ଦେଶୀଲାଟ ନିଷ୍କ୍ରିୟ ନିରାମୟ ପୁରୁଷ ରୂପରେ ରହିଛନ୍ତି । ବ୍ୟୁରୋକ୍ରେସି ପ୍ରକୃତ ଆପଣା କାର୍ଯ୍ୟ କରୁଛି ।

× × ×

ଆଣ୍ଡ୍ରୁଜ୍ ସାହେବ ଏ ଦେଶରେ କୌଣସି ରାଜନୈତିକ ଦଳଭୁକ୍ତ ନୁହନ୍ତି । ଲୋକସେବା ତାଙ୍କର କାର୍ଯ୍ୟ । ଯେଉଁଠାରେ ଗରିବଙ୍କର ବିକଳ ଆର୍ତ୍ତନାଦ ପଡ଼େ ଆଣ୍ଡ୍ରୁଜ୍ ସେଠାରେ ସେମାନଙ୍କ ପାଖେ ଯା ଇଚ୍ଛା ତା ହୁଅନ୍ତି । ଯେଉଁଠାରେ ଅନ୍ୟାୟ ଉତ୍ପାତ ଘଟେ ଆଣ୍ଡ୍ରୁଜ୍‌ଙ୍କ ବଜ୍ରନାଦ ସେଠାରେ ଶୁଣାଯାଏ । ଭାରତବର୍ଷରେ ତାଙ୍କର ଏହିସବୁ କାର୍ଯ୍ୟଲାଗି ସେ ଅନେକ ଗୋରାଙ୍କର ଚକ୍ଷୁଶୂଳ ହେବାର କଥା । ଏବେ ବିଲାତ ପାର୍ଲିଆମେଣ୍ଟରେ ଜଣେ ମେମ୍ବର ସେ ବିଷୟରେ ପ୍ରଶ୍ନ ଉଠାଇଥିଲେ । ତାଙ୍କୁ ଏ ଦେଶରୁ ନେଇଯାଇ ବିଲାତରେ ରାଜବିଦ୍ରୋହ ସକାଶେ ତାଙ୍କର ବିଚାର କରାଯାଉ ବୋଲି ମେମ୍ବର କହିଥିଲେ । ଭାରତ ସେକ୍ରେଟାରୀ ମଣ୍ଟେଗୁ ସାହେବ କହିଲେ ଯେ ଏଭଳି ଅପରାଧ ଲାଗି ଭାରତବର୍ଷରେ ବିଚାର କରାଯାଇ ପାରିବ । ଏ ବିଲାତକୁ ଆସିବା ଦରକାର ନାହିଁ । ତାପରେ ପାର୍ଲିଆମେଣ୍ଟର ମେମ୍ବର କହିଲେ ଯେ ଭାରତରେ ତାଙ୍କର ବିଚାର ହେବାର ଶୀଘ୍ର ବ୍ୟବସ୍ଥା ହେଉ । ଭାରତର ଶାନ୍ତିରକ୍ଷା ଏବଂ ରାଜବିଦ୍ରୋହ ନିବାରଣ କରିବାର କ୍ଷମତା ଭାରତ ସରକାରଙ୍କ ଉପରେ । ଆବଶ୍ୟକ ବୋଧକଲେ ସେ ତହିଁର ବିହିତ

ସତର୍କତାପୂର୍ବକ ବିଚାର କରିବେ ବୋଲି ମନ୍ତ୍ରୀ ଜବାବ ଦେଲେ । ଏଭଳି ମେମ୍ବରମାନଙ୍କ କାର୍ଯ୍ୟ ଓ ବ୍ୟବହାରଦ୍ୱାରା ଭାରତବାସୀଙ୍କର ଇଂରେଜ ଜାତିଠାରୁ ପୂର୍ବ ବିଶ୍ୱାସ ତୁଟିଯାଉଛି । ଭାରତବର୍ଷରେ ରାଜବିଦ୍ରୋହର ପ୍ରତିକାରଲାଗି ଆଇନ ଅଛି ବୋଲି ଏ ମେମ୍ବର ପୁଙ୍ଗବଙ୍କୁ ମାଲୁମ ନାହିଁ । ତଥାପି ଏହାଙ୍କର ଏଡ଼େ ଦାଉ । କଥାରେ ଅଛି "ଲଙ୍କାରେ ଯେତେକ ଜାତ, ସମସ୍ତେ ଅସୁର ଦଇତ ।" କରି ଅସୁରଟି ସେଠାରେ ବାହାର ହୋଇ ।

('ସମାଜ' ତା ୨୫ । ୭ । ୨୧)

# ଓଡ଼ିଶା ନିଜର ମାନ ରଖୁ •

ଗୁହୁଁ ଗୁହୁଁ ଆଜକୁ ଜୁନମାସର ୨୫ ଦିନ ହେଲା । ମାସ ପୂରିବାକୁ ଆଉ ଏକ ସପ୍ତାହରୁ କମ୍ ରହିଲା । ଏଥିମଧ୍ୟରେ ଭାରତ ମହାସଭାର ବେଜଓ୍ୱାଡ଼ା ନିର୍ଦ୍ଧାରଣ କାର୍ଯ୍ୟରେ କେତେଦୂର ପରିଣତ ହୋଇଅଛି ଏହା ଦେଖିବା ଆବଶ୍ୟକ । ଏପର୍ଯ୍ୟନ୍ତ ଖବରକାଗଜମାନଙ୍କରେ ଯାହା ପ୍ରକାଶ ପାଇଅଛି ସେଥିରୁ ଜଣାଯାଏ ଯେ ମଇ ମାସ ଶେଷତକ ଯାହା କାର୍ଯ୍ୟ ହୋଇଅଛି ତାହା ସମୟ ଅନୁପାତରେ ଠିକ୍ ହୋଇନାହିଁ । ଅବଶ୍ୟ ପ୍ରଥମରୁ କାର୍ଯ୍ୟର ବନ୍ଦୋବସ୍ତ କରୁ କରୁ କେତେଦିନ ଗୁଲିଗଲା । ଆୟୋଜନ ଠିକ୍ ହେବାପରେ ଏହି ଜୁନ ମାସରେ ଅଧିକାଂଶ ପ୍ରଦେଶରେ ଯଥେଷ୍ଟ କାର୍ଯ୍ୟ ହୋଇ-ଅଛି । ଆମ୍ଭେମାନେ ଅନ୍ୟାନ୍ୟ ପ୍ରଦେଶର କଥା ଏଠାରେ ବିଶେଷ ଆଲୋଚନା କରିବା ଆବଶ୍ୟକ ନାହିଁ । ସେ ସବୁରେ କାର୍ଯ୍ୟକରିବାକୁ ଅନେକ ଲୋକ ବାହାରିଛନ୍ତି । ସ୍କୁଲ କଲେଜ ଗ୍ରୁତ୍ରଙ୍କ ଛଡ଼ା ଦେଶର ମୁଖିଆ ଲୋକ ବହୁତ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଛନ୍ତି । ଯେଉଁମାନେ ସଫା ଷୋଳଅଣା ଯୋଗ ଦେଇନାହାନ୍ତି ସେମାନେ ମଧ୍ୟ ଭିତର କାର୍ଯ୍ୟ କରୁଛନ୍ତି । ଏପରିକ ସରକାରୀ କର୍ମଗୁରୀମାନେ ଅସହଯୋଗ ନୀତିକୁ ଡେଡେ ସମର୍ଥନ ନ କଲେ ସୁଦ୍ଧା ଏ ଆନ୍ଦୋଳନର ଅନ୍ୟାନ୍ୟ ଅନେକ କାର୍ଯ୍ୟରେ ସମ୍ପୂର୍ଣ୍ଣ ସହାୟତା କରୁଛନ୍ତି । ପୁଣି ତେଣେ ଧନୀ ଲୋକ ଅନେକ ଅଛନ୍ତି । ସେମାନଙ୍କର ମଧ୍ୟ ଆନ୍ଦୋଳନରେ ଯୋଗ ଅଛି । ସୁତରାଂ ମାସକ ମଧ୍ୟରେ ବେଜଓ୍ୱାଡ଼ା ପୋଗ୍ରାମ ଅନୁସାରେ ଏ ମାସ ଶେଷ ସୁଦ୍ଧା ଭାରତର ବିହାର, ଗୁଜରାଟ, ବଙ୍ଗଳା, ଆନ୍ଧ୍ର, ପଞ୍ଜାବ ପ୍ରଭୃତି ଦେଶରେ ଷୋଳଅଣା କାର୍ଯ୍ୟ ପୂରଣ ହେବା ଆଶ୍ଚର୍ଯ୍ୟ ନୁହେଁ । ଓଡ଼ିଶା ହିସାବରେ ଯେ ପ୍ରାୟ ପାଞ୍ଚଲକ୍ଷ ମେମ୍ବର, ପାଞ୍ଚଲକ୍ଷ ଟଙ୍କା ଏବଂ ଏକଲକ୍ଷ ଅରଟ ପଡ଼ିଛି ସେଥିମଧ୍ୟରୁ କେଉଁଟା କେତେଅଣା ପୂରା ପଡ଼ିବ ଉତ୍କଳବାସୀଙ୍କର ଏହା ବିଚାର କରିବା ଏକାନ୍ତ ଆବଶ୍ୟକ । ଯେଉଁମାନେ ଅସହଯୋଗର ପକ୍ଷପାତୀ ନୁହନ୍ତି ସେମାନଙ୍କୁ ମଧ୍ୟ ଏ ବିଷୟରେ ମନୋଯୋଗ ଦେବା ନିମନ୍ତେ ଆମ୍ଭେମାନେ ଅନୁରୋଧ କରୁଁ । ଉତ୍କଳ ଭାରତୀୟ ଆନ୍ଦୋଳନରେ କେବେହେଲେ ଯୋଗ ଦେଇ ନ ଥିଲା । ଭାରତ ମହାସମିତି ସମଗ୍ର ଭାରତୀୟମାନଙ୍କର ସର୍ବଶ୍ରେଷ୍ଠ ଜାତୀୟ ଆନ୍ଦୋଳନ, ଏହା କେହି ଅସ୍ୱୀକାର କରିବେ ନାହିଁ । ସେଥିରେ ଉତ୍କଳୀୟମାନଙ୍କର ଆଜିଯାଏ ନାଁ ପଡ଼ି ନ ଥିଲା । ଆଜି ଉତ୍କଳ ସେଥିରେ ସ୍ୱତନ୍ତ୍ର ସ୍ଥାନ ପାଇଅଛି । ଆପଣାର

ଆତ୍ମମର୍ଯ୍ୟାଦା ରଖି ଅନ୍ୟାନ୍ୟ ପ୍ରଦେଶ ସହିତ ସମାନସ୍କନ୍ଧ ହୋଇ ବସିବାକୁ ହେଲେ ଉତ୍କଳ ତାହାର ହିଂସା ପୂରଣ କରିବା ସର୍ବଥା ବାଞ୍ଛନୀୟ । ବର୍ତ୍ତମାନ ଯେଉଁକାର୍ଯ୍ୟ ମାନ ଉପରେ ପଡ଼ିଛି ଏହା ସମସ୍ତଙ୍କର ମନେ ରଖିବା ଉଚିତ । ଉତ୍କଳ ପ୍ରଦେଶ ଉପସ୍ଥିତ କାର୍ଯ୍ୟ ଆନ୍ଦୋଳନରେ ଭାରତ ମହାସମିତି ନିକଟରେ ଆପଣାର ହିଂସା ପୂରଣ କରି ନ ପାରିଲେ ଓଡ଼ିଶାର ସହଯୋଗୀମାନେ ଯେ କୃତକୃତ୍ୟ ହେବେ ଏହା ଆମ୍ଭେମାନେ ବିଶ୍ୱାସ କରୁନାହୁଁ । ସହଯୋଗୀମାନେ ତାଙ୍କ ନିଜ ଉପାୟରେ ଦେଶର ଯାହା କଲ୍ୟାଣ କରିବାର କରନ୍ତୁ । ମାତ୍ର ମହାଭାରତ ସମ୍ପର୍କରୁ ଆଉ କେତେକାଳ ଅଲଗା ହୋଇ ରହିଲେ ଓଡ଼ିଶାର ଗୌରବ ବଢ଼ନ୍ତା ବୋଲି ସେମାନେ କଦାପି କହିବେ ନାହିଁ । ଯଥାର୍ଥରେ କହିଲେ ଅସହଯୋଗ ବିରୋଧୀ ଲୋକଙ୍କ ସଂଖ୍ୟା ଓଡ଼ିଶାରେ ସୁଦ୍ଧା ଅତି ଅଳ୍ପ । ସହର ଓ ମଫସଲର ଜନସାଧାରଣ ସମସ୍ତେ ଅସହଯୋଗର ସପକ୍ଷରେ । ଓଡ଼ିଶାରେ ଯଦି ଆବଶ୍ୟକ ସଂଖ୍ୟାରେ ମେମ୍ବର, ଅଥବା କିମ୍ବା ନିର୍ଦ୍ଦିଷ୍ଟ ପରିମାଣର ଟଙ୍କା ନ ହୋଇପାରେ ତାହା ଲୋକସାଧାରଣଙ୍କ ଦୋଷରୁ ନୁହେଁ; କାର୍ଯ୍ୟ କରିବା ଲୋକଙ୍କ ଅଭାବରୁ । ଦେଶର ଆଉ କେତେଜଣ ଶିକ୍ଷିତ ଲୋକ ସ୍ୱାର୍ଥ ଛାଡ଼ି ଏଥିରେ ଯୋଗ ଦେଇଥିଲେ ଉତ୍କଳ ଭାରତର ଅନ୍ୟ କୌଣସି ପ୍ରଦେଶ ପଛରେ ପଡ଼ି ରହନ୍ତା ନାହିଁ । ଭାରତ ମହାସମିତିର କର୍ମୀ ସେବକମାନେ ଉତ୍କଳର ଭିନ୍ନ ଭିନ୍ନ ଅଞ୍ଚଳରେ ବୁଲି ଯେତେଦୂର ପାରନ୍ତି କାର୍ଯ୍ୟ ଲଗାଇ ଅଛନ୍ତି । ଏ ମାତ୍ରର ଆଉ ପାଞ୍ଚ ଛଅଦିନ ମଧ୍ୟରେ ସେମାନେ ଯେ ଦେଶର ଅନ୍ଧିକନ୍ଧି ସବୁଠାକୁ ଯାଇ ପାରିବେ ତାହା ଆଶା କରାଯାଏ ନାହିଁ । କଂଗ୍ରେସ ପ୍ରଚାରକ ନ ଯାଇ ପାରିଲେ ସୁଦ୍ଧା ସ୍ଥାନୀୟ ଉତ୍ସାହୀ ବ୍ୟକ୍ତିମାନେ ଉପସ୍ଥିତ କ୍ଷେତ୍ରରେ ବହୁତ ସାହାଯ୍ୟ କରି ପାରନ୍ତି । ଗ୍ରାମବାସୀମାନେ ଆପଣା ଆପଣା ମଧ୍ୟରେ ସ୍ୱରାଜ୍ୟ ପାଣ୍ଠି ନିମନ୍ତେ ଚାନ୍ଦା ଉଠାଇ ନିଜ ଜିଲାର କଂଗ୍ରେସ କମିଟି ସଭାପତି ବା ସମ୍ପାଦକମାନଙ୍କଠାକୁ ପଠାଇ ଦେଇପାରନ୍ତି, କିମ୍ବା ପ୍ରାଦେଶିକ କଂଗ୍ରେସ କମିଟିର ସମ୍ପାଦକ ବା ସଭାପତିଙ୍କଠାକୁ ସ୍ୱରାଜ୍ୟାଶ୍ରମ, କଟକ ଠିକଣାରେ ମନିଅର୍ଡ଼ର ଯୋଗେ ପଠାଇ ପାରନ୍ତି । ସମାଜର ଗ୍ରାହକ ପ୍ରାୟ ପାଞ୍ଚହଜାର । ପ୍ରତ୍ୟେକ ଖଣ୍ଡ କାଗଜର ପାଠକ ହାରାହାରି ଦଶଜଣ ହେଲେ ଆମ୍ଭମାନଙ୍କର ଏ ସଂଖ୍ୟା ପ୍ରାୟ ୫୦ ହଜାର ଲୋକଙ୍କ ନଜରରେ ପଡ଼ିବ । ସେମାନେ ପ୍ରତ୍ୟେକେ ଯଦି ନିଜ ନିଜ ପରିବାରରେ ଏବଂ ଗ୍ରାମରେ ସ୍ୱରାଜ୍ୟ ପାଣ୍ଠି ନିମନ୍ତେ ଚାନ୍ଦା ସଂଗ୍ରହ କରନ୍ତି ତାହାହେଲେ ଜୁନ ମାସ ଶେଷଦିନ ମଧ୍ୟରେ କମ ଆଦାୟ ହେବ ନାହିଁ । ଏ ବିଷୟରେ ଆନ୍ଦୋଳନ ନିମନ୍ତେ ଉତ୍କଳର ଅନ୍ୟାନ୍ୟ ପତ୍ରିକାମାନଙ୍କୁ ଆମ୍ଭେମାନେ ଅନୁରୋଧ କରୁଅଛୁଁ ଏବଂ ସେ ପ୍ରତ୍ୟେକଙ୍କ ଗ୍ରାହକ ଓ ପାଠକମାନେ ସେହିପରି ସ୍ୱରାଜ୍ୟ ପାଣ୍ଠି ନିମନ୍ତେ ଆଦାୟ କରି

ପାରନ୍ତି । ଯାହା ଆଦାୟ ହେବ ଏ ମାସ ୩୦ ତାରିଖ ମଧ୍ୟରେ ଜିଲ୍ଲା ବା ପ୍ରାଦେଶିକ କଂଗ୍ରେସ କମିଟିଙ୍କଠାକୁ ପଠାଯିବା ଉଚିତ । ଅବଶ୍ୟ ଯେଉଁମାନେ ଏ ଜାତୀୟ ପାଣ୍ଠି ଲାଗି କାର୍ଯ୍ୟ କରିବେ ସେମାନେ ସଚ୍ଚା ଓ ସାଧୁଭାବରେ କାର୍ଯ୍ୟ କରିବା ଉଚିତ । ସେମାନଙ୍କ ପ୍ରତି କାହାରି ଯେପରି ସନ୍ଦେହ ନ ହୁଏ । ଆଦାୟ ଟଙ୍କା ପଠାଯିବା ବିଷୟରେ ଗ୍ରାମବାସୀ ସମସ୍ତେ ନଜର ରଖିଲେ ଭୟର କୌଣସି କାରଣ ରହିବ ନାହିଁ । ସ୍ୱରାଜ୍ୟ ପାଣ୍ଠିରେ ଉତ୍କଳର ପ୍ରତ୍ୟେକ ଗାଁ ନାଁରେ ଯେପରି ଗାର ପଡ଼ିବ ସେଥିପ୍ରତି ତତ୍ପର ହେବ । କାରଣ ଆମ୍ଭେମାନେ ପ୍ରତ୍ୟେକ ଗ୍ରାମବାସୀଙ୍କୁ ବିନୀତ ଅନୁରୋଧ କରୁଅଛୁଁ ଯେ ଗାଁରୁ ଯେ ସ୍ୱରାଜ୍ୟ ପାଣ୍ଠି ଲାଗି ଟଙ୍କା ପଠାଇବେ ଉକ୍ତ ଗ୍ରାମର ଅରଟର ସଂଖ୍ୟା ସେ ମଧ୍ୟ କଂଗ୍ରେସ କମିଟିକି ଜଣାଇଦେଲେ ଭଲ ହେବ ।

('ସମାଜ' ତା ୨୫ । ୬ । ୨୧)

———

# ଗାନ୍ଧୀଙ୍କ ମାଲବ୍ୟଙ୍କ ସମର୍ଥନ

ପଣ୍ଡିତ ମଦନମୋହନ ମାଲବ୍ୟ ଦେଶର ଜଣେ ମୁଖିଆ ନେତା । ମହାତ୍ମାଗାନ୍ଧୀ ନିଜେ ତାଙ୍କୁ ଖୁବ ଖାତର ଏବଂ ଭକ୍ତି କରନ୍ତି । ଗଲା ଡିସେମ୍ବର ମାସରେ ନାଗପୁର କଂଗ୍ରେସରେ ମଧ୍ୟ ସେ ଥିଲେ । ଅସହଯୋଗ ଏବଂ ସ୍ୱରାଜ୍ୟ ସମ୍ବନ୍ଧୀୟ ପ୍ରସ୍ତାବରେ କେତେକ ପରିବର୍ତ୍ତନ କରିବା ତାଙ୍କର ମତ ଥିଲା । ମୋଟକଥା ନାଗପୁର କଂଗ୍ରେସରେ ଏ ଦୁଇ ବିଷୟରେ ଯେପରି ସିଦ୍ଧାନ୍ତ ହେଲା ପଣ୍ଡିତ ମାଲବ୍ୟଙ୍କର ସେଥିରେ ପୂରା ମତ ନ ଥିଲା । ମାତ୍ର ଦେଶବାସୀ କଂଗ୍ରେସ କଥାମାନ କାର୍ଯ୍ୟରେ ଲାଗିଗଲେ । ସ୍ୱରାଜ୍ୟ ସ୍ରୋତ ବହିଲା । ଦେଶର ମତ ନ ମାନିଲେ ଯେତେ ବଡ଼ ନେତା ହୁଅନ୍ତୁ ପଛକେ ଏ ଯୁଗରେ ପଛକୁ ପଡ଼ିଯିବେ । ଫଳରେ କଂଗ୍ରେସ ଦିନଠାରୁ ଆଜଯାଏ ପ୍ରାୟ ଛ ମାସ ହେବ ପଣ୍ଡିତ ମଦନମୋହନ ମାଲବ୍ୟ ଏକପ୍ରକାର ନୀରବ ଥିଲେ । ମତ ନ ମିଳିଲା ବୋଲି ବିରୋଧାଚରଣ କରିବା ତାଙ୍କର ପ୍ରକୃତି ନୁହେଁ । ସେ ଏତେଦିନଯାଏ ବରାବର ଦେଶର କଥା ଭାବୁଥିଲେ । ପାଠକମାନେ ଜାଣନ୍ତି ଅଳ୍ପଦିନତଳେ ବଡ଼ଲାଟ ଲର୍ଡ ରିଡ଼ିଂଙ୍କ ସଙ୍ଗେ ମହାତ୍ମାଗାନ୍ଧିଙ୍କର ସାକ୍ଷାତ କରାଇ ପଣ୍ଡିତ ମାଲବ୍ୟଜୀ ଉପସ୍ଥିତ ସମସ୍ୟାର ଗୋଟାଏ ରଫାଦଫା କରିବାର ଉଦ୍ୟମରେ ଥିଲେ ।

ଖୁବ୍ ସମ୍ଭବ ଏହି ଘଟନାରେ ମହାତ୍ମାଗାନ୍ଧି ଏବଂ ମାଲବ୍ୟଙ୍କ ମଧ୍ୟରେ ଅସହଯୋଗ ସମ୍ବନ୍ଧରେ ସିମଲା'ଠାରେ ବିଶେଷ ଆଲୋଚନା ହୋଇଥିଲା । ୭ ମାସ ପରେ ଏବେ ମାଲବ୍ୟ ଅସହଯୋଗ କାର୍ଯ୍ୟକଳାପ ସମ୍ବନ୍ଧେ ପାଟି ଫିଟାଇ ଅଛନ୍ତି । ଏ ସପ୍ତାହରେ ସେ ମହାତ୍ମାଗାନ୍ଧିଙ୍କୁ ଏକ ଟେଲିଗ୍ରାମ ପଠାଇଛନ୍ତି । ବେଜୱାଡ଼ାଠାରେ ଯେ ଏକକୋଟି କଂଗ୍ରେସ ସଭ୍ୟ ଓ ଏକ କୋଟି ଟଙ୍କା ଜୁନ ମାସ ୩୦ ତାରିଖ ମଧ୍ୟରେ ସଂଗ୍ରହ କରିବାର ସ୍ଥିର ହୋଇଥିଲା ପଣ୍ଡିତ ମାଲବ୍ୟ ତାହା ସମର୍ଥନ କରିଅଛନ୍ତି । ସେ କହନ୍ତି ଜୁନ ମାସ ଶେଷ ତାରିଖ ମଧ୍ୟରେ ପୂରା ଏକ କୋଟି ମେମ୍ବର ଏବଂ ଏକକୋଟି ଟଙ୍କା ନ ହୋଇ ପାରିଲେ ସୁଦ୍ଧା ଯଦି ୫୦ ଲକ୍ଷ ମେମ୍ବର ଓ ୫୦ ଲକ୍ଷ ଟଙ୍କାର ଆୟୋଜନ ହୁଏ, ତାହାହେଲେ ଖୁବ୍ କାର୍ଯ୍ୟ ହେଲା ବୋଲି ବୁଝାଯିବ । କଂଗ୍ରେସ ମେମ୍ବର ଏବଂ ଅର୍ଥ ସଂଗ୍ରହ କରିବାଲାଗି ଯେତେ ଲୋକ ଦରକାର ସବୁପ୍ରଦେଶରେ ସେତେ ଲୋକ କାର୍ଯ୍ୟ କରିବାକୁ ମିଳି ନାହାନ୍ତି । ମାଲବ୍ୟ ଆଶା କରନ୍ତି ଯେ ଏହି

କେତେଦିନ ମଧ୍ୟରେ ଯେପରି କାର୍ଯ୍ୟ ଚାଲିଛି ଜୁନ୍‌ମାସ ମଧ୍ୟରେ ବେଜଓ୍ୱାଡ଼ା ନିର୍ଦ୍ଧାରଣ ଅନୁସାରେ ପୂରାକାମ ନହୋଇ ପାରିଲେ ସୁଦ୍ଧା ଆଗାମୀ ଡିସେମ୍ବର କଂଗ୍ରେସ ବସିବା ପୂର୍ବରୁ କାର୍ଯ୍ୟ ଅବଶ୍ୟ ସମ୍ପୂର୍ଣ୍ଣ ହେବ । ଏକକୋଟି ଭାରତ ନରନାରୀଙ୍କ ମଧ୍ୟରେ ସ୍ୱରାଜ ବିଷୟରେ ଦୃଢ଼ ଲୋକମତ ଗଠିତ ହେଲେ ସାମାନ୍ୟ ଶକ୍ତି ପ୍ରକାଶ ପାଇବ ନାହିଁ । ଏକକୋଟି ଲୋକ ଦେଶ କାର୍ଯ୍ୟରେ ଉତ୍ସାହିତ ହୋଇ ଶାନ୍ତିପୂର୍ଣ୍ଣ ନ୍ୟାୟସଙ୍ଗତ ଉପାୟରେ କାର୍ଯ୍ୟକଲେ ସ୍ୱରାଜ୍ୟ ମିଳିବ ବୋଲି ପଣ୍ଡିତ ମାଲବ୍ୟ ଆଶାକରନ୍ତି । ଅସହଯୋଗର କାର୍ଯ୍ୟ କଳାପ ସମ୍ବନ୍ଧେ ପଣ୍ଡିତ ମାଲବ୍ୟଙ୍କର ଯାହା କିଛି ସନ୍ଦେହଥିଲା ଏବେ ତାହା ବୋଧହୁଏ ଘୁଞ୍ଚିଲାଣି ।

ଏକକୋଟି ଟଙ୍କା ଜୁନ୍‌ମାସ ମଧ୍ୟରେ ହୋଇ ନ ପାରିବ ବୋଲି ତାଙ୍କର ଆଶଙ୍କା । କିନ୍ତୁ କେତେଦିନ ମଧ୍ୟରେ ଯେପରି ସ୍ୱରାଜ୍ୟ ପାଣ୍ଠି ଲାଗିଅଛି କୋଟିକ ଯଥା ସମୟରେ ପୂର୍ଣ୍ଣ ହୋଇଯିବ । ଅରଟ ୨୦ ଲକ୍ଷ ହୋଇ ସାରିଲାଣି । ମେମ୍ବର ସଂଖ୍ୟା ଠିକ୍ ଜଣା ପଡ଼ୁନାହିଁ । ଏକକୋଟି ପୂରା ନ ହୋଇଥିଲେ ପୂରା ହେବାକୁ ଜୁନ୍‌ପରେ ବେଶୀଦିନ ଲାଗିବ ନାହିଁ । ଯଥାର୍ଥରେ କହିଲେ ବେଜଓ୍ୱାଡ଼ା ନିର୍ଦ୍ଧାରଣ ଅନୁସାରେ କାର୍ଯ୍ୟ କରିବାକୁ ଅନେକ ପ୍ରଦେଶକୁ ପୂରା ଦୁଇମାସ ସୁଦ୍ଧା ସମୟ ମିଳିନାହିଁ । ଏହି ଅଳ୍ପସମୟ ମଧ୍ୟରେ ଭାରତବାସୀ ଖୁବ୍ ଶକ୍ତି ଏବଂ କାର୍ଯ୍ୟ ଦେଖାଇ ଅଛନ୍ତି । ସ୍ୱରାଜ୍ୟର ବାଟ ସାଫି ହୋଇ ଆସିଲାଣି । କାମ ନ ଦେଖିଲେ ଅନେକଙ୍କର ବିଶ୍ୱାସ ହୁଏନାହିଁ । ଆଶାହୁଏ ଏଣିକି ଅନେକଙ୍କର ସନ୍ଦେହ ମେଣ୍ଟିଯିବ । ଅସହଯୋଗର ନିନ୍ଦୁକମାନେ ନୀରବ ରହିବେ । ଯେଉଁମାନଙ୍କର ବିଶ୍ୱାସ ଦୃଢ଼ ନ ଥିଲା ଏବଂ କଅଣ କରିବେ ବୋଲି ଏତେଦିନ ଭାଳୁଥିଲେ ଏଣିକି ସେମାନେ ଅଣ୍ଟାଭିଡ଼ି ସ୍ୱରାଜ୍ୟ ସାଧନାରେ ଲାଗିବେ ।

('ସମାଜ'' ତା ୨ । ୭ । ୨୧)

———

# ଲୋକଙ୍କ ମଧ୍ୟରେ ଆନ୍ଦୋଳନ ଚେତନା

କଲିକତାର ଅମୃତବଜାର ପତ୍ରିକାକୁ ସିମଲାର ଜଣେ ପତ୍ର ପ୍ରେରକ ଅନେକ କଥା ଲେଖିଛନ୍ତି । ସେଥିରୁ ଜଣାଯାଏ ଯେ ବଡ଼ଲାଟ ଲର୍ଡ଼ ରିଡ଼ିଂ ସାହେବ କେବଳ ଚୁପ୍ ହୋଇ ବସି ନାହାନ୍ତି, ଭାରତବାସୀଙ୍କର ମନବୋଧ କରିବା ଉଦ୍ୟମରେ ଅଛନ୍ତି । ଅସହ-ଯୋଗ ଦଳ ବିରୁଦ୍ଧରେ ଭିନ୍ନ ଭିନ୍ନ ପ୍ରଦେଶରେ ଯେ ସବୁ ଫୌଜଦାରୀ ମକଦ୍ଦମାମାନ ଚାଲୁଅଛି ତାହା ଏଣିକି ବନ୍ଦ ହେବ । ୧୪୪ ଏବଂ ଅନ୍ୟାନ୍ୟ ଧାରା ମାନଙ୍କରେ ଅସହଯୋଗୀ-ମାନଙ୍କୁ ଟଣା ଓଟରା କରିବାକୁ ହେବ ନାହିଁ । ଏ ବିଷୟରେ ଶୀଘ୍ର ହୁକୁମ ବାହାରିବାର ଶୁଣାଯାଏ । ବଡ଼ଲାଟ ସଭାରେ ଆଉ ଜଣେ ଦେଶୀୟ ବ୍ୟକ୍ତି କାର୍ଯ୍ୟକାରୀ ସଭ୍ୟ ନିଯୁକ୍ତ ହେବେ । ସାର ଉଇଲିଅମ ଭିନ୍‌ସେଣ୍ଟ ସାହେବ ଚାଲିଗଲେ ତାଙ୍କ ଜାଗାରେ ପଣ୍ଡିତ ମଦନମୋହନମାଲବ୍ୟ ରହିବାର କେହି କେହି ଅନୁମାନ କରନ୍ତି । ପ୍ରତି ପ୍ରଦେଶର ଛୋଟ-ଲାଟଙ୍କ ସଭାରେ ଦେଶୀ ମନ୍ତ୍ରୀମାନେ ରହି ଯେପରି କେତେଗୁଡ଼ିଏ କର୍ମଭାର ନେଇଛନ୍ତି ବଡ଼ଲାଟ ସଭାରେ ସେହିପରି ଦେଶୀ କେତେଜଣ ମନ୍ତ୍ରୀ କରାଯାଇ ସେମାନଙ୍କ ହାତେ କେତେଟା ବିଭାଗ ଦେବାକୁ ଲର୍ଡ଼ ରିଡ଼ିଂ ବିଚାର କରୁଛନ୍ତି ବୋଲି ପ୍ରତରୁ ପ୍ରକାଶ ।

ଛାପାଖାନା ଆଇନ ପରିବର୍ତ୍ତନ ଲାଗି ଗୋଟାଏ କମିଟି ନିଯୁକ୍ତ ହୋଇଥିଲା । ସେ କମିଟି ଆପଣାର କାର୍ଯ୍ୟ ଶେଷ କରିଅଛି । ଯେତେଦୂର ଖବର ମିଳେ ଛାପାଖାନା ଆଇନ ଉଠାଇ ଦେବାକୁ କମିଟି ମତ ଦେଇଅଛନ୍ତି । କମିଟିର ସବୁ ମେମ୍ବର ଏକମତ ହୋଇଛନ୍ତି ।

ପତ୍ର ପ୍ରେରକଙ୍କର ସମୁଦାୟ ସମ୍ବାଦ ଠିକ୍ ହେଲେ ସରକାର ଏ କେତେକ ବିଷୟରେ ଖୁବ୍ ଅନୁଗ୍ରହ ଦେଖାଇଲେ ବୋଲି ଅନେକେ ନାଚ ଉଠିବେ, ସନ୍ଦେହ ନାହିଁ । ମାତ୍ର ଏହାଦ୍ୱାରା ଭାରତବାସୀ ତୃପ୍ତ ବା ସନ୍ତୁଷ୍ଟ ହେବେ ନାହିଁ । ଭାରତର କୋଟି କୋଟି ନରନାରୀ ସ୍ୱରାଜ୍ୟ ଚାହାନ୍ତି । ସେମାନେ ବୁଝୁଛନ୍ତି ଯେ ସ୍ୱରାଜ୍ୟ ହେଲେ ଏକା ପେଟ ପୂରିକରି ସେମାନଙ୍କୁ ଖାଇବାକୁ ମିଳିବ, ପିନ୍ଧିବାକୁ ପାଇବେ, କରପୀଡ଼ାରେ ଏତେ ପେଷି ହେବେ ନାହିଁ; ଏପରି ପଶୁଙ୍କ ପରି ଆଉ ଡରି ମରିବେ ନାହିଁ । ଛାପାଖାନା ଆଇନ

ବଦଳାଇବ । ନ ବଦଳାଇବାରେ ଗାଁ ଚଷାର କିଛି ଯାଏ ଆସେ ନାହିଁ । ଭିନ୍‌ସେଣ୍ଟ ମେମ୍ବର ହୁଅନ୍ତୁ ବା ମାଲବ୍ୟ ମେମ୍ବର ହୁଅନ୍ତୁ ଗରିବ ରଇତ ପକ୍ଷରେ ସବୁ ସମାନ । କେତେଦିନ-ପୂର୍ବେ କେବଳ ଶିକ୍ଷିତ ଲୋକ କେତେଜଣ ରାଜନୈତିକ ଆନ୍ଦୋଳନ କରୁଥିଲେ । ଦେଶୀୟ ଲୋକଙ୍କୁ ବଡ଼ ଚାକିରି କେତେଖଣ୍ଡ ଦେବାଦ୍ୱାରା ବା ଛାପାଖାନା ଆଇନ ଉଠାଇ ଦେବାଦ୍ୱାରା ସେମାନଙ୍କୁ ସନ୍ତୁଷ୍ଟ କରାଯାଇ ପାରନ୍ତା । ମାତ୍ର ଆଜି ଭାରତରେ ରାଜନୈତିକ ଆନ୍ଦୋଳନ କେତେଜଣ ଶିକ୍ଷିତଙ୍କ ମଧ୍ୟରେ ସୀମାବଦ୍ଧ ନୁହେଁ; ବରଂ ଦେଶର ସାଧାରଣ ଲୋକେ ଯାହା ଚାହୁଁଛନ୍ତି ଶିକ୍ଷିତ ଲୋକମାନେ ସେହିମାନଙ୍କ ସଙ୍ଗେ ଯାଉଛନ୍ତି ଏବଂ ଯିବା ଉଚିତ । ଭାରତରେ ଶାନ୍ତି ଆଣିବାକୁ ହେଲେ ଏପରି ବ୍ୟବସ୍ଥା କରିବା ଦରକାର ଯହିଁରେ କି ଲୋକଙ୍କ ଦୁଃଖ ଯିବ । ଲୋକେ ଅନ୍ନବସ୍ତ୍ର ପାଇବେ ଏବଂ ଏ ଦେଶରେ ପ୍ରଜାମାନେ ବରାଣ୍ଡି କୁକୁର ପରି ନ ରହି ସ୍ୱାଧୀନ ମନୁଷ୍ୟ ପରି ରହିବେ ।'

('ସମାଜ', ତା ୨ । ୭ । ୨୧)

---

# ଗାନ୍ଧୀଙ୍କର କି ଶକ୍ତି !

ଜୁନ୍ ୩୦ ତାରିଖ ମଧ୍ୟରେ ତିଳକ ସ୍ୱରାଜ୍ୟ ପାଣ୍ଠି ନିମନ୍ତେ ଏକ କୋଟିରୁ ଅଧିକ ଟଙ୍କା ଆଦାୟ ହେବାର ଦେଖି ଅନେକେ ଆଶ୍ଚର୍ଯ୍ୟ ହୋଇଅଛନ୍ତି । ଅସହଯୋଗ ବିରୋଧୀ ଲୋକେ କାବା, ସରକାର ଚମତ୍କୃତ । ମାତ୍ର ଯଥାର୍ଥରେ ଏଥିରେ ଆଶ୍ଚର୍ଯ୍ୟର କଥା କିଛି ନାହିଁ । ସ୍ୱରାଜ୍ୟରେ ଯେଉଁମାନଙ୍କର ବିଶ୍ୱାସ ଅଛି, ଜାତୀୟ ମହାସମିତିର ନିର୍ଦ୍ଧାରଣକୁ ଯେଉଁମାନେ ଜାତିର ଆଜ୍ଞା ବୋଲି ମାନନ୍ତି ଏବଂ ମହାତ୍ମାଗାନ୍ଧୀଙ୍କ ଶକ୍ତି ଓ ପ୍ରଭାବ ଯେଉଁମାନେ ବୁଝିଛନ୍ତି ସେମାନେ ଜାଣିଥିଲେ ଯେ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ କୋଟିଏ ଟଙ୍କା ନିଶ୍ଚୟ ଉଠିବ । ଆମ୍ଭେମାନେ ବରାବର କହି ଆସୁଅଛୁଁ ମହାତ୍ମାଗାନ୍ଧୀ ବିଚାରିଲେ ଏକା ରାତିକେ କୋଟିଏ ଟଙ୍କା କରିପାରିବେ । କେତେ ଶେଠ ସାହୁକାର ତାଙ୍କ ପାଦତଳେ ଲକ୍ଷ ଲକ୍ଷ ଟଙ୍କା ଥୋଇ କୃତକୃତ୍ୟ ହେବାକୁ ଆପଣାର ପରମ ଭାଗ୍ୟ ମଣିବେ । ମାତ୍ର ଖାଲି ଶେଠ ସାହୁକାରଙ୍କ ଧନରେ ସ୍ୱରାଜ୍ୟ ପାଣ୍ଠି କରିବା ତାଙ୍କ ଇଚ୍ଛା ନୁହେଁ ଏବଂ ଏହା ଭାରତ ମହାସମିତିର ଉଦ୍ଦେଶ୍ୟ ନୁହେଁ । ଶେଠର ସହସ୍ର ଲକ୍ଷ ସଙ୍ଗେ ଦରିଦ୍ରର ପଇସାଏ ପାହୁଲାଏ ମିଶିବା ଦରକାର । ସେତୁବନ୍ଧ ନିର୍ମାଣରେ ହନୁମାନ, ନଳ, ନୀଳ, ଅଙ୍ଗଦ, ସୁଷେଣ, ପ୍ରଭୃତି ବଡ଼ ବଡ଼ ବୀରମାନେ ପାହାଡ଼ ପର୍ବତ ପକାଇଥିଲେ । ମାତ୍ର ବିଚରା ଗୁଣ୍ଡିଚି ଧୂଳିକଣା ପକାଇ ନିଜ ଅଂଶ ପୂରଣ କରିଥିଲା । ଅମ୍ଭମାନଙ୍କର ସ୍ୱରାଜ୍ୟସେତୁ ନିର୍ମାଣରେ ଧନୀ, ଦରିଦ୍ର, ସବଳ, ଦୁର୍ବଳ ସମସ୍ତଙ୍କର ଆଜି ନିଜ ନିଜ ଶକ୍ତିମତେ ସାହାଯ୍ୟ କରିବା ଦରକାର । ସୁଖର କଥା ସ୍ୱରାଜ୍ୟ ପାଣ୍ଠି ଉଠାଇବାରେ ଆଜି ଭାରତବାସୀ ସକଳ ଶ୍ରେଣୀର ଲୋକେ ଉଣା ଅଧିକେ ସହାୟତା କରି ଅଛନ୍ତି; ମଫସଲର ଯେଉଁ ଲୋକେ ତିନି ଓଳିରେ ଓଳିଏ ଖାଇବାକୁ ପାଉନାହାନ୍ତି ସେମାନେ ମଧ୍ୟ ପଇସାଏ ଦୁଇପଇସା ଦେଇଛନ୍ତି । ଅନେକ ଜାଗାରେ ଭିକ ମାଗି ପେଟ ପୋଷୁଥିବା ଲୋକ ମଧ୍ୟ ଅଧଲାଏ ପଇସାଏ ଦେଇଛନ୍ତି । ମହାତ୍ମାଗାନ୍ଧୀ ଏହି ଦରିଦ୍ରଙ୍କ ପଇସାକୁ କୋଟିନିଧି ବୋଲି ଜ୍ଞାନ କରନ୍ତି । ସତ୍ୟବାଦୀଠାରେ ଲୋକେ ପଇସାଏ ଅଧଲାଏ ଦେଲାବେଳେ ସେ ନିଜେ କି ଆଗ୍ରହରେ ତାହା ନିଜହାତରେ ନେଉଥାନ୍ତି ଏବଂ ପରେ ପ୍ରକାଶ କରିଥିଲେ ଯେ ଦରିଦ୍ର ଦୁର୍ଭିକ୍ଷପୀଡ଼ିତ ଲୋକଙ୍କର ଏହି ଅଧଲା ପାହୁଲାରେ ସ୍ୱରାଜ୍ୟ ମିଳିବ । ବମ୍ବେଇ କଲିକତାର ସେଠ ସାହୁକାର ମାରବାଡ଼ି ମହାଜନମାନଙ୍କଠାରୁ ଓଡ଼ିଶାର ହୀନ ଦରିଦ୍ର ମଜୁରିଆର ପର୍ଯ୍ୟନ୍ତ ସମସ୍ତେ ସ୍ୱରାଜ୍ୟ ଫଣ୍ଡକୁ ଦାନ କରିଅଛନ୍ତି । ମାତ୍ର ସରକାରପକ୍ଷୀୟ

ଅସହଯୋଗ ବିରୋଧୀ କେହି କେହି ଏ ପାର୍ଣ୍ଣିର ଗୌରବ କମାଇବା ଲାଗି ଏବେ କହୁଛନ୍ତି କି କେତେଜଣ ବଡ଼ଲୋକ ସିନା ଦେଲେ । ଦେଶର ଜନ ସାଧାରଣଙ୍କର ଏଥିରେ ସେପରି ଯୋଗ ନାହିଁ । ଏ ନାସ୍ତିକମାନେ କେବେ କିଛି ବୁଝିବେ ନାହିଁ, ବୁଝିଲେ ସୁଦ୍ଧା ମୁହଁରେ ମାନିବେ ନାହିଁ । ଏତେଦିନଯାଏ ଏମାନେ କହିଆସୁଥିଲେ ଅସହଯୋଗରେ ଦେଶର ଇତର ସାଧାରଣ କେତେଲୋକ କେବଳ ବୃଥାରେ ନାଚୁଛନ୍ତି । ମାତ୍ର ସଙ୍ଗତିସମ୍ପନ୍ନ ପଦସ୍ଥ ଲୋକଙ୍କର ଏଥିରେ ଯୋଗନାହିଁ । ଏବେ ସଙ୍ଗତିସମ୍ପନ୍ନ ଲୋକେ ପ୍ରକାଶ୍ୟ ଭାବରେ ଅର୍ଥ ସାହାଯ୍ୟ ଦ୍ୱାରା ସହଯୋଗିତା ଏବଂ ସହାନୁଭୂତି ଦେଖାଇଲେ । ତେଣୁ ବିରୋଧୀ ଦଳର ସ୍ୱର ବଦଳିଲା । ରାଜବଲ୍ଲଭ କୌଣସି କୌଣସି ପତ୍ରିକା ଲେଖୁଛନ୍ତି ସରକାର ଋଣ ମାଗିବାରୁ ଜୁନ୍ ମାସ ୨୦ ତାରିଖ ମଧ୍ୟରେ ୨୦ କୋଟି ଟଙ୍କା ଭାରତ ବର୍ଷରୁ ଉଠିଛି, ସ୍ୱରାଜ୍ୟ ଫଣ୍ଡ ନିମନ୍ତେ ଏକକୋଟି ଟଙ୍କା ଉଠାଇବାରେ ବାହାଦୁରୀ କଅଣ ? ସରକାର ଋଣ ନେଉଛନ୍ତି । ସୁଧ ଦେବେ ଏବଂ ଯଥା ସମୟରେ ଟଙ୍କା ଫେରସ୍ତ ଦେବେ । ଲୋକଙ୍କର ବିଶ୍ୱାସ ଯେ ସ୍ୱରାଜ୍ୟ ହେଲେ ଅସହଯୋଗୀମାନେ ଯେପରି ନ୍ୟାଯ୍ୟ ନିର୍ମଳ ଶାନ୍ତିପୂର୍ଣ୍ଣ ଉପାୟରେ କାର୍ଯ୍ୟ କରୁଛନ୍ତି ସ୍ୱରାଜ୍ୟ ସରକାରରେ ଏ ଋଣ ଟଙ୍କା ବୁଡ଼ିବ ନାହିଁ । ସରକାରଙ୍କ ଋଣ ସଂଗ୍ରହ ଯେପରି ପ୍ରଣାଳୀରେ ହୁଏ ତାହା ଅନେକେ ଜାଣନ୍ତି । କେହି ବଡ଼ଲୋକ ପଦ ବା ପଦକ ପାଇବା ଆଶାରେ ଋଣ ଦିଅନ୍ତି, କିଏ ବା ଆଉ କୌଣସି ପ୍ରକାର କ୍ଷମତା ବା ମାନ ମର୍ଯ୍ୟାଦାର ପ୍ରଲୋଭନରେ ପଡ଼ନ୍ତି । ସ୍ଥାନୀୟ ହାକିମମାନଙ୍କର ତ ବରାବର ଋଣ ଟଙ୍କା ଉଠାଇବାରେ ଉଦ୍ୟମ ଚାଲିଥାଏ । ଅବଶ୍ୟ ଯେଉଁମାନଙ୍କର ଘରେ ଟଙ୍କା ଖାଲି ପଡ଼ି ରହିଛି ଏପରି କେହି କେହି ସ୍ୱଇଚ୍ଛାରେ ଦିଅନ୍ତି ସତ, ମାତ୍ର ଗଲା ଯୁଦ୍ଧ ସମୟରେ କଂସା, ବଳଦ ବିକି ଯେଉଁ ଗରିବ ପ୍ରଜାମାନେ ସାତଟଙ୍କା ଆଠଅଣାର ଖଣ୍ଡିଏ ଖଣ୍ଡିଏ ଯୁଦ୍ଧ ଋଣ ସାର୍ଟିଫିକେଟ କିଣିବାକୁ ବାଧ୍ୟ ହୋଇଥିଲେ । ସରକାରଙ୍କର ମହାଜନ ହେବାର ସୁଖ ସେମାନେ ଦେହରେ ମୁଣ୍ଡରେ ଭୋଗିଛନ୍ତି । ସ୍ୱରାଜ୍ୟ ପାର୍ଣ୍ଣିକି ଦାନ ଇଚ୍ଛାଧୀନ । ଏହାହିଁ ବିଶେଷତ୍ୱ, ଏହାହିଁ ବାହାଦୁରୀ । ସ୍ୱରାଜ୍ୟ ଫଣ୍ଡ ବାସ୍ତବିକ ଜାତୀୟ ପାର୍ଣ୍ଣି । ଭାରତବାସୀ ସ୍ୱରାଜ୍ୟ ପାଇବା ନିମନ୍ତେ ଯେ କିପରି ଉଦ୍‌ବ୍ୟସ୍ତ ତାହା ଏହି ଗତ ଦୁଇମାସର କାର୍ଯ୍ୟରୁ ବେଶ୍ ପ୍ରକାଶ ପାଇଅଛି । ଅପ୍ରେଲ ମାସରେ ବେଜୱାଡ଼ାଠାରେ ପ୍ରସ୍ତାବ ସ୍ଥିର ହୁଏ । ସେତେବେଳକୁ ଅନେକ ଜିଲ୍ଲାରେ କଂଗ୍ରେସ କମିଟି ଏପର୍ଯ୍ୟନ୍ତ ବସିନାହିଁ । ଅସହଯୋଗର ସ୍ୱରଶବ୍ଦ କେତେ ଲୋକଙ୍କ କାନରେ ପଡ଼ିନାହିଁ । ଯଥାର୍ଥରେ ଭାରତର ଚାରିଆଡ଼େ ମଇମାସ ୧୫ ତାରିଖ ସବୁକ କାର୍ଯ୍ୟ ଆରମ୍ଭ ହେଲା । ଦେଢ଼ମାସ ମଧ୍ୟରେ ବେଜୱାଡ଼ା ନିର୍ଦ୍ଧାରଣ ଅନୁସାରେ କାର୍ଯ୍ୟ ହୋଇ

ଥିବା ଦ୍ୱାରା ଭାରତୀୟମାନଙ୍କର ନିଜଠାରେ ନିଜର ବିଶ୍ୱାସ ଦୃଢ଼ ହୋଇଅଛି । ବିଶେଷତଃ ନାନା ସ୍ଥାନରେ ସରକାରୀ କର୍ମଗୃହୀ ଏବଂ ସହଯୋଗୀ ଦଳର ବାଧା ଏବଂ ଆପତ୍ତି ସତ୍ତ୍ୱେ ଏ କାର୍ଯ୍ୟ ହୋଇଥିବାରୁ ଲୋକସାଧାରଣଙ୍କ ପ୍ରାଣରେ ସାହସ ଏବଂ ଦମ୍ଭ ଆସିଅଛି । ଏବେ ବିରୋଧୀମାନେ କହୁଛନ୍ତି—କାହିଁ ଜୁନ ମାସରେ ସ୍ୱରାଜ୍ୟ ହେଲା ? ଆମ୍ଭେମାନେ କହୁଁ ବେଜଓ୍ୱାଡ଼ା ପ୍ରସ୍ତାବ ଅନୁସାରେ ଯେ କାର୍ଯ୍ୟ ହୋଇଅଛି ତଦ୍ୱାରା ସ୍ୱରାଜ୍ୟର ରାସ୍ତା ଫିଟିଛି ଏବଂ ଦେଶବାସୀ ସ୍ୱରାଜ୍ୟ ସିଂହାସନ ଆଡ଼କୁ ଦୁଇ ଧାନ ପାହାଚ ଉପରକୁ ଉଠିଛନ୍ତି । ମହାତ୍ମାଗାନ୍ଧି ଲେଖିଛନ୍ତି ଅଗଷ୍ଟମାସ ପହିଲାରେ ଲୋକମାନ୍ୟ ତିଲକଙ୍କର ମୃତାହ ତିଥିରେ ସ୍ୱରାଜ୍ୟ ଘୋଷଣା ହୋଇ ପାରିଲେ ଭଲ ହୁଅନ୍ତା । ମାତ୍ର ଏତେଶୀଘ୍ର ସବୁ ଆୟୋଜନ ହୋଇପାରିବା ସହଜ ନୁହେଁ, ଅକ୍ଟୋବର ମାସରେ ସ୍ୱରାଜ୍ୟ ଘୋଷଣା ହେବା ଆବଶ୍ୟକ । ନ ହେଲେ ନିତାନ୍ତ ପକ୍ଷେ ଆଗାମୀ ବଡ଼ଦିନ ଛୁଟିରେ କଂଗ୍ରେସର ବୈଠକ ପୂର୍ବରୁ ସ୍ୱରାଜ୍ୟ ହେବ । ମାତ୍ର ଦେଶବାସୀ ଏଥିନିମନ୍ତେ ପ୍ରାଣପଣେ ଲାଗିବା ଦରକାର । ମୁଖିଆ କଂଗ୍ରେସ ନେତାମାନେ ଯଥାସାଧ୍ୟ ଯତ୍ନ ଏବଂ ଉଦ୍ୟମ କରୁଛନ୍ତି, ଦେଶର ସକଳ ଶ୍ରେଣୀର ଲୋକେ ସାହସ ଉତ୍ସାହ ଧୈର୍ଯ୍ୟ ସହିତ ଆପଣାର ଶକ୍ତି ସାମର୍ଥ୍ୟ ଦେଶ କାର୍ଯ୍ୟରେ ଲଗାଇଲେ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ସ୍ୱରାଜ୍ୟ ନିଶ୍ଚୟ ମିଳିବ ସନ୍ଦେହ ନାହିଁ । ସ୍ୱରାଜ୍ୟ ଭାରତବାସୀର ନ୍ୟାଯ୍ୟ ଦାବୀ ଏବଂ ଜନ୍ମଗତ ଅଧିକାର । ପ୍ରଭୁଙ୍କ କୃପାରୁ ସ୍ୱରାଜ୍ୟପ୍ରାପ୍ତିର ସମସ୍ତ ଶୁଭଲକ୍ଷଣ ଦେଖାଗଲାଣି ।

('ସମାଜ' ତା ୯ । ୭ । ୨୧)

———

## ବଗଙ୍କ ବେକ ଲମ୍ବିଲେ ମୀନଙ୍କ ବିପତ୍ତି

ଅମୃତବଜାର ପତ୍ରିକାର ଜଣେ ପତ୍ରପ୍ରେରକ ପାଟନାରୁ ଲେଖିଛନ୍ତି କି ବିହାର ଓଡ଼ିଶା ସରକାର ଏବେ ଖର୍ଚ୍ଚ କମାଇବାର ଘୋର ଉଦ୍ୟମରେ ଅଛନ୍ତି । ଯେତେଦୂର ଜଣାଯାଏ ରେଭିନ୍ୟୁ ବୋର୍ଡ ଆଉ ରହିବ ନାହିଁ । ରେଭିନ୍ୟୁ ବୋର୍ଡ ବୋଇଲେ ଜଣେ ହାକିମ । ସେ କମିଶନର ସାହେବଙ୍କ ଉପରେ । ରେଭିନ୍ୟୁ ବୋର୍ଡ ନ ରହିଲେ ତାଙ୍କ କାମ ଖଣ୍ଡି ଗଲା । ସେ ଯେଉଁସବୁ ଅପିଲ ବୁଝୁଥିଲେ ତାହା ଏଣିକି ରାଜସ୍ୱ ବିଭାଗୀୟ ମେମ୍ବର ବୁଝିବେ । ସରକାରଙ୍କ ସେକ୍ରେଟାରୀମାନଙ୍କ ତଳେ କେତେଗୁଡ଼ିଏ ସହ ସେକ୍ରେଟାରୀ ଥାଆନ୍ତି । ସେଗୁଡ଼ିକଙ୍କ କାମମଧ୍ୟ ଉଠିଯିବାର ଶୁଣାଯାଏ । ବିହାର ଓଡ଼ିଶାରେ ଏବେ ୫ଜଣ କମିଶନର ଅଛନ୍ତି । ୫ ଜଣ ନ ରହି ତିନିଜଣ ରହିବେ । ଛୋଟବଡ଼ ପ୍ରତି ବିଭାଗର କିରାଣୀ ଏବଂ ଆସିଷ୍ଟାଣ୍ଟମାନଙ୍କ ସଂଖ୍ୟା ମଧ୍ୟ କମିବ । ସରକାରଙ୍କର ପୂର୍ତ୍ତ ବିଭାଗ ଇଲାକାଟା ହିରଣ୍ୟଗର୍ଭ । ସେଥିରେ ଯେତେ ଦିଅ ସେସବୁ ଶୋଷି ନେଇଯାଏ । ଏ ବିଭାଗରେ ଖର୍ଚ୍ଚ କମିବାର ଶୁଣିଲେ ଅନେକ ଅବଶ୍ୟ ଆଶ୍ୱସ୍ତ ହେବେ । ଗଭର୍ଣ୍ଣମେଣ୍ଟ ଆର୍କିଟେକ୍ଟ ଅର୍ଥାତ୍ ସରକାରଙ୍କ ପ୍ରଧାନ ବିଶ୍ୱକର୍ମା ଆଉ ରହିବେ ନାହିଁ । ଦୁଇଜଣ ଚିଫ୍ ଇଞ୍ଜିନିୟରଙ୍କ ମଧ୍ୟରୁ ଜଣେ ଯିବେ । ପାଞ୍ଚ କି ଛଅଜଣ ସୁପରିଣ୍ଟେଣ୍ଡିଙ୍ଗ ଇଞ୍ଜିନିୟର ମଧ୍ୟରୁ ଦୁଇଜଣ ମାତ୍ର ରହିବେ । ୧ ଜଣ ଏକ୍‌ଜିକ୍ୟୁଟିଭ୍ (Executive) ଇଞ୍ଜିନିୟରଙ୍କ ମଧ୍ୟରୁ ୧୧ ଜଣ ଯିବେ । ସ୍ୱାସ୍ଥ୍ୟ ସମ୍ପର୍କୀୟ ପୂର୍ତ୍ତ ବିଭାଗ ଇଲାକା ଏକାବେଳକେ ଉଠିଯିବ । କେବଳ ସ୍ୱାସ୍ଥ୍ୟ ବିଭାଗୀୟ ଇଞ୍ଜିନିୟର ଜଣେ ପରାମର୍ଶ ଦେବାକୁ ରହିବେ । ଏ କାମଗୁଡ଼ିକ ଉଠିଗଲେ କେତେଜଣ ମୋଟା ଲୋକଙ୍କର ଦାନା ମରିଯିବ । ମାତ୍ର ଅନେକ ଟଙ୍କା ରହିବ । ଆମ୍ଭେମାନେ ବରାବର କହି ଆସୁଅଛୁଁ ବଗଙ୍କ ବେକ ଲମ୍ବିଲେ ମୀନଙ୍କର ବିପତ୍ତି । ସରକାରୀ କର୍ମଚାରୀଙ୍କ ସଂଖ୍ୟା ଏବଂ ସେମାନଙ୍କ ଦରମା ଯେତେ ଅଧିକ ହୁଏ ପ୍ରଜାଙ୍କର କରପୀଡ଼ା ତେତେ ବେଶୀ । ଇଂରେଜ ସରକାରଙ୍କ ଶାସନ ବିଧାନରେ ମୁଣ୍ଡଆଡ଼ୁଟା ଗଣ୍ଡି ଓ ଗୋଡ଼ ଅପେକ୍ଷା ଅଧିକ ଗରୁ । ଏଥିରେ କଳ ଓଲଟି ପଡ଼ିବା ଉପରେ ଆସି ବସିଲାଣି । ଯେଉଁ ଦେଶର ପ୍ରଜାମାନେ ଦୁଇଓଳାରେ ଓଳାଏ ପେଟପୁରା ଖାଇବାକୁ ପାଆନ୍ତି ନାହିଁ, ରହିବାକୁ ଯାହାଙ୍କର ବାସ ନାହିଁ କି ପିନ୍ଧିବାକୁ ବସ୍ତ୍ର ନାହିଁ

ସେମାନଙ୍କୁ ଶାସନ କରିବାଲାଗି ହଜାର ହଜାର ଟଙ୍କା ନେଇ ଶାସନ ଯନ୍ତ୍ରର ଯେ ମାଲିକ-ମାନେ ରହିଛନ୍ତି ଏଥିରେ ତଳ ଉପର ପରସ୍ପର ସଙ୍ଗେ ଖାପ ଖାଉଛି କି ? ଏହି ବିଷମ ଅବସ୍ଥା ନିବାରଣ ଲାଗି ଭାରତବାସୀ ସ୍ୱରାଜ୍ୟ ଲୋଡ଼ୁଛନ୍ତି । ପ୍ରଜାସାଧାରଣ ନିଜ ହାତରେ ଶାସନ ଯନ୍ତ୍ର ଚଲାଇବା ଅଧିକାର ଚାହାନ୍ତି ।

('ସମାଜ' ତା ୧ ।୭। ୨୧)

# ସଂକୀର୍ଣ୍ଣ ପ୍ରାଦେଶିକତାର ସ୍ଥାନ ନାହିଁ

ଗତ ଜୁନ ୩୦ ତାରିଖ ମଧ୍ୟରେ ବମ୍ବେଇ ସହର ଓ ଭିନ୍ନ ଭିନ୍ନ ଅଞ୍ଚଳରୁ ୭୦ ଲକ୍ଷ ଟଙ୍କା ଉପରେ ତିଲକ ସ୍ୱରାଜ୍ୟ ପାଣ୍ଠି ନିମନ୍ତେ ଉଠିଥିଲା । କଂଗ୍ରେସ ନିୟମ ଅନୁସାରେ ଏଥିରୁ ଚଉଠା ନିଖିଳ-ଭାରତ କଂଗ୍ରେସ କମିଟିକି ଆସିବ । ବାକି ଟଙ୍କା ବମ୍ବେଇ ପ୍ରାଦେଶିକ କଂଗ୍ରେସ କମିଟି ହାତରେ ରହିବ ଏବଂ ଉକ୍ତ କମିଟି ତାହା ଆପଣା ପ୍ରଦେଶରେ ଖର୍ଚ୍ଚ କରିପାରିବେ । ମାତ୍ର ଅନେକ ଜିଲ୍ଲା ସ୍ୱରାଜ୍ୟ ଫଣ୍ଡ ନିମନ୍ତେ ନିଜ ନିଜ ହିଂସା ଅନୁସାରେ ଟଙ୍କା ଉଠାଇ ପାରିନାହାନ୍ତି । ଉଦାହରଣ ସ୍ୱରୂପ କହିଲେ ଉତ୍କଳ ପ୍ରଦେଶ ଭାଗରେ ଚାରିଲକ୍ଷ ଉପରେ ପଡ଼ିଥିଲା । ଏଥିରୁ ଉତ୍କଳ କଂଗ୍ରେସ କମିଟି ବାଇଶି ହଜାର କି ପଚିଶ ହଜାର ସରିକି ଉଠାଇଛନ୍ତି ମାତ୍ର । ଉତ୍କଳପରି ଆଉ କେତେକ ପ୍ରଦେଶ ନିଜ ଅଂଶଠାରୁ ଊଣା ଉଠାଇଛନ୍ତି । ଅବଶ୍ୟ ଓଡ଼ିଶା ପରି ଏତେ କମ୍ ନୁହେଁ । ଏସବୁ ପ୍ରଦେଶରୁ ନିଖିଳ-ଭାରତ ସମିତିକି ଆଦାୟ ଟଙ୍କାରୁ ଏକ ଚତୁର୍ଥାଂଶ ଯିବ । ବାକି ଯାହା ରହିବ ଅସୁଲ ଖର୍ଚ୍ଚ ଯାଇ ଅବଶିଷ୍ଟ ଟଙ୍କାରେ ଏସବୁ ପ୍ରଦେଶରେ ଅତି ସାମାନ୍ୟ କଂଗ୍ରେସ କାର୍ଯ୍ୟ ହୋଇପାରିବା କଷ୍ଟକର । ବମ୍ବେଇ ଅଧିକ ଟଙ୍କା ଦେଇଅଛି ବୋଲି ସେ ସମୁଦାୟ ଟଙ୍କା ଆପଣା ଖର୍ଚ୍ଚରେ ଲଗାଇବାକୁ ଚାହେଁ ନାହିଁ । ଅନ୍ୟାନ୍ୟ ପ୍ରଦେଶରେ କାମ ଚାଲିବ ଏବଂ ମୋଟରେ ସମଗ୍ର ଭାରତରେ କଂଗ୍ରେସ କାର୍ଯ୍ୟ ବିସ୍ତୃତ ହେବ, ଏଥିଲାଗି ବମ୍ବେଇ ପ୍ରାଦେଶିକ କଂଗ୍ରେସ କମିଟି ସ୍ୱରାଜ୍ୟ ଫଣ୍ଡର ବ୍ୟୟ ସମ୍ବନ୍ଧେ କେତେକ ନିୟମ କରିଅଛି । ଏ ବିଷୟରେ ବମ୍ବେଇ ପ୍ରାଦେଶିକ କଂଗ୍ରେସ କମିଟିରେ ନିମ୍ନଲିଖିତ ମର୍ମରେ ପ୍ରସ୍ତାବମାନ ଧାର୍ଯ୍ୟ ହୋଇଅଛି ।

ବମ୍ବେଇ ପ୍ରଦେଶରୁ ସ୍ୱରାଜ୍ୟ ଫଣ୍ଡ ନିମନ୍ତେ ଉଠିଥିବା ଟଙ୍କା କେବଳ ସେ ପ୍ରଦେଶର ଅଭାବ ଦୂର କରିବା ଉଦ୍ଦେଶ୍ୟରେ ସଂଗ୍ରହ କରାଯାଇନାହିଁ । ବେଜଓ୍ୱାଡ଼ାଠାରେ ଧାର୍ଯ୍ୟ ହୋଇଥିବା ଦାୟିତ୍ୱ ପୂରଣ କରିବାଲାଗି ସମଗ୍ର ଭାରତବର୍ଷ ଧର୍ମତଃ ବାଧ୍ୟ । ସେହି କର୍ତ୍ତବ୍ୟ ପୂରଣ କରିବା ଏବଂ ଅନ୍ୟାନ୍ୟ ପ୍ରଦେଶରେ କଂଗ୍ରେସ କାର୍ଯ୍ୟ ପ୍ରଚାର ଓ ପ୍ରସାର ସହାୟତା କରିବା ନିମନ୍ତେ ବମ୍ବେଇରୁ ଆଦାୟ ହୋଇଥିବା ଟଙ୍କାରୁ ପ୍ରୟୋଜନ ଅନୁସାରେ ଖର୍ଚ୍ଚ ହେବା ଉଚିତ । ସଂଗୃହୀତ ଟଙ୍କାର ଖର୍ଚ୍ଚ ହିସାବ ଆଦି ରଖିବା ଏବଂ ଯଥାବିଧିରେ ପରିଚାଳନା କରିବା ଲାଗି ଏକ କମିଟି ନିଯୁକ୍ତ ହୋଇଅଛି । ଏହି କମିଟିରେ

ବମ୍ବେଇର ମୁଖିଆ ସେଠ, ସାହୁକାର ଏବଂ ଅନ୍ୟାନ୍ୟ ପଦସ୍ଥ ବ୍ୟକ୍ତିମାନେ ମେମ୍ବର ହୋଇ ଅଛନ୍ତି । ପ୍ରଥମେ ବମ୍ବେଇ ପ୍ରଦେଶରେ ଅସହଯୋଗ କାର୍ଯ୍ୟ ନିମନ୍ତେ ଯାହା ଖର୍ଚ୍ଚ ଦରକାର ହେବ ତାହା ଏ ଫଣ୍ଡରୁ ଦିଆଯିବ । ତାହା ବାଦ ନିଖିଲ ଭାରତ କଂଗ୍ରେସ କମିଟିର ପରାମର୍ଶ ଅନୁସାରେ ଭିନ୍ନ ଭିନ୍ନ ପ୍ରଦେଶରେ ଅରଟ ପ୍ରଚାର, ଦୁର୍ଭିକ୍ଷ ସାହାଯ୍ୟ, ନିଶାନିବାରଣ, ଜାତୀୟ ବିଦ୍ୟାଳୟ ସ୍ଥାପନ, ଖଦଡ଼ ଲୁଗାବୁଣା ପ୍ରଭୃତି କଂଗ୍ରେସ ନିର୍ଦ୍ଦିଷ୍ଟ କାର୍ଯ୍ୟରେ ବ୍ୟୟ କରାଯିବ । ବମ୍ବେଇବାସୀଙ୍କର ଏ ଉଦାରତାରୁ ସେମାନଙ୍କର ଜାତୀୟ ଭାବ ଏବଂ ସ୍ୱଦେଶ ପ୍ରେମର ପରିଚୟ ମିଳୁଅଛି । ବଙ୍ଗଳା ବଙ୍ଗାଳୀଙ୍କ ଲାଗି, ବିହାର ବିହାରୀଙ୍କ ଲାଗି ବା ଓଡ଼ିଶା ଓଡ଼ିଆଙ୍କ ଲାଗି ଏ ପ୍ରାଦେଶିକ ସଙ୍କୀର୍ଣ୍ଣତା ଇଂରେଜ ରାଜତ୍ୱର ଫଳ । କେବଳ ସରକାରୀ ଚାକିରୀ ବା ରାଜଦ୍ୱାରର ଫଳ । ସମ୍ମାନ ଲାଗି ଏତେଦିନ ଏହି ଭାବରେ ଭାରତବାସୀ ବାନ୍ଧିଆପିଟା ହେଉଥିଲେ ଆଜି ସେ ମୋହ ଦୂର ହୁଅଛି । ଏବେ ଭିନ୍ନ ଭିନ୍ନ ପ୍ରଦେଶର ଲୋକେ ସଙ୍କୀର୍ଣ୍ଣ ପ୍ରାଦେଶିକ ସୀମା ଡେଇଁ ମହାଭାରତ ଭାବରେ ଉତ୍ସାହିତ ହୋଇଅଛନ୍ତି ।

"ଭାଇ ଭାଇ ବୋଲି ପରସ୍ପର ପାଶେ
ଉଭା ଆଜି ସର୍ବେ ମନର ଉଲ୍ଲାସେ"

ପ୍ରତ୍ୟେକ ଭାରତବାସୀ, ପ୍ରତ୍ୟେକ ପ୍ରଦେଶ ଏଥିକି ଜାତୀୟ କାର୍ଯ୍ୟରେ ଏହିପରି ଉଦାରତା ଏବଂ ମମତା ଦେଖାଇବା ଉଚିତ । ଏହା ଏକା ସ୍ୱରାଜ୍ୟ ପ୍ରାପ୍ତିର ପନ୍ଥା ଏବଂ ଲକ୍ଷଣ ।

('ସମାଜ', ତା ୧୬ । ୭ । ୨୧)

---

# ସରକାରୀ ଲୋକଙ୍କ ଆଡ଼ୁ ବାଧା

ଅସହଯୋଗୀମାନଙ୍କୁ ଦମନ କରିବାପାଇଁ ସରକାରୀ ହାକିମମାନେ ଭାରତୀୟ ପେନାଲକୋଡ଼ ଓ କ୍ରିମିନାଲ ପ୍ରସିଡ଼ିଓର କୋଡ଼ର ୧୪୪ ଓ ୧୦୭ ପ୍ରଭୃତି ଦଫାମାନ ବ୍ୟବହାର କରୁଛନ୍ତି ଓ ଏ ଦଫାର ଅପରାଧୀମାନଙ୍କର ସାଧାରଣ କୋର୍ଟରେ ବିଚାର କରାଯାଉଛି । ଯୁଦ୍ଧବେଳେ ରାଜଦ୍ରୋହୀମାନଙ୍କର ବିଚାରପାଇଁ ଭାରତରକ୍ଷା ଆଇନ ନାମରେ ଏକ ଆଇନ ବାହାର ହୋଇଥିଲା । ଏହା ଯୁଦ୍ଧ ଶେଷ ସଙ୍ଗେ ସଙ୍ଗେ ଲୋପ ପାଇବାର କଥା । କିନ୍ତୁ ତାହା ନ କରି ଏ ଆଇନ ବଳରେ ଏ ଦେଶର ସହସ୍ର ସହସ୍ର ଯୁବକଙ୍କୁ କର୍ତ୍ତାମାନେ ବହୁତ ପ୍ରକାର ଯନ୍ତ୍ରଣା ଦେଇଛନ୍ତି । ଏ ଆଇନ ଅନୁସାରେ ଦୋଷୀର ବିଚାର ସାଧାରଣ କୋର୍ଟରେ ନ ହୋଇ କୌଣସି ଜଣେ ଦୁଇଜଣ ବିଚାରପତିଙ୍କ ଦ୍ୱାରା ବିନା ଓକିଲ ମୁକ୍ତିଆରରେ ଦଣ୍ଡ ଦିଆଯାଏ । ବର୍ତ୍ତମାନ ଉତ୍ତର-ପଶ୍ଚିମ ସୀମାନ୍ତପ୍ରଦେଶରେ ସର୍ବଦା ଗୋଳମାଳ ଓ ଅଶାନ୍ତି ଲାଗିଛି । ବେଳେ ବେଳେ ଇଂରେଜ ସରକାରଙ୍କ ସହିତ ମହାସୁଦ ଓ ମହାଜରୀନମାନଙ୍କର ଘାଘାତକ ମାରପିଟ ହେଉଛି । ଏହା ଫଳରେ ଅଧିବାସୀ-ମାନଙ୍କର ଧନଜୀବନ ବହୁତ ନଷ୍ଟ ହୁଏ ଏବଂ ଭାରତ ସରକାର ଏହି ଦୋହି ଦେଇ ସୈନ୍ୟବିଭାଗରେ କୋଟି କୋଟି ଟଙ୍କା ଖର୍ଚ୍ଚ କରୁଛନ୍ତି । ସେଠା ଅବସ୍ଥା ଅନୁସନ୍ଧାନ କରିବା କାରଣ କଂଗ୍ରେସ ପକ୍ଷରୁ ଏକ ବେସରକାରୀ କମିଶନ ବସିଛି । କମିଶନ ମେମ୍ବରମାନେ ଜୁଲାଇ ୯ ତାରିଖ ଦିନ ସୀମାନ୍ତ ପ୍ରଦେଶ ଆଡ଼କୁ ବାହାରିଥିଲେ । ବାଟରେ ସେଠାର ଚିଫ୍ କମିଶନର ଭାରତ ରକ୍ଷା ଆଇନ ଅନୁସାରେ ନୋଟିସ ଜାରି କଲେକି, "ମୁଁ ତୁମ୍ଭମାନଙ୍କୁ ଏ ଦେଶରେ ପ୍ରବେଶ କରାଇ ଦେବି ନାହିଁ କିମ୍ବା ତୁମ୍ଭେମାନେ ଏ ରାଜ୍ୟର ସମ୍ବାଦ ଜାଣିପାରିବ ନାହିଁ । ମୋର ଏ ହୁକୁମ ମାନି ଏ ଦେଶରୁ ବାହାରି ନ ଗଲେ ପୁଲିସ ଫୌଜଦ୍ୱାରା ବାହାର କରିଦେବି ।"

କମିଶନ ମେମ୍ବରମାନେ ଏ ହୁକୁମ ଅମାନ୍ୟ କରି ରାଜ୍ୟରେ ପ୍ରବେଶ କରିବାପାଇଁ ପ୍ରସ୍ତୁତ ଥିଲେ । କିନ୍ତୁ କଂଗ୍ରେସ ଆଇନ ଅମାନ୍ୟ କରିବାକୁ ଏବେ ଉପଦେଶ ନ ଦେଇ ଥିବାରୁ ଏମାନେ ବାଧ୍ୟ ହୋଇ ଫେରି ଆସିଛନ୍ତି । ଭାରତର ନାନାସ୍ଥାନରେ ସଭାସମିତି

କରିବାପାଇଁ ବା କଂଗ୍ରେସ ପକ୍ଷରୁ କୌଣସି କୌଣସି ଘଟନା ଅନୁସନ୍ଧାନ କରିବାପାଇଁ କର୍ତ୍ତାମାନେ ବେଳୁଁ ବେଳ ଅଧିକ ବାଧା ଦେଉଛନ୍ତି । ମହାତ୍ମାଗାନ୍ଧୀଙ୍କ ଲେଖାରୁ ଯେପରି ଅନୁମାନ କରାଯାଏ ଏସବୁ ଅତ୍ୟାଚାର ଫଳରେ କଂଗ୍ରେସରେ ଆଇନ ଅମାନ୍ୟ କଥା ଯଥା ସମୟରେ ସ୍ଥିର ହେବ । ଏହାଛଡ଼ା ଆଉ ଅସହଯୋଗୀଙ୍କର ଉପାୟ ବା କଣ ?

('ସମାଜ ତା ୯ । ୪ । ୨୧)

---

# କଂଗ୍ରେସ କାର୍ଯ୍ୟ ଜାତୀୟ କାର୍ଯ୍ୟ

ବଡ ସୁଖର ବିଷୟ ଯେ ଏଥି ମଧ୍ୟରେ ସମ୍ବଲପୁର ଭାଇମାନେ ଉତ୍କଳ ସମ୍ମିଳନୀର ଆଗାମୀ ଅଧିବେଶନ ଝାରସୁଗଡ଼ାରେ କରିବା ଲାଗି ଆୟୋଜନ ଆରମ୍ଭ କରି ଅଛନ୍ତି । ଅଭ୍ୟର୍ଥନା ସଭା ଗଠିତ ହୋଇଅଛି । ସଭାପତି ନିର୍ବାଚନ ନିମନ୍ତେ ସ୍ଥାୟୀ ସଭାକୁ ପତ୍ର ଲେଖାଗଲାଣି । ସମ୍ବଲପୁର ବାସୀଙ୍କର ଏ ଉତ୍ସାହ ଓ କାର୍ଯ୍ୟର ତତ୍ପରତା ବାସ୍ତବିକ ପ୍ରଶଂସନୀୟ । ଆମ୍ଭେମାନେ ଆଶାକରୁ ସମ୍ବଲପୁର ଲୋକେ ଯେ ପ୍ରକାର ବନ୍ଦରେ ସମ୍ମିଳନୀ କରିବା ସ୍ଥିର କରିଅଛନ୍ତି ମଧ୍ୟପ୍ରଦେଶ ଅନ୍ତର୍ଗତ ଓଡ଼ିଆ ଭାଇମାନଙ୍କର ସେଥିରେ କୌଣସି ଅସୁବିଧା ବା ଆପତ୍ତି ହେବନାହିଁ । ଯଥାର୍ଥରେ ପଦ୍ମପୁରରେ ସମ୍ମିଳନୀର ବୈଠକ ପକ୍ଷେ ନାନା ଅସୁବିଧା ଘଟିବାର କଥା । ପୁଣି ସମ୍ବଲପୁରର ବିନା ସାହାଯ୍ୟ ସହାନୁଭୂତିରେ ପଦ୍ମପୁର ବା ମଧ୍ୟପ୍ରଦେଶର ଅନ୍ୟ କୌଣସି ଓଡ଼ିଆ ଅଞ୍ଚଳରେ ସମ୍ମିଳନୀ ହୋଇପାରିବା ଅସମ୍ଭବ । ଏହିସବୁ ଓଡ଼ିଆ ଅଞ୍ଚଳ ସମ୍ବଲପୁରର ଅଂଶ ଥିଲା । ସମ୍ବଲପୁର ଅଦ୍ୟାପି ଏ ସବୁ ଅଞ୍ଚଳକୁ ଦାବିକରେ ଏବଂ ଏ ଅଞ୍ଚଳ ଲୋକେ ସମ୍ବଲପୁର ସଙ୍ଗେ ମିଳିବାକୁ ଚାହାନ୍ତି । ସରକାର ସମ୍ବଲପୁରରୁ ଫୁଲଝର, ପଦ୍ମପୁର, ଖଡ଼ିଆଳ, ଚନ୍ଦ୍ରପୁର ପ୍ରଭୃତିକି ଅଲଗା କରିଦେଲେ ସୁଦ୍ଧା ସେ ସବୁକୁ ଆପଣାର ଅଙ୍ଗବୋଲି ଜ୍ଞାନ କରି ବର୍ତ୍ତମାନ ସମ୍ମିଳନୀର ଅଧିବେଶନ ଲାଗି ସମ୍ବଲପୁର ଅଗ୍ରସର ହେବା ଠିକ୍ ହୋଇଅଛି । ମଧ୍ୟପ୍ରଦେଶ ଅନ୍ତର୍ଗତ ଓଡ଼ିଆ ଭାଇମାନେ ଏବେ ସୁଦ୍ଧା ଜାତୀୟ ଭାବରେ ସମ୍ବଲପୁରରୁ ଅବିଚ୍ଛିନ୍ନ ଏବଂ ଅବିଭକ୍ତ ବୋଲି ଝାରସୁଗୁଡ଼ାଠାରେ ସମ୍ମିଳନୀର ଆଗାମୀ ଅଧିବେଶନର ସଫଳତା ନିମନ୍ତେ ସର୍ବତୋଭାବରେ ଯତ୍ନ କରିବେ ସନ୍ଦେହ ନାହିଁ ।

ମାତ୍ର ସମ୍ମିଳନୀର ସ୍ଥାୟୀ ସଭା ଯେ ଏ ପର୍ଯ୍ୟନ୍ତ ଗଠିତ ନ ହେଲା ଏହାକି ଘୃଣା ଲଜ୍ଜାର କଥା ! ସମ୍ବଲପୁରର ଅଭ୍ୟର୍ଥନା ସଭା ସଭାପତି ନିର୍ବାଚନ ଆଦି କେତେକ ବିଷୟରେ ସ୍ଥାୟୀ ସଭାର ସମ୍ପାଦକଙ୍କୁ ପତ୍ର ଲେଖିଲେଣି । "ଶିରୋନାସ୍ତି, ଶିରୋବ୍ୟଥା" ସ୍ଥାୟୀସଭା ଗଠିତ ହୋଇ ନ ଥିବା ସ୍ଥଳେ ସମ୍ପାଦକ ଯେ ସମ୍ବଲପୁର ଅଭ୍ୟର୍ଥନା ସଭାର ପତ୍ରର କି ଉତ୍ତର ଦେବେ ଆମ୍ଭେମାନେ ଜାଣି ପାରୁନାହୁଁ । ପୂର୍ବ ବର୍ଷମାନଙ୍କରେ ସ୍ଥାୟୀସଭା ଗଠନରେ ଏହିପରି ବିଳମ୍ବ ଘଟିଥିଲା । କୌଣସି ଜିଲ୍ଲାରେ ଜିଲ୍ଲା ସମିତି ଆଦୌ

ଗଠିତ ହୋଇ ନ ଥିଲା କିମ୍ବା ସେ ଜିଲାରୁ କେହି ପ୍ରତିନିଧି ସ୍ଥାୟୀ ସଭାକୁ ନିମନ୍ତ୍ରିତ ହୋଇ ନ ଥିଲେ । ଏପରି ଜିଲା ଲାଗି ଅନ୍ୟାନ୍ୟ ଜିଲାରୁ ନିର୍ବାଚିତ ସ୍ଥାୟୀସଭାର ମେମ୍ବରମାନେ କେତେଜଣଙ୍କୁ ମନୋନୀତ କରି କାର୍ଯ୍ୟ ନିର୍ବାହ କରି ପାରନ୍ତି । ଯଥାର୍ଥ କହିଲେ ସମ୍ମିଳନୀ ବିଷୟରେ ଉଣା ଅଧିକେ ଯେଉଁମାନେ ପ୍ରତି ଜିଲାରେ ଅଗ୍ରସର ହୋଇ କାର୍ଯ୍ୟ କରୁଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ବର୍ତ୍ତମାନ କଂଗ୍ରେସ କାର୍ଯ୍ୟରେ ବ୍ୟସ୍ତ ଅଛନ୍ତି । କଂଗ୍ରେସ କାର୍ଯ୍ୟ ଅବଶ୍ୟ ଜାତୀୟ କାର୍ଯ୍ୟ, ଏହାଦ୍ୱାରା ମୁଖ୍ୟ ଭାବରେ ହେଉ ବା ଗୌଣ ଭାବରେ ହେଉ ସମ୍ମିଳନୀର କାର୍ଯ୍ୟ ଅନେକ ପରିମାଣରେ ସାଧିତ ହେଉଅଛି ।

ସମ୍ମିଳନୀ ମଧ୍ୟ କଂଗ୍ରେସର ଉଦ୍ଦେଶ୍ୟ ଗ୍ରହଣ କରିଅଛି । ତଥାପି ସମ୍ମିଳନୀ ସମ୍ପୂର୍ଣ୍ଣରୂପେ କଂଗ୍ରେସ ଆନ୍ଦୋଳନରେ ଅଙ୍ଗୀଭୂତ ନ ହୋଇଥିବା ପର୍ଯ୍ୟନ୍ତ ସ୍ୱତନ୍ତ୍ର ଭାବରେ ତାହାର କାର୍ଯ୍ୟ ଚାଲିବା ଉଚିତ । ଏଥିଲାଗି ଦେଶର ସକଳଶ୍ରେଣୀ ଓ ସକଳ ମତର ଲୋକଙ୍କର ଯତ୍ନବାନ ହେବା କର୍ତ୍ତବ୍ୟ । କଂଗ୍ରେସ କାର୍ଯ୍ୟରେ ଯୋଗ ନ ଦେଇ ଯେଉଁ ଦଳର ଲୋକେ ଅଲଗା ଅଛନ୍ତି, ସେମାନଙ୍କର ସମୟ ଅଛି, ସମ୍ମିଳନୀ କାର୍ଯ୍ୟରେ ଲାଗିଯିବାକୁ ସେମାନଙ୍କୁ ଆମ୍ଭେମାନେ ଅନୁରୋଧ କରୁଁ । ଏହାବୋଲି କଂଗ୍ରେସ କାର୍ଯ୍ୟରେ ଯେଉଁମାନେ ନିଯୁକ୍ତ ଅଛନ୍ତି ସେମାନେ ସମ୍ମିଳନୀ ବିଷୟରେ ଉଦାସୀନ ରହିବା କଦାପି ଉଚିତ ନୁହେଁ । ବରଂ କଂଗ୍ରେସ ସମ୍ପର୍କରେ ସେମାନେ ସହର ମଫସଲରେ କାର୍ଯ୍ୟ କରୁଥିବାରୁ ସଙ୍ଗେ ସଙ୍ଗେ ସମ୍ମିଳନୀ କାର୍ଯ୍ୟ କରିବାଲାଗି ସେମାନଙ୍କର ସୁବିଧା ଅଛି । ସମ୍ମିଳନୀ କଂଗ୍ରେସ ଉଦ୍ଦେଶ୍ୟ ଗ୍ରହଣ କରିଥିବାରେ ସମ୍ମିଳନୀ କାର୍ଯ୍ୟ କରିବା ସେମାନଙ୍କ ନୀତି ବିରୁଦ୍ଧ ହେବନାହିଁ । ସେମାନଙ୍କ ମଧ୍ୟରୁ କେହି ଇଚ୍ଛାକଲେ ସମ୍ମିଳନୀର ଜିଲା ସମିତି ବସାଇ ସ୍ଥାୟୀ ସଭାକୁ ନିର୍ଦ୍ଦିଷ୍ଟ ସଂଖ୍ୟକ ସଭ୍ୟ ନିର୍ବାଚନ କରି ପଠାଇପାରନ୍ତି । ଏ ବିଷୟର ଗୁରୁତ୍ୱ ଏବଂ ସତ୍ୱରତା ପ୍ରତି ଆମ୍ଭେମାନେ ଉତ୍କଳଭକ୍ତ ସମସ୍ତ ଦଳ ଓ ମତର ଲୋକଙ୍କ ଦୃଷ୍ଟି ଆକର୍ଷଣ କରୁଅଛୁଁ । ଚଳିତ ଜୁଲାଇ ମାସ ମଧ୍ୟରେ ସେମାନେ ନିଜ ନିଜ ଜିଲାରେ ଜିଲାସମିତି ସ୍ଥାପନ କରି ଏବଂ ସ୍ଥାୟୀସଭାକୁ ସଭ୍ୟ ମନୋନୀତ କରି ସ୍ଥାୟୀସଭାର ସମ୍ପାଦକ ପୁରୀର ଓକିଲ ବାବୁ ବନମାଳୀ ଦାଶଙ୍କୁ ଜଣାଇଲେ କାର୍ଯ୍ୟର ସୁବିଧା ହେବ ।

('ସମାଜ', ତା ୧୬ । ୭ । ୨୧)

———

# ମାହେନ୍ଦ୍ର ବେଳା ଉପସ୍ଥିତ

ଜୁନ୍ ମାସ ୩୦ ତାରିଖ ମଧ୍ୟରେ, ଉତ୍କଳ ପ୍ରଦେଶ ହିସାବରେ ଯେତେ ମେମ୍ବର ଟଙ୍କା ଓ ଅରଟ ପ୍ରସ୍ତୁତ ରଖିବାର ଥିଲା ତାହାର କୌଣସିଟାର ଛଅ ଭାଗରୁ ଏକଭାଗ ସୁଦ୍ଧା ପୂର୍ଣ୍ଣ ହୋଇପାରିନାହିଁ । ଏଥିରେ ଉତ୍କଳର ଅସହଯୋଗବିରୋଧୀ କେହି କେହି ଭାରି ଖୁସି ହୋଇପାରନ୍ତି । ଯେଉଁ ସରକାରୀ ବା ବେସରକାରୀ ଲୋକେ ଅସହଯୋଗ ଆନ୍ଦୋଳନରେ ଏ ପ୍ରଦେଶରେ ବାଧା ଦେଉଥିଲେ, ସେମାନେ ଉପର ମାଲିକଙ୍କଠାରୁ ନ ହେଲେ ଆପେ ଆପଣାଠାରୁ ସାବାସ ପଦ ପାଇ ପାରନ୍ତି । ମାତ୍ର ଯେଉଁମାନେ ଓଡ଼ିଶାର ଅବସ୍ଥା ଜାଣନ୍ତି ସେମାନଙ୍କର ଏ ଫଳରେ ନିରାଶ ବା ନିରାନନ୍ଦ ହେବାର କୌଣସି କାରଣ ନାହିଁ । ଅବଶ୍ୟ ଭାରତର ଅନ୍ୟାନ୍ୟ ପ୍ରଦେଶ ସଙ୍ଗେ ଉତ୍କଳ ନିଜର ହିଂସା ପୂରଣ କରି ନ ପାରି ସମାନସ୍କନ୍ଧ ହୋଇ ବସିବାକୁ ଲଜ୍ଜିତ ହୋଇପାରେ । ସେଥିଯୋଗୁଁ ଆମ୍ଭେମାନେ ସହଯୋଗୀ ଅସହଯୋଗୀ ସମସ୍ତଙ୍କୁ କହିଥିଲୁକି ଯେତେବେଳେ ଉତ୍କଳର ମାନ ଉପରେ ପଡ଼ୁଛି, ନିର୍ଦ୍ଦିଷ୍ଟ ପରିମାଣର ମେମ୍ବର ସ୍ୱରାଜ୍ୟ ପାଣ୍ଠି ଲାଗି ଟଙ୍କା ଓ ଅରଟ ପ୍ରସ୍ତୁତ କରିବା ବିଷୟରେ ସମସ୍ତେ ଲାଗି ପଡ଼ିବା ଆବଶ୍ୟକ । ପୁଣି ଏ ଜନପଦ ଅତି ନିର୍ଦ୍ଦୋଷ ବିଷୟ । ଶେଷକୁ ପଣ୍ଡିତ ମଦନମୋହନ ମାଲବ୍ୟ ଏଥିର ପ୍ରୟୋଜନୀୟତା ସ୍ୱୀକାର କଲେ । ମାତ୍ର ଦୁଃଖର କଥା ଉତ୍କଳର କେତେଜଣ ସହଯୋଗୀ ରାଜବଲ୍ଲଭ ମହାପାତ୍ର ବୋଲି ପରିଚିତ ହେବାଲାଗି ବା ଅନ୍ୟ କି ଅଭିପ୍ରାୟରେ କେଜାଣି, ଏ ଜାତୀୟ କାର୍ଯ୍ୟରେ କୌଣସି ପ୍ରକାର ସାହାଯ୍ୟ ସହାନୁଭୂତି ନ ଦେଖାଇ ବରଂ ପ୍ରତିକୂଳରେ ବରାବର ଉଦ୍ୟମ କରି ଆସୁଛନ୍ତି । ନାନା ପ୍ରତିକୂଳ ଅବସ୍ଥା ମଧ୍ୟରେ ଉତ୍କଳର ଅସହଯୋଗୀ କର୍ମୀମାନେ ଏ ପ୍ରଦେଶରେ ଅତି ଅଳ୍ପସମୟରେ ଯାହା କରିବାକୁ ସମର୍ଥ ହୋଇଅଛନ୍ତି ତାହା ବେଶ୍ ଆଶାଜନକ ବୋଲିବାକୁ ହେବ । ଅନ୍ୟାନ୍ୟ ପ୍ରଦେଶର କୌଣସି କୌଣସି ବିଶିଷ୍ଟ-ନେତା ମଧ୍ୟ ଏହିପରି ମତ ବ୍ୟକ୍ତ କରିଅଛନ୍ତି । ଅନେକଙ୍କର ମନେଥିବ ଉତ୍କଳ-ସମ୍ମିଳନୀ ୟୁରୋପ ଯୁଦ୍ଧକୁ ଯେ ଡାକ୍ତର ଜଣଙ୍କୁ ପଠାଇଥିଲେ, ତାଙ୍କ ବେତନ ଓ ଅନ୍ୟାନ୍ୟ ଖର୍ଚ୍ଚ ବାବତରେ ସରକାର ସମ୍ମିଳନୀଠାରୁ ଛ ସାତ ହଜାର ଟଙ୍କା ବାରମ୍ବାର ଲୋଡ଼ୁଥିଲେ ସୁଦ୍ଧା, କ୍ରମାଗତ ୩।୪ ବର୍ଷକାଳ ସମ୍ମିଳନୀର ମୁଖିଆ ସଙ୍ଗତିସମ୍ପନ୍ନ ଜମିଦାର ଓ ଓକିଲ ନେତାମାନେ ବହୁ ଯତ୍ନକରି ସୁଦ୍ଧା ତାହା ଏ ଦେଶରୁ ଉଠାଇବାକୁ ସକ୍ଷମ

ହୋଇ ନ ଥିଲେ । ମାତ୍ର ଆଜି ମାସେ ଦେଢ଼ମାସ ମଧ୍ୟରେ ଏହି ପ୍ରଦେଶରୁ ତିଳକ ସ୍ୱରାଜ୍ୟ ଫଣ୍ଡ ନିମନ୍ତେ କୋଡ଼ିଏ ହଜାର ଉପରେ ଟଙ୍କା ଉଠିଅଛି । ଚାଳିଶ ହଜାର ମେମ୍ବରଙ୍କ ଠାରୁ ୫୦। ହିସାବରେ (ଆଜିର ହିସାବରେ ୨୫ ପଇସା) ଦଶହଜାର ଟଙ୍କା ମିଳିଅଛି । ନଗଦ ତିରିଶ ବତିଶ ହଜାର ଟଙ୍କା ଏହି କେତେଦିନ ମଧ୍ୟରେ ଉତ୍କଳରୁ ଆଦାୟ ହେବା ସହଜକଥା ନୁହେଁ ।

ପୁଣି ଏଥିରେ ଧନାଢ୍ୟ ଓ ସଂଗତିସମ୍ପନ୍ନବ୍ୟକ୍ତି ବେଶି କେହି ଶହ ହଜାର ନେଇ ନାହାନ୍ତି । ଦରିଦ୍ର ଦୁର୍ଭିକ୍ଷ ପୀଡ଼ିତ ଓଡ଼ିଆ ପ୍ରଜାମାନେ ପଇସାଏ ପାଞ୍ଚଲଏ ଦେବାଦ୍ୱାରା ଏ ଟଙ୍କା ଉଠିଅଛି । ବେଜୱାଡ଼ା ନିର୍ଦ୍ଧାରଣ ଅନୁସାରେ ଉତ୍କଳ ପ୍ରଦେଶ ଭାଗରେ ମେମ୍ବର ଆଦିର ଯେ ପରିମାଣ ନିରୂପିତ ହୋଇଥିଲା, ସେଥିରେ ଉତ୍କଳ ଗଡ଼ଜାତ ରାଜ୍ୟ ଏବଂ ଓଡ଼ିଶା ବାହାରରେ ଥିବା ଉତ୍କଳଭାଷୀ ଜିଲାମାନଙ୍କୁ ହିସାବରେ ନିଆଯାଇ-ଥିଲା । ମାତ୍ର ଗଡ଼ଜାତରେ କଂଗ୍ରେସ କାର୍ଯ୍ୟ ହୋଇନାହିଁ କିମ୍ବା ନିକଟରେ ହେବାର ସମ୍ଭାବନା ନାହିଁ । ଓଡ଼ିଶା ବାହାରରେ ଥିବା ଉତ୍କଳଭାଷୀ ଜିଲା ବିଷୟରେ ଭିନ୍ନ ଭିନ୍ନ ପ୍ରଦେଶ ସହିତ ବିବାଦ ମୀମାଂସା ହୋଇ ନ ଥିବାରୁ ସେଠାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ତରଫରୁ ଯଥାର୍ଥରେ କୌଣସି କାର୍ଯ୍ୟ ହୋଇପାରି ନାହିଁ । ଏହାଛଡ଼ା ଅନୁଗୋଳ ବାଙ୍କି ଭଳି ମୋଗଲବନ୍ଦୀ ମଧ୍ୟରେ ସରକାରଙ୍କର ଯେ ଖଣ୍ଡେ ଖଣ୍ଡେ ମହାଲ ଅଛି ସେଠାରେ କାର୍ଯ୍ୟ ହୋଇନାହିଁ କହିଲେ ଚଳେ । ମୋଗଲବନ୍ଦୀ ମଧ୍ୟରେ ପୁଣି ଖଣ୍ଡେ ଜମିଦାରି ଅଛି । ସେଥିରୁ କାହାର କାହାର ଅବସ୍ଥା ଗଡ଼ଜାତଠାରୁ ବଳେ । ଏହି ଜମିଦାରି ସବୁ ପୂର୍ବେ ଗଡ଼ଜାତ ଥିଲା । ଏପର୍ଯ୍ୟନ୍ତ ଗଡ଼ଜାତ କାଇଦାର ଏଥିରୁ ତୁଟି ନାହିଁ । ଏମାନଙ୍କ ମଧ୍ୟରୁ କୌଣସି କୌଣସି ଜମିଦାରି କିଲାକୁ ଗଡ଼ଜାତ ରାଜ୍ୟ କରିବା କାରଣ କେହି କେହି ଜମିଦାରଙ୍କର ଏବେ ସୁଦ୍ଧା ଉଦ୍ୟମ ଏବଂ ଅଭିପ୍ରାୟ ରହିଅଛି । ଏହିପରି ଅନେକ ସ୍ଥାନରେ ଆଶାନୁରୂପ କାର୍ଯ୍ୟ ହୋଇପାରି ନାହିଁ । ପୁଣି କଂଗ୍ରେସ କାର୍ଯ୍ୟ ପ୍ରଚାରଲାଗି ଉପଯୁକ୍ତସଂଖ୍ୟକ ଯୋଗ୍ୟବ୍ୟକ୍ତିଙ୍କର ଉତ୍କଳରେ ଅଭାବ । ଓଡ଼ିଶାରେ ଏଥି-ପୂର୍ବେ କେବେ କୌଣସି ରାଜନୈତିକ ଆନ୍ଦୋଳନ ହୋଇ ନ ଥିଲା । ଓଡ଼ିଶା ଦେଶ ମିଶ୍ରଣ ଚହଲ ଗଲା ସତର ଅଠର ବର୍ଷ ହେଲା ଲାଗିଥିଲେ ସୁଦ୍ଧା ତାହା କେବେ ଦେଶବ୍ୟାପି ସାଧାରଣ ଆନ୍ଦୋଳନ ହୋଇନାହିଁ । ପୁଣି ତାହା ରାଜନୈତିକ ଆନ୍ଦୋଳନ ବୋଲି ସ୍ୱୀକାର କରିବା ଲାଗି ବଡ଼ ବଡ଼ ମୁଖିଆ ଓଡ଼ିଆ ନେତାଙ୍କର ସୁଦ୍ଧା ସାହସ ହୋଇନାହିଁ । ପ୍ରକୃତ ପକ୍ଷରେ ଅସହଯୋଗ ଆନ୍ଦୋଳନ ଏ ପ୍ରଦେଶରେ ସର୍ବପ୍ରଥମ ଦେଶବ୍ୟାପୀ

ରାଜନୈତିକ ଆନ୍ଦୋଳନ । ଏ ଅବସ୍ଥାରେ ଜୁନ୍ ୩୦ ତାରିଖ ମଧ୍ୟରେ ଯେ ଫଳ ହୋଇଅଛି ସେଥିରେ ପ୍ରତ୍ୟେକ ଅସହଯୋଗୀ ପ୍ରାଣରେ ଏବଂ ଉତ୍କଳବାସୀ ହୃଦୟରେ ଆଶା ଏବଂ ଉତ୍ସାହ ହେବାର କଥା । ଏହି ଯେ ଆମ୍ଭମାନଙ୍କର ରାଜନୈତିକ ଜୀବନ ଆରମ୍ଭ ହୋଇଅଛି ତାହା କିପରି ସ୍ଥାୟୀ ଓ ଦୃଢ଼ ହେବ ଏବଂ ଉତ୍ତରୋତ୍ତର ଉନ୍ନତ ହେବ ସେଥିଲାଗି ସମସ୍ତେ ଚେଷ୍ଟା କରିବା ଆବଶ୍ୟକ । ଯେଉଁସବୁ ପ୍ରଦେଶମାନ ଆପଣା ଆପଣା ଅଂଶ ପୂରଣ କରିପାରି ନାହାନ୍ତି, ସେମାନେ ତାହା ପୂରଣ କରିବାଯାଏ କାର୍ଯ୍ୟ ଚଳାଇବେ । ସହଳ ହେଉ ବା ଡେରିରେ ହେଉ ପୂରଣ କରିବାକୁ ହେବ । ଅନ୍ତତଃ ସେଥିଲାଗି ଅବିଶ୍ରାନ୍ତ ଉଦ୍ୟମ ହେବା ଉଚିତ । ଏଲାହାବାଦ କଂଗ୍ରେସର ଆଜ ଯେ ସବୁ ନୂତନ ଆଦେଶ ବାହାରିବ ତାହା ପୂରଣ କରିବାକୁ ହେବ । ସୁତରାଂ ଉତ୍କଳ ପ୍ରଦେଶର କାର୍ଯ୍ୟ ପୂର୍ବ ଅପେକ୍ଷା ବର୍ତ୍ତମାନ ଅଧିକ ଗୁରୁତର ହୋଇଅଛି । କର୍ମୀମାନେ ଯଥାସାଧ୍ୟ ଯତ୍ନ ଓ ପରିଶ୍ରମ କରୁଛନ୍ତି ସତ ମାତ୍ର ଅଧିକ କର୍ମୀ ଆବଶ୍ୟକ । ଦେଶର ଓକିଲ ମୁକ୍ତାରମାନଙ୍କୁ ଆଜ ଏଥି ସକାଶେ ଡାକିବାକୁ ଆମ୍ଭମାନଙ୍କର ମୁହଁ ନାହିଁ । ସେଥିମଧ୍ୟରୁ ଯାହାଙ୍କର ସଦ୍‌ବୁଦ୍ଧି ହେଉଛି ସେମାନେ ଜଣେ ଜଣେ ଆସୁଛନ୍ତି । ସରକାରୀ ଚାକିରି କରିବା ଅନ୍ୟ କୌଣସି ପ୍ରକାର କାର୍ଯ୍ୟରେ ଯେଉଁମାନେ ଅଛନ୍ତି ସେମାନଙ୍କ ମଧ୍ୟରୁ କେହି କେହି ଆସିବେ ବୋଲି ଏତେବେଳେ ସୁଦ୍ଧା ଆମ୍ଭମାନଙ୍କର ଆଶା ରହିଅଛି । ମାତ୍ର ପ୍ରତ୍ୟେକ ପଲ୍ଲୀଗ୍ରାମରେ ଉତ୍ସାହୀ ଶିକ୍ଷିତ ଯୁବକ କେତେଜଣ ବାହାରି ସେ ଗାଁ ଓ ନିକଟବର୍ତ୍ତୀ ଅଞ୍ଚଳରେ କାର୍ଯ୍ୟ ନ ଚଳାଇଲେ ଏ ଗୁରୁତର ଦାୟିତ୍ୱ ସମାଧାନ ହେବନାହିଁ । ଆମ୍ଭେମାନେ ଯେତେଦୂର ଜାଣୁ ଦେଶବାସୀ ପ୍ରାୟ ସମସ୍ତଙ୍କର ଅସହଯୋଗ ଆନ୍ଦୋଳନରେ ପୂର୍ଣ୍ଣ ସହାନୁଭୂତି ଅଛି । ମାତ୍ର ବହୁକାଳ ପ୍ରପୀଡ଼ନ ଓ ଦରିଦ୍ରତା ସହି ସହି ଏମାନଙ୍କର ସାହସ ଓ ଶକ୍ତି ଏକା-ବେଳକେ ଲୋପ ପାଇଅଛି; ତେଣୁ ମନର ଭାବ ପ୍ରକାଶ କରିବାକୁ ଡରୁଛନ୍ତି । ଦେଶବାସୀଙ୍କ ହୃଦୟରୁ ଏହି ଭୀରୁତା ଘୁଞ୍ଚାଇବାକୁ ହେବ । ପ୍ରତ୍ୟେକ ଗ୍ରାମରେ ପଞ୍ଚାୟତ, ଜାତୀୟ ବିଦ୍ୟାଳୟ, ଅରଟ ପ୍ରଚାର ପ୍ରଭୃତି ନବ ନବ ସଙ୍ଗଠନ ଓ କାର୍ଯ୍ୟ କରିବାକୁ ହେବ । ଉତ୍କଳବାସୀଙ୍କି ଆଜି ନବ ବଳ ଓ ନବ ଭାବରେ ବଳୀୟାନ ଓ ଉତ୍ସାହିତ କରି ମହାଭାରତ ଜାତୀୟ ସମାସ୍ୟା ସମାଧାନରେ ଲଗାଇବାକୁ ହେବ । ଏହି କାର୍ଯ୍ୟ ଲାଗି ଭାରତମାତା ଆଜି ପ୍ରତ୍ୟେକ ଉତ୍କଳ ଯୁବକଙ୍କୁ ଡାକୁଛନ୍ତି । ଦେଶସେବା ନିମନ୍ତେ ଏ ମାହେନ୍ଦ୍ର ଯୋଗ ଉତ୍କଳ ସନ୍ତାନ ହରାଇ ପଛକୁ ଝୁରି ହୁଅନ୍ତୁ ନାହିଁ ।

('ସମାଜ', ତା ୨୩ । ୭ । ୨୧)

— ——

# ବିଦେଶୀ ବସ୍ତ୍ର ବର୍ଜନ

ବିଦେଶୀବସ୍ତ୍ର ବର୍ଜ୍ଜନ ବିଷୟରେ ମହାତ୍ମାଗାନ୍ଧୀ ବମ୍ବେଇରେ କେତେଦିନ ହେଲା ଗାଦି ମାଡ଼ି ବସିଛନ୍ତି । ସେ ସହର ଓ ପ୍ରଦେଶରେ ଏ ସମ୍ବନ୍ଧରେ ଘୋର ଆନ୍ଦୋଳନ ଚାଲିଅଛି । ବମ୍ବେଇ ପ୍ରାଦେଶିକ କଂଗ୍ରେସ କମିଟି ଏବେ ନିର୍ଦ୍ଧାରଣ କରିଅଛନ୍ତି କି ପ୍ରତ୍ୟେକ ଜିଲ୍ଲା କମିଟି ଏବଂ ଅନ୍ୟାନ୍ୟ କଂଗ୍ରେସ ସଭାପତିମାନେ ମହାତ୍ମାଗାନ୍ଧୀଙ୍କ ଉପଦେଶ ଅନୁସାରେ ଅଗଷ୍ଟ ପହିଲା ମଧ୍ୟରେ ବିଦେଶୀବସ୍ତ୍ର ସମ୍ପୂର୍ଣ୍ଣ ବନ୍ଦ କରିବାର ଆୟୋଜନ କରିବେ । ସଙ୍ଗତିସମ୍ପନ୍ନ ଭଦ୍ରବ୍ୟକ୍ତିମାନେ ଖଦଡ଼ ଲୁଗା ପିନ୍ଧିବେ; କୃଷକ ଏବଂ ଅନ୍ୟାନ୍ୟ ଦରିଦ୍ର ଲୋକମାନେ ଏଥି ସ୍ୱଦେଶୀୟ କଳଲୁଗା ବ୍ୟବହାର କରି ପାରିବେ । ଏ ଦେଶର ଲୁଗାକଳ କାରଖାନାର ମାଲିକମାନଙ୍କୁ ବମ୍ବେଇ କଂଗ୍ରେସ କମିଟି ଲୁଗାର ଦର ନ ବଢ଼ାଇବା ସକାଶେ ଅନୁରୋଧ କରିଅଛନ୍ତି । ବିଦେଶୀ ସୂତା ଓ ଲୁଗା କାରବାର କରୁଥିବା ମହାଜନମାନଙ୍କୁ ଆଉ ବିଦେଶରୁ ଆମଦାନି ନ କରିବା ଓ ଯେ ମାଲ ଏବେ ମହଜୁଦ ଅଛି, ବିକ୍ରି ଲାଗି ତାହାସବୁ ବିଦେଶକୁ ପଠାଇଦେବା କାରଣ ମଧ୍ୟ ଅନୁରୋଧ କରାଯାଇଅଛି । ବମ୍ବେଇ ସହରରେ ଖଦର ଲୁଗା ବିକ୍ରି ଲାଗି କମିଟି ତରଫରୁ ବନ୍ଦୋବସ୍ତ କରାଯାଉଅଛି । ବିଦେଶୀବସ୍ତ୍ର ଯେଉଁମାନେ ତ୍ୟାଗ କରିବେ ସେମାନେ କମିଟି ହାତରେ ତାହାସବୁ ଦେଲେ କମିଟି ତାହା ନଷ୍ଟ କରିଦେବେ । ନ ହେଲେ ସ୍ମିର୍ଣ୍ଣା ପଠାଇଦେବେ । ବମ୍ବେଇରେ କ୍ରମେ ବିଦେଶୀ ବର୍ଜ୍ଜନ ଅଗ୍ନି ପ୍ରବଳ ଭାବରେ ଜଳିଲାଣି । ସେ ପ୍ରଦେଶର ଯେବେ ଲୋକେ ଅଣ୍ଟା ଭିଡ଼ିବେ ମହାତ୍ମାଗାନ୍ଧୀଙ୍କ ସଂକଳ୍ପ ଯଥା ସମୟରେ ସମ୍ପୂର୍ଣ୍ଣ ହେବ, ସନ୍ଦେହ ନାହିଁ । ଅଧିକକାଳ ବିଳମ୍ବ ନ କରି ପ୍ରତ୍ୟେକ ପ୍ରାଦେଶିକ କଂଗ୍ରେସ କମିଟିର ବାଟ ଅନୁସରିବା ଆବଶ୍ୟକ । ଉତ୍କଳ କଂଗ୍ରେସ କମିଟି ଯେପରି ଏ କ୍ଷେତ୍ରରେ ପଛକୁ ପଡ଼ି ନ ଯାନ୍ତି ସେଥିପ୍ରତି ମୂଳରୁ ସାବଧାନ ହେବା ଉଚିତ । କଂଗ୍ରେସ କମିଟି ତରଫରୁ ଓଡ଼ିଶାର ପ୍ରତ୍ୟେକ ସହରରେ ଖଦଡ଼ ଲୁଗାର ଦୋକାନ ଏବଂ ମଫସଲର କେନ୍ଦ୍ର ଜାଗାମାନଙ୍କରେ ତୁଳାର ଗୋଦାମ ବସିଲେ କାର୍ଯ୍ୟର ଶୀଘ୍ର ପ୍ରସାର ହେବ ।

('ସମାଜ', ତା ୩୦ । ୭ । ୨୧)

---

# ରାଜା ଜମିଦାର, ବୃଥା ଭୟ ଛାଡ଼

କନକା ରାଜ୍ୟରେ କଂଗ୍ରେସ କାର୍ଯ୍ୟରେ ଯେଉଁ ବାଧା ଘଟିଥିଲା, ତାହା ରାଜା ସାହେବଙ୍କ ଜ୍ଞାତସାରରେ ହୋଇ ନ ଥିବା କଥା ଗଲ ଫର୍ଖି ସମାଜରେ ପ୍ରକାଶ ପାଇଅଛି । ଶ୍ରୀଯୁକ୍ତ ଅଟଳବିହାରୀ ଆଚାର୍ଯ୍ୟଙ୍କ ପତ୍ରରୁ ଆମ୍ଭେମାନେ ଯେତେଦୂର ବୁଝି ପାରୁଛୁ କଂଗ୍ରେସର କେତେକ କାର୍ଯ୍ୟ ରାଜା ସାହେବ ବରଂ ସମର୍ଥନ କରୁଅଛନ୍ତି । ଅସହଯୋଗ ଆନ୍ଦୋଳନରେ ତାଙ୍କର ପୂର୍ଣ୍ଣମତ ନ ହୋଇ ପାରେ ଏବଂ ନାହିଁ । ଆମ୍ଭେ-ମାନେ ଜାଣୁ ମାତ୍ର ଅସହଯୋଗ ଭିତରେ ଏପରି କେତେ କାର୍ଯ୍ୟ ଅଛି, ଯହିଁରେ କାହାରି କାହାରି କୌଣସି ପ୍ରକାର ଆପତ୍ତି ହେବାର କାରଣ ନାହିଁ । ବରଂ ସକଳଶ୍ରେଣୀ ଏବଂ ସକଳ ଦଳ ଲୋକଙ୍କର ସହାୟତା ହେବା ଉଚିତ । କଂଗ୍ରେସର ମେମ୍ବର ହେବା ବା ତିଲକ ସ୍ୱରାଜ୍ୟ ପଣ୍ଡିକୁ ଚାନ୍ଦା ଦେବା ତ ବ୍ୟକ୍ତି ବିଶେଷର ଇଚ୍ଛାଧୀନ । କେହି ପ୍ରଜା ମେମ୍ବର ହେଲେ ବା ତିଲକ ସ୍ୱରାଜ୍ୟ ପାଣ୍ଠିକି କିଛି ଦାନକଲେ ସେଥିରେ ରାଜା ବା ଜମିଦାରଙ୍କ କିଛି ଯାଏ ଆସେ ନାହିଁ । କୌଣସି ବୁଝିବା ସୁଝିବା ଜମିଦାର ଏ ସମ୍ପର୍କରେ କଥା କହିବା ଉଚିତ ନୁହେଁ । ଏହାଛଡ଼ା ନିଶାନିବାରଣ, ସ୍ୱଦେଶୀ ପ୍ରଚାର ଏବଂ ଗ୍ରାମପଞ୍ଚାୟତ ସ୍ଥାପନରେ ରାଜା ଜମିଦାରମାନେ ପ୍ରଜାମାନଙ୍କୁ ବୁଝାଇ ସମଝାଇ ପ୍ରବର୍ତ୍ତାଇବା ଉଚିତ । ଏ ସବୁ କାର୍ଯ୍ୟରେ ଅସହଯୋଗୀ ସହଯୋଗୀର ଭେଦାଭେଦ ରହିବା ଉଚିତ ନୁହେଁ । ଗ୍ରାମ-ପଞ୍ଚାୟତ ଦ୍ୱାରା ମକଦ୍ଦମା ଭାଙ୍ଗିବା, କପାଗଛ ଚାଷ କରି ନିଜ ହାତେ ଘରେ ଘରେ ସୂତାକାଟି ଦେଶୀ ଲୁଗା ତିଆରି କରିବା, ମଦ ଗଞ୍ଜା ନିବାରଣ କରିବା, ଏ ତିନିକଥା ଆଜି ନୂଆ ଦେଶରେ ବାହାରି ନାହିଁ । ଅସହଯୋଗ ଆରମ୍ଭ ପୂର୍ବରୁ ଦେଶର ମୁଖିଆ ଲୋକେ ଏ ବିଷୟରେ ଯତ୍ନକରି ଆସୁଛନ୍ତି । ଏପରିକି ବଙ୍ଗଳାର ସ୍ୱଦେଶୀ ଆନ୍ଦୋଳନ ଆଗରୁ ମଧ୍ୟ ଅନେକଲୋକ ଏ ବିଷୟରେ ଆନ୍ଦୋଳନ କରିଥିଲେ । ଉତ୍କଳ ସମ୍ମିଳନୀର ସ୍ୱଦେଶୀ ଆନ୍ଦୋଳନ ସଙ୍ଗେ କିଛି ସମ୍ପର୍କ ନ ଥିଲା । ମାତ୍ର ସେଥିରେ ଏହିଭଳି ବିଷୟରେ କେତେ ଆଲୋଚନା ଓ ନିର୍ଦ୍ଧାରଣମାନ ହୋଇଅଛି । କାହିଁକି, ନିଜେ ସରକାର ତରଫର ପ୍ରଧାନ ପ୍ରଧାନ କର୍ମଚାରୀ-ମାନେ ଏହି ତିନି ବିଷୟରେ ସମର୍ଥନ କରି କେତେ ଘଟଣାରେ କେତେକଥା କହିଛନ୍ତି । ଏବେ ସୁଦ୍ଧା ଭିତରେ ଭିତରେ ଯାହା ବିଚାରନ୍ତୁ ବା ଯାହା କରନ୍ତୁ ସରକାର ବା ତାଙ୍କର କୌଣସି ଉଚ୍ଚପଦସ୍ଥ କର୍ମଚାରୀ ଏ ତିନି ବିଷୟର ନିନ୍ଦା କରି କିଛି କହି

ପାରିବେ କି ? ଏହା ଛଡ଼ା କଂଗ୍ରେସର ମେମ୍ବର ହେବା ବା ତିଲକ ସ୍ୱରାଜ୍ୟ ପାଣ୍ଠିକି ଚାନ୍ଦାଦେବା ଦୋଷାବହ ବା ବେ-ଆଇନ ବୋଲି ସରକାର କୌଣସି-ଠାରେ ମଧ୍ୟ କହି ନାହାନ୍ତି କିମ୍ବା କହି ନ ପାରନ୍ତି । ବାସ୍ତବିକ୍ ଅସହଯୋଗ ଆନ୍ଦୋଳନରେ କିଛି ବେଆଇନ ବା ଅନ୍ୟାୟ ନାହିଁ । ତଥାପି ଏହାକୁ ଦବାଇବା ଲାଗି ସରକାର ନାନା ସ୍ଥାନରେ ନାନା ଛଳନାରେ ଲୋକଙ୍କୁ ଓଟରା ଟିଙ୍କା କରି ସଜା ଦେଉଛନ୍ତି । ମାତ୍ର ସେଥିର ଫଳ କଣ ହେଉଛି ? ଆନ୍ଦୋଳନ କଅଣ କମୁଛି ? ଜଗତରେ ଏପରି ଉପାୟ କେବେ କୌଣସିଠାରେ କୌଣସି ଜାତୀୟ ଆନ୍ଦୋଳନ ଦବାଇ ନାହିଁ । ଦେଶୀୟ ଲୋକଙ୍କ ମଧ୍ୟରେ କେହି କେହି ବୃଥାରେ କଂଗ୍ରେସ କର୍ମୀଙ୍କ କାର୍ଯ୍ୟରେ ବାଧା ଦେବାର ବେଳେ ବେଳେ ଶୁଣାଯାଉଅଛି । କଂଗ୍ରେସ କର୍ମୀମାନେ ଯେବେ କିଛି ବେଆଇନ ଅନ୍ୟାୟ ବା ଉତ୍ପାତ କରନ୍ତି, ସେମାନେ ଦଣ୍ଡ ପାଇବେ; ମାତ୍ର ସୀମାରେ ରହି ଯେତେବେଳଯାଏ ସେମାନେ କାମ କରୁଛନ୍ତି ରାଜା ଜମିଦାର ବା ଗ୍ରାମ ଚୌକିଦାର ପଞ୍ଚାୟତ ବା କୌଣସି ସ୍ଥାନୀୟ ସରକାରୀ ହାକିମ ବା କର୍ମଚାରୀ ସେମାନଙ୍କ କାର୍ଯ୍ୟରେ ବାଧାଦେବା ଅନୁଚିତ । ଏପରି ବାଧାଦ୍ୱାରା ସେମାନେ କାର୍ଯ୍ୟରୁ ନିରସ୍ତ ହୋଇ କଦାପି ରହିବେ ନାହିଁ; ମାତ୍ର ବାଧାଦେବା ଲୋକଙ୍କ ମାନମର୍ଯ୍ୟାଦା ଦାଣ୍ଡରେ ପଡ଼ିବ । ଯେଉଁମାନେ ଅସହଯୋଗର ପୂରା ସପକ୍ଷ ନୁହନ୍ତି ସେମାନେ କିନ୍ତୁ ରାଜାଙ୍କ ପରି କାର୍ଯ୍ୟ କରିବା ଉଚିତ । ଅସହଯୋଗର ଯେଉଁ ପ୍ରସଙ୍ଗରେ ସେମାନଙ୍କର ନିଜର ମତ ନାହିଁ ସେଥିରେ ସେମାନେ ନୀରବ ରହନ୍ତୁ, ଲୋକଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରନ୍ତୁ ନାହିଁ । ଯେଉଁ ପ୍ରସଙ୍ଗରେ ସେମାନଙ୍କର ମତ ଅଛି, ସେଥିରେ ସହାୟତା ଓ ସହଯୋଗିତା କରନ୍ତୁ । କଂଗ୍ରେସ ନିର୍ଦ୍ଧାରଣ ଅନୁସାରେ ଆଗାମୀ ସେପ୍ଟେମ୍ବର ଶେଷସୁଦ୍ଧା ଦେଶରେ ପୂରା ସ୍ୱଦେଶୀ ପ୍ରଚାର କରିବାକୁ ହେବ । ଆହୁରି ମଧ୍ୟ ମାଦକ ନିବାରଣ ନିମନ୍ତେ ଯଥାସାଧ୍ୟ ଯତ୍ନ କରିବାକୁ ହେବ । ସ୍ୱଦେଶୀ ବସ୍ତ୍ର ପ୍ରଚାର ବିଷୟରେ କାହାରି ଆପତ୍ତି ହୋଇ ନ ପାରେ । ବିଶେଷତଃ ଓଡ଼ିଶାର ପ୍ରଜାମାନେ ପ୍ରତିବର୍ଷ ଯେପରି ଅନ୍ନକଷ୍ଟ ଭୋଗୁଛନ୍ତି ସେଥିରେ ଏହା ସେମାନଙ୍କ ପକ୍ଷେ ଜୀବିକା ଉପାୟର ପନ୍ଥା ହେବ ବୋଲି ଆମ୍ଭେମାନେ ଗଲଥର ସ୍ପଷ୍ଟ ଦେଖାଇ ଅଛୁଁ । ଓଡ଼ିଶାର ରାଜା ଜମିଦାରମାନଙ୍କର ନିଜ ନିଜ ଇଲାକା ମଧ୍ୟରେ ବିସ୍ତର ଅରଟ ଚଲାଇବାକୁ ଯତ୍ନବାନ ହେବା ଆବଶ୍ୟକ । ରାଜା ଜମିଦାରମାନେ ଇଚ୍ଛାକଲେ ଲୋକମାନଙ୍କୁ ନିଶା ଖାଇବାରୁ ନିବର୍ତ୍ତାଇ ପାରିବେ । ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇ ନ ଥିଲେ କେତେ ରାଜା ଜମିଦାର ଏହାସବୁ କରିବାକୁ କୁଣ୍ଠିତ ହୁଅନ୍ତେ ନାହିଁ । ମାତ୍ର ଆଜି ସେମାନଙ୍କର ନିଜ ଇଲାକାରେ ଅରଟରେ ସୂତା କଟାଇବା, ଦେଶୀଲୁଗା ବୁଣାଇବା କିମ୍ବା

ନଶା ଛାଡ଼ିବା ଲାଗି ପ୍ରଜାଙ୍କୁ ପ୍ରବର୍ତ୍ତାଇବା ସକାଶେ ସାହସ ହେଉ ନାହିଁ । ସେମାନେ ଭୟ କରୁଛନ୍ତି, କାଳେ ଏପରି କଲେ ଅସହଯୋଗରେ ଯୋଗ ଦେଉଛନ୍ତି ବୋଲି ମେଜେଷ୍ଟର ସାହେବ ବା ଆଉ କେହି ସରକାରୀ କର୍ମଚାରୀ ଜାଣିଲେ ତାଙ୍କର ଅନିଷ୍ଟ ଘଟିବ । ଆମ ଦେଶର ରାଜା ଜମିଦାରମାନଙ୍କ ମଧ୍ୟରୁ ଅଧିକାଂଶ ନିଜର କ୍ଷମତା କେତେ ଜାଣନ୍ତି ନାହିଁ । ସରକାରଙ୍କ ଆଶ୍ରୟରେ ତାଙ୍କର ବଡ଼ପଣିଆ ଅଛି ବୋଲି ମନେ କରନ୍ତି । ଏ ଅବସ୍ଥାରେ ସେମାନଙ୍କର ଡରିବା ଆଶ୍ଚର୍ଯ୍ୟ ନୁହେଁ । ମାତ୍ର ସେମାନଙ୍କର ବୁଝିବା ଉଚିତ ଯେ ସେମାନଙ୍କର ଏପରି କାର୍ଯ୍ୟଦ୍ୱାରା କେବଳ ଆପଣା ଅଯୋଗ୍ୟତା ଓ ଦୁର୍ବଳତା ପ୍ରକାଶ ପାଉଛି । ଭାରତର ଅନ୍ୟାନ୍ୟ ପ୍ରଦେଶରେ କେତେ ଜମିଦାର ଓ ପଦସ୍ଥ ଲୋକେ ଅସହଯୋଗ ଆନ୍ଦୋଳନରେ ପ୍ରକାଶ୍ୟ ଭାବରେ ଯୋଗ ଦେଇଛନ୍ତି । ଆଉ କେତେକଙ୍କର ଏ ଆନ୍ଦୋଳନରେ ପୂରା ମତ ନୁହେଁ । ତେଣୁ ସେମାନେ କୌଣସିପ୍ରକାର ବାଧା ଦେଉ ନାହାନ୍ତି, ବରଂ ଯେ ବିଷୟରେ ସେମାନଙ୍କ ମତ ଅଛି ସେଥିର କାର୍ଯ୍ୟପ୍ରସାରରେ ସହାୟତା କରୁଛନ୍ତି । ଓଡ଼ିଶାରେ କେହି ଜମିଦାର ବା ଅନ୍ୟ ପଦସ୍ଥ ବ୍ୟକ୍ତି ଯେ ଯୋଗ ଦେଇ ନାହାନ୍ତି ତାହା ନୁହେଁ । ଶ୍ରେଷ୍ଠ ବଡ଼ ଓଡ଼ିଶାର ଯେଉଁ ରାଜା ଜମିଦାରମାନେ ଡରିମରି ଯାଉଛନ୍ତି ଆମ୍ଭେମାନେ ସେମାନଙ୍କୁ କହୁଁ— ଆପଣମାନେ ତ ସବୁବେଳେ "ମତେ ମାରନା, ମୁଁ ମଲିଣି" ରାଗିଣୀ ଧରିଲେ । ଏଥିରେ ଆପଣମାନଙ୍କର ମାନ କେଉଁଠି ରହିଲା ? ବୃଥା ଭୟ ଛାଡ଼ନ୍ତୁ । ଯାହାକଲେ ଦେଶର ଭଲ ହେବ, ନିଜ ପ୍ରଜାଙ୍କର ହିତ ହେବ, ଯହିଁରେ କିଛି ଅନ୍ୟାୟ କି ବେଆଇନ ନାହିଁ ଅସହଯୋଗ ସମ୍ପର୍କୀୟ କାର୍ଯ୍ୟ ହେଲାବୋଲି ଡରିକରି ତାହାକୁ ଛାଡ଼ନାହିଁ । ଜମିଦାରମାନେ ପ୍ରଜାଙ୍କୁ ଉତ୍ସାହ ଦେଲେ ସେମାନେ ବେଶି ବେଶି କପା ଚାଷ କରିବେ । ଅରଟରେ ସୂତାକାଟି ଧନକୁ ଦୁଇଅଣା ଚାରିଅଣା ଉପାର୍ଜ୍ଜନ କରିପାରିବେ, ତନ୍ତୀ ତୁଳାଭିଣାଙ୍କର ବ୍ୟବସାୟ ଖୋଲିଯିବ ଏବଂ ଦେଶଲୋକଙ୍କର ଲଜ୍ଜାନିବାରଣ ହେବ । ଏଥିରେ ରାଜଦ୍ରୋହ ନାହିଁ ନ କଲେ । ବରଂ ନିନ୍ଦା ଏବଂ ପ୍ରଜାଦ୍ରୋହ ଓ ଦେଶଦ୍ରୋହ ଅଛି ।

('ସମାଜ', ତା ୨୦ । ୮ । ୨୧)

———

# ଓକିଲ ଓ ସ୍ୱଦେଶୀ

( ୧୯୨୧ ମସିହା ଅଗଷ୍ଟ ମାସ ୧୫ ତାରିଖ ଦିନ ସନ୍ଧ୍ୟାରେ ଗୋପବନ୍ଧୁ ବାଲେଶ୍ୱରଠାରେ ସ୍ଥାନୀୟ ଓକିଲମାନଙ୍କୁ ଏକ ଉଦ୍‌ବୋଧନ ଦେଇ ସ୍ୱରାଜ୍ୟ ଆନ୍ଦୋଳନରେ ସେମାନଙ୍କ ଭୂମିକା ସମ୍ପର୍କରେ ସଚେତନ କରାଇ ଦେଇଥିଲେ ଏବଂ ନିଜେ ଅରଟ ଚଳାଇ ନିଜର ମହକିଲମାନଙ୍କୁ ଅରଟ ଚଳାଇବାରେ ପ୍ରେରଣା ଦେବାକୁ ନିବେଦନ କରିଥିଲେ । )

ଓକିଲମାନେ ଦେଶର ଶିକ୍ଷିତ ବ୍ୟକ୍ତି । ଦେଶର ସାଧାରଣ ଆନ୍ଦୋଳନରେ ସେମାନେ ଏପର୍ଯ୍ୟନ୍ତ ଯାହା କରିଛନ୍ତି, ତାହା ମୁଁ ଅସ୍ୱୀକାର କରୁନାହିଁ । ମାତ୍ର ଉପସ୍ଥିତ ଆନ୍ଦୋଳନରେ ଓକିଲମାନଙ୍କଠାରୁ ଯାହା ଆଶା କରାଯାଇଥିଲା ତାହା ସେମାନେ କଲେ ନାହିଁ । ଦେଶବନ୍ଧୁ ଚିତ୍ତରଞ୍ଜନ ବା ତ୍ୟାଗୀ ମୋତିଲାଲଙ୍କ ଉଦାହରଣ ଅନୁସରି ବେଶି ଓକିଲ ଚାହାରିଲେ ନାହିଁ । ଭାରତର ଭିନ୍ନ ଭିନ୍ନ ପ୍ରଦେଶରେ ଯେଉଁମାନେ ସ୍ୱାର୍ଥତ୍ୟାଗ କରି ଅର୍ଥ ଉପାର୍ଜନ ଛାଡ଼ି ସ୍ୱରାଜ୍ୟ ନିମନ୍ତେ ବର୍ତ୍ତମାନ ଯତ୍ନ କରୁଛନ୍ତି, ସେମାନେ ବିଶେଷ ପ୍ରଶଂସାର ପାତ୍ର ଏବଂ ଭାରତମାତାଙ୍କର ଉପଯୁକ୍ତ ସନ୍ତାନ । ଯେଉଁମାନେ ଓକିଲାତି ଛାଡ଼ି ନାହାନ୍ତି, ସେମାନଙ୍କ ମଧ୍ୟରୁ ସମସ୍ତେ ନ ହେଲେ ସୁଦ୍ଧା ଅଧିକାଂଶ ନିଜର ଦୁର୍ବଳତା ବୁଝି ପାରିଛନ୍ତି ଏବଂ ମୁଖରେ ସ୍ୱୀକାର ମଧ୍ୟ କେହି କେହି କରୁଛନ୍ତି । ଅଧିକ ସଂଖ୍ୟାରେ ଓକିଲ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ କାର୍ଯ୍ୟ ବେଶୀଦୂର ଆଗେଇ ଥାନ୍ତା, ସନ୍ଦେହ ନାହିଁ । ମଫସଲ ଲୋକଙ୍କର ସହଜରେ ଆସ୍ଥା ଓ ବିଶ୍ୱାସ ହୋଇଥାନ୍ତା । ପଞ୍ଚାୟତ ଅଦାଲତ ଆଦି କାର୍ଯ୍ୟର ପରିଚାଳନାରେ ବିଶେଷ ସୁବିଧା ହୋଇଥାନ୍ତା । ସେ ଯାହାହେଉ, ଯେଉଁମାନେ ଓକିଲାତି ନ ଛାଡ଼ିଛନ୍ତି, ସେମାନଙ୍କୁ ନିନ୍ଦା କରିବା ମୋର ଉଦ୍ଦେଶ୍ୟ ନୁହେଁ । ସେମାନେ ଓକିଲାତି କରି ମଧ୍ୟ ଉପସ୍ଥିତ ଆନ୍ଦୋଳନରେ ଯତ୍‌କିଞ୍ଚିତ ସହାୟତା କରିପାରନ୍ତି । ବିଦେଶୀବର୍ଜ୍ଜନ ଏବଂ ସ୍ୱଦେଶୀପ୍ରଚାରରେ ପ୍ରତ୍ୟେକ ବ୍ୟକ୍ତି ଉଣାଅଧିକେ କିଛି ନା କିଛି କରିପାରନ୍ତି । ଓକିଲମାନେ ଆପଣା ଘରେ ଅରଟ ଚଳାନ୍ତୁ ଏବଂ ସେମାନଙ୍କ ମହକିଲମାନଙ୍କୁ ଅରଟରେ ସୂତା କାଟିବାକୁ ପରାମର୍ଶ ଦିଅନ୍ତୁ । ନିଜେ ଅରଟକଟା ମୋଟା ସତାର ଖଦଡ଼ ଲୁଗା ପିନ୍ଧନ୍ତୁ ଓ ଘରର ସ୍ତ୍ରୀ ପୁତ୍ର କନ୍ୟାମାନଙ୍କୁ

ପିନ୍ଧାନ୍ତୁ । ସେମାନଙ୍କ ଦେଖାଦେଖି ଅନ୍ୟ ଲୋକେ ଖଦଡ଼ ପିନ୍ଧିବାକୁ ଆଗ୍ରହ କରିବେ । ମୋର ମନେହୁଏ, ଓକିଲ ମୁକ୍ତାରମାନେ ଯେବେ ଓକିଲଖାନାରେ ଗୋଟିଏ ଗୋଟିଏ ଅରଟ ଧରି ସୂତା କାଟନ୍ତେ, ତାହାହେଲେ ସ୍ୱଦେଶୀ ପ୍ରଚାର ସମ୍ବନ୍ଧେ ବହୁତ କାର୍ଯ୍ୟ ହୁଅନ୍ତା । ଆପଣମାନଙ୍କର ଏ ବାଲେଶ୍ୱରରେ କେତେଜଣ ଓକିଲ ହେବେ—ଦଶଜଣ ? (ଉତ୍ତର ମିଳିଲା ୨୦ ଜଣ) ଆଚ୍ଛା, କୋଡ଼ିଏ ଜଣ ଓକିଲଙ୍କ ଲାଗି ଏଠାରେ କେତୋଟା କୋର୍ଟ ? ଗୋଟିଏ ମୁନସଫ୍ ଅଦାଲତ, ଆଉ ମେଜେଷ୍ଟ୍ରର କୋର୍ଟ ୨।୩ଟା । ଏଥିରେ କେତେଜଣ ଓକିଲଙ୍କର କେତେ ସମୟ ଯାଏ ? କ୍ରିମିନାଲ୍ ଫୌଜଦାରୀ ଆଡ଼େ ତ ମୁକ୍ତାରମାନେ ଥାଆନ୍ତି । ବେଳେ ବେଳେ ଓକିଲ କାହାରିକୁ କାହାରିକୁ ଡକରା ଆସେ । ମୁନସଫ୍ ବା ମେଜେଷ୍ଟ୍ରରମାନେ ସବୁବେଳେ ୧୧ଟାଠାରୁ ୫ଟା ଯାଏ କିଛି ମକଦ୍ଦମା ବୁଝୁନଥାନ୍ତି ।

ସବୁ ମକଦ୍ଦମାରେ ଓକିଲ ହାଜର ହେବା ଦରକାର ପଡ଼େ ନାହିଁ । ମୋଟରେ ଦିନ ୧୧ଟାଠାରୁ ୫ଟା ଯାଏ ୬ଘଣ୍ଟା ପ୍ରତିଦିନ ଚାରିଜଣ ଓକିଲ କାର୍ଯ୍ୟବ୍ୟସ୍ତ ଅଛନ୍ତି ବୋଲି ଧରାଯାଇପାରେ । ତାହାହେଲେ ବାକି ୧୬ ଜଣ ଓକିଲଖାନାରେ ପ୍ରତିଦିନ ୬ଘଣ୍ଟା ସମୟ ବସି ବସି କଟାଉଛନ୍ତି । ଏ ସମୟ ମଧ୍ୟରେ ସେମାନେ ଆଉ ସେପରି କିଛି କାର୍ଯ୍ୟ କରନ୍ତି ବୋଲି ବୋଧ ହେଉନାହିଁ । କେହି ଟିକିଏ ଖବରକାଗଜ ପଢ଼ନ୍ତି ବା ବେଳେ ବେଳେ ନଜିର ଗୋଟିଏ ଅଧେ ଖୋଜନ୍ତି; ନ ହେଲେ ଅଧିକାଂଶ ଘୁମାନ୍ତି । କୌଣସି କୌଣସି ଓକିଲଖାନାରେ ତାସ ଖେଳ ବି ହୁଏ । ମୋଟକଥା ଆମମାନଙ୍କ ଜାତୀୟ ସମୟର ପ୍ରାୟ ଶହେଘଣ୍ଟା ପ୍ରତିଦିନ ବାଲେଶ୍ୱର ଓକିଲଖାନାରେ ନଷ୍ଟହେଉଛି । ଏହି ସମୟରେ ଅରଟ ଚଳାଇଲେ ନିତାନ୍ତ ପକ୍ଷେ ୧୦୦ ତୋଳା ସୂତା ହୁଅନ୍ତା । ୧୦୦ ତୋଳା ବାଲେଶ୍ୱରୀ ୨୫ ସେର । ଗୋଟାଏ ଲୁଗାରେ ଅଧସେର ସୂତା ଲାଗିଲେ ପ୍ରତିଦିନ ବାଲେଶ୍ୱର ଓକିଲଖାନା ସୂତାରୁ ୫ଟା ଲୁଗା ହେବ । ମାସ ମଧ୍ୟରେ ୨ ଦିନ କାମ ହେଲେ ୧୨୦ଟି ଲୁଗା ହେବ । ବୋଧହୁଏ ୨ ଜଣ ଓକିଲଙ୍କ ଘରର ସମସ୍ତଙ୍କ ଲାଗି ଖଣ୍ଡେ ଖଣ୍ଡେ ଲୁଗା ହେବ । ଏହିପରି ଭାବରେ କାର୍ଯ୍ୟକଲେ ଲୁଗାର ଅଭାବ ରହିବ ନାହିଁ । ମୁଁ କେବଳ ଓକିଲଙ୍କୁ କହୁନାହିଁ, ସବୁଶ୍ରେଣୀର ଲୋକେ ବର୍ତ୍ତମାନ ଏହିପରି ଯେତେବେଳେ ଟିକିଏ ଅବସର ପାଉଛନ୍ତି, ତାହା ସୂତାକଟାରେ ଲଗାଇ ଦିଅନ୍ତୁ । ଦୋକାନୀ, ଶିକ୍ଷକ, ଛାତ୍ର, ଚାଷୀ, କି ସ୍ତ୍ରୀ କି ପୁରୁଷ ସମସ୍ତେ ଏହିପରି ଲାଗି ପଡ଼ିଲେ ସେପ୍‌ଟେମ୍ବର ମାସ ମଧ୍ୟରେ ସମଗ୍ର ଦେଶ ଖଦଡ଼ ଲୁଗାରେ ବୁଡ଼ିଯିବ । ରୁଷିଆ ଯାପାନର

ଯୁଦ୍ଧବେଳେ ଜାପାନର ସ୍ତ୍ରୀଲୋକେ ନିଜ ମୁଣ୍ଡବାଳ କାଟି ତାହା ବିକି ଯେ ପଇସା ଯୁଦ୍ଧ ଖର୍ଚ୍ଚ ଲାଗି ଦେଇଥିଲେ । ଯେଉଁମାନେ ଜାତୀୟ ମାନକୁ ନିଜର ମାନ ଓ ସୁଖ ଅପେକ୍ଷା ଏହିପରି ଅଧିକ ଜ୍ଞାନ କରନ୍ତି, ସେହିମାନେ ସ୍ୱାଧୀନତା ପାଇବାର ଉପଯୁକ୍ତ ଏବଂ ସ୍ୱାଧୀନତା ପାଆନ୍ତି ।

ଓକିଲଖାନାରେ ଅନେକ ସମୟ ବୃଥା ନଷ୍ଟ ହୁଏ, ଏହା କେହି ଅସ୍ୱୀକାର କରିବେ ନାହିଁ । ସେହି ସମୟରେ ଅରଟରେ ସୂତା କାଟିଲେ କୌଣସି ଓକିଲଙ୍କର ସେପରି କିଛି ଅର୍ଥଲାଭ ହେବନାହିଁ ସତ, ଜାତୀୟ କାର୍ଯ୍ୟରେ ଗୋଟିଏ ଆଗ୍ରହ ଓ ଉତ୍ସାହ ଦେଖାଯିବ । ସେମାନଙ୍କ ଦେଖା ଦେଖି ଦେଶର ଅନ୍ୟାନ୍ୟ ଲୋକମାନେ ସହର ଓ ମଫସଲରେ ଅରଟ ଧରିବେ । ଅରଟରେ ସୂତାକାଟିବା ଗୌରବର କାର୍ଯ୍ୟ । ଏହି ଉପାୟରେ ଆମ ଜାତିର ମାନମର୍ଯ୍ୟାଦା ରକ୍ଷା ହେବ । ଦେଶବାସୀଙ୍କ ମନରେ ବର୍ତ୍ତମାନ ଏହି ଜ୍ଞାନ ଏବଂ ବିଶ୍ୱାସ ଜନ୍ମାଇବା ଆବଶ୍ୟକ । ବାଲେଶ୍ୱର ଓକିଲଙ୍କ ସଂଖ୍ୟା ଧରାଯାଇ ତା ଉପରେ ଯେ ହିସାବ ଦିଆଗଲା ସେହି ଅନୁସାରେ ସମଗ୍ର ଉତ୍କଳ ପ୍ରଦେଶର ଭିନ୍ନ ଭିନ୍ନ ଜିଲାର ହିସାବ ନେଲେ ଖୁବ୍‌କମରେ ଓଡ଼ିଶାର ଓକିଲମାନେ ମାସିକ ୪୦ ଖଣ୍ଡ ଲୁଗାକୁ ସୂତା ଯୋଗାଇ ପାରିବେ । ଆମ୍ଭେମାନେ ଶୁଣି ସୁଖୀ ହୋଇଅଛୁ ଯେ ପୁରୀର ଓକିଲ ବାବୁ ଶ୍ରୀ ଧନପତି ବାନର୍ଜୀ ଓକିଲାତି କରୁଥିଲେ ସୁଦ୍ଧା ଅରଟ ସୂତା କଟାରେ ଖୁବ୍ ମନଯୋଗ ଦେଇଅଛନ୍ତି । ସେ ନିଜେ ଏବଂ ତାଙ୍କ ଘରର ଅନ୍ୟାନ୍ୟମାନେ ଘରକର ନୌକର ସୁଦ୍ଧା ହାତରେ ସୂତା କାଟୁଛନ୍ତି । ଧନପତିବାବୁ ପୁରୀର ଜଣେ ବଡ଼ ଓକିଲ । ସୂତା କାଟିବା ଦ୍ୱାରା ତାଙ୍କର ଓକିଲାତି କମି ନାହିଁ କି ମାନହାନି ଘଟିନାହିଁ ।

('ସମାଜ' ତା ୨୦ । ୮ । ୨୧)

———

# କଂଗ୍ରେସ ପ୍ରସ୍ତାବ ଓ ଓଡ଼ିଶା

ଏ ମାସ ଷୋଳ ତାରିଖ ପାଟଣାଠାରେ କଂଗ୍ରେସର କାର୍ଯ୍ୟକାରୀ କମିଟି ବସିଥିଲା। ସେଥିରେ ନିମ୍ନଲିଖିତ ପ୍ରସ୍ତାବମାନ ଧାର୍ଯ୍ୟ ହୋଇଥିଲା।

୧ମ—ସେପ୍‌ଟେମ୍ବର ୩୦ ତାରିଖ ପୂର୍ବରୁ ପୂର୍ବ ବିଦେଶୀବସ୍ତ୍ର ବର୍ଜନ କରିବା କାରଣ ସ୍ୱେଚ୍ଛା ସେବକମାନେ ଦ୍ୱାରେ ଦ୍ୱାରେ ଯାଇ ପ୍ରତି ଘରୁ ବିଦେଶୀ ଲୁଗା ସଂଗ୍ରହ କରିବେ।

୨ୟ—ବିଦେଶୀଲୁଗା ବର୍ଜନ ସଙ୍ଗେ ସଙ୍ଗେ ସ୍ୱଦେଶୀ ଲୁଗା ନିତାନ୍ତ ଦରକାର ପଡ଼ିବ। ସେଥିଲାଗି ପ୍ରତ୍ୟେକ ପ୍ରାଦେଶିକ କଂଗ୍ରେସ କମିଟି ନିଜ ନିଜ ପ୍ରଦେଶ ମଧ୍ୟରେ ଅରଟରେ ସୂତା କଟାଇବା, ସେ ସୂତାକୁ ସଂଗ୍ରହ କରି ତନ୍ତୀମାନଙ୍କ ଦ୍ୱାରା ଲୁଗା ବୁଣାଇବା ଏବଂ ତାହାସବୁ ଘରିଆଡ଼େ ପ୍ରଚଳନ କରାଇବାର ବନ୍ଦୋବସ୍ତ କରିବେ। ଏହିସବୁ କାର୍ଯ୍ୟରେ ପ୍ରତ୍ୟେକ ପ୍ରଦେଶର ତିଳକ ସ୍ୱରାଜ୍ୟ ପାଣ୍ଠିକି ଦେୟ ଟଙ୍କାରୁ ଚାରିଅଣାରୁ କମ୍ ଖର୍ଚ୍ଚ ହେବନାହିଁ।

୩ୟ—ପ୍ରତ୍ୟେକ ସ୍ଥାନର କଂଗ୍ରେସ କର୍ମୀମାନେ କେବଳ ବିଦେଶୀ ବର୍ଜନ ଏବଂ ସ୍ୱଦେଶୀ ବୟନରେ ସମୁଦାୟ ଶକ୍ତି ସୁବିଧା ଖଟାଇବେ।

୪ର୍ଥ—କେଉଁ ପ୍ରଦେଶରେ କେତେ ଖଦଡ଼ଲୁଗା ପ୍ରସ୍ତୁତ ହେଲା, କେତେ ଖର୍ଚ୍ଚ ହେଲା, କେତେଟା ଦୋକାନୀ ବିଦେଶୀଲୁଗା ବିକୁଛନ୍ତି, ସେପ୍‌ଟେମ୍ବର୍ ୩୦ ତାରିଖ ମଧ୍ୟରେ ବିଦେଶୀ ଲୁଗା ବିକ୍ରୀ ବନ୍ଦ କରିବାକୁ କେତେଜଣ ଦୋକାନୀ ରାଜି ହୋଇଛନ୍ତି ଏବଂ କେତେ ଦୋକାନୀ ଖଦଡ଼ ଲୁଗାର ଗୋଦାମ କରିଛନ୍ତି, ଏହିସବୁ ବିଷୟରେ ରିପୋର୍ଟ ପ୍ରତି ସପ୍ତାହରେ ପ୍ରାଦେଶିକ କଂଗ୍ରେସ କମିଟିମାନେ କଂଗ୍ରେସ କାର୍ଯ୍ୟକାରୀ କମିଟିର ସମ୍ପାଦକଙ୍କୁ ପଠାଇବେ।

୫ମ— ପ୍ରଦେଶ ମଧ୍ୟରେ ତିଳକ ସ୍ୱରାଜ୍ୟ ଫଣ୍ଡ ନିମନ୍ତେ ଆଦାୟ ହୋଇଥିବା ଟଙ୍କାରୁ ଚଉଠା ଅଂଶ ନିଖିଳ ଭାରତ କଂଗ୍ରେସ କମିଟିକି ଯେଉଁ ପ୍ରାଦେଶିକ କଂଗ୍ରେସ

କମିଟିମାନ ପଠାଇ ନାହାନ୍ତି, ସେମାନେ ଅଗଷ୍ଟମାସ ୩୦ ତାରିଖ ମଧ୍ୟରେ ଯେ ବାବତର ସମୁଦାୟ ଟଙ୍କା ପଠାଇଦେବେ ।

ଦ୍ରଷ୍ଟ – ଏହି ଚଉଠା ଅଂଶ ବାବତ ସମୁଦାୟ ଟଙ୍କା ପଠାଇଥିବାର ସାର୍ଟିଫିକେଟ କଂଗ୍ରେସ କାର୍ଯ୍ୟକାରୀ ସମ୍ପାଦକଙ୍କଠାରୁ ନ ଦେଖାଇଲେ କୌଣସି ପ୍ରାଦେଶିକ କଂଗ୍ରେସ କମିଟି ନିଖିଳଭାରତ କଂଗ୍ରେସ କମିଟିଙ୍କ ଠାରୁ ଟଙ୍କା ଗ୍ରାଣ୍ଟ ପାଇ ପାରିବେ ନାହିଁ ।

ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଆପଣା ଅଂଶ ମୁତାବକ ଟଙ୍କା ତିଳକ ସ୍ୱରାଜ୍ୟ ପାଣ୍ଠି ଲଗି ଉଠାଇ ପାରି ନାହାନ୍ତି । ତଥାପି ଯେ ସାମାନ୍ୟ ଟଙ୍କା ଉଠିଅଛି ଆମ୍ଭେମାନେ ଆଶାକରୁ ତହିଁର ଚଉଠା ଅଂଶ ଟଙ୍କା ନିଖିଳ ଭାରତ କଂଗ୍ରେସ କମିଟିଙ୍କ-ଠାକୁ ଯଥା ସମୟରେ ପଠିଆ ହୋଇଅଛି । ତାହା ହୋଇଥିଲେ କାର୍ଯ୍ୟକାରୀ ସଭା ଯେ ୧୦ ହଜାର ଟଙ୍କା ଉତ୍କଳ ପ୍ରଦେଶ ଲଗି ମଞ୍ଜୁର କରିଅଛନ୍ତି ତାହା ପାଇବାରେ ବିଳମ୍ବ ହେବ ନାହିଁ । ଯେପରି ଦେଖାଯାଉଛି ଟଙ୍କା ଅଭାବରେ ସ୍ୱଦେଶୀ ପ୍ରଚାରକାର୍ଯ୍ୟ ଏ ପର୍ଯ୍ୟନ୍ତ ଉତ୍କଳ ପ୍ରଦେଶରେ ଆରମ୍ଭ ହୋଇନାହିଁ କହିଲେ ଚଳେ । କଂଗ୍ରେସ କର୍ମୀମାନେ ସ୍ୱଦେଶୀ ପ୍ରଚାର ବିଷୟରେ ବକ୍ତୃତା ଦେଇ ଲୋକମାନଙ୍କୁ ଅରଟରେ ସୂତା କାଟିବା ଏବଂ ଦେଶୀଲୁଗା ତିଆରି କରି ପିନ୍ଧିବାକୁ ପ୍ରବର୍ତ୍ତାଉଛନ୍ତି ସତ । କେତେ ଲୋକ ଆପଣା ଇଚ୍ଛାରେ ଅରଟ ତିଆରି କରୁଛନ୍ତି ଏବଂ ଅନେକ ଘରେ ସୂତାକଟା ଆରମ୍ଭ ହେଲଣି । ନିଜଘର କଟା ସୂତାର ଲୁଗା ଅନେକେ ପିନ୍ଧିଲେଣି । ମାତ୍ର କଂଗ୍ରେସ ତରଫରୁ ସ୍ଥାନେ ସ୍ଥାନେ ଅରଟ ତିଆରି ଓ ଦେଶୀ ଲୁଗାର ଗୋଦାମ ନ ହେଲେ କେବଳ ବକ୍ତୃତାରେ ଆଶାନୁରୂପ କାର୍ଯ୍ୟର ପ୍ରସାର ହେବନାହିଁ ।

× × ×

## ନଈ ନ ଦେଖୁଁ ଲଙ୍ଗଳା

ଏଥି ମଧ୍ୟରେ ମାନ୍ଦ୍ରାଜ ସରକାର ବିଦେଶୀ ବର୍ଜନ ବିରୁଦ୍ଧରେ ଜିଲା ସାହେବ-ମାନଙ୍କଠାକୁ ହୁକୁମ ନାମା ପଠାଇଲେଣି । ତହିଁର ମର୍ମ ଏହିକି ଭାରତବର୍ଷରେ ଯେତେ ଲୁଗାହୁଏ ତାହା ଏ ଦେଶର ଲୋକଙ୍କୁ ନଅଣ୍ଟ । ତେଣୁ ବିଦେଶୀ ବର୍ଜନଦ୍ୱାରା ଲୁଗାର ଦର ବଢ଼ିବ । ଦର ବଢ଼ିଲେ ଗୋଳମାଳ ଲୁଟି ଆଦି ହୋଇପାରେ । ସରକାର ଏ ସବୁ ଗୋଳମାଳ ବନ୍ଦ କରିବାକୁ ପ୍ରସ୍ତୁତ ଅଛନ୍ତି । ଦୋକାନୀମାନଙ୍କୁ କେହି ବିଦେଶୀ ଲୁଗା

ବନ୍ଦି କରିବାରେ ବାଧାଦେଲେ ସରକାର ତାହା ମଧ୍ୟ ଜବତ୍ କରିବେ । ମାନ୍ଦ୍ରାଜ ସରକାର ନଈ ନ ଦେଖି ଲଙ୍ଗଳା କାହିଁକି ? ଏ ଦେଶରୁ ଚାଉଳ ପ୍ରଭୃତି ବିଦେଶକୁ ଚାଲାନ କଲାବେଳେ ଖାଦ୍ୟ ପଦାର୍ଥର ଦର ହଠାତ୍ ବଢ଼ିଥାଏ । ସେତେବେଳେ ତ କୌଣସି ସରକାର ଶାନ୍ତି ରକ୍ଷାଲାଗି ଏତେ ବ୍ୟାକୁଳ ହୁଅନ୍ତି ନାହିଁ ।

('ସମାଜ', ତା ୨୭ । ୮ । ୨୧)

---

# ଓଡ଼ିଆ ନାରୀ ସୂତାକାଟ

ଏଥି ମଧ୍ୟରେ ଆମ୍ଭେମାନେ ଓଡ଼ିଶାର କେତେକ ଅଞ୍ଚଳରୁ ଖବର ପାଇଅଛୁ ଯେ କୌଣସି କୌଣସି ପରିବାରରେ ସ୍ତ୍ରୀମାନେ ଅରଟରେ ସୂତା କାଟିବାକୁ ମଙ୍ଗୁ ନାହାନ୍ତି । ସୂତା କାଟିବା ଗରିବ ଦୁଃଖୀ ଲୋକଙ୍କ କାମ । ଯେଉଁମାନଙ୍କର ଘର ଚଳେ, ଯେଉଁମାନଙ୍କର ବିଷୟ ସମ୍ପତ୍ତି ଅଛି, ସେମାନଙ୍କ ମାଇପେ ସୂତା କାଟିବେ କାହିଁକି ? ଓଡ଼ିଶା ଛଡ଼ା ଆଉ କୌଣସି ପ୍ରଦେଶର ସ୍ତ୍ରୀଲୋକଙ୍କଠାରୁ ଏପରି ଆପତ୍ତି ଶୁଣାଯିବା ସମ୍ଭବ ନୁହେଁ; ତାହା ନ ହେଲେ ଓଡ଼ିଶାର ଏପରି ଦୁର୍ଗତି ହୁଅନ୍ତା କାହିଁକି ? ମାନ୍ଦ୍ରାଜ, ପଞ୍ଜାବ, ମାରବାର ପ୍ରଭୃତି ରାଜ୍ୟରେ ଅରଟରେ ସୂତାକଟା ବନ୍ଦଥିଲା । ଲକ୍ଷପତି ଘରର ଝିଅ ବୋହୂମାନେ ସୂତା କାଟୁଥିଲେ, ଏବେ ସୁଦ୍ଧା କାଟୁଛନ୍ତି । ବର୍ତ୍ତମାନ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବାଦିନୁ ଭାରତବର୍ଷର ସବୁଆଡ଼େ ଗୁଣା ଅଧିକେ ଅରଟ ପ୍ରଚାର ହେଲଣି । ଆଜି ବମ୍ବେଇ ପ୍ରଭୃତି ସହରରେ ଲକ୍ଷପତି ନୁହେଁ, କୋଟିପତି ଘରର ସ୍ତ୍ରୀ ଲୋକମାନେ ଅରଟ ନେଇ ବସିଛନ୍ତି । ଶହ ଶହ ହଜାର ହଜାର ଟଙ୍କା ଦାମର ବିଦେଶୀ ରେଶମୀ ଓ ଅନ୍ୟାନ୍ୟ ପ୍ରକାର ଲୁଗା ଦେହରୁ ଫିଙ୍ଗିଦେଇ ମୋଟା ଖଦଡ଼ ଲୁଗା ସେମାନେ ପିନ୍ଧିଲେଣି । କାହିଁକି, ଓଡ଼ିଶାରେ ମଧ୍ୟ କେତେ ବାବୁ ଭାୟାଙ୍କ ଘର ମାଇପେ ଆଗ୍ରହରେ ଅରଟରେ ସୂତା କାଟୁଛନ୍ତି । ମାତ୍ର ସହରର ବାବୁ ଭାୟାଙ୍କଠାରୁ ଦେଖି ଶିଖି ମଫସଲର ଯେଉଁମାନେ ଧରୁ ବିଲାତି ପତଳା ସରୁ ଲୁଗା ପିନ୍ଧୁଥିଲେ, ଆଜି ସେହି ସ୍ତ୍ରୀଲୋକମାନଙ୍କୁ ସୂତାକାଟିବା କଷ୍ଟ ଲାଗୁଛି; ମାନହାନି ବୋଧ ହେଉଛି । ଏ ଶ୍ରେଣୀର ସ୍ତ୍ରୀ-ଲୋକଙ୍କ ଘରେ କିଛି କାମ ନ ଥାଏ । କେବଳ ପାନ ଚୋବାଇବାର ସୃଷ୍ଟିର କଥା ପକାଇ ଆପଣା ଆପଣା ମଧ୍ୟରେ କଳହ କରିବାରେ ଏମାନଙ୍କ ମଧ୍ୟରୁ ଅନେକେ ସମୟ କଟାଇ ଥାଆନ୍ତି । ସ୍ୱାମୀ ବା ପୁଅ ହୁଏତ କିଛି ରୋଜଗାର କରନ୍ତି ନ ହେଲେ ସାଇ-ପଡ଼ିଶାଙ୍କ ଅପେକ୍ଷା କିଛି ଅଧିକ ବିଷୟ ବାଡ଼ି ଅଛିବୋଲି ଏମାନଙ୍କର ପାଞ୍ଚ ଆଙ୍ଗୁଠି ତଳେ ଲାଗେ ନାହିଁ । ଦରିଦ୍ର ଦୁର୍ଭିକ୍ଷପୀଡ଼ିତ ଉତ୍କଳ ଦେଶରେ ଏଭଳି ସ୍ତ୍ରୀ ଲୋକ ଅଛନ୍ତି ବୋଲି ମନେ ପଡ଼ିଗଲେ ଛାତି ଫାଟିଯାଏ । ଇତର ସାଧାରଣ ନିମ୍ନଶ୍ରେଣୀର

ସ୍ତ୍ରୀ ଲୋକଙ୍କ କଥା ଛାଡ଼ନ୍ତୁ । ଭଲ ଭଲ କୁଳର କେତେ ସ୍ତ୍ରୀଲୋକ ଲୁଗା ଅଭାବରେ କି ହିନସ୍ତା ହୁଅନ୍ତି, ବାହାରକୁ ବାହାରି ପାରନ୍ତି ନାହିଁ । ତାହା କିଏ ନ ଦେଖିଛୁ ? ଏହି ଭଉଣୀମାନଙ୍କ କଥା କି ଭାଗ୍ୟବନ୍ତ ଘର ସ୍ତ୍ରୀ ଲୋକଙ୍କ ମନେ ପଡ଼େ ନାହିଁ ? ବିଳାସ ଏବଂ ଆଳସ୍ୟ ଏମାନଙ୍କୁ ଗ୍ରାସି ଯାଇଛି । ଆମ୍ଭେମାନେ ଏମାନଙ୍କୁ ଅଧିକ କିଛି ନ କହି ଅରଟ ଧରିବା ଲାଗି ପ୍ରାର୍ଥନା କରୁଅଛୁଁ । ମହାତ୍ମାଗାନ୍ଧୀ ଭାରତର ସ୍ତ୍ରୀ ଲୋକମାନଙ୍କୁ ସ୍ୱଦେଶୀ ପ୍ରଚାରରେ ସାହାଯ୍ୟ କରିବା କାରଣ ବିଶେଷ ଅନୁରୋଧ କରି ଅଛନ୍ତି । ଅରଟରେ ସୂତାକାଟି ପେଟ ପୋଷିବା ଥିଲି ଘରର ବୋହୂ, ଝିଅମାନଙ୍କୁ କେହି କହୁନାହିଁ । ଅବଶ୍ୟ ନିଅଣ୍ଟିଆ ଘରର ସ୍ତ୍ରୀ ଲୋକମାନଙ୍କ ପକ୍ଷେ ଏହା ଏକ ଆଶ୍ରୟର ପନ୍ଥା । ଏବେ ଦେଶର ଦରକାର ପଡ଼ିଛି । ଭାରତମାତାଙ୍କର ଲଜ୍ଜା ନିବାରଣ କରିବାକୁ ହେବ । ପ୍ରତ୍ୟେକ ଭାରତ କନ୍ୟା ଆପଣାର ଗର୍ବ, ଅହଙ୍କାର ଛାଡ଼ି ନିର୍ମଳ ଚିତ୍ତରେ ଏ କାର୍ଯ୍ୟରେ ଯୋଗ-ଦେବା କର୍ତ୍ତବ୍ୟ । ଉତ୍କଳ ନାରୀସମାଜ ! ଆଳସ୍ୟ, ଅଭିମାନ ଓ ବିଳାସିତା ଛାଡ଼ । ଅରଟରେ ସୂତା କାଟିବା ଆମ ଦେଶର ପୁରାତନ ପାରିବାରିକ କାର୍ଯ୍ୟ । ଏହା ଅତି ପବିତ୍ର । ଏଥିରେ ମନ ସ୍ଥିର ରହେ, ଆତ୍ମା ଶୁଦ୍ଧ ହୁଏ । ନିଜ ଘରେ କୁଟା ଚାଉଳ ଖାଇବା ଯେପରି ସୁଖ ଓ ସୌଭାଗ୍ୟ; ନିଜ ଘରକଟା ସୂତାର ଲୁଗା ପିନ୍ଧିବା ସେହିପରି ଗୌରବ ଓ ସମ୍ମାନ । ଚାରିଆଡ଼େ ଆଜି ସ୍ତ୍ରୀ ଲୋକମାନେ ଏ କାର୍ଯ୍ୟରେ ଲାଗିଗଲେଣି । ତୁମ୍ଭେମାନେ କୁଣ୍ଠିତ ହେବା ନିନ୍ଦାର କଥା । ତୁମ ଶାଶୁ ଓ ଗୋସାଇଁ ଶାଶୁମାନେ ଏହା କରୁଥିଲେ । ଏବେ କେତେବର୍ଷ ହେଲା ଉଠିଯାଇଥିଲା । ପୁଣି ଚେତନା ଆସିଛି । ମହାତ୍ମାଗାନ୍ଧୀ ଓ ଭାରତ ମହାସଭା ସୂତା କାଟିବା ଲାଗି ଆଜି ସମସ୍ତଙ୍କୁ ଉପଦେଶ ଦେଉଛନ୍ତି । ଏ ଉପଦେଶ ଅନୁସାରେ କାମ ନ କଲେ ତୁମ୍ଭେମାନେ ଦେଶ ନିନ୍ଦା, କୁଳନିନ୍ଦା ଘଟାଇବ । ଆଜି ଭାରତର ଏ ଜାତୀୟ ଆନ୍ଦୋଳନରେ ଓଡ଼ିଶାର ମାନରକ୍ଷା ଓଡ଼ିଆ ସ୍ତ୍ରୀ ଲୋକଙ୍କ ଉପରେ ବିଶେଷ ନିର୍ଭର କରୁଅଛି । ଏତେବେଳେ ପଛଘୁଞ୍ଚା ଦିଅନାହିଁ । ମୁହୂର୍ତ୍ତେ ହେଳା ନ କରି ନିଜ ନିଜ ଲାଗି ଗୋଟିଏ ଅରଟ ତିଆରି କରାଇ ନିଅ; ଘରର ପୁରୁଷମାନଙ୍କ ସଙ୍ଗେ ଲଗାଇଲେ ସେମାନେ ଅରଟ ତୂଳା ଏବଂ ସୂତାକଟାର ଅନ୍ୟାନ୍ୟ ସମୁଦାୟ ଉପକରଣ ଦୁଇଦିନ ମଧ୍ୟରେ ତୁମ୍ଭମାନଙ୍କ ଲାଗି ନିଶ୍ଚୟ ଯୋଗାଡ଼ କରିଦେବେ । ଆଠଦିନ ମଧ୍ୟରେ ତୁମ୍ଭେ ସୂତାକଟା ଅତି ସହଜରେ ଶିଖିଯିବ; ତେଣିକି ପ୍ରତି ଘଣ୍ଟାରେ ତୋଳାଏ ଦୁଇତୋଳା ସୂତା କାଟିପାରିବ । ତୁମ୍ଭମାନଙ୍କର ସମୟ ଅଛି । ଦିନକେ ୬ ଘଣ୍ଟା ସୂତା କାଟିପାର, ଏଥିରେ କିଛି କଷ୍ଟନାହିଁ ବରଂ ସୁଖ ଲାଗିବ । ନିତାନ୍ତ କମରେ ଦିନକୁ ୬ ତୋଳା ସୂତା ଜଣକେ କାଟିପାରିବ । ମାସରେ ୧୮୦ ତୋଳା । ୪୦ ତୋଳା

ସୂତାରେ ଖଣ୍ଡେ ଲୁଗା ହୋଇପାରିବ । ନିତାନ୍ତ ପକ୍ଷରେ ତୁମର ଜଣକ ସୂତାରେ ମାସକରେ ୪ ଖଣ୍ଡ ଲୁଗା ହୋଇପାରିବ । ଏହିପରି କଲେ ଆଗାମୀ ସେପ୍‌ଟେମ୍ବର ମାସ ମଧ୍ୟରେ ଓଡ଼ିଶାରେ ଘରେ ଘରେ ସ୍ୱଦେଶୀ ଲୁଗା ପ୍ରଚ୍ଛର ହୋଇଯିବ । ଭାରତମାତା ଆଜି ପ୍ରତ୍ୟେକ ଉତ୍କଳ କନ୍ୟାଙ୍କଠାରୁ ଏହାହିଁ ଆଶା କରନ୍ତି ।

('ସମାଜ' ତା ୧୭ । ୮ । ୨୧)

---

# ମୋପଲା ବିଦ୍ରୋହ

ମାନ୍ଦ୍ରାଜ ପ୍ରଦେଶର କାଲିକଟରେ ଏବେ କେତେଦିନ ହେଲା ମୋପଲା ବିଦ୍ରୋହ ଲାଗିଥିବା କଥା ଖବରକାଗଜମାନଙ୍କରେ ବାହାରୁଅଛି । ମୋପଲାମାନେ ଜାତିରେ ମୁସଲମାନ । ବହୁଶତ ବର୍ଷ ହେଲା ଆରବ ଦେଶରୁ ଆସି ଏ ଦେଶରେ ଅଛନ୍ତି । ହଣ୍ଟର ସାହେବଙ୍କ ହିସାବ ଅନୁସାରେ ଏମାନଙ୍କ ସଂଖ୍ୟା ୧୦ ଲକ୍ଷରୁ ଅଧିକ ହେବ । ଏମାନେ ଭାରି ସାହସୀ ଓ ବଳବାନ । ଗୃହଜମି ସଂକ୍ରାନ୍ତରେ ଏମାନେ ବହୁଦିନରୁ ଇଂରେଜ ସରକାର ଉପରେ ଅସନ୍ତୁଷ୍ଟ । ଏଥିପୂର୍ବେ କେତେଥର ମଧ୍ୟ ବିଦ୍ରୋହ କରିଥିଲେ । ୧୮୯୬ ସାଲରେ ଏମାନେ ଯେ ଗୋଳମାଳ କରିଥିଲେ ତାହା ଶାନ୍ତ କରିବାକୁ ଇଂରେଜ ସରକାରଙ୍କୁ ବହୁବେଗ ପାଇବାକୁ ହୋଇଥିଲା । ସେ ଘଟଣାରେ ୧୦୦ ଜଣ ସଶକ୍ତ ମୋପଲା ହତ ହୋଇଥିଲେ । ଏବେ ମୋପଲାମାନେ କାହିଁକି ପୁଣି ଉଠିଛନ୍ତି ଏହାର ପ୍ରକୃତ କାରଣ ଏ ପର୍ଯ୍ୟନ୍ତ ପ୍ରକାଶ ପାଇନାହିଁ । ମାନ୍ଦ୍ରାଜ ସରକାର ଏ ବିଷୟରେ ଏକ ଲେଖା ପ୍ରଚାର କରିଅଛନ୍ତି । ଆଜିକାଲି ଯିଏ ଫଳା ବିଦ୍ୟାପତି ସରକାରଙ୍କ ମତରେ ସବୁ ଗୋଳମାଳ ଏବଂ ଅଶାନ୍ତିର ନିଦାନ ଅସହଯୋଗ । ମାନ୍ଦ୍ରାଜ ସରକାର କହନ୍ତି ଯେ ଅସହଯୋଗୀମାନେ ଏମାନଙ୍କୁ ମତାଇ ବିଦ୍ରୋହ ଘଟାଇ ଅଛନ୍ତି । ମାତ୍ର ସ୍ଥାନୀୟ ଲୋକଙ୍କଠାରୁ ଯେ ସମ୍ବାଦ ମିଳେ ସେଥିରୁ ଜଣାଯାଏ ଯେ ସେ ଜିଲା କଲେକ୍ଟର ସାହେବଙ୍କର ସ୍ଥାନୀୟ କେତେଜଣ ନେତାଙ୍କ ପ୍ରତି ଦୁର୍ବ୍ୟବହାର ହେତୁ ଏ ଘଟଣା ହୋଇଅଛି । ନେତାମାନଙ୍କୁ ରାଜ-ବିଦ୍ରୋହୀ ବୋଲି ମେଜେଷ୍ଟର ଧରିବାକୁ ସୈନ୍ୟ ଓ ସିପାହି ନେଇ ଯାଇଥିଲେ । ଏ ଖବର ପାଇ ପ୍ରାୟ ତିନିହଜାର ମୋପଲା ମେଜେଷ୍ଟରଙ୍କଠାକୁ କାରଣ ବୁଝିବାକୁ ଆସିଲେ । ମେଜେଷ୍ଟର ସେମାନଙ୍କ କଥା ନ ଶୁଣି ବାହାରି ଯିବାକୁ ହୁକୁମ ଦେଲେ । ମୋପଲାମାନେ ମେଜେଷ୍ଟରଙ୍କ ହୁକୁମ ନ ମାନି ଠିଆହୋଇ ରହିବାରୁ ଗୁଳି ଚଳାଇବାର ହୁକୁମ ହେଲା । ସେଥିରେ ସମସ୍ତ ମୋପଲା ଜାତି ତେଜିଯାଇ ଦଳ ବାନ୍ଧିଲେ ।

ଏବେ କାଲିକଟର ବ୍ୟାପାର ବଡ଼ ଗୁରୁତର । ସମସ୍ତ ମାଲବାର ଜିଲାରେ ଏବେ ସାମରିକ ଆଇନ ଜାରି ହୋଇଛି । ସାଧାରଣ ସରକାରୀ କର୍ମଚାରୀମାନେ ସ୍ଥାନ ଛାଡ଼ିଦେଇ ସୈନ୍ୟ ବିଭାଗ ହାତରେ ସେଠାର ଶାସନଭାର ଦେଇ ଆସିଲେଣି । ପ୍ରାୟ ୨୦ ହଜାର

ମୋପଲା ଦଳଙ୍କେ ହୋଇ ଏ ଯୁଦ୍ଧରେ ଯୋଗ ଦେଇଛନ୍ତି । ସେମାନେ ନାନା ସ୍ଥାନରୁ ପୋଷ୍ଟ ଅଫିସ, ପୋଲିସଥାନା, ରେଲଷ୍ଟେସନ ଲୁଟିକରି ଅନେକ ହାତ ହତିଆର, ଗୋଲାଗୁଳି ସଂଗ୍ରହ କରିଛନ୍ତି । କାଲିକଟ ଅଞ୍ଚଳରେ ରେଲଲାଇନ, ଟେଲିଗ୍ରାଫ ତାରସବୁ କାଟି ନଷ୍ଟକରି ଦେଇଛନ୍ତି । ସ୍ଥାନେ ସ୍ଥାନେ ପାହାଡ଼ ଉପରେ ଓ ଜମିରେ ଗାତଖୋଳି ଗଲା ଜର୍ମାନୀ ଯୁଦ୍ଧରେ ସୈନ୍ୟମାନେ ଯେପରି ଲଢ଼େଇ କରୁଥିଲେ ସେହି ଢଙ୍ଗରେ ଇଂରେଜ ସୈନ୍ୟମାନଙ୍କ ଉପରେ ଆକ୍ରମଣ କରୁଛନ୍ତି । ସରକାର ତରଫରୁ କଳା ଗୋରା ଅନେକ ସୈନ୍ୟ ସିପାହୀ ହାଣ ଖାଇଲେଣି । ମୋପଲାମାନଙ୍କ ମଧ୍ୟରୁ କିଛି ଅଧିକ ସଂଖ୍ୟକ ଲୋକ ମରିଛନ୍ତି । ଶୁଣାଯାଏ ଏ ପର୍ଯ୍ୟନ୍ତ ମୋପଲାମାନଙ୍କ ମଧ୍ୟରୁ ମରିଥିବା ସଂଖ୍ୟା ପ୍ରାୟ ୭୮ ଶହ । ମାନ୍ଦ୍ରାଜର ଅସହଯୋଗୀ ନେତାମାନେ ମାଲବାରକୁ ଯାଇ ଲୋକଙ୍କୁ ଶାନ୍ତ କରାଇବା ଲାଗି ବଡ଼ ବ୍ୟାକୁଳ । ଏମାନଙ୍କ ପକ୍ଷରୁ ଶ୍ରୀ ୟାକୁବ ହୋସେନ ସେ ସ୍ଥାନକୁ ଯିବା ସକାଶେ ମାନ୍ଦ୍ରାଜ ଲାଟଙ୍କ ଅନୁମତି ମାଗିଥିଲେ । ସେ ଅସହଯୋଗୀ ଦଳର ନେତା । ସୁତରାଂ ସରକାରଙ୍କର ଶତ୍ରୁ ବୋଲି କହି ମାନ୍ଦ୍ରାଜ ଲାଟ ଅନୁମତି ଦେଲେ ନାହିଁ ।

ମୋଟକଥା ପଞ୍ଜାବ ଅତ୍ୟାଚାର ପୁନରାୟ ଅଧିକ ଗୁରୁତର ଏବଂ ଭୀଷଣ ଭାବରେ କାଲିକଟରେ ପ୍ରକାଶ ପାଇଅଛି । ସରକାର ଦେଶନେତାମାନଙ୍କ ଉପରେ ବିଶ୍ୱାସ ଏବଂ ନିର୍ଭର ରଖିଥିଲେ ଅନେକ ଘଟଣାରେ ଉତ୍ପାତ ସହଜରେ ନିବାରିତ ହୁଅନ୍ତା । ଅସହଯୋଗୀ ଦଳର ନ୍ୟାୟ ନିର୍ମଳ ଶାନ୍ତ ସରଳ ନୀତିରେ ଇଂରେଜ ସରକାରଙ୍କ ମୁଖିଆ କର୍ମଚାରୀଙ୍କ ବିଶ୍ୱାସ ନ ଥିବା ସରକାରଙ୍କ ପକ୍ଷେ ବି କ୍ଷତିକାରକ । ମୋପଲା ବିଦ୍ରୋହରେ କେଉଁ ପକ୍ଷର ଦୋଷ ବେଶୀ ତାହା ନିରୂପଣ କରିବାର ସମୟ ବର୍ତ୍ତମାନ ଆସିନାହିଁ । ମାତ୍ର ଏପରି ବିଦ୍ରୋହ ସରକାରଙ୍କ ପକ୍ଷରେ ଯାହାହେଉ ସ୍ୱରାଜ୍ୟ ପ୍ରାପ୍ତି ବିଷୟରେ ଅନ୍ତରାୟ ବୋଲି ଅସହଯୋଗୀମାନଙ୍କର ବିଶ୍ୱାସ । ଯାହା ଦେଖାଯାଉଛି ମହାତ୍ମାଗାନ୍ଧୀ ଏବଂ ତାଙ୍କ ଦଳକୁ ସରକାର ଏ ପର୍ଯ୍ୟନ୍ତ ଚିହ୍ନି ନାହାନ୍ତି । ଅବିଶ୍ୱାସ ଏବଂ ଅସ୍ତ୍ର ଶସ୍ତ୍ର ଯେ ସରକାରଙ୍କ ଏକମାତ୍ର ସମ୍ବଳ, ଅସହଯୋଗର ଶାନ୍ତିପ୍ରବୃତ୍ତି ପନ୍ଥା ତାଙ୍କ କର୍ମଚାରୀମାନଙ୍କର ଅଗମ୍ୟ ହେବା ଆଶ୍ଚର୍ଯ୍ୟ କଅଣ ?

(‘ସମାଜ’, ତା ୩ । ୯ । ୨୧)

---

# ଯୁବରାଜଙ୍କ ଅଭ୍ୟର୍ଥନା ବର୍ଜନ

ଯୁବରାଜଙ୍କୁ ଅଭ୍ୟର୍ଥନା ଦେବାଲାଗି କଲିକତାର କେତେକଣ ରାଜା ମହାରାଜା ଏବଂ ସମଶୀତଳିଆ ବଡ଼ଲୋକ ଦସ୍ତଖତ୍ କରି ଗଲମାସ ୨୪ ତାରିଖରେ ଡେଲହାଉସି କୋଠାରେ ଗୋଟିଏ ସାଧାରଣ ସଭା ଡକାଇଥିଲେ । କଲିକତା ଏବଂ ବଙ୍ଗ ପ୍ରଦେଶରୁ ଲୋକ ସାଧାରଣଙ୍କ ପକ୍ଷରୁ ଏ ସଭାହେବ ବୋଲି ବିଜ୍ଞାପନ ଦିଆଯାଇଥିଲା । ୨୪ ତାରିଖ ପୂର୍ବରୁ ଦେଶବନ୍ଧୁ ଚିତ୍ତରଞ୍ଜନ ପ୍ରଭୃତି ମୁଖ୍ୟ ଅସହଯୋଗୀନେତାମାନେ କଲିକତାର ଜନସାଧାରଣଙ୍କୁ ଡକାଇ ଏକ ବିରାଟ ସାଧାରଣ ସଭା କରିଥିଲେ । ୨୪ ତାରିଖ ସଭାରେ ଉପସ୍ଥିତ ହୋଇ ନିଜ ନିଜ ମତ ବ୍ୟକ୍ତ କରିବା କାରଣ ଏ ସଭାରେ ସମସ୍ତଙ୍କୁ ଅନୁରୋଧ କରାଯାଇଥିଲା । ୨୪ ତାରିଖ ସଭା ସମୟରେ ୫ୀ ଘଣ୍ଟା ଆଗରୁ ଶହ ଶହ ଲୋକ ଯାଇ ଡେଲହାଉସି କୋଠାରେ ଜାଗାମାଡ଼ି ବସିଥିଲେ । ୫ୀ ଘଣ୍ଟା ବେଳକୁ ସଭା ହେବାର କଥା । ମାତ୍ର ୪ଟା ବେଳକୁ ଘର ପୂର୍ଣ୍ଣ ହୋଇଗଲା । ମାରବାଡ଼ି, ବଙ୍ଗାଳୀ, ଗୁଜରାଟୀ, ବଡ଼-ବଡ଼ ଶେଠ, ବାରିଷ୍ଟର, ସାହୁକାରମାନେ ଏଥିରେ ଯୋଗ ଦେଇଥିଲେ । ଶ୍ରୀଯୁକ୍ତ-ଚିତ୍ତରଞ୍ଜନ ଦାସ ଓ ଅନ୍ୟାନ୍ୟ ଅସହଯୋଗୀ ଲୋକନାୟକମାନେ ଏଥିରେ ଥିଲେ । ଏ ଖବର ପାଇ ସମଶୀତଳିଆ ରାଜବଲ୍ଲଭ ମହାମାନ୍ୟମାନେ ଓ ଗୋରା ସାହେବ ସୁବାମାନେ ଡେଲହାଉସି କୋଠାକୁ ମୁହାଁଇବାକୁ ସାହସ କଲେ ନାହିଁ । ସଙ୍ଗେ ସଙ୍ଗେ ସେ ଦଳର ଗୁପ୍ତ ମନ୍ତ୍ରଣା ଲାଗିଲା । ସଭାସ୍ଥଳ ସଙ୍ଗେ ସଙ୍ଗେ ବଦଳିଗଲା । କାହାକୁ କିଛି ନ କହି ଗୁପ୍ ଚୁପ୍‌ରେ ଯେଝା ଝଣ୍ଟରେ ଯେ ଯାଇ ଟାଉନହଲରେ ଭେଟ ହେଲେ । ବଙ୍ଗଳାର ଲାଟ, ମନ୍ତ୍ରୀ ସୁରେନ୍ଦ୍ର ନାଥ, କଲିକତା ହାଇକୋର୍ଟର ପ୍ରଧାନ ବିଚାରପତି ଓ ଅନ୍ୟାନ୍ୟ ଗୋରା-କଳା ବଡ଼ ସରକାରୀ ଓ ସରକାରଭକ୍ତ ସରକାରୀ ଲୋକେ ପ୍ରାୟ ୫୦୦ ଜଣ ସଭାକୁ ଉପସ୍ଥିତ ଥିଲେ । ସେଥିରୁ ୪୪୦ ଜଣଯାଏ ଗୋରା ।

ଏ ସଭାରେ ବଡଲାଟ ସଭାପତି ହୋଇଥିଲେ । ଟାଉନହଲର ଚାରିପାଖେ ଦଉଡ଼ିଘେର ଦିଆହୋଇ ଗୋରା ସୈନ୍ୟ ସବୁ ପହରା ଦେଉଥିଲେ । ସାହେବ ବେଶଧାରୀ ବାବୁଙ୍କ ଛଡ଼ା ଆଉ କାହାକୁ ଭିତରକୁ ପୂରାଇ ଦିଆ ଯାଉ ନ ଥିଲା ।

ଏଣେ ଡେଲହାଉସି କୋଠାରେ ଚିତ୍ତରଞ୍ଜନ ଦାସ ସଭାପତି ହୋଇ ସର୍ବସମ୍ମତି କ୍ରମେ ଧାର୍ଯ୍ୟ ହେଲା ଯେ କଲିକତା ନଗର ଏବଂ ବଙ୍ଗ ପ୍ରଦେଶର ଅଧିବାସୀମାନେ

ଯୁବରାଜଙ୍କୁ ଅଭ୍ୟର୍ଥନା କରିବେ ନାହିଁ । ଟେଲହାଉସି କୋଠାରେ ସ୍ଥାନ ନ ହେବାରୁ ଡେଲହାଉସି ପଡ଼ିଆରେ ସହସ୍ର ସହସ୍ର ଲୋକ ଜମାହୋଇ ଏହି ମର୍ମରେ ମଧ୍ୟ ପ୍ରସ୍ତାବ ଧାର୍ଯ୍ୟ କରିଥିଲେ ।

ଏଥି ମଧ୍ୟରେ ଟାଉନହଲ୍ ସଭାକଥା ଶୁଣି ଅନେକ ଲୋକ ସେଠାକୁ ଦଉଡ଼ିଲେ । ମାତ୍ର ଟାଉନହଲ ଭିତରେ ପଶିବାର ସୁବିଧା ପାଇଲେ ନାହିଁ । ବାହାରେ ରହି ସରକାରୀ ସଭାର କାର୍ଯ୍ୟ ବିରୁଦ୍ଧରେ ମତ ପ୍ରକାଶ କରୁଥିଲେ । ଶେଷକୁ ସରକାରୀ ଲୋକେ କୌଣସି ପ୍ରକାରେ ମାମୁଲି ତର୍କରେ ପ୍ରସ୍ତାବ କେତୋଟି ଧାର୍ଯ୍ୟକରି ଟାଉନହଲର ପଛଦୁଆର ବାଟେ ଚାଲିଗଲେ ।

ଯୁବରାଜଙ୍କ ଭାରତ ଆଗମନ ସମ୍ବନ୍ଧେ ଦେଶର ସାଧାରଣ ଲୋକଙ୍କ ଅଭିମତ ଏହିପରି ସ୍ଥାନେ ସ୍ଥାନେ ପ୍ରକାଶ ପାଉଅଛି । ତଥାପି ସରକାରୀ ଲୋକେ ଯୁବରାଜଙ୍କୁ ନ ଆଣି ଛାଡ଼ିବେ ନାହିଁ, ଏ ଜିଦ୍‌ର ଅର୍ଥ କଅଣ

## ବଡ଼ଲାଟ କର୍ଣ୍ଣେ କୁହାମୁଣ୍ଡା କପିଳା

ଗଲାଥର ମ୍ୟୁନିସନ ମୋକଦ୍ଦମା ବିଷୟରେ କେତେକ କଥା ସମାଜରେ ପ୍ରକାଶ ପାଇଥିଲା । ଇତି ମଧ୍ୟରେ ବଡ଼ଲାଟ ଏକ କମ୍ୟୁନିକ ବାହାର କରିଛନ୍ତି କି ମ୍ୟୁନିସନ ମୋକଦ୍ଦମା ବିଷୟରେ ସାର ଅମାସ ହଲାଣ୍ଡ ଯାହା କରିଛନ୍ତି ତାହା ନ୍ୟାଯ୍ୟ ବିରୁଦ୍ଧ । ଆସାମୀମାନଙ୍କର ବିଚାର ଅଦାଲତରେ ନିଷ୍ପତ୍ତି ହେବା ଉଚିତ । ତେଣୁ ମ୍ୟୁନିସନ ମୋକଦ୍ଦମା ପୁଣି ଏବେ ଚାଲିବ । ସାର ଅମାସ ହଲାଣ୍ଡ ଏହି ଅପରାଧ ହେତୁ ଚାକିରି ଇସ୍ତଫା ଦେଇ ବାହାରି ଯାଉଛନ୍ତି ବୋଲି ଶୁଣାଯାଏ । ଲର୍ଡ଼ ରିଡ଼ିଂ କହନ୍ତି ବିଚାର ଅଦାଲତରେ କାର୍ଯ୍ୟକାରୀ ସରକାରୀ କର୍ମଚାରୀଙ୍କର ହୁକୁମ ଜାରି କରିବା ଅନ୍ୟାଯ୍ୟ । କିନ୍ତୁ ପଞ୍ଜାବ ଅତ୍ୟାଚାର ବେଳେ ଏପରି ଅନ୍ୟାଯ୍ୟ କେତେ ହୋଇଯାଇଛି ! ତାର ସେ ପ୍ରତିକାର କରୁଛନ୍ତି କି ? ବେଳୁବେଳ ତାଙ୍କ ଭାବଗତି ଯେପରି ପ୍ରକାଶ ପାଉଛି ଜଣାଯାଏ ସେ ଜଣେ କୁହାମୁଣ୍ଡା କପିଳା ।

('ସମାଜ', ତା ୩ । ୧ । '୨୧)

---

# ବିଦେଶୀବସ୍ତ୍ର ବର୍ଜନ

ବିଦେଶୀ ବର୍ଜନ ବିଷୟରେ ବିହାର ଓଡ଼ିଶା ସରକାର ଏବେ ଗୋଟାଏ ସର୍କୁଲର କରିଅଛନ୍ତି । ପ୍ରତି ପ୍ରଦେଶର କମିଶନରଙ୍କଠାକୁ ଭିତର ଭିତରେ ଏହା ପଠିଆ ଯାଇଅଛି । ମହାତ୍ମାଗାନ୍ଧୀଙ୍କ ଟାଣ ଦେଖି ସରକାର ବିଚଳିତ ହେଲାପରି ଏ ସର୍କୁଲରରୁ ବେଶ୍ ଜଣାଯାଏ । ବିଦେଶୀ ବର୍ଜନ ଆନ୍ଦୋଳନ ଲୋକଙ୍କୁ ଖୁବ୍ ଭଲ ଲାଗିବ ଏବଂ ଏଥିରେ ହିଁ ସରକାର ଆପଣାର ବିପଦ ଗଣୁଛନ୍ତି । ଲୋକେ ଲୁଗା ଦୋକାନ ପାଖେ ଛିଡ଼ା ହୋଇ ଖରିଦଦାରମାନଙ୍କୁ ବିଦେଶୀ ଲୁଗା କିଣିବାରୁ ନିବର୍ତ୍ତାଇବେ । ଏଥିରେ ଲୁଗା ଦୋକାନୀମାନଙ୍କର କ୍ଷତି ହେବ ବୋଲି ସରକାର ଆଶଙ୍କା କରନ୍ତି । ବିଦେଶୀଲୁଗା ପୁଣି ଏ ଦେଶକୁ ନ ଆସିଲେ ଲୁଗାର ଦର ଚଢ଼ିଯିବ । ଲୋକମାନଙ୍କର ଏହାଦ୍ୱାରା ଭାରି କଷ୍ଟ ହେବବୋଲି ମଧ୍ୟ ସରକାର ଭାରି ବ୍ୟାକୁଳ । ଅତଏବ ଅରଟ କରି ଦେଶୀଲୁଗା ତିଆରି କଲେ ଲୋକଙ୍କର ହାନି । କେବଳ ବିଲାତିଲୁଗା ପିନ୍ଧିଲେ ଲୋକଙ୍କର ହିତହେବ ବୋଲି ସରକାର ଲୋକଙ୍କୁ ବୁଝାଇବାକୁ ଚାହାନ୍ତି । ବିଲାତି ଲୁଗା ବେପାରି-ମାନଙ୍କୁ ସରକାର ତରଫରୁ ସାହାଯ୍ୟ ଦିଆଯିବ । ବିଲାତିଲୁଗା ଖରିଦଦାରମାନଙ୍କୁ କେହି ଧମକାଇଲେ ବା ଜୋର ଜବରଦସ୍ତି କରି ବିଦେଶୀ କପଡ଼ା କିଣିବାରୁ ନିବର୍ତ୍ତାଇଲେ ତାଙ୍କୁ ସାଥେ ସାଥେ ଫୌଜଦାରି ସୁପର୍ଦ୍ଦ କରାଯିବ । ବିଲାତି କପଡ଼ା ଦୋକାନମାନ ଜଗିବାଲାଗି ପୋଲିସ କର୍ମଚାରୀ ସଂଖ୍ୟା ବଢ଼ାଇବାକୁ ହେବ । ସରକାରଙ୍କର ଏ ସବୁ ଉଦ୍ୟମର କାରଣ ଜଣାପଡ଼ୁଛି ? ପ୍ରକୃତରେ କଅଣ ଲୁଗାର ଦର ବଢ଼ିଯିବ, ଗରିବ ଲୋକେ ପିନ୍ଧିବାକୁ ଲୁଗା ପାଇବେ ନାହିଁ ବୋଲି ସରକାର ବ୍ୟାକୁଳ ? ଯୁଦ୍ଧ ସମୟରେ ଲୁଗାର ଦାମ୍ କେତେ ଉପରକୁ ଚଢ଼ିଗଲା । ଲୁଣ ଟିକିଏ ଖାଇବାକୁ ଲୋକଙ୍କୁ ମିଳିଲା ନାହିଁ । ଲୁଣ ସେର ଦୁଇଅଣା ତିନିଅଣା ପର୍ଯ୍ୟନ୍ତ ହୋଇଗଲା । ଚାଉଳ ଦର ତ ସବୁବେଳେ ଚଢ଼ା । କେଉଁ ଜିନିଷଟା ଲୋକେ ଶସ୍ତାରେ ପାଉଛନ୍ତି ? ଲୋକେ ବେଶ୍ ବୁଝିଛନ୍ତି ଏବଂ ଏହାହିଁ ସେମାନଙ୍କର ଦୃଢ଼ ବିଶ୍ୱାସ ଯେ ବର୍ତ୍ତମାନ ଗାଦିରେ ସରକାରଙ୍କ କଳ ଚାଲୁଥିବାଯାଏ କୌଣସି ଜିନିଷ କଦାପି ଶସ୍ତା ହେବନାହିଁ । ଲୋକଙ୍କର ବ୍ୟବହାରୀୟ ସବୁ ଜିନିଷ ମହରଗ ହେଉଥିଲା; ସରକାରଙ୍କର ସେଥିରେ ଧୂମ୍ ଭାଙ୍ଗୁ ନ ଥିଲା । ବିଲାତି ଲୁଗା ବନ୍ଦ ହେଲାବେଳକୁ କାହିଁକି ଚେଇଁ ବସିଲେଣି । ଏଥିପୂର୍ବେ ସରକାରୀ ବଡ଼ ପଦସ୍ଥ କର୍ମଚାରୀମାନେ ସ୍ୱଦେଶୀ ସପକ୍ଷରେ ଅନେକ ଘଟଣାରେ କେତେ କଥା କହୁଥିଲେ । ନିଶାନିବାରଣକୁ ମଧ୍ୟ ସେମାନେ କଥାରେ ସମର୍ଥନ କରୁଥିଲେ । ମଲାବେଳକୁ ହନୁ

ସତ କହିଲାଭଳି ହିସାବ କଷାବ ବେଳକୁ ସରକାର ଧରାପଡ଼ିଗଲେ । ନିଶାନିବାରଣ ଲାଗି ଅସହଯୋଗୀମାନେ ଉଦ୍ୟମ କଲାରୁ ସରକାର ତାହିଁ ବିରୁଦ୍ଧରେ କାର୍ଯ୍ୟ କଲେ । ଅନ୍ୟାୟରେ ଅନେକ ଲୋକଙ୍କ ଉପରେ ଜୋର ଜବରଦସ୍ତି କରାଗଲା । ବିହାର ସରକାର ପୁଣି ସଫା ମଦର ମାହାତ୍ମ୍ୟ ଗାଇଲେ । ସେଥିରେ ନିନ୍ଦା ହେବାରୁ ଏଥର ସ୍ୱଦେଶୀ ବିରୁଦ୍ଧରେ ଭିତରିଆ ସର୍କୁଲାର ବୋଧହୁଏ ବାହାରିଲା । ଉପସ୍ଥିତ ସର୍କୁଲାରରେ ଲେଖାଅଛି କି ନିଶା ନିବାରଣ ଉଦ୍ୟମରେ ଅନେକ ନରମ ଦଳିଆଙ୍କର ଭିତର ସହାନୁଭୂତି ଥିଲା ବୋଲି ସରକାର ତରଫର ଉଦ୍ୟମ କଷ୍ଟସାଧ୍ୟ ହୋଇଥିଲା । ମାତ୍ର ବିଦେଶୀ ବର୍ଜନ ସପକ୍ଷରେ ଅନେକ ଶିକ୍ଷିତ ଲୋକଙ୍କର ମତ ହେବନାହିଁ । ମାରବାଡ଼ିମାନେ ଅସହଯୋଗର ଅନ୍ୟାନ୍ୟ କାର୍ଯ୍ୟରେ ଖୁବ୍ ଯୋଗ ଦେଉଥିଲେ ସୁଦ୍ଧା ବିଦେଶୀ ବର୍ଜନ ଉଦ୍ୟମ ସେମାନଙ୍କୁ ଭଲ ଲାଗିବ ନାହିଁ । କାରଣ ମାରବାଡ଼ିମାନେ ବିଦେଶୀ ଲୁଗାର ଅଧିକ କାରବାର କରନ୍ତି । ସରକାର ମନେ ମନେ ମୁଆଁ ଖାଉଛନ୍ତି । ବଙ୍ଗଳା, ବମ୍ବେଇ, ଲକ୍ଷ୍ନୌ, କାନପୁରର ଅଧିକାଂଶ ମାରବାଡ଼ି ମହାଜନ ଏଥିମଧ୍ୟରେ ବିଦେଶୀ ଲୁଗା କାରବାର ନ କରିବେ ବୋଲି ସତ୍ୟ କରି ସାରିଲେଣି । ଏ ଦେଶର କୌଣସି ଶିକ୍ଷିତ ବ୍ୟକ୍ତି ସେ ଯେ ଦଳର୍ହ ହେଉନ୍ତୁ, କେବେ କହିବେ କି ବିଦେଶୀ ଲୁଗା ବ୍ୟବହାର ଦ୍ୱାରା ଭାରତବାସୀର ମଙ୍ଗଳ ହେଉଛି ? ନରମ ଦଳର ଲୋକେ ମଧ୍ୟ ସ୍ୱଦେଶୀ ପ୍ରଚାର ଲାଗି ବହୁଦିନରୁ ଉଦ୍ୟମ କରି ଆସୁଅଛନ୍ତି । ବଙ୍ଗଳାର ସାର ସୁରେନ୍ଦ୍ର ନାଥ ଏବେ ସରକାରଙ୍କର ଜଣେ ଭାରି ଭକ୍ତ ହୋଇଛନ୍ତି । ସ୍ୱଦେଶୀ ବିରୁଦ୍ଧରେ ତାଙ୍କର କହିବାକୁ ଆଜି ମୁହଁ ଅଛି କି ? ଖୋଦ୍ ବିହାର ଓଡ଼ିଶା ସରକାରଙ୍କର ବୃଦ୍ଧ ମନ୍ତ୍ରୀ ମାନ୍ୟବର ମଧୁସୂଦନ ଦାସ ଉତ୍କଳ ସମ୍ମିଳନୀରେ କେତେବର୍ଷକାଳ ସ୍ୱଦେଶୀ ପ୍ରଚାର ଲାଗି କହି ନାହାନ୍ତି ? ସରକାର ଏମାନଙ୍କୁ ଲୋକନାୟକ ବୋଲି ଧରୁଛନ୍ତି ପରା ? ସ୍ୱଦେଶୀ ପ୍ରଚାର ବିଷୟରେ ଏମାନେ କଣ କହୁଛନ୍ତି ? ଯେତେଦିନଯାଏ ସ୍ୱଦେଶୀ ବିଷୟରେ ଖାଲି ସଭାସମିତିରେ ପ୍ରସ୍ତାବ ହେଉଥିଲା, ସରକାର କଥାରେ ଭାରି ସହାନୁଭୂତି ଦେଖାଉଥିଲେ । ମାତ୍ର ଲୋକେ ଯେତେବେଳେ ଅଣ୍ଟାଭିଡ଼ି ସ୍ୱଦେଶୀ ପ୍ରଚାରଲାଗି କାର୍ଯ୍ୟରେ ବାହାରିଲେ ସରକାରଙ୍କର ଆତଙ୍କ ଉପସ୍ଥିତ । ଆମ୍ଭମାନଙ୍କର ଦୃଢ଼ବିଶ୍ୱାସ ନିଜେ ଲର୍ଡ଼ ସିଂହ ଛାତିରେ ହାତ ଦେଇ ସ୍ୱଦେଶୀ ବିରୁଦ୍ଧରେ କହିପାରିବେ ନାହିଁ । ମାତ୍ର ସେ ତ ଆଜି ବଙ୍ଗଳାର ସତ୍ୟେନ୍ଦ୍ର ପ୍ରସନ୍ନ ସିଂହ ହୋଇନାହାନ୍ତି, ସେ ବର୍ତ୍ତମାନ ସରକାରଙ୍କ କଳର ଅନ୍ତର୍ଭୁକ୍ତ । ଇଂରେଜ ଶାସନରେ ଏ ଦେଶରେ ସୂତାକଟା ଏବଂ ଲୁଗାବୁଣା କାର୍ଯ୍ୟ ନଷ୍ଟ ହୋଇଅଛି । ବିଲାତର ବ୍ୟବସାୟୀମାନଙ୍କ ଲାଭ ନିମନ୍ତେ ଜୋରକରି ଆଇନଦ୍ୱାରା ଏ ଦେଶର ଶିଳ୍ପ

ଧ୍ୱଂସ କରାଯାଇଅଛି । ଏଥିର ଫଳରେ ନିଜର ଲଜ୍ଜା ନିବାରଣ ଲାଗି ଭାରତବାସୀ ଆଜି ପରଦ୍ୱାରରେ ହାତ ପତାଇ ଠିଆ ହୋଇ ରହିଛନ୍ତି । ଏହା ଭାରତ ଜାତିପକ୍ଷରେ ଘୋର ମାନହାନି । ଆଜି ଏ ଜାତିର ଚେତା ଆସିଅଛି । ଆତ୍ମସମ୍ମାନ ବୋଧ ଜନ୍ମିଅଛି । ବିଦେଶୀ ବର୍ଜନରେ କୌଣସି ହିଂସା ବା ଦ୍ୱେଷ ନାହିଁ । ଏହା ଆତ୍ମରକ୍ଷାର ଏକ ପ୍ରଧାନ ପନ୍ଥା । ବିଲାତର ବ୍ୟବସାୟୀମାନଙ୍କ ଉପକାର ଲାଗି ସରକାର ଯାହା ଇଚ୍ଛା ତାହା କରିପାରନ୍ତି । ମାତ୍ର ଭାରତବାସୀ ବୁଝିଛି, ସ୍ୱଦେଶୀ ତା ପକ୍ଷେ ଜୀବନ ମରଣର ସମସ୍ୟା । ସ୍ୱଦେଶୀ ପ୍ରଚାର ଲାଗି ସେ ଆଜି ପ୍ରାଣପଣ କରି ବସିଛି ।

('ସମାଜ', ତା ୩ । ୯ । ୨୧)

# ସ୍ୱରାଜ୍ୟ ହେଲେ ସବୁ ଦୁଃଖ ଯିବ

ମାନ୍ୟବର ସଚ୍ଚିଦାନନ୍ଦ ସିଂହ ଯାଜପୁର ଅନ୍ତର୍ଗତ ବାଞ୍ଛାପୁରକୁ ଗଲ ମାଘ ୩୧ ତାରିଖରେ ଆସିଥିବା ଖବର ଗଲଥର ସମାଜରେ ପ୍ରକାଶ ପାଇଥିଲା । ଏଥିମଧ୍ୟରେ ତାଙ୍କ ଆଗମନ ବିଷୟରେ ସମ୍ବାଦପତ୍ରରେ ଯାହାସବୁ ପ୍ରକାଶ ପାଇଅଛି ଏବଂ ଅମ୍ଭେମାନେ ଯେସବୁ ପତ୍ର ପାଇଅଛୁ, ସେଥିରୁ ଜଣାଯାଏ ଯେ ଲୋକେ ନିରାଶ ହୋଇଅଛନ୍ତି । ଆମଦେଶ ଲୋକେ ସରକାରଙ୍କର ବଡ଼ ବଡ଼ କର୍ମଚାରୀଙ୍କଠାରୁ ଏହିପରି ବାରମ୍ବାର ହତାଶ ହୋଇଛନ୍ତି । ସିଂହ ଜଣେ ଦେଶହିତୈଷୀ ବୋଲି ବହୁଦିନରୁ ଶୁଣାଯାଉଥିଲା । ଲୋକେ ଭାବିଥିଲେ କେଜାଣି ତାଙ୍କ ବ୍ୟବହାର ଅନ୍ୟପ୍ରକାର ହୋଇପାରେ । ଆଗେ ଆମଦେଶର ପୁରୁଣା ଲୋକେ ଇସ୍କୁଲ ପଢ଼ୁଆଙ୍କୁ ଇସ୍‌କୁଲିଆ ବୋଲି କହୁଥିଲେ, ଅର୍ଥାତ୍ ଯେ ଇସ୍କୁଲରେ ପଢ଼ନ୍ତି ସେ ଇସ୍କୁଲର ହୋଇ ଯାଆନ୍ତି । ଆମ କୁଳରେ ରହନ୍ତି ନାହିଁ । ସେହିପରି ସରକାରଙ୍କ ଚାକିରି ଯେ କରନ୍ତି ସେ ତାଙ୍କ ପକ୍ଷର ହୋଇଯାଆନ୍ତି । ସେ କଳରେ ପଶିଲେ ତାଙ୍କ ରଙ୍ଗ ପାଲଟି ଯାଏ, ଜାତି ବଦଳିଯାଏ, ସେ ଆପଣାକୁ ଲୋକଙ୍କ ଭିତରର ବୋଲି ମନେ କରନ୍ତି ନାହିଁ । ମାନ୍ୟବର ସଚ୍ଚିଦାନନ୍ଦଙ୍କ ବ୍ୟବହାରରୁ ତାଙ୍କ ପ୍ରତି ଲୋକଙ୍କର ଏହି ଭାବ ଦୃଢ଼ ହୋଇଥିବାର ଜଣାଯାଏ । ୩୦ ତାରିଖରେ ତାଙ୍କର ଆସିବାର ଥିଲା । ସେଦିନ ସରକାରୀ ଚାକର ନୌକର ଏବଂ ସରକାରୀ ସହଯୋଗୀ କେତେ ଲୋକ କେତେ ଆୟୋଜନ ନ କରି ଚକାଇ ରହିଲେ । ସେଦିନର ଆୟୋଜନ ବାସକଶଯ୍ୟାରେ ପର୍ଯ୍ୟବସିତ ହେଲା । ପରଦିନ ଆସିଲେ ଯେପରି ଠିକ୍ ସରକାରୀ କାଏଦା ସେହିପରି କାଏଦା କରି-ବାଣ ଆତସବାଜି ଦେଖି ଧୋବଧାଉଳିଆଙ୍କ ସଙ୍ଗେ ହାତପଞ୍ଝା ମୋଡ଼ାମୋଡ଼ି ହୋଇ ଯାହା ପଦେ ଅଧେ କଅଣ କହି ସାଥେ ସାଥେ ବୋଟକୁ ଗଲେ । ଏଥିରେ ଲୋକ ସାଧାରଣଙ୍କ ମନରେ ଯେ ଭାବ ହେବାର ହୋଇଅଛି । ସରକାର ଓ ସରକାରଙ୍କ ଉଚ୍ଚପଦସ୍ଥ କର୍ମଚାରୀମାନଙ୍କ ବ୍ୟବହାର ଓ କାର୍ଯ୍ୟକଳାପଦ୍ୱାରା ପ୍ରଜାସାଧାରଣଙ୍କର ବହୁଦିନରୁ ବିଶ୍ୱାସ ତୁଟିଯାଇଛି, ଏଥିରେ ସନ୍ଦେହ ନାହିଁ । ତଥାପି ମନୁଷ୍ୟର ଆଶା ସହଜରେ ତୁଟେ ନାହିଁ । ତେଣୁ ବେଳେ ବେଳେ ସେମାନେ ଏହିପରି ଆଶା ବୈତରଣୀରେ ପଡ଼ି ଛଟପଟ ହୁଅନ୍ତି ମାତ୍ର; ନ ହେଲେ ଲୋକେ ବେଶ୍ ବୁଝିଛନ୍ତି ଯେ ସରକାର ଯେତେବେଳେ ଗୋଟାଏ କମିଶନ ବସାନ୍ତି ବା କୌଣସି ଅଫିସରଦ୍ୱାରା ତଦନ୍ତ କରନ୍ତି ସେସବୁ କେବଳ ଲୋକଙ୍କୁ ବୋଧ ଦେବାପାଇଁ । ସେହି ବୋଧପାଇ ଲୋକ ସେତେବେଳେ

ଭୁଲିଗଲେ ସରକାର ନିଶ୍ଚିନ୍ତ । ସିଂହ ସାହେବ ଆସିଥିଲେ ନଈ, ଘାଇ, ନଈବନ୍ଧ, କେନାଲ ବନ୍ଧ ଆଦି ଦେଖି ବନ୍ୟା ବଜ୍ରପାତରୁ ଦେଶକୁ ରକ୍ଷା କରିବାର ଉପାୟ ସ୍ଥିର କରିବା ଲାଗି । କଟକ, ପୁରୀ, ବାଲେଶ୍ୱର ଜିଲାରେ ଏ ପ୍ରଶ୍ନ ନୂଆ ନୁହେଁ । କୌଣସି ନା କୌଣସି ବର୍ଷ ଏହି ଜିଲାମାନଙ୍କର କୌଣସି ସ୍ଥଳରେ ହେଲେ ଘାଇ ଭାଙ୍ଗୁଛି । ତହିଁର ଫଳରେ ଲୋକଙ୍କର ଯେ ଅନିଷ୍ଟ ହେଉଛି ତାହା ମଧ୍ୟ ସମସ୍ତେ ଭଲରୂପେ ଜାଣନ୍ତି ଏବଂ ସହସ୍ର ସହସ୍ର ପ୍ରଜା ସେଥିର ଫଳ ନିଜ ଅଙ୍ଗେ ବର୍ଷକୁ ବର୍ଷ ଭୋଗୁଛନ୍ତି । କେତେକାଳରୁ ଓଡ଼ିଶା ଏମ୍ବାକମେଣ୍ଟ କମିଟି ବୋଲି ନଈବନ୍ଧ କେନାଲ ବନ୍ଧ ଆଦିର କଥା ବିଚାର କରିବାଲାଗି ଗୋଟାଏ ସଭା ଅଛି । କମିଶନର ସାହେବ ସେଥିରେ ସଭାପତି । ଜିଲା ହାକିମ କେହି କେହି ସରକାରଙ୍କ ବାରିକ ମିସ୍ତ୍ରୀ ଇଲାକାର ମୁଖ୍ୟ କର୍ମଚାରୀ ଏବଂ ସ୍ଥାନୀୟ ବେସରକାରୀ ଧୋବଧାଉଳିଆ କେତେଜଣ ସେ କମିଟିର ମେମ୍ବର ଥିଲେ । ଆଗେ ତ ସେ କମିଟି ଅଛି ବୋଲି କେହି ଜାଣି ନ ଥିଲେ । ମାନ୍ୟବର ବ୍ରଜସୁନ୍ଦର ଦାସ ବିହାର ଓଡ଼ିଶା ଲାଟସଭାରେ ଏ କମିଟି କଥା ଉଠାଇବା ଦିନୁ ଏବେ ବର୍ଷେ ଖଣ୍ଡେ ହେଲା କେବେ କେବେ ସେ କମିଟିର କାର୍ଯ୍ୟକଳାପ ଟିକିଏ ଶୁଣାଯାଏ । ଗଲାବର୍ଷ ଏହି ସେପ୍ଟେମ୍ବର ମାସରେ ଆମେ ବିହାର ଓଡ଼ିଶା ଲାଟସଭାରେ ଏ ସମ୍ବନ୍ଧେ ଯେଉଁ ପ୍ରସ୍ତାବ ଆଣିଥିଲୁ ସରକାର ତାହା ମଞ୍ଜୁର କରିଥିଲେ । କଟକ, ପୁରୀ, ବାଲେଶ୍ୱର ଜିଲାର ଜଳ ଗମନାଗମନ ରାସ୍ତାର ସର୍ଭେ କରାଯାଇ ଏପରି କିଛି ବ୍ୟବସ୍ଥା ହେଉ ଯେପରି ବନ୍ୟାଜଳ ସହଜରେ ଖଲାସ ହୋଇଯାଇ ପାରିବ । ତାହାହେଲେ ବନ୍ୟାଯୋଗେ ଶସ୍ୟହାନି ହେବନାହିଁ କିମ୍ବା ଦେଶର ସ୍ୱାସ୍ଥ୍ୟ ନଷ୍ଟ ହେବନାହିଁ । ଏହି ପ୍ରସ୍ତାବ ଫଳରେ ପୁରୀ ଜିଲା ମାପ କରିବାକୁ ସବ୍-ଓଭରସିଅର, ଓଭରସିଅର, ଆସିଷ୍ଟାଣ୍ଟ ଇଞ୍ଜିନିୟର, ଇଞ୍ଜିନିୟର ପ୍ରଭୃତି ଦଳେ ଦଳେ ଲୋକ ଯାଇ-ଥିଲେ । ବର୍ଷା ଆରମ୍ଭରୁ ସେମାନେ କାମ ବନ୍ଦକରି ଆସିଥିବାର ଆମ୍ଭେମାନେ ଖବର ପାଇଅଛୁଁ । ପୁରୀ ଜିଲାର କାର୍ଯ୍ୟ କେତେଦୂର ଗଲା କେଜାଣି । ଏମାନଙ୍କ ଆଗରୁ ପୁରୀ ଜିଲର ବିଗତ ସାଲ ଧୋଇବେଳୁ ଆଉ ଜଣେ ଇଞ୍ଜିନିୟର ଆପଣାର ଦଳ ବଳ ଧରି କଅଣ ମାପ କରୁଥିଲେ । ଶୁଣାଯାଉଥିଲା ସେ ସରହଦ ଦେହରୁ ସମୁଦ୍ରକୁ ଗୋଟାଏ କେନାଲ ଖୋଲାଇବାର ବନ୍ଦୋବସ୍ତ କରୁଛନ୍ତି । ଏବେ ସେ ପ୍ରସ୍ତାବସବୁ କେଉଁଆଡ଼େ ଗଲାଣି । ଦଳେଇ ଅଇଲେ ମୂଳରୁ ଗାଅ । ଏହିପରି ଗାଇଲେ ଅଧା କେବେ ପୂରଣ ହେବ କେଜାଣି । ସେ ଯାହାହେଉ ଏବେ ଆମ ପ୍ରସ୍ତାବ ଅନୁସାରେ ମାପଚୁପ କରିବାକୁ ଯେ ନୂଆ ଦଳକ ବାହାରିଛନ୍ତି ସେମାନେ କଟକ, ପୁରୀ, ବାଲେଶ୍ୱର ଜିଲାର କାମ ଶେଷ କରୁ କରୁ ଯୁଗ ବିତିଯିବା ଅସମ୍ଭବ ନୁହେଁ । ଏମାନେ ବା ଅଳ୍ପକେ ସାରିଦେବେ କିପରି ?

ଆମର ସାଧାରଣ ମିସ୍ତ୍ରୀମାନେ ଲୁହଣ ଠକ୍ ଠକ୍ କରି ଫାଧାବେଳକୁ ଦଶଣା, ବାରଣା, ଟଙ୍କାଏ ଦାବୀ କରି ବସନ୍ତି । ଗୃହଦିନର କାମକୁ ଆଠ ଦଶଦିନ ଲଗାନ୍ତି । ସାଧାରଣ ମିସ୍ତ୍ରୀଙ୍କର ଯେତେବେଳେ ଦସ୍ତୁର ଏପରି ସରକାରଙ୍କର ବାରକମିସ୍ତ୍ରୀ ତହୁଁ ବଳିବାଟି ସହଜ କଥା । ଏଥିକି ଗରିବ ପ୍ରଜାଙ୍କର କେବଳ ମାର୍କଣ୍ଡଙ୍କ ପରମାୟୁ ଗୃହ । ତେବେ ପ୍ରଜାମାନେ କାଲେ ଅସ୍ଥିର ହୋଇ ପଡ଼ିବେ ସେଥିଲାଗି ମଝେ ମଝେ ମାନ୍ୟବର ସିଂହଙ୍କ ପରି କେହି ଜଣେ ବଡ଼ ପଦସ୍ଥ କର୍ମଚାରୀ ଆସି ଧେଇଁଏ ବୁଲିଗଲେ ହେଲା । ଲୋକେ ଏ କଦର ସବୁ ବୁଝି ପାରୁଛନ୍ତି । ତିନବର୍ଷ ତଳେ ବାଲେଶ୍ୱରରେ ଯେତେବେଳେ ଭୟଙ୍କର ମ୍ୟାଲେରିଆ ହେଲା ଲୋକେ ଧାହି ଧାହି ଡାକ ଛାଡ଼ିଲେ । ମଶାଣିରୁ ନିଆଁ ଲିଭିଲା ନାହିଁ । କେତେ ଘର ପଦା ହୋଇଗଲା । ଗୃହଆଡ଼େ ଚହଲ୍ ପଡ଼ିଗଲା । ଲାଟସାହେବ ସାର ଏଡ୍ ଉଆଡ଼ ଗେଟ୍ ଆସିଗଲେ । ସେତେବେଳର ସରକାରଙ୍କର ଜଣେ କାର୍ଯ୍ୟକାରୀ ମେମ୍ବର ମାନ୍ୟବର ସଚ୍ଚିଦାନନ୍ଦ ସିଂହଙ୍କ ପଦର ପୂର୍ବ ଅଧିକାରୀ ସାର ଆଲି ଇମାମ ଆସିଗଲେ । ସମସ୍ତେ ବସ୍ତୁରଲେ ଦୃପର୍ଣ୍ଣ ଉପରେ ଏପରି ରାଜଦୃଷ୍ଟି ଯେତେବେଳେ ବାଲେଶ୍ୱରରେ ପଡ଼ିଲାଣି ମାଲେରିଆ ଏକାବେଳକେ ମୂଳରୁ ମଲା, ଖାତ ପୋତା ହେବାଲାଗି ଲାଟସାହେବ ସାଥେ ସାଥେ ସରଜମିନରେ ପଚିଶ ହଜାର ଟଙ୍କାପରି ମଞ୍ଜୁର କରି ଦେଇ ଗଲେ । ପରେ ପୁଣି ବାଲେଶ୍ୱରରେ ପାଣିକଳ ହେବ ବୋଲି ବଜେଟରେ ଟଙ୍କା ମଞ୍ଜୁର ହୋଇଗଲା । ଆମ୍ଭେମାନେ ସମାଜରେ ଲେଖିଅଛୁଁ, କେତେଥର ମଧ୍ୟ ବାଲେଶ୍ୱରର ମାଲେରିଆ ପ୍ରଶ୍ନ ଲାଟସଭାରେ ଉଠାଇ ଥିଲୁ ଏବଂ ପ୍ରାଦେଶିକ ସ୍ୱାସ୍ଥ୍ୟ କମିଟିରେ ମଧ୍ୟ ପକାଇଥିଲୁ । ମାତ୍ର କାହିଁ ତିନ ଗୃହବର୍ଷ ଆସି ଗତ ହେଲା । ବାଲେଶ୍ୱର ଯେ ଭୂମିରେ ସେହି ଭୂମିରେ । ବାଲେଶ୍ୱର ସହରରେ ଗୋଟିଏ ଖାତ ପୋତା ହେବା କିମ୍ବା କୌଣସି ଯାଗାରେ ବଣବୁଦା ସଫାହେବା ତ ଦେଖା ଯାଉନାହିଁ । ମାଲେରିଆ ଏକା ବାଲେଶ୍ୱର ସହର କାହିଁକି ମଫସଲର ଅଧିକାଂଶ ସ୍ଥାନରେ କ୍ରମେ ବ୍ୟାପିଲଣି । ଅବଶ୍ୟ ପ୍ରଥମେ ଆରମ୍ଭରେ ଯେପରି ଉତ୍କଟ ଜଣାଯାଉଥିଲା ଏବେ କ୍ରମେ ଲୋକଙ୍କର ଦେହସହିଆ ହୋଇ ଯିବାରୁ ତେତେ ଭୟଙ୍କର ବା ମାରାତ୍ମକ ବୋଧ ହେଉନାହିଁ । ମାତ୍ର ସରକାର ଯେ ଉଦ୍‌ବେଗ ଦେଖାଉଥିଲେ ତହିଁର ଫଳ କଅଣ ହେଲା ? ଯେ ଟଙ୍କା ମଞ୍ଜୁର ହୋଇଥିଲା ସେ କେଉଁଆଡ଼େ ଗଲା ? ଏତେଦିନ ପର୍ଯ୍ୟନ୍ତ କିଛି କାର୍ଯ୍ୟ ନ ହେଲା କାହିଁକି ? ଏସବୁ

ପ୍ରଶ୍ନର ଉତ୍ତର ଗ୍ରାମ୍ୟାଞ୍ଚଳରେ ଯେ କେହି ଲୋକକୁ ପଚାରିଲେ ସେ କହିବ—ଏସବୁ ପିଲାଙ୍କ ମନ ଭୁଲାଣିଆ କଥା । ଆମ୍ଭେମାନେ କହୁଁ ଏଦେଶ ଲୋକେ ବହୁତ ଦିନ ଭୁଲିଛନ୍ତି । ଏଣିକି ଚେତିଲେଣି । ତେଣୁ ସ୍ୱରାଜ୍ୟ ଲୋଡୁଛନ୍ତି । ଶାସନକଳ ଲୋକଙ୍କ ହାତକୁ ନଆସିବା ଯାଏ ଏହିପରି ଉଣ୍ଡାମି ଚାଲିଥିବ ।

('ସମାଜ' ତା ୧୭ । ୯ । ୨୯)

# ଦମନନୀତି ଓ ପ୍ରତିବାଦ

ଏଣିକି ସରକାର ଅଧିକ ଉତ୍କଟତର ଭାବରେ ଦମନନୀତି ପ୍ରୟୋଗ କଲେଣି । ଏହି ସପ୍ତାହ ମଧ୍ୟରେ ଅସହଯୋଗ ଆନ୍ଦୋଳନର ଅନେକ ମୁଖିଆ ନେତା ଧରାଗଲେ । ମୌଲାନା ମହମ୍ମଦ ଆଲି, ସୌକତ ଆଲି, ପଞ୍ଜାବର ଡାକ୍ତର କିଚଲୁ, ଶାରଦାପୀଠର ସ୍ୱାମୀ ଶଙ୍କରାଚାର୍ଯ୍ୟ ଓ ଅନ୍ୟ କେତେଜଣ ପ୍ରଧାନ ନେତା ଗିରଫ ହୋଇଛନ୍ତି । ମହମ୍ମଦ ଆଲି ମହାତ୍ମାଗାନ୍ଧିଙ୍କ ସଙ୍ଗେ ମାନ୍ଦ୍ରାଜ ଯିବା ବାଟରେ ୱାଲଟିଅର-ଠାରେ ଧରାହେଲେ । ଭିଜାଗାପାଟଣା ଜିଲାର ମେଜେଷ୍ଟ୍ରେଟଙ୍କର ୧୦୭ ଓ ୧୦୮ ଧାରାର ଓ୍ୱାରଣ୍ଟ ସେଠାରେ ତାଙ୍କ ଉପରେ ଜାରିହେଲା । ଏ ଘଟନା ଏ ମାସ ୧୫ ତାରିଖ ଦିନର । କରାଚିଠାରେ ଗତ ଖିଲାଫତ୍ କମିଟିର ଗଲା ଅଧିବେଶନରେ ଏକ ପ୍ରସ୍ତାବ କରା ଯାଇ-ଥିଲା । ତଦ୍ଦ୍ୱାରା ଭାରତୀୟ ସୈନ୍ୟମାନଙ୍କୁ ଫୁସୁଲାଇ ଖରାପ କରିବାର ଉଦ୍ୟମ ହୋଇଥିଲା ବୋଲି ବମ୍ବେଇ ଗଭର୍ଣ୍ଣମେଣ୍ଟ ମୌଲାନା ଦ୍ୱୟଭାଇ କିଚଲୁ ଓ ସ୍ୱାମୀ ଶଙ୍କରାଚାର୍ଯ୍ୟଙ୍କ ନାମରେ ବହୁତ ଗୁରୁତର ଦଫାରେ ମକଦ୍ଦମା ଚଳାଇଛନ୍ତି । ଏହି ଅପରାଧରେ ସେମାନେ ଧରାହୋଇ ଏବେ କରାଚିରେ ଅଛନ୍ତି । ମକଦ୍ଦମା ଆସନ୍ତା ସୋମବାର ବିଚାର ହେବ । ଏହାଛଡ଼ା ଢାକାରେ ବାବୁ ସୁରେଶଚନ୍ଦ୍ର ଏବଂ ଫରିଦପୁରରେ ମୌଲବୀ ବାଦଶାହ ମିଆଁ ପ୍ରଭୃତିଙ୍କର ବିଚାର ହୋଇ ଦଣ୍ଡ ହୋଇଅଛି । ଏହିସବୁ ଘଟଣାରେ ଲୋକେ ଉତ୍ତେଜିତ ହୋଇ ଶାନ୍ତିଭଙ୍ଗ କରିବାର ଆଶଙ୍କା ଦେଖି ନେତାମାନେ ପ୍ରତି ପ୍ରଦେଶରେ ସଭାସମିତି କରି ସମସ୍ତଙ୍କୁ ଧୀରସ୍ଥିର ରହିବାକୁ ଉପଦେଶ ଦେଉଛନ୍ତି । ଲୋକେ ମଧ୍ୟ ଯେପରି ସମ୍ଭାଳି ରହିଛନ୍ତି ତାହା ଅତି ଆଶ୍ଚର୍ଯ୍ୟ । କୌଣସିଠାରେ ହରତାଲ ପର୍ଯ୍ୟନ୍ତ ହେବାକୁ ନାହିଁ । ଅସହଯୋଗ ଆନ୍ଦୋଳନରେ ଶାନ୍ତିପୂର୍ଣ୍ଣ ନ୍ୟାୟ୍ୟ ନିର୍ମଳ ସାଧନରେ ଦେଶ କେତେଦୂର ପ୍ରସ୍ତୁତ ହୋଇଅଛି ଏହା ତାହିଁର ପ୍ରମାଣ ।

× × ×

ମାଲବାର ଜିଲାକୁ ଯିବାଲାଗି ମହାତ୍ମାଗାନ୍ଧିଙ୍କି ମାନ୍ଦ୍ରାଜ ସରକାର ମନା କରିଛନ୍ତି । ସେଠାରେ ମୋପଲା ବିଦ୍ରୋହ ଏପର୍ଯ୍ୟନ୍ତ ପୂରା ଶାନ୍ତ ହୋଇନାହିଁ । ସାମରିକ ଆଇନ ଚାଲୁଅଛି । ମହାତ୍ମା ଯାଇଥିଲେ ସମସ୍ତେ ଆଶା କରୁଥିଲେ ଏକାଦିନକେ ମଧ୍ୟରେ

ସବୁ ଶାନ୍ତ ହୋଇ ଯାଇଥାନ୍ତା । ମାତ୍ର ସରକାରଙ୍କର ବୁଝାମଣା ଅନ୍ୟ ରକମ । ମୋପଲା ବିଦ୍ରୋହ ଅସହଯୋଗ ଆନ୍ଦୋଳନର ଫଳ ଏବଂ ଅସହଯୋଗୀମାନେ ଏଥିର ମୂଳରେ ଅଛନ୍ତି ବୋଲି ସେ ଯେତେବେଳେ କହୁଛନ୍ତି ମହାତ୍ମାଙ୍କୁ ନ ଛାଡ଼ିବା ଆଶ୍ଚର୍ଯ୍ୟ ନୁହେଁ । ମାତ୍ର ସତ୍ୟ ସତ୍ୟ ସରକାରଙ୍କର ଏପରି ଧାରଣା ହୋଇଥିଲେ ଆମ୍ଭେମାନେ କହୁଁ ସେ ଖାଲି ଭୁଆଁ ବୁଲୁଛନ୍ତି । ଏହି ବର୍ଷ ମଧ୍ୟରେ ଏ ଦେଶର ଅବସ୍ଥା କଣ ହୁଅନ୍ତାଣି । କେତେ ରକ୍ତପାତ ଉତ୍ପାତ ଘଟଣା ହୁଅନ୍ତାଣି ତାହା କି ସରକାର ଭାବି ପାରୁନାହାନ୍ତି ? କେବଳ ମହାତ୍ମାଗାନ୍ଧିଙ୍କର ପବିତ୍ର ପ୍ରଭାବ ଓ ଅସହଯୋଗ ଆନ୍ଦୋଳନର ଶାନ୍ତି ମନ୍ତ୍ର ଦେଶକୁ ଥୟକରି ରଖିଛି । ନାନାସ୍ଥାନରେ ସରକାରଙ୍କ କାର୍ଯ୍ୟରୁ ଅନେକ ଲୋକ ଏବେ ଆଶଙ୍କା କରୁଛନ୍ତି ଯେ ଶାନ୍ତିପଥରୁ ଦେଶବାସୀଙ୍କି ଟଳାଇବା ସରକାରଙ୍କର ଉଦ୍ୟମ ଏବଂ ଲୋକେ ବିଚଳିତ ହେଲେ ଅସହଯୋଗର ଦୋଷ ଦେଇ ପ୍ରବଳଭାବରେ ଦମନ ନୀତି ଚଳାଇବାର ସୁବିଧା ମିଳିବ । ମହାତ୍ମାଗାନ୍ଧିଙ୍କୁ ମାଲବାର ଯିବା ନିଷେଧ ହେବାରେ ଏ ଆଶଙ୍କା ଦୃଢ଼ ଧାରଣାରେ ପରିଣତ ହୋଇଅଛି । ବର୍ତ୍ତମାନ ଇଂରେଜ ଶାସନ କାରଖାନାରେ କେହି ଜଣେ ସହୃଦୟ ଉଦାର ବିଚକ୍ଷଣ ବ୍ୟକ୍ତି ନାହିଁ, ଯେ କି ପ୍ରଜାସାଧାରଣଙ୍କର ମତିଗତି ଏବଂ ଉପସ୍ଥିତ ଆନ୍ଦୋଳନର ପ୍ରକୃତ ପ୍ରକ୍ରିୟା ସରଳଭାବରେ ବୁଝି ସାହସ ସହକାରେ ଗୋଟାଏ ସହଜ ରାସ୍ତା କାଟିଦେବ, କି ଦୁଃଖର କଥା !

( 'ସମାଜ', ୭।୧୪।୯।୨୧)'

---

# ଆୟୁରଲାଣ୍ଡ ଓ ଭାରତ

ଆୟୁର୍ଲାଣ୍ଡର ଲୋକନାୟକ ଡ଼. ଭେଲେରଙ୍କର ଇଂରେଜ ମନ୍ତ୍ରୀ ଲୟୃଡ଼ ଜର୍ଜଙ୍କ ସଙ୍ଗେ ଦେଖାହୋଇ ବିବାଦ ନିଷ୍ପତ୍ତିର ପ୍ରସଙ୍ଗ ପଡ଼ିବବୋଲି ଚଲି କେତେଦିନ କଥା ଚାଲିଛି । ଡ଼. ଭେଲେରା କହନ୍ତି ସେ ସ୍ୱାଧୀନ ଆୟୁର୍ଲାଣ୍ଡର ପ୍ରତିନିଧିରୂପେ ଏ ମନ୍ତ୍ରଣାରେ ଉପସ୍ଥିତ ହେବାକୁ ଚାହାନ୍ତି ଅର୍ଥାତ୍ ଇଂରେଜ ରାଜାଙ୍କ ଅଧୀନତା ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । ଏଥିରେ ଲଏଡ଼ ଜର୍ଜ ରାଜି ନୁହନ୍ତି । ଏହି ବିଷୟରେ ଅନେକ ଚିଠିପତ୍ର ପରେ ଏବେ ଡ଼. ଭେଲେରା ରାଜାଙ୍କ ଅଧୀନତା ବା ସ୍ୱାଧୀନତାର କଥା ଉପରେ ଅଧିକ ଜୋର ଦେଉ ନାହାନ୍ତି ବୋଲି ଶୁଣାଯାଏ । ତେଣୁ ମିଳନର ଆଶା ଦେଖାଯାଉଛି । ମାତ୍ର ଡ଼. ଭେଲେରା କହନ୍ତି, ଏ ବିଷୟରେ ଯାହା ସ୍ଥିର ହେବ ତାହା ଆୟୁର୍ଲାଣ୍ଡର ଲୋକଙ୍କ ମନକୁ ନ ଆସିଲେ ସେଥିରେ ସେ ବାଧ୍ୟ ନୁହନ୍ତି । ଆୟୁର୍ଲାଣ୍ଡ ହାଣକାଟ ଲଗାଇ ନାନା ଉତ୍ପାତ ବିତ୍ପାତ ଘଟାଇ ସୁଦ୍ଧା ତାହାର ନେତା ସ୍ୱାଧୀନ ରାଜ୍ୟର ପ୍ରତିନିଧି ରୂପେ ବିଚାର କରିବାଲାଗି ଇଂରେଜ ମନ୍ତ୍ରୀଙ୍କଠାରୁ ଆମନ୍ତ୍ରଣ ପାଉଛନ୍ତି । ମାତ୍ର ମହାତ୍ମାଗାନ୍ଧୀ ଶାନ୍ତି ଓ ସଂଯମର ଅବତାର ହୋଇ ସୁଦ୍ଧା କାଲିକଟକୁ ପ୍ରବେଶ ପାଉନାହାନ୍ତି । ଅସହଯୋଗନୀତିର ଗୂଢ଼ମନ୍ତ୍ର ଓ ଗୌରବ ବୁଝିବାକୁ ପାଶ୍ଚାତ୍ୟ ରାଜନୀତିଜ୍ଞମାନଙ୍କର ବର୍ତ୍ତମାନ ସୁଦ୍ଧା ଅଧିକାର ଜନ୍ମି ନାହିଁ ।

× × ×

ଅସହଯୋଗ ଆନ୍ଦୋଳନ ଆରମ୍ଭଠାରୁ ଏହି କେତେଦିନ ମଧ୍ୟରେ ଭାରତବର୍ଷର କେତେକ ମ୍ୟୁନିସିପାଲିଟି ଏକ ପ୍ରକାର ସ୍ୱରାଜ୍ୟ ବିଧାନ ଚଲାଇଲେଣି । ପ୍ରାଦେଶିକ-ଲାଟମାନେ ଆସିଲେ ସେମାନେ ପୂର୍ବପରି ଅଭିନନ୍ଦନ ପତ୍ର ଦେଉନାହାନ୍ତି, ଅଭ୍ୟର୍ଥନା କରୁନାହାନ୍ତି । କେତେକ ମ୍ୟୁନିସିପାଲିଟିର କମିଶନରମାନେ ସହରର ଲୋକସାଧାରଣଙ୍କ ପ୍ରତିନିଧିରୂପେ ମହାତ୍ମାଗାନ୍ଧୀଙ୍କୁ ଅଭିନନ୍ଦନ ଦେଇଅଛନ୍ତି । କେତେକ ମ୍ୟୁନିସିପାଲିଟି ଜାତୀୟ ଭାବରେ ଶିକ୍ଷା ଚଲାଇବାର ବନ୍ଦୋବସ୍ତ କଲେଣି । ଏ ପ୍ରକାର ମ୍ୟୁନିସିପାଲିଟି-ମାନଙ୍କ ମଧ୍ୟରେ ଗଂଟୁର ମ୍ୟୁନିସିପାଲିଟିର ନାମ ବିଶେଷ ଉଲ୍ଲେଖଯୋଗ୍ୟ । ନୂତନ ନିର୍ବାଚନରେ ଜଣେ ଦୁଇଜଣଙ୍କୁ ଛାଡ଼ି ଏ ମ୍ୟୁନିସିପାଲିଟିର ସମସ୍ତ କମିଶନର ଅସହଯୋଗୀ । ସେମାନେ ଏଥି ମଧ୍ୟରେ ମ୍ୟୁନିସିପାଲିଟିରେ କେତେକ ପରିବର୍ତ୍ତନ ଘଟାଇଅଛନ୍ତି । କେତେକ

ରାସ୍ତାର ନାମ ବଦଳାଇ ଗାନ୍ଧୀ ଓ ତିଳକଙ୍କ ନାମ ଅନୁସାରେ ନୂଆ ନାଁ ଦେଇଅଛନ୍ତି । ଘର ଟିକସ ଶତକଡ଼ା ୫ ୧୪୯ ଥିଲା । ତାହା କମାଇ ୫ ୧୨ରେ ଧାର୍ଯ୍ୟ କରିଛନ୍ତି । ସହର ମଧ୍ୟରେ ଆୟୁର୍ବେଦ ଚିକିତ୍ସାର ବ୍ୟବସ୍ଥା କରୁଛନ୍ତି । ସ୍କୁଲମାନଙ୍କରେ ଚରଖା ଚଳାଉଅଛନ୍ତି । ଆଉ ଏହିପରି କେତେକାର୍ଯ୍ୟ ଆରମ୍ଭ କରିଛନ୍ତି । ଦେଶର ମ୍ୟୁନିସିପାଲିଟି-ମାନେ ସ୍ୱରାଜ୍ୟପଥରେ ଆଗେଇଲେଣି । ମାତ୍ର ଓଡ଼ିଶାର କୌଣସି କୌଣସି ମ୍ୟୁନିସିପାଲିଟି ଜିଲ୍ଲା ମେଜିଷ୍ଟ୍ରେଟଙ୍କୁ ଚେୟାରମ୍ୟାନ କରିବା ମମତା ଏ ପର୍ଯ୍ୟନ୍ତ ଛାଡ଼ି ପାରୁନାହାନ୍ତି । ଏହିସବୁ ମ୍ୟୁନିସିପାଲିଟିର କମିଶନର ବଳଆବାର ପଣ୍ଡାଙ୍କୁ ସାବାସ ।

('ସମାଜ', ଜୁ ୨୪ । ୯ । ୨୧)

---

# ବିଦେଶୀ ବର୍ଜନ ଓ ସ୍ୱଦେଶୀ ପ୍ରଚାର

ଗତ ଜୁଲାଇମାସ ଶେଷରେ ନିଖିଳ ଭାରତ କଂଗ୍ରେସ କମିଟି ବମ୍ବେଇଠାରେ ଠିକ୍ କରିଥିଲେ କି ଆଗାମୀ ଦୁଇମାସ ମଧ୍ୟରେ ବିଦେଶୀର ପୂର୍ଣ୍ଣ ବହିଷ୍କାର ଓ ସ୍ୱଦେଶୀ ପ୍ରଚାର ହେବ । ସେ ଦୁଇମାସ ପୂରିବାକୁ ଆଉ ସାତଦିନ ରହିଲା ମାତ୍ର । ଅନେକେ କହିପାରନ୍ତି କଂଗ୍ରେସ ପ୍ରସ୍ତାବ ଅନୁସାରେ କିଛି କାର୍ଯ୍ୟ ହୋଇନାହିଁ । ଅବଶ୍ୟ ଦେଶର ଲୋକେ ଏ ପର୍ଯ୍ୟନ୍ତ ଅରଟକଟା ସୂତାର ଲୁଗା ପିନ୍ଧୁ ନାହାନ୍ତି; ଘରେ ଘରେ ଅରଟ ଚଳିନାହିଁ । ବିଦେଶୀ କପଡ଼ାର ଙ୍କ୍ଟଲି ଆଦ୍ୟାପି ବହୁ ପରିମାଣରେ ଦେଖାଯାଉଅଛି । ଏ ସବୁ ସତ୍ତ୍ୱେ ଆମ୍ଭେମାନେ କହୁ ଏ ଦୁଇ ମାସରେ ଯେ କାର୍ଯ୍ୟ ହୋଇଅଛି ବଙ୍ଗଳାର ସ୍ୱଦେଶୀ ଆନ୍ଦୋଳନରେ ବର୍ଷକ ମଧ୍ୟରେ ତାହା ହୋଇ ନ ଥିଲା । ଏବେ ବିଦେଶୀ ବହିଷ୍କାରର ବାଟ ସଫା ହୋଇଅଛି ଏବଂ ସ୍ୱଦେଶୀ ବିସ୍ତାରର ମୂଳଦୁଆ ପଡ଼ିଅଛି । ସ୍ୱଦେଶୀ କପଡ଼ା ଲାଗି ଦେଶରେ ବଡ ସାନ ସବୁ ଶ୍ରେଣୀ ଲୋକଙ୍କର ଆଦର ଜନ୍ମିଅଛି । କେହି ଲୁଗା କିଣିବାକୁ ଗଲେ ବଜାରରେ ଆଗେ ଦେଶୀ ଖଦଡ଼ ଲୁଗା ଖୋଜୁଛନ୍ତି । ଖଦଡ଼ଲୁଗା ନ ମିଳିଲେ ଦେଶୀ କଳଲୁଗା କିଣୁଛନ୍ତି । ତାହା ସୁବିଧାରେ ନ ମିଳିଲେ କେହି କେହି ବିଦେଶୀ ଲୁଗା ନେଉଛନ୍ତି । ବିଦେଶୀଲୁଗା ପିନ୍ଧି ଦାଣ୍ଡକୁ ବାହାରିବାକୁ ଲୋକଙ୍କୁ ଲାଜ ମାଡ଼ୁଛି । ଫଳରେ ଦେଶୀ କପଡ଼ାର କାରବାର ବୃଦ୍ଧି ପାଉଛି । କଲିକତା, ବମ୍ବେଇ, ଲାହୋର, କାନପୁର, ଲକ୍ଷ୍ନୌ ପ୍ରଭୃତି ବଡ଼ ବଡ଼ ସହରର ବିଦେଶୀ କପଡ଼ା କାରବାରୀ ଅନେକ ଆଗାମୀ ଛ ମାସ ଆଠମାସ କେହି କେହି ବରାବର ବିଦେଶୀ କପଡ଼ା ଆମଦାନୀ ନ କରିବେ ବୋଲି ପ୍ରତିଜ୍ଞା କରି ସାରିଲେଣି । ବିଦେଶୀ ସୂତାର ଆମଦାନୀ ମଧ୍ୟ ସେହିପରି ବର୍ଷକ ପାଇଁ କଲିକତାରେ ବନ୍ଦ ହେଲାଣି । ଅନ୍ୟାନ୍ୟ ବଡ଼ ବଡ ସହରର ବିଦେଶୀ ସୂତା କାରବାରୀ ଅନେକେ ଏହିପରି ଅଙ୍ଗୀକାର କରିଅଛନ୍ତି । ଏହାହିଁ ତ ବିଦେଶୀ ବର୍ଜନ । ଫଳରେ ଆଗାମୀ ବର୍ଷ ମଧ୍ୟରେ ଲୁଗା ଓ ସୂତା ବାବତରେ ଭାରତରୁ ବିଦେଶକୁ ଟଙ୍କା ଯିବାର ବାଟ ଏକପ୍ରକାର ବନ୍ଦ ହୋଇଅଛି । ଏଥି ସଙ୍ଗେ ସଙ୍ଗେ ସ୍ୱଦେଶୀ ପ୍ରଚାରର ଆୟୋଜନ ଖୁବ୍ କ୍ଷିପ୍ର ଗତିରେ ଚାଲିଛି । ପଞ୍ଜାବ, ରାଜପୁତାନା, ଗୁଜରାଟ, ତେଲିଙ୍ଗ ପ୍ରଭୃତି କେତେକ ପ୍ରଦେଶରେ ଚରଖାର ପ୍ରଚାର ଥିଲା । ଏଥି ମଧ୍ୟରେ ଅତିଶ ଅଧିକ ହୋଇଅଛି । ବଙ୍ଗଳା ଓଡ଼ିଶାଭଳି ଯେଉଁ ପ୍ରଦେଶମାନଙ୍କରେ ଅରଟ ସୂତାକଟା ଏକା ବେଳକେ ଲୋପ ପାଇଥିଲା ସେଠାରେ ଦୁଇମାସ ମଧ୍ୟରେ ପ୍ରତିଘରେ ଚରଖା ଚଳିବାର

ଆଶା କରାଯାଇ ନ ପାରେ । ମଫସଲ ଗାଁରେ କାଠ ଧାଡ଼ି । କେତେଠାରେ ବଢ଼େଇ ଅଭାବ । ଆଜି କାଲିକାର ଅନେକ ବଢ଼େଇ ପୁଣି ଅରଟ ଦେଖି ନାହାନ୍ତି । କପାଗଛ ତ ମୂଳରୁ ବୁଡ଼ିଛି । ତୁଳା ସହଜରେ ମିଳୁନାହିଁ ।

ଲୋକେ ଯେ ବୃତ୍ତିଟାକୁ ପଚାଶ ଷାଠିଏ ବର୍ଷ ହେଲା ଛାଡ଼ି ଦେଲେଣି ତାକୁ ପୁଣି ନୂଆକରି କରିବା ସହଜ ନୁହେଁ । ଗ୍ରାମେ ସୂତାକଟା ଜାଣିଥିବା କେହି ଲୋକଯାଇ ଶିଖାଇବା ଦରକାର । ଏ ସବୁ ଅସୁବିଧା ସତ୍ତ୍ୱେ ଏହି ଦୁଇମାସ ମଧ୍ୟରେ ପ୍ରାୟ ପ୍ରତ୍ୟେକ ଗାଁରେ ଅରଟରେ ସୂତାକଟା ଆରମ୍ଭ ହୋଇଗଲଣି । ଏଣିକି ବକ୍ତୃତା ଦେଇ ଲୋକମାନଙ୍କୁ ଅରଟର ଆବଶ୍ୟକତା ବୁଝାଇବା ଦରକାର ହେଉନାହିଁ । ଏବର୍ଷ ଅନେକେ କପାଗଛ କରିଛନ୍ତି । କେତେକ ପରିବାରରେ ନିଜ ବାଡ଼ି ବିଲରେ କପାରୁ ଘର ଅରଟରେ ସୂତାକାଟି ସମ୍ପୂର୍ଣ୍ଣ ଦରକାରି ଲୁଗା ଲୋକେ ତିଆରି କରାଇ ପିନ୍ଧିଲେଣି । ଅନ୍ୟାନ୍ୟମାନେ ତାହା ଦେଖି ଅରଟ ତିଆରି କରୁଛନ୍ତି । ଅନେକ ତନ୍ତୀ ତନ୍ତ ବିକି ଭାଙ୍ଗି ଦେଇ ଭିକ ମାଗୁଥିଲେ । କେହି ବା ତନ୍ତ ସଜ ଘରେ ଛିକୁଚ ଦେଇ ଦୂରଦେଶରେ ଯାଇ ମଜୁରି ଲାଗୁଥିଲେ । ଏଥିମଧ୍ୟରେ ସେମାନଙ୍କ ମଧ୍ୟରୁ ଅନେକେ ପୁଣି ଆପଣା ବ୍ୟବସାୟକୁ ଫେରିଛନ୍ତି । ଯେପରି ଦେଖାଯାଉଛି ଆଗାମୀ ଚାରିମାସ ମଧ୍ୟରେ ଏହିଗତିରେ କାର୍ଯ୍ୟ ଚାଲିଲେ ଦେଶର ସବୁଯାକ ତନ୍ତୀ ନିଜର ପୂର୍ବ ବ୍ୟବସାୟରେ ଲାଗିଯିବେ । ଘରେ ଘରେ ନ ହେଲେ ଗାଁର ଅଧିକାଂଶ ଘରେ ଅରଟ ଚାଲିବ ଏବଂ ଚାରିମାସ ପରେ ଆଉ କାହାରି ଦେହରେ ବିଦେଶୀ ଲୁଗା କି ଖିଏ ସୂତା ରହିବ ନାହିଁ । ଯେଉଁ ମାରୁଆଡ଼ି ଏବଂ ଅନ୍ୟାନ୍ୟ ବିଦେଶୀ କପଡ଼ା ଓ ସୂତା ମହାଜନମାନେ ଛ ମାସ ବା ବର୍ଷକର କଣ୍ଟ୍ରାକ୍ଟ ଦେଇଛନ୍ତି ସେ ମିଆଦ ଗଲେ ସେମାନଙ୍କର ଆଉ ବିଦେଶୀ କାରବାର କରିବା ଦରକାର ପଡ଼ିବ ନାହିଁ । ସାରକଥା କଂଗ୍ରେସ ପ୍ରସ୍ତାବ ଅନୁସାରେ ସେପ୍ଟେମ୍ବର ଶେଷ ତାରିଖ ମଧ୍ୟରେ ବର୍ଜନ ଓ ସ୍ୱଦେଶୀର ସଫଳତାର ମୂଳଭିତ୍ତି ପଡ଼ିଗଲା । ଏହି ମୂଳଦୁଆ ଉପରେ ଏଣିକି ଦେଶବାସୀ ଯତ୍ନ ଓ ଅଧ୍ୟବସାୟ ସହକାରେ ସ୍ୱରାଜ୍ୟ ସିଂହାସନ ଗଢ଼ିବେ ଏବଂ ମଙ୍ଗଳମୟ ବିଧାତାଙ୍କର ମଙ୍ଗଳମୟୀ ଇଚ୍ଛା ପୂର୍ଣ୍ଣ ହେବ ।

('ସମାଜ', ତା ୨୪ । ୯ । ୨୧)

———

# ମୂକ ମିନତି

( ୧୯୨୧ରେ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନର ବାର୍ତ୍ତାବହ ରୂପେ ଗୋପବନ୍ଧୁଙ୍କ ଭୂମିକା ପ୍ରତକ୍ଷ୍ୟ ଶାସକ ଗୋଷ୍ଠୀଙ୍କ ମଧ୍ୟରେ ବିଶେଷ ଉଦ୍‌ବେଗ ସୃଷ୍ଟି କରିଥିଲା । ଏ କ୍ଷେତ୍ରରେ ତାଙ୍କ ଆଗରେ ପ୍ରତିବନ୍ଧକ ସୃଷ୍ଟି କରିବାପାଇଁ ଏବଂ ସୁଯୋଗ ପାଇଲେ ତାଙ୍କୁ କାରାଗାରରେ ନିକ୍ଷେପ କରିବାପାଇଁ ମଧ୍ୟ ମଧ୍ୟେ ମଧ୍ୟେ ୧୪୪ ଧାରା ଜାରି କରାଯାଇ ତାଙ୍କ ମୁଖବନ୍ଦ କରା ଯାଉଥିଲା । ୮ । ୯ । ୨୧ରେ ଏହିଭଳି ଏକ ପ୍ରଥମ ମୁଖବନ୍ଦ ଆଦେଶରେ ଗୋପବନ୍ଧୁ ମୌଖିକ ଭାବରେ ଜନସାଧାରଣଙ୍କୁ ନିଜର ବକ୍ତବ୍ୟ ଶୁଣାଇ ପାରିନଥିଲେ । 'ମୂକ ମିନତି' ଶିରୋନାମାରେ ଏକ କବିତାରେ ନିଜର ମନକଥା ଲୋକଙ୍କୁ ଶୁଣାଇ ଥିଲେ )

ପୁରୀ ଆଉ କଟକର ଜିଲା ମେଜେଷ୍ଟର
ଏକଶତ ଚୌରାଳିଶ ଦଫାରେ ଅନ୍ତର ।
ଜାରିକରି ମୋର ମୁଖ କରିଛନ୍ତି ବନ୍ଦ
ସେଥିଲାଗି ନୁହେଁ ମୁହିଁ ଟିକେ ନିରାନନ୍ଦ ।
ହୁକୁମ ନ ମାନି କାର୍ଯ୍ୟ କରିବାକୁ ଭାଇ
ମୋ ହୃଦେ ଶକତି ଦେଇଛନ୍ତି ବିଶ୍ୱସାଇଁ ।
କିନ୍ତୁ କଂଗ୍ରେସର ନାହିଁ ସେପରି ଆଦେଶ
ତେଣୁ ଏ ମୂକ ମିନତି କଲି ପରକାଶ ।
ହେ ପ୍ରିୟ ଉତ୍କଳବାସୀ ମୋ ଭାଇଭଉଣୀ
କାତର ନ ହୁଅ କେହି ଏ ବାରତା ଶୁଣି ।
ଯାହା କହିବାର ମୋର ଥିଲା ଦରକାର
କହିଅଛି ସମସ୍ତଙ୍କୁ ଦେଶେ ବାରବାର ।
ମୋ ଶକତି ମୋତେ ଭାଇ କରିଛ ପ୍ରଚାର
ନଗରେ ଗ୍ରାମେ ସ୍ୱରାଜ୍ୟର ଶୁଭ ସମାଚାର ।

ଅସହଯୋଗର ଶୁଦ୍ଧ ପୁଣ୍ୟ ମନ୍ତ୍ର ଦୀକ୍ଷା
ମହାତ୍ମା ଗାନ୍ଧୀଙ୍କ ମନ୍ତ୍ର ଦେଇଅଛନ୍ତି ଶିକ୍ଷା ।
ଶୁଣିଛ ସକଳେ ହେବ ସ୍ୱରାଜ୍ୟ ପ୍ରାପତି
ଏକମେଳ ହୋଇ କଲେ ଭାରତ ଭକତ ।
କର ଆଗେ ଆତ୍ମଶୁଦ୍ଧି, ଅଫିମ ନିଶା ଛାଡ଼ି
ମଦ ଜୁଆ ବେଶ୍ୟା ନାଚ ଛାଡ଼ ଶୀଘ୍ର ଭାଇ ।
ଗ୍ରାମେ ଗ୍ରାମେ ପଞ୍ଚାୟତ କର ହେ ସ୍ଥାପନ
ପାପ ଅର୍ଜ ନାହିଁ ଦେଇ ଅଦାଲତେ ଧନ ।
ବିଦେଶୀ ବସ୍ତ୍ରକୁ ବୁଝ ପାପ ଆବରଣ
ଛୁଅଁ ନାହିଁ କର ତାହା ସତ୍ୱର ଦହନ ।
ପୂର୍ବର ଅରଟେ ସୂତା କାଟ ଘରେ ଘରେ
ଏ ଦେଶ କଉଡ଼ି ଆଉ ନ ଯାଆନ୍ତୁ ପରେ ।
ହେଉପଛେ ଯେତେ ମୋଟା ସ୍ୱଦେଶୀ ବସନ
ପିନ୍ଧ ତାହା ହନରତ ହୁଅ ଧନ୍ୟ ଧନ୍ୟ ।
କହୁଛ ମୁଁ କେତେଥର ଏହି ଉପଦେଶ
ବକ୍ତୃତାର କାର୍ଯ୍ୟ ମୋର ହୋଇଅଛି ଶେଷ ।
ମୋ ପ୍ରିୟ ଉତ୍କଳବାସୀ ଶୁଣ ହେ ମୋର ମୁଖ
ମୂକ ମୋତେ ଦେଖି ମନେ ପାଅନା ହେ ଦୁଃଖ ?
ମୋ ମୁଖେ ଲଗାମ ପାଡ଼ି ନପାରିବ ଖୋଲ
ହାତ ଗୋଡ଼େ ପରେ ଲଗିପାରେ ବା ଶାଙ୍ଖୋଳ ।
ନ କର ହେ ଏଥିଲାଗି ଭୟ ବା ଭାବନା
ସ୍ୱରାଜ୍ୟ ସାଧନ ପଥେ ଏ ଶୁଭ ସୂଚନା ।
ତୁମ୍ଭର ମୋ ପ୍ରତି ଥିଲେ ସେନେହ ମମତା
ଲାଗ କାର୍ଯ୍ୟେ ଶୁଣନାହିଁ ଅନ୍ୟ କାହା କଥା ।
ହେ ଛାତ୍ରମଣ୍ଡଳୀ, କର କେତେ ବାହାଦୁରି
ଦେଶର ଉଦ୍ଧାର ପାଇଁ ପକାଅ ତ ଛୁରି ।
ହିସାବ କିତାବ ବେଳେ ଗଣ୍ଡ ଏବେ ଜଣା
ତୁମ୍ଭ ଦେଶ ଅନୁରାଗ ଜଘନ୍ୟ ଛଳନା ।

ଏବେ ସୁଦ୍ଧା ଅଛ ବେଲ ଥିଲେ ହେ ବିଶ୍ୱାସ
ସେ ଗୋଲାମ କାରଖାନା ଛାଡ଼ ବେଗେ ଆସ ।
ତୁମ୍ଭ ଲାଗି ବହୁ କାର୍ଯ୍ୟ ରହିଛି ଦେଶରେ
ସାରପଣେ ଲାଗ ତହିଁ ଭିକାରି ବେଶରେ ।
ଓକିଲମାନେ ଭାଇଏ କର ସ୍ୱାଧୀନ ଜୀବିକା
ଫିଲରେ ଟଙ୍କାରେ ତୁମ୍ଭ ଜୀବ ହେଲା ବିକା ।
ଦେଶର ହିତୈଷୀ ବୋଲି କରୁଥିଲ ଭାନ
କହୁଥାଅ କେତେ ଲମ୍ବା ଲମ୍ବା କଥାମାନ ।
ଅସହଯୋଗ ବିଶାରେ ହେଲା ଯେବେ ତୁଳ
ଦେଖାଗଲା ତୁମ୍ଭ ମଧ୍ୟେ କାର କେତେ ମୂଲ ।
ଭାଇ ଭାଇ ବିବାଦରେ ତୁମ୍ଭର ବିଭର୍ମ
ଧଳା କଳା କରିବାରେ ତୁମ୍ଭ ଗନ୍ଧର୍ବ ।
ନିଜ ବୁକେ ହାତ ଦେଇ କହ ଭଲ ଭାଇ
ଅଦାଲତେ ନିଦେଶ ଧନ-ଧର୍ମ ଯାଉନାହିଁ ?
ଜାଣେ ତୁମ୍ଭ ମଧ୍ୟେ ଛନ୍ତି କେତେ ସଦାଶୟ
ଭବିଷ୍ୟତ ଭାବନାରେ ମନେ ତାଙ୍କ ଭୟ ।
ହୃଦୟର ଦୁର୍ବଳତା ବେଗେ ପରିହରି
ଦେଶ କାର୍ଯ୍ୟେ ଲାଗିଯାଅ ବୋଲି ହରି ହରି ।
ତୁମ୍ଭଙ୍କୁ ଦେଖିଲେ ଲୋକେ ହେବେ ଉତ୍ସାହିତ
ବସାଇବେ ପଞ୍ଚାୟତ ହେବ ଦେଶ ହିତ ।
ଖୋଲିଦିଅ ଭାଇ ଦେଶୀ ବସ୍ତ୍ର କାରବାର
ନିଶ୍ଚୟ ସେଥିରେ ତୁମ୍ଭ ଚଳିବ ସଂସାର ।
ସରକାରୀ ନଉକରୀ କର ଯେତେ ଭାଇ
ଦେଶକଥା ଏକାବେଳେ ଭୁଲିଯାଅ ନାହିଁ ।
ଏବେ ସୁଦ୍ଧା ଯାହାଙ୍କର ମନେ ଅଛି ଟାଣ
ଛାଡ଼ି ସେ ଗୋଲାମୀ ଦିଅ ଦେଶକାର୍ଯ୍ୟେ ପ୍ରାଣ ।
ଯାହାଙ୍କର ଜମି ଅଛି ଉତ୍କଟ ଆସକ୍ତି
ଚାକିରି ନ ଛାଡ଼ କର ଯାହା ତୁମ୍ଭ ଶକ୍ତି ।

ନ ପାରିଲେ କିଛି ଭାଇ, ଅନିଷ୍ଟ ନ କର
ନିଜ ଜାତି ଛାଡ଼ି ଲୋକଙ୍କ ନ ବିଗୁର ପର ।
ରାଜା ଜମିଦାର, ଶୁଣ ମୋର ଏ ମିନତି
ଦେଇଛନ୍ତି ମହାପ୍ରଭୁ ତୁମ୍ଭଙ୍କୁ ସମ୍ପତ୍ତି ।
ଇଚ୍ଛାକଲେ କରିପାର ବିପୁଳ ହିତ
ସ୍ୱାର୍ଥ ଅହଂକାରେ ଖାଲି ନ ରହ ଜଡ଼ିତ ।
ଅକାରଣ ପୀଡ଼ନାହିଁ ପରଜା ଖାତକ
ସ୍ୱଳ୍ପ ସୁବିଧା ପାଇ ନ ଲୋଡ଼ ନରକ ।
ପରଜା ଖାତକେ ଦେଖ ଏବେ କିକେତେ ସର
ଦାନା କନା ବିନା ଆହା ଯାଉଛନ୍ତି ମରି ।
ତାଙ୍କ ଭଲେ ତୁମ୍ଭ ଭଲ ବୁଝ ଯେବେ ଥରେ
ନ ମରିବ କେବେ ହେଲେ ସରକାର ଡରେ ।
କରାଅ ହେ ଘରେ ଘରେ ଅରଟ ପ୍ରଚାର ।
ଗ୍ରାମେ ଗ୍ରାମେ ପଞ୍ଚାୟତେ କରାଅ ବିଚାର ।
ଏ ସବୁ ବିଧାନ ଆମ୍ଭ ଦେଶ ପୂର୍ବ ପ୍ରଥା
ଏଥିରେ କି ଅଛି କହ ରାଜଦ୍ରୋହ କଥା ?
ଉତ୍କଳର ନରନାରୀ ଜନ ସାଧାରଣ
ତୁମ୍ଭଠାରେ ଶେଷେ ମୋର ଏହି ନିବେଦନ ।
ଅନ୍ନ ବସ୍ତ୍ର ବିନା ଦେଶ ଏତେ ହୀନମାନ
କୁହିଖାଅ କାହିଁ ପିନ୍ଧ ପୂର୍ବ କଥାମାନ ।
ବିଦେଶୀ ବସନ ପାଶେ କେବେହେଁ ନ ଯାଅ
ଘରେ ଘରେ ରାତି ଦିନ ଅରଟ ଚଳାଅ ।
ଲୁଗାବୁଣି ଗ୍ରାମ ତନ୍ତୀ ରହନ୍ତୁ ସୁଖରେ
ହରଷ ପ୍ରକାଶୁ ତାଙ୍କ ବିରସ ମୁଖରେ ।
ଦେଶୀ ମୋଟା ଖଦି ପିନ୍ଧ ହୁଅ ଭାଗ୍ୟବାନ
ଭାରତ ଜନନୀଙ୍କର ତାହା ଦିବ୍ୟ ଦାନ ।
ବିଦେଶୀ ସୁନ୍ଦର ଲୁଗା ସରୁ ସୂକ୍ଷ୍ମ ଧଡ଼ି
ଲୋଭି ତହିଁ ଯାଅନାହିଁ କେବେ ଆଉ ପଡ଼ି ।

ଭୁଲାଇବା ପାଇଁ ଆଣି ଅଳପ ଦାମରେ
ବିଦେଶୀ ସଉଦାଗରେ ବିକବେ ଗାମରେ ।
ହେଲେ ବେଶ୍ୟା ଯେଉଁ ଶସ୍ତା ଚତୁର ସୁନ୍ଦରୀ
ହେବକି ସେ ଧର୍ମ ପତ୍ନୀ କୁଳବଧୂ ସରି ।
ଏତେକାଳ ନଷ୍ଟ ଅଛୁ ଆମ୍ଭ ଧର୍ମହାନି
ଏଣିକି ଚାଲ ହେ ଗାନ୍ଧୀ ଉପଦେଶ ମାନି ।
ସ୍ୱରାଜ୍ୟ ପାଣ୍ଠିକି କର ଶକ୍ତି ମତେ ଦାନ
ରହିବ ଏଥିରେ ଆମ୍ଭ ଜାତି ସନମାନ ।
ଜାଣେ ମୁଁ ଅନେକ ସ୍ଥାନେ ପାଷାଣ୍ଡ ଅନେକ
ଡରାନ୍ତି ତୁମ୍ଭଙ୍କୁ ନକେ ରଖିବାକୁ ଟେକ ।
ସେ ବୃଥା ଧମକେ ଭାଇ ନ ଡରିବ ଲେଶ
ହେଲେ ହେଉ ଯେତେ କଷ୍ଟ ଦୁଃଖ ଅବା କ୍ଳେଶ ।
ସହିବା ସେ ସବୁ ଧରି ଯଥାରୀତି ସ୍ଥିତି
ଚିରଦିନ ନ ଥିବ ଏ ଅମାବାସ୍ୟା ରାତି ।
ସହୁଛୁଁ କେତେକାଳ କେତେ ଅତ୍ୟାଚାର
ସିଦ୍ଧି ସରି ହେଲାଣି ଏ ଦେଶ ଛାରଖାର ।
କି ସୁଖ ଅଛୁ ଜୀବନେ ତେବେ କିମ୍ପା ଭୟ
ସହିଲେ ସକଳ ଦୁଃଖ ଶେଷେ ହେବ ଜୟ ।
ଅହିଂସା ପରମଧର୍ମ ଏ ମହା ମନ୍ତ୍ରର
ସଦା ଜପି ହୃଦେ ହୁଅ କାର୍ଯ୍ୟେ ଅଗ୍ରସର ।
ଧୀରତା ସଂଯମ ଶାନ୍ତ ରଖ ଅବିରତ
ଭାରତେ ସ୍ୱରାଜ୍ୟ ଲାଗି ଏହି ଏକା ପଥ ।
ହେ ଉତ୍କଳବାସୀ ! ରଖ ଏ ମୂକ ମିନତି
ଅଛୁ ଯେବେ ସ୍ନେହ ଦୟା ଅକାଞ୍ଚନ ପ୍ରତି ।

## ଉତ୍କଳବାସୀଙ୍କ ପ୍ରତି

ପ୍ରିୟ ଉତ୍କଳବାସୀ ଭାଇ ଓ ଭଉଣୀମାନେ !

ଏବେ ପାର୍ବଣପୂଜା ଉପସ୍ଥିତ । ପୂଜାପରେ କୁମାରପୂର୍ଣ୍ଣିମା ଆସିବ । ପୂଜାରେ ବଙ୍ଗାଳୀମାନେ ନୂଆ ଲୁଗା ପିନ୍ଧନ୍ତି । ଦଶହରା ଦିନ କୌଣସି କୌଣସି ଓଡ଼ିଆ ପରିବାରରେ ମଧ୍ୟ ନୂଆଲୁଗା ପିନ୍ଧା ହୁଏ । ମାତ୍ର କୁମାର ପୂର୍ଣ୍ଣିମୀକି ଓଡ଼ିଆ ଘରେ ପ୍ରାୟ ସମସ୍ତେ ନୂଆଲୁଗା ପିନ୍ଧନ୍ତି । ମୋଟକଥା କି ଓଡ଼ିଆ କି ବଙ୍ଗାଳୀ ଉତ୍କଳବାସୀ ସମସ୍ତେ ପୂଜା ଏବଂ କୁମାର ପୂର୍ଣ୍ଣିମାକୁ ବହୁତ ଲୁଗା କିଣିବେ । ଏହି ସମୟରେ ଯେ ଲୁଗା କିଣା ହୁଏ ସେଥିରେ ଅନେକ ଘରେ ବର୍ଷର ଛ ମାସ କାମ ଚଳିଯାଏ । ଏ ଦୁଇ ପର୍ବରେ ବିଦେଶୀ ବସ୍ତ୍ର ନ ପିନ୍ଧିବାଲାଗି ମୁଁ ସମସ୍ତଙ୍କୁ ବିନୀତ ପ୍ରାର୍ଥନା କରୁଅଛି । ମୁଁ ଅତ୍ୟନ୍ତ ଆହ୍ଲାଦର ସହିତ ଆପଣମାନଙ୍କୁ ଜଣାଉଅଛି ଯେ ପୂଜା ଛୁଟିରେ ବିଦାୟ ନେଇ ଯିବା ବେଳେ ସତ୍ୟବାଦୀ ଜାତୀୟ ବିଦ୍ୟାଳୟର ଛାତ୍ରମାନେ ସ୍ଥିର କରି ଯାଇଛନ୍ତି କି ସେମାନେ ଏଥିମଧ୍ୟରେ ନିଜ ହାତରେ ଅରଟରେ ସୂତାକାଟି ସେହି ସୂତାର ଲୁଗା କୁମାର ପୂର୍ଣ୍ଣିମୀକି ପିନ୍ଧିବେ । ନିତାନ୍ତ ଯେବେ ଲୁଗା ତିଆରି ହୋଇ ନ ପାରିବ ସେମାନେ କିଣି ଦେଶୀ ଲୁଗା ପିନ୍ଧିବେ । ମାତ୍ର ଅନ୍ତତଃ ଗୋଟାଏ ଲୁଗା ହେବାଭଳି ସୂତାକାଟି ପୂଜାପରେ ସ୍କୁଲକୁ ଘେନି ଆସିବେ । ମୋର ବିଶ୍ୱାସ ସମସ୍ତେ ଏହିପରି ସଂକଳ୍ପ କଲେ ଦେଶୀ ଲୁଗାର ଅଭାବ ରହିବ ନାହିଁ । ବିଦେଶୀ ବସ୍ତ୍ର ପିନ୍ଧିବା ଆମ୍ଭମାନଙ୍କ ପକ୍ଷେ ପାପ । ଏହା ଜାଣିବା ପରେ ଆଉ ସେଥିରେ ମନ ବଳାଇବା କଦାପି ଉଚିତ ନୁହେଁ । ପୂଜା ଏବଂ କୁମାରପୂର୍ଣ୍ଣିମା ଭଳି ହିନ୍ଦୁର ପବିତ୍ର ଦିବସରେ ଅଶୁଦ୍ଧ ବିଦେଶୀବସ୍ତ୍ର ପିନ୍ଧିବା ଅପେକ୍ଷା ଅରଟ ସୂତାର କନାରେ କୌପୁନି ମାରିବା ବରଂ ଭଲ । ମହାତ୍ମାଗାନ୍ଧି ଦେଶୀଲୁଗା ଅଭାବରେ ଲେଙ୍ଗୁଟି ମାରିବା ଲାଗି ଦେଶବାସୀଙ୍କି ଉପଦେଶ ଦେଇଅଛନ୍ତି । ସେ ନିଜେ ଏଥିମଧ୍ୟରେ ଆପଣାର ଟୋପି ଓ ଗିଦଲ ଛାଡ଼ିଦେଲେଣି; କେବଳ ଖଣ୍ଡେ ଲୁଗା ପିନ୍ଧୁଛନ୍ତି । ସ୍ୱାଧୀନତା ନିମନ୍ତେ ଭିନ୍ନ ଭିନ୍ନ ଦେଶର ଲୋକେ ଧନଜୀବନ ସର୍ବସ୍ୱ ଦେଉଛନ୍ତି । ଆମ୍ଭେମାନେ ସ୍ୱରାଜ୍ୟ ନିମନ୍ତେ ବିଦେଶୀ ଲୁଗା କି ଖାଲି ଛାଡ଼ି ପାରିବା ନାହିଁ ? ଆଜି ଦେଶୀ ଲୁଗାରେ କୌପୀନ ମାରିବାରେ ଗୌରବ ଅଛି । ମାତ୍ର ବିଦେଶୀ ଲୁଗାର ବହୁମୂଲ୍ୟ ପୋଷାକ ପରିଚ୍ଛଦରେ ସେ ସମ୍ମାନ ନାହିଁ ବରଂ ତାହାସବୁ ପିନ୍ଧିବା ଏବେ ଘୃଣା ଏବଂ ନିନ୍ଦାର ବିଷୟ ହୋଇଅଛି । କଲିକତାରେ

ଓଡ଼ିଆ ମନୁଷ୍ୟମାନେ ଆପଣାର ଧର୍ମ ବୁଝି ବିଦେଶୀ କପଡ଼ା କାମ କରିବା ବନ୍ଦ କଲେ । ମୋର ଆଶା ଉତ୍କଳର ପ୍ରତ୍ୟେକ ପରିବାରରେ ଗୃହିଣୀ ଓ ଗୃହସ୍ଥମାନେ ଧର୍ମ ଜ୍ଞାନରେ ବିଦେଶୀ ବର୍ଜନ କରିବେ । ଅରଟ ସୂତାର ଦେଶୀ ଲୁଗା ଆମ ମାଆଙ୍କ ହାଆ ଲୁଗା । ସେ ମୋଟା ହେଲେସୁଦ୍ଧା ଦେହକୁ ଉଶୁଆସ ଲଗେ । ଖଦଡ଼ ହେଲେସୁଦ୍ଧା କଅଁଳ ଲଗେ । ଏଣିକି ଶୀତଦିନ ଆସିଲା । ଦେଶୀ ଖଦଡ଼ଲୁଗା ଦେହକୁ ଗରମ ଲାଗିବ । ବାଳକ ବାଳିକାମାନେ ଆଉ ବିଦେଶୀ ଲୁଗାର ରଙ୍ଗଢଙ୍ଗରେ ଭୁଲ ନାହିଁ । ବାପ ମା'ଙ୍କଠାରେ ଅଳିକରି ଦେଶୀ ଖଦଡ଼ ପୂଜା ଏବଂ କୁଆଁର ପୂର୍ଣ୍ଣିମାରେ ପିନ୍ଧିବାକୁ ନିଅ । ତୁମ୍ଭେମାନେ ଏବେ ପିଲା । ତୁମରିପରି ପିଲାମାନେ ଜାପାନ, ଆମେରିକା ପ୍ରଭୃତି ରାଜ୍ୟରେ ଦେଶପାଇଁ କେତେ କାର୍ଯ୍ୟ କରୁଛନ୍ତି । ତୁମ୍ଭେମାନେ ନିଜେ ଦେଶୀ ଧୋତି ପିନ୍ଧ ଘରେ ଯେପରି ସମସ୍ତେ ପିନ୍ଧିବେ, ତୁମ୍ଭ ଘରେ ଆଉ ବିଦେଶୀ ଯେପରି ନ ପଶିବ ସେହିପରି କାର୍ଯ୍ୟକର । କେତେଥର କହୁଛ 'ମହାତ୍ମା ଗାନ୍ଧି କି ଜୟ' ବୋଲି । ସ୍ୱଦେଶୀ ପୂର୍ଣ୍ଣ ପ୍ରଚାର ହେଲେ ଘରେ ଘରେ ଅରଟ ଚାଲିଲେ ଏବଂ ସମସ୍ତେ ସ୍ୱଦେଶୀ ଖଦଡ଼ ପିନ୍ଧିଲେ ଏକା ମହାତ୍ମା-ଗାନ୍ଧିଙ୍କର ଜୟ ହେବ ଏବଂ ସ୍ୱରାଜ୍ୟର ଜୟପତାକା ଉଡ଼ିବ ।

('ସମାଜ'; ତା ୮ । ୧୦ । ୨୧)

———

# ଅସହଯୋଗ ସମ୍ବାଦ

ଶ୍ରୀଯୁକ୍ତ ଯତୀନ୍ଦ୍ର ସେନ୍‌ଗୁପ୍ତ ଚଟାଗଞ୍ଜରେ ଅସହଯୋଗ ପ୍ରଚାରରେ ଯେପରି କୃତକାର୍ଯ୍ୟ ହୋଇଅଛନ୍ତି ସେଥିରେ କର୍ତ୍ତାମାନେ ଥରହର। ଏହିହେତୁରୁ ତାଙ୍କୁ ନେଇ ଏବେ ଜେଲଖାନାରେ ରଖା ହୋଇଛି । ତାଙ୍କର ସ୍ତ୍ରୀ ପତିଙ୍କର କାରାବାସ ଦିନଠାରୁ ଖଦଡ଼ଭଣ୍ଡାରରେ ବାହାରି ସଭାସମିତିମାନଙ୍କରେ ବକ୍ତୃତା କରି ଓ ସ୍ୱଦେଶୀ ଲୁଗା ପିକେଟିଂରେ ଯୋଗଦେଇ ପତିଙ୍କର ସ୍ଥାନ ପୂରଣ କରିଅଛନ୍ତି । ସରକାର ପୁଣି ଏହି ନାରୀଙ୍କର ଅସାଧାରଣ ଶକ୍ତିରେ ବିଚଳିତ ହୋଇ ଏବେ ୧୦୪ ଦଫାରେ ତାଙ୍କ ମୁଖ ବନ୍ଦ କରିଛନ୍ତି । ଭାରତର ନାରୀ ମଣ୍ଡଳ ମଧ୍ୟରୁ ବୋଧହୁଏ ଏ ସମ୍ମାନ ଲାଭରେ ସେ ପ୍ରଥମ ।

× × ×

ଆସାମ ଜିଲା ଗୌହାଟିଠାରେ ଅସହଯୋଗ ପ୍ରଚାର ହେତୁ ସେଠାର ନେତା ଶ୍ରୀଯୁକ୍ତ ଫୁକନ ଗିରଫଦାର ହୋଇଥିଲେ । ବହୁ ଚେଷ୍ଟାପରେ ତାଙ୍କୁ ଜେଲ ଦେବାର ବାଟ ନ ପାଇ କର୍ତ୍ତାମାନେ ଏବେ ଛାଡ଼ି ଦେଇଛନ୍ତି । କାହିଁକି, ଗୌହାଟିରେ କଣ ୧୦୭ ଧାରା ନ ଥିଲା ?

× × ×

ରାଏ ବାହାଦୁର ଯଦୁନାଥ ମଜୁମଦାର ଭାରତ ବ୍ୟବସ୍ଥାପକ ସଭାରେ ସ୍ୱରାଜ୍ୟ ପାଇବେ ବୋଲି ଯେ ନିର୍ଦ୍ଧାରଣ କରିଥିଲେ ତାହା ଗଲାଥର ସମାଜରେ ପ୍ରକାଶ ପାଇଥିଲା । ସେ ସରକାରଙ୍କୁ ମାଗିଥିଲେ, "ଆମକୁ ଏ ବର୍ଷକ ମଧ୍ୟରେ ପ୍ରାଦେଶିକ ସ୍ୱାଧୀନତା ଦେଇ ଦିଅ । ଆଉ ଚାରିବର୍ଷ ବାଦ ପୂରା ସ୍ୱରାଜ୍ୟ ଦିଅ ।" ବ୍ୟବସ୍ଥା ସଭାରେ ଏ ବିଷୟରେ ବହୁ ତର୍କ ବିତର୍କ ହେଲା । ଭାରତବାସୀ ଆଜି ସ୍ୱରାଜ୍ୟ ପାଇବାକୁ ଉପଯୁକ୍ତ ହେଲେଣି କି ନା' ଓ କେଉଁ ଦିନକୁ ଠିକ୍ ଉପଯୁକ୍ତ ହେବେ ତାର ମୀମାଂସା କରାଗଲା । କାଉନ୍‌ସିଲ ସଭ୍ୟମାନଙ୍କ ଭିତରୁ କେହି କେହି କହିଲେ ଯେ ସ୍ୱରାଜ୍ୟ ନେବା ମାନେ ସବୁ ସମ୍ଭାଳି ନେବା । ଆଉ କେତେକ ଚତୁର ସଭ୍ୟ ମତ ଦେଲେ ଯେ ସ୍ୱରାଜ୍ୟ ତ ଦେବ, କିନ୍ତୁ ଏ ଚଞ୍ଚଳ ଦିଅ । ବର୍ତ୍ତମାନ ଗୋଟାଏ କିଛି ନ କଲେ ଏ ଅସହଯୋଗୀମାନେ ଆସନ୍ତା ଅହମଦାବାଦ କଂଗ୍ରେସରେ ଆଇନ ଅମାନ୍ୟ କରି ମହା ବିପ୍ଳବ ଘଟାଇବେ । ଏ ଚତୁର ରାଜନୈତିକ ପଣ୍ଡିତମାନଙ୍କର ବାକ୍‌ବିତଣ୍ଡା ଶୁଣିଲାପରେ ସରକାର ପକ୍ଷ ଗୋରା ମେମ୍ବର

ଆପତ୍ତି କରି କହିଲେକି, "ମଜୁମଦାରଙ୍କ ନିର୍ଦ୍ଧାରଣ ଗ୍ରହଣ କରାଯାଇ ନ ପାରେ । ଗ୍ରହଣ କଲେ ଭାରତ ସରକାର ଓ ପ୍ରାଦେଶିକ ସରକାରରେ ସ୍ୱାୟତ୍ତଶାସନ ପ୍ରଣାଳୀ ଚଳାଇବାକୁ ହେବ ।

ଭାରତ ସରକାର ତାହା କରି ପାରିବେ ନାହିଁ । ଏ ସବୁ ବିଲାତ ସରକାରଙ୍କ ହାତରେ । ଶାସନ ସଂସ୍କାର ବିଚାରବେଳେ ବିଲାତ ସରକାର କହିଛନ୍ତି ଯେ ଶାସନ ସଂସ୍କାରର ଦଶବର୍ଷପରେ ଅର୍ଥାତ୍ ୧୯୨୯ ମସିହାରେ ଭାରତ ଲୋକେ ସ୍ୱାଧୀନ ଶାସନ ପାଇବାକୁ ଉପଯୁକ୍ତ ହୋଇଥିବେ କି ନା' ବିଚାର କରି ମତ ଦେବା କାରଣ ଗୋଟାଏ କମିଟି ବସିବ । ଗୋରା ମେମ୍ବରଙ୍କ ମତରେ ମଜୁମଦାର ବାବୁ ସ୍ୱରାଜ୍ୟ ପାଇଁ ନିର୍ଦ୍ଧାରଣ ନ କରି ବଡ଼ଲାଟଙ୍କୁ ପ୍ରାର୍ଥନା କରନ୍ତୁ ଯେ ସେ ବିଲାତ ସରକାରଙ୍କୁ ଏ କମିଟିଟା ଆଉ ଟିକିଏ ଶୀଘ୍ର ବସାଇବା କାରଣ ସୁପାରିସ କରିବେ । ଏହାଛଡ଼ା ଆଉ କିଛି ଅଧିକ ହୋଇ ନ ପାରେ । ଗୋରା ମେମ୍ବରଙ୍କ ଏ ହୁକୁମରେ ମଜୁମଦାର ସାହେବ ସଲାମମାରି ନିଜ ନିର୍ଦ୍ଧାରଣଟି ଫେରାଇ ନେଲେ । ଆମ ବଳଆବୀର ବ୍ୟବସ୍ଥା ସଭା ସଭ୍ୟମାନେ ଦୁଇଦିନକାଳ କାଉନ୍‌ସିଲ ହଲରେ 'ବିରାଟ ସ୍ୱରାଜ୍ୟ ଆନ୍ଦୋଳନ' କରି ଏହିମତେ ଫଳଲାଭ କଲେ । ଆଜିଠାରୁ ବ୍ୟବସ୍ଥାପକ ସଭା ବୈଠକ ନୋଟିସେ ମାସ ସକାଶେ ଶେଷ ହେଲା ।

('ସମାଜ' ତା ୮ । ୧୦ । ୨୧)

———

# ଅସହଯୋଗ ସତ୍ୟଯୁଗ ଆଣିଛି

ଅସହଯୋଗ ଆନ୍ଦୋଳନ ଫଳରେ ଦେଶର ପ୍ରକୃତ ମନୁଷ୍ୟତା ଓ ଶକ୍ତି ପ୍ରକାଶ ପାଇଅଛି । ଆଗେ ଇଂରେଜୀ ପଢ଼ୁଆ, ଧନୀ, ଧୋବଧାଉଳିଆ, ସରକାରୀ ହାକିମ ଦେହ-ଦାଷିଆ ଲୋକେ କେବଳ ଦେଶର ପ୍ରଧାନ ପୁରୁଷ ହୋଇ ବସିଥିଲେ । ସାଧାରଣ କାର୍ଯ୍ୟ କ୍ଷେତ୍ରରେ ଅନ୍ୟମାନଙ୍କ ନାମରେ ଗାର ପଡୁ ନ ଥିଲା । ସେମାନଙ୍କୁ କେହି ମନୁଷ୍ୟ ବୋଲି ଗଣୁ ନଥିଲେ । ଏବେ ଅସହଯୋଗ କଷଟିରେ ଦେଶର ବହୁତ ଲୋକେ ଗୋଟି ଗୋଟି ହୋଇ କଷା ହୋଇଗଲେ । କିଏ ଭଲ କିଏ ଭେଲ ଧରା ପଡ଼ିଗଲା । ଆଗେ ଯେଉଁମାନେ ଦେଶନାୟକ ବୋଲାଉଥିଲେ ଆଜି ସେମାନଙ୍କ ମଧ୍ୟରୁ ଅନେକଙ୍କର ଓଜନ ବେଶ୍ ଜଣାଗଲା । ଅନେକେ ସେମାନଙ୍କ ମଧ୍ୟରୁ ଫମ୍ପା ଉପାଧିର ମାୟା ପର୍ଯ୍ୟନ୍ତ ଛାଡ଼ି ପାରିଲେ ନାହିଁ । ସରକାରୀ ଚାକିରୀ କି ଯେଉଁମାନେ ଘୃଣା କରୁଥିଲେ ଏବଂ ଚାକିରୀ ନ କରିବାଲାଗି ଦେଶର ଶିକ୍ଷିତ ଲୋକଙ୍କୁ ଉଆଡ଼ କରୁଥିଲେ ଏବେ ସେମାନେ ସେହି ସରକାର ଜୁଆଁରେ ଟଙ୍କା ଲାଗି ନିଜ ମୁଣ୍ଡ ବିକିଦେଲେ । ଅସହଯୋଗ ଭାରତରେ ସତ୍ୟଯୁଗ ଆଣିଅଛି । ମିଥ୍ୟା ବଞ୍ଚନା ଛଳନାରେ ଆଉ କାମ ଚଳିବ ନାହିଁ । ବର୍ତ୍ତମାନ ଦେଶରେ ଯଥାର୍ଥ ଲୋକଶକ୍ତି ପ୍ରକଟ ହୋଇଅଛି । ଯେଉଁମାନଙ୍କ ଉପରେ କାହାରି ନଜର ପଡୁ ନ ଥିଲା ଏବେ ସେହିମାନେ ଜାଗିଛନ୍ତି ଏବଂ କାମରେ ଲାଗିଛନ୍ତି । ଅଳ୍ପବୟସର ବାଳକ ବାଳିକା-ମାନେ ଦେଶର କାର୍ଯ୍ୟରେ ଅସାଧାରଣ କ୍ଷମତା ଦେଖାଇ ଅଛନ୍ତି । ହସି ହସି ଅବିଚଳିତ ଚିତ୍ତରେ ଜେଲ ଯାଉଛନ୍ତି । ଅବଳା ନାରୀମାନେ ବୀରାଙ୍ଗନା ବେଶରେ ରାଜନୈତିକ ସଂଗ୍ରାମ ଭୂମିରେ ଛିଡ଼ା ହେଉଛନ୍ତି । ସ୍ୱାମୀ ପୁତ୍ରମାନଙ୍କୁ ଜେଲ ଯିବାଲାଗି ପ୍ରସ୍ତୁତ ହେବାକୁ ଉତ୍ସାହ ଦେଉଛନ୍ତି । ସ୍ୱାମୀ ଜେଲ ଗଲେ ସ୍ତ୍ରୀ ଘରୁ ବାହାରି ତାଙ୍କ କାର୍ଯ୍ୟ କରିବାକୁ ଉଆର ହେଉଛନ୍ତି । କୁଲିମାନେ ଆପଣାର ମଜୁରି ଛାଡ଼ି ଦଳବଳରେ ଦେଶର କାର୍ଯ୍ୟରେ ଲାଗି ଯାଉଛନ୍ତି, ଅକାତରେ ମାଡ଼ ଖାଉଛନ୍ତି, ଜେଲ ଯାଉଛନ୍ତି, ଟିକିଏ ଭ୍ରୂକ୍ଷେପ ନାହିଁ । ଯେଉଁ ବାବାଜୀମାନେ ପୋଲଫାଙ୍କିଆ ହୋଇ ଏତେ ଦିନ ବୁଲୁଥିଲେ, ଦେଶର କାର୍ଯ୍ୟରେ ଯେଉଁମାନଙ୍କର କିଛି ସମ୍ପର୍କ ନ ଥିଲା ଆଜି ସେମାନେ ଅଣ୍ଟାଭିଡ଼ି ବାହାରି ପଡ଼ିଲେଣି ।

ମୌଲନା ଆଲି, ମହାତ୍ମାଗାନ୍ଧି, ଚିତ୍ତରଞ୍ଜନ ଦାସ ବା ସେହିପରି ଆଉ ଯେଉଁମାନେ ବାହାରିଛନ୍ତି ସେମାନଙ୍କ କଥାକୁ ଆମ୍ଭେମାନେ ବଡ଼ କହୁନାହୁଁ । ସେମାନେ ଅବଶ୍ୟ ବଡ଼ ଲୋକ, କଷଟି ପରୀକ୍ଷାରେ ଅସଲ ସୁନା ବୋଲି ଜଣାଗଲେ । ମାତ୍ର ବର୍ତ୍ତମାନ ଦେଶର ନିମ୍ନସ୍ତରରୁ ଯେ ଝର ବାହାରିଛି ତାହାହିଁ ଅଧିକ ଆଶାର କଥା । ଆଜି ଭାରତବର୍ଷରେ ପ୍ରାୟ ଏପରି ପ୍ରଦେଶ ନାହିଁ, ଯେଉଁଠାରେ ନିମ୍ନସ୍ତରରୁ ଲୋକେ ନ ଜାଗିଛନ୍ତି । ଆମ୍ଭମାନଙ୍କ ପକ୍ଷେ ବିଶେଷ ଆହ୍ଲାଦ ଓ ଗୌରବର କଥା ଏହି ଯେ ଉତ୍କଳ ପ୍ରଦେଶ ଉପସ୍ଥିତକ୍ଷେତ୍ରରେ ନିର୍ଜୀବ ନାହିଁ । ଯେଉଁମାନେ କହୁଥିଲେ ଭାରତୀୟ ରାଜନୈତିକ ଆନ୍ଦୋଳନରେ ଯୋଗ ଦେବାଲାଗି ଓଡ଼ିଶାର ସମୟ ଆସିନାହିଁ ଏବେ ସେମାନଙ୍କର ଭ୍ରମ ଭାଙ୍ଗିଅଛି ।

ଓଡ଼ିଶାରେ ପ୍ରାୟ କେହି ଓକିଲ ଓକିଲାତି ଛାଡ଼ି ନାହାନ୍ତି କହିଲେ ଚଳେ । ପୁ ରୁଣା ପରିଚିତ ମୁଖିଆ ଦେଶନାୟକମାନେ କରଛଡ଼ା ଦେଇ ସମୟ ଦେଖି ନିଜର ସୁବିଧା କରିନେଲେ । ସରକାରୀ ଚାକିରିର ମାୟା ଏପର୍ଯ୍ୟନ୍ତ ତୁଟିନାହିଁ । ସ୍କୁଲ କଲେଜର ଛାତ୍ରମାନେ ସ୍ୱାର୍ଥର ଆଶା ଛାଡ଼ି ପାରି ନାହାନ୍ତି । ଏସବୁ ସତ୍ତ୍ୱେ ଓଡ଼ିଶା ଅସହଯୋଗ କ୍ଷେତ୍ରରୁ ପଛଘୁଞ୍ଚା ଦେଇଛି କି ? ଓଡ଼ିଶାରେ ଜାତୀୟ ସ୍କୁଲ ହୋଇଛି । ବିଦେଶୀ ବର୍ଜନର କାର୍ଯ୍ୟ ଚାଲିଛି, ଅନେକେ ନିଶା ଛାଡ଼ିଛନ୍ତି, ନିଶାନିବାରଣ ଉଦ୍ୟମ ମଧ୍ୟ ଲାଗିଛି, ପଞ୍ଚାୟତ ବସିଛି । ସରକାରୀ ଅଦାଲତରୁ ଅନେକଙ୍କର ଆସ୍ଥା ଓ ବିଶ୍ୱାସ ତୁଟିଛି । ଗ୍ରାମେ ଗ୍ରାମେ ଅରଟ ଘିଅାରି ଲାଗିଛି, ସୂତାକଟା ହେଉଛି । ସ୍ୱଦେଶୀ ନିମନ୍ତେ କଲିକତାର ଓଡ଼ିଆ ମଜୁରିଦାର-ମାନେ ଯାହାକଲେ ସେଥିରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଛନ୍ତି । ଓଡ଼ିଶା ଲୋକେ ସ୍ୱରାଜ୍ୟ ନିମନ୍ତେ ଅକାତରେ ଜେଲଗଲେଣି । ଅନ୍ୟମାନେ ଜେଲଯିବାକୁ ପ୍ରସ୍ତୁତ ଅଛନ୍ତି । ସରକାରଙ୍କ ଦମନନୀତି ତହିଁ ଉପରେ ପୁଣି ସ୍ଥାନେ ସ୍ଥାନେ ରାଜବଲ୍ଲଭ ମହାପାତ୍ର କୌଣସି କୌଣସି ଜମିଦାର ବା କ୍ଷମତାଶାଳୀ ଲୋକଙ୍କର ଜୋର ଜବରଦସ୍ତି ସତ୍ତ୍ୱେ ଉତ୍କଳ ପ୍ରଦେଶରେ କାର୍ଯ୍ୟ ଚାଲିଛି କାହିଁକି ? ଅସହଯୋଗ ଆନ୍ଦୋଳନ ଜନସାଧାରଣଙ୍କ ମନକୁ ଲାଗିଛି । ଦେଶର ନିମ୍ନସ୍ତରରେ ଯେଉଁମାନେ ଏତେ ଦିନ ଅକାଞ୍ଚନ ଭାବରେ ଦୁଃଖ ଯାତନା ସହି ପଡ଼ି ରହିଥିଲେ ଆଜି ସେହିମାନେ ଉଠିଛନ୍ତି । ଜାତୀୟ ଜୀବନର ଅତି ଗଭୀର ପ୍ରସ୍ତରୁ ଏ ଝର ବାହାରିଛି । ଏହା ଶୁଖିବାର ନୁହେଁ । ଏହାହିଁ ଅସହଯୋଗ ଗଙ୍ଗା । ଏଥିରେ ଦେଶର ଦୁଃଖଦୁର୍ଗତି ଦୂର ହେବ, ଆତ୍ମଶୁଦ୍ଧି ହେବ । ଉତ୍କଳବାସୀ, ଏହି ଯେ ଥରେ ଜାଗିଛ ଆଉ ପଛଘୁଞ୍ଚା ଦିଅ ନାହିଁ । ତୁମ୍ଭେ ପଛଘୁଞ୍ଚା ଦେଇପାରିବ ନାହିଁ । ବିଶ୍ୱାସ କର,

ଏ ସମସ୍ତ ବାଧାଗୁଡ଼ାଙ୍କର କୃତ୍ୟ । ଡର ନାହିଁ, ଭୟ ନାହିଁ । ମନେ ରଖ, ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କଣ କହୁଛନ୍ତି—

"ନହି କଲ୍ୟାଣକୃତ୍ କଶ୍ଚିତ୍
ଦୁର୍ଗତିଂ ତାତ ଗଚ୍ଛତି" .
ଥିବ ଯଦ୍ୟପି ଦେଶହିତେ
ଦୁର୍ଗତି ନାହିଁ କଦାଚିତେ ।

ଘରେ ଘରେ ଏହି ପଦର ଧୂଆ ଉଠାଇ ଅରଟରେ ସୂତାକାଟ । ବିଦେଶୀ ଛାଡ଼, ଦେଖିବ ସ୍ୱଦେଶୀ ସଙ୍ଗେ ସଙ୍ଗେ ସ୍ୱରାଜ୍ୟ ଆସିବ ।

('ସମାଜ', ତା ୮ । ୧୦ । ୨୧)

---

# ଅସହଯୋଗର ଛାତ୍ରଙ୍କ ଉପରେ ପ୍ରଭାବ

କଲିକତା ବିଶ୍ୱବିଦ୍ୟାଳୟର ଭାଇସ୍ ଚାନସେଲର ସର ଆଶୁତୋଷ ମୁଖାର୍ଜିଙ୍କ ବକ୍ତୃତାରୁ ଜଣାଯାଏ ଯେ ଅସହଯୋଗ ଆନ୍ଦୋଳନ ଫଳରେ ସେ ବିଶ୍ୱବିଦ୍ୟାଳୟର ବହୁତ ପିଲା କମି ଯାଇଛନ୍ତି ଏବଂ ଆୟରେ ମଧ୍ୟ ବହୁତ ହାନି ଘଟିଅଛି । ଗତ ଫେବୃଆରି ମାର୍ଚ୍ଚ ମାସରେ ସ୍କୁଲ କଲେଜ ଉପରେ ଅସହଯୋଗ ଆନ୍ଦୋଳନର ବେଶୀ ଚାପ ପଡ଼ିଥିଲା । ଅନେକ ପିଲା ସ୍କୁଲ କଲେଜ ଛାଡ଼ି ଦେଇଥିଲେ । ପଛେ ପୁଣି କେତେକ ଫେରିଛନ୍ତି ସତ । ମାତ୍ର ଗତବର୍ଷ ସଙ୍ଗେ ଏବର୍ଷର ତୁଳନା କଲେ ଜଣାଯାଏ ଯେ କଲିକତା ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ସ୍କୁଲମାନଙ୍କରୁ ପ୍ରାୟ ୫୦ ହଜାର ଛାତ୍ର କମି ଯାଇଛନ୍ତି । କଲେଜମାନଙ୍କରୁ ସେହିପରି ତିନିହଜାର ସରିକି କମିଛନ୍ତି । ଏଥିର ଫଳରେ ବିଶ୍ୱବିଦ୍ୟାଳୟର ପରୀକ୍ଷା ଫିସ ଅଢେଇଲକ୍ଷ ଉପରେ କମିଯିବ ବୋଲି ହିସାବ ଧରାଯାଉଛି । ଯେଉଁମାନେ କହୁଥିଲେ ଅସହଯୋଗ ଆନ୍ଦୋଳନ ସ୍କୁଲ କଲେଜ ପିଲାଙ୍କ ମଧ୍ୟରେ କିଛି କାର୍ଯ୍ୟ କରିପାରିନାହିଁ ବୋଲି ସେମାନେ ଏ ହିସାବ ଦେଖି ଆଖି ଖୋଲି ଦେବେଣି । ବଙ୍ଗଳାରେ ପୁଣି ଆନ୍ଦୋଳନର ଗତି ସେତେ ପ୍ରବଳ ନୁହେଁ । କେତେ ମାସତଳେ ବିହାର ଓଡ଼ିଶା କାଉନ୍ସିଲ୍‌ର ଜଣେ ମେମ୍ବରଙ୍କ ପ୍ରଶ୍ନର ଉତ୍ତରରେ ସରକାର ତରଫରୁ କୁହା ହୋଇଥିଲା କି ରେଭେନ୍ସା କଲେଜରୁ ତିନିଜଣ ଛାତ୍ର ଅସହଯୋଗ ଆନ୍ଦୋଳନ ଯୋଗେ ପଢ଼ା ଛାଡ଼ିଛନ୍ତି । ଆମ୍ଭେମାନେ କହୁଁ ଏବେ ବିହାର ଓଡ଼ିଶା ତଥା ଭାରତର ଅନ୍ୟାନ୍ୟ ପ୍ରଦେଶର ଛାତ୍ର ସଂଖ୍ୟାର ହିସାବ ନିଆଗଲେ ଦେଖାଯିବ ଊଣା ଅଧିକେ ପ୍ରାୟ ସବୁ ବିଶ୍ୱବିଦ୍ୟାଳୟର ଅବସ୍ଥା କଲିକତା ବିଶ୍ୱବିଦ୍ୟାଳୟର ଅବସ୍ଥାଭଳି ହୋଇଅଛି । ଅନେକେ ତ ସ୍କୁଲ କଲେଜ ଛାଡ଼ିଛନ୍ତି । ଯେଉଁମାନେ ନ ଛାଡ଼ିଛନ୍ତି ସେମାନଙ୍କର ବର୍ତ୍ତମାନ ଢଙ୍ଗର ଶିକ୍ଷାରେ ସେତେ ଆସ୍ଥା ବା ଆଦର ନାହିଁ । ତେଣୁ ଆଗପରି ଅଧିକ ନୂଆପିଲା ସ୍କୁଲ କଲେଜରେ ଭର୍ତ୍ତି ହେବାକୁ ଚାହୁଁ ନାହାନ୍ତି । ମାତ୍ର ଯାହା ହୋଇଅଛି ଅସହଯୋଗ ଆନ୍ଦୋଳନ ପକ୍ଷେ ଯଥେଷ୍ଟ ହୋଇନାହିଁ । ପ୍ରତ୍ୟେକ ଛାତ୍ର ଛାଡ଼ି ଆସିବା ଉଚିତ ଥିଲା । ସ୍କୁଲ କଲେଜ ସବୁ ଖାଲି ପଡ଼ିଥାନ୍ତା । ସେ ସବୁରେ ଆଜି ଖଦଡ଼ ଲୁଗାର ଗୋଦାମ ହୋଇଥାନ୍ତା ବା ଅରଟ ତନ୍ତର କାରଖାନା ଖୋଲି ଯାଇଥାନ୍ତା ଏବଂ ଛାତ୍ରମାନେ ସୂତାକଟା ଲୁଗାବୁଣା କାମରେ ଲାଗିଥାନ୍ତେ ଓ ବଡ଼ ବଡ଼ ଛାତ୍ରମାନେ ସ୍ୱରାଜ୍ୟ ପତାକା ଧରି ଗ୍ରାମେ ଗ୍ରାମେ ଅସହଯୋଗ ପ୍ରଚାର କରିଥାନ୍ତେ । ଏବେସୁଦ୍ଧା ସମୟ ଯାଇନାହିଁ । ଶିକ୍ଷିତ ଯୁବକମାନଙ୍କ ଲାଗି ଯଥେଷ୍ଟ କାର୍ଯ୍ୟ ରହିଅଛି ।

('ସମାଜ', ତା ୨ । ୧୦ । ୨୧)

# ଖିଲାଫତ, ଅସହଯୋଗ ଓ ସ୍ୱଦେଶୀ

ଗ୍ରୀସ ଓ ତୁରସ୍କ ମଧ୍ୟରେ ଯେ ଲଢ଼ାଇ ଲାଗିଛି, ସେଥିରେ କେତେବେଳେ ଏ ପକ୍ଷ ଖଣ୍ଡେ ଦୂର ଠେଲି ନେଉଛି, କେତେବେଳେ ବା ଅନ୍ୟପକ୍ଷ କେତେଦୂର ପେଲି ଆଣୁଛି । ଫଳ ସମ୍ବନ୍ଧେ କିଛି ବର୍ତ୍ତମାନ ନିଶ୍ଚିତ ବୁଝାଯାଇ ନ ପାରେ; ମାତ୍ର ଆଙ୍ଗୋରାର ମୁସଲମାନ-ମାନେ ସହଜରେ ଛାଡ଼ିବେ ନାହିଁ ବୋଲି ପ୍ରତିଜ୍ଞା କରିଛନ୍ତି । ବମ୍ବେଇର ଶେଠ ଛୋଟାଣୀ ସାହେବ ଅଲ୍ପଦିନ ତଳେ ବିଲାତରୁ ଏ ଦେଶକୁ ଫେରିଛନ୍ତି । ସେ କେନ୍ଦ୍ର ଖିଲାଫତ୍ କମିଟିର ସଭାପତି । ସେ ଖିଲାଫତ୍ କମିଟିର ଏକ ବୈଠକରେ ପ୍ରକାଶ କରିଛନ୍ତି କି ମଣ୍ଟେଗୁଙ୍କୁ ଛାଡ଼ିଦେଲେ ଆଉ ବିଲାତରେ ସବୁ ମୁଖିଆ ରାଜନୈତିକ ବ୍ୟକ୍ତିଙ୍କର ତୁରସ୍କ ପ୍ରତି ବିଦ୍ୱେଷ ରହିଅଛି । ଏଥିରେ ବିନ୍ଦିତ ଲୋକେ ଯେ ମୁସଲମାନ ଖିଲାଫତ୍ ସମସ୍ୟାର ସନ୍ତୋଷଜନକ ମୀମାଂସା କରିବେ ତାହା ଆଗେ ଆଗେ ଦେଖାପଡ଼ୁଛି ।

× × ×

ଏ ମାସ ୨୩ ତାରିଖ ହୃଷୀକେଶଠାରେ ସାଧୁମାନଙ୍କର ଏକ ସଭା ହେବ । ଅନେକ ସାଧୁ ସ୍ୱେଚ୍ଛାସେବକ ହୋଇଛନ୍ତି । କେଉଁଦିନଠାରୁ କିପରି ଭାବରେ ସତ୍ୟାଗ୍ରହ ପାଳନ କରିବାକୁ ହେବ ଅର୍ଥାତ୍ ଅସଙ୍ଗତ ଓ ଅନ୍ୟାୟ୍ୟ ଆଇନକୁ ନ ମାନି କାର୍ଯ୍ୟ କରିବାକୁ ହେବ ତାହା ଏହି ସଭାରେ ସାଧୁମାନେ ଠିକ୍ କରିବେ । ଅସହଯୋଗ ଆନ୍ଦୋଳନ ଯେ ଦେଶର ତାଳୁଠାରୁ ତଳପାଯାଏ ସମସ୍ତଙ୍କ ପ୍ରାଣରେ ଜାଗରଣ ଆଣିଛି ଏହି ସାଧୁମାନଙ୍କ ସଭା ତହିଁର ପ୍ରମାଣ ।

× × ×

ଯୁବରାଜଙ୍କର ଭାରତ ଆଗମନରେ ତାଙ୍କ ଅଭ୍ୟର୍ଥନାରେ କେହି ଯୋଗ ନ ଦେବାର କଥା କଂଗ୍ରେସ ସ୍ଥିର କରିଛନ୍ତି । ଦେଶର ସ୍ଥାନେ ସ୍ଥାନେ କଂଗ୍ରେସ କମିଟି ଓ ସହରର ମ୍ୟୁନିସିପାଲିଟିମାନ ମଧ୍ୟ ଏହି ମର୍ମରେ ନିର୍ଦ୍ଧାରଣ କରୁଅଛନ୍ତି । ଆଗେ ଲାହୋର ପ୍ରଭୃତି କେତେକ ସହରର ମ୍ୟୁନିସିପାଲିଟି ଅଭ୍ୟର୍ଥନା ନ କରିବାର ଧାର୍ଯ୍ୟ କରିଥିଲେ । ସମ୍ପ୍ରତି ପୁନା ସହରର ମ୍ୟୁନିସିପାଲିଟି ଏହି ପ୍ରସ୍ତାବ ସ୍ଥିର କରିଛନ୍ତି । ଯୁବରାଜ ଆସିବେ । ଦେଶର ରାଜା ମହାରାଜା ବଡ଼ ବଡ଼ କର୍ମଚାରୀଙ୍କଠାରୁ ଆଦର ଅଭ୍ୟର୍ଥନା

ପାଇବେ ସତ; ମାତ୍ର ରାଜଭକ୍ତ ଭାରତୀୟ ପ୍ରଜାସାଧାରଣଙ୍କର ହୃଦୟ୍ରୁ ଯେପରି ସ୍ୱାଭାବିକ ନାଦ ଉଠିଥାନ୍ତା ତାହା ହେବ ନାହିଁ । ଏ ଦୋଷ କାହାର ? ଏ ଦେଶର ରାଜକର୍ମଚାରୀମାନେ ଏ ପ୍ରଶ୍ନର କି ଉତ୍ତର ଦେବେ ?

X X X

ପୁସିଫୁଟ ଜନସନ ବୋଲି ଜଣେ ସାହେବ ଆମେରିକାରୁ ଏ ଦେଶକୁ ଆସିଛନ୍ତି । ସେ ନିଶାନିବାରଣ ବିଷୟରେ ଆମେରିକାରେ ବହୁତ କାର୍ଯ୍ୟ କରିଛନ୍ତି । ଆମେରିକାର ଯୁକ୍ତରାଜ୍ୟର ସରକାର ଅବକାରୀ ବିଭାଗ ଏକାବେଳକେ ବନ୍ଦ କରି ଦେଇଛନ୍ତି । ଏ ଦେଶରେ ମାଦକଦ୍ରବ୍ୟର ବ୍ୟବହାର ନିବାରଣ କରିବା ଏ ସାହେବଙ୍କର ଉଦ୍ଦେଶ୍ୟ । କଲିକତା ପ୍ରଭୃତି କେତେକ ପ୍ରଧାନ ପ୍ରଧାନ ନଗରରେ ଏ କେତେକ ବକ୍ତୃତା ଦେଲେଣି । ଲୋକେ ଏହାଙ୍କ କଥାକୁ ଖୁବ୍ ଶୁଣୁଛନ୍ତି । ଅସହଯୋଗୀମାନେ ନିଶାନିବାରଣ କଥା କହୁଥିଲେ; ସରକାରଙ୍କୁ ଗନ୍ଧାଉ ଥିଲା । ଏବେ ଏ ଜନ୍‌ସନ୍ ସାହେବଙ୍କ କଥାରେ ସରକାରୀ ଲୋକଙ୍କର ଜବାବ କଅଣ ? ସୁରାପାନ ଭାରତବର୍ଷ ଲୋକଙ୍କର ଧର୍ମ ଓ କୁଳାଚାର ଅନୁସାରେ ମହାପାପ । ଏ ଦେଶ ଲୋକେ ପୃଥିବୀର ଅନ୍ୟାନ୍ୟ ଦେଶର ଲୋକଙ୍କୁ ଏ ବିଷୟରେ ଉପଦେଶ ଦେଇ ଆସୁଥିଲେ । ଆଜି ପୁଣି ଗୋରା ଲୋକେ ଆସି ଏମାନଙ୍କୁ ନିଶାପାନ ବିଷୟରେ ତିଆରି କହିବାଯାଏ ଗଲା । ଇଂରେଜୀ ଶିକ୍ଷା ସଭ୍ୟତା ଭାରତରେ କି ଦୁର୍ଗତି ନ ଘଟାଇଛି !

X X X

ଭାରତବର୍ଷର କେତେକ ପ୍ରଦେଶର ଲୋକେ ଆଇନ ନ ମାନି କାର୍ଯ୍ୟ କରିବାକୁ ତିଆରି ହୋଇଗଲେଣି । କଂଗ୍ରେସ କାର୍ଯ୍ୟକାରିଣୀ କମିଟିରେ ଅହମଦାବାଦଠାରେ ଏ କଥାର ଆଲୋଚନା ହୋଇଥିଲା । ସମଗ୍ର ଭାରତବର୍ଷ ନିମନ୍ତେ ଆଇନ ନ ମାନି କାର୍ଯ୍ୟ କରିବାର ସମୟ ଆସିନାହିଁ ବୋଲି ସ୍ଥିର ହେଲା । ଯେତେବେଳେ ଘରେ ଘରେ ଚରଖା ଚାଲିବ ଏବଂ ସ୍ୱଦେଶୀ ଖଦଡ଼ ଲୁଗାର ଷୋଳଣା ଚାଲୁହେବ ସେତେବେଳେ ଆଇନ ନ ମାନି କାର୍ଯ୍ୟ କରିବାକୁ ଲୋକେ ପ୍ରସ୍ତୁତ ହୋଇଛନ୍ତି ବୋଲି ଧରାଯିବ । ଏଥିମଧ୍ୟରେ କୌଣସି ଜିଲାରେ ଦରକାର ହେଲେ ପ୍ରାଦେଶିକ କଂଗ୍ରେସ କମିଟି ଆଇନ ନ ମାନି କାର୍ଯ୍ୟ କରିବାକୁ ଲୋକଙ୍କୁ ପରାମର୍ଶ ଦେଇପାରନ୍ତି । ଏହାଦ୍ୱାରା ଯେପରି କୌଣସିମତେ ଶାନ୍ତିଭଙ୍ଗ ନ ଘଟେ କିମ୍ବା ଅନ୍ୟ କୌଣସିପ୍ରକାର ଉତ୍ପାତ ନ ହୁଏ ସେ ବିଷୟରେ ବିଶେଷ ସାବଧାନ ହେବା ଦରକାର ।

X X X

ଭିନ୍ନ ଭିନ୍ନ ପ୍ରଦେଶର ବିଦେଶୀ ବର୍ଜନ ଓ ସ୍ୱଦେଶୀ ପ୍ରଚାର ସମ୍ବନ୍ଧେ କଂଗ୍ରେସ ତରଫରୁ ବିବରଣ ପ୍ରକାଶିତ ହୋଇଅଛି । ସେଥିରେ ଦେଖାଯାଏ ଯେ ଏକା ପଞ୍ଜାବ ପ୍ରଦେଶରେ ୪୦ ଲକ୍ଷ ଅରଟ ଚାଲୁଅଛି । ଅନ୍ୟାନ୍ୟ ସବୁ ପ୍ରଦେଶରେ ଊଣାଅଧିକେ କାର୍ଯ୍ୟ ଚାଲିଛି । ପ୍ରାୟ ସର୍ବଧ ଲୋକେ ଖଦଡ଼ ଲୋଡ଼ୁଛନ୍ତି । ଖଦଡ଼ର ଗୋଦାମମାନ ଖୋଲି ହେଉଛି । ପ୍ରତ୍ୟେକ ଜିଲାରେ ଦିନୁଁ ଦିନ ଅଧିକ ଅଧିକ ସୂତାକଟା ଏବଂ ତନ୍ତ୍ରଲୁଗା ତିଆରି ହେଉଛି । ମାତ୍ର ଯେଉଁ କ୍ଷିପ୍ରଗତିରେ କାର୍ଯ୍ୟ ହେବା ଦରକାର ତାହା ହେଉ ନାହିଁ । ପଞ୍ଜାବ ପରି ସବୁପ୍ରଦେଶରେ ଅରଟ ଚାଲିଲେ ମାସକ ମଧ୍ୟରେ ଦେଶରେ ପୂର୍ଣ୍ଣ ସ୍ୱଦେଶୀ ହୋଇଯାଆନ୍ତା ।

('ସମାଜ', ତା ୨୨ । ୧୦ । ୨୧)

———

# ତାତ କାଟିଛି

ପଢ଼ିଲେ ପଢ଼ିଲେ ସରକାର ଅସହଯୋଗ ଆନ୍ଦୋଳନକୁ ଖାତର କରୁଥିଲେ । ପରେ ସରକାର ତରଫଲୋକେ ମୃତ୍ତିକମାଣ ଅଙ୍କାରେ ଉଡ଼ାଇ ଦେବାକୁ ବସିଲେ । ତା ବାଦ କ୍ରମେ ଦେଖିଲେ ଯେ ଏ ଅଙ୍କାରେ ଉଡ଼ାଇ ଦେବା ଜନକ ନୁହେଁ । ତେଣୁ ୪୪ ଧାରାରେ ଅନେକଙ୍କ ମୁହଁ ବନ୍ଦ କରିବାର ଉଦ୍ୟମ ହେଲ, ସ୍ୱେଚ୍ଛାସେବକ ଏବଂ ଅନ୍ୟାନ୍ୟ ସ୍ଥାନୀୟ ସାଧାରଣ କୌଣସି କୌଣସି କର୍ମୀଙ୍କି ଗିରଫ କରାଗଲା । ଶେଷକୁ ଅସହଯୋଗ ଆନ୍ଦୋଳନରେ ଶକ୍ତି ଓ ପ୍ରଭାବ ଭଲରୂପେ ବୃଦ୍ଧିବାରୁ ଏବେ ବଡ଼ ବଡ଼ ନେତାଙ୍କ ଉପରେ ହାତ ପଡ଼ିଛି । ଓଡ଼ିଶାରେ ଅନେକ ଦିନରୁ ସାନବଡ଼ କେତେକ ସରକାରୀ କର୍ମଚାରୀ ଅସହଯୋଗ ସୁବିଧାରେ କେତେ ଲୋକଙ୍କୁ ଅଠା କାଠିରେ ପକାଇବାର ଉଦ୍ୟମରେ ଅଛନ୍ତି। ମଫସଲର କେତେକ ପଞ୍ଚାୟତଙ୍କ ନାମରେ ଫୌଜଦାରୀ ମକଦ୍ଦମା ହୋଇଥିବାର କଥା ଏଥିପୂର୍ବେ କେତେଥର ସମାଜରେ ପ୍ରକାଶ ପାଇଥିଲା । ଅସହଯୋଗ ଅଠା ଲଗାଇଦେଲେ ସହଜରେ ଦଣ୍ଡ ହୋଇଯିବ ବୋଲି କୌଣସିଠାରେ ପୋଲିସ ଓ ପୋଲିସ ପକ୍ଷୀୟ ଗାଉଁଲି ଦୁଷ୍ଟ ମାମଲତକାରମାନେ ବ୍ୟଗ୍ର ଥିଲେ । ମାତ୍ର ଫଳରେ ତାହା ହେଲନାହିଁ । ତେଣୁ ଆଉ ସେ ଭଳି ମକଦ୍ଦମା ବେଶୀ ହେବାର ଶୁଣାଯାଉନାହିଁ । ଏବେ ପୁଣି ଅସହ-ଯୋଗୀଙ୍କି ନାନା କଦରରେ ଟାଣିବାର ଚେଷ୍ଟା । ସେମାନେ ତ ମକଦ୍ଦମା ଲଢ଼ିବେ ନାହିଁ । ଓକିଲ ଦେବେ ନାହିଁ କିମ୍ବା ବାଦ ପ୍ରତିବାଦ କରିବେ ନାହିଁ । ଥରେ କୌଣସି ପ୍ରକାରେ ସେମାନଙ୍କୁ ଫୌଜଦାରୀ ଅଦାଲତକୁ ଟାଣି ନେଇପାରିଲେ ହେଲା । ଭାରତବର୍ଷର କେତେ ସ୍ଥାନରେ ଅସହଯୋଗୀମାନଙ୍କର ଯେପରି ଢଙ୍ଗରେ ଦଣ୍ଡ ବିଧାନ ହେଉଅଛି ସେଥିରେ ଆଦୌ ବ୍ୟଗ୍ର ହୋଇନାହିଁ କହିଲେ ଚଳେ । ଅସହଯୋଗୀମାନେ ମକଦ୍ଦମା ଲଢ଼ୁ ନ ଥିବାରୁ ସେମାନଙ୍କୁ ଦଣ୍ଡ ଦେବାର ସୁବିଧା ବୋଲି ଭାବି ଯଦି କୌଣସି ସରକାରୀ କର୍ମଚାରୀ କାର୍ଯ୍ୟ କରୁଥାନ୍ତି ତାହାହେଲେ ଆମ୍ଭେମାନେ କହୁଁ, ସେ ଖାଲି ଅନ୍ୟାୟ ଓ ଅଧର୍ମ କରୁ ନାହାନ୍ତି, ଖୋଦ୍ ସରକାରଙ୍କର ମଧ୍ୟ ଅକାର୍ଯ୍ୟ କରୁଛନ୍ତି । ଅସହଯୋଗୀ-ମାନେ ଦଣ୍ଡ ପାଇବାକୁ ପ୍ରସ୍ତୁତ ଅଛନ୍ତି, ଜେଲ ଯିବାକୁ ତିଆର ଅଛନ୍ତି । ଦେଖାଯାଉଛି, ସାନ ବଡ଼ ଯେତେ ଅସହଯୋଗୀଙ୍କ ଉପରେ ଏ ପର୍ଯ୍ୟନ୍ତ ଯାହାକିଛି ଦଣ୍ଡ ହୋଇଛି, ସେମାନେ ଅକାତରେ ତାହା ସହୁଛନ୍ତି । ଅସହଯୋଗୀଙ୍କି ଜେଲ ବା ଅନ୍ୟ କୌଣସି ପ୍ରକାରେ ଦଣ୍ଡ ଦେବାରେ ବାହାଦୁରୀ ବା ବିଶେଷତ୍ୱ କିଛି ନାହିଁ । ବରଂ ତଦ୍ଦ୍ୱାରା ଅସହଯୋଗରେ ଲୋକ

ସାଧାରଣଙ୍କର ଅଧିକ ଆସ୍ଥା ଓ ବିଶ୍ୱାସ ହେଉଅଛି; ଇଂରେଜ ସରକାରଙ୍କ ଅଦାଲତରେ ପ୍ରକୃତ ନ୍ୟାୟ ବିଚାର ନାହିଁ ବୋଲି ଅସହଯୋଗୀମାନେ ସମସ୍ତଙ୍କୁ ମୂଳରୁ ବୁଝାଇ ଆସୁଛନ୍ତି; ଲୋକ ସାଧାରଣ ମଧ୍ୟ ତାହା ଅନେକ ପରିମାଣରେ ବୁଝିପାରିଛନ୍ତି; ତେଣୁ ପଞ୍ଚାଏତ ଅଦାଲତ ପ୍ରତି ଅଧିକାଂଶଙ୍କର ଆଦର ଓ ଆଗ୍ରହ ଜନ୍ମିଅଛି । ଅସହଯୋଗୀମାନଙ୍କୁ ଯଥେଚ୍ଛା ଭାବରେ ଦଣ୍ଡ ଦିଆଗଲେ ସେମାନଙ୍କ ପ୍ରତି ଏବଂ ଅସହଯୋଗ ଆନ୍ଦୋଳନ ପ୍ରତି ଲୋକ ସାଧାରଣଙ୍କ ଶ୍ରଦ୍ଧା ଓ ସହାନୁଭୂତି ଅଧିକ ହେବ ଏବଂ ତହିଁ ସଙ୍ଗେ ସଙ୍ଗେ ସରକାରଙ୍କ ଅଦାଲତ ପ୍ରତି ଅନାଦର ଓ ଅବିଶ୍ୱାସ ବଢ଼ିବ । ଯେ କୌଣସି ଶାସନର ସ୍ଥାୟିତ୍ୱ ଓ ଉନ୍ନତି ଲୋକ ସାଧାରଣଙ୍କ ଶ୍ରଦ୍ଧା ଓ ବିଶ୍ୱାସ ଉପରେ, ତାହା ଥରେ ତୁଟିଲେ ଲକ୍ଷେ ତୋପ ବନ୍ଧୁକ କିଛି କରି ପାରିବ ନାହିଁ । ଜେଲ ଜୋରିମାନା ଫାଶି କାଠର କଦାମତ ପର୍ଯ୍ୟନ୍ତ ରହିବ ନାହିଁ । ମୂଳଦୁଆ ଦବିଲେ କାନ୍ଥ ଦବିବ, କୋଠା ଫାଟିବ । ଉପରେ ଯେତେ ମରାମତି କର, ଚେକା ଲଗାଅ, ସମ୍ଭାଳିବ ନାହିଁ । ପୁଣି ମୂଳଦୁଆ ଆହୁଥରେ ନୂଆ ଠିକ୍ ନ ହେଲେ କୋଠା ଭାଙ୍ଗି ପଡ଼ିବ । ଅସହଯୋଗୀମାନଙ୍କୁ ଟାଣି ଓଟାରି ଯେ କୌଣସି ପ୍ରକାରେ ଦଣ୍ଡ ଦେବାଦ୍ୱାରା ଇଂରେଜୀ ଶାସନର ମୂଳଦୁଆ ବେଶୀ ଦବୁଛି । ବିଚକ୍ଷଣ ରାଜ-ପୁରୁଷମାନଙ୍କର ବୁଝିବା ଉଚିତ ଯେ ଏହା ଠିକ୍ ପନ୍ଥା ନୁହେଁ ।

('ସମାଜ', ତା ୨୨ । ୧୦ । ୨୧)

———

# ଦବାଇ ରୋଗ ବଢ଼ାଉଛି

ସରକାର ଯେ ମନେ କରିଥିଲେ ଦମନ ନୀତି ଦ୍ୱାରା ଅସହଯୋଗ ଆନ୍ଦୋଳନ ଦବିଯିବ ବୋଲି ଫଳରେ ତାହା ଦେଖାଯାଉନାହିଁ । ଅନେକଙ୍କ ଉପରେ ୧୪୪ ଧାରା ହୁକୁମ ହେଉଛି; ଅନେକଙ୍କ ନାମରେ ୧୦୮ ଧାରା ୧୨୪ ପ୍ରଭୃତି ଦଫାରେ ମକଦ୍ଦମା ଚାଲୁଛି । କର୍ଣ୍ଣାଟର ନେତା ଗଙ୍ଗାଧର ଦେଶପାଣ୍ଡେ ଏକବର୍ଷ ସଶ୍ରମ କାରାବାସ ପାଇଛନ୍ତି । ଚଟ୍ଟାଗାଁ ଜିଲାର ପ୍ରଧାନ ଜନ ନାୟକ ଜେ: ଏମ୍: ସେନଗୁପ୍ତଙ୍କର ତିନିମାସ ସଶ୍ରମ କାରାଦଣ୍ଡ ହୋଇଅଛି । ୟାକୁବ ହୋସେନଙ୍କୁ ପୁନର୍ବାର ଗିରଫଦାର କରାଯାଇଅଛି । ଏ ନେତାମାନଙ୍କ ଛଡ଼ା ଆଉ କେତେକଙ୍କର ମଧ୍ୟ ଦଣ୍ଡ ବିଧାନ ହେଉଅଛି ଓ ହେବ । ମାତ୍ର ଏମାନଙ୍କ ପଛକୁ ଅନ୍ୟମାନେ ଜେଲ ଯିବାକୁ ତିଆରି ହୋଇ ଛିଡ଼ା ହେଉଛନ୍ତି । ସ୍ଥାନେ ସ୍ଥାନେ ସଭାସମିତି ହୋଇ ସରକାରୀ ଚାକରମାନଙ୍କୁ ବିଶେଷରେ ସୈନିକ ଓ ପୋଲିସ ବିଭାଗର ନୌକରମାନଙ୍କୁ କାମଛାଡ଼ି ଆସିବା ନିମନ୍ତେ କୁହାଯାଉଅଛି । ସ୍ୱଦେଶୀର ପ୍ରବୃତ୍ତି ଦିନୁଁଦିନ ଅଧିକ ହେଉଅଛି । ମୋଟକଥା ସରକାରଙ୍କ ଦବାଇରେ ରୋଗ ବଢ଼ୁଛି । ଭଗବାନ ଯେ ତାଙ୍କ ଉଦ୍ଦେଶ୍ୟ କେତେ ପ୍ରକାରେ ସାଧନ କରନ୍ତି ତାହା ମନୁଷ୍ୟର ଆଗୋଚର ।

X X X

ବିହାର ପ୍ରଦେଶରେ ଗିଧର ବୋଲି ଗୋଟିଏ ଭାରି ବଡ଼ ଜମିଦାରୀ । ଗିଧରର ରାଜାଙ୍କର ସରକାରିଙ୍କ ପାଖେ ଖାତିର ଅଛି । ତାଙ୍କ ପୁତୁରା ଶ୍ରୀମାନ କାଳିକା ପ୍ରସାଦ ସିଂହ କିନ୍ତୁ ଜଣେ ବିହାରର ପ୍ରଧାନ ଅସହଯୋଗୀ । ନିଶାନିବାରଣ ବିଷୟରେ ସେ ବହୁତ କାର୍ଯ୍ୟ କରିଛନ୍ତି । ସରକାର ତାଙ୍କୁ ଜବତ୍ କରିବା କାରଣ ୧୦୮ ଧାରା ଅନୁସାରେ ଜାମିନ ତଲବ କରିଥିଲେ । ସେ ଜାମିନ ଦେଲେ ନାହିଁ । ଏ ମକଦ୍ଦମା ସଂକ୍ରାନ୍ତରେ ସେ ଯେ ଜବାବ ଦେଇଛନ୍ତି ତାହା ଅତ୍ୟନ୍ତ ପ୍ରଶଂସନୀୟ । ସେ ବିଚାରପତି ମେଜେଷ୍ଟ୍ରରଙ୍କୁ କହିଲେ କି "ମୁଁ ସ୍ୱାଧୀନ ଭାରତର ଲୋକ; ମୁଁ ଏ ବିଦେଶୀ ଅଦାଲତକୁ ମାନେ ନାହିଁ । ମୁଁ ମାନେ ଏକା କଂଗ୍ରେସକୁ, କଂଗ୍ରେସ ଏ ଦେଶ ଅଧିବାସୀଙ୍କ ଦ୍ୱାରା ଯଥାରୀତିରେ ସଂଗଠିତ । ସୁତରାଂ କଂଗ୍ରେସ ଏକା ଏ ଦେଶର ସରକାର । ମୁଁ ଯେ ଏଠାକୁ ଆସିଅଛି ନ୍ୟାୟ ବିଚାର ନିମନ୍ତେ ତା ନୁହେଁ । ଆସିଛି ଯୁଦ୍ଧର ବନ୍ଦୀ ସ୍ୱରୂପ । ସୁତରାଂ ଏ ଅଦାଲତରେ ମୋର କିଛି କହିବାର ନାହିଁ । ମାତ୍ର ଏଠାରେ ଗୋଟାଏ ଜବାବ ଦେବାର ଅଧିକାର

କଂଗ୍ରେସ ମୋତେ ଦେଇଛନ୍ତି; ଅବଶ୍ୟ ମୋର ଆତ୍ମରକ୍ଷା ଲାଗି ନୁହେଁ, କିନ୍ତୁ ଯଥାର୍ଥ କଥା ଦେଶର ଜନସାଧାରଣଙ୍କୁ ଜଣାଇବା ଲାଗି ।” ଏପରି ବୀର ପୁରୁଷପରି ନିର୍ଭୀକ ଏବଂ ତେଜସ୍ୱୀଭାଷାରେ ଏକ ସୁନ୍ଦର ମୁଖବନ୍ଧ କରି କୁମାର ଯେ. ସୁନ୍ଦର ସୁସଙ୍ଗତ ଜବାବ ଦେଲେ ସେଥିରେ ବିଚାରପତି ପର୍ଯ୍ୟନ୍ତ ବିଚଳିତ ହୋଇ ଯାଇଥିଲେ । ଏହିପରି ଶକ୍ତିଶାଳୀ ତେଜସ୍ୱୀ ରାଜକୁମାରମାନେ ଯେତେବେଳେ ଦେଶ କାର୍ଯ୍ୟରେ ଜୀବନ ଉତ୍ସର୍ଗ କରି ସାରିଲେଣି, ସ୍ୱରାଜ୍ୟ ପ୍ରାପ୍ତି ସୁନିଶ୍ଚିତ ବୋଲି ଜାଣିବାକୁ ହେବ। କୁମାରଙ୍କୁ ଏକବର୍ଷ ବିନା ଶ୍ରମରେ କାରାଦଣ୍ଡ ହୋଇଅଛି । ଏଥିରେ ତାଙ୍କର କେହି କେହି ଭାଇ ଅନାରାରୀ ମେଜେଷ୍ଟର ପଦ ଛାଡ଼ିଦେଇ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଛନ୍ତି । ଓଡ଼ିଶାର ରାଜା, ଜମିଦାର ଓ ସେମାନଙ୍କ କୁମାରମାନେ ଏଥିରୁ କିଛି ଶିଖିବେ କି ?

× × ×

ନିଖିଳ ଭାରତ କଂଗ୍ରେସ କମିଟିର **ଆ**ଗାମୀ ବୈଠକ ନଭେମ୍ବର ମାସ ୪ ତାରିଖ ଦିଲ୍ଲୀଠାରେ ହେବା ସ୍ଥିର ହୋଇଅଛି । ଆଗାମୀ ଅହମଦାବାଦ କଂଗ୍ରେସ ପୂର୍ବରୁ ଏ ଦୁଇମାସ ମଧ୍ୟରେ କି କି କାର୍ଯ୍ୟ କରିବାକୁ ହେବ ତାହା ଏହି ବୈଠକରେ ନିରୂପିତ ହେବ । ଏଥିରେ ସ୍ୱରାଜ୍ୟ ପ୍ରାପ୍ତିର ଶେଷ ସୋପାନ ସ୍ଥିର ହେବ । ଭିନ୍ନ ଭିନ୍ନ ପ୍ରଦେଶର ପ୍ରତିନିଧିମାନେ ଆପଣା ଅଞ୍ଚଳର ଲୋକ ସାଧାରଣଙ୍କ ମତଗତି ଅବସ୍ଥା ଉତ୍ତମରୂପେ ବୁଝି ଏ ଅଧିବେଶନରେ ଯୋଗ ଦେବା ଉଚିତ ଏବଂ ତାଙ୍କ ପ୍ରଦେଶ ବା ଜିଲା ନିମନ୍ତେ କି ପ୍ରକାର ବିଧାନ ହେବା ଉଚିତ ତାହା ସ୍ପଷ୍ଟ ଭାବରେ କମିଟିରେ ବ୍ୟକ୍ତ କରିବା ଆବଶ୍ୟକ ।

(‘ସମାଜ’ ତା ୨୯ । ୧୦ । ୨୧)



## ଯୁବରାଜଙ୍କୁ ବର୍ଜନ ହରତାଳ

ସମ୍ରାଟଙ୍କ ପୁଅ ଯୁବରାଜ ଏ ମାସ ୧୭ ତାରିଖ ସକାଳେ ବମ୍ବେଇ ସହରରେ ପହଞ୍ଚିଲେ । ସେଦିନ ଭାରତବର୍ଷର ସବୁଠାରେ ହରତାଳ ହେବାର କଥା ଆଗରୁ କଂଗ୍ରେସ ଠିକ୍ କରିଥିଲେ । କଂଗ୍ରେସ ଆଦେଶ ଆଜିକାଲି ଉପର କେଜାଣି ବିଜୁଳି ବେଗରେ ଦେଶର ଘରିଆଡ଼େ ଜାରି ହୋଇଯାଉଛି । ୧୭ ତାରିଖ ଦିନର ହରତାଳ କଲିକତା ଆଦି ମହାନଗରୀଠାରୁ ସାମାନ୍ୟ ମଫସଲର ପଡ଼ାଗାଁ ପର୍ଯ୍ୟନ୍ତ ସବୁଠାରେ ଲୋକେ ଯେପରି ପାଳିଥିଲେ ତାହା ଦେଖି ଅନେକଙ୍କର ଆଶ୍ଚର୍ଯ୍ୟ ଓ ଆତଙ୍କ ହୋଇଅଛି । ସହରର ହାଟ ବଜାରରେ କିଣାବିକା ଖାଲି ବନ୍ଦ ହୋଇ ନ ଥିଲା । କଲିକତାରେ ଗାଡ଼ି ମଟର ଟ୍ରାମ ସୁଦ୍ଧା ଚାଲିଲା ନାହିଁ । ସ୍କୁଲ କଲେଜକୁ ପିଲାମାନେ ଗଲେ ନାହିଁ । ଘର ଚାକରମାନେ କାମ କଲେ ନାହିଁ । ଅନେକ ବଡ଼ ଲୋକେ ଏପରିକି କେତେ ବଡ଼ ବଡ଼ ସାହେବ ଖାଇବା ପିଇବା ଓ ଅନ୍ୟାନ୍ୟ ପ୍ରକାରେ ଘରେ ଚଳାଚଳ ହେବାରେ ଘୋର ଅସୁବିଧା ଭୋଗିଲେ । ମଫସଲିର ଅନେକ ସ୍ଥାନରେ ସାମାନ୍ୟ ଦୋକାନୀକୁ ପୋଲିସ ଧମକାଇଲେ ସୁଦ୍ଧା ସେମାନେ ଡରିଲେ ନାହିଁ କି ଦୋକାନ ଫିଟାଇଲେ ନାହିଁ । ଭାରତବର୍ଷ ଏଡ଼େ ଗୋଟାଏ ମହାରାଜ୍ୟ; ଏଥିରେ ହଠାତ୍ ସବୁ ସବୁଲୋକେ ଏକମନ ଏକପ୍ରାଣ ହୋଇ କାର୍ଯ୍ୟ ବନ୍ଦ କରୁଥିବାର ଦେଖି ଅନେକ ଗୋରାଙ୍କର ଭୟ ହୋଇ ଯାଇଅଛି । କଲିକତାର ଗୋରା ବ୍ୟବସାୟୀମାନେ ଅଯଥାର ଆତଙ୍କ ପ୍ରକାଶ କରି ଏଥିର ପ୍ରତିକାର କରିବାଲାଗି ବଙ୍ଗଳା ସରକାରଙ୍କଠାରେ ଗୁହାରି କରିଛନ୍ତି । ଆଇନ ନ ମାନି କାର୍ଯ୍ୟ କରିବାକୁ ହେଲେ ଲୋକେ ସମର୍ଥ ହେବେ ବୋଲି ଏହି ହରତାଳ ଆଦି କେତେ ଘଟନାରୁ ଆଶା କରାଯାଏ ।

× × ×

ଗଲା ୧୭ ତାରିଖରେ କଲିକତାର ହରତାଳ ଦେଖି ବଙ୍ଗଳା ସରକାର ବିଚଳିତ ହୋଇ ଯାଇଅଛନ୍ତି । ଗୋରା ବେପାରୀମାନେ ସରକାରଙ୍କଠାରେ ଗୁହାରି କରିଛନ୍ତି କି ଏହିଭଳି ହରତାଳ ଯେବେ ଆଉ କେତେଥର ହୁଏ ତେବେ ସାହେବମାନଙ୍କର ଏ ଦେଶରେ ରହିବା ଅସମ୍ଭବ ହୋଇ ପଡ଼ିବ । ସେମାନେ ଆହୁରି ମଧ୍ୟ କହୁଛନ୍ତି ଯେ କଂଗ୍ରେସ ଓ ଖିଲାଫତ୍ ସ୍ୱେଚ୍ଛାସେବକମାନେ ଯାହା ବରୁଛନ୍ତି ତାହା କରୁଛନ୍ତି । ସେମାନଙ୍କ ଦାଉରେ ପୋଲିସ ହାତବାନ୍ଧି ରହିଲେଣି । ଜାତିଭାଇଙ୍କ ଗୁହାରି ଶୁଣି

ବଙ୍ଗଳାର ଲାଟ ରୋନାଲ୍‌ଡ଼ସେ ଖୁବ ତାତି ଯାଇଛନ୍ତି । ବଙ୍ଗଳାର ଖିଲଫତ୍ ଓ କଂଗ୍ରେସ କମିଟିମାନ ଧ୍ୱଂସ କରିବାକୁ ସେ ସଙ୍କଳ୍ପ କରି ବସିଛନ୍ତି । ଯେଉଁ ରାଓ୍ୱଲାଟ ଆଇନ ଜାରି ହେବାରୁ ପଞ୍ଜାବରେ ଏତେକାଣ୍ଡ ଲଗିଲା ଏବଂ ଗଲା ଛଅବର୍ଷ ମଧ୍ୟରେ ଯେଉଁ ଆଇନ କୌଣସି କାମରେ ଲଗିନାହିଁ ବୋଲି କହି ତାହା ଉଠାଇ ଦେବାଲାଗି ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାରେ ଅଳ୍ପଦିନ ତଳେ ସରକାର ତରଫରୁ ପ୍ରସ୍ତାବ ଉଠିଥିଲା । ବଙ୍ଗଳାର ଲାଟ ଏବେ ସେହି ରାଓ୍ୱଲାଟ୍ ଆଇନକୁ ବଙ୍ଗ ପ୍ରଦେଶରେ ଜାରିକରି କଂଗ୍ରେସ ଓ ଖିଲଫତ୍ ସ୍ୱେଚ୍ଛାସେବକମାନଙ୍କୁ ଜମାଏତ ବସ୍ତୁ ବେଆଇନ ଦଳ ବୋଲି ଘୋଷଣା କରି ଅଛନ୍ତି । କଲିକତାର କେତେ କଂଗ୍ରେସ କର୍ମୀଙ୍କ ଘର ଓ କଂଗ୍ରେସ ଅଫିସ ଖାନତଲାସ କରି ପୋଲିସ କାଗଜପତ୍ର ସବୁ ନେଇ ଯାଇଅଛି । ବଙ୍ଗଦେଶର ଲୋକେ ତ କଂସାରି ଘରର ପାରି, ସେମାନେ ଏ କୁଲା ଢିଆଉଁ ଡାଉଁରେ ସହଜରେ ଡରୁନାହାନ୍ତି । କଂଗ୍ରେସ ଓ ଖିଲଫତ୍ ସ୍ୱେଚ୍ଛାସେବକମାନଙ୍କୁ ବେଆଇନଦଳ ବୋଲି କହି ସେମାନଙ୍କ ମଧ୍ୟରୁ କେତେଜଣଙ୍କୁ ଗିରଫଦାର କଲେ ବା ଜେଲ ହେଲେ ସୁଦ୍ଧା ପୁଣି ହଜାର ହଜାର ଲୋକ ସ୍ୱେଚ୍ଛାସେବକ ଦଳରେ ନାମ ଲେଖାଇ ଅଛନ୍ତି । ସରକାରଙ୍କ କାର୍ଯ୍ୟକୁ ଲୋକେ ବେଆଇନ କହି ନକେ ଯାହା ଯଥାର୍ଥ ବୋଲି ବୁଝୁଛନ୍ତି ବାଇଦ ବଜାଇ ସଫା ନିର୍ଭୀକ ଭାବରେ ତାହା କରୁଛନ୍ତି । ସଭାସମିତି ବା ପଟୁଆର ଆଦି କଲିକତାରେ ବନ୍ଦ କରାଯାଇଅଛି । ବଙ୍ଗଳାର ଲାଟସଭାରେ ଅସହଯୋଗ ଦମନର ପ୍ରସ୍ତାବ ଉଠିଅଛି । ମାତ୍ର ଏଥିରେ ଆନ୍ଦୋଳନ କ୍ୱାପି ଦବିବ ନାହିଁ । ବରଂ ଲୋକଙ୍କ ମନ ଟାଣ ହେଉଛି ଏବଂ କାର୍ଯ୍ୟ ଦୃଢ଼ ହେଉଛି । ଅଧିକ ଆଗର କଥା ଗୁଡ଼ । ଏବେତ ଦେଖାଯାଉଛି ବଙ୍ଗବିଚ୍ଛେଦ ଆନ୍ଦୋଳନଠାରୁ ଆଜିଯାଏ ଯେତେ ଘଟନାରେ ସରକାର ଦମନନୀତି ପ୍ରୟୋଗ କରିଛନ୍ତି, ସର୍ବତ୍ର ତହିଁର ବିପରୀତ ଫଳ ହେଉଅଛି । ତଥାପି କର୍ତ୍ତାମାନଙ୍କର ଚେତା ପଶୁନାହିଁ ।

× × ×

ଅତ୍ୟନ୍ତ ଦୁଃଖର କଥା ବମ୍ବେଇରେ ଯୁବରାଜ ପହଞ୍ଚିବା ଦିନ ସେଠା ଲୋକେ ପୂରା ଶାନ୍ତି ରଖି ହରତାଲ କରି ପାରିଲେ ନାହିଁ । ହରତାଲ ହୋଇଥିଲା, ଦୋକାନ ହାଟ ବନ୍ଦ ଥିଲା, ଲୋକେ କାମ କରି ନ ଥିଲେ ସତ; ମାତ୍ର ଯୁବରାଜଙ୍କୁ ଭେଟିବା ଲାଗି ଯେଉଁ ସହଯୋଗୀମାନେ ଜାହାଜ ଘାଟକୁ ଯାଇଥିଲେ କିମ୍ବା ଯେ କେହି କେହି କୌଣସିଠାରେ ଦୋକାନ ଫିଟାଇ ଥିଲେ ଲୋକେ ସେମାନଙ୍କ ଉପରେ ଜୋର ଜୁଲୁମ ଏବଂ ଅତ୍ୟାଚାର ଆରମ୍ଭ କରିଥିଲେ । କେତେଟା ଦୋକାନ ଲୁଟି କରିଥିଲେ, କେତେଖଣ୍ଡ ମଟରକାର

ପୋଡ଼ି ଦେଇଥିଲେ, କେତେ ଗାଡ଼ି ଭାଙ୍ଗି ଦେଇଥିଲେ । କେତେ ଯାଗାରେ ବିଷମ ରକମରେ ମାରପିଟ ଲଗିଥିଲା । ପୋଲିସ ଗୁଳି ଚଳାଇଲେ । ଉଭୟ ପକ୍ଷରୁ କେତେ ଲୋକ ମରିଛନ୍ତି, ଅନେକେ ଆଘାତ ପାଇଛନ୍ତି, ଏପରିକି କେତେଜଣ ପାର୍ଶି ସ୍ତ୍ରୀମଧ୍ୟ ଗୁରୁତର ମାଡ଼ ଖାଇଛନ୍ତି । ଜଣେ ଗୋରା ଏ ଗୋଳମାଳରେ ମରିଯାଇଛନ୍ତି । ମହାତ୍ମା ଗାନ୍ଧୀ ସେଦିନ ସେଠାରେ ଉପସ୍ଥିତ ଥିଲେ । ଶାନ୍ତିରକ୍ଷା ନିମନ୍ତେ ଲୋକଙ୍କୁ ବହୁତ ବୁଝାଇ ଥିଲେ; ମାତ୍ର ସେ ମୁହୂର୍ତ୍ତିରେ ଲୋକେ ଏକପ୍ରକାର ଅନ୍ଧ ହୋଇ ଯାଇଥିଲେ ଏବଂ ମହାତ୍ମାଙ୍କ କଥା ଶୁଣିଲେ ନାହିଁ । ଅନ୍ୟାନ୍ୟ କେତେକ ନେତା ମଧ୍ୟ ନିବର୍ତ୍ତାଇବାର ଉଦ୍ୟମ କରିଥିଲେ, କିଛି ଫଳ ହେଲନାହିଁ, ବରଂ ସେମାନଙ୍କ ମଧ୍ୟରୁ କେହି କେହି ମାଡ଼ ଖାଇଛନ୍ତି । ଅବଶ୍ୟ ପରେ କେତେକ ସମୟ ବାଦ ଲୋକେ ଶାନ୍ତ ହୋଇଗଲେ ସତ; ମାତ୍ର ଯେ ଅନିଷ୍ଟ ହଠାତ୍ କରି ପକାଇଲେ; ତାହା ସୁଧାରିବା ସହଜ ନୁହେଁ । ବମ୍ବେଇ ସହରରେ ହିନ୍ଦୁ ମୁସଲମାନ ପଟେ, ପାର୍ଶି ଓ ଖ୍ରୀଷ୍ଟିଆନ ପଟେ ହୋଇ ଯାଇଛନ୍ତି । ମହାତ୍ମାଗାନ୍ଧି ଏ ଘଟଣାରେ ଅତ୍ୟନ୍ତ ମର୍ମାହତ ହୋଇଛନ୍ତି । ବମ୍ବେଇର ସକଳ ବର୍ଣ୍ଣ ସକଳ ଧର୍ମର ସ୍ତ୍ରୀ ପୁରୁଷଙ୍କଠାରେ ଗଭୀର ଦୁଃଖର ସହିତ ନିବେଦନ କରିଅଛନ୍ତି । ଲୋକମାନଙ୍କର ଏ କାର୍ଯ୍ୟକୁ ସେ ଆପଣାର ଦୋଷ ବୋଲି ସ୍ୱୀକାର କରି ସେଥିଲାଗି ଏବେ ପ୍ରାୟଶ୍ଚିତ୍ତ କରିବା କାରଣ ନିରାଧାର ହୋଇ ରହିଛନ୍ତି । କେବଳ ଜଳସେବା କରି ୧୮ ତାରିଖଠାରୁ ୬ଦିନ କାଳ ରହିଲେଣି । ବମ୍ବେଇର ଲୋକେ ଆପଣାର କାର୍ଯ୍ୟଲାଗି ଅନୁତାପ କରି ନିଜ ନିଜ ମଧ୍ୟରେ ଭେଦ ବିବାଦ ତୁଟାଇ ପୁଣି ଏକମେଳ ନ ହେବାଯାଏ ମହାତ୍ମାଗାନ୍ଧି ଏହିପରି ବିନା ଅନ୍ନରେ ରହିବେ ବୋଲି ସ୍ଥିର କରିଛନ୍ତି । ତାଙ୍କର ଧର୍ମ ଓ ତପସ୍ୟା ବଳରେ ଅସହଯୋଗ ଆନ୍ଦୋଳନ ଏତେଦୂର ଆସିଛି । ତାଙ୍କ ସାଧନା ସଙ୍ଗେ ଦେଶବାସୀ ନିଜ ନିଜ ସାଧନା ସଂଯମ ଯୋଗକଲେ ଆମ୍ଭମାନଙ୍କର ମହା ଜାତୀୟ ସାଧନା ଫଳରେ ସ୍ୱରାଜ୍ୟ ସିଦ୍ଧ ହେବ ।

('ସମାଜ' ତା ୨୬ । ୧୧ । ୨୧)

———

# ଅମୃତହାଣ୍ଡିରେ କଣିକାଏ ବିଷ

ବମ୍ବେଇ ଗୋଳମାଳର ଗୂଢ଼ ରହସ୍ୟ ଏପର୍ଯ୍ୟନ୍ତ ଜଣା ପଡ଼ିନାହିଁ । ଯେଉଁମାନେ ଶାନ୍ତିଭଙ୍ଗ କରିଅଛନ୍ତି ସେମାନେ କଦାପି ଅସହଯୋଗୀ ନୁହନ୍ତି । ବରଂ ଅସହଯୋଗ କାର୍ଯ୍ୟକୁ ବ୍ୟର୍ଥ କରିବା ସେମାନଙ୍କର ଅଭିପ୍ରାୟ ବୋଲି କୁହାଯାଇପାରେ । ଯଥାର୍ଥରେ ଏ ଗୋଳମାଳ ଫଳରେ ଅସହଯୋଗ କାର୍ଯ୍ୟ ବହୁତ ପଛେଇ ଗଲା । ସରକାର ଓ ଅସହଯୋଗ ବିରୋଧୀ ଦଳଙ୍କୁ ଅସହଯୋଗ ଆନ୍ଦୋଳନର ନିନ୍ଦା କରିବାକୁ ଏବଂ ନାନା-ପ୍ରକାରେ ଦମନ କରିବାକୁ ଯଥେଷ୍ଟ କାରଣ ମିଳିଲା । ଏହି ମାସ ୨୩ ତାରିଖଠାରୁ ଗୁଜରାଟ ପ୍ରଦେଶର ସୁରଟ ଓ କାଇରା ଜିଲାରେ ଆଇନ ନ ମାନି କାର୍ଯ୍ୟ କରିବାର ଉଦ୍ୟମ ଆରମ୍ଭ ହେବ ବୋଲି ମହାତ୍ମାଗାନ୍ଧି ସ୍ଥିର କରିଥିଲେ । ମାତ୍ର ବମ୍ବେଇ ଘଟଣା ଯୋଗୁଁ ତାହା ବର୍ତ୍ତମାନ ସ୍ଥଗିତ ରହିଅଛି । ଅସହଯୋଗ ଆନ୍ଦୋଳନ ମୂଳରୁ ଶାନ୍ତିରକ୍ଷି ଧୀରସ୍ଥିର ଭାବରେ କାର୍ଯ୍ୟ କରିବାଲାଗି ଲୋକମାନଙ୍କୁ କୁହାଯାଉଅଛି । ଅନେକ ଘଟନାରେ ସେମାନେ ଅବଶ୍ୟ ଖୁବ୍ ଧୈର୍ଯ୍ୟଧରି କାର୍ଯ୍ୟ କରିବାର ଦେଖାଯାଉଅଛି । ପଞ୍ଜାବ ଅତ୍ୟାଚାର ଏବଂ ଖିଲାଫତ୍ ପ୍ରସଙ୍ଗରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇ ନ ଥିଲେ ଯଥାର୍ଥରେ ଲୋକେ ଏପରି ତାତି ଯାଆନ୍ତେଣି ଯେ ଦେଶର ଅଧିକାଂଶ ଯାଗାରେ ଘୋର ଉତ୍ପାତ ଘଟିପାରନ୍ତାଣି । ମାତ୍ର ମାଲେଗାଁ ଗୋଳମାଳ, ମାଲବାରରେ ମୋପଲା ଦୌରାତ୍ମ୍ୟ ଏବଂ ଶେଷରେ ବମ୍ବେଇ ଉତ୍ପାତ ଅମୃତହାଣ୍ଡିରେ ବିଷ କଣିକାଏ ପରି ଅସହଯୋଗ ଉଦ୍ୟମକୁ କେତେ ପରିମାଣରେ ନଷ୍ଟକରି ଦେଉଛି ।

('ସମାଜ' ତା ୨୬ । ୧୧ । ୨୧)

---

# ଅସହଯୋଗୀଙ୍କ ଦୁର୍ଦ୍ଦଶା

ବିହାର ଓଡ଼ିଶାର ଲାଟ ଲର୍ଡ ସିଂହ ଗଲ କେତେଦିନ ହେଲା ବଡ଼ ପୀଡ଼ିତ ଥିଲେ । ତାଙ୍କୁ ଉଦୁଷ୍କର ଅନିଦ୍ରା ରୋଗ ଧରିଥିଲା । ଏବେ ଅବସ୍ଥା ଏପରି ଯେ ତାଙ୍କ ପାଖକୁ ଆଉ ଚିଠିପତ୍ର ଯାଉନାହିଁ କି ବନ୍ଧୁବାନ୍ଧବମାନେ କେହି ଦେଖି ପାରୁନାହାନ୍ତି । ଅବସ୍ଥା ବଡ଼ ଶୋଚନୀୟ । ଶେଷକୁ ଏବେ ସେ କାମରୁ ଇସ୍ତଫା ଦେଇଛନ୍ତି । ଦେଶର ଉପସ୍ଥିତ ଅବସ୍ଥାରେ ବର୍ତ୍ତମାନ ଶାସନକଳର ଶିଖାରେ ବସି କାର୍ଯ୍ୟଚଳାଇବା ଦେଶୀଲୋକ ପକ୍ଷରେ ସହଜ ନୁହେଁ । ଗୋରାମାନଙ୍କ ଉପରେ ରହିବାରୁ ସେମାନଙ୍କଠାରୁ ସାହାଯ୍ୟ ସହାନୁଭୂତି ପାଇବା ଅସମ୍ଭବ । ଏଣେ ପୁଣି ଦେଶୀ ଲୋକଙ୍କୁ ଜବଦ୍ କରି ନ ପାରିଲେ କାଳେ ଦୁର୍ବଳତା ଦୋଷ ରଟନା ହେବ ବୋଲି ଆଶଙ୍କା । ଲର୍ଡ ସିଂହ ପ୍ରଥମରୁ ଏ ଉଭୟ ସଙ୍କଟରେ ପଡ଼ି ବ୍ୟତିବ୍ୟସ୍ତ ହୋଇଥିବାର ପ୍ରମାଣ ମିଳିଅଛି । ଗୋରାମାନଙ୍କୁ ସନ୍ତୁଷ୍ଟ କରିବେ ବୋଲି ଲର୍ଡ ସିଂହ କୋଠିବାଲା ସାହେବମାନଙ୍କ ପକ୍ଷନେଇ ଲୋକଙ୍କ ବିରୁଦ୍ଧରେ କେତେଗୁଡ଼ାଏ ହୁକୁମ ପ୍ରଥମେ ପ୍ରଥମେ ଜାରିକଲେ । ଅସହଯୋଗ ବିରୁଦ୍ଧରେ ମଧ୍ୟ କେତେଥର କେତେ ହୁକୁମ ବାହାରିଲା । ମାତ୍ର "ବାଦଗ୍ରସ୍ତଣୀ ସମ୍ବନ୍ଧ, ଯସ୍ମିଂ ଯସ୍ମିଂ ବସ୍ତୁଂ ବସ୍ତୁଂ" । ଲର୍ଡ ସିଂହଙ୍କ ଇସ୍ତଫାଦ୍ୱାରା ସିମଲାରେ ଏବଂ ବିଲାତରେ ଗୋରା କର୍ତ୍ତୃପକ୍ଷମାନେ ପ୍ରାଦେଶିକ ଲାଟପଦ ଲାଗି ଦେଶୀଲୋକଙ୍କ ଅପାରଗତା ଅର୍ଥ କରିବା ଆଶ୍ଚର୍ଯ୍ୟ ନୁହେଁ । ଯଥାର୍ଥରେ ବର୍ତ୍ତମାନ ଶାସନତନ୍ତ୍ର ଯେତେଦିନଯାଏ ଥିବ ସେଥିରେ ଦେଶୀଲୋକଙ୍କର କାର୍ଯ୍ୟ କରିବା ଅସମ୍ଭବ ଏବଂ ଉଚିତ ମଧ୍ୟ ନୁହେଁ । ଲର୍ଡ ସିଂହଙ୍କର ଏହା ଆଗରୁ ବୁଝିବା ଉଚିତ ଥିଲା । ଏହି ଶାସନତନ୍ତ୍ରକୁ ବଦଳାଇବା ନିମନ୍ତେ ଲର୍ଡ ସିଂହ ମହାଶୟ ମୂଳରୁ ନିଜ ଶକ୍ତି ସାମର୍ଥ୍ୟ ଲଗାଇ ଥିଲେ ଦେଶର ଅଶେଷ କଲ୍ୟାଣ କରିଥାନ୍ତେ, ଏବଂ ଜାତୀୟ ଇତିହାସରେ ଅକ୍ଷୟକୀର୍ତ୍ତି ଲଭିଥାନ୍ତେ । ଏବେ ଯେତେଦୂର ଜଣାଯାଏ ତାଙ୍କ ଯାଗାରେ କେହି ଭାରତୀୟ ରହୁ ନାହାନ୍ତି । ନରହିଲେ ରକ୍ଷା । ଯେଉଁ ଭାରତବାସୀର ଆତ୍ମସମ୍ମାନ ଥିବ ସେ କଦାପି ଲାଳାୟିତ ହେବ ନାହିଁ । ଭାରତବାସୀଙ୍କି ଶାସନସଂସ୍କାର ଫଳରେ ଲାଟପଦ ଦିଆଯାଇଛି ବୋଲି ସରକାର ଓ ଅସହଯୋଗ ବିରୋଧୀଦଳ ଯେ ବଡ଼ାଇ କରୁଥିଲେ ଏବେ ସେମାନେ କଣ କହୁଛନ୍ତି ?

× × ×

ମାନ୍ୟବର ମନ୍ତ୍ରୀ ମଧୁବାବୁଙ୍କର ବୋଧହୁଏ ଏହି କେତେଦିନ ମଧ୍ୟରେ ମନ ମାନି ଗଲଣି । ବିହାର ଓଡ଼ିଶାର ସ୍ୱାସ୍ଥ୍ୟରକ୍ଷା ନିମନ୍ତେ କେତେଦିନ ତଳେ ପାଟନାରେ ଏକ

ସଭା ହୋଇଥିଲା । ସେଥିରେ ସେ କହିଥିଲେ କି ସ୍ୱାସ୍ଥ୍ୟର ଉନ୍ନତି ନିମନ୍ତେ ସରକାର ତାଙ୍କ ହାତେ ଯଥେଷ୍ଟ ଟଙ୍କା ନ ଦେଲେ ସେ ଚାକିରିରୁ ଇସ୍ତଫା ଦେବେ । ସେ ଏ ଧମକ କାହାକୁ ଦେଉଛନ୍ତି ? ସରକାର ବୋଇଲେ କିଏ ? ସେ କିଅଣ ସେହି ସରକାରର ଅଙ୍ଗ ବିଶେଷ ନୁହନ୍ତି ? ଶାସନସଂସ୍କାର ବିଧାନ ଅନୁସାରେ ମନ୍ତ୍ରୀମାନଙ୍କଠାରେ ନ୍ୟସ୍ତଥିବା ବିଭାଗରେ ବଜେଟରେ କନିଷ୍ଠ ଅଂଶ, ଏହା କିଏ ନ ଜାଣେ ? ମଧୁବାବୁ କି ଆଶା କରନ୍ତି, ପୋଲିସ ବିଭାଗରୁ କଟାହୋଇ ତାଙ୍କୁ ସ୍ୱାସ୍ଥ୍ୟ ଲାଗି ଦିଆଯିବ ନା ପ୍ରଦେଶର ସ୍ୱାସ୍ଥ୍ୟ ଉନ୍ନତି ଲାଗି ସିଭିଲିଆନମାନଙ୍କ ଦରମା କମିବ ? ମନ୍ତ୍ରୀମାନଙ୍କୁ ଯେଉଁ ଅର୍ଥର ଅଭାବରେ କାମ କରିବାକୁ ହେବ ଏବଂ ଦରକାର ହେଲେ ଶିକ୍ଷା ଓ ସ୍ୱାସ୍ଥ୍ୟର ଉନ୍ନତି ନିମନ୍ତେ ନୂତନ ଟିକସ ବସାଇବାକୁ ପଡ଼ିବ ଏ କଥାଟି ଶାସନସଂସ୍କାର ବିଧାନର ଫଳ [illegible] ଆଗେ ସମସ୍ତଙ୍କୁ ଦେଖା ପଡ଼ିଥିଲା । ମଧୁବାବୁ ଏହା ଦେଖି ଜାଣି ଶୁଣି ମନ୍ତ୍ରୀ ପଦ ନେଇଥିବା ସ୍ଥଳେ ତାଙ୍କର ଏ ଧମକର ଅର୍ଥ କିଣ ? ଏଥିରେ ହୁଏତ ସରକାରୀ ଓ ସାଧାରଣ ଲୋକ କେହି କେହି କହିବେ "ଗର୍ଜିଲା ମେଘ ବରଷେ ନାହିଁ କି ଘୁମୁରିଲା ବାଘ ଖାଏ ନାହିଁ ?"

× × ×

ପୂର୍ବ-ଆଫ୍ରିକାରେ ଗୋରାମାନେ ଭାରତୀୟମାନଙ୍କ ଉପରେ ଅତ୍ୟାଚାର କରୁଥିବାରୁ ସେ ବିଷୟର ତଦନ୍ତ କରି ସମାଧାନ କରିବା ଆଶାରେ ଆଣ୍ଡ୍ରୁଜ୍ ସାହେବ ଯାଇଥିଲେ । କେହି କେହି ଗୋରା ଆଣ୍ଡ୍ରୁଜଙ୍କ ଉପରେ ମଧ୍ୟ ଅତ୍ୟାଚାର କଲେଣି । ସେ ରେଲରେ ଯାଉଥିବାବେଳେ ରାତି ଅଧରେ ଜଣେ ଗୋରା ତାଙ୍କ ଦାଢ଼ି ଝିଙ୍କି ଉଠାଇ ଥିଲା ଏବଂ ତାଙ୍କୁ ବହୁତ ଅପମାନ ଦେଇଥିଲା । ଆଣ୍ଡ୍ରୁଜ ସାହେବ ଏବେ ଡାକ୍ତରଖାନାରେ ପଡ଼ିଛନ୍ତି । ଆଣ୍ଡ୍ରୁଜସାହେବ ନିଜେ ଜଣେ ବିଲାତି ଗୋରା ପାଦ୍ରି । ଲୋକ ସେବା ନିମନ୍ତେ ନିଜ ଜୀବନ ଉତ୍ସର୍ଗ କରିଛନ୍ତି । ପୂର୍ବ-ଆଫ୍ରିକାର ଗୋରାମାନଙ୍କର ନିଜ ଜାତି ଲୋକପ୍ରତି ଯେବେ ଏପରି ବ୍ୟବହାର ଭାରତୀୟଙ୍କ ପ୍ରତି ସେମାନେ କିଣ କରୁ ନ ଥିବେ ? ମାତ୍ର ଭାରତ ଲୋକେ ସେଠାରେ ଭାରି ଟାଣଧରି ବସିଛନ୍ତି । ସେମାନେ ଆପଣା ମଧ୍ୟରେ ସଭାସମିତି କରି ନିଜର ଦାବୀ ଦୃଢ଼ଭାବରେ ସାବ୍ୟସ୍ତ କରୁଛନ୍ତି । ବର୍ତ୍ତମାନ ଭାରତୀୟମାନେ ସ୍ୱରାଜ୍ୟ ଭାବରେ ଯେପରି ମାତିଛନ୍ତି ସେଥିରେ ସେମାନେ ଆଉ କୌଣସିଠାରେ ଅନ୍ୟାୟ ଅତ୍ୟାଚାର ସହି କଦାପି ମୁଣ୍ଡ ନୁଆଁଇବେ ନାହିଁ ।

('ସମାଜ', ତା ୨୭ । ୧୧ । ୨୦)

# ଗ୍ରୁନଂଙ୍କ ବିଦାୟ କ୍ରିୟା

ଏଥିମଧ୍ୟରେ ଓଡ଼ିଶା ବିଭାଗୀୟ କମିଶନର ପଦରେ ପରିବର୍ତ୍ତନ ଘଟିଅଛି । ଫଲି ସାହେବ ସେ ପଦରେ ଆସିଛନ୍ତି । ପୂର୍ବ କମିଶନର ଗ୍ରୁନଂ ସାହେବ ବିଭାଗୀୟ କମିଶନର ପଦରୁ ବିହାର ଓଡ଼ିଶାର ବୋର୍ଡ ମେମ୍ବର ପଦକୁ ଉଠିଛନ୍ତି । ଗ୍ରୁନଂ ସାହେବ ୫ବର୍ଷ ସରିକି ଓଡ଼ିଶାରେ ରହିଲେ । ଅନ୍ୟ କୌଣସି ସଂପର୍କରେ ଏ ପ୍ରଦେଶ ଲୋକେ ତାଙ୍କ ନାଁ ଜାଣିଥାନ୍ତେ କି ନାହିଁ କେଜାଣି ମାତ୍ର ପୁରୀ ଦୁର୍ଭିକ୍ଷ ପ୍ରସଙ୍ଗରେ ସେ ସମସ୍ତଙ୍କ ନିକଟରେ ସୁପରିଚିତ ହୋଇ ଯାଇଅଛନ୍ତି । "ପ୍ରାଣୀର ଭଲମନ୍ଦ ବାଣୀ, ମରଣକାଳେ ତାହା ଜାଣି ।" ଲୋକ ଚରିତ୍ରଦାନପାଇଁ ଛୁଞ୍ଚି ଗଲାବେଳେ ତାର ଗୁଣ ଦୋଷ ଜଣାପଡ଼େ । ଶୁଣାଯାଏ ଗ୍ରୁନଂ ସାହେବଙ୍କୁ ବିଦାୟ ଦେବାଲାଗି ତାଙ୍କର ଭକ୍ତ କଟକର ସରକାରୀ ବେସରକାରୀ କେତେଲୋକ ବଡ ସମାରୋହ କରିଥିଲେ । ବିଦାୟ ଭୋଜି ପାଇ ଓଡ଼ିଶା ଲୋକେ ତାଙ୍କ ଗୁଣ ବେଶ୍ ଗ୍ରହଣ କରିଛନ୍ତି । ଏହି ବିଶ୍ୱାସରେ ସାହେବ ମହୋଦୟ ବୋଧହୁଏ କଟକ ଛାଡ଼ିଥିବେ । ମାତ୍ର ତାଙ୍କର ଜାଣିବା ଉଚିତ ଯେ ଏ ବିଦାୟ ଉତ୍ସବରେ କିଛି ବିଶେଷତ୍ୱ ନାହିଁ । ଆଜିକାଲି ବଡ଼ ବଡ଼ ହାକିମମାନଙ୍କୁ ଏଭଳି ବିଦାୟ ଦେବା ଏକଶ୍ରେଣୀର ଲୋକଙ୍କ ପକ୍ଷେ ଗୋଟାଏ ବିଧି ପଡ଼ିଗଲାଣି । ଧୂଅମୂଳା ଅଧୂଆମୂଳା ସମସ୍ତେ ସମାନ । ଏ ଶ୍ରେଣୀର ହାକିମଭକ୍ତ ଲୋକେ ଏପରି କାର୍ଯ୍ୟକୁ ଅବଶ୍ୟ କର୍ତ୍ତବ୍ୟ ପିତୃଦାୟଭଳି ଠିଆରେଇଲେଣି । କେହି କେହି ମଧ୍ୟ ଏସବୁ କାର୍ଯ୍ୟକୁ ରାଜଭକ୍ତିର ଅଙ୍ଗୀଭୂତ ବୋଲି ମନେ କରନ୍ତି । ଅସଙ୍ଗତ କିଛି ନୁହେଁ । ଭାରତବାସୀ ପକ୍ଷରେ ଏହି ବଡ଼ ବଡ଼ କର୍ମଚାରୀମାନେ ତ ରାଜା । ବ୍ୟୁରୋକ୍ରାସୀ ବା ନୌକରସାହି ତ ଏ ଦେଶର ସର୍ବେସର୍ବା । ସେମାନଙ୍କ ମଧ୍ୟରେ ଭଲମନ୍ଦ ବିଚାର କରିବ କିଏ ? ସ୍ୱୟଂ ସମ୍ରାଟ, ତାଙ୍କ ତଳକୁ ବଡ଼ଲାଟ, ଛୋଟଲାଟ, କମିଶନର, କଲେକ୍ଟର ଏ ପାଞ୍ଚ ମୂର୍ତ୍ତି ଯାକ ଭାରତବାସୀ ପକ୍ଷରେ ଏକ ସମାନ । ହିନ୍ଦୁ ଶାସ୍ତ୍ରବିଧାନ ଅନୁସାରେ "ଭିନ୍ନାଭିନ୍ନ ନ କର୍ତ୍ତବ୍ୟଂ ପଞ୍ଚଦେବ ନମସ୍କୁତେ" କରୁଥିଲେ ଏକା ରାଜଭକ୍ତି ଠିକ୍ ରହିଲା ବୋଲି କୁହାଯିବ । ପୁଣି ପଞ୍ଚଦେବତାଙ୍କଠାରୁ ଶାଖାପ୍ରଶାଖା ଭାବରେ ସୃଷ୍ଟି ହୋଇଥିବା ତେତିଶକୋଟି ଦେବ ଦେବୀ କାହାରିକି ଅବମାନନା ନ କରି ସମସ୍ତ ବିଶେଷରେ ପୂଜା କରିବା ଉଚିତ । ଏପରିକି କାଞ୍ଜିଅଁଲା ବନ ପିତାଶୁଖିଆ ବାଅଁଙ୍କୁ ମଧ୍ୟ ପୂଜିବା ଉଚିତ । ସେହିପରି ଇଂରେଜ ଶାସନରେ ପଞ୍ଚଦେବତାଙ୍କ ସମ୍ପର୍କୀୟ ସହସ୍ର ସହସ୍ର ଉପଦେବତା ଷ୍ଟେଟ ସେକ୍ରେଟାରୀଙ୍କଠାରୁ ଗାଁ ଚଉକିଦାର ପର୍ଯ୍ୟନ୍ତ

ପ୍ରତ୍ୟେକଙ୍କୁ ସମସ୍ତ ବିଶେଷରେ ସବିଧିରେ ଅର୍ଚ୍ଚନା ନ କଲେ ରାଜଭକ୍ତ ଧର୍ମରେ ଅବଶ୍ୟ ହାନି ହେବ । ଯାହାହେଉ କଟକର ରାଜଭକ୍ତମାନେ ଏ ମାସ ୨ ତାରିଖ କନିକା ରାଜବାଟିର ପୂର୍ଣ୍ଣାମଣ୍ଡପରେ ଇଂରେଜ ଶାସନ ପଦ୍ଧତିର ଚତୁର୍ଥ ଦେବତା ବିଶେଷଙ୍କୁ "ଯାନ୍ତୁ ଦେବଗଣାଃ ସର୍ବେ ପୂଜାମାଦାୟ ପାର୍ଥିବାଂ" କହି ବିଦାୟ ସେଙ୍କର ସ୍ୱସ୍ତିବାଚନ କରି ନିଜର କର୍ତ୍ତବ୍ୟ ପାଳିଛନ୍ତି । ଗ୍ରୁନିଂ ସାହେବ ମହୋଦୟ ଗତମାସ ୨୯ କି ୩୦ ତାରିଖରେ କମିଶନର ପଦ ଛାଡ଼ିଲେ ସୁଦ୍ଧା ବାର୍ଟନ୍ ତେରଦିନ କାଳ କଟକରେ ରହିଥିଲେ । ଯଥାବିଧିରେ ବିଦାୟ କ୍ରିୟାଟି ସମ୍ପନ୍ନ ହୋଇଯିବା ପରେ ବୋର୍ଡ଼ ମେମ୍ବର ପଦ ନୂତନ ଘଟରେ ପ୍ରବେଶ କରିବାକୁ ଚାଲି ଆସିଲେ । ଆମ ଦେଶର ସାଧାରଣ ଲୋକଙ୍କର ବିଶ୍ୱାସ ଯେ କୌଣସି ମରିଗଲେ ତାଙ୍କ ଆତ୍ମା ହଠାତ୍ ଅନ୍ୟ ଶରୀରରେ ଯାଇ ପଶେ ନାହିଁ । ଏହା ପ୍ରେତ ହୋଇ କେତେଦିନ ଗାଁରେ ଘରେ ବାହାରେ ଗଛପତ୍ରରେ ଉଡ଼ି ବୁଲୁଥାଏ । ପୁଣି ଶୁଦ୍ଧି କ୍ରିୟା ଯଥାବିଧିରେ ହୋଇଗଲେ ଦ୍ୱାଦଶାହ ଶ୍ରାଦ୍ଧପରେ ଅନ୍ୟ ଘଟରେ ଯାଇ ପ୍ରବେଶ କରେ । ଗ୍ରୁନିଂ ସାହେବଙ୍କ ବିଦାୟ କ୍ରିୟା ସମ୍ପର୍କରେ ଅନେକଙ୍କ ମନକୁ ଏ କଥାଟା ଆସିବା ସ୍ୱାଭାବିକ । ପୁରୀରେ ଔଷଧିର ଖାଦ୍ୟ ଚଢ଼ାଇଥିଆ ଦୁର୍ଭିକ୍ଷ ଅଞ୍ଚଳର ଲୋକେ ଗ୍ରୁନିଂ ସାହେବଙ୍କ [illegible] ପ୍ରାନ୍ତରେ ଶାନ୍ତି କାମନା ବୋଧହୁଏ କହିବେ —

"ଅପଃ ଶାନ୍ତିଃ ପୃଥିବୀ ଶାନ୍ତିଃ ବିନଷ୍ଟତଯ୍ୟଃ ଶାନ୍ତିଃ...
ଶାନ୍ତିରେବ ଶାନ୍ତିଃ [illegible]" ।

(ଧମାକା, ଭା ୨ । ୧ । ୨୧)

# ଓଡ଼ିଶାର ଐତିହାସିକ ବିଚାର

( ମହାତ୍ମା ଗାନ୍ଧୀ ତାଙ୍କ ସମ୍ପାଦିତ 'ୟଙ୍ଗ ଇଣ୍ଡିଆ' ନାମକ ଇଂରାଜୀ ସାପ୍ତାହିକରେ ସେତେବେଳେ ଭାରତରେ ଶାସନ କରୁଥିବା ଇଂରେଜ ସରକାର ବିରୋଧରେ ଦୁଇଟି ଲେଖା ଲେଖିଥିବାରୁ [illegible] ବିରୋଧରେ ତଥା ପ୍ରକାଶକ ଶଙ୍କରଲାଲ ବ୍ୟାଙ୍କରଙ୍କ ବିରୋଧରେ ମକଦ୍ଦମା ରୁଜୁ ହୋଇଥିଲା । ତାହା ଏକ ଐତିହାସିକ ବିଚାର ଥିଲା । ପୃଥିବୀର ଇତିହାସରେ ଏଭଳି ବିଚାର ବିରଳ । ଗୋରା ବିଚାରପତି ବ୍ରୁମଫିଲ୍ଡ ସାହେବ ୧୯୨୨ ମାର୍ଚ୍ଚ ୧୮ ତାରିଖରେ ଏହି ମକଦ୍ଦମା ବିଚାର କରି ଅଭିଯୁକ୍ତ ଦ୍ୱୟଙ୍କୁ ୬ ବର୍ଷ କରି କାରାଦଣ୍ଡ ଆଦେଶ କରିଥିଲେ ।

ଠିକ୍ ସେହିଭଳି ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କର 'ସତ୍ୟ ହୋଇଥିଲେ ସାଙ୍ଘାତିକ' 'ସମାଜ' ଲେଖା ଉପରେ ବିଚାର ହୋଇଥିଲା । ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ବଡ଼ ଭାଇ ସୁରେଶଚନ୍ଦ୍ର ବୋଷ ବିଚାରକ ଥିଲେ । ସେ ଗୋପବନ୍ଧୁଙ୍କୁ ଖଲାସ କରିଦେଇ ନିଜେ ଚାକିରି ଛାଡ଼ି ଦେଇଥିଲେ । ଏହା ମଧ୍ୟ ଓଡ଼ିଶାରେ ଏକ ଐତିହାସିକ ବିଚାର । 'ସମାଜ'ରେ ପ୍ରକାଶିତ ସେଥିର ବିବରଣୀ ଓ ଗୋପବନ୍ଧୁଙ୍କର ଜବାବ ଏଠାରେ ଦିଆଗଲା )

ଅକ୍ଟୋବର ୨୮ ତାରିଖ-ସମାଜ ସମ୍ପର୍କରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ବିରୁଦ୍ଧରେ ୫୦୦ ଦଫାରେ ଯେ ମକଦ୍ଦମା ହୋଇଥିଲା ତାହା ଖୋର୍ଦ୍ଧାର ଦ୍ୱିତୀୟ ଅଫିସର ବାବୁ ସୁରେଶଚନ୍ଦ୍ର ବୋଷଙ୍କ ମହକୁମାରେ ବିଚାର କରା ହୋଇଥିଲା । ଗୋପବନ୍ଧୁ ବାବୁ କୋର୍ଟରେ ହାଜର ହେଲାପରେ ପ୍ରାୟ ୧୨ଟା ବେଳେ ମୋକଦ୍ଦମା ଆରମ୍ଭ ହେଲା । ପ୍ରାୟ ୩ ହଜାର ଲୋକ ପୁରୀ ଜିଲାର ଚାରିଆଡ଼ୁ ଆସି ଜମା ହୋଇଥିଲେ । ମୁଦ୍ଦେଇମାନଙ୍କ ତରଫରୁ ପୁରୀରୁ କୋର୍ଟ ଇନ୍‌ସପେକ୍ଟର ଯାଇ ମୋକଦ୍ଦମା ଚଳାଇଥିଲେ । ଗୋପବନ୍ଧୁ ବାବୁ ଅସହଯୋଗ ଧର୍ମ ପାଳନ କରି ମୁଦ୍ଦେଇ ତରଫର ସାକ୍ଷୀମାନଙ୍କୁ ଜେରା କରି ନ ଥିଲେ । ବାରଜଣ ପୋଲିସ କର୍ମଚାରୀ ସେଦିନ ସାକ୍ଷୀ ଦେଲେ । ସମସ୍ତେ ଏକ କଥା କହୁଥାନ୍ତି । ଆମ୍ଭେ ସମାଜରୁ ଏ ଖବର ଶୁଣିଛୁ, ପୂର୍ବରୁ ଶୁଣିନାହୁଁ ।

ଏ ସମ୍ବାଦ ପଢ଼ି ବେଗୁନିଆର କନେଷ୍ଟବଲମାନେ ଖରାପ ଲୋକ ବୋଲି ଆମ୍ଭେ ବିଚାରିଲୁ । ପୁରୀର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଗାଇସ ସାହେବ ଜଣେ ପ୍ରଧାନ ସାକ୍ଷୀ ଥିଲେ । ସେ ତାଙ୍କ ମୁହଁରେ ମାନିଲେ ଯେ ଏ ମୋକଦ୍ଦମା ଦାୟର ତାଙ୍କ ପ୍ରସ୍ତାବରେ କରାଯାଇଥିଲା । ୪ଟା ବେଳେ ମୋକଦ୍ଦମା ୯ ତାରିଖକୁ ତାରିଖ ହେଲା । ହାକିମ ଗୋପବନ୍ଧୁ ବାବୁଙ୍କୁ ଜାମିନ କିମ୍ବା ମୁଚୁଲିକାରେ ଯିବା ସକାଶେ କହିବାରୁ ଗୋପବନ୍ଧୁ ବାବୁ ମୁଁ ଅସହଯୋଗୀ, ଧର୍ମତଃ ଯାମିନ ଦେବି ନାହିଁ, ମୋ କଥାରେ ବିଶ୍ୱାସ ହୁଏତ ଛାଡ଼ି ଦିଅନ୍ତୁ ନ ହେଲେ ମୁଁ ହାଜତ ଯିବାକୁ ତିଆର ଅଛି ।" ହାକିମ କଥାରେ ବିଶ୍ୱାସ କରି ଛାଡ଼ିବା ସରକାର ଘର ଆଇନରେ ଅଛି କି ନାହିଁ ଦେଖି ଘଣ୍ଟାକ ପରେ ଜବାବ ଦେବେ ବୋଲି କହିଲେ । ଗୋପବନ୍ଧୁ ବାବୁ ମୁକ୍ତ୍ୟାର ଖାନାରେ ଆସି ବସିଛନ୍ତି, ଏହି ଅବସରରେ ପୁରୀର ଓକିଲ ବାବୁ ବନମାଳୀ ଦାସ ତାଙ୍କ ଅଜ୍ଞାତରେ ଜାମିନ ହୋଇ ଗୋପବନ୍ଧୁ ବାବୁଙ୍କୁ ଖଲାସ କରି ଆଣିଲେ । ଗୋପବନ୍ଧୁ ବାବୁ ଜାମିନରେ ନାରାଜ ହୋଇ ହାକିମଙ୍କ ପାଖକୁ ନିମ୍ନଲିଖିତ ରୂପେ ପତ୍ର ଲେଖି ହାଜତ ଯିବାକୁ ତିଆରି ହେଲେ । "ମହାଶୟ, ମୋତେ ମୋ କଥାରେ ବିଶ୍ୱାସ କରି ଛାଡ଼ିବେ କି ନା ଏହା ଜାଣିବା କାରଣ ଆପଣଙ୍କ ଉତ୍ତର ପ୍ରତୀକ୍ଷାରେ ମୁଁ ମୁକ୍ତ୍ୟାର ଖାନାରେ ବସିଛି । ଶୁଣିଲି ଇତି ମଧ୍ୟରେ ପୁରୀର ଓକିଲ ବାବୁ ବନମାଳୀ ଦାସ ମୋ ସକାଶେ ଜାମିନ ହୋଇ ମୋତେ ଖଲାସ କରି ଆଣିଛନ୍ତି । ଯଦି ବନମାଳୀ ବାବୁ ବା ଅନ୍ୟ କେହି ମୋତେ ଏହି ଅନୁଗ୍ରହ ଦେଖାଇଥାନ୍ତି ଏହା ମୋ ପକ୍ଷରେ କେବେହେଁ ଅନୁଗ୍ରହ ନୁହେଁ ବରଂ ଅପମାନର କଥା । ଆପଣ ଯଦି ଏହି ଜାମିନ ଉପରେ ମୋତେ ଛାଡ଼ି ଦେଇଥାଆନ୍ତି ମୁଁ ଆପଣଙ୍କୁ ଜଣାଉଅଛି ଯେ ଏହା ମୋହର ସମ୍ପୂର୍ଣ୍ଣ ଇଚ୍ଛାବିରୁଦ୍ଧ । ଅସହଯୋଗୀ ହୋଇ ଜାମିନରେ ଖଲାସ ହେବା ମୋ ପକ୍ଷରେ ପାପ । ତେଣୁ ଏ ଜାମିନ ସକାଶେ ମୁଁ ଘୋର ଆପତ୍ତି କରୁଛି ଓ ହାଜତ ସକାଶେ ତିଆର ଅଛି ।"

ମେଜେଷ୍ଟ୍ରର ଏ ପତ୍ର ପାଇ ଜାମିନ ରଦ୍ଦ କଲେ । ଗୋପବନ୍ଧୁ ବାବୁ ହସି ହସି ହାଜତକୁ ଗଲେ । ପ୍ରାୟ ୨ ହଜାର ଲୋକ ସଙ୍କୀର୍ତ୍ତନ କରି ତାଙ୍କୁ ଜେଲଖାନା ଦୁଆରେ ଛାଡ଼ି ଦେଇ ଆସିଲେ ।

## ୨ୟ ଦିନ ନଭେମ୍ବର ୯ ତାରିଖ

ଏ ଦିନ ୩ଟା ବେଳକୁ ମୋକଦ୍ଦମା ପଡ଼ିଲା । ପ୍ରାୟ ୭।୮ ହଜାର ଲୋକ ଜମା ହୋଇଥିଲେ । ଗୋପବନ୍ଧୁ ବାବୁ ଜେଲଖାନାରୁ କଚେରୀକୁ ଆସିଲାବେଳେ ଜେଲ ଫାଟକ-

ଠାରୁ ଲୋକମାନେ ପଞ୍ଚୁଆଟିରେ ଘେନ ଆସିଲେ । ଗୁରଆଡ଼େ ପୁଷ୍ପବୃଷ୍ଟି ହେଉଥିଲା ଓ ସମସ୍ତଙ୍କ ମୁହଁରେ ମାହାତ୍ମାଗାନ୍ଧୀ କ ଜୟ ଓ ହରିବୋଲ ଶବ୍ଦ ଶୁଣାଯାଉଥିଲା । ଗୋପବନ୍ଧୁ ବାବୁ ଆଦାଲତ ଘରେ ବସିଲାପରେ ଦେଖାଗଲା ଯେ ସେ ଘର ଓ କଚେରୀ ଅଗଣା ଜନପୂର୍ଣ୍ଣ । ସମସ୍ତେ ଗୋପବନ୍ଧୁ ବାବୁଙ୍କୁ ଦେଖିବାକୁ ଓ ମୋକଦ୍ଦମା ଖବର ଶୁଣିବାକୁ ବ୍ୟାକୁଳ । ଗୋପବନ୍ଧୁ ବାବୁ ହାକିମଙ୍କ ପାଖେ ପ୍ରସ୍ତାବ କଲେ କି ଗୋଲମାଲ ବନ୍ଦ କରିବାପାଇଁ ଓ ଲୋକମାନଙ୍କୁ ଶାନ୍ତ କରିବାପାଇଁ କଚେରୀ ପଡ଼ିଆରେ ଗଛମୂଳେ ବସୁ । ହାକିମ ଏ ପ୍ରସ୍ତାବ ମଞ୍ଜୁର କଲେ ଓ ଅଦାଲତ [illegible] ରୀ ଅଗଣା ଗଛମୂଳେ ବସିଲା ।

ଗୋଲମାଲ ହେବା ଦେଖି ଗୋପବନ୍ଧୁ ବାବୁ ବେଞ୍ଚ ଉପରେ ଠିଆହୋଇ ଲୋକମାନଙ୍କୁ କହିଲେ "ଆପଣମାନେ ଶାନ୍ତିପୂର୍ଣ୍ଣ ଅସହଯୋଗ ଦୀକ୍ଷା ଗ୍ରହଣ କରିଛନ୍ତି । ଯଦି ଗୋଲମାଲ ବନ୍ଦ ନ କରନ୍ତି ଓ ସ୍ଥିର ଭାବରେ ନ ବସନ୍ତି ତେବେ ନିନ୍ଦା ହେବ ।" ଗୁହ୍ମ ଗୁହ୍ମ ଗୁରଆଡ଼େ ନୀରବ ଓ ନିଶ୍ଚଳ ହୋଇଗଲା । ଏ ଦିନ ୧୦ ଜଣ ଲୋକ ପୋଲିସ ପକ୍ଷରୁ ସୁଦ୍ଧା ଗୁଜୁରିଲେ । ସେଥିରୁ ୩ ଜଣ ପୁଲିସ ଗୁକରିଆ, ତାଙ୍କ କଥା ଗୁଡ଼ । ବାକୀ ୭ ଜଣଙ୍କ ମଧ୍ୟରୁ ଜଣେ ବେଗୁନିଆର ସରବରାକାର, ଜଣେ ସେଠା ଇଉନିଅନ ପ୍ରେସିଡ଼େଣ୍ଟ, ଜଣେ କଟକ ସରକାରୀ କର୍ମଗୁରୀ ବାରିକ ମିସ୍ତ୍ରୀ ବିଭାଗର ଆକାଉଣ୍ଟାଣ୍ଟ । ଅବଶିଷ୍ଟ ଗୁରିଜଣ ବେଗୁନିଆର ସାଧାରଣ ଲୋକ । ବେଗୁନିଆର ସାକ୍ଷୀ ୬ ଜଣରୁ ପ୍ରତ୍ୟେକଙ୍କୁ କୋର୍ଟବାବୁ ପଗ୍ଚରିଲେ, "ଆପଣ ବେଗୁନିଆରେ ମାଇକିନିଆ ମରିବା ଖବର ସମାଜରୁ ଶୁଣିଛନ୍ତି ? ପ୍ରାୟ ସମସ୍ତେ ଉତ୍ତରକଲେ ''ନା' ୮।୧୦ ଦିନ ପୂର୍ବରୁ ଆମ୍ଭେ ଏ ଖବର ବେଗୁନିଆ ହାଟରୁ ଶୁଣିଥିଲୁ । ସମାଜ ଖବର କାଗଜ ସବୁବେଳେ ସରକାରୀ କର୍ମଗୁରୀଙ୍କ ବିରୁଦ୍ଧରେ ଲେଖେ, ଏହା ପ୍ରମାଣ କରିବା କାରଣ କୋର୍ଟବାବୁ ବାରିକ ମିସ୍ତ୍ରୀ ବିଭାଗର ସରକାରୀ କର୍ମଗୁରୀଙ୍କୁ ପଗ୍ଚରିଲେ, "ସମାଜ କାଗଜ ସବୁବେଳେ ସରକାରୀ କର୍ମଗୁରୀଙ୍କ ବିରୁଦ୍ଧେ ଲେଖେ ନାହିଁ କି ?" ସାକ୍ଷୀ ଉତ୍ତର ଦେଲେ "ସମାଜରେ ସରକାରୀ କର୍ମଗୁରୀଙ୍କ ବିଷୟରେ ସତ୍ୟ ଓ ଉପଯୁକ୍ତ ସମ୍ବାଦ ଓ ଟିପ୍ପଣୀ ପ୍ରକାଶ ପାଏ । ତାହା ସପକ୍ଷ ଓ ବିପକ୍ଷ ଉଭୟ ହୋଇପାରେ ।" ଗୋପବନ୍ଧୁ ବାବୁ ଏ ପ୍ରକାର ପ୍ରଶ୍ନର ବର୍ତ୍ତମାନ ମୋକଦ୍ଦମା ସହିତ କୌଣସି ସମ୍ବନ୍ଧ ନାହିଁ ବୋଲି ପ୍ରତିବାଦ କରିଥିଲେ । ମାତ୍ର ହାକିମ ଏହା ଗ୍ରହଣ କଲେନାହିଁ । ଏ ମୋକଦ୍ଦମାର ପୂର୍ବଦିନଠାରୁ ପୁରୀର ପୋଲିସ ସାହେବ ମିଷ୍ଟର ଗାଇସ ଖୋର୍ଦ୍ଧାରେ ଆସି ବସି ରହିଥିଲେ । ଏ ମୋକଦ୍ଦମାରେ ତାଙ୍କ ଉଦ୍ୟମ ସବୁଠାରୁ ବେଶୀ । ମୋକଦ୍ଦମା ୧୭ ତାରିଖକୁ ପୁଣି ତାରିଖ ହେଲା । ଏ ଦିନ ମଧ୍ୟ ଲୋକେ ଗୋପବନ୍ଧୁ

ବାବୁଙ୍କୁ ପଚୁଆରରେ ନେଇ ଫୁଲମାଳ ଦେଇ ଜେଲଖାନାରେ ଗୁଡ଼ି ଦେଇ ଆସିଲେ । ପରେ ଏକ ସଭା ହେଲା । ପଣ୍ଡିତ ନୀଳକଣ୍ଠ ଦାସ ଅସହଯୋଗ ବିଷୟରେ ବୁଝାଇଥିଲେ । ସେଦିନ ଗାଇସ ସାହେବ ପ୍ରଚାରକ ଅନନ୍ତ ମିଶ୍ରଙ୍କ ଉପରେ ଖୋର୍ଦ୍ଧା ସବଡ଼ିଭିଜନ ପାଇଁ ୧୪୪ ଧାରା 'ମୁଖବନ୍ଦ ନୋଟିସ' ଦୁଇ ମାସ ସକାଶେ ଜାରି କଲେ ।

## ୩ୟ ଦିନ ୧୭ ନଭେମ୍ବର

ଦିନ ୨ଟା ବେଳେ ମକଦ୍ଦମା ... ର ଆରମ୍ଭ ହେଲା । ଆରଥର ପରି ପଢ଼ିଆରେ ଆଉ କୋର୍ଟ ବସିଲା ନାହିଁ । ଏଥର ସରକାରୀ ଓକିଲ ବାବୁ ରାଧାଶ୍ୟାମ ମହାନ୍ତି ପୁରୀରୁ ଆସି ମୋକଦ୍ଦମା ଚଳାଇଲେ । ଫରିୟାଦି ପକ୍ଷରୁ ୨ ଜଣ ସାକ୍ଷୀ ହାଜର ହେଲେ ... ଜିଲାସ୍କୁଲ ଶିକ୍ଷକ ମାଗୁଣି ଦାସେ, ଅନ୍ୟ ଜଣକ ଜଣେ ଡ଼ିସ୍ମିସ୍ ପୋଲିସ କର୍ମଚାରୀ । ଶେଷ ସାକ୍ଷୀ ଜଣକ କହିଲେ ଯେ ସେ ବେଗୁନିଆ ଖବର ପ୍ରଥମେ ସମାଜରୁ ପଢ଼ିଥିଲେ । ଗୋପବନ୍ଧୁ ବାବୁଙ୍କ ପ୍ରସ୍ତାବମତେ ହାକିମ ତାଙ୍କୁ ଟିକିଏ ସମାଜଟା ପଢ଼ିବାପାଇଁ କହିଲେ । ସାକ୍ଷୀ ଅକ୍ଷର ଚିହ୍ନି ଚିହ୍ନି ୫।୭ ମିନିଟ ବିତିଗଲା । ତେଣିକି ଆଉ ପଢ଼ିବା ଲୋଡ଼ା ନାହିଁ । ପାଠକମାନେ ଅନୁମାନ କରିବେ, ଏ କିପରି ସମାଜରୁ ଖବରଟା ଜାଣିଥିଲେ । ହାକିମ ଗୋପବନ୍ଧୁ ବାବୁଙ୍କୁ ତାଙ୍କ ଜବାବ ମାଗିଲେ । ସେ ତାଙ୍କର ଲିଖିତ ଜବାବ ଦେଲାପରେ ତାଙ୍କୁ ୫୦୦ ଦଫାରେ ଚାର୍ଜ କରାଗଲା । ସରକାରୀ ଓକିଲ ରାଧାଶ୍ୟାମ ବାବୁ ଗୋପବନ୍ଧୁ ବାବୁଙ୍କୁ ଦୋଷୀ ସାବ୍ୟସ୍ତ କରି ଏକ ବକ୍ତୃତା ଦେଲେ । ହାକିମ ଗୋପବନ୍ଧୁ ବାବୁଙ୍କୁ କିଛି କହିବାର ଅଛି କି ନା ପଚାରିବାରେ ସେ ନାସ୍ତି କରିବାରୁ ୨୧ ତାରିଖରେ ରାଏ ଦେବେ ବୋଲି ହୁକୁମ କଲେ । ଏ ଦିନ ଲୋକସଂଖ୍ୟା ପ୍ରାୟ ୧୦ ହଜାର ହେବ । ଅନ୍ୟଥର ପରି ଜୟଧ୍ୱନି ଓ ପଚୁଆରରେ ଗୋପବନ୍ଧୁ ବାବୁ ଜେଲଖାନାରେ ପହଞ୍ଚିଲେ । ଗୋଟିଏ ସଭା ମଧ୍ୟ ହୋଇଥିଲା । ପଣ୍ଡିତ ନୀଳକଣ୍ଠ ଦାସ ଓ ଯଦୁମଣି ମଙ୍ଗରାଜ ଅସହଯୋଗ ବିଷୟରେ ଲୋକଙ୍କୁ ଅନେକ କଥା ବୁଝାଇଥିଲେ ।

## ୪ର୍ଥ ଦିନ ନଭେମ୍ବର ୨୧

ଏ ଦିନ ପ୍ରାୟ ୧୨ଟା ବେଳୁ ୪ଟା ମଧ୍ୟରେ ଖୋର୍ଦ୍ଧା, ପୁରୀ, କଟକ ଚାରିଆଡ଼ୁ ପ୍ରାୟ ୮ ହଜାର ସରିକି ଲୋକ ଆସିଥିଲେ । ଗୋପବନ୍ଧୁ ବାବୁ ୪ଟା ବେଳେ ଜେଲ୍-ଖାନାରୁ ବାହାରିଲା ବେଳେ ଲୋକେ ତାଙ୍କ ବେକରେ ଫୁଲମାଳ ଦେଇ ସଙ୍କୀର୍ତ୍ତନ ଓ

ଜୟଧ୍ୱନି କରି ପଟୁଆରରେ ଆଣିଲେ । ଲୋକେ କଚେରି ଅଗଣାରେ ଖୁନ୍ଦ ହୋଇଯିବାରୁ ଗୋପବନ୍ଧୁ ବାବୁ ସେମାନଙ୍କୁ ଶୃଙ୍ଖଳ ଭାବରେ ବସି ରହିବାକୁ କହିଲେ । ସମସ୍ତେ ତାଙ୍କ କଥାମାନି ଧୀର ସ୍ଥିର ଭାବରେ ବସିଲାପରେ ସେ ସେମାନଙ୍କଠାରୁ ବିଦାୟ ନେଇ ହିନା କେତେ ଘଣ୍ଟାର ବନ୍ଦୀଘରେ ରହିବେ ବୋଲି ବିଚାର ଅଦାଲତ ଘରେ ପଶିଲେ । ହାକିମ ଗୋପବନ୍ଧୁ ବାବୁଙ୍କୁ ତାଙ୍କର ସମୁଦାୟ ଗ୍ରନ୍ଥ ପଢ଼ିବେ କି ନା ପଚାରିବାରୁ ସେ କହିଲେ "ଲୋଡ଼ାନାହିଁ, କେବଳ ଶେଷକଥାଟା କହି ଦିଅନ୍ତୁ ।" ବଡ଼ ଆଶ୍ଚର୍ଯ୍ୟର କଥା ହାକିମ ଗୋପବନ୍ଧୁ ବାବୁଙ୍କୁ ୫୦୦ ଦଣ୍ଡାଜ୍ଞା ଦୋଷୀ ନୁହନ୍ତି ବୋଲି କହି ଖଲାସ ଦେଲେ । ଗୋପବନ୍ଧୁ ବାବୁଙ୍କୁ ଲୋକେ ପଟୁଆରରେ ଅନ୍ୟଥର ପରି ପୁଷ୍ପବୃଷ୍ଟି ଓ ଜୟଧ୍ୱନି କରି କୋଳାହଳ ପାଖ ପଡ଼ିଆକୁ ଘେନିଗଲେ । ସେଠାରେ ଏକ ସଭା ହେଲା । ଗୋପବନ୍ଧୁ ବାବୁ ଜନସାଧାରଣଙ୍କ ସ୍ନେହ ଓ ଧୈର୍ଯ୍ୟ ସକାଶେ ଧନ୍ୟବାଦ ଦେଇଥିଲେ ସେ ଯେତେବେଳେ ଲୋକମାନଙ୍କର ତାଙ୍କପ୍ରତି ସ୍ନେହ ଓ ମମତା କଥା ବର୍ଣ୍ଣନା କଲେ ସମସ୍ତଙ୍କ ଆଖିରୁ ଧାର ଧାର ଲୁହ ଗଡ଼ି ପଡ଼ିଲା । ଗୋପବନ୍ଧୁ ବାବୁ ଲୋକ ସାଧାରଣଙ୍କୁ ଚରଖାରେ ସୂତାକାଟି ସ୍ୱରାଜ୍ୟ ଲାଭ କରିବା କାରଣ ବାରମ୍ବାର ଅନୁରୋଧ କରିଥିଲେ । ସଭା ଭାଙ୍ଗିଲା ପରେ ସେ ପଟୁଆରରେ ସହର ବୁଲିଥିଲେ ।

୨୨ ତାରିଖ ରାତ୍ରେ ପଣ୍ଡିତ ଗୋପବନ୍ଧୁ ଦାସ ଖୋର୍ଦ୍ଧାରୁ ବାହାରିଲେ । ଡେଲାଙ୍ଗ ଷ୍ଟେସନରେ ଅନେକ ଲୋକ ତାଙ୍କୁ ଫୁଲମାଳ ଦେଇ ଅଭ୍ୟର୍ଥନା କରିଥିଲେ । ପୁରୀ ଷ୍ଟେସନରେ ସେଠାର ବ୍ୟବସାୟୀ ଓ ଜନସାଧାରଣଙ୍କ ପକ୍ଷରୁ ପ୍ରାୟ ୫ ହଜାର ଲୋକ ତାଙ୍କୁ ଷ୍ଟେସନଠାରୁ ପଟୁଆର କରି ବଡ଼ଦେଉଳରେ ଜଗନ୍ନାଥଙ୍କୁ ଦର୍ଶନ କରାଇ ସମୁଦ୍ର-କୂଳକୁ ଘେନି ଯାଇଥିଲେ । ସମୁଦ୍ରକୂଳରେ ଏକ ବିରାଟ ସଭା ହେଲା ।

୨୩ ତାରିଖ ଦିନ ସକାଳେ ଗୋପବନ୍ଧୁ ବାବୁ ସତ୍ୟବାଦୀ ଫେରିଛନ୍ତି । ଏଠାରେ ମଧ୍ୟ ଜନସାଧାରଣ ସଂକୀର୍ତ୍ତନ ଓ ପଟୁଆରରେ ତାଙ୍କୁ ଅଭ୍ୟର୍ଥନା କରିଥିଲେ ।

———

# ( ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଜବାବ ଇଂରାଜୀରୁ ଅନୁବାଦ

୧ । ମୁଁ ସମାଜର ପ୍ରିଣ୍ଟର ଓ ପ୍ରକାଶକ । ବାଦୀପକ୍ଷ ଏହା ପ୍ରମାଣ କରିଛନ୍ତି । କିନ୍ତୁ ମୁଁ ସମାଜର ସମ୍ପାଦକ ବୋଲି ସେମାନେ ପ୍ରମାଣ କରି ନାହାନ୍ତି । ଯେକୌଣସି ପ୍ରକାରେ ଅଗଷ୍ଟ ୧୩ ତାରିଖ ସମାଜରେ ଏ ଘଟଣା ପ୍ରକାଶ ପାଇଲା ବେଳେ କିଏ ସମ୍ପାଦକ ଥିଲେ ମୁଦେଇ ତରଫରୁ ତାହା ପ୍ରମାଣ ହୋଇନାହିଁ । ମୁଁ ସମ୍ପାଦକଙ୍କ ନାମ ପ୍ରକାଶ କରିବା ଦରକାର ମନେ କରୁନାହିଁ ଓ ଏହା କରିବା ଅନୁଚିତ ବୋଲି ମୋର ମତ ।

୨ । ମୁଦେଇମାନେ ଏ ମକଦ୍ଦମା କରି ନ ପାରନ୍ତି । ସମାଜର ପ୍ରବନ୍ଧ ଦ୍ୱାରା ସେମାନଙ୍କର କୌଣସି କ୍ଷତି ହୋଇନାହିଁ । ସେମାନେ ସମସ୍ତେ କିମ୍ବା କେହି ଜଣେ ସମାଜ ଲେଖା ଘଟନାରେ ସଂପୃକ୍ତ ବୋଲି କୁହାଯାଇନାହିଁ । ଏ ଘଟଣା ବିଷୟରେ ସମାଜରେ ପ୍ରଥମେ ବାହାରିଥିବା ସମ୍ବାଦ ଯତ୍ନ ସହକାରେ ପଢ଼ିଲେ ଜଣାଯିବ ଯେ ମୁଦେଇମାନେ ବା ବେଗୁନିଆ ଥାନା ବା ଅନ୍ୟ କୌଣସି ଥାନା ବା ଗ୍ରାମର କୌଣସି କନେଷ୍ଟବଲ ଉଲ୍ଲିଖିତ ୨ ଜଣ କନେଷ୍ଟବଲ ବୋଲି କୁହାଯାଇ ନାହିଁ । ବାସ୍ତବିକ୍ ଏହା ଛପିବାକୁ ଦେବା ପୂର୍ବରୁ ମୁଁ ଯେତେବେଳେ ପାଣ୍ଡୁଲିପି ନିଜେ ପଢ଼ିଲି ବେଗୁନିଆ ଥାନା କନେଷ୍ଟବଲଙ୍କ କଥା ନିଶ୍ଚିତ ରୂପେ ମୋ ମନକୁ ଆସି ନ ଥିଲା । ମୁଁ ବିଚାରିଲି ଘଟଣା ଯଦି ସତ୍ୟ ହୋଇଥାଏ କନେଷ୍ଟବଲ ଦୁଇଜଣ ବେଗୁନିଆର ହୋଇ ପାରନ୍ତି ବା ଇଂରେଜଶାସିତ ଭାରତବର୍ଷ ମଧ୍ୟରୁ ଅନ୍ୟ କୌଣସି ସ୍ଥାନର ହୋଇ ପାରନ୍ତି ବା ଏପରିକି ନୟାଗଡ଼ ବା ନିକଟବର୍ତ୍ତୀ କୌଣସି ଗଡ଼ଜାତର ହୋଇ ପାରନ୍ତି, ସେମାନେ ଦଇଜଣ ଫରେଷ୍ଟଗାର୍ଡ ହୋଇପାରନ୍ତି ବା ଏପରି ବେଷଭୂଷାର ଦୁଇଜଣ ଲୋକ ହୋଇପାରନ୍ତି ଯାହାଙ୍କୁ କି ଗ୍ରାମ୍ୟ ଲୋକେ କନେଷ୍ଟବଲ ବୋଲି ବିଚାରିଥିବେ । ଏ ଅବସ୍ଥାରେ ମୁଦେଇମାନଙ୍କର ଦରଖାସ୍ତ ଅଗ୍ରାହ୍ୟ ହୋଇଥାନ୍ତା ଓ ଏ ମକଦ୍ଦମାର ବିଚାର ଏକାବେଳକେ ହୋଇପାରି ନ ଥାନ୍ତା ।

୩ । ସମାଜରେ ଉକ୍ତ ଘଟଣା ପ୍ରକାଶ କରିବାରେ ମୁଁ ଇଚ୍ଛା କରି ନ ଥିଲି ବା ଜାଣି ନ ଥିଲି ବା ଜାଣିବାର ଏପରି କିଛି କାରଣ ନଥିଲା ଯେ ମୁଁ ମୁଦେଇମାନଙ୍କର ବା ସେମାନଙ୍କ ମଧ୍ୟରୁ କୌଣସି ଜଣଙ୍କର ଏହାଦ୍ୱାରା ଅପବାଦ ରଚନା କରୁଛି ।

୪ । ମୁଦେଇମାନେ ଏହି କନେଷ୍ଟବଲ ବା ଅନ୍ୟ କେହି ହୁଅନ୍ତୁ ମୁଁ ସେମାନଙ୍କୁ ଜାଣି ନ ଥିଲି । ତେଣୁ ସେମାନଙ୍କ ବିରୁଦ୍ଧରେ ମୋର କୌଣସି ପ୍ରକାର ବିଦ୍ୱେଷ ଥାଇ ନ ପାରେ । କିନ୍ତୁ ବିଦ୍ୱେଷ ମାନହାନି ମୋକଦ୍ଦମାର ଗୋଟିଏ ପ୍ରଧାନ କାରଣ ।

୫ । ଉକ୍ତ ଘଟନା ମୁଁ ସତ୍ ଉଦ୍ଦେଶ୍ୟରେ ଓ ସାଧାରଣଙ୍କ ଭଲ ସକାଶେ ପ୍ରକାଶ କରିଥିଲି । ମୁଁ ବିଚାର କରିଥିଲି ଏ ଘଟଣା ପ୍ରକାଶ କରିବା ଦ୍ୱାରା ଖବରକାଗଜର ଯାହା କର୍ତ୍ତବ୍ୟ ତାହା କରୁଛି । ଖବରକାଗଜର ଉଦ୍ଦିଷ୍ଟ ଯେ ସେ ଦେଶର ଅନ୍ୟାୟ ଅତ୍ୟାଚାର ସବୁ ପ୍ରକାଶକରି ସାଧାରଣ ଓ ସରକାରଙ୍କ ନଜରକୁ ଆଣିବେ, ତାହାହେଲେ ସେ ସମସ୍ତଙ୍କର ମୀମାଂସା ଓ ଉଚିତ ବିଚାର କରାଯାଇ ପାରିବ ।

୬ । ୧୯୩।୮।୨୧ ତାରିଖ ସମାଜରେ ପ୍ରକାଶିତ ଘଟଣା ଛପାହେବା ପୂର୍ବରୁ ତାହା ଦେଶର ଚାରିଆଡ଼େ ବହୁଳ ଭାବରେ ପ୍ରଚାର ହୋଇଥିଲା । ଛପା ହେବା ପୂର୍ବରୁ ମୁଁ ନିଜେ ଏହା ଶୁଣିଥିଲି । ବିଶେଷରେ ମୁଁ ଏହା ବୁଝିଲି ଯେ ଏ ଘଟଣା ସମ୍ପାଦକଙ୍କଠାକୁ ଜଣେ ସମ୍ବାଦଦାତା ଲେଖି ପଠାଇଛନ୍ତି । ସେ ଚିଠି ସମାଜ ମ୍ୟାନେଜରଙ୍କଠାରେ ଅଛି । ମୁଁ ତାହା ମୋ ଜବାବ ସଙ୍ଗେ ଲଥିକରି ଦେଇପାରିବି ନାହିଁ । କାରଣ ମୁଁ ଅସହଯୋଗୀ ଓ ଧର୍ମତଃ କରି ନ ପାରେ । ଏହା କଲେ ମୋକଦ୍ଦମା ଲଢ଼ିଲି ବୋଲି ବୁଝାଯିବ ।

୭ । ଏ ଘଟଣା ବଡ଼ ଗୁରୁତର ଓ ଦେଶର ଚାରିଆଡ଼େ ବ୍ୟାପିଥିବାରୁ ସମାଜରେ ପ୍ରକାଶ କରିବା ଉଚିତ ମନେ କରାଯାଇଥିଲା । ଯେଉଁମାନେ ଏ ବିଷୟ କୁହାକୁହି ହେଉଥିଲେ ସେମାନେ ଏହାକୁ ସତ ବୋଲି ବିଚାରିଥିଲେ । କିନ୍ତୁ ସମାଜରେ ଏହା ପ୍ରକାଶ ହେଲାବେଳେ ସତ ବୋଲି କୁହାଯାଇ ନଥିଲା । ବରଂ ସମାଜରେ ଏପରି ଶିରୋନାମା ଓ ବିଶେଷଣ ସହିତ ଏହା ପ୍ରକାଶ ପାଇବାରୁ ଏହାର ସତ୍ୟାସତ୍ୟରେ ଲୋକେ ସନ୍ଦେହ ପ୍ରକାଶ କଲେ । ତେଣୁ ଯଦି କୌଣସି ଲୋକର କୌଣସି ପ୍ରକାରେ ଏ ଘଟନାରେ ମାନହାନି ହୋଇଥାଏ ତାହା ସମାଜରେ ଏପରି ସନ୍ଦେହଜନକ ଭାବରେ ବାହାରିବାରୁ ବରଂ ସେମାନଙ୍କର ମାନରକ୍ଷା ହେଲା, କାରଣ ଚାରିଆଡ଼େ ଏ ଅପବାଦ ବ୍ୟାପି ଆଗରୁ ମାନହାନି ଘଟି ସାରିଥିଲା ।

। ପ୍ରକାଶିତ ପ୍ରବନ୍ଧରେ କୌଣସିପ୍ରକାର ଗୋଳମାଳ ନାହିଁ । ଏହା ସ୍ପଷ୍ଟଭାବରେ ଲେଖା ଯାଇଅଛି । ଶିରୋନାମା 'ସତ୍ୟ ହୋଇଥିଲେ ସାଙ୍ଘାତିକ' ଓ ଶେଷଧାଡ଼ି କିନ୍ତୁ

ଆମ୍ଭେମାନେ ଏହାର ସଠିକ ବିବରଣ ଜାଣୁନାହିଁ' ଏଥିରୁ ସ୍ପଷ୍ଟ ବୁଝାଯାଉଛି ଯେ ଘଟଣାଟା ସମ୍ପୂର୍ଣ୍ଣ ସନ୍ଦେହଜନକ ।

୯ । ସମାଜରେ ଏ ଘଟଣା ପ୍ରକାଶ କଲାବେଳେ ଆମ୍ଭମାନଙ୍କର କୌଣସି ଖରାପ ଉଦ୍ଦେଶ୍ୟ ନ ଥିଲା । ତା ୨୭।୮।୨୧ର ୪୪ ସଂଖ୍ୟା, ତା ୨୪।୯।୨୧ର ୪୮ ସଂଖ୍ୟା ସମାଜରେ ପରେ ଏ ସମ୍ପର୍କରେ ଯେସବୁ ପ୍ରକାଶ ପାଇଛି ସେଥିରୁ ଏହା ସ୍ପଷ୍ଟ ବୁଝାଯିବ । ଅଗଷ୍ଟ ୧୩ ତାରିଖ ପ୍ରବନ୍ଧ ପ୍ରକାଶ ପାଇଲା ପରେ ଆମ୍ଭେମାନେ ଏ ବିଷୟରେ ବିଶେଷ ସମ୍ବାଦ ପାଇବା ଆଶାରେ ଏକସପ୍ତାହ ଅପେକ୍ଷା କଲୁ । କିନ୍ତୁ କୌଣସିଠାରୁ ସମ୍ବାଦ ପାଇଲୁ ନାହିଁ । ତେଣୁ ତା ୨୭।୮।୨୧ର ସମାଜରେ ଆମ୍ଭେମାନେ ସାଧାରଣ ଲୋକଙ୍କୁ ଏ ବିଷୟରେ ଅନୁସନ୍ଧାନ କରି ଯଥାସାଧ୍ୟ ଯଥାସମୟରେ ଜଣାଇବୁ ବୋଲି ଅଙ୍ଗୀକାର କରିଥିଲୁ ।

୧୦ । ୨୪ । ୯ । ୨୧ ତାରିଖ ସମାଜରେ ଆମ୍ଭେମାନେ ଏ ବିଷୟରେ ଶେଷକଥା ପ୍ରକାଶ କରିଥିଲୁ । ସେ ପ୍ରବନ୍ଧ ପଢ଼ିଲେ ଜଣାଯିବ ଆମ୍ଭେମାନେ କାହିଁକି ଏ ସମ୍ବାଦ ସମାଜରେ ପ୍ରକାଶ କଲୁ । ତା ୨୭।୮।୨୧ ସମାଜରେ ଆମ୍ଭେମାନେ ଗ୍ରାହକମାନଙ୍କୁ ଦେଇଥିବା ଅଙ୍ଗୀକାର ଅନୁସାରେ ଅନୁସନ୍ଧାନ କଲୁ ଓ ଅନୁସନ୍ଧାନର ଫଳ ୨୪।୯।୨୧ ତାରିଖ ସମାଜରେ ମଧ୍ୟ ପ୍ରକାଶ ହେଲା । ସେ ରିପୋର୍ଟରେ ସ୍ପଷ୍ଟ ଲେଖା ଯାଇଥିଲା ଯେ ଏ ଘଟଣା ଅମୂଳକ । ଏହାକୁ ପଢ଼ି ଯଦି କୌଣସି ଲୋକ ମତରେ କାହାରି ମାନହାନି ହୋଇଥାଏ ତାହା ଅବଶ୍ୟ ଦୂର ହୋଇ ଯାଇଥିବ । ଅତଏବ ଉକ୍ତଥରଯାକ ସମାଜରେ ଯାହା ବାହାରିଛି ତାହା ଏକାବେଳକେ ବା ପୃଥକ ଭାବରେ ପଢ଼ିଲେ ଜଣାଯିବ ଯେ ପ୍ରତ୍ୟେକ ଲେଖା ସାଧାରଣ ଲୋକଙ୍କର ଏପରି ସାଂଘାତିକ ଓ ଗୁରୁତର ଘଟଣାରେ ସନ୍ଦେହ ଭଞ୍ଜନ ସକାଶେ ଯାହାପ୍ରକାଶ କରିଅଛି ତାହା ଠିକ୍ ।

୧୧ । ସମାଜରେ ଏ ଖବର ପ୍ରକାଶ ପାଇବା ପୂର୍ବରୁ ଜନରବ ରୂପରେ ଚାରିଆଡ଼େ ଯେ ଏହା ବ୍ୟାପିଥିଲା ଏକଥା ତ ସତ୍ୟ । ଏପରି ଗୁରୁତର ଓ ସାଂଘାତିକ କାଣ୍ଡ ଘଟିଥିବାର ଶୁଣି ଲୋକଙ୍କ ମନରେ ଯେ ବିରକ୍ତି ଜନ୍ମିଥିବ ଏହା ମଧ୍ୟ ଅସ୍ୱୀକାର କରାଯାଇ ନ ପାରେ, ଯଦି ଜେଲର କର୍ତ୍ତୃପକ୍ଷମାନଙ୍କର ସାଧାରଣ ଲୋକଙ୍କ ମତ ପ୍ରତି ଖାତିର ଥାନ୍ତା, ତାହାହେଲେ ସେମାନଙ୍କର ଏ ବିଷୟରେ ଏକ କମ୍ୟୁନିକ ବାହାରି

କରିବା ଉଚିତ ଥିଲା । ସରକାର ଏପରି ଘଟଣାରେ ସବୁ କମ୍ୟୁନିକ ବାହାର କରିଥାନ୍ତି । ସ୍ଥାନୀୟ କର୍ତ୍ତୃପକ୍ଷମାନେ ଏପରି ସମ୍ବାଦ ପଠାଇଥିଲେ ଆମ୍ଭେ ଆନନ୍ଦରେ ପ୍ରକାଶ କରିଥାନ୍ତୁ । ଏ ଅବସ୍ଥାରେ ଏହା ସ୍ପଷ୍ଟ ବୁଝାଯାଉଛି ଯେ ଆମ୍ଭେମାନେ ଏହା ସାଧାରଣ କାର୍ଯ୍ୟ ବିସ୍ତୃତି କରିଛୁ । ଏଥିରେ କାହାପ୍ରତି ଶତ୍ରୁତା ଆଚରଣ ବା ବିରୁଦ୍ଧାଚରଣର କଥା ନାହିଁ ବରଂ ସ୍ଥାନୀୟ କର୍ତ୍ତୃପକ୍ଷମାନଙ୍କର ଯାହା ଏ ବିଷୟରେ କର୍ତ୍ତବ୍ୟ ସମାଜ ତାହା କରିଛି ।

୧୨ । ଯାହାହେଉ ଏ ଘଟଣାରେ ସତ୍ୟ ସକାଶେ ମୁଁ ମୋର ଅନୁସନ୍ଧାନର ଫଳ ସ୍ପଷ୍ଟ କରିଦେଉଛି । ଏ ଘଟଣାରେ ଅନୁସନ୍ଧାନ କରୁଥିବାବେଳେ ତା ୪ । ୯ । ୨୧ ତାରିଖ ସମାଜରେ ବାହାରିଥିବା ମୂଳକାରଣ ୨ଟି ଛଡ଼ା କେତେକ ସମ୍ବାଦ ମିଳିଥିଲା ଯହିଁରୁ ମୋର ଏତେବେଳ ପର୍ଯ୍ୟନ୍ତ ସନ୍ଦେହ ଯେ ବେଗୁନିଆ ହାଟ ବା ତା ନିକଟରେ ଗୋଟେ ମାଇକିନିଆ ପ୍ରତି କୌଣସି ପ୍ରକାର ଅତ୍ୟାଚାର ହୋଇଥିଲା; କିନ୍ତୁ ବିଶ୍ୱାସ ଜନକ ପ୍ରମାଣ ନ ପାଇବାରୁ ଏହା ଆମ୍ଭେମାନେ ସମାଜରେ ପ୍ରକାଶ କରି ପାରିଲୁ ନାହିଁ ।

୧୩ । ଉପର୍ଯ୍ୟୁକ୍ତ ଘଟଣାମାନଙ୍କରୁ ଏହା ବର୍ତ୍ତମାନ ସ୍ପଷ୍ଟ ବୁଝାଯିବ ଯେ ମୁଦେଇମାନେ ଏ ମୋକଦ୍ଦମା ଦାଏର କରି ନ ପାରନ୍ତି ଓ ତା ୨୪ । ୯ । ୨୧ ତାରିଖ ସମାଜ ପ୍ରକାଶ ପାଇବା ବାଦ୍ ମୋକଦ୍ଦମା ଦାଏର କରିବାର କୌଣସି କାରଣ ମଧ୍ୟ ନ ଥିଲା ।

୧୪ । କୌଣସି କାରଣ ନ ଥାଇ ମୋତେ ହାନସ୍ତା ଓ ହଇରାଣ କରିବା ନିମନ୍ତେ ଏ ମୋକଦ୍ଦମା କରା ହୋଇଛି । ମୋର ବିଶ୍ୱାସ ପୁରୀର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଗାଇସ ସାହେବଙ୍କର ମୋ ପ୍ରତି ବିଦ୍ୱେଷ ଓ ଈର୍ଷା ଏ ମୋକଦ୍ଦମାର କାରଣ । ତା ୨୭ । ୯ । ୨୧ ସମାଜରେ ଗାଇସ ସାହେବଙ୍କର ପୁରୀର କେତେକ ମାରବାଡ଼ି ବ୍ୟବସାୟୀଙ୍କ ସହିତ ଘଟିଥିବା କଥୋପକଥନ ପ୍ରକାଶ ପାଇଥିଲା । ଗାଇସ ସାହେବ ସ୍ୱଦେଶୀ ପ୍ରଚାର ବନ୍ଦ କରିବା କାରଣ ଗୋଟିଏ ଅସହଯୋଗ ବିରୁଦ୍ଧ ସଭାରେ ସମ୍ମିଳିତ ହୋଇଥିଲେ । ଏ ସଭାରେ ମାରବାଡ଼ି ବ୍ୟବସାୟୀମାନେ ତାଙ୍କର କେତେକ ପ୍ରଶ୍ନର ଯେ ଉତ୍ତର ଦେଇଥିଲେ ସେଥିରେ ସେ ଆବାକାବା ହୋଇଯାଇଥିଲେ । ସେହିଦିନ ଠାରୁ ଗାଇସ ସାହେବ ମୋ ବିରୁଦ୍ଧରେ ନାନା ସ୍ଥାନରେ ନାନା-କଥା କହୁଥିବାର ମୁଁ ଜାଣେ ।

୧୫ । ଗାଇସ ସାହେବ ତା ୧୩ । ୮ । ୨୧ ରେ ସମାଜ ସମ୍ପାଦକଙ୍କଠାକୁ ଏ ଘଟଣାର ସମ୍ବାଦ ଦାତାଙ୍କ ନାମ ଓ ତାଙ୍କ ଚିଠି ମଗାଇ ଏକ ଚିଠି ଲେଖିଥିଲେ । ସେ ବିଭାଗୀୟ ଅନୁସନ୍ଧାନ କରିବା କାରଣ ଏହା ଲୋଡ଼ିଥିଲେ । ସମାଜର ସମ୍ପାଦକ ସଦର ମୁକାମରେ ଅନେକ ଦିନ ଧରି ଅନୁପସ୍ଥିତ ଥିବା ହେତୁ ସମାଜ ମାନେଜର ଉତ୍ତର ଲେଖିଥିଲେ କି ସମାଜରେ ଯାହା ପ୍ରକାଶ ହୋଇଛି ସେଥିରୁ ଅନୁସନ୍ଧାନ ଲାଗି ବେଶି ଖିଅ ମିଳିବ । ସମ୍ପାଦକଙ୍କ ଛଡ଼ା ଅନ୍ୟ କେହି ସମ୍ବାଦ ଦାତାଙ୍କ ନାମ ଦେଇ ପାରି ନ ପାରେ । ମୋ ବିଚାରରେ କେହି ଜଣେ ସମ୍ବାଦଦାତାର ନାମ ମାଗିଦେଲା ବୋଲି ଯଦି ସମ୍ପାଦକ ତାହା ଜଣାଇ ଦିଅନ୍ତି ତାହାହେଲେ ସେ ସମ୍ପାଦକୀୟ ଶିଷ୍ଟାଚାରର ବିରୁଦ୍ଧାଚରଣ କଲେ ବୋଲି ବୁଝିବାକୁ ହେବ । ଗାଇସ ସାହେବ ପରେ ଆଉ ଖଣ୍ଡେ ଚିଠିରେ ପୁଣି ସେହି ସମ୍ବାଦ ମାଗି ପଠାଇଥିଲେ ।

ସେତେବେଳକୁ ଆମ୍ଭମାନଙ୍କର ଅନୁସନ୍ଧାନ ଆରମ୍ଭ ହୋଇଯାଇଥିଲା । ଅନୁସନ୍ଧାନ ଫଳ ଜଣାଗଲେ ଉତ୍ତର ଦିଆଯିବ ବୋଲି ଚିଠି ପଡ଼ି ରହିଲା । ୨୪ । ୯ । ୨୧ ତାରିଖ ସମାଜରେ ଅନୁସନ୍ଧାନର ଫଳ ପ୍ରକାଶ ପାଇଲାପରେ ଗାଇସ ସାହେବଙ୍କୁ ସମ୍ବାଦଦାତାଙ୍କ ନାମ ଦେବା ଆଉ ଦରକାର ହେଲା ନାହିଁ । ଏଥିରୁ ଜଣାଯିବ ସମ୍ପାଦକଙ୍କ ପକ୍ଷରୁ ଗାଇସ ସାହେବଙ୍କ ପାଖକୁ ଯେ ସବୁ ଚିଠି ଲେଖା ଯାଇଛି ସେଥିରେ ସମ୍ପାଦକଙ୍କର କୌଣସି ଦୁରଭିସନ୍ଧି ନ ଥିଲା । ମୋର ତ ଦୂରର କଥା , ମୋର ଆଶଙ୍କା ଗାଇସ ସାହେବ ଏ ଉତ୍ତରକୁ ଭୁଲ୍ ବୁଝିଛନ୍ତି ଓ ମୋ ପ୍ରତି ଓ ସମାଜ ପ୍ରତି ତାଙ୍କର ପୂର୍ବ ବିଦ୍ୱେଷ ଦ୍ୱିଗୁଣିତ ହୋଇଛି ।

୧୬ । ଗାଇସ ସାହେବଙ୍କର ବିଦ୍ୱେଷ ଭାବ ଯେ ଏ ମୋକଦ୍ଦମାର ମୂଳରେ ଅଛି ଏହା ନିମ୍ନଲିଖିତ କାରଣରୁ ଆହୁରି ସ୍ପଷ୍ଟ ହେଉଅଛି । ବର୍ତ୍ତମାନ ମୋକଦ୍ଦମା ବେସରକାରୀ ଓ ମୁଦେଇଙ୍କ ଦରଖାସ୍ତ ଉପରେ ତା ହୋଇଥିଲେ ସୁଦ୍ଧା ସରକାରୀ କୋର୍ଟ ଇନ୍‌ସପେକ୍ଟର ଓ ସରକାରୀ ଓକିଲ ଏହା ଚଳାଉଛନ୍ତି । ଏହାଛଡ଼ା ପୋଲିସ ସାହେବଠାରୁ ଆରମ୍ଭ କରି ସାମାନ୍ୟ କନେଷ୍ଟବଲ ପର୍ଯ୍ୟନ୍ତ ପୁରୀ ଜିଲାର ସମସ୍ତ ପୁଲିସ ଫୌଜ ଏଥିରେ ଲାଗିଛନ୍ତି । କେତେକ ପୁଲିସ କର୍ମଚାରୀ ନିଜ ନିଜର ସର୍କଲ୍ କାମ ଛାଡ଼ି ଏଠାରେ ମୋକଦ୍ଦମା ତଦବିର କରୁଛନ୍ତି ।

୭ । ବିଶେଷରେ ମୁଁ ଓଡ଼ିଶାରେ ଜଣେ ଅସହଯୋଗୀ ନେତାବୋଲି ପରିଚିତ । ଓ ସମାଜ ଖବର କାଗଜର ମୋ ସହିତ ସମ୍ପର୍କ ଅଛି ଏବଂ ଏହା ଅସହଯୋଗ

ଆନ୍ଦୋଳନର ଏକ ପ୍ରଧାନ ମୁଖପତ୍ର । ମୋ ବିରୁଦ୍ଧରେ ଏ ବିରକ୍ତିକର ଓ ବିଦ୍ୱେଷ-ମୂଳକ ମୋକଦ୍ଦମା ଦାଏର୍‌ର ପ୍ରଧାନ ଉଦ୍ଦେଶ୍ୟ ମୋତେ ଓ ସମାଜକୁ ହରକତରେ ପକାଇ ଓଡ଼ିଶାରେ ଏ ଆନ୍ଦୋଳନର ଗତି କେବଳ ବନ୍ଦ କରିଦେବା ।

୮ । ଉପସଂହାରରେ ମୋର ବକ୍ତବ୍ୟ ଯେ ସାଧାରଣ ପ୍ରେସ କାର୍ଯ୍ୟରେ ରହି ମୁଁ ସମାଜ ପ୍ରତି ମୋର କର୍ତ୍ତବ୍ୟକୁ ବଡ଼ ଜ୍ଞାନ କରେ । ଏ କର୍ତ୍ତବ୍ୟ କଲାବେଳେ କୌଣସି ବିଶେଷ ଜାତି ବା ସମ୍ପ୍ରଦାୟ ପ୍ରତି ଘୃଣା ବା ବିଦ୍ୱେଷ ରଖିବା ମୋର ଧର୍ମ ନୁହେଁ । ଏ କର୍ତ୍ତବ୍ୟ ଦେଶର ଜନ ସାଧାରଣଙ୍କ ଉପକାରାର୍ଥେ କରିବାକୁ ହୁଏ । ଇଂରେଜ ସାମ୍ରାଜ୍ୟରେ ଭାରତ ପରିର ଏହି ପ୍ରକାର କାର୍ଯ୍ୟ ଶାସନ ନୀତିର ୪ର୍ଥ ଭାଗ ବୋଲି ବିଦିତ । ଉପସ୍ଥିତ ଘଟଣା ଏହା ତୁଳନାରେ ଅକାଙ୍କ୍ଷିତକର ହେଲେ ମଧ୍ୟ ମୁଁ ଏହା ପ୍ରକାଶ କରିବାଦ୍ୱାରା ଜନସାଧାରଣଙ୍କ ପ୍ରତି କର୍ତ୍ତବ୍ୟ କରିଛି ବୋଲି ମୋର ବିବେକସଙ୍ଗତ ।

('ସମାଜ', ତା ୨୬ । ୧୧ । ୨୧)

---

# ଆଇନ ଅମାନ୍ୟର ସର୍ତ୍ତ

ଅସହଯୋଗ ଆନ୍ଦୋଳନ ସମ୍ପର୍କରେ ସରକାର କେତେ ଜାଗାରେ ଆଇନ୍ନର ଦ୍ୱାହିଦେଇ ଅନେକ ବେଆଇନ କାର୍ଯ୍ୟ କରୁଛନ୍ତି । ତେଣୁ ଉତ୍ତର ପଶ୍ଚିମ ପ୍ରଦେଶ, ସିନ୍ଧୁ, ପଞ୍ଜାବ ପ୍ରଭୃତି କେତେକ ଅଞ୍ଚଳର ଲୋକେ ଆଇନ ନ ମାନି କାମ କରିବା ଲାଗି ନିଖିଳ ଭାରତ କଂଗ୍ରେସ କମିଟିରେ ଅଭିମତ ପ୍ରକାଶ କରିଥିଲେ । ମାତ୍ର ଆଇନ ମାନି କାର୍ଯ୍ୟ କରିବା ବଡ଼ ସହଜ ବ୍ୟାପାର ନୁହେଁ । ବିଶେଷତଃ ଆମ ଦେଶ ଲୋକେ ଏଭଳି କାର୍ଯ୍ୟ କେବେ କରି ନାହାନ୍ତି । ଆମ୍ଭମାନଙ୍କର ସେଥିଲାଗି ଉପଯୁକ୍ତ ଶିକ୍ଷା ଓ ସାଧନା ନାହିଁ । ତେଣୁ ନିଖିଳ ଭାରତ କମିଟି ଆଇନ ନ ମାନି କାର୍ଯ୍ୟ କରିବାକୁ ହଠାତ୍ ପରାମର୍ଶ ଦେଇ ନ ଥିଲେ । ଗଲମାସ ୪ ତାରିଖ ଦିଲ୍ଲୀଠାରେ ଏ କମିଟିର ଏକ ବୈଠକ ହୋଇଥିଲା । ବହୁ ତର୍କ ବିତର୍କ ପରେ ଆଇନ ନ ମାନି କାର୍ଯ୍ୟ କରିବା କାରଣ ଏଥିରେ ସ୍ଥିର ହୋଇଅଛି । କିନ୍ତୁ ଯେ କୌଣସି ପ୍ରଦେଶ ବା ଜିଲା କିମ୍ବା ଯେ କେହି ବ୍ୟକ୍ତି ନିଜ ଇଚ୍ଛାରେ ଏହା କରି ପାରିବେ ନାହିଁ । ପ୍ରତ୍ୟେକ ପ୍ରାଦେଶିକ କଂଗ୍ରେସ କମିଟିକି ଏ ବିଷୟରେ ଦେଶକାଳପାତ୍ର ବିଚାର କର୍ତ୍ତବ୍ୟ ସ୍ଥିର କରିବାକୁ ଅଧିକାର ଦିଆଯାଇଅଛି । ସରକାରଙ୍କୁ ଟିକସ ଖଜଣା ବା ରାଜସ୍ୱ ନ ଦେବା ଆଇନ ନ ମାନି କାର୍ଯ୍ୟ କରିବାର ଅନ୍ତର୍ଗତ । କେଉଁଠାରେ କି ପ୍ରକାର ପ୍ରକ୍ରିୟା ଓ ପ୍ରଣାଳୀରେ ଏହା କରିବାକୁ ହେବ ସେଠା ପ୍ରାଦେଶିକ କମିଟି ତାହା ନିରୂପଣ କରିବେ । ମାତ୍ର ନିଖିଳ ଭାରତ କମିଟିଙ୍କ ନିର୍ଦ୍ଧାରଣରେ ଏ ସମ୍ବନ୍ଧରେ କେତେ ସର୍ତ୍ତ ଦିଆ ଯାଇଅଛି । ତାହା ସମସ୍ତଙ୍କୁ ମାନିବାକୁ ହେବ ।

ଯେ ଆଇନ ନ ମାନି କାର୍ଯ୍ୟ କରିବେ ସେ ଅରଟରେ ସୂତାକାଟି ଜାଣିଥିବା ଆବଶ୍ୟକ । ନିଜେ ବିଦେଶୀ ବସ୍ତ୍ର ସମ୍ପୂର୍ଣ୍ଣରୂପେ ବର୍ଜନ କରିଥିବେ ଏବଂ ଅରଟ ସୂତାରେ ହାତବୁଣା ଲୁଗା ପିନ୍ଧୁଥିବେ । କେବଳ ହିନ୍ଦୁ ମୁସଲମାନ ନୁହେଁ । ଭାରତରେ ଯେତେ ଭିନ୍ନ ଭିନ୍ନ ଧର୍ମ ସମ୍ପ୍ରଦାୟ ଅଛନ୍ତି ସେମାନଙ୍କର ଏକତା ଓ ମିଳନରେ ତାଙ୍କର ବିଶ୍ୱାସ ଥିବା ଦରକାର । ସେ ହିନ୍ଦୁ ହୋଇଥିଲେ ସ୍ପର୍ଶାସ୍ପର୍ଶ ଭେଦ ଉଠାଇଥିବେ । କେବଳ ଶାନ୍ତି ଓ ସଂଯମର ସହିତ କାର୍ଯ୍ୟକଲେ ସ୍ୱରାଜ୍ୟ ମିଳିବ ବୋଲି ତାଙ୍କର ବିଶ୍ୱାସ ଥିବା ଉଚିତ ।

କୌଣସି ଜିଲା, ସବ୍‌ଡିଭିଜନ ଥାନା ବା ତହସିଲରେ ଆଇନ ନ ମାନି କାର୍ଯ୍ୟ କରିବାର ହେଲେ ସେଠାର ଅଧିକ ଭାଗ ଲୋକେ ସୂତାକଟା ଓ ଲୁଗାବୁଣା ଜାଣିଥିବା ଆବଶ୍ୟକ । ସେହି ଜିଲା ଥାନା ବା ତହସିଲରେ ହିଁ ଘରଆର ଲୁଗାରେ ସେମାନଙ୍କର କାର୍ଯ୍ୟ ନିର୍ବାହ ହୋଇ ପାରୁଥିବ । ସ୍ୱଦେଶୀଛଡ଼ା ଅସହଯୋଗର ଅନ୍ୟାନ୍ୟ କାର୍ଯ୍ୟମାନ ସେମାନେ ସମ୍ପନ୍ନ କରିଥିବେ । ଅର୍ଥାତ୍ ସରକାର ଅଦାଲତକୁ ମାମଲା ମକଦ୍ଦମା କରିବାକୁ ଯାଉ ନ ଥିବେ । ହିନ୍ଦୁ, ମୁସଲମାନ ଓ ଅନ୍ୟାନ୍ୟ ସଂପ୍ରଦାୟ ମଧ୍ୟରେ ସମ୍ପୂର୍ଣ୍ଣ ଏକତା ହୋଇଥିବ, ଇତ୍ୟାଦି ।

ଯେଉଁମାନେ ଆଇନ ନ ମାନି କାର୍ଯ୍ୟ କରୁଛନ୍ତି ବୋଲି ତାଙ୍କୁ କଂଗ୍ରେସ ଫଣ୍ଡରୁ ଚଳିବା ନିମନ୍ତେ ସାହାଯ୍ୟ ଦିଆଯିବ ନାହିଁ । ସେ ଜେଲ ଗଲେ ତାଙ୍କ ପରିବାରର ଲୋକେ ସୂତାକାଟି, ତୁଳା ଭଣି, ଲୁଗାବୁଣି କିମ୍ବା ଅନ୍ୟ କୌଣସି କାର୍ଯ୍ୟକରି ନିଜର ଜୀବିକା ନିର୍ବାହ କରିବାକୁ ସମର୍ଥ ହେବା ଉଚିତ ।

ଏହି ସର୍ତ୍ତଗୁଡିକ ପୂରଣ ନ କଲେ କେହି ଆଇନ ନ ମାନି କାର୍ଯ୍ୟ କରିବାର ଅଧିକାରୀ ହୋଇ ପାରିବେ ନାହିଁ । ଆମ ଓଡ଼ିଶା ମଫସଲ ଅନେକ ଜାଗାରେ ଲୋକେ କେତେ ସମୟରେ ପଚାରିଥାନ୍ତି— ଟିକସ କେବେ ବନ୍ଦ ହେବ ? ଉପରଲିଖିତ ସର୍ତ୍ତରୁ ସେମାନେ ଏଥିରେ ଉତ୍ତର ପାଇପାରିବେ । ଏହି ନିୟମ ସବୁ ମାନି ସେମାନେ ଯେତେବେଳେ କଷ୍ଟ ସହି ଧୀର ସ୍ଥିର ଭାବରେ କାର୍ଯ୍ୟ କରିବାକୁ ପ୍ରସ୍ତୁତ ହେବେ ସେତିକିବେଳେ ଏକା ସେମାନେ ରାଜସ୍ୱ ବନ୍ଦ କରିବାକୁ ସମର୍ଥ ହେଲେ ବୋଲି ବୁଝାଯିବ ।

('ସମାଜ', ତା ୩ । ୧୨ । ୨୧)

---

# ସମଗ୍ର ଦେଶ ଏକ ଜେଲ

ବଙ୍ଗଳାର ସରକାର ଗ୍ରିମିନାଲ ଆଇନ ଜାରି କରି କଂଗ୍ରେସ ଓ ଖିଲାଫତ ସ୍ୱେଚ୍ଛାସେବକମାନଙ୍କ ଜମାଏତ ବସ୍ତୁ ବେଆଇନଦଳ ବୋଲି ଘୋଷଣା କରିଥିଲେ ଏବଂ ସାଧାରଣ ସଭା କରିବାକୁ ନିଷେଧ କରିଥିଲେ । ଏ ସପ୍ତାହ ମଧ୍ୟରେ ଉତ୍ତର ପଶ୍ଚିମ ପ୍ରଦେଶ ଆସାମ ଓ ପଞ୍ଜାବର ସରକାରମାନେ ମଧ୍ୟ ସେହିପରି କରିଅଛନ୍ତି । ଏହିସବୁ ପ୍ରଦେଶମାନଙ୍କରେ ଅନେକ ଜାଗାରେ ଖିଲାଫତ କମିଟି ଓ କଂଗ୍ରେସ କମିଟି ଅଫିସମାନ ପୋଲିସ ଦ୍ୱାରା ଖାନତଲାସ ହେଉଅଛି । ସେଠାରୁ କାଗଜପତ୍ର ସବୁ ସରକାରୀ ଲୋକେ ନେଇ ଯାଉଛନ୍ତି । ପ୍ରତିଦିନ ସ୍ୱେଚ୍ଛା-ସେବକ ନ ହେଲେ ଅନ୍ୟ କେହି କଂଗ୍ରେସ କର୍ମୀ ଗିରଫଦାର ହେଉଛନ୍ତି । ମେଜେଷ୍ଟରଙ୍କ ନିକଟକୁ ଆସାମୀ ହୋଇ ନଆସିଲେ ଏମାନେ ଜାମିନରେ ଖଲାସ ହେବାକୁ ନାରାଜ ହୋଇ ହାଜତ ଯାଉଛନ୍ତି ଏବଂ ଶେଷରେ ଜେଲ ପାଉଛନ୍ତି । ଉଣା ଅଧିକେ ଭାରତର ପ୍ରତି ପ୍ରଦେଶରେ ଏହାହିଁ ଲାଗିଅଛି । ଏଥିରେ ଲୋକେ ଦବିବା ଦୂରେ ଥାଉ, ବରଂ ଅଧିକ ଉତ୍ସାହିତ ହେଉଛନ୍ତି ଏବଂ ଅଧିକ ସଂଖ୍ୟାରେ କଂଗ୍ରେସ କାର୍ଯ୍ୟରେ ଯୋଗ ଦେଉଛନ୍ତି । ଯେଉଁମାନଙ୍କର ଅସହଯୋଗରେ ଆଗେ ଆସ୍ଥା ବା ବିଶ୍ୱାସ ନ ଥିଲା ଏବେ ଏ ସବୁ ବ୍ୟାପାର ଦେଖି ସେମାନଙ୍କ ମନ ବଦଳି ଗଲାଣି । ଏହି କେତେଦିନ ମଧ୍ୟରେ ଭିନ୍ନ ଭିନ୍ନ ପ୍ରଦେଶର ସରକାରମାନେ ଯେପରି ସତ୍ୱର କ୍ରିମିନାଲ ଆଇନ ଓ ଅନ୍ୟାନ୍ୟ ଦମନ ବିଧାନମାନ ଜାରିକରି ପକାଉଛନ୍ତି ; ଅନ୍ୟାନ୍ୟ ଦେଶର ସରକାରମାନେ ଯେବେ ତାହା ଦେଖି ବିଚଳିତ ନୁହନ୍ତି ତ ରକ୍ଷା । ନ ହେଲେ ମାସକ ମଧ୍ୟରେ ସବୁ ପ୍ରଦେଶରେ ଏହି ବିଧାନମାନ ଜାରିହେବା ବିଚିତ୍ର ନୁହେଁ । ତାହାହେଲେ ଫଳରେ ସମଗ୍ର ଭାରତର ଲୋକଙ୍କୁ ଆଇନ ମାନ୍ୟ ନ କରିବାକୁ ରାସ୍ତା ଫିଟାଇ ଦିଆଯିବ । ଦେଶ ଏବଂ ଜେଲଖାନା ସେମାନଙ୍କ ପକ୍ଷେ ସମାନ ହୋଇଗଲେ ସେମାନେ ଜେଲ ଯିବାକୁ ତିଆରି ନ ହେବେ କାହିଁକି ।

('ସମାଜ', ତା ୩ । ୧୨ । ୨୧)

# ଅନଷ୍ଟରୁ ଇଷ୍ଟ

ବମ୍ବେଇ ସହରରେ ଶାନ୍ତିଭଙ୍ଗ ଘଟିଥିଲା ବୋଲି ମହାତ୍ମାଗାନ୍ଧୀ ନିରାଧାର ରହି ଈଶ୍ୱର ଉପାସନା କରୁଥିଲେ । ମହାପୁରୁଷଙ୍କର ଏ ସାଧନା ବଳରେ ସଙ୍ଗେ ସଙ୍ଗେ ସିଦ୍ଧି ମିଳିଅଛି । ବମ୍ବେଇରେ ହିନ୍ଦୁ, ମୁସଲମାନ ଓ ପାର୍ସି ଖ୍ରୀଷ୍ଟାନଙ୍କ ଭିତରେ ଯେ ବିବାଦ ଲାଗିଥିଲା ତାହା ଏକାବେଳେକେ ଶାନ୍ତ ହୋଇଅଛି । ଅସହଯୋଗୀ ଓ ସହଯୋଗୀମାନଙ୍କ ମଧ୍ୟରେ ସ୍ନେହ ଓ ବନ୍ଧୁତା ସ୍ଥାପିତ ହୋଇଅଛି । ମହାତ୍ମାଙ୍କର ଗୃହ ପାଞ୍ଚଦିନ ଉପବାସରେ ବମ୍ବେଇ ସହର ଲୋକେ ତଟସ୍ଥ ହୋଇଗଲେ । ଶେଷରେ ନଭେମ୍ବର ୨୪ ତାରିଖ ଦିନ ସବୁ ଶ୍ରେଣୀ, ସମ୍ପ୍ରଦାୟ ଓ ସମାଜର ମୁଖିଆ ମୁଖିଆ ସହଯୋଗୀ ଓ ଅସହଯୋଗୀଙ୍କର ମହାତ୍ମାଗାନ୍ଧୀଙ୍କ ବସାଠାରେ ମିଳନ ହୋଇଥିଲା । ସମସ୍ତେ ଏକଦିନେ ଫଳାହାର କଲେ । ଦୁଃଖ ସୁଖ କଥା ପଡ଼ିଲା । ଭବିଷ୍ୟତକୁ ପରସ୍ପର ମଧ୍ୟରେ ଯେପରି ଦ୍ୱନ୍ଦ୍ୱ ନ ଘଟିବ ସେଥିଲାଗି ନେତାମାନେ ଦୃଢ଼ ପ୍ରତିଜ୍ଞ ହେଲେ । ସମସ୍ତଙ୍କ ଠାରୁ ଏହିପରି ନିର୍ଭର ପାଇବା ପରେ ନେତାମାନଙ୍କ ଅନୁରୋଧରେ ମହାତ୍ମା ମଧ୍ୟ ସେମାନଙ୍କ ସଙ୍ଗେ ବ୍ରତ ପାରଣା କଲେ । ଏ ଘଟନା ଦ୍ୱାରା ବମ୍ବେଇର ଭିନ୍ନ ଭିନ୍ନ ସମ୍ପ୍ରଦାୟଙ୍କ ମଧ୍ୟରେ ସ୍ନେହ ସହାନୁଭୂତି ଅଧିକ ଦୃଢ଼ ହେଲା ଏବଂ ଭବିଷ୍ୟତରେ ଶାନ୍ତିଭଙ୍ଗର ଆଶଙ୍କା ରହିଲା ନାହିଁ । କଥାରେ ଅଛି "ଗଚ୍ଛତଃ ସ୍ଖଳନଂ ଭବେତ୍" । ଗଲୁଥିଲେ କେତେବେଳେ ଗୋଡ଼ ଖସିଯାଏ । ସେପରି ଦେଖାଗଲା ବମ୍ବେଇର ଘଟଣାରେ ଅନଷ୍ଟରୁ ଇଷ୍ଟ ଉତ୍ପତ୍ତି ହୋଇଅଛି, ମହାତ୍ମାଗାନ୍ଧୀ ଶାନ୍ତ ଓ ଅହିଂସାର ବିଧାନ । ତାଙ୍କ ପ୍ରଭାବରେ ବମ୍ବେଇର ଉତ୍ପାତ ଶାନ୍ତ ହେବାକୁ ବେଶି ସମୟ ଲାଗିବ ନାହିଁ ବୋଲି ଆମ୍ଭମାନଙ୍କର ବିଶ୍ୱାସ ଥିଲା । ବମ୍ବେଇର ଘଟଣାରେ ବଙ୍ଗଳାର ଲାଟ ପ୍ରଭୃତି ଯେଉଁ କର୍ତ୍ତୃପକ୍ଷମାନେ ନାଚୁଥିଲେ ଏବଂ ମହାତ୍ମାଙ୍କ ଦୁର୍ବଳତା ଅପାରଗତାକୁ ଗାଇ ହେଉଥିଲେ ଏବେ ସେମାନେ ଏ ଶକ୍ତି ଦେଖି କଅଣ କହୁଛନ୍ତି ? ମାଲବାରକୁ ମହାତ୍ମାଗାନ୍ଧୀଙ୍କୁ ଛାଡ଼ି ଦେଇଥିଲେ ମୋପଲା ବିଦ୍ରୋହ ସଙ୍ଗେ ସଙ୍ଗେ ଶାନ୍ତ ହୋଇଥାନ୍ତା ବୋଲି ମାନ୍ଦ୍ରାଜ ସରକାର ଏବଂ ଭାରତ-ସରକାର ଏବେ ମାନିବେ କି ? ସେ ଯାହା ହେଉ ବମ୍ବେଇରେ ଶାନ୍ତି ଶୀଘ୍ର ସ୍ଥାପନଦ୍ୱାରା ଅସହଯୋଗ କାର୍ଯ୍ୟ ବହୁଦୂର ଅଗ୍ରସର ହୋଇଅଛି ।

"ମଧୁରେଣ ସମାପୟେତ୍"

('ସମାଜ', ତା ୭ । ୧୨ । ୨୧)



# ଅହିଂସକ ଅସହଯୋଗର ହାଉଆ

ନଭେମ୍ବର ୬ ତାରିଖ ମହାତ୍ମାଗାନ୍ଧୀଙ୍କ ପାରଣା ପରେ ବମ୍ବେଇଠାରେ ନିଖିଳ ଭାରତ କଂଗ୍ରେସ କମିଟିର କାର୍ଯ୍ୟକାରୀ ସମିତି ହୋଇଥିଲା । ସେଥିରେ ଅନ୍ୟାନ୍ୟ ପ୍ରସଙ୍ଗ ମଧ୍ୟରେ ସ୍ୱେଚ୍ଛାସେବକ ଦଳ ସଙ୍ଗଠନ ଦୃଢ଼ କରିଦିବା ଉଦ୍ଦେଶ୍ୟରେ ଏକ ପ୍ରସ୍ତାବ ଧାର୍ଯ୍ୟ ହୋଇଥିଲା । ତାହାର ମର୍ମ ଏହିକି ପ୍ରଦେଶ ମଧ୍ୟରେ ଯେଉଁଠାରେ ଯେତେ ସ୍ୱେଚ୍ଛାସେବକ କଂଗ୍ରେସ କାର୍ଯ୍ୟ କରୁଅଛନ୍ତି, ଅର୍ଥାତ୍ କି ଖିଲାଫତ ସ୍ୱେଚ୍ଛାସେବକ କି କଂଗ୍ରେସ ସେବକ କି ସେବା ସମିତିର ମେମ୍ବର ସମସ୍ତେ ଏକା ପ୍ରାଦେଶିକ କେନ୍ଦ୍ର ସଂଘର ଅନ୍ତର୍ଭୁକ୍ତ ହେବେ । ସମସ୍ତ ପ୍ରକାର ବିପଦ ସହ୍ୟକରି ଶାନ୍ତ ଓ ସଂଯମ ସହକାରେ ଉପରିସ୍ଥ ନେତା-ମାନଙ୍କ ଆଦେଶ ମାନି କାର୍ଯ୍ୟ କରିବାକୁ ପ୍ରତ୍ୟେକ ସ୍ୱେଚ୍ଛାସେବକଙ୍କୁ ସତ୍ୟ କରିବାକୁ ହେବ ଏବଂ ସେ ଏହି ମର୍ମର ପ୍ରତିଜ୍ଞା ପତ୍ରରେ ସ୍ୱାକ୍ଷର କରିବେ । ଭଲେଣ୍ଟିଅରମାନେ ସିପାହିଙ୍କ ପରି ପୋଷାକ ପିନ୍ଧିବେ ନାହିଁ, ହାତରେ ବଡ଼ ବଡ଼ ଠେଙ୍ଗା ଧରିବେ ନାହିଁ । ସାମାନ୍ୟ ଖଣ୍ଡିଏ ଖଣ୍ଡିଏ ଛୁଟି ଧରିପାରନ୍ତି । କିଛି ନ ଧଇଲେ ତାଙ୍କର ଭଲ । ମୋଟକଥା ପ୍ରତ୍ୟେକ ସ୍ୱେଚ୍ଛାସେବକ ଆପଣାକୁ ଶାନ୍ତ ସେନା ବୋଲି ମନେ କରିବା ଉଚିତ । ତାଙ୍କର ବାକ୍ୟ, ବ୍ୟବହାର, ଭାବଭଙ୍ଗୀ ସବୁଥିରେ ସେ ଲୋକଙ୍କ ମନରେ ଶାନ୍ତ ଓ ସହିଷ୍ଣୁତା ଜନ୍ମାଇବେ । ଯୁବକ ସ୍ୱେଚ୍ଛାସେବକମାନଙ୍କ ପକ୍ଷେ ଏ ବଡ଼ ସହଜ ସାଧନା ନୁହେଁ ସତ; ମାତ୍ର ନାନା ଘଟନାରେ ସ୍ୱେଚ୍ଛାସେବକମାନେ ଯେପରି ଧୀର ସ୍ଥିର ଅଚଳ ଅଟଳ ଭାବରେ କାର୍ଯ୍ୟ କରିବାର ଦେଖାଯାଉଛି ସେଥିରେ ସେମାନେ ଅସାଧ୍ୟ ସାଧନ କରିବେ ବୋଲି ସମ୍ପୂର୍ଣ୍ଣ ଆଶା କରାଯାଏ ।

× × ×

ମାଲବାରରେ ମୋପିଲା ବିଦ୍ରୋହର ପ୍ରକୃତ ହାଲ କଣ କହି ହେଉନାହିଁ । ତେବେ ଖବରକାଗଜମାନଙ୍କରେ ସରକାର ତରଫରୁ ଏସବୁ ଟେଲିଗ୍ରାମ ବା ରିପୋର୍ଟ ବାହାରୁଛି ସେଥିରୁ ଜଣାଯାଏ ଯେ ଏପର୍ଯ୍ୟନ୍ତ ବିଦ୍ରୋହ ସମ୍ପୂର୍ଣ୍ଣ ଶାନ୍ତ ହୋଇନାହିଁ । ଏଣେ ଦଳ ଦଳ ମୋପଲାଙ୍କର ମକଦ୍ଦମା ବିଚାର ହୋଇ କଠିନ ଦଣ୍ଡ ଦିଆଯାଉଛି । ବେଲାରିଠାରେ ମୋପଲାମାନଙ୍କୁ ଧରିଆଣି ଜମା କରି ଯାଉଅଛି । ଅଳ୍ପଦିନତଳେ ଶହେକରୁ ଅଧିକ ମୋପଲାଙ୍କୁ ମାଲଗାଡ଼ି ବୋଝାଇ କରି ସେହିଠାକୁ ଅଣା ଯାଉଥିଲା । ଗାଡ଼ି

୮୭ ମାଇଲ ବାଟ ଆସିଛି ଏହିସମୟରେ ଦେଖାଗଲା ଯେ ଏହି ମୋପଲମାନଙ୍କ ମଧ୍ୟରୁ ୫୬ ଜଣ ସେ ଗାଡ଼ିରେ ନିଶ୍ୱାସ ରୁଦ୍ଧ ହୋଇ ମରି ଯାଇଅଛନ୍ତି । ଅନ୍ୟମାନଙ୍କର ଚିକିତ୍ସା ହେଉ ହେଉ ଆଉ ଆଠଜଣ ମରିଗଲେ । ଏହି ମୋପଲାଙ୍କ ଉପରେ ଜଗୁଆଳି ପୋଲିସ ଫୌଜ ଥିଲେ । ମାତ୍ର ସେମାନେ ତ ମାଲ ନୁହନ୍ତି ବା ଛେଳି ମେଣ୍ଢା ନୁହନ୍ତି ଯେ ମୋପଲାଙ୍କ ସଙ୍ଗେ ମାଲ ଗାଡ଼ିରେ ବସିବେ । ସେମାନେ ଅଲଗା ମନୁଷ୍ୟଯିବା ଗାଡ଼ିରେ ବସିଥିଲେ । ମାଲଗାଡ଼ିରେ ମୋପଲାଙ୍କୁ ଖୁନ୍ଦିଦେଇ ସେମାନେ ପଳାଇ ନ ଯିବେ ବୋଲି ଦ୍ୱାର ଖୁବ ବନ୍ଦକରି ନିଶ୍ଚିନ୍ତ ରହିଲେ ।

ସରକାରଙ୍କ ହେପାଜତରେ ଆସାମୀମାନେ ମରିଗଲେ ବୋଲି ଏବେ ମାନ୍ଦ୍ରାଜ ସରକାର ଭାରି ବ୍ୟସ୍ତ । ଏପରି ଆକସ୍ମିକ ମୃତ୍ୟୁର କାରଣ ଅନୁସନ୍ଧାନ କରିବା ସକାଶେ ଗୋଟିଏ କମିଟି ନିଯୁକ୍ତ ହୋଇଗଲାଣି । ସେ କମିଟିରେ ୨।୩ ଜଣ ଦେଶୀ ଲୋକ ରଖି ସରକାର ଉଦାରତାର ବଡ଼ାଇ କଲେଣି । ଏଣେ ସରକାର ତରଫର କୌଣସି କୌଣସି ଖବରକାଗଜରେ କେହି ସ୍ୱର ଧରିଲେଣି କି ସେହି ମାଲଗାଡ଼ିରେ ଆଗରୁ ମୋପଲମାନେ ବୁହା ହେଉଥିଲେ । ଏଥର ସେ ମାଲଗାଡ଼ିରେ କେତେଦିନତଳେ କିରାସିନି ତେଲ ବୁହା ହୋଇଥିଲା । ସେହି କିରାସିନି ତେଲର ବାଷ୍ପ ଦୋଷରେ ଏ ଲୋକେ ମରିଗଲେ । ଦୋଷ କେଉଁବାଟେ କାହା ମୁଣ୍ଡରେ ଯିବ ଆଗରୁ ତାହାର ସୂଚନା ମିଳିଲାଣି । ଏହିପରି ମାଲଗାଡ଼ିରେ ମୋପଲମାନେ ବରାବର ବୁହା ହେଉଛନ୍ତି ବୋଲି ଏବେ ଜଣାଗଲା । ଏହିପରି ରେଲରେ ଆଉ କେବେ ଏମାନଙ୍କ ମଧ୍ୟରୁ କେହି ମରିଛନ୍ତି କି ଠିକଣା ମୁଣ୍ଡେ ପହଞ୍ଚିବା ବାଦ କେତେ ମରିଛନ୍ତି ତାହା ଜାଣିବାର ଉପାୟ ନାହିଁ । ଏଭଳି ଶିଆଳ, କୁକୁରଙ୍କ ପରି ମରିବା ଭାରତବାସୀଙ୍କ ଦେହସୁହା ହୋଇଗଲାଣି । ତେବେ ଆଉ ତଦନ୍ତ କରିବାକୁ ବୃଥା କମିଟି ଆଦି ସୁଆଙ୍ଗ କାହିଁକି ? ସତ କି ମିଛ କେଜାଣି କଲିକତାରେ ଅନ୍ଧକୂପ ହତ୍ୟାରେ ଏକା ରାତିକେ ୧୪୬ ଜଣରୁ ୧୨୩ ଜଣ ଇଂରେଜ ସିପାହି ମରି ଯାଇ ଥିଲେ ବୋଲି ଆଜକୁ ଦେଢ଼ଶହ ବର୍ଷହେଲା ଏ ଦେଶର ଇଂରେଜମାନେ ଗାଇ ହେଉଛନ୍ତି । କିନ୍ତୁ କାହିଁ ଦୁର୍ଭିକ୍ଷରେ, କାହିଁ ଶିକାରରେ, କାହିଁ ରେଲରେ, କାହିଁ ଜାଲିଆନାୱାଲାବାଗରେ, କାହିଁ ବା ଧାଣପଲ୍ଲାରେ ଏ ଦେଶ ଲୋକେ ଏଭଳି କେତେ ମରୁଛନ୍ତି ତାହାର ହିସାବ କାହିଁ ରହୁଛି କି କିଏ ରଖୁଛି ଏବଂ ସମୟରେ ପ୍ରକାଶ ପଡ଼ିବ ।

X X X

ଦକ୍ଷିଣ ଭିଜାଗାପଟନାରେ ଗୋଟିଏ ଡାକ୍ତରୀ ସ୍କୁଲ ଅଛି । ସେଠାର ଜଣେ ଛାତ୍ର ଦିନେ ଧଳା ଖଦଡ଼ଲୁଗାର ଟୋପି ପିନ୍ଧି ସେହି ସ୍କୁଲକୁ ଯାଇଥିଲେ । ସେଦିନ ସେଠା

ପିଲମାନଙ୍କର ପରୀକ୍ଷା ଥିଲା । ଛାତ୍ରର ମୁଣ୍ଡରେ ସ୍ୱଦେଶୀ ଟୋପି ଦେଖି ସ୍କୁଲର ଅଧ୍ୟକ୍ଷ ଭାରି ରାଗି ତାଙ୍କୁ ପରୀକ୍ଷାଘରୁ ବାହାର କରିଦେଲେ । ତହିଁପରଦିନ ସବୁ ପିଲାଏ ସେହିପରି ଟୋପି ପିନ୍ଧିଗଲେ । ସଙ୍ଗେ ସଙ୍ଗେ ସେ ସମସ୍ତଙ୍କୁ ସସ୍‌ପେଣ୍ଡ କରାଗଲା । ଏହାର ଦୁଇ ତିନିଦିନ ପରେ ଛାତ୍ରମାନଙ୍କ ପୋଷାକ ବିଷୟରେ ନୋଟିସ୍ ହୁକୁମ ବାହାରିଲା । କି ଲୁଗାରେ, କି ଢଙ୍ଗର କୁରୁତା, କୋଟ, ଟୋପି ପିଲାମାନେ ପିନ୍ଧିବେ । କୁରୁତାରେ କେତୋଟି ବୋତାମ ରହିବ ସେଥିରୁ କେତୋଟି ଲାଗିବ କେତୋଟି ମୁକୁଳା ରହିବ, କି ରଙ୍ଗର କି ଆକାରର ଜୋତା ପିଲାମାନେ ବ୍ୟବହାର କରିବେ ଏହିସବୁ ବିଷୟର ବହୁଳ ବିବରଣ ଏ ହୁକୁମରେ ଲେଖାଥିଲା । ଏବେ ପୁଣି ପିଲାମାନଙ୍କୁ ଧମକଚମକ ଦିଆଗଲା । ସ୍ୱଦେଶୀ ଧୋବଟୋପିକି କଳା କରିଦେଲେ ତାର ଦୋଷ ମେଣ୍ଟିଯିବ ବୋଲି ବୁଝି କେତେଜଣ ପିଲା ସେହିପରି କଲେ ଏବଂ ସ୍କୁଲ କର୍ତ୍ତୃପକ୍ଷଙ୍କୁ କ୍ଷମା ମାଗି ପୁନର୍ବାର ଭର୍ତ୍ତି ହୋଇଗଲେ । ଆଉ ୩୯ ଜଣ ପିଲା କୌଣସି ମତେ ସ୍କୁଲକୁ ଗଲେ ନାହିଁ । ସେମାନଙ୍କୁ ସ୍କୁଲରୁ ଡିସ୍‌ମିସ୍ କରି ଦିଆଯାଇଅଛି । ସେମାନେ ବର୍ତ୍ତମାନ ସ୍ଥାନୀୟ ସେବା ସମିତିରେ ଯୋଗଦେଇ କଂଗ୍ରେସ କାର୍ଯ୍ୟ କରୁଅଛନ୍ତି । ସ୍କୁଲର ଶିକ୍ଷକମାନେ ପାଠପଢ଼ାଇବା ଲୋକ । ସେମାନଙ୍କର ଏତେ ଗରରେ ଦୃଷ୍ଟି କାହିଁକି ? ଟୋପି, କୋତା, କୁରୁତା ସଙ୍ଗେ ପାଠର ବା କି ସମ୍ପର୍କ ? ଆଜିକାଲି ଶିକ୍ଷାବିଭାଗରେ ପାଠ ଅପେକ୍ଷା ଏହି ଶାଠର ମହିମା ଅଧିକ । ଭାରତୀୟ ଯୁବକମାନଙ୍କର ବର୍ତ୍ତମାନ ଆତ୍ମସମ୍ମାନ ଜ୍ଞାନ ହୋଇଅଛି । ସେମାନେ ବୃଥା ଅବମାନନା ସହିବାକୁ ପ୍ରସ୍ତୁତ ନୁହନ୍ତି । କେତେବର୍ଷ ତଳେ କଟକ ରେଭେନ୍‌ସା କଲେଜର ପ୍ରିନ୍‌ସପାଲ ହଲବାର୍ଡ ସାହେବ ଜୋତା ପିନ୍ଧି ନ ଯାଇ ଥିବାରୁ ଜଣେ ଛାତ୍ରକୁ ପରୀକ୍ଷା ମନ୍ଦିରରେ ପୂରାଇ ଦେଇ ନ ଥିଲେ । ସେତେବେଳେ ସେ କଥାକୁ ଅପମାନ ବା ବ୍ୟକ୍ତିଗତ ସ୍ୱାଧୀନତାରେ ଅପମାନ ବାଧା ବୋଲି କେହି ମନେ କରି ନଥିଲେ । ଆଜି ଆଉ ସେଦିନ ନାହିଁ । ଭାଇକାଗପାଟନାର ଛାତ୍ରମାନେ ଯାହାକଲେ ସେହିପରି ଘଟନାରେ ଭାରତର ଯେକୌଣସି ସ୍ଥାନର ଛାତ୍ରମାନେ ତାହାହିଁ କରିଥାନ୍ତେ । ତଥାପି ସବୁ ଛାତ୍ରଙ୍କର ଏପର୍ଯ୍ୟନ୍ତ ପୂର୍ବ ଗୋଲାମୀ ଭାବ ଛାଡ଼ି ନାହିଁ । ଭାଇକାଗପାଟନାର କେତେକ ଛାତ୍ର କ୍ଷମା ମାଗି ଟୋପିରେ କଳା ବୋଳିଲାପରି ଏବେ ସୁଦ୍ଧା କୌଣସି କୌଣସିଠାରେ କେତେକ ଛାତ୍ର ଦେଖାଯାଆନ୍ତି । ଯେଉଁମାନେ ଦେଶର ମୁଣ୍ଡନୁଆଁଇ ଜାତିର ମୁହଁରେ କାଳି ବୋଳିବାକୁ ବିମୁଖ ନୁହନ୍ତି ।

('ସମାଜ', ତା ୩ । ୧୨ । '୨୧)

# ରୁଚି ବଦଳିବା ଦରକାର

ଦେଶୀଲୁଗା ପ୍ରତି ସାଧାରଣଙ୍କର ଖୁବ୍ ଆଦର ଜନ୍ମିଛି ସତ; ମାତ୍ର ସବୁ ଦୃଷ୍ଟିରୁ ଏପର୍ଯ୍ୟନ୍ତ ତେତେ ମମତା ଜନ୍ମି ନାହିଁ । ଲୋକେ ଦେଶୀଲୁଗା ଖୋଜୁଛନ୍ତି । ମାତ୍ର ସବୁ ଦେଶୀଲୁଗା ହେଲେ ସେମାନଙ୍କ ମନକୁ ଭଲ ପାଉନ୍ତି । ଦେଶୀ ଖଦଡ଼ ମୋଟା ଲୁଗାକୁ ଅନେକଙ୍କର ମନ ଏପର୍ଯ୍ୟନ୍ତ ତେତେ ରସୁନାହିଁ । ଦେଖାଯାଉଛି ଏହି କାରଣରୁ କେତେ ଲୋକ ଦେଶୀ କଲଲୁଗାକୁ ବରଂ ପସନ୍ଦ କରୁଛନ୍ତି । ମାତ୍ର ସବୁ ଦୃଷ୍ଟିରୁ ମାୟାମମତା ଜନ୍ମିବାଯାଏ ସ୍ୱଦେଶୀଭାବ ପ୍ରକୃତ ମନକୁ ଅଧିକାର କରିଅଛି ବୋଲି କୁହାଯାଇ ନ ପାରେ । ଲୁଗା ବେଶ୍ ଲମ୍ବ ଓସାର ହେବ, ନାନାରଙ୍ଗର ଧଡ଼ି ସେଥିରେ ଦିଆ ଯାଇଥିବ ମୋଟକଥା ସବୁ ଅଂଶରେ ସଫା ବିଲାତି କଲଲୁଗା ପରି ହୋଇଥିବ । ତେବେ ତାକୁ ଚାରିଅଣା, ଆଠଅଣା ଟଙ୍କାଏ ଅଧିକ ଦେଇ ନେବାକୁ ଯେଉଁମାନେ ପ୍ରସ୍ତୁତ ସେମାନେ ସ୍ୱଦେଶୀ ନୁହନ୍ତି । ଅବଶ୍ୟ ଆମଦେଶ ଲୋକଙ୍କର ଅବସ୍ଥା ଏପରି ହୋଇଅଛି ଯେ ଅନେକଙ୍କୁ ମୋଟ ଲୁଗା ଖଣ୍ଡେ ଚପୁଡ଼ିବାକୁ କଷ୍ଟ ଲାଗୁଛି । ଏହିସବୁ ଗୋଲାମୀଭାବ ଏବେ ସୁଦ୍ଧା ଅନେକଙ୍କ ମନରୁ ସମ୍ପୂର୍ଣ୍ଣ ଛାଡ଼ି ନାହିଁ । ଯେଉଁମାନେ ଇଂରେଜୀପାଠ ପଢ଼ିଛନ୍ତି ବା ସରକାରୀ ନୌକରୀ କରୁଛନ୍ତି ସେହିମାନଙ୍କର ଖାଲି ଗୋଲାମୀଭାବ ନୁହେଁ, ସମଗ୍ର ଜାତିଟା ଊଣାଅଧିକେ କୌଣସି ନା କୌଣସି ବାଟରେ ଏହି ଗୋଲାମୀ ଭାବରେ ପଡ଼ିଯାଇଛି । ବାବୁମାନେ ଦେହ ଭିତରେ ଗୋଟାଏ ଗଞ୍ଜି ପିନ୍ଧୁଛନ୍ତି । ତା ଉପରେ କୁର୍ତ୍ତା ବା ସାର୍ଟ ତା ଉପରେ ହାତକଟା ବେକକଟା ଜାକେଟ, ତା ଉପରେ ଲେଉଟ ବହଳରେ ମୋଟା କୋଟ, କୁକୁର ବେକରେ ପଟି ବନ୍ଧା ହେଲାଭଳି ବେକରେ ପୁଣି ଗୋଟାଏ କଲର ବାନ୍ଧୁଛନ୍ତି, ମୁଣ୍ଡରେ ତେଲୁଣି ପରି ଗୋଟାଏ ଟୋପି ଦେଉଛନ୍ତି । ପୁଣି ଯେ ଯେତେ ବଡ଼ବାବୁ ସେ ସେତିକ ମୋଟା ଲୁଗାରେ ପାଇଜାମା ପିନ୍ଧୁଛନ୍ତି । ଚମଡ଼ାରେ ମୋଟା କମରପଟି ବାନ୍ଧୁଛନ୍ତି । ପାଦରେ ମୋଟାମୋଟା ମୋଜା ଲଗାଉଛନ୍ତି । ସେଥି ଉପରେ ପୁଣି କେଡ଼େ ଦର ଚଢ଼ାଉ ଯୋତା ମାଡ଼ୁଛନ୍ତି । ଯୋତାର ଗ୍ରୁଟକାଟ୍ ଏପରି ଯେ ତାହା ପାଦକୁ ଚାପି ଧରିବା ଦରକାର । ପାଦର ଆଙ୍ଗୁଠିସାକ ଚାପି ହୋଇ ରହିବ । ତାଳୁଠାରୁ ତଳିପା ପର୍ଯ୍ୟନ୍ତ ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗରେ ଏହିପରି ଯେତେ ଜିନଷ ଲାଗିଛି ସେସବୁ ଓଜନ କଲେ ବାଳେଶ୍ୱରୀ ଅଧମହଣ ପର୍ଯ୍ୟନ୍ତ ଧାପ ଦେଇପାରେ, ନହେଲେ ତ ରେଲ୍ କମ୍ପାନୀ

ତୃତୀୟଶ୍ରେଣୀ ଯାତ୍ରୀଙ୍କି ଯେ ଓଜନର ମାଲ ଗ୍ରୁଡ଼ ଦେଉଛନ୍ତି ଖୁବ୍‌କମରେ ସେତିକ ହେବ । ଏତେ ଓଜନ ଦେହରେ ବୋହିବାକୁ କାହିଁକ କାହାକୁ ଗରୁ ଲଗୁ ନାହିଁ ? ବରଂ ଏ ଦେଶର ଯେଉଁମାନେ ଏହିଭଳି ତୃତୀୟ ଶ୍ରେଣୀ ଯାତ୍ରୀଙ୍କ ଅଧିକାର ପାଇ ସ୍ୱାଭାବିକ ଯୋଗଆ ବଳଦ ହୋଇ ଗ୍ଲୁଲଛନ୍ତି ସେମାନେ ବାବୁ, ସେମାନେ ସାହେବ । ଏ ପୋଷାକ ପିନ୍ଧି ସେମାନଙ୍କ ମନରେ ଅହଂକାର କମ୍‌ନୁହେଁ । ସେମାନଙ୍କ ଦେଖାଦେଖି ଅନ୍ୟମାନେ ବି ସେହିପରି ଦେହଯାକ ଗୋଲାମ ଲଦନରେ ଢାଙ୍କିବାକୁ ପ୍ରସ୍ତୁତ । ଖରାଦିନରେ ଝାଳ ଗମ୍ ଗମ୍ ବହୁ, କାଠଛତ୍ରୁ ଫୁଟିଲି ପରି ପିଠିରେ ଘିମିରି ହେଉ, କୌଣସି ଅଙ୍ଗପ୍ରତ୍ୟଙ୍ଗ ଯେତେ ଗଲୁ କରୁ ପଛକେ ଶିଙ୍ଗୁ ନଖଯାଏ ଗୋଲାମି ଭାର ଲଦି ହୋଇଥିଲା ବେଳେ ତ କାହିଁ କେହି କିଛି ଅସୁବିଧା ଭୋଗ କରନ୍ତି ନାହିଁ ? ତେବେ ମନୁଷ୍ୟର ସ୍ୱାଭାବିକ ଲଜ୍ଜା ନିବାରଣ ଲାଗି ଯେ ଲୁଗାଖଣ୍ଡିକ ପିନ୍ଧିବା ନିତାନ୍ତ ଦରକାର ସେ ଟିକଏ ମୋଟାହେଲେ ଏତେ ଆପତ୍ତି କାହିଁକ ? ଏତେ ନାକଟେକା କାହିଁକ ?

ଲୋକକୁ ସମସ୍ତେ ଲୁଗା ପିନ୍ଧନ୍ତୁ । କିନ୍ତୁ ବିଲାତି କଳ ପ୍ରଭାବରେ ଅନେକଙ୍କର ସରୁ ସୂକ୍ଷ୍ମପ୍ରତି ଆଦର ଏତେ ଅଧିକ ହୋଇ ପଡ଼ିଛି ଯେ ବେଳେ ବେଳେ ଲୁଗା ପିନ୍ଧିବା ନ ପିନ୍ଧିବା ସେମାନଙ୍କ ପକ୍ଷେ ସମାନ ହୋଇପଡ଼େ । ମୋଟକଥା ବିଦେଶୀଭାବ ଓ ରଙ୍ଗଢଙ୍ଗର ଆମଦେଶ ଲୋକେ ଅନେକ ଏପରି ଅଧୀନ ହୋଇ ପଡ଼ିଛନ୍ତି ଯେ ସେମାନେ ଗୋଲାମି ବୋଝ ନିଜ ଅଙ୍ଗରେ ବୋହିବାକୁ ଗୌରବ ମଣୁଛନ୍ତି ଏବଂ ଏଣେ ସରୁଲୁଗା ପିନ୍ଧି ଆପଣାର ଲଜ୍ଜା ସରମ ପଦାରେ ପକାଇବାକୁ କୁଣ୍ଠିତ ନୁହନ୍ତି । ଏହିଭାବ ସମସ୍ତଙ୍କ ମନରୁ ସମ୍ପୂର୍ଣ୍ଣ ରୂପେ ନ ଗ୍ରୁଡ଼ିଲେ ସ୍ୱଦେଶୀ ସଫଳ ହେଲା ବୋଲି କୁହାଯିବ ନାହିଁ । ଅରଟରେ ସୂତାକଟା ଗ୍ଲୁଆଡ଼େ ବେଶ୍ ଗ୍ଲୁଲଲଣି, କ୍ରମେ ଅରଟର ପ୍ରସାର ଅଧିକ ହେଉଛି । ଦେଶୀଲୁଗାର ଗ୍ଲୁଲ ଦିନୁଁ ଦିନ ଅଧିକ ହେଉଛି । ମାତ୍ର ଲୋକଙ୍କ ମନର ଭାବ ସ୍ୱଦେଶୀ ନ ହେବାଯାଏ, ଖାଲି ଅରଟ ବା ତନ୍ତରେ ସ୍ୱଦେଶୀ ହୋଇ ପାରିବ ନାହିଁ । ପାଞ୍ଚଜଣ ଖଦଡ଼ ପିନ୍ଧୁଛନ୍ତି । ଖଦଡ଼ ପିନ୍ଧିବା ଗୋଟାଏ ଗ୍ଲୁଲ ହୋଇଗଲଣି । ନ ପିନ୍ଧିଲେ ଲୋକେ କଣ ବିଗ୍ୟରିବେ, ଏଭଳି ବିଗ୍ୟରି ଯେଉଁମାନେ ଖଦଡ଼ ପିନ୍ଧିବେ; ମାତ୍ର ମନରୁ ବିଦେଶୀ ଲୁଗା ପୋଷାକ ପ୍ରତି ଆଦର ମମତା ତୁଟି ନ ଥିବ ସେମାନେ କପଟାଗ୍ରହୀ ସ୍ୱଦେଶୀ । ତଥାପି ପାଠରେ ଅଛି, "ସ୍ତ୍ରୀ ଶୂଦ୍ର ପଣ୍ଡିତ ଚଣ୍ଡାଳେ, ତରିଲେ ସାଧୁସଙ୍ଗ ମେଳେ ।" ଅଭ୍ୟାସ କରୁ କରୁ ଏହି କପଟାଗ୍ରହୀମାନଙ୍କର ମନରୁ ବିଦେଶୀପ୍ରତି କ୍ରମେ ମାୟା ତୁଟିଯିବ ଏବଂ ସେମାନେ ଅଳ୍ପ ସମୟରେ ସଚ୍ଚା ସ୍ୱଦେଶୀ ହୋଇଯିବେ ।

ଯେଉଁମାନଙ୍କ ମନରେ ସଚ୍ଚା ସ୍ୱଦେଶୀଭାବ ଖେଳଣା କରୁଛି, ସେମାନେ ଲୁଗାର ଲମ୍ବ ଓସାର, ସରୁମୋଟ ଧଡ଼ିମୁହଁ ଆଦି କିଛି ଦେଖିବେ ନାହିଁ । ନିଜ ଘରେ ବା ଗାଁରେ ଯେତେ ସୂତା କଟା ହେଉଛି ସେଥିରେ ଯେପ୍ରକାର ଲୁଗା ଗାଁ ତନ୍ତୀ ତିଆରି କରି ଦେଇ ପାରନ୍ତି ତାହା ତାଙ୍କ ପକ୍ଷେ ପାଟ ପୀତାମ୍ବର ଅମ୍ଳାନ ବସ୍ତ୍ର । ସେ ଲୁଗା ମୋଟା ହେଉ, ଅଣ ଓସାର ହେଉ, ସେଥିରେ ଲଜ୍ଜା ନାହିଁ, ମାନହାନି ନାହିଁ । ମୋଟା ଯୋଗୁଁ ଚିପୁଡ଼ିବାକୁ ଅସୁବିଧା ହେଲେ ବେଶୀ ଲମ୍ବ ନକର । ଲଜ୍ଜା ନିବାରଣ ଲାଗି ଲମ୍ବା ଫେର କୁଞ୍ଚ କରିବା ଦରକାର ନାହିଁ । ଗୋରା ସାହେବମାନେ ଆଗେ ପାଦ ବୁଡ଼ାଇ ପାଇଜାମା ପିନ୍ଧୁଥିଲେ । ଏବେ ସେମାନଙ୍କ ମଧ୍ୟରୁ ଅନେକେ ଯେ ପାଇଜାମା ପିନ୍ଧୁଛନ୍ତି ସେଥିରେ ଆଣ୍ଠୁ ଲୁଚୁ ନାହିଁ । ତାଙ୍କ ଦେଖାଦେଖି ଆମଦେଶ ଲୋକେ ସେଇ ଶିକ୍ଷା ଧଇଲେଣି । ସେଥିରେ ମାନହାନି ନାହିଁ । ସେଟା ଗୋଲାମି ଅନୁକରଣ । କିନ୍ତୁ ଦେଶର ଲୁଗା ମୋଟା କମ ଲମ୍ବ ଓସାର ହେଲେ ଅରୁଚି ! ଯଥାର୍ଥରେ ସ୍ୱଦେଶୀ ଆଦି ଆମଦେଶ ପକ୍ଷରେ ମହାବ୍ୟାଧି ହୋଇ ପଡ଼ିଥିଲା । ଈଶ୍ୱରଙ୍କ କୃପାରୁ ମହାତ୍ମାଗାନ୍ଧିଙ୍କ ପ୍ରଭାବରେ ସେ ବ୍ୟାଧିର ଉପଶମ ହୋଇ ଆସିଲାଣି । ସେହି ବ୍ୟାଧି ଶେଷରେ ଏ ଅରୁଚିଟା ରହିଛି । ଏ ଅରୁଚି ଫସ୍ପର୍ଶି ଗଲାଗଲେ ଏ ଦେଶ ଲୋକଙ୍କର ନିଜ ପ୍ରକୃତି ନିଜ ବଳ ପ୍ରକାଶ ପାଇବ । ଏହାହିଁ ସ୍ୱଦେଶୀ ଏହାହିଁ ସ୍ୱରାଜ୍ୟ ।

('ସମାଜ', ତା ୩ । ୧୨ । ୨୧)

# ଶାନ୍ତିପୂର୍ଣ୍ଣ ଆନ୍ଦୋଳନ

ଏ ମାସ ୨୪ ତାରିଖ ଯୁବରାଜ କଲିକତା ଆସିବେ । ସେଦିନ ସେ ସହରରେ ହରତାଳ ନ କରାଇ ଦେବାଲାଗି ସରକାର ଲୋକେ ପ୍ରାଣପଣେ ଉଦ୍ୟମ କରୁଛନ୍ତି । ଦୋକାନ ହାଟବଜାର ବନ୍ଦ କଲେ ତୋପ ଗୁଳି ବନ୍ଧୁକ ଗୁଳିବ ବୋଲି ଧମକ ଦିଆ ଯାଉଛି । ଏଥିର ଫଳରେ କଲିକତାର କେତେ ମଜୁରିଦାର କାରବାରି ସହର ଛାଡ଼ି ଯାଉଥିବାର ସମ୍ବାଦ ମିଳୁଅଛି । ସରକାର ତରଫ ଲୋକେ କହନ୍ତି କି ଲୋକସାଧାରଣଙ୍କର ହରତାଳ କରିବାକୁ ଇଚ୍ଛା ନୁହେଁ । କେବଳ କଂଗ୍ରେସ ଓ ଖିଲାଫତ୍ ସ୍ୱେଚ୍ଛାସେବକଙ୍କ ଜୋର ଜବରଦସ୍ତିରେ ସେମାନେ ହାଟ ଦୋକାନ ଆଦି ବନ୍ଦ କରୁଅଛନ୍ତି । ଏପରି ଜୋର ଜବରଦସ୍ତି ଦ୍ୱାରା ଶାନ୍ତିଭଙ୍ଗ ଓ ଗୋଳମାଳ ହେବା ସମ୍ଭବ । ଏ ରଚନା ମିଥ୍ୟା ଓ ଅସମ୍ଭବ । କେବଳ ଗୁଳି ବା ହତିଆର ଚଳାଇବା ନିମନ୍ତେ ବାହାନା । ଗଲାମାସ ୧୭ ତାରିଖରେ କଲିକତାରେ ଯେ ହରତାଳ ହୋଇଥିଲା ସେଥିରେ ତ ଗୋରାମାନେ କାବା ହୋଇ ଯାଇଥିଲେ । ସେହି ଯୋଗୁଁ ଆଗାମୀ ୨୪ ତାରିଖ ଦିନକୁ ଏତେ ଭୟ । ମାତ୍ର ୧୭ ତାରିଖ ଦିନ କଂଗ୍ରେସ ବା ଖିଲାଫତ ସ୍ୱେଚ୍ଛାସେବକମାନେ କେଉଁଠାରେ ଶାନ୍ତି ଭାଙ୍ଗିଥିଲେ କି ? ଏବେ ତ ୨୪ ତାରିଖ ଦିନ ଏ ସ୍ୱେଚ୍ଛାସେବକମାନେ ଘରୁ ବାହାରିବେ ନାହିଁ ବୋଲି କଂଗ୍ରେସ କର୍ତ୍ତୃପକ୍ଷମାନେ ଆଦେଶ କରିଦେଇ ସାରିଲେଣି । କଲିକତାର ନେତାମାନେ ୨୪ ତାରିଖ ପୂର୍ବରୁ ଅହମ୍ମଦାବାଦ କଂଗ୍ରେସକୁ ଚାଲି ଯାଇଥିବେ । ଏଣେ ତ ମ୍ୟୁନିସିପାଲିଟି କାମ ବନ୍ଦ ନକରିବାକୁ ଅପଣା ଅଧୀନସ୍ଥ କର୍ମଚାରୀ ଓ ମଜୁରିଦାରମାନଙ୍କୁ ଧମକାଉଛନ୍ତି । ଦୋକାନ ଖୋଲି ରଖିବାଲାଗି ମ୍ୟୁନିସିପାଲିଟି ମାର୍କେଟର ଦୋକାନୀମାନଙ୍କ ଉପରେ ଜୋର ଦେଉଛନ୍ତି । ଗୋରାକଳା କେତେ ରାଜଭକ୍ତ ୨୪ ତାରିଖ ଦିନ ପୋଲିସ ସିପାହି ହୋଇ ଶାନ୍ତିରକ୍ଷା ନିମନ୍ତେ ତିଆରି ହୋଇଛନ୍ତି । ଦେଖାଯାଉ ସେଦିନ କଣ ହେଉଛି । "ଫଳେନ ପରିଚୀୟତେ ।"

('ସମାଜ', ତା ୧୦ । ୧୨ । ୨୧)



# ମଝିମଝିଆ ବୁଡ଼ି ମରନ୍ତି

ଓଡ଼ିଶାର କେତେକ ମଫସଲ ଅଞ୍ଚଳରେ ଇଉନିୟନ କମିଟିମାନ ବସିଅଛି । ପୁରୀ ଜିଲ୍ଲାର ସତ୍ୟବାଦୀ, ବାଣପୁର, ଭୁବନେଶ୍ୱରରେ ଲୋକମାନଙ୍କ ଆପତ୍ତି ସତ୍ତ୍ୱେ ଏବେ ସୁଦ୍ଧା ଏ କମିଟିମାନ ରହିଅଛି । କଟକ ଓ ବାଲେଶ୍ୱର ଜିଲ୍ଲାରେ ମଧ୍ୟ କେତେ ସ୍ଥାନରେ ଅଛି ଏବଂ ନୂଆ ନୂଆ କମିଟିମାନ ହେବାର ଆୟୋଜନ ବି ଚାଲିଛି । ଗରିବ ଲୋକଙ୍କ ପକ୍ଷେ ଏ କମିଟିସବୁ ଏକ ନୂତନ ଉତ୍ପାତ । ମଫସଲ ଲୋକେ ଚୌକିଦାରୀ ଟିକସ ଦାଉରେ ନାହିଁ ନାହିଁ ଡାକୁଛନ୍ତି । ସେ ବୋଝ ଉପରେ ଇଉନିୟନ ଟିକସ ପୁଣି ଲଳିତା ଝଡ଼ା । ଇଉନିୟନ ଟିକସ ଚୌକିଦାରୀ ଟିକସଠାରୁ ପାଞ୍ଚଗୁଣ ପର୍ଯ୍ୟନ୍ତ ହୋଇପାରେ । ମେଦିନୀପୁର ଜିଲ୍ଲାର ମଫସଲରେ ଏହିପରି ଅନେକ ଇଉନିୟନ କମିଟି ବସିଥିଲା । ସେ ଜିଲ୍ଲାର କାନ୍ଥି ସବଡିଭିଜନ ଲୋକେ ଏହି କମିଟିମାନଙ୍କ ବିପକ୍ଷରେ ଘୋର ଆପତ୍ତି ଉଠାଇଥିଲେ । ସରକାର କିଛି ନ ଶୁଣିବାରୁ ଶେଷକୁ ସେମାନେ ଟିକସ ବନ୍ଦ କଲେ । ଘରର ଚଳନ୍ତି ମାଲ କ୍ରୋକ ହେଲା । ବିନା ଆପତ୍ତିରେ ମାଲ ଛାଡ଼ିଦେଲେ । ମାତ୍ର ମାଲ ବୋହିବାକୁ କେହି କୁଲି ମିଳିଲେ ନାହିଁ କି ଶଗଡ଼ିଆ ରାଜି ହେଲେ ନାହିଁ । କାନ୍ଥି ସବଡିଭିଜନ ମଧ୍ୟରେ ସମସ୍ତେ ଏହିପରି ଜିଦ୍ଧ ଧରିଲେ ଯେ ଅଶୀ କି ନବେ ମାଇଲ ଦୂର ମେଦିନୀପୁର ସହରରୁ ଶଗଡ଼ ଅଣାଇ ମାଲ ବୋହିବାକୁ ପଡ଼ିଲା । ଶେଷକୁ ମେଦିନୀପୁରର ଶଗଡ଼ିଆମାନେ ଏ କାର୍ଯ୍ୟ କରିବାକୁ ମଙ୍ଗିଲେ ନାହିଁ । ଏଥିରେ କର୍ତ୍ତୃପକ୍ଷଙ୍କର ବୁଦ୍ଧି ହଜିଲା । ଏବେ କାନମୁଣ୍ଡ ଆଉଁଷି ଅନେକଙ୍କ ମାଲ ତାଙ୍କଦ୍ୱାରେ ଫେରାଇ ଦେଇଅଛନ୍ତି । କାନ୍ଥିରୁ ୟୁନିଅନ କମିଟିମାନ ଉଠାଇ ଦିଆଯାଇଅଛି । ଓଡ଼ିଶାର କୌଣସି କୌଣସି ଇଉନିୟନ କମିଟିର ଲୋକେ ପଡ଼ିଲେ ପଡ଼ିଲେ କେତେ ସମୟ କାନ୍ଥି ଲୋକଙ୍କ ଢଙ୍ଗ ଧରିଥିଲେ । ଶେଷଯାଏଁ ଦୃଢ଼ ହୋଇ ପାରିଥିଲେ ଫଳ ଅବଶ୍ୟ ପାଇଥାଆନ୍ତେ । କଥାରେ ଅଛି ମୂଢ଼େ ତରନ୍ତି, ଦୃଢ଼େ ତରନ୍ତି, ମଝିମଝିଆ ବୁଡ଼ି ମରନ୍ତି । ଏବେ ସୁଦ୍ଧା ବେଳ ଯାଇ ନାହିଁ । ଯଥାର୍ଥରେ ଯେଉଁ ସ୍ଥାନରେ ଇଉନିଅନ କମିଟି ଦରକାର ନାହିଁ ବୋଲି ସେଠା ଲୋକେ ମନେ କରନ୍ତି ଏବଂ ଇଉନିୟନ ଟିକସ ଦେବା ସାଧାରଣଙ୍କ ପକ୍ଷେ କଷ୍ଟସାଧ୍ୟ ସେଠାରେ ଏବେ ସୁଦ୍ଧା କାନ୍ଥି ଲୋକଙ୍କ ରାସ୍ତା ଧରାଯାଇପାରେ । ମାତ୍ର ସବୁବେଳେ ମନେ ରଖିବାକୁ ହେବ—"ମରୁ ଯେବେ ଡରୁ କାହିଁକି, ଡରୁ ଯେବେ କରୁ କାହିଁକି ?

('ସମାଜ' ତା ୧୦ । ୧୨ । ୨୧)

———

# ଶାନ୍ତି ଓ ସେବାଧର୍ମରେ ସ୍ୱରାଜ୍ୟ

ଅସହଯୋଗ ଆନ୍ଦୋଳନର ପ୍ରଧାନ ଅଗ୍ରଣୀ ନେତାମାନେ ଏକ ଏକ ହୋଇ ଏଥିମଧ୍ୟରେ ଗିରଫଦାର ହେଲେଣି । ମହମ୍ମଦଆଲ୍ଲି ସୌକତଆଲ୍ଲିଙ୍କ ପରେ ଲାଲା ଲଜପତ ରାୟ, ପଣ୍ଡିତ ମୋତିଲାଲ ନେହେରୁ ଧରା ହୋଇଛନ୍ତି । ହୁଏତ ଆମ୍ଭମାନଙ୍କର ଏ କାଗଜ ପାଠକମାନଙ୍କର ହାତରେ ପଡ଼ିଲାବେଳକୁ ଏ ଦୁଇ ନେତାଙ୍କର ଦଣ୍ଡବିଧାନ ହୋଇ ସାରିଥିବ । ମହାତ୍ମାଗାନ୍ଧିଙ୍କୁ ଛାଡ଼ିଦେଲେ ପଞ୍ଚପାଣ୍ଡବଙ୍କ ମଧ୍ୟରୁ ଆଉ ରହିଲେ କେବଳ ଦେଶବନ୍ଧୁ ଚିତ୍ତରଞ୍ଜନ । ମହାତ୍ମାଗାନ୍ଧି ତ ସ୍ୱାଭାବିକ ଅଟଳ ଅଚଳ; କିନ୍ତୁ ଚିତ୍ତରଞ୍ଜନ ଯେ ଧୈର୍ଯ୍ୟ, ଦମ୍ଭ ଓ ବୀରତ୍ୱ ଦେଖାଇଅଛନ୍ତି ତାହାର ପଟାନ୍ତର ନାହିଁ । ଏଥିମଧ୍ୟରେ ତାଙ୍କର ପୁଅ, ସ୍ତ୍ରୀ, ଭଉଣୀ ଗିରଫଦାର ହେଲେଣି । ତାଙ୍କ ସଙ୍ଗୀମାନେ ଗଲେଣି । ପରିବାରର ଲୋକ ଗଲେ । ଅକାତରରେ ସେ ଏ ସମସ୍ତ ଘଟଣା ଦେଖୁଛନ୍ତି ଏବଂ ନିର୍ଭୀକ ଭାବରେ କାର୍ଯ୍ୟ ଚଳାଇଛନ୍ତି । କଲିକତାର ଛାତ୍ରସମାଜ ଓ ବଙ୍ଗଳାର ଯୁବକମାନଙ୍କୁ ସେ ଉପସ୍ଥିତ ଶାନ୍ତି ସଂଗ୍ରାମରେ ଯୋଗ ଦେବାଲାଗି ଆହ୍ୱାନ କରିଛନ୍ତି । ତାଙ୍କ ଲେଖାରୁ ପ୍ରକାଶ ଯେ କେବଳ କଲିକତା ସହରରେ ହଜାର ଲୋକ ସ୍ୱେଚ୍ଛାସେବକ ଦଳଭୁକ୍ତ ହୋଇଛନ୍ତି । କଲିକତାର ଘଟଣା ଯେପରି ତୀବ୍ରଗତିରେ ଚାଲିଛି ସେଥିରେ ପ୍ରତିଦିନ ଶହ ଶହ ସ୍ତ୍ରୀ ପୁରୁଷ ସ୍ୱେଚ୍ଛାସେବକ ହେଉଛନ୍ତି । ପ୍ରତ୍ୟେକ ପ୍ରଦେଶକୁ ଶୀଘ୍ର ହେଉ ବା ବିଳମ୍ବରେ ହେଉ କଲିକତାର ପଥ ଅନୁସରିବାକୁ ହେବ । ଦୃଢ଼ ଓ ପ୍ରବଳ ଶାନ୍ତିସେନା ସଜ୍ଜିତ କରିବାକୁ ହେବ । ଯୁଦ୍ଧ କ୍ରମେ ଲାଗି ଆସିଲା । ଉତ୍କଳବାସୀ ଏତିକବେଳୁ ଜାଗ୍ରତ ହୁଅ, ଶାନ୍ତିସେନା ଦଳରେ ନାମ ଲେଖାଅ । ଯେତେ ବିପଦ ପଡ଼ୁ ବା ସରକାର ତରଫରୁ ଘୋର ଜବରଦସ୍ତି ହେଉ କାହିଁରେ ବିଚଳିତ ହୁଅ ନାହିଁ, ଶାନ୍ତିଭଙ୍ଗ କର ନାହିଁ । ସବୁ ସହିବାକୁ ପ୍ରସ୍ତୁତ ହୁଅ । ଶାନ୍ତି ଓ ସେବାଧର୍ମରେ ସ୍ୱରାଜ୍ୟ ମିଳିବ ।

('ସମାଜ', ତା ୧୦ । ୧୨ । ୨୧)

---

# ସ୍ୱରାଜ୍ୟପାଇଁ ଶ୍ରମଜୀବୀ

ନଭେମ୍ବର ୩୦ ତାରିଖରେ ବିହାର ପ୍ରଦେଶ ଅନ୍ତର୍ଗତ ଝରିଆଠାରେ ଭାରତୀୟ ଶ୍ରମଜୀବୀମାନଙ୍କର ସମ୍ମିଳନୀ ହୋଇଥିଲା । ଏ ସମ୍ମିଳନୀର ପ୍ରଥମ ଅଧିବେଶନ ଗତବର୍ଷ ବମ୍ବେଇଠାରେ ହୋଇଥିଲା, ଲାଲା ଲଜପତ୍‌ରାୟ ସଭାପତି ହୋଇଥିଲେ । ଏଥର ଝରିଆ-ଠାରେ ବମ୍ବେଇ ଶ୍ରମଜୀବୀମାନଙ୍କର ନେତା ବାପଟିଷ୍ଟା ସଭାପତିର ଆସନ ଗ୍ରହଣ କରିଥିଲେ । ଭାରତର ଭିନ୍ନ ଭିନ୍ନ ଅଞ୍ଚଳରୁ ପ୍ରାୟ ୬୦ ହଜାର ଶ୍ରମଜୀବୀ ଝରିଆ ସମ୍ମିଳନୀରେ ଯୋଗ ଦେଇଥିଲେ । ଝରିଆ ଭାରତବର୍ଷର ଏକ ପ୍ରଧାନ କୋଇଲଖଣି । ସେଠାରେ ଗୋରା ସାହେବ ଏବଂ ଏ ଦେଶ ଲୋକ ଅନେକ ମାଲିକଙ୍କର କାରଖାନା ଅଛି । ଶ୍ରମଜୀବୀମାନଙ୍କର ସେଠାରେ ମହାସଭା ହେବ ବୋଲି ଶୁଣି ଏହି ମାଲିକମାନେ ଆଗରୁ ବଡ଼ ଚିନ୍ତିତ ଥିଲେ । ସେମାନେ ନାନାପ୍ରକାର ଗୋଳ ଓ ଶାନ୍ତିଭଙ୍ଗର ଆଶଙ୍କା କରୁଥିଲେ । ଶ୍ରମଜୀବୀ ମହାସଭା ସେଠାରେ କରାଇ ନ ଦେବା କାରଣ ସରକାରଙ୍କଠାରେ ଦରଖାସ୍ତ କରିଥିଲେ । ଯାହା ହେଉ ଦୁଇଦିନ ସମ୍ମିଳନୀ ବସି କାର୍ଯ୍ୟ ଅତି ସୁଚାରୁରୂପେ ନିର୍ବିଘ୍ନରେ ସମ୍ପନ୍ନ ହୋଇଅଛି । ମାଲିକମାନଙ୍କ କମିଟିର ସଭାପତି ପାଟିନ୍‌ସନ୍ ସାହେବ ଏ ସଭାରେ ଯୋଗ ଦେଇଥିଲେ; ବକ୍ତୃତା କରିଥିଲେ । ସଭାର ଶାନ୍ତିଶୃଙ୍ଖଳା ଦେଖି ସେ ସନ୍ତୁଷ୍ଟ ଥିବାର ପ୍ରକାଶ କରିଅଛନ୍ତି । ଶାନ୍ତିଭଙ୍ଗ କରିବା ସାଧାରଣ ଭାରତବାସୀର ପ୍ରକୃତି ନୁହେଁ । ଏହା ତାହାର ଧର୍ମ ବିରୁଦ୍ଧ । ଦୁଃଖର କଥା, ସରକାର ବୃଥାରେ ନାନା ଘଟଣାରେ ଶାନ୍ତିଭଙ୍ଗର ଆଶଙ୍କା କରି ତନ୍ନିବାର ପ୍ରତିବିଧାନ ଆଗରୁ ସାବଧାନ ହୋଇ ଯେ ବ୍ୟବସ୍ଥା କରନ୍ତି ତଦ୍ଦ୍ୱାରା ହିଁ ଶାନ୍ତିଭଙ୍ଗ ହୁଏ । ପୁଣି କୌଣସି କାରଣରୁ ଦବାଇବା ଲାଗି ଯେ ଆୟୋଜନ ହୁଏ ସେଥିରେ ରୋଗର ଯନ୍ତ୍ରଣାରୁ ଚିକିତ୍ସାର ଯନ୍ତ୍ରଣା ବଳପଡ଼େ । ପଞ୍ଜାବ ଅତ୍ୟାଚାର, ଦଶପଲ୍ଲା ମେଳି, ମୋପଲା ବିଦ୍ରୋହ ଆଦି ପ୍ରତ୍ୟେକ ଘଟଣାରେ ଏହାହିଁ ଦେଖାଯାଉଅଛି । "ବିଷସ୍ୟ ବିଷମୌଷଧଂ" ସରକାରଙ୍କର ନୀତି । ମାତ୍ର କୌଣସି କାରଣରୁ ଶରୀରରେ ବିଷାକ୍ତ ଦୋଷ ପ୍ରକାଶ ପାଇଲେ ରସାୟନଦ୍ୱାରା ତାହାର ଉପଶମ କରିବା ବିଚକ୍ଷଣ କବିରାଜର କାର୍ଯ୍ୟ । ଅସହଯୋଗ ନୀତି ଏହି ରସାୟନ ପ୍ରୟୋଗ, ଶାନ୍ତି ଏହାର ମୂଳମନ୍ତ୍ର । ଅସହଯୋଗ ଆନ୍ଦୋଳନରୁ ଶାନ୍ତି ଅନ୍ତରିତ ହେଲେ ଏ ଆନ୍ଦୋଳନ ଲୋପ ପାଇବ । ରାଜନୀତି କ୍ଷେତ୍ରରେ

ଏ ପ୍ରକାର ଶାନ୍ତିପୂର୍ଣ୍ଣ ରଣାତ୍ମକ ଚେଷ୍ଟା କେବେ କୌଣସି ଦେଶରେ ହୋଇନାହିଁ । ବିଶେଷତଃ ୟୁରୋପର ଦେଶମାନଙ୍କରେ ଲୋକଙ୍କ ପ୍ରତି ଏହା ବୁଦ୍ଧିର ଅଗମ୍ୟ । ତେଣୁ ଇଂରେଜ ସରକାର ଏ ଆନ୍ଦୋଳନର ଶାନ୍ତିଶୀଳତାରେ ପହିଲେ ବିଶ୍ୱାସ କରୁ ନ ଥିଲେ । ଅନେକ ସରକାରୀ ତରଫ ଲୋକେ କେତେ ଘଟଣାରେ କହିବାର ଶୁଣାଅଛୁ କି ଶାନ୍ତିପୂର୍ଣ୍ଣ ଅସହଯୋଗ କେବଳ ଗୋଟାଏ ବାହାନା । ଶେଷରେ ଉପଦ୍ରବ ଓ ଶାନ୍ତିଭଙ୍ଗ ଘଟାଇବା ଏ ଆନ୍ଦୋଳନର ଉଦ୍ଦେଶ୍ୟ । ଏଥିମଧ୍ୟରେ ସରକାରଙ୍କର ଏ ଧାରଣା ବଦଳିବାର ଉଚିତ ଥିଲା । ଅସହଯୋଗୀମାନଙ୍କ ଉପରେ ବହୁ ଜୋରଜୁଲୁମ କରାଯାଉଛି । ସେମାନଙ୍କ ମୁଖ୍ୟ ନେତାମାନଙ୍କୁ ଟାଣିଓଟାରି ଜେଲ ଦିଆଯାଉଛି । ତଥାପି ଏସବୁ ଘଟଣାରେ ଲୋକେ ଯେପରି ସ୍ଥିର ଓ ଅବିଚଳିତ ଅଛନ୍ତି, ତାହା ଦେଖି ସରକାରଙ୍କର ଯେବେ ମତ ନ ବଦଳିଥାଏ ତେବେ ସେ ମତ କେବେ ବଦଳିବ ନାହିଁ ।

ବିଶେଷତଃ ବମ୍ବେଇ ଗୋଳମାଳରେ ମହାତ୍ମାଗାନ୍ଧି ଯେ ପ୍ରଣାଳୀ ଓ ପ୍ରକ୍ରିୟାରେ ଶାନ୍ତି ଆଣିଲେ ସେଥିରେ ଘୋର ନାସ୍ତିକର ମଧ୍ୟ ବିଶ୍ୱାସ ଜନ୍ମିବ । ସେଥିରେ ଯେବେ ଅସହଯୋଗର ଶାନ୍ତି ମୂଳମନ୍ତ୍ର ବୋଲି ସରକାରଙ୍କର ବିଶ୍ୱାସ ନ ହୁଏ ତେବେ କହିବାକୁ ହେବ ଯେ ହୁଏତ ସରକାର କିଛି ବୁଝି ପାରୁନାହାନ୍ତି, ନ ହେଲେ ବୁଝିଲେ ମଧ୍ୟ ତାହା ସ୍ୱୀକାର କରିବାକୁ ରାଜି ନୁହନ୍ତି । ଖୁବ୍ ସମ୍ଭବ ଏପରି ସ୍ୱୀକାର କରିବା ବ୍ୟୁରୋକ୍ରାସି ବା ନୌକରସାହୀର ସ୍ୱାର୍ଥରେ ହାନି ବୋଲି ସେମାନେ ମନେକରନ୍ତି । ଜୋର ଜବରଦସ୍ତି ଓ ଅସ୍ତ୍ରଶସ୍ତ୍ର ବଳର ଭୟ ଦେଖାଇ ସେମାନେ ଏତେଦିନ ଆପଣାର କ୍ଷମତା ରଖି ଆସିଅଛନ୍ତି । ବଳ ସେମାନଙ୍କର ସମ୍ବଳ । ଯଥାର୍ଥ ହେଉ ବା ଅଯଥାର୍ଥ ହେଉ ଏହି ବଳପ୍ରୟୋଗ ନିମନ୍ତେ ଗୋଟାଏ କିଛି କାରଣ ଦେଖାଇବା ତ ନିତାନ୍ତ ଦରକାର; ତେଣୁ ଅସହଯୋଗୀ-ମାନେ ଶାନ୍ତି ଭାଙ୍ଗୁଛନ୍ତି, ବିଶୃଙ୍ଖଳା ଘଟାଉଛନ୍ତି, ଲୋକସାଧାରଣଙ୍କୁ ଧମକାଉଛନ୍ତି ଏବଂ ସେମାନଙ୍କ ବ୍ୟବସାୟରେ ବାଧା ଜନ୍ମାଉଛନ୍ତି—ଅସହଯୋଗୀମାନଙ୍କ କାର୍ଯ୍ୟରେ ଏହିପରି ନାନାପ୍ରକାର ଦୋଷାରୋପ କରାଯାଉଛି । ପ୍ରତ୍ୟେକ ଅସହଯୋଗୀ ଶାନ୍ତ ସିଦ୍ଧ ମହାପୁରୁଷ ବୋଲି କେହି ଦାବୀ କରୁନାହିଁ । ଅସହଯୋଗ ନାମରେ କୌଣସି କୌଣସିଠାରେ କେତେକ ମନ୍ଦପ୍ରକୃତିର ଲୋକ ଶାନ୍ତିଭଙ୍ଗ କରିପାରନ୍ତି । କେହି କେହି ମଧ୍ୟ କରୁଛନ୍ତି । ମାତ୍ର ଏହା ଅସହଯୋଗ ଧର୍ମ ନୁହେଁ । ଏପରି ଘଟଣା କଦାଚିତ କୌଣସିଠାରେ ହେଲେ ଅସହଯୋଗୀମାନେ ସେଥିରେ ଲଜ୍ଜିତ ଏବଂ ଦୁଃଖିତ ଓ ସଙ୍ଗେ ସଙ୍ଗେ ପ୍ରତିବିଧାନ କରି ଉପଦ୍ରବ ଶାନ୍ତ କରୁଛନ୍ତି । ସରକାର ଏ ସମୁଦାୟ ଦେଖି ଶୁଣି ଅସହଯୋଗୀମାନଙ୍କ ଶାନ୍ତି

ଓ ସଂଯମରେ ବିଶ୍ୱାସ କରୁ ନ ଥିବା ସ୍ଥଳେ ତାଙ୍କର ଉଦ୍ଦେଶ୍ୟ ଲୋକେ ବେଶ୍ ବୁଝି ପାରୁଛନ୍ତି । ମହାତ୍ମାଗାନ୍ଧି ବା ୟାକୁବ ହୋସେନ ବା ସେହିପରି ଅନ୍ୟ କେହି ନେତା ମାଲବାର ଜିଲ୍ଲାକୁ ଯାଇଥିଲେ ଦୁଇଦିନରେ ମୋପଲା ବିଦ୍ରୋହ ଶାନ୍ତ ହୋଇଥାନ୍ତା, ଏହା କି ସରକାର ଜାଣନ୍ତି ନାହିଁ ? ତଥାପି ସେମାନଙ୍କ ମଧ୍ୟରୁ କାହାରିକୁ ସେଠାକୁ ଛାଡ଼ିଲେ ନାହିଁ । ଅଥଚ ଏପର୍ଯ୍ୟନ୍ତ ମୋପଲା କାଣ୍ଡ ଶେଷ ହେଲା ନାହିଁ । ଦେଖାଯାଉଛି ଏ ଦେଶରେ ଶାନ୍ତିଭଙ୍ଗ ଉପଦ୍ରବ ଆଦି ଲଗାଇ ରଖିବା ଯେପରି ସରକାରଙ୍କ କାର୍ଯ୍ୟ ପ୍ରଣାଳୀର ଉଦ୍ଦେଶ୍ୟ । କାରଣ ଏପରି ଲାଗି ନ ରହିଲେ ତାଙ୍କ ବଳପ୍ରୟୋଗ ଲାଗି ସୁଯୋଗ ମିଳିବନାହିଁ ଏବଂ ବଳପ୍ରୟୋଗ ବନ୍ଦହେଲେ ବ୍ୟୁରୋକ୍ରାସି ବା ନୌକରସାହି ଦଳର ଶକ୍ତି ଶେଷ ହେବ ।

ଯାହାହେଉ କୋଇଲାଖଣିର ମାଲିକମାନଙ୍କ ଅନୁରୋଧ ମତେ ସରକାର ଝରିଆରେ ଶ୍ରମଜୀବୀମାନଙ୍କ ମହାସଭା ବନ୍ଦ କରିଦେଇଥିଲେ । ମାଲିକ ଓ ମଜୁରିଦାରମାନଙ୍କ ମଧ୍ୟରେ କିପରି ଭଲ ଭାବ ରହିବ ଏ ସମ୍ବନ୍ଧରେ ବିଚାର କରାଯାଇଥିଲା । ଏ ସଭା ପୁଣି ସ୍ୱରାଜ୍ୟ ନିର୍ଦ୍ଧାରଣ ଗ୍ରହଣ କରିଥିଲେ । ସ୍ୱରାଜ୍ୟ ନ ହେଲେ ଶ୍ରମଜୀବୀମାନଙ୍କ ଅବସ୍ଥାର ଉନ୍ନତି ହେବନାହିଁ । ବର୍ତ୍ତମାନ ଢଙ୍ଗରେ ଶାସନ ଚାଲୁଥିବା ଯାଏ ମଜୁରିଦାରମାନଙ୍କର ଦୁଃଖ ଦୂରହେବ ନାହିଁ କିମ୍ବା ସେମାନେ ଭଲ ଖାଇବାକୁ ପିନ୍ଧିବାକୁ ପାଇବେ ନାହିଁ । ଦେଶର ମୂଲିଆ ମଜୁରିଦାରମାନେ ଏକଥା ଭଲରୂପେ ବୁଝିଛନ୍ତି । ତେଣୁ ଅସହଯୋଗ ଆନ୍ଦୋଳନରେ ଦେଶର ଶିକ୍ଷିତ ଓ ଧନୀଲୋକଙ୍କର ଆଦର ବିଶ୍ୱାସ ଥାଉ ବା ନ ଥାଉ ଶ୍ରମଜୀବୀ, ମଜୁରିଦାର, ଚାଷୀ, ବ୍ୟବସାୟୀ ପ୍ରଭୃତି କୋଟି କୋଟି ନରନାରୀ ସ୍ୱରାଜ୍ୟନିମନ୍ତେ ଜୀବନ ଦେବାକୁ ପ୍ରସ୍ତୁତ ହୋଇଅଛନ୍ତି । ଏହିମାନେ ଦେଶର ଶକ୍ତି, ସମାଜର ମୂଳଦୁଆ । ଆଜିଯାଏ ଏମାନେ ଚପି ରହିଛନ୍ତି ।

କି ସରକାର, କି ରାଜା ମହାରାଜା, କି ଦେଶର ଶିକ୍ଷିତ ବା ଅନ୍ୟାନ୍ୟ କ୍ଷମତାଶାଳୀ ଲୋକ, ସମସ୍ତେ ଏହିମାନଙ୍କ ଉପରେ ବସି ଆପଣାକୁ ବଡ଼ ମଣି ଆସୁଛନ୍ତି । ଆଜିଯାଏ ଏ ଦେଶରେ ରାଜନୈତିକ ବା ଅନ୍ୟ ଯେ କିଛି ଆନ୍ଦୋଳନ ହେଉଥିଲା ତାହାସବୁ ଏ ନିମ୍ନସ୍ତରର ଲୋକଙ୍କୁ ଛୁଇଁ ନ ଥିଲା । ସେମାନଙ୍କ ଆଡ଼େ କାହାରି ତେତେ ନଜର ପଡ଼ୁ ନ ଥିଲା । ପଞ୍ଚତିରିଶ ବର୍ଷ ହେଲା ଭାରତ ଜାତୀୟ ମହାସମିତି ହୋଇ ଆସିଥିଲା । ଏ ଲୋକେ କଂଗ୍ରେସ ବା ଭାରତ ମହାସମିତିର ନାମ ଶୁଣି ନ ଥିଲେ । ମାତ୍ର ଏବେ ସ୍ୱରାଜ୍ୟ ଆନ୍ଦୋଳନଦ୍ୱାରା ଏମାନେ କଂଗ୍ରେସକୁ ନିଜର ବୋଲି ଜାଣିଛନ୍ତି ।

କଂଗ୍ରେସ ନିର୍ଦ୍ଧାରଣମାନଙ୍କୁ ଜାତିର ଆଜ୍ଞା ବୋଲି ଗ୍ରହଣ କରୁଛନ୍ତି ଏବଂ କଷ୍ଟସହ୍ୟ କ୍ଷତିଗ୍ରସ୍ତ ହୋଇ ସେ ଆଜ୍ଞା ପାଳନ ନିମନ୍ତେ ପ୍ରସ୍ତୁତ ଅଛନ୍ତି । ଏହାହିଁ ଆମ୍ଭମାନଙ୍କର ଫଳସିଦ୍ଧିର ଲକ୍ଷଣ । ସରକାର ତରଫରୁ ନାନା ତାଡ଼ନା ପ୍ରରୋଚନା ସତ୍ତ୍ୱେ ଶାନ୍ତିରକ୍ଷି କାର୍ଯ୍ୟ କରି ପାରିଲେ ସ୍ୱରାଜ୍ୟପ୍ରାପ୍ତି ସୁନିଶ୍ଚିତ ।

('ସମାଜ', ତା ୧୦ । ୧୨ । ୨୧)

— ——

# ଆଇନ ବେଆଇନ ସରକାରଙ୍କ ତୁଣ୍ଡରେ

ବିହାର ଓଡ଼ିଶା ଗଭର୍ଣ୍ଣମେଣ୍ଟ ଏ ମାସ ୧୦ ତାରିଖରେ ଏ ପ୍ରଦେଶରେ ଅସହଯୋଗ ଆନ୍ଦୋଳନ ଦବାଇବା ନିମନ୍ତେ ଏକ ହୁକୁମ ଜାରି କରିଅଛନ୍ତି । ସ୍ୱରାଜ୍ୟ, ଅସହଯୋଗ ବା ଖିଲାଫତ୍ ସମ୍ପର୍କରେ ଯେ ସମସ୍ତ ସ୍ୱେଚ୍ଛାସେବକ ବିହାର ଓଡ଼ିଶାରେ ଗଠିତ ହୋଇଛନ୍ତି ବା ହେବେ ସେ ସମୁଦାୟ ବେଆଇନ ଦଳ ବୋଲି ଏ ଆଦେଶରେ ଘୋଷଣା କରାଯାଇଅଛି । ଏ ଆଦେଶ ବାହାରକୁ ନ ବାହାରୁଣୁ ୧୦ ତାରିଖ ସକାଳେ ସୂର୍ଯ୍ୟ ଉଦୟ ନହେଉଣୁ ଏ ପ୍ରଦେଶର ସହର ଓ ମଫସଲରେ ଥିବା କଂଗ୍ରେସ ଅଫିସ, ସ୍ୱରାଜ୍ୟ ଆଶ୍ରମ; ଖିଲାଫତ୍ ଅଫିସମାନ ଖାନତଲାସି ଆରମ୍ଭ ହୋଇଗଲା । ଏପରି ହୁକୁମରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ବଙ୍ଗଳା, ଆସାମ, ଯୁକ୍ତପ୍ରଦେଶ, ଦିଲ୍ଲୀ, ପଞ୍ଜାବ ପ୍ରଭୃତିରେ ଏଥିପୂର୍ବରୁ ଏଭଳି ହୁକୁମ ଜାରି ହୋଇଥିଲା । ସରକାରଙ୍କ ପ୍ରତ୍ୟେକ କାର୍ଯ୍ୟ କଳରେ ଚାଲେ । କଳର ଗୋଟାଏ ଚକ ଘୂରିଲେ ଆସ୍ତେ ଆସ୍ତେ ସମୁଦାୟ ଚକ ଅରେ ଘୂରିଯିବ । ଏହି ବିଧାନରେ ବିହାର ଓଡ଼ିଶା ଜାହିଁକି ଅନ୍ୟାନ୍ୟ ବାକି ସବୁ ପ୍ରଦେଶରେ ଏଭଳି ହୁକୁମ ଶୀଘ୍ର ଜାରି ହେବ ବୋଲି ସ୍ପଷ୍ଟ ଜଣାଯାଇଥିଲା । ବିହାର ଓଡ଼ିଶା ବାଦ ପୁଣି ଏଥିମଧ୍ୟରେ ମାନ୍ଦ୍ରାଜ ପ୍ରଦେଶରେ ଏହିପରି ହୁକୁମ ବାହାରି ଅଛି । ଏହି ଡିସେମ୍ବର ଶେଷସୁଦ୍ଧା ଅନ୍ୟାନ୍ୟ ପ୍ରଦେଶରେ ହୋଇଯିବ । ଆମ୍ଭମାନଙ୍କର ସେ ସମ୍ବନ୍ଧରେ ବିଶେଷ କିଛି କହିବାର ନାହିଁ । କହି ବା ଫଳ କଅଣ ? ଆଇନ ବେଆଇନ ତ ସରକାରଙ୍କ ତୁଣ୍ଡରେ । ବ୍ୟବସ୍ଥାପକ ସଭା ବୋଲି ଯେ ଏକ ଜିନିଷ ଅଛି ସେ କେବଳ "ବାଇଗଣ ବାଡ଼ିରେ ଗୋବରମୁଣ୍ଡ ଆପଣା" । ୧୯୧୮ ସାଲର ଯେଉଁ ଆଇନ ବଳରେ ଭିନ୍ନ ଭିନ୍ନ ପ୍ରଦେଶରେ ସରକାରମାନେ ଏପରି ହୁକୁମ ଜାରି କରୁଅଛନ୍ତି ତାହା ଦେଶର ଲୋକ ସାଧାରଣଙ୍କର ଅନୁମୋଦିତ ନୁହେଁ । ଉପସ୍ଥିତ ହୁକୁମ ସନ୍ଦର୍ଭରେ ବିହାର ଓଡ଼ିଶା ସରକାର କହିଛନ୍ତି କି ସ୍ୱେଚ୍ଛାସେବକ ଦଳ ଦେଶର ନାନାସ୍ଥାନରେ ଅଶାନ୍ତି ଉପଦ୍ରବ ଘଟାଉଛନ୍ତି । ଅନେକ ନିରୀହ ଲୋକଙ୍କୁ ଅଯଥା କଷ୍ଟ ଦେଉଛନ୍ତି ଏବଂ ନାନାପ୍ରକାରେ ଶାସନରେ ବାଧା ଜନ୍ମାଇବାର ଉପକ୍ରମ କରୁଅଛନ୍ତି । ଅସହଯୋଗ ବା ଖିଲାଫତ୍ ସ୍ୱେଚ୍ଛାସେବକଙ୍କ କାର୍ଯ୍ୟକଳାପ ଭଲକରି ଦେଖିଲେ ସରକାରଙ୍କ ଏସବୁ ଅଭିଯୋଗ ଯଥାର୍ଥ ବୋଲି ବୁଝାଯାଇ ନ ପାରେ । ବରଂ ଅସହଯୋଗ କର୍ମୀମାନେ ଅନେକ ସ୍ଥାନରେ ରକ୍ତବୁହା ମାଡ଼ ଖାଇଛନ୍ତି । ତଥାପି ପାଟି ଫିଟାଇ ନାହାନ୍ତି । ଅସହଯୋଗ

ଅଠା କେତେ ନିରୀହ ଲୋକଙ୍କ ମୁଣ୍ଡରେ ଲଗାଇ କୌଣସି କୌଣସି ସ୍ଥଳେ ପୁଲିସ ପ୍ରରୋଚନାରେ ମିଥ୍ୟା ମକଦ୍ଦମା ହୋଇଛି । ମୋଟକଥା ମୂଳରୁ ଅସହଯୋଗକୁ ଦବାଇବା ଲାଗି ଗୌଣ ଏବଂ ଅପ୍ରତ୍ୟକ୍ଷ ଭାବରେ ଯାହା କରାଯିବାର କରାଯାଇଅଛି । ଶେଷକୁ ଯେତେବେଳେ ଦେଖାଗଲା ଯେ ଏସବୁ ଉପାୟରେ ଆନ୍ଦୋଳନ ଦବିବାର ନୁହେଁ ସେତେବେଳେ ସରକାର ଆଉ ମାନମର୍ଯ୍ୟାଦା ନ ଜାଣି ନ୍ୟାୟ ଅନ୍ୟାୟ ନ ବିଚାରି ସ୍ୱେଚ୍ଛାସେବକ ଦଳକୁ ବେଆଇନୀ ବୋଲି ଘୋଷଣା କଲେ । ଏ ସ୍ୱେଚ୍ଛାସେବକ ଦଳ ଏପର୍ଯ୍ୟନ୍ତ ମୋଟାମୋଟି କି କାର୍ଯ୍ୟ କରିଛନ୍ତି ? ଲୋକମାନଙ୍କୁ ଅରଟରେ ସୂତା କାଟିବାକୁ ପ୍ରବର୍ତ୍ତାଇଛନ୍ତି । ଖଦଡ଼ ଲୁଗାର ପ୍ରଚାର କରିବାକୁ ଚେଷ୍ଟା କରିଛନ୍ତି; ନିଶାଖିଆ ଲୋକଙ୍କୁ ନିଶା ଖାଇବାରୁ ଗୋଡ଼ହାତ ଧରି ନିବର୍ତ୍ତାଇବାକୁ ଉଦ୍ୟମ କରିଛନ୍ତି । ଗ୍ରାମପଞ୍ଚାୟତ ବସାଇଛନ୍ତି ଏବଂ ଗ୍ରାମରେ କଳହ ବିବାଦ ନିଜ ମଧ୍ୟରେ ମେଣ୍ଟାଇବା ଲାଗି ଲୋକମାନଙ୍କୁ ପରାମର୍ଶ ଦେଇଛନ୍ତି । ଏସବୁ ମଧ୍ୟରେ କେଉଁଟି ବେଆଇନ କାର୍ଯ୍ୟ ? କେଉଁଟିରେ ଶାସନ ପରିଚାଳନାରେ ବାଧା ଘଟୁଛି ? ଗୋଟି ଗୋଟି କରି ଏସବୁ ବିଷୟରେ ପଚାରିଗଲେ ସରକାର ବା ତାଙ୍କ ତରଫ ଲୋକେ କୌଣସିଟିକୁ ନିନ୍ଦା କରି ନ ଥାନ୍ତେ ବରଂ ପ୍ରତ୍ୟେକଙ୍କର ମୌଖିକ ସହାନୁଭୂତି ଦେଖାଇ ଥାଆନ୍ତେ । ମାତ୍ର ଏସବୁ କାର୍ଯ୍ୟଦ୍ୱାରା ଗୌଣଭାବରେ ସରକାରଙ୍କ ଶାସନରେ ଯେ ବାଧା ଘଟୁଛି ଏହା ନିଶ୍ଚୟ । ଅବକାରୀ ବିଭାଗ ଏବଂ ଷ୍ଟାମ୍ପ ଓ କୋର୍ଟଫିସ୍ ବିଭାଗର ଆୟ କମିବା ଦ୍ୱାରା ସରକାରଙ୍କର ଚିନ୍ତା ହେବାର କଥା । ସ୍ୱଦେଶୀ ପ୍ରଚାରରେ ତ ଏଠାରୁ ବିଲାତ ପର୍ଯ୍ୟନ୍ତ ସମସ୍ତଙ୍କର ଭାବନା । ଏ ଅବସ୍ଥାରେ ସରକାର କୌଣସିମତେ ଅସହଯୋଗ ମୁଣ୍ଡରେ ଦୋଷଲଦି ଏ ଆନ୍ଦୋଳନକୁ ଚପାଇବାର ଉଦ୍ୟମ କରିବାରେ ଆଶ୍ଚର୍ଯ୍ୟ କିଛି ନାହିଁ । ସେ ଏପରି କରିବେ ବୋଲି ପୂର୍ବରୁ ବିଲକ୍ଷଣ ଅନୁମାନ କରାଯାଇଥିଲା । ଅସହଯୋଗୀମାନେ ସେଥିନିମନ୍ତେ ବୋଧହୁଏ ପ୍ରସ୍ତୁତ ଅଛନ୍ତି । କି ଅସହଯୋଗୀ କି ସହଯୋଗୀ ଏ ଦେଶର ଜନସାଧାରଣଙ୍କ ପ୍ରତିନିଧିମାନେ ଭାରତ ଜାତୀୟ ମହାସମିତିର ଆରମ୍ଭରୁ ବା ତହିଁ ପୂର୍ବରୁ ଇଂରେଜ ସରକାରଙ୍କ ଶାସନ ପ୍ରଣାଳୀରେ ପରିବର୍ତ୍ତନ ଆବଶ୍ୟକ ବୋଲି ବରାବର କହି ଆସୁଛନ୍ତି । ଏହା ଯଥାର୍ଥରେ ବୁ'ରୋକ୍ରାସୀ ବା ନୌକରସାହିର ରାଜତ୍ୱ । ଏ ଦେଶର ଲୋକ ପ୍ରତିନିଧିମାନେ ନାନା ଘଟନାରେ ଏହି ନୌକରସାହିକୁ ଏକ ପ୍ରକାର ବେଆଇନ ଦଳ ବୋଲି କହିଥାନ୍ତି । ଫଳରେ ବର୍ତ୍ତମାନ ଏହା ଦେଖାଯାଉଛି ଯେ ନୌକରସାହି ଜାତୀୟ କର୍ମୀମାନଙ୍କୁ ବେଆଇନ ଦଳଭୁକ୍ତ ବୋଲି କହୁଛନ୍ତି ଏବଂ ଲୋକ ସାଧାରଣଙ୍କ ପ୍ରତିନିଧିମାନେ ନୌକରସାହିକୁ ବେଆଇନ ବା ଅନ୍ୟାୟ ଦଳ ବୋଲି କହୁଛନ୍ତି । କାହା

କଥା ଠିକ୍ ? ଅବଶ୍ୟ ନୌକର ସାହେବ ଜୋର ଅଛି । ଆଇନ ନାମରେ ଏବଂ ସୁଶାସନ ନାମରେ ସେମାନେ ସେ ଜୋରକୁ ପ୍ରୟୋଗ କରି ପାରନ୍ତି । ଏତେଦିନ ତାହାହିଁ କରି ଆସୁଛନ୍ତି । ମାତ୍ର ଲୋକ ସାଧାରଣଙ୍କ ପକ୍ଷରେ ସେପରି ଜୋର ନାହିଁ । ସେମାନଙ୍କର ଜୋର କେବଳ ନ୍ୟାୟ ଓ ଧର୍ମର ଜୋର । ଉପସ୍ଥିତ ଅସହଯୋଗ ଆନ୍ଦୋଳନରେ ଏହି ଉଭୟ ପକ୍ଷ ଜୋରର କଷାକଷ ଚାଲିଛି । ଦେଶର କର୍ମୀମାନେ ଧର୍ମବଳରେ ବଳୀୟାନ ହୋଇ ନୌକରସାହିର ବଳକୁ ଭ୍ରୂକ୍ଷେପ କରୁ ନାହାନ୍ତି । ସେମାନଙ୍କର ବିଶ୍ୱାସ ଯେ ଏ ବାହ୍ୟବଳ ଧର୍ମବଳ ଆଗରେ ବେଶିଦିନ ତିଷ୍ଠି ପାରିବ ନାହିଁ । ଯେପରି ଦେଖାଯାଉଛି ସରକାରିଙ୍କ ଏ ଦମନ ଉଦ୍ୟମ ଫଳରେ ଆନ୍ଦୋଳନର ଗତି କ୍ରମେ ଅଧିକ କ୍ଷିପ୍ର ହେଉଅଛି । ଆଗେ ସ୍ୱେଚ୍ଛାସେବକ ଦଳ ସେପରି ସୁଗଠିତ ହୋଇଥିଲେ କି ନାହିଁ ସନ୍ଦେହ । ମାତ୍ର ସରକାରଙ୍କ ହୁକୁମ ଜାରିପରେ ଅଧିକ ସଂଖ୍ୟାରେ ଲୋକ ନାମ ଲେଖାଉଛନ୍ତି । ଦେଶର ପ୍ରଧାନ ପ୍ରଧାନ ନେତାମାନେ ଜେଲ୍ ଯିବାଦ୍ୱାରା ସକଳ ଶ୍ରେଣୀର ଲୋକଙ୍କ ମନରେ ବିରକ୍ତି ଆସିଅଛି, ଏପରିକି ଯେଉଁମାନେ ସହଯୋଗୀ ବୋଲି ପରିଚୟ ଦେଇ ଏତେଦିନ ସରକାରଙ୍କ ପକ୍ଷରେ ଚାଲୁଥିଲେ ସେମାନେ ମଧ୍ୟ ଏ ଦମନ ନୀତିର ସମର୍ଥନ କରୁନାହାନ୍ତି । ଆନ୍ଦୋଳନର ପ୍ରଥମରେ ମହାତ୍ମାଗାନ୍ଧୀଙ୍କ ଅନୁରୋଧ ସତ୍ତ୍ୱେ ଯେଉଁ ଓକିଲ ଏବଂ ସ୍କୁଲ କଲେଜ ଛାତ୍ରମାନେ ବାହାରି ଆସିପାରି ନ ଥିଲେ ଆଜି ଦେଖାଯାଉଛି, ବଙ୍ଗ ଦେଶରେ ସେମାନେ ସ୍କୁଲ କଲେଜ ଖାଲିକରି ଏବଂ କଚେରି ଛାଡ଼ି ଚାଲି ଆସୁଛନ୍ତି । ସରକାର କୌଣସି ଦମନ ବିଧାନ ଜାରି କଲାବେଳେ ସାଧାରଣ ଲୋକ ହିତର ଦୋହାଇ ଦେଇଥାନ୍ତି । "ସଂଯତ ଏବଂ ଚିନ୍ତାଶୀଳ" ସଂପ୍ରଦାୟର ମତ ଓ ସହାନୁଭୂତିକୁ ଆପଣାର ଗୋଟାଏ ବଳ କରି ଧରିଥାନ୍ତି । ଆମ୍ଭେମାନେ ପଚାରୁ ଉପସ୍ଥିତ ଦମନ ନୀତିକୁ ଲୋକସାଧାରଣ କିମ୍ବା "ସଂଯତ ଓ ଚିନ୍ତାଶୀଳ" ଦଳ ସମର୍ଥନ କରୁଛନ୍ତି କି ?

('ସମାଜ' ତା ୭ । ୧୨ । ୨୧)

---

# ଉତ୍କଳବାସୀଙ୍କ ପ୍ରତି ନିବେଦନ

ଅସହଯୋଗ ଆନ୍ଦୋଳନ ଏବେ ସନ୍ଧି ସ୍ଥଳରେ ପହଞ୍ଚିଅଛି । ପ୍ରଥମେ ପ୍ରଥମେ କେଉଁ କେଉଁ ସ୍ଥାନୀୟ କର୍ମଚାରୀ ଏ ଆନ୍ଦୋଳନକୁ ଦବାଇବାଲାଗି ଲୋକଙ୍କୁ ଧମକ ଚମକ ଦେଖାଉଥିଲେ । ଠାଏ ଠାଏ କେଉଁ କେଉଁ ଜୋର ଜବରଦସ୍ତି ମଧ୍ୟ କରୁଥିଲେ । ପରେ କର୍ମୀମାନଙ୍କ ମୁଖବନ୍ଦର ବ୍ୟବସ୍ଥା ହେଲା । ବର୍ତ୍ତମାନ ଶାନ୍ତିରକ୍ଷା ଓ ସୁଶାସନ ନାମରେ ସାନବଡ଼ କଂଗ୍ରେସକର୍ମୀ ଓ ନେତାମାନଙ୍କୁ ଗିରଫ କରାଯାଉଛି । ଆଲିଭାଇମାନେ ଆଗରୁ ଜେଲ ଯାଇଥିଲେ । ଏବେ ପଣ୍ଡିତ ମୋତିଲାଲ, ଲାଲା ଲଜପତ, ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ପରି ନେତାମାନେ ବନ୍ଦୀହୋଇ ସାରିଲେଣି । ସ୍ତ୍ରୀ ବାଳକ ଯୁବକ କଂଗ୍ରେସ କର୍ମୀ ଓ ସ୍ୱେଚ୍ଛାସେବକମାନେ ଧରା ହେଉଛନ୍ତି ; ସେମାନେ ହସି ହସି ଜେଲ ଯାଉଛନ୍ତି । ପାଞ୍ଚଜଣ ଜେଲଗଲେ ପଚିଶଜଣ ତାଙ୍କ ଜାଗାରେ ଆସି କାର୍ଯ୍ୟ କରିବାକୁ ତିଆରି ହୋଇ ଯାଉଛନ୍ତି । ଏହା ଶୁଭଲକ୍ଷଣ ।

ଉତ୍କଳ ଦେଶରେ ମଧ୍ୟ ଅସହଯୋଗ ଆନ୍ଦୋଳନ ସମ୍ପର୍କରେ ଆଦ୍ୟରୁ ଧରପଗଡ଼ ଚାଲିଛି । କେତେ ଲୋକଙ୍କ ଉପରେ ମିଥ୍ୟାରେ ମାମଲା ମୋକଦ୍ଦମା ହୋଇଛି । କେତେ କର୍ମୀଙ୍କର ମୁଖ ବନ୍ଦ କରାଯାଇଛି । କେତେଜଣ ମଧ୍ୟ ଜେଲ ଯାଇଛନ୍ତି । ଏଥି ମଧ୍ୟରେ ଏ ମାସ ୧୦ ତାରିଖ ଉତ୍କଳ ପ୍ରଦେଶର ସହର ମଫସଲର ସ୍ୱରାଜ୍ୟାଶ୍ରମ, କଂଗ୍ରେସ ଅଫିସ ଓ କେତେକ କର୍ମୀଙ୍କ ଘର ଖାନତଲାସ ହୋଇଯାଇଅଛି । ସୁଖର କଥା ଏହାଦ୍ୱାରା କୌଣସିଠାରେ ଶାନ୍ତିଭଙ୍ଗ ଘଟିନାହିଁ କିମ୍ବା କେଉଁ କର୍ମୀ ପଛଘୁଞ୍ଚା ଦେଉନାହାନ୍ତି ।

ଅସହଯୋଗ ଆନ୍ଦୋଳନ ଧର୍ମଯୁଦ୍ଧ ବୋଲି ଆଦ୍ୟରୁ କୁହାଯାଉଛି । ଶାନ୍ତି ଏହାର ମୂଳମନ୍ତ୍ର । ସ୍ୱଦେଶୀ ଏଥିର ପ୍ରଧାନ ଆୟୁଧ । ସ୍ୱରାଜ୍ୟ ଏଥିର ଫଳସିଦ୍ଧି । ଏ ତପସ୍ୟାରେ ଭାରତବାସୀଙ୍କ ମନର ବଳ, ଧର୍ମରେ ବିଶ୍ୱାସ ଓ ଦେଶପ୍ରତି ଭକ୍ତିର ପରୀକ୍ଷା ହେବ । ମହାପ୍ରଭୁ ବରଦେବା ପୂର୍ବରୁ ସମସ୍ତଙ୍କୁ ଏହିପରି ପରୀକ୍ଷା କରିଥାଆନ୍ତି, ଏ ପରୀକ୍ଷା ପାର ହୋଇଗଲେ ଫଳଲାଭ ସୁନିଶ୍ଚିତ ।

ଉତ୍କଳବାସୀ ନରନାରୀ, ଏତେବେଳେ ଦେଶର ଡାକ ଶୁଣିବ ନାହିଁକି ? ବଙ୍ଗଳା ପଞ୍ଜାବ, ଗୁଜରାଟ ପ୍ରଭୃତି ଭାରତର ଭିନ୍ନ ଭିନ୍ନ ଅଞ୍ଚଳରେ ଆମର ଭାଇ ଭଉଣୀମାନେ

ଯେପରି ଶତ ଶତ ସଙ୍ଖ୍ୟାରେ ଦେଶସେବା ନିମନ୍ତେ ଅଗ୍ରସର ହେଉଛନ୍ତି, ସ୍ୱେଚ୍ଛାସେବକ ଦଳରେ ନାମ ଲେଖାଉଛନ୍ତି, ଉତ୍କଳରୁ ସେପରି ବାହାରିବେ ନାହିଁ କି ?

ଉତ୍କଳ ଛାତ୍ରସମାଜ, ଏତେବେଳେ ନିଶ୍ଚିନ୍ତହୋଇ ବସିରହି ବହିପଢ଼ିବା ତୁମ୍ଭମାନଙ୍କ ପକ୍ଷେ ଶୋଭନୀୟ କି ? ଭାରତର ମହାଜାତୀୟ ଆନ୍ଦୋଳନରେ ଉତ୍କଳ ଏତେଦିନେ ଯୋଗ ଦେଉଛି, ଏ କ୍ଷେତ୍ରରେ ଜାତିର ମାନ ରଖିବା ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ ନୁହେଁ କି ? ଯେଉଁମାନେ ଉତ୍କଳରେ ସ୍ୱରାଜ୍ୟ ଆନ୍ଦୋଳନ ଆରମ୍ଭ କରିଛନ୍ତି ସେମାନେ ସବୁ ବିପଦ ଆପଦକୁ ଛାତି ପତାଇ ଦେଇ ରହିଛନ୍ତି । ସେମାନେ ଜେଲ୍ ଯାଉଥିବେ; ଅନ୍ୟମାନେ ନିଶ୍ଚିନ୍ତ ହୋଇ ଦେଖୁଥିବେ; ଏହା କି ସୁନ୍ଦର ? ଏହା କି କର୍ତ୍ତବ୍ୟ ?

ଶତ ଶତ ସହସ୍ର ସହସ୍ର ଦଳ ଦଳ ହୋଇଆସ; ଅଉ ବିଗିରିକୁ କାଳନାହିଁ । ସ୍ତ୍ରୀ ପୁରୁଷ ବୁଢ଼ା ଯୁବା ବାଳକ ସମସ୍ତଙ୍କର ବର୍ତ୍ତମାନ ସ୍ୱେଚ୍ଛାସେବକ ଦଳରେ ନାମ ଲେଖାଇବା ଦରକାର । ସ୍ୱେଚ୍ଛାସେବକମାନଙ୍କର ବିଦ୍ୟା, ବିଭବ ବା ଅନ୍ୟ କୌଣସି ପ୍ରକାର ଯୋଗ୍ୟତା ବିଶେଷ ଲୋଡ଼ା ନାହିଁ । ସ୍ୱେଚ୍ଛାସେବକ କେବଳ ନିଜେ ଶାନ୍ତଶୀଳ ହେବେ; ଅନ୍ୟମାନଙ୍କର ଶାନ୍ତିରକ୍ଷା କରିବେ; କାହାରି ପ୍ରତି ମନରେ, କାର୍ଯ୍ୟରେ ବା କଥାରେ ହିଂସା ବା ଦ୍ୱେଷ କରିବେ ନାହିଁ । ଏଥିରେ କାହାକୁ ଡରିବାକୁ ହେବନାହିଁ । ଜେଲ୍‌ଭୟ ଛାଡ଼ିବାକୁ ହେବ ।

"ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ
ତ୍ରାୟତେ ମହୋତୋ ଭୟାତ୍"

ଏ ଅହିଂସାଧର୍ମ ମହାଭୟ ଓ ବିପଦରୁ ତ୍ରାଣ କରିବ । ଏହାହିଁ ସ୍ୱରାଜ୍ୟ ପ୍ରାପ୍ତିର ଏକମାତ୍ର ପନ୍ଥା ।

ମୋର ଏହି ସବିନୟ ନିବେଦନ, ଉତ୍କଳବାସୀ ଏ କ୍ଷେତ୍ରରେ ଯେପରି କେହି ଦେଶ, ଜାତି ଓ ଧର୍ମପ୍ରତି ଆପଣାର କର୍ତ୍ତବ୍ୟ ନ ଭୁଲନ୍ତୁ ।

('ସମାଜ' ତା ୧୭ । ୧୨ । ୨୧)

---

# କଂଗ୍ରେସ ବାର୍ତ୍ତା ଦେଶବାସୀଙ୍କ ପ୍ରତି

ଏ ମାସ ୧୦ ତାରିଖ ଓଡ଼ିଶାର ଭିନ୍ନ ଭିନ୍ନ ଜିଲାର ସହର ଓ ମଫସଲରେ ଥିବା ସ୍ୱରାଜ୍ୟାଶ୍ରମ ଓ କଂଗ୍ରେସ ଅଫିସମାନ ଏବଂ କୌଣସି କୌଣସି କଂଗ୍ରେସ କର୍ମିଙ୍କ ଅଫିସ ଘର ଆଦି ଖାନତଲାସ ହୋଇଯାଇଅଛି । ଗତ ନ ପାହୁଣୁ ପୁରୀର ଜିଲା ମାଜିଷ୍ଟ୍ରେଟ, ପୋଲିସ ସାହେବ, ପୋଲିସ ଫୌଜ ସଙ୍ଗେ ଘେନି ସତ୍ୟବାଦୀ ସ୍କୁଲରେ ମୋର ରହିବା ଘର ଦ୍ୱାରେ ଉପସ୍ଥିତ । କନେଷ୍ଟବଲମାନେ ଲମ୍ବା ଲାଠିମାନ ଧରି ସୁସଜ୍ଜିତ । ସ୍କୁଲରହିତା ଗୃହପାଖେ ଘେରି ରହି ପିଲାମାନଙ୍କୁ ପ୍ରାତଃସ୍ନାନ କରିବାକୁ ଛାଡ଼ି ଦେଲେନାହିଁ । ଘର ଖାନତଲାସ ହେବବୋଲି ପୋଲିସ ଇନସପେକ୍ଟର ଓ୍ୱାରେଣ୍ଟ ଦେଖାଇବା ମାତ୍ରେ ସବୁଘର ଖୋଲିଦିଆଗଲା । ଖାନତଲାସି ଆରମ୍ଭ ପ୍ରଥମେ ମୋ ରହିବାଘରେ । ଖୁବ୍ ସମ୍ଭବ ଶାନ୍ତି-ଭଙ୍ଗର ଆଶଙ୍କା କରି ମେଜେଷ୍ଟର ଓ ପୋଲିସ ସାହେବମାନେ ଏପରି ଦଳବଳରେ ଆସିଥିଲେ । ଘର ଖାନତଲାସି ଶୁଣିଲେ ଆଗେ କେତେ କେତେ ଲୋକ ବିଚଳିତ ହୋଇ ଯାଉଥିଲେ । ମାତ୍ର ସତ୍ୟବାଦୀ ବିଦ୍ୟାଳୟର ଶିକ୍ଷକ ଓ ଛାତ୍ର ଏପରିକି ଆଠ ଦଶ ବରଷର ପିଲାମାନେ ମୋ ଘରକୁ କେହି ବିଶିଷ୍ଟ ବନ୍ଧୁ ଆସିବାଭଳି ଏ ଘଟଣାକୁ ମନେକରି ଯେ ଯାହା କାର୍ଯ୍ୟରେ ଲାଗିଥିଲେ । ମୋ ଘର ଖାନତଲାସି ଲାଗିଥାଏ । ପ୍ରାଦେଶିକ କଂଗ୍ରେସ କମିଟିର ଏକ ବୈଠକ ବସିବାର କଥାଥିବାରୁ ମୁଁ ପୋଲିସିଙ୍କ ଜିମା ଘର ଛାଡ଼ିଦେଇ କଟକ ଆସିଲି । କଟକରେ ପହଞ୍ଚି ଶୁଣେତ କଟକ ସ୍ୱରାଜ୍ୟାଶ୍ରମ ଓ ପ୍ରାଦେଶିକ କମିଟି ଅଫିସରେ ସେହି ଘଟନା । ଗତ ନ ପାହୁଣୁ ପୋଲିସ ଫୌଜ ଆଶ୍ରମ ଘେରି ଯାଇଥିଲେ । ସେମାନେ ମଧ୍ୟ ଶସ୍ତ୍ର ସୁସଜ୍ଜିତ ହୋଇ ଆସିଥିଲେ । ଓଡ଼ିଶାର ଜିଲା ଏବଂ ସବ୍‌ଡିଭିଜନ ସହରମାନଙ୍କରେ ଏହିପରି ଘଟନା ହୋଇଥିବାର ସମ୍ବାଦ ସଙ୍ଗେ ସଙ୍ଗେ ଟେଲିଗ୍ରାମଦ୍ୱାରା ମିଳିଲା । ପରେ ଜଣାଗଲା ଯେ ନିତାନ୍ତ ମଫସଲ ପଡ଼ାଗାଁର ସ୍ୱରାଜ୍ୟାଶ୍ରମ ସୁଦ୍ଧା ଖାନ୍-ତଲାସ ହୋଇଅଛି । କୌଣସିଠାରେ କଂଗ୍ରେସକର୍ମୀ ବା ଜନସାଧାରଣ ବିଚଳିତ ହୋଇ ନ ଥିବା ପ୍ରଶଂସାର ବିଷୟ । ବୋଲିବା ବାହୁଲ୍ୟ ଯେ ଏହିପରି ପୋଲିସ ଫଉଜମାନଙ୍କ ସାଜସଜ୍ଜା ପ୍ରସଙ୍ଗରେ ଏ ଦେଶର ଲୋକଙ୍କୁ ଏତେକାଳ ଧମକାଇ ଚମକାଇ ରଖାଯାଇଅଛି । ଏଣିକି ସେ ଦିନ ଗଲାଣି । ଲୋକଙ୍କର ଆଖି ଫିଟିଲାଣି । ମୋହ ଭାଙ୍ଗିଲାଣି । ସ୍ତ୍ରୀ ଏବଂ ବାଳକମାନେ ସୁଦ୍ଧା ଦେଶର କାର୍ଯ୍ୟକରି ଜେଲ ଯିବାକୁ ପ୍ରସ୍ତୁତ ହେଲେଣି । ନିର୍ଭୀକ ଏବଂ ଅକୁଣ୍ଠିତ ଭାବରେ ଅନେକେ ଯାଉଛନ୍ତି । ମାତ୍ର ଉତ୍କଳଦେଶର କୌଣସି କୌଣସି

ସ୍ଥାନର ପଲ୍ଲିବାସୀ ଏ ଖାନତଲସ ଖବର ପାଇ ସସ୍ତ ଓ ଖ୍ତ ହୋଇଥିବା ଆଶ୍ଚର୍ଯ୍ୟ ନୁହେଁ । ମାତ୍ର ଦେଶବାସୀଙ୍କର ଏହି ବୃଥାଭୟ ଭାଙ୍ଗିବାକୁ ହେବ, ଏ ଭୟ ଥିବାଯାଏ ସ୍ୱରାଜ୍ୟ ମିଳିବ ନାହିଁ । ଖାନତଲାସ କରି କଂଗ୍ରେସ ସମ୍ପର୍କୀୟ ସବୁ କାଗଜପତ୍ର ପୁଲିସ ଜବତ୍ କରି ନେଇଯାଇ ଅଛନ୍ତି । କାଗଜପତ୍ର ଛଡ଼ା ଆଉ କିଛି ନେଇ ନାହାନ୍ତି । ଏହାଦ୍ୱାରା କଂଗ୍ରେସ କାର୍ଯ୍ୟରେ ବାଧା ଘଟିନାହିଁ ବା ଘଟିବ ନାହିଁ । କାଗଜପତ୍ର କଥା ଛାଡ଼ । କଂଗ୍ରେସ କାର୍ଯ୍ୟ କରୁଥିବା ଲୋକଙ୍କୁ ଗିରଫ କରି ନେଲେ ସୁଦ୍ଧା କାର୍ଯ୍ୟ ବନ୍ଦ ହେବନାହିଁ । ଅନ୍ୟାନ୍ୟ ପ୍ରଦେଶରେ ପ୍ରତିଦିନ ବହୁତ ଲୋକ ଗିରଫଦାର୍ ହେଉଛନ୍ତି । ପୁଣି ନୂଆ ନୂଆ ଲୋକେ ବାହାରି ସେ କାର୍ଯ୍ୟ ଚଳାଉଛନ୍ତି । ଓଡ଼ିଶାରେ କେତେଜଣ ଆଗରୁ ଗିରଫଦାର ହୋଇଛନ୍ତି । ଅନ୍ୟମାନେ ହୁଏତ ନିକଟରେ ହେବେ । ଆପଣମାନେ ହୁଏତ ଦିନେ ହଠାତ୍ ଶୁଣିବେ ମୁଁ ଗିରଫଦାର ହୋଇ ସାରିଲିଣି । ମୋର ତ ସମସ୍ତ ଆଶା ଭରସା ଆପଣମାନଙ୍କ ଉପରେ । ମୋର ବିଶ୍ୱାସ ଅସହଯୋଗ ଆନ୍ଦୋଳନ ଦେଶର ଶିରା ପ୍ରଶିରାରେ ଭେଦି ଅଛି । ପଲ୍ଲୀଗ୍ରାମର କୃଷକ ମୂଲିଆ ମଜୁରିଆମାନେ ଏ ଆନ୍ଦୋଳନର ସୈନିକ । କଲିକତାର ଓଡ଼ିଆ ଶ୍ରମଜୀବୀ କୁଲିମାନେ ଆପଣାର କାର୍ଯ୍ୟଦ୍ୱାରା ଏହା ଆଗରୁ ପ୍ରମାଣ କରି ଦେଇଅଛନ୍ତି । ଦେଶବନ୍ଧୁ ଚିତ୍ତରଞ୍ଜନ, ଲାଲା ଲଜପତ୍, ପଣ୍ଡିତ ମୋତିଲାଲ ମୌଲନା ମହମ୍ମଦ ଅଲ୍ଲୀ ଓ ସୌକତ୍ ଅଲ୍ଲୀମାନେ କାର୍ଯ୍ୟ ଛାଡ଼ି ଆମ୍ଭମାନଙ୍କ ମଧ୍ୟରୁ ଚାଲି ଯାଇ ବର୍ତ୍ତମାନ ଜେଲରେ ଅଛନ୍ତି । ଅନ୍ୟାନ୍ୟ ପ୍ରାଦେଶିକ ନେତାମାନେ ଏହିପରି ଜଣ ଜଣ ହୋଇଯିବେ । ମହାତ୍ମାଗାନ୍ଧି ମଧ୍ୟ ଯିବେ । ତଥାପି ଏ ଶାନ୍ତ ଯୁଦ୍ଧ ଚାଲିବ । ଆମ ଓଡ଼ିଶା ମହାରାଜା କାଞ୍ଚି ବିଜୟ କଲାବେଳେ ସ୍ୱୟଂ ଜଗନ୍ନାଥ ମହାପ୍ରଭୁ ଓଡ଼ିଆ ଫଉଜର ସେନାପତି ହୋଇ ଯୁଦ୍ଧ କରିଥିଲେ । ଆଜି ଭାରତର ଏହି ଶାନ୍ତଯୁଦ୍ଧରେ ଲକ୍ଷ ଲକ୍ଷ ଦୀନ ଦରିଦ୍ର କୃଷକ, ବ୍ୟବସାୟୀ, ଶ୍ରମଜୀବୀ, ବାଳକ, ଯୁବା, ବୃଦ୍ଧ "ସବେ ହୋଇଣ ଏକ ମୁଖ, ବୋଇଲେ ନାରାୟଣ ରଖ" ସ୍ୱୟଂ ଭଗବାନ ନାୟକରୂପେ ଏ ଶାନ୍ତସେନାକୁ ଚଳାଇବେ । ଉତ୍କଳବାସୀ ଏହାହିଁ ବିଶ୍ୱାସ କର । ବିଶ୍ୱାସଠାରୁ ବଳି ଆଉ ଅଧିକ ବଳ କିଛି ନାହିଁ । ଏହି ବିଶ୍ୱାସ ହୃଦୟରେ ଦୃଢ଼ହେଲେ ପୁଲିସ ଭୟ ରହିବ ନାହିଁ । ସର୍ବସ୍ୱାନ୍ତ ହେଲେ ସୁଦ୍ଧା ତୁମ୍ଭେ ବିଚଳିତ ହେବ ନାହିଁ । ପ୍ରାଣଗଲେ ସୁଦ୍ଧା ପଛଘୁଞ୍ଚା ଦେବ ନାହିଁ । ସବୁବେଳେ ମନେରଖ ।

ଯତ୍ର ଯୋଗେଶ୍ୱରଃ କୃଷ୍ଣୋ, ଯତ୍ର ପାର୍ଥୋ ଧନୁର୍ଦ୍ଧରଃ ।
ତତ୍ର ଶ୍ରୀ ର୍ବିଜୟୋ ଭୂତି, ର୍ଧ୍ରୁବା ନୀତିର୍ମତିର୍ମମ ।

ଭଗବାନ ଶ୍ରୀକୃଷ୍ଣ ଯେଉଁ ପକ୍ଷରେ ଏବଂ ଧନୁର୍ଦ୍ଧର ଅର୍ଜୁନ ଯେଉଁ ପକ୍ଷରେ ସେ ପକ୍ଷର ଜୟ ନିଶ୍ଚୟ ।

('ସମାଜ', ତା ୧୬ । ୧୨ । ୨୧)

# କଂଗ୍ରେସ କର୍ମୀମାନଙ୍କ ପ୍ରତି

୧ । କୌଣସି କଂଗ୍ରେସ କର୍ମୀ ଜିଲ୍ଲା କଂଗ୍ରେସ କମିଟି କିମ୍ବା ତାଙ୍କ ନିଯୁକ୍ତ ଅନ୍ୟ କୌଣସି ବ୍ୟକ୍ତିଙ୍କ ବିନାନୁମତିରେ ଜିଲ୍ଲାର କୌଣସି ସ୍ଥାନରେ ସାଧାରଣ ସଭାରେ ବକ୍ତୃତା ଦେଇ ପାରିବେ ନାହିଁ । ପ୍ରଦର୍ଶନୀ ବା ପ୍ରଦର୍ଶନୀ କରି ପାରିବେ ନାହିଁ କିମ୍ବା କୌଣସି ପଟୁଆର ବା ପ୍ରଦର୍ଶନୀର ପରିଚାଳକ ବା ନାୟକ ହୋଇ ପାରିବେ ନାହିଁ ।

୨ । ଜିଲ୍ଲା କଂଗ୍ରେସ କମିଟି ବା ତାଙ୍କ ନିଯୁକ୍ତ କୌଣସି ବ୍ୟକ୍ତିଙ୍କ ବିନାନୁମତିରେ ବିଦେଶୀ ବସ୍ତ୍ର ଦୋକାନ ବା ଅବକାରୀ ଦୋକାନରେ କେହି କର୍ମୀ ପିକେଟିଂ କରି ପାରିବେ ନାହିଁ ।

୩ । ବର୍ତ୍ତମାନ ନିମନ୍ତେ ପ୍ରତ୍ୟେକ କଂଗ୍ରେସ କର୍ମୀଙ୍କୁ କେବଳ ସ୍ୱଦେଶୀ କାର୍ଯ୍ୟ କରିବାକୁ ହେବ ଅର୍ଥାତ୍ ଅରଟ ତିଆରି କରାଇବା, ଲୋକଙ୍କ ମଧ୍ୟରେ ତହିଁର ବ୍ୟବହାର କରାଇବା, ତୁଳା ଯୋଗାଇବା, ସୂତାକାଟି, ସେ ସୂତାରେ ଲୁଗା ବୁଣାଇବା, ଉକ୍ତ ଲୁଗାର ବିକ୍ରି ବନ୍ଦୋବସ୍ତ କରିବା, ଚାଷୀମାନଙ୍କୁ କପାମଞ୍ଜି ଯୋଗାଇବା, କପାଚାଷ ବିଷୟରେ ଉପଦେଶ ଦେବା, ତୁଳା ଭିଣିବା ଓ ଭିଣାଇବା ଇତ୍ୟାଦି ଯାବତୀୟ ସ୍ୱଦେଶୀ ସମ୍ପର୍କୀୟ କାର୍ଯ୍ୟ ମୁଖ୍ୟ କର୍ତ୍ତବ୍ୟ ।

୪ । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଏ ପ୍ରଦେଶରେ ବା ପ୍ରଦେଶ ଅନ୍ତର୍ଗତ କୌଣସି ଅଞ୍ଚଳରେ ଆଇନ୍ ନ ମାନ କାର୍ଯ୍ୟ କରିବା ଏପର୍ଯ୍ୟନ୍ତ ସିଦ୍ଧାନ୍ତ କରିନାହାନ୍ତି । କୌଣସି କଂଗ୍ରେସ କର୍ମୀ ତାଙ୍କ କେନ୍ଦ୍ରରେ ନିଜେ ଏଭଳି କୌଣସି କାର୍ଯ୍ୟ କରିବେ ନାହିଁ ଏବଂ ସେ ଅଞ୍ଚଳରେ ବ୍ୟକ୍ତିବିଶେଷ ବା ଜନସାଧାରଣ ଏଭଳି କୌଣସି କାର୍ଯ୍ୟରେ ପ୍ରବୃତ୍ତ ହେବାର ଦେଖାଗଲେ ତାଙ୍କୁ ସେଥିରୁ ନିବୃତ୍ତାଇବେ ।

୫ । ମଫସଲର ପଞ୍ଚାୟତ ଓ ଜାତିଆଣ ସଭାମାନଙ୍କୁ ଉପଦେଶ ଦେବାକୁ ହେବ ଯେ କୌଣସି କଳହ ବିବାଦ ମେଣ୍ଟାଇବାରେ ସେମାନେ ଉଭୟ ପକ୍ଷଙ୍କୁ ବୁଝାଇ ସୁଝାଇ ମେଳ କରାଇ ଦେବା ନିମନ୍ତେ ସର୍ବଦା ଚେଷ୍ଟା କରିବେ । କାହାରି ପ୍ରତି ଅତ୍ୟଧିକ ଅପମାନ ବା ଅସୁବିଧାଜନକ ଦଣ୍ଡ ବ୍ୟବସ୍ଥା କରିବେ ନାହିଁ ।

୬ । ଶାନ୍ତ ଭାବରେ ନିଜର କର୍ତ୍ତବ୍ୟ କରି କେହି କଂଗ୍ରେସ କର୍ମୀ ଗିରଫଦାର ହେଲେ ସେ ତାହା ଏଡ଼ାଇବାକୁ ଚେଷ୍ଟା କରିବେ ନାହିଁ; କିନ୍ତୁ ଆପଣାର କାର୍ଯ୍ୟ ଓ ବ୍ୟବହାର ଦ୍ୱାରା ସେ ଯେପରି ଗିରଫଦାରିକୁ ଡାକି ନ ଆଣନ୍ତି ।

୭ । କୌଣସି କଂଗ୍ରେସ ନେତା ବା କର୍ମୀ ଗିରଫଦାର ହେବା ବା ଜେଲ ଯିବାବେଳେ ବିଶେଷ ଜନତା ହେଲେ କିମ୍ବା ଲୋକସାଧାରଣଙ୍କ ପକ୍ଷରୁ ପଞ୍ଚୁଆର ଆଦି ହେଲେ କର୍ମୀମାନେ ଲୋକଙ୍କୁ ସେପରି କରିବାରୁ ନିବର୍ତ୍ତାଇବେ ଏବଂ ଶାନ୍ତିରକ୍ଷା ଲାଗି ଯଥାସାଧ୍ୟ ଯତ୍ନ କରିବେ ।

('ସମାଜ', ତା ° ୭ । ୨ । ୨୧)

# ହେଲେ ହେଉ ଯେ ବିପତ୍ତି, ପ୍ରାଣପଣେ ରଖ ଶାନ୍ତି

ଏହି କେତେଦିନ ମଧ୍ୟରେ ଆନ୍ଦୋଳନ କ୍ରମେ ଗୁରୁତର ହୋଇ ଆସିଅଛି । ମୌଲାନା ମହମ୍ମଦ ଆଲ୍ଲି ଓ ସୌକତଆଲ୍ଲିଙ୍କ ପରେ ଲାଲା ଲଜପତ୍‌ରାୟ, ପଣ୍ଡିତ ମୋତିଲାଲ ଏବଂ ସର୍ବଶେଷରେ ଦେଶବନ୍ଧୁ ଚିତ୍ତରଞ୍ଜନ ବନ୍ଦୀ ହୋଇଅଛନ୍ତି । କଲିକତା ଓ ଅନ୍ୟାନ୍ୟ ସ୍ଥାନରେ କଂଗ୍ରେସ ଓ ଖିଲାଫତ୍ କର୍ମୀମାନେ ଦଳ ଦଳ ହୋଇ ଗିରଫଦାର ହେଉ ଅଛନ୍ତି । ଜେଲପ୍ରତି ଦେଶବାସୀଙ୍କର ଯେ ଭୟ ଥିଲା ତାହା ଏକାବେଳକେ ତୁଟି ଯାଇ-ଅଛି । ଜେଲ ଭଗବାନ ଶ୍ରୀକୃଷ୍ଣଙ୍କର ଜନ୍ମ ସ୍ଥାନ । ସୁତରାଂ ଭାରତବାସୀଙ୍କ ପକ୍ଷେ ତୀର୍ଥ ବୋଲି ବକ୍ତୃତାରେ କୁହା ହେଉଥିଲା, ଆଜି ଯଥାର୍ଥରେ ଶତ ଶତ ନରନାରୀ ଅତି ଆନନ୍ଦରେ ସେହି ତୀର୍ଥଯାତ୍ରା କରି ଆପଣାକୁ କୃତାର୍ଥ ମଣୁଛନ୍ତି । ସହସ୍ର ସହସ୍ର ସେହିଠାକୁ ଯିବାଲାଗି ନିର୍ଭୀକ ଭାବରେ ପ୍ରସ୍ତୁତ ହୋଇ ରହିଛନ୍ତି । ଅସହଯୋଗ ଆନ୍ଦୋଳନର ପ୍ରଥମାବସ୍ଥାରେ କେହି ଜେଲ ଗଲାବେଳେ ଭାରି ଚହଳ ପଡ଼ୁଥିଲା । କେତେ ସଭାସମିତି ଅଭ୍ୟର୍ଥନା ଅଭିବାଦନ ପତ୍ର ଆଉ ଶୋଭାଯାତ୍ରା ଆଦି ହେଉଥିଲା । ବର୍ତ୍ତମାନ ସେସବୁ ଦରକାର ନାହିଁ । ଜେଲଯାତ୍ରା ନିତ୍ୟନୈମିତ୍ତିକ ହୋଇଅଛି । ସଭାସମିତି କରି ଜେଲ ତୀର୍ଥଯାତ୍ରୀମାନଙ୍କର ପ୍ରଶଂସା କରିବାକୁ ଅବସର ନାହିଁ । ସେପରି କଲେ ଜେଲ ଭୟ ତୁଟି ନାହିଁ ବୋଲି ଜଣାଯିବ । ମହାତ୍ମାଗାନ୍ଧି କହିଛନ୍ତି ଯେତେ ଇଚ୍ଛା ତେତେବଡ଼ ନେତା ଜେଲ ଯାଆନ୍ତୁ ବା ଅନ୍ୟ କୌଣସି ପ୍ରକାର ଦଣ୍ଡ ପାଆନ୍ତୁ ସେଥିଲାଗି କୌଣସିପ୍ରକାର ଚହଳ ପକାଇବା ପ୍ରୟୋଜନ ନାହିଁ । ଆମ୍ଭମାନଙ୍କୁ ଅବିଚଳିତ ଭାବରେ ସ୍ୱଦେଶୀ ପୂରା କରିବାକୁ ହେବ । ବିଦେଶୀ ବସ୍ତ୍ରକୁ ଏକାବେଳକେ ଦେଶରୁ ଅନ୍ତର ନ କରିବା ଯାଏ ଆମ୍ଭମାନଙ୍କର ବିଶ୍ରାମ ନେବା ଉଚିତ ନୁହେଁ । ଦେଶର ଯେତେ ନେତା ବା କର୍ମୀ ଜେଲ ଯାଆନ୍ତୁ ବା ଅନ୍ୟ ଯାହା କିଛି ଆପଦ ବିପଦ ଆସୁ, କେହି ଯେପରି ବିଚଳିତ ନ ହୁଅନ୍ତି, କୌଣସି ପ୍ରକାରେ ଯେପରି ଶାନ୍ତିଭଙ୍ଗ ନ ହୁଏ, ପୂର୍ଣ୍ଣଶାନ୍ତି ଓ ଅହିଂସାର ସହିତ ଯେପରି ଆନ୍ଦୋଳନ ଅକ୍ଷୁନ୍ନ ଭାବରେ ଚାଲେ, ସେ ବିଷୟରେ ସମସ୍ତଙ୍କର ବିଶେଷ ଯତ୍ନବାନ ହେବା ଉଚିତ । ବର୍ତ୍ତମାନ ଯେସବୁ ଘଟଣା ହେଉଅଛି ତାହା ହେବ ବୋଲି ପୂର୍ବରୁ ଆଶା ଓ

ଅନୁମାନ କରାଯାଇଥିଲା । ଭାରତବାସୀ ସ୍ୱରାଜ୍ୟର ନିକଟବର୍ତ୍ତୀ ହୋଇଅଛନ୍ତି ବୋଲି ଏହିସବୁ ଘଟନାରୁ ବୁଝିବାକୁ ହେବ । ପ୍ରିୟ ଉତ୍କଳବାସୀ, ମୋର ଅନୁରୋଧ ସଭାସମିତି ବା ପଟୁଆର ପ୍ରଦର୍ଶନୀ ଆଦି କିଛି ବାହ୍ୟ ବ୍ୟାପାର ନ କରି ନେତା ଏବଂ କର୍ମୀମାନଙ୍କ ଜେଲ ଯାତ୍ରାରେ ଆମ ହୃଦୟରେ ଆନନ୍ଦ ଅନୁଭବ କରିବା; ସେମାନଙ୍କ ଶ୍ରମ ଓ ସାଧନା ସଫଳ ହେଉ ଏବଂ ଉପସ୍ଥିତ କ୍ଷେତ୍ରରେ କର୍ତ୍ତବ୍ୟ ସାଧନ ନିମନ୍ତେ ଭଗବାନ ଆମ୍ଭମାନଙ୍କୁ ଶକ୍ତି, ସାହସ ଓ ସୁବିଧା ଦିଅନ୍ତୁ ।

('ସମାଜ' ତା ୨୪ । ୧୨ । ୨୧)

# ଅସହଯୋଗରେ ନିଶ୍ଚୟ ଜୟ

ବଙ୍ଗଳା, ପଞ୍ଜାବ, ଯୁକ୍ତ ପ୍ରଦେଶ, ଆସାମ ପ୍ରଭୃତିର ସରକାରମାନେ ଅସହଯୋଗ ଏବଂ ସ୍ୱରାଜ୍ୟ ସମ୍ପର୍କୀୟ ସ୍ୱେଚ୍ଛାସେବକମାନଙ୍କୁ ବେଆଇନ ଦଳବୋଲି ଘୋଷଣା କରିଥିଲେ । ସେମାନଙ୍କ ଦେଖାଦେଖି ଆମ ବିହାର-ଓଡ଼ିଶା ସରକାର ମଧ୍ୟ ଏ ମାସ ୧୦ ତାରିଖରେ ସେହିପରି ଏକ ହୁକୁମ ଜାରି କରିଥିଲେ । କୌଣସି ପ୍ରଦେଶରେ ଏପରି ହୁକୁମ ଜାରିହେବା ଉଚିତ ହୋଇନାହିଁ । ସରକାରଙ୍କର ଏ ହୁକୁମ ବେଆଇନ ଏବଂ ଅସଙ୍ଗତ ବୋଲି ଜନସାଧାରଣ ବେଶ୍ ବୁଝିଛନ୍ତି । ଦେଶର ସମ୍ବାଦ ପତ୍ରମାନ ଏଥିରୁ ପ୍ରତିବାଦ କରିଅଛନ୍ତି । ଏପରିକି ଯେଉଁମାନେ ଅସହଯୋଗ ଆନ୍ଦୋଳନରେ ଭୁକ୍ତ ନ ଥିଲେ ଏବଂ ଏକ ପ୍ରକାର ସରକାରଙ୍କ ପକ୍ଷରେ ଥିଲେ ସେମାନେ ସୁଦ୍ଧା ଏ ଆଦେଶକୁ ଅନ୍ୟାୟ ବୋଲି ଖୁବ୍ ଜୋରରେ କହୁଛନ୍ତି । ବିଶେଷତଃ ଆମ ବିହାର-ଓଡ଼ିଶାରେ ଏପରି ଆଦେଶ ହେବାର ଆଦୌ କୌଣସି କାରଣ ନ ଥିଲା । ଅସହଯୋଗ ଆନ୍ଦୋଳନ ଦ୍ୱାରା ବିହାର-ଓଡ଼ିଶାର କୌଣସିଠାରେ ଶାନ୍ତିଭଙ୍ଗ ହୋଇନାହିଁ କିମ୍ବା ଶାନ୍ତିଭଙ୍ଗର ଆଶଙ୍କା ଦେଖାଯାଇନାହିଁ । ମାତ୍ର ସରକାରଙ୍କ ହୁକୁମ ଫଳରେ କେତେକ ଅଞ୍ଚଳର କର୍ତ୍ତୃପକ୍ଷଙ୍କର ଗୁଡ଼ି କୁଣ୍ଢେ ହୋଇ ଯାଇଥିଲା । ଓଡ଼ିଶାର ନାନା ସ୍ଥାନରେ ସେମାନେ ଢେଙ୍ଗୁରା ବାଡ଼େଇ ଅସହଯୋଗ ଦଳରେ ଯୋଗ ନ ଦେବା ଏବଂ ଅସହଯୋଗ କାର୍ଯ୍ୟରେ କୌଣସିପ୍ରକାର ସାହାଯ୍ୟ ନ କରିବା ପାଇଁ ଧମକ ଦେଇଥିଲେ । ଝୋଟକୁ ନିଆଁ ଖର । ସେଥିରେ ପୁଣି ଯେବେ ଟିକିଏ ପବନ ବହେ ତେବେ ଆଉ ଗତି ନାହିଁ । ବିହାର-ଓଡ଼ିଶା ସରକାରଙ୍କ ଆଦେଶ ଫଳରେ ଏହିପରି ଘଟଣା ଆସି ହୋଇଥିଲା । ମାତ୍ର ଗତ ଏକବର୍ଷ ମଧ୍ୟରେ ଅସହଯୋଗ ଆନ୍ଦୋଳନ ଦେଶର ଶିରା ପ୍ରଶିରାରେ ଏପରି ଭେଦିଛି ଯେ ଲୋକେ ଯେ କୌଣସି ଧମକ ନିମନ୍ତେ ପ୍ରସ୍ତୁତ । ସେମାନେ କଂସାରି ଘରର ପାରି ପାଲଟିଛନ୍ତି । ସେମାନେ ଢେଙ୍ଗୁରା ଡ଼ାଉଁ ଡ଼ାଉଁ କିମ୍ବା ଅନ୍ୟ କୌଣସି ଫାଙ୍କା ଆବାଜରେ ଆଉ ଏଣିକି ଚମକିବେ ନାହିଁ । ଫଳରେ ସରକାରଙ୍କ ଆଦେଶ ବାହାରିବା ଦିନୁ ସ୍ଥାନୀୟ ହର୍ତ୍ତାକର୍ତ୍ତାମାନଙ୍କ କୁଲି ଡ଼ାଉଁ ଡ଼ାଉଁ ସତ୍ତ୍ୱେ ଲୋକେ ନିର୍ଭୟଚିତ୍ତରେ ସ୍ୱେଚ୍ଛାସେବକ ଦଳଭୁକ୍ତ ହେଉଛନ୍ତି, ଜେଲ୍ ଯିବାକୁ ପ୍ରସ୍ତୁତ ହେଉଛନ୍ତି ଏବଂ ଆଗଠାରୁ ଅଧିକ ଜୋରରେ

ଅସହଯୋଗ କାମ ଚଳାଇଛନ୍ତି । ଅସହଯୋଗ କାର୍ଯ୍ୟରେ କିଛି ବେଆଇନ ନାହିଁ । ଅରଟରେ ସୂତା କାଟିବା ଦୋଷ ନୁହେଁ । ଖଦଡ଼ ଲୁଗା ପିନ୍ଧିବା ଅପରାଧ ନୁହେଁ । ପଞ୍ଚାୟତରେ ମାମଲା ମକଦ୍ଦମା ଭାଙ୍ଗିବା ଅନ୍ୟାୟ ନୁହେଁ । ନିଶା ଛାଡ଼ିବା ପାପ ନୁହେଁ । ଏ ସବୁ କାର୍ଯ୍ୟକୁ ସରକାର ସଫା ଅନ୍ୟାୟବୋଲି କହି ନାହାନ୍ତି ବା କହି ନ ପାରନ୍ତି । ମାତ୍ର ଅସହଯୋଗ ଦଳକୁ ବେ ଆଇନ ଘୋଷଣା କରି ଯେ ହୁକୁମ ଜାରି କରିଛନ୍ତି ସେଥିରେ "ଘସି ଗୋଟେଇ ଯା" ବୋଲି ନ କହି ଏକରକମ ଟୋକେଇ ଢୋପଡ଼ା ଯାଇଥିଲା । ଅସହଯୋଗ କାର୍ଯ୍ୟ ଅନ୍ୟାୟ ବୋଲି କୁହାଯାଇ ନ ପାରେ । ପ୍ରକାରାନ୍ତରେ ତାହା ବନ୍ଦ କରିବାର ବ୍ୟବସ୍ଥା କରାଯାଇଥିଲା । ଲୋକେ ଏ କୌଶଳ ବେଶ୍ ବୁଝିପାରିଲେ । ଲୋକେ ବୁଝିଲେ ହୁକୁମର କିଛି ଫଳ ହେବନାହିଁ ବୋଲି ସରକାର ବୋଧହୁଏ ଜାଣିଗଲେ । ଏ ହୁକୁମ ଅନୁସାରେ ସ୍ଥାନୀୟ ହର୍ତ୍ତାକର୍ତ୍ତାମାନେ ଯେଉଁଠାରେ ଆଗପଛ ନ ବିଚାରି ଉଗ୍ର ଭାବରେ ଦମନ କାର୍ଯ୍ୟ ଆରମ୍ଭ କଲେ ତହିଁର ବିପରୀତ ଫଳ ହେଲା । ସ୍ଥାନୀୟ ହାକିମମାନଙ୍କୁ ସରକାର ଏ ହୁକୁମରେ ଯେ ଲଗାମ ଛାଡ଼ି ଦେଇଥିଲେ ଏବେ ତାହା ବେଶ୍ ଟିକିଏ କସି ଧରିଲେଣି । ପୁଣି ଏକ ସାନ ହୁକୁମ ବାହାରିଛି ଯେ କୌଣସି ଜିଲାର ମେଜେଷ୍ଟର ବା ପୁଲିସ ଅସହଯୋଗକର୍ମୀ ବା ସ୍ୱେଚ୍ଛାସେବକମାନଙ୍କୁ ନିଜ ଇଚ୍ଛାରେ ବେଆଇନ ଦଳ ବୋଲି ଗିରଫଦାର କରି ପାରିବେ ନାହିଁ । ସେପରି କରିବାକୁ ହେଲେ ଆଗ ସରକାରଙ୍କୁ ଜଣାଇ ତାଙ୍କ ଅନୁମତି ନେବାକୁ ହେବ । ଅମ୍ଭମାନଙ୍କର ବିଶ୍ୱାସ ଏହି ସାନ ହୁକୁମ ଫଳରେ କୌଣସି ଅସହଯୋଗକର୍ମୀ ବା ସ୍ୱେଚ୍ଛାସେବକମାନଙ୍କୁ ଗିରଫଦାର ହେବାକୁ ପଡ଼ିବ ନାହିଁ । କାରଣ ଅସହଯୋଗର କୌଣସି କାର୍ଯ୍ୟ ଅନ୍ୟାୟ ବା ବେଆଇନ ନୁହେଁ । ଶାନ୍ତିଭଙ୍ଗ ବା ଜୋର ଜବରଦସ୍ତି ଅସହଯୋଗର ଧର୍ମ ନୁହେଁ । ଅସହଯୋଗ ସମ୍ପର୍କରେ ଏ ପର୍ଯ୍ୟନ୍ତ ଯେପରି ଧୀର ସ୍ଥିର ଭାବରେ ଶାନ୍ତ, ଅହିଂସା ଓ ସଂଯମ ସହକାରେ କାର୍ଯ୍ୟ ଚାଲିଆସିଅଛି ଅସହଯୋଗ କର୍ମୀମାନେ ବରାବର ସେହିପରି କାର୍ଯ୍ୟ ଚଳାଇବେ । ଅସହଯୋଗରେ ଶାନ୍ତିଭଙ୍ଗ ହେଲେ ଅସହଯୋଗ ଆପେ ଆପେ ଭାଙ୍ଗିଯିବ । ଅସହଯୋଗର ମୂଳମନ୍ତ୍ର ନଷ୍ଟ ହେବ । ସରକାରଙ୍କ ଭାଙ୍ଗିବା ବା ନଷ୍ଟ କରିବା ପର୍ଯ୍ୟନ୍ତ ମାମଲତ ଯିବନାହିଁ । ମନୁଷ୍ୟର ସଂସାରରେ ଶତ୍ରୁ କେହିନାହିଁ । ମନୁଷ୍ୟ ନିଜେ ନିଜର ଶତ୍ରୁ । ଆମ୍ଭେମାନେ ନିଜେ ନିଜ ଦୋଷରେ ଅସହଯୋଗକୁ ନ ଭାଙ୍ଗିଲେ ସରକାର ତାହା ଭାଙ୍ଗି ପାରିବେ ନାହିଁ କିମ୍ବା ଜଗତରେ କୌଣସି ଶକ୍ତି ତାକୁ ଦବାଇ ପାରିବ ନାହିଁ ।

ପ୍ରିୟ ଉତ୍କଳବାସୀ ! ଅସହଯୋଗ କାର୍ଯ୍ୟରେ ମୂଳରୁ ଯେପରି ଲଗିଅଛ ସେହିପରି ଲଗ । ଆହୁରି ଅଧିକ ଜୋରରେ କାର୍ଯ୍ୟ ଚଳାଅ । କାର୍ଯ୍ୟରେ ସବୁବେଳେ ଶାନ୍ତ ରଖ । ଧୀର ସ୍ଥିର ହୁଅ । ବୃଥା ଧମକରେ ଡରନାହିଁ । ଯେ ଡରେ ସେ ମରେ । ଅସହଯୋଗ କେବେ ବିଫଳ ହେବନାହିଁ । ଅସହଯୋଗରେ ଭୟ ନାହିଁ । ଅସହଯୋଗରେ ନିଶ୍ଚୟ ଜୟ ।

('ସମାଜ' ତା ୨୪ । ୧୨ । ୨୧ ।

———

# ଜାତୀୟ ମହାସଭାରେ ଉତ୍କଳର ସ୍ଥାନ

ଏତେ ଦିନେ ଭାରତ ଜାତୀୟ ମହାସଭାରେ ଉତ୍କଳର ସ୍ୱତନ୍ତ୍ର ସ୍ଥାନ ହେଲା ଏବଂ ବିଭିନ୍ନ ପ୍ରଦେଶର ଭାରତୀୟ ଜାତିମାନେ ଉତ୍କଳର ପରିଚୟ ପାଇଲେ । ଗଲା ଅହମଦାବାଦ କଂଗ୍ରେସକୁ ଉତ୍କଳ ପ୍ରଦେଶରୁ ଏକଶ ଦଶଜଣ ସଭ୍ୟ ଯାଇଥିଲେ । ଏଥିରେ ସବୁଶ୍ରେଣୀ ଓ ସମ୍ପ୍ରଦାୟର ଲୋକ ଥିଲେ । ଓଡ଼ିଆ, ବଙ୍ଗାଳୀ, ହିନ୍ଦୁସ୍ଥାନୀ ହିନ୍ଦୁ, ମୁସଲମାନ ଏବଂ ବ୍ରାହ୍ମଣ କ୍ଷତ୍ରିୟଠାରୁ ଆଦିମ ହାଡ଼ି ପର୍ଯ୍ୟନ୍ତ ଉତ୍କଳର ପ୍ରତିନିଧି ହୋଇଥିଲେ । ଯେ କେବଳ ଟଙ୍କା ଖର୍ଚ୍ଚ କରି ପାରିଲେ ସେ ଯାଇଥିଲେ ତାହା ନୁହେଁ । ଗଲାବର୍ଷ ଚାରିଅଣା ଲେଖାଏଁ ଫିସ ଦେଇ ଯେଉଁମାନେ କଂଗ୍ରେସ ମେମ୍ବର ହୋଇଛନ୍ତି ସେମାନଙ୍କ ମତ ନିଆଯାଇ ଏବଂ କେତେକ ସ୍ଥଳେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ବାଛିବା ମତେ ପ୍ରତିନିଧି ନିର୍ବାଚିତ ହୋଇଥିଲେ । ଅବଶ୍ୟ ଯେତେଲୋକ ନିର୍ବାଚିତ ହୋଇଥିଲେ ସମସ୍ତେ କଂଗ୍ରେସରେ ଯୋଗ ଦେଇ ପାରିନାହାନ୍ତି । ନୂତନ ନିୟମ ଅନୁସାରେ ସମଗ୍ର ଉତ୍କଳ ପ୍ରଦେଶ ତିନିଶ ଜଣ ପର୍ଯ୍ୟନ୍ତ ପ୍ରତିନିଧି ପଠାଇ ପାରିଥାନ୍ତା; ସେଥିରୁ ୧୧୦ ଜଣ ଯିବା ବଡ଼ ବେଶି ହୋଇନାହିଁ । ତଥାପି କଂଗ୍ରେସ ପୂର୍ବ ଅଧିବେଶନମାନଙ୍କରେ ଯେ ସଂଖ୍ୟାରେ ଓଡ଼ିଶାରୁ ପ୍ରତିନିଧି ଯାଇଥିଲେ ତାହା ତୁଳନାରେ ଏଥର ଉପସ୍ଥାନ କେବଳ ଅତୀବ ପ୍ରଶଂସାର କଥା ନୁହେଁ, ଏକପ୍ରକାର ଆଶାତୀତ । ସାଧାରଣ ଅଶିକ୍ଷିତ ଲୋକଙ୍କ କଥା ଛାଡ଼ନ୍ତୁ । ଦେଢ଼ବର୍ଷ ଓ ଦୁଇବର୍ଷ ତଳେ କେତେ ଶିକ୍ଷିତ ଲୋକଙ୍କୁ କଂଗ୍ରେସ ବିଷୟରେ ବିଶେଷ କିଛି ଜଣା ନ ଥିଲା କହିଲେ ଚଳେ । ଆମ୍ଭମାନଙ୍କର ମନେଅଛି ଗଲା ୧୯୨୦ ସାଲ ଡିସେମ୍ବର ମାସର କଲିକତା କଂଗ୍ରେସ ବିଷୟରେ ଆମ୍ଭେମାନେ ସମାଜରେ ଲେଖିଲା ବେଳେ, ଜଣେ ମଫସଲର ବିଚକ୍ଷଣ ପାଠକ ଆମ୍ଭମାନଙ୍କୁ ଲେଖି ପଚାରି ପଠାଇଥିଲେ କି କଂଗ୍ରେସ କଅଣ ? ପରବର୍ତ୍ତୀ ସଂଖ୍ୟା ସମାଜରେ ଲୋକସାଧାରଣ ବୁଝିବାଭଳି ଆମ୍ଭେମାନେ କଂଗ୍ରେସ ବିଷୟରେ କେତେକ କଥା ଲେଖିଥିଲୁ । ମାତ୍ର କଂଗ୍ରେସ ସମ୍ପର୍କରେ ଆଜି ଉତ୍କଳର ଜନସାଧାରଣଙ୍କର ସେ ଅଜ୍ଞତା ଘୁଞ୍ଚିଅଛି । ନିତାନ୍ତ ପଲ୍ଲୀଗ୍ରାମର ସାଧାରଣ କୃଷକ ପର୍ଯ୍ୟନ୍ତ କଂଗ୍ରେସ କଥା କିଛି ନା କିଛି ଜାଣିଛି । ଭାରତର ଜାତୀୟ ଆନ୍ଦୋଳନ ଏତେ ଅଳ୍ପକାଳ ମଧ୍ୟରେ ଦେଶର ଅନ୍ଧକନ୍ଦରେ କିପରି ପଶିଛି ତାହା ଏଥିରୁ ସ୍ପଷ୍ଟ ଜଣାପଡ଼ୁଛି । ଉତ୍କଳରୁ ଯେଉଁ ପ୍ରତିନିଧିମାନେ ଯାଇଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ମଫସଲବାସୀ । ସେମାନଙ୍କ ମଧ୍ୟରେ ଅନେକ କେବଳ ସାଧାରଣ କୃଷିଜୀବୀ ମାତ୍ର । ଜଣେ ପିସ୍ତ୍ରି ଶହେ

ବିଶାଶହେ ଟଙ୍କା ଖର୍ଚ୍ଚ କରି ଏତେ ଲୋକ ଶୀତରେ ଏତେଦୂର ପଥ ଅହମଦାବାଦ ଯିବା ଓଡ଼ିଶା ପକ୍ଷେ କେତେଦିନ ଆଗେ ଏକପ୍ରକାର ଅସମ୍ଭବ ଥିଲା । ଏ ଯାହା ହୋଇଅଛି ତାହା କେବଳ ଅସହଯୋଗ ଆନ୍ଦୋଳନର ଫଳ । ସତର ଅଠରବର୍ଷକାଳ ଉତ୍କଳ ସମ୍ମିଳନୀ ହୋଇ ଯେ ଭାବ ଯେ ଜାଗରଣ ଉତ୍କଳର ଜନସାଧାରଣଙ୍କ ପ୍ରାଣରେ ଆଣି ପାରି ନ ଥିଲା ଆଜି ଏହି କେତେମାସ ମଧ୍ୟରେ ମହାଭାରତ ଆନ୍ଦୋଳନରେ ଯୋଗ ଦେବା ଫଳରେ ତାହା ଆସିଅଛି । ଏହା ଦେଖି କିଏ କହିବ ଯେ ଦେଶର ଜନସାଧାରଣ ଅସହଯୋଗ ଆନ୍ଦୋଳନର ସପକ୍ଷରେ ନୁହନ୍ତି, ଏହା କେବଳ କେତେଜଣ ଟୋକାଙ୍କ ହୁଜୁଗ ।

('ସମାଜ', ତା ୭ । ୧ । ୨୨)

---

# କାଠଯୋଡ଼ି ବାଲି ସଭାର ବକ୍ତୃତା

( ଅହ୍ମଦାବାଦ କଂଗ୍ରେସରୁ ଫେରି ୧୯୨୨ ମସିହା ଜାନୁଆରୀ ମାସ ୧୧ ତାରିଖରେ କଟକ କାଠଯୋଡ଼ି ବାଲିରେ ଏକ ଜନସଭାରେ ଭାଷଣ ଦେବାର ଥିଲା । ମାତ୍ର ତା ଆଗରୁ ତାଙ୍କ ଉପରେ ୧୪୪ ଧାରାର ମୁଖବନ୍ଦ ଆଦେଶ ଜାରି କରାଗଲା । ଜଣେ ସବିନୟ ଆଇନ ଅମାନ୍ୟକାରୀ ହିସାବରେ ସେ ଏ ସଭାରେ ନିଜେ ମୌଖିକ ଭାଷଣ ନ ଦେଇ ଏକ ଲିଖିତ ଭାଷଣ ପଠାଇ ଦେଲେ ଏବଂ ତାହା ଉକ୍ତ ସଭାରେ ପଠିତ ହେଲା । ଏହି ଲିଖିତ ଭାଷଣରେ ଗୋପବନ୍ଧୁ ୧୪୪ ଧାରାର କିପରି ଅପପ୍ରୟୋଗ କରାଯାଉଛି ଏବଂ ଶାସନ କ୍ଷମତାସୀନମାନେ କିପରି ଶାନ୍ତିଶୃଙ୍ଖଳା ଭଙ୍ଗର ଭୂତଭୟ ସର୍ବତ୍ର ଦେଖୁଛନ୍ତି, ତାହା ବର୍ଣ୍ଣନା କରିଥିଲେ । ତଳେ ତାଙ୍କର ସେହି ଭାଷଣ ଦିଆଯାଉଛି )

ଆଜି ସଭାରେ ମୁଁ ଆପଣମାନଙ୍କୁ ଅହ୍ମଦାବାଦ କଂଗ୍ରେସରେ ନିର୍ବାଚିତ ହୋଇଥିବା ବିଷୟ ପ୍ରସଙ୍ଗରେ କେତେକ କଥା କହିଥାନ୍ତି । ମାତ୍ର ସଭାର ବିଜ୍ଞାପନ ଦେଖିବା ମାତ୍ରେ କଟକର କର୍ତ୍ତୃପକ୍ଷମାନେ ହଠାତ୍ ଚମକି ପଡ଼ିଅଛନ୍ତି । ଏ ଜିଲ୍ଲାର ପୁଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କ ରିପୋର୍ଟ ମତେ ଏ ଜିଲ୍ଲା ମେଜେଷ୍ଟ୍ରର ମୋ ଉପରେ ଗତକାଲି ୧୪୪ଧାରା ହୁକୁମ ଜାରି କରିଅଛନ୍ତି । ସେଥିରେ ଲେଖାଅଛି କି ମୋ ବକ୍ତୃତାରେ ଶାନ୍ତିଭଙ୍ଗ ହେବାର ସମ୍ଭବ । ସୁତରାଂ ଶାନ୍ତିଭଙ୍ଗ ଘଟିଲେ ତାହା ଦମନ କରିବା ଅପେକ୍ଷା ପୂର୍ବରୁ ତହିଁର ଆଶଙ୍କା ଦୂର କରିବା ଏ ଜିଲ୍ଲାର କର୍ତ୍ତୃପକ୍ଷମାନେ ଆପଣାର କର୍ତ୍ତବ୍ୟ ବୁଝିଲେ । ଆପଣମାନଙ୍କୁ କିଛି କହିବା ପୂର୍ବରୁ ମୁଁ ସେମାନଙ୍କୁ ପଚାରେ ଏ ହୁକୁମରେ ସେମାନେ ଯେ କାରଣ ଦେଇଅଛନ୍ତି ଯଥାର୍ଥରେ ସେମାନଙ୍କର ତାହା ବିଶ୍ୱାସ କି ? ମୁଁ ଏ ଜିଲ୍ଲାରେ କେବଳ ନୁହେଁ, ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲାରେ ଓ ଓଡ଼ିଶାର ବାହାରେ ନାନା ଘଟଣାରେ ଅନେକବାର ବକ୍ତୃତା ଦେଇଅଛି । କେବେ କେଉଁଠାରେ ଶାନ୍ତିଭଙ୍ଗ ହୋଇଛି କି ? ଅସହଯୋଗୀର କଥାରେ କିମ୍ବା କାର୍ଯ୍ୟରେ କଦାପି ଶାନ୍ତିଭଙ୍ଗ ଘଟି ନ ପାରେ ଏବଂ ଏପର୍ଯ୍ୟନ୍ତ ଗଲା ୧୨ ମାସ ମଧ୍ୟରେ କୌଣସି ଅସହଯୋଗୀ ବକ୍ତୃତା ଫଳରେ କୌଣସିଠାରେ ଶାନ୍ତିଭଙ୍ଗ ଘଟି ନାହିଁ । କଟକର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ତଥା ଜିଲ୍ଲା ମେଜେଷ୍ଟ୍ରରଙ୍କ

ଉଲ୍ଲିଖିତ କାରଣ ଅଯଥାର୍ଥ, ଅମୂଳକ ଏବଂ ଅସତ୍ୟ । ନାହିଁ ଯଦି ପ୍ରକୃତରେ ସେମାନଙ୍କର ତାହାହିଁ ବିଶ୍ୱାସ ବା ଧାରଣା ହୋଇଥାଏ; ତେବେ ତାହା ନିତାନ୍ତ ଭ୍ରମପୂର୍ଣ୍ଣ । କଥାକେ କଥାକେ ଯଦି ଏପରି ଶାନ୍ତିଭଙ୍ଗ ଘଟେ, ତେବେ ଇଂରେଜ ସରକାର ଏତେ ଦିନ ଏ ଦେଶର ଶାନ୍ତି ରଖିଥିଲେ ବୋଲି ବାହାଦୂରି କରିବାର କି କାରଣ ଅଛି ? ମୁଁ ଦେଖୁଛି ସରକାର ଓ ତାହାଙ୍କ କର୍ମଚାରୀମାନେ ବୁଝିପାରୁଛନ୍ତି ଯେ, ସେମାନଙ୍କ କାର୍ଯ୍ୟ-କଳାପ ଓ ପ୍ରଚଳିତ ଶାସନ ନୀତି ଫଳରେ ଲୋକସାଧାରଣଙ୍କ ହୃଦୟରେ ଯଥାର୍ଥ ଶାନ୍ତି ନାହିଁ । ଏହି ଆଶଙ୍କା ବୋଧହୁଏ ସେମାନଙ୍କୁ ସବୁବେଳେ ଭୂତପରି ଗୋଡ଼ାଉଅଛି ଏବଂ ସେମାନେ ପଦେ ପଦେ ଶାନ୍ତିଭଙ୍ଗ ଆଶଙ୍କା କରୁଅଛନ୍ତି । ଏକା ଏହି ୧୪୪ ଧାରା ନୁହେଁ, କିମ୍ବା ଖାଲି ଏହି କଟକ ଜିଲ୍ଲା କଥା ନୁହେଁ; ଭାରତର ସର୍ବତ୍ର ଅସହଯୋଗ ଏବଂ ଅସହଯୋଗ ସମ୍ପର୍କରେ ସରକାର ତରଫରୁ ଯେ ସମସ୍ତ ଆଇନ ବା ଆଦେଶ ହେଉଅଛି, ସେ ସବୁରେ ସରକାରଙ୍କର ଏହି ମାନସିକ ଭୂତର ଛାୟା ସ୍ପଷ୍ଟ ପ୍ରକାଶ ପାଉଅଛି । ସରକାରଙ୍କ ମନରେ ଶାନ୍ତିଭଙ୍ଗ ହୋଇଅଛି ଏବଂ ତହିଁର ଫଳରେ ସେ ସର୍ବଦା ଶାନ୍ତିଭଙ୍ଗ ଆଶଙ୍କା କରୁଅଛନ୍ତି ।

୧୪୪ ଧାରା ଏ ଦେଶରେ ଆଉ ନୂଆକଥା ନୁହେଁ କିମ୍ବା ମୋ ପକ୍ଷରେ ଏ ହୁକୁମ ବି ନୂଆ ନୁହେଁ । ଆପଣମାନେ ତ ଜାଣନ୍ତି କଟକ, ପୁରୀ, ଗଞ୍ଜାମ ତିନି ଜିଲ୍ଲାରେ କେତେଥର ତଳେ ମୋ ଉପରେ ଏ ହୁକୁମ ଜାରି ହୋଇଥିଲା । ସେତେବେଳେ ଏ ହୁକୁମ ଭାଙ୍ଗିବାଲାଗି କଂଗ୍ରେସର ଆଦେଶ ନ ଥିଲା । ମୁଁ ମଧ୍ୟ ଏ ହୁକୁମ ଲଙ୍ଘନ କରିବାର ସେତେ ପ୍ରୟୋଜନୀୟତା ଦେଖି ନ ଥିଲି । ମାତ୍ର ଆଜି କଂଗ୍ରେସ ଏଭଳି ହୁକୁମ ଭାଙ୍ଗିବାଲାଗି ବ୍ୟକ୍ତିବିଶେଷଙ୍କୁ ଅଧିକାର ଦେଇଅଛନ୍ତି । ଲଙ୍ଘନ କରିବା ବ୍ୟକ୍ତିବିଶେଷର ଇଚ୍ଛାଧୀନ; ମାତ୍ର ଜାଣିଶୁଣି ଏବଂ ବିଶେଷ ଭାବିଚିନ୍ତି ଉପସ୍ଥିତ ହୁକୁମକୁ ମୁଁ ଭାଙ୍ଗୁନାହିଁ । ଅବଶ୍ୟ ଜେଲଯିବା ଡରରେ ନୁହେଁ । "ଜେଲଯିବାକୁ ମୁଁ ସବୁବେଳେ ପ୍ରସ୍ତୁତ" । ଏକଥା କହିବା ଏବେ ଆଉ କାହାରି ବାହାଦୁରି ନୁହେଁ । କାରଣ ଜେଲଖାନା ଏକ ଅତିଥିଶାଳା ହେଲାଣି । ମାତ୍ର ସେଠା ବ୍ୟବସ୍ଥା ଫଳରେ ରାଜଅତିଥି ହୋଇ ଜେଲଖାନାରେ ନିଶ୍ଚିନ୍ତ ବସି ରହିବା ସୁଯୋଗ କୌଣସି କଂଗ୍ରେସ କର୍ମୀର ସେପରି ବିଶେଷ କାରଣ ନ ଘଟିଲେ ଲୋଡ଼ି ନେବା ଉଚିତ ନୁହେଁ । ମୋ ପକ୍ଷରେ ତ ପୁଣି କାରାବାସ ନୂଆ କଥା ନୁହେଁ । ଆମଦେଶରେ ଲୋକ ମୁଖରୁ ଅନେକ ସମୟରେ ଶୁଣାଯାଏ ଯେ ଯମଦୂତମାନେ ସମୟ ସମୟରେ ଜଣ ଜଣକୁ ଅମଡ଼ା ଭୁଲାଇ ନେଇ ଯାଇଥାନ୍ତି ପରେ ପୁଣି ତାକୁ ଛାଡ଼ି ଦିଆଯାଏ । ମୁଁ ସେହିପରି

ସରକାରଙ୍କର ଜେଲଖାନାକୁ ଅମଡ଼ା ଯାଇଥିଲ । ସୁତରାଂ ଜେଲଭୟ ତୁଟିଛି । ପୁଣି ଅସହଯୋଗ ଆନ୍ଦୋଳନ ବର୍ତ୍ତମାନ ଯେ ଅବସ୍ଥାରେ ପହଞ୍ଚିଛି, ସେଥିରେ ଜେଲଭୟ କାହିଁକି, ମୃତ୍ୟୁଭୟ ପର୍ଯ୍ୟନ୍ତ ପ୍ରତ୍ୟେକ ଅସହଯୋଗୀର ତୁଟାଇବା ଆବଶ୍ୟକ । ଯେଉଁ ସ୍ୱେଚ୍ଛାସେବକମାନଙ୍କୁ ସରକାର ବେଆଇନ ଦଳ ବୋଲି ଘୋଷଣା କରିଅଛନ୍ତି ମୁଁ ସେହି ଦଳଭୁକ୍ତ ହୋଇଅଛି । ସ୍ୱେଚ୍ଛାସେବକର ପ୍ରତିଜ୍ଞା ପତ୍ରରେ ସ୍ୱାକ୍ଷର କରିଅଛି । ନିରୂପିତ ପ୍ରତିଜ୍ଞାର ଗୁରୁତ୍ୱ ଓ ଦାୟିତ୍ୱ ଉତ୍ତମ ରୂପେ ବୁଝିଅଛି । ଜେଲଯିବା, ପ୍ରହାର ଖାଇବା ଏମନ୍ତ କି ପ୍ରାଣଦେବା ସ୍ୱେଚ୍ଛାସେବକର କର୍ତ୍ତବ୍ୟ ବୋଲି ଜାଣି ଈଶ୍ୱରଙ୍କୁ ସାକ୍ଷୀରଖି ସେ ପବିତ୍ର କର୍ତ୍ତବ୍ୟ ଜୀବନର ବ୍ରତରୂପେ ଗ୍ରହଣ କରିଅଛି । ସ୍ୱେଚ୍ଛାସେବକ ଦଳ ବେଆଇନ ବୋଲି ଘୋଷିତ ହେଲେ ସୁଦ୍ଧା ଉକ୍ତ ଦଳରେ ଭୂଷିତ ହେବା ନିମନ୍ତେ ମୁଁ ଦେଶବାସୀଙ୍କ ନିକଟରେ ପ୍ରକାଶ୍ୟ ଆବେଦନ କରିଅଛି । ସୁତରାଂ ପ୍ରୟୋଜନ ସ୍ଥଳେ ସରକାର ଆଇନ ବା ଆଦେଶକୁ ଲଙ୍ଘନ କରିବାକୁ ମୁଁ ଲେଶ କୁଣ୍ଠିତ ନୁହେଁ, ତିଳେମାତ୍ର ପଶ୍ଚାତ୍ପଦ ନୁହେଁ ଏବଂ ଏଭଳି ଆଇନ ଲଙ୍ଘନର ପରିଣାମ ଭୋଗିବା ଲାଗି ମୁଁ ଅକୁଣ୍ଠିତ ଚିତ୍ତରେ ସର୍ବଦା ପ୍ରସ୍ତୁତ । ତେବେ ସେହି ପ୍ରୟୋଜନ ସ୍ଥଳ କେଉଁଠାରେ ମୋ ମତରେ ପ୍ରତ୍ୟେକ କଂଗ୍ରେସ କର୍ମୀ ଉତ୍ତମରୂପେ ଭାବିଚିନ୍ତି ତାହା ନିର୍ଦ୍ଦେଶ କରିବା ଉଚିତ ।

ଉପସ୍ଥିତ ୧୪୪ ଧାରା ହୁକୁମଦ୍ୱାରା ମୋତେ ବକ୍ତୃତା ଦେବା ବା ସଭାସମିତିରେ ଯୋଗଦେବାକୁ ନିଷେଧ କରାଯାଇଛି । ମୁଁ ମଧ୍ୟ ଏଥି ପୂର୍ବରୁ ଏ ପ୍ରଦେଶର ସମସ୍ତ କଂଗ୍ରେସ କର୍ମୀମାନଙ୍କ ପ୍ରତି ଏ ଭଳି ନିଷେଧ ଆଜ୍ଞା ପ୍ରକାଶ କରିଅଛି । କାରଣ ମୁଁ ଦେଖୁଛି ଯେ ବର୍ତ୍ତମାନ ଆଉ ବକ୍ତୃତାର ପ୍ରୟୋଜନ ନାହିଁ । ବକ୍ତୃତା ସମୟ ଯାଇଛି । ଏବେ କାର୍ଯ୍ୟର ସମୟ ଉପସ୍ଥିତ । ଏପରିକି ଏଥର ଅହିଂସା-ବାଦ କଂଗ୍ରେସ ବକ୍ତୃତାର ଝଙ୍କାର ଆଦୌ ଉଠିନାହିଁ । ତେଣୁ ଆଜି ସଭାରେ କିମ୍ବା ଆଗାମୀ ଦୁଇମାସ ନିମନ୍ତେ ଏ ଜିଲ୍ଲାର କୌଣସି ସଭା ସମିତିରେ ବକ୍ତୃତା ଦେବାକୁ ନିଷେଧ ଆଦେଶଦ୍ୱାରା ଆମ୍ଭମାନଙ୍କ ଅସହଯୋଗ କାର୍ଯ୍ୟରେ ଆଦୌ ବାଧା ଘଟିନାହିଁ । ସୁତରାଂ ଏ ଆଦେଶ ଲଙ୍ଘନ ତେତେ ଆବଶ୍ୟକ ବୋଲି ମୁଁ ବୋଧ କରୁନାହିଁ । ମାତ୍ର ସ୍ୱେଚ୍ଛାସେବକ ଦଳ ଗଠନ ବିରୁଦ୍ଧରେ ଜାରି ହୋଇଥିବା ଆଦେଶ ଲଙ୍ଘନ କରିବା ନ କରିବା ବିଷୟରେ ପ୍ରଶ୍ନ ଉଠି ନ ପାରେ । ଭାରତ ମହାସମିତି ଏହି ଦଳ ଗଠନର ବ୍ୟବସ୍ଥା କରିଅଛନ୍ତି । ଦେଶବାସୀ କଂଗ୍ରେସ ଭକ୍ତ ପ୍ରତ୍ୟେକ ଅସହଯୋଗୀର ସେ ବ୍ୟବସ୍ଥା ପାଳନୀୟ । ପ୍ରତ୍ୟେକ ଅସହଯୋଗୀ ପକ୍ଷରେ

କଂଗ୍ରେସ ଏକା ଆଜି ସରକାର । ଅନ୍ୟ କୌଣସି ସରକାରର କର୍ତ୍ତୃତ୍ୱ ମାନିବା ଅସହଯୋଗୀର ଧର୍ମ ନୁହେଁ । ସୁତରାଂ କଂଗ୍ରେସଦ୍ୱାରା ନିର୍ଦ୍ଧାରିତ ଆଦେଶ ସମ୍ମୁଖରେ ଅନ୍ୟ କାହାର ଆଦେଶ ଅସହଯୋଗୀ ମାନି ନ ପାରେ । ବିଶେଷତଃ ସଭାସମିତି କରିବା, ସ୍ୱେଚ୍ଛାସେବକ ଦଳ ଗଠନ କରିବା ବିରୁଦ୍ଧ ଆଦେଶ ମନୁଷ୍ୟର ଜନ୍ମ ଅଧିକାରରୁ ତାକୁ ବଞ୍ଚିତ କରେ । ସେଭଳି ଆଦେଶକୁ ଶାନ୍ତ ଓ ସଂଯମ ସହକାରେ ମର୍ଯ୍ୟାଦା ଜଗି ସଭ୍ୟ ଜନୋଚିତ ଭାବରେ ଲଙ୍ଘନ କରିବା ପ୍ରତ୍ୟେକ ଦେଶବାସୀର ଉଚିତ କର୍ତ୍ତବ୍ୟ ।

('ସମାଜ, ତା ୧୪ । ୧ । ୨୨)

— · — —

# ଅସହଯୋଗୀ କଏଦୀଙ୍କ ଅବସ୍ଥା

ରାଜନୈତିକ ଆସାମୀମାନଙ୍କ ମକଦ୍ଦମାର କାଗଜପତ୍ର ହାଇକୋର୍ଟକୁ ତଲବ କରାଯାଇ ଫେର୍ ଓ ବିଚାର କରାଯିବା କାରଣ ପଞ୍ଜାବ ଲାଟସଭାରେ ଜଣେ ମେମ୍ବର ପ୍ରସ୍ତାବ କରିଥିଲେ ଏବଂ ତାହା ମଞ୍ଜୁର ହୋଇଥିଲା । ଏହି ସମ୍ପର୍କରେ ସରକାର ତରଫରୁ ଉତ୍ତରରେ ଶୁଣାଗଲା ଯେ ଲାଲା ଲଜପତ୍ ରାୟ ଓ ଅନ୍ୟାନ୍ୟ କେତେକ ରାଜନୈତିକ କଏଦୀଙ୍କୁ ସଶ୍ରମ କାରାବାସରୁ ମୁକ୍ତ କରି ଦିଆ ଯାଇଅଛି । ଜଣେ ଶିଖ ମେମ୍ବରଙ୍କ ପ୍ରସ୍ତାବ-ମତେ କେତେକ ଶିଖ ରାଜନୈତିକ କଏଦୀଙ୍କୁ ଛୁଟି ଦିଆ ଯାଇଅଛି । ଏମାନଙ୍କୁ ଝିଙ୍କା ଓଟରା କରିବାକୁ କହୁଥିଲା କିଏ ? ନେହିପରି ଉପାୟରେ କଥା ରଖି କାଉନ୍‌ସିଲ ମେମ୍ବର ସହଯୋଗୀମାନଙ୍କୁ ଭୁଲାଇବା ସରକାର ଉଦ୍ୟମ କରି ପାରନ୍ତି । ମାତ୍ର ପଞ୍ଜାବ ଅତ୍ୟାଚାର ଖିଲାଫତ ସମସ୍ୟା ତୁଟି ସ୍ୱରାଜ୍ୟ ନ ମିଳିବାଯାଏ ଅସହଯୋଗୀମାନେ ଏ ସବୁରେ ଭୁଲିଲା ପରି ଦେଖାଯାଉ ନାହିଁ ।

× × ×

ଦିଲ୍ଲୀ ଓ ଅହମଦା-ବାଦ ଜେଲରେ ଅସହଯୋଗୀ କଏଦୀମାନଙ୍କ ଉପରେ ବଡ଼ ଜୋର୍ ଜୁଲୁମ ଓ ଅତ୍ୟାଚାର ହେଉଥିବାର ପ୍ରକାଶ । କଲିକତାରେ ଜେଲଖାନା ଏମାନଙ୍କ ପକ୍ଷେ ଖେଳଘର ହୋଇଗଲାଣି । ମାତ୍ର ବିହାର ଓଡ଼ିଶାର ସରକାର ରାଜନୈତିକ କଏଦୀମାନଙ୍କର ସମ୍ମାନ ରଖି ଅପଣାର ଓ ପ୍ରଦେଶ ଜେଲଖାନାର ସମ୍ମାନ ରଖିଅଛନ୍ତି । ବିଲତର ରାଜନୈତିକ କଏଦୀମାନଙ୍କପରି ଏ ଦେଶର ଅସହଯୋଗୀ କଏଦୀମାନଙ୍କୁ ଜେଲଖାନାରେ ବ୍ୟବହାର କରା ଯାଉଅଛି । ସେମାନଙ୍କୁ ଶୋଇବା ଶେଯ ଓ ମଶାରି ଦିଆଯାଉଛି; ସେମାନଙ୍କ ଖାଦ୍ୟ ତାଙ୍କ ଘରୁ ବା ଅନ୍ୟତ୍ର ବାହାରୁ ଯାଇପାରିବ । ଜେଲରେ ଖାଇଲେ ସାଧାରଣ ଜେଲ ଖାଦ୍ୟ ନ ଦିଆଯାଇ ସେମାନଙ୍କ ନିମନ୍ତେ ସ୍ୱତନ୍ତ୍ର ବନ୍ଦୋବସ୍ତ ହୁଏ । ସେମାନେ ବାହାରକୁ ଚିଠିପତ୍ର ଲେଖିପାରିବେ ଏବଂ ବାହାରୁ ଚିଠି ପାଇପାରିବେ । ସାତ ଦିନରେ ଥରେ ବନ୍ଧୁବାନ୍ଧବମାନଙ୍କ ସଙ୍ଗେ ଦେଖା ସାକ୍ଷାତ କରି ପାରିବେ । ସେମାନଙ୍କ ପଇସାରେ ସେମାନେ ଦରକାର କଲେ ଖବର କାଗଜ ଓ ବହି ପଢ଼ିବାକୁ ପାଇବେ । ସରକାର ତୋଷନ୍ତୁ ବା ରୋଷନ୍ତୁ ଅସହଯୋଗୀ ପକ୍ଷେ ସବୁ ସମାନ ।

('ସମାଜ' ତା ୧୪ । ୧ । ୨୨)

———

# ଅବକାରୀ ପଞ୍ଚାଦାରମାନଙ୍କ ପ୍ରତି

ପ୍ରତିବର୍ଷ ମାର୍ଚ୍ଚ ମାସ ସୁଦ୍ଧା ଅବକାରୀ ନିଲାମ ହୁଏ । ଏବର୍ଷ ଓଡ଼ିଶାରେ କାର୍ତ୍ତିକ ସହିତ ସାତ ଦେବାର ଉଦ୍ୟମ ହେଉଛି କେଜାଣି । କଟକରେ ଏ ମାସ ୧୭ ତାରିଖରେ ନିଲାମ ହେବ । ପୁରୀ ବାଲେଶ୍ୱରରେ ଏହି ମାସ ମଧ୍ୟରେ ହୋଇଯିବ । କେହି ନିଲାମ ଧରିବାକୁ ଇଚ୍ଛୁକ ବ୍ୟକ୍ତିମାନଙ୍କର ବୁଝିବା ଉଚିତ ଯେ ଅବକାରୀ ବିଭାଗ ଦ୍ୱାରା ଦେଶର ବହୁତ ଲୋକଙ୍କର ଧନ, ମାନ, ଜୀବନ ଏବଂ ଚରିତ୍ର ନଷ୍ଟ ହେଉଅଛି । ଅବକାରୀ ମାଲ ବ୍ୟବସାୟୀମାନେ ଦେଶର ଏହି ଅନିଷ୍ଟ ସାଧନରେ ସହାୟତା କରୁଛନ୍ତି । ଅବକାରୀ ବ୍ୟବସାୟ ଅତ୍ୟନ୍ତ ଜଘନ୍ୟ କାର୍ଯ୍ୟ । ସମାଜରେ ଆଜି ଲୋକମତ ଯେପରି ପ୍ରବଳ ହୋଇଥିଲେ ଅବକାରୀ ପଞ୍ଚାଦାରମାନଙ୍କର ମୁହଁ ଦେଖାଇବାର ସ୍ଥାନ ନ ଥାନ୍ତା । ଏହି କେତେମାସ ମଧ୍ୟରେ ଦେଶର ଲୋକସାଧାରଣଙ୍କ ମନରେ ଯେ ଆତ୍ମଶୁଦ୍ଧିର ଭାବ ଆସିଛି ତାହା ଦେଖି କାହାରି ଆଉ ଅବକାରୀ ବ୍ୟବସାୟରେ ପ୍ରବର୍ତ୍ତିବା ଉଚିତ ନୁହେଁ । କେହି କେହି କହିପାରନ୍ତି, ସମସ୍ତେ ଏକାବେଳକେ ଛାଡ଼ିଲେ ସିନା ହୁଅନ୍ତା, ମୁଁ ଜଣେ ଏକା ଛାଡ଼ିଲେ କି ବନ୍ଦ ହେବ ? ଏହା ଖାଲି ଆପଣାର ବିବେକକୁ ଠକିବା କଥା । ଲୋକେ କହନ୍ତି, "ଏ ହାତ ପାପ ସେ ହାତ ନିଏ ନାହିଁ ।" ମଦ ଗଞ୍ଜା ଆଦି ନିଶାଦ୍ରବ୍ୟ ବିକ୍ରି ତୁମ୍ଭେ ପାପ କରୁଅଛ, ଏହା ବୁଝ; ଅନ୍ୟର ଅପେକ୍ଷା ନ ରଖି ତାହା ଛାଡ଼ । ଖୁବ୍ ସମ୍ଭବ ଏହାପରେ ଅସହଯୋଗୀମାନେ ନିଶା ଦୋକାନ ପାଖେ ପ୍ରାଣପଣେ ପିକେଟିଂ ଚଳାଇବେ । ହୁଏତ ସେମାନେ ସେଥିଲାଗି ବେଆଇନ ଭାବରେ ମାଡ଼ ଖାଇବେ, ପଗଡ଼ା ହେବେ ଏବଂ ଜେଲ ଯିବେ । ତୁମ ପୁଅ ପୁତୁରା ଆଦି ସେ ପିକେଟିଂରେ ଥାଇପାରନ୍ତି । ସେମାନଙ୍କର ଏହି ଦୁର୍ଗତି ଦେଖୁଥିବ, ଅର୍ଥ ଲୋଭରେ ତୁମ୍ଭେ ଦେଶର ସର୍ବନାଶ କରୁଥିବ । ସେ ପାପ ଜଘନ୍ୟ ଆୟର ଆଶା ଛାଡ଼ । ଅର୍ଥ ଅର୍ଜନର ଅନ୍ୟାନ୍ୟ ସହସ୍ର ପନ୍ଥା ଅଛି । ସେଥିରେ ଲାଗ; ଭାଗ୍ୟ ଅନୁକୂଳ ହେଲେ ସତ୍ ଉପାୟରେ ସମ୍ମାନର ସହିତ ତୁମ୍ଭଙ୍କୁ ବହୁ ଅର୍ଥ ମିଳିବ ।

('ସମାଜ' ତା ୧୪ । ୧ । '୨)

———

# ଗ୍ରାମମୁଷ୍ଟି ସଂଗ୍ରହ

ଓଡ଼ିଶାର କେତେକ ଗ୍ରାମରେ ଏଥି ମଧ୍ୟରେ ମୁଷ୍ଟି ସଂଗ୍ରହର ବ୍ୟବସ୍ଥା ହୋଇଅଛି । ସେ ବାବଦରୁ ଗ୍ରାମ ପାଣ୍ଠିରେ କେତେ ଯାଗାରେ କିଛି କିଛି ଟଙ୍କା ଜମା ଅଛି । ମାତ୍ର ସେ ଟଙ୍କା କାଏଦାରେ ନ ରହିଲେ ଏବଂ ତହିଁର ଆୟ ବ୍ୟୟର ଠିକମତ ହିସାବ ରଖା ନ ଗଲେ ପରେ ସେଥିରୁ ନାନା କଳହ ବିବାଦ ଜନ୍ମିବାର ଆଶଙ୍କା । ଅନେକ ଗାଁରେ ଲୋକେ ବେଳେ ବେଳେ ଗାଁ ଠାକୁରଙ୍କର ଭୋଗ ରାଗ କରି ମୌଜରେ ଏ ଟଙ୍କା ଉଡ଼ାଉଥିବାର ଦେଖାଯାଏ । ମୌଜ ଅପେକ୍ଷା ଗାଁର ଅଧିକ ଦରକାରୀ କର୍ମ ଅନେକ ଅଛି । ଗାଁ ପୋଖରୀ ପୋତିହୋଇ ପଡ଼ିଛି, ପିଇବା ପାଣି ଯୋଗାଇବାକୁ କୂଅ ନାହିଁ । ଗାଁରେ ରାସ୍ତା ନାହିଁ, ଯେ ଠାକୁରଙ୍କ ନାଁରେ ମଉଜ ହେଉଛି ସେ ଠାକୁରଙ୍କ ମଣ୍ଡପ ଭାଙ୍ଗିଯାଇ ପଡ଼ିଛି, ଗ୍ରାମରେ ଗୃହଶାଳୀଟିଏ ସୁଦ୍ଧା ନାହିଁ; ଗ୍ରାମର ସାଧାରଣ ମିଳାମିଶି ଏକାଠି ବସିବାକୁ ଘର ଖଣ୍ଡେ ନାହିଁ, ଗ୍ରାମରେ କେତେ ଅନାଥ ଦରିଦ୍ର ବିଧବା ଓ ପିତୃମାତୃହୀନ ପିଲା ହାହାକାର କରୁଛନ୍ତି; କାହାକୁ ଅରଟ ଖଣ୍ଡେ ବା କାହାକୁ ଅନ୍ୟ ପ୍ରକାରେ ଦୁଇ ଚାରିଟଙ୍କା ସାହାଯ୍ୟ କଲେ ସେମାନଙ୍କର ଜୀବିତ ସଂସ୍ଥାନ ହୁଅନ୍ତା । ଏସବୁ ବିଷୟ ପ୍ରତି ଗ୍ରାମବାସୀଙ୍କର ବିଶେଷ ନଜର ରହିବା ଦରକାର । ଗ୍ରାମପାଣ୍ଠି ଏହି ସବୁରେ ଲାଗିବା ଉଚିତ । ବିହାର ପ୍ରଦେଶରେ ଗ୍ରାମ ପାଣ୍ଠିରୁ ଚଉଠେ ଜିଲ୍ଲାର ସାଧାରଣ କାର୍ଯ୍ୟପାଇଁ ଆସେ । ସେଥିରେ କୌଣସି କୌଣସି ଜିଲ୍ଲା କଂଗ୍ରେସ କମିଟି ମାସକୁ ହଜାରେ ବାରଶଟଙ୍କା ସରିକି ପାଆନ୍ତି । ଓଡ଼ିଶାର ଜିଲ୍ଲା କଂଗ୍ରେସ କମିଟିମାନେ ଆପଣା ଜିଲ୍ଲା ନିମନ୍ତେ ଏ ବିଷୟରେ ସ୍ୱତନ୍ତ୍ର ନିୟମ କରିପାରନ୍ତି । ମାତ୍ର ଏଣିକି ମଫସଲର କଂଗ୍ରେସକର୍ମୀମାନଙ୍କୁ ଗ୍ରାମବାସୀମାନେ ଚଳାଇବେ । କଂଗ୍ରେସ ତରଫରୁ ସେମାନଙ୍କୁ କିଛି ସାହାଯ୍ୟ ମିଳିବ ନାହିଁ । ଘରୁ ଖାଇ ଘୋଡ଼ା ଆଗରେ ଡେଉଁବାର ସାମର୍ଥ୍ୟ ଆମଦେଶରେ କାହାରି ନାହିଁ କହିଲେ ଚଳେ । ଯେଉଁମାନେ ଦେଶର କାର୍ଯ୍ୟ କରିବେ ଏବଂ ଯେଉଁ ଅଞ୍ଚଳରେ କାର୍ଯ୍ୟ କରିବେ ତାଙ୍କର ସାଧାରଣ ଅନ୍ନବସ୍ତ୍ର ସଙ୍କୁଳାନ କରିବା ସେ ଲୋକଙ୍କର ଧର୍ମ । ଗ୍ରାମ ପାଣ୍ଠିରୁ ଏ ବାବଦରେ କିଛି ଖର୍ଚ୍ଚ କରିବାକୁ କୁଣ୍ଠିତ ହେବା ଉଚିତ ନୁହେ ।

('ସମାଜ' ତା ୧୪ । ୧ । ୨୨)

# " ପୁଅ ପଚ୍ଛେ ମରୁ ସତ୍ୱରେ ନ ହାରୁ "

ଭାରତର ପ୍ରତ୍ୟେକ ପ୍ରଦେଶରେ ପୂର୍ବ ବର୍ଷେକାଳ ଗୁଣା ଅଧିକେ କଂଗ୍ରେସ କାର୍ଯ୍ୟ ଚାଲିଅଛି । ତହିଁରେ ଆଶାନୁରୂପ ଫଳ ମଧ୍ୟ ହୋଇଅଛି । କଂଗ୍ରେସ ମେମ୍ବର ହୋଇଛନ୍ତି, ସ୍ୱରାଜ୍ୟପାଣ୍ଠି ଲାଗି ଟଙ୍କା ଆଦାୟ ହୋଇଅଛି । ଗ୍ରାମପଞ୍ଚାୟତ ସ୍ଥାପିତ ହୋଇଅଛି । ଜାତୀୟ ବିଦ୍ୟାଳୟ ବସିଅଛି, ସ୍ୱଦେଶୀର ପ୍ରଚାର ହୋଇଅଛି, ଅଫିମ ମଦ ପ୍ରଭୃତି ନିଶା ଖାଇବାରୁ ଅନେକ ଲୋକ ନିବର୍ତ୍ତିଛନ୍ତି । ମୋଟରେ ଜନସାଧାରଣଙ୍କର ସାହସ ବଢ଼ିଛି । ନିଜ ଉପରେ ନିଜେ ନିର୍ଭର କରି ଚାଲିବାର ଶକ୍ତି ଓ ଦମ୍ଭ ଆସିଅଛି ଏବଂ ସ୍ୱରାଜ୍ୟ ପ୍ରାପ୍ତିରେ ବିଶ୍ୱାସ ଜନ୍ମିଅଛି । ଦେଶ ଯେ ସ୍ୱରାଜ୍ୟ ଆଡ଼କୁ ବହୁଦୂର ଅଗ୍ରସର ହୋଇଅଛି ସନ୍ଦେହ ନାହିଁ ।

ଏବେ ନୂତନବର୍ଷ ଆରମ୍ଭ ହୋଇଅଛି । ଏବର୍ଷ ଅନେକ କାମ କରିବାକୁ ହେବ । ଗଲାବର୍ଷ ଯେ ସବୁ କାର୍ଯ୍ୟ ହୋଇଅଛି ସେ ସବୁକୁ ସୁଦୃଢ଼ କରିବାକୁ ହେବ ଏବଂ ତହିଁର ପ୍ରସାର ମଧ୍ୟ ଆବଶ୍ୟକ । ଏ ବର୍ଷ ମର୍ଯ୍ୟାଦାପୂର୍ବକ ସରକାରଙ୍କ ଆଇନ ଲଙ୍ଘନ କରିବା ସ୍ଥିର ହୋଇଅଛି । ଅସହଯୋଗ ଆନ୍ଦୋଳନରେ ଏହାହିଁ ଯଥାର୍ଥ ଯୁଦ୍ଧ । ମାତ୍ର ଶାନ୍ତ ଯୁଦ୍ଧ । ଏଥିଲାଗି ପ୍ରସ୍ତୁତ ହେବା ଦରକାର । ସୁତରାଂ ଏବର୍ଷ କାର୍ଯ୍ୟ ଚଳାଇବା ଲାଗି ବହୁତ ଅର୍ଥର ପ୍ରୟୋଜନ । ନିଖିଳ ଭାରତ କଂଗ୍ରେସ କମିଟି କହନ୍ତି କି ଏଣିକି ପ୍ରତ୍ୟେକ ପ୍ରଦେଶକୁ ଆପଣା ଉପରେ ନିର୍ଭର କରିବାକୁ ହେବ । ନିଖିଳଭାରତ କଂଗ୍ରେସ କମିଟିଠାରୁ ଅର୍ଥ ସାହାଯ୍ୟର ଅପେକ୍ଷା କଲେ ଚାଲିବନାହିଁ । ଅବଶ୍ୟ ନିଖିଳ ଭାରତକଂଗ୍ରେସ କମିଟି ହାତରେ ବର୍ତ୍ତମାନ ଅନେକ ଟଙ୍କା ବାକି ଅଛି । ମାତ୍ର ପ୍ରଦେଶମାନେ ଆପଣା ଉପରେ ନିର୍ଭର ନ କରି ଏହି ଟଙ୍କାକୁ ଗୃହିଁ ରହିଲେ ତାହା ଅଳ୍ପ ସମୟ ମଧ୍ୟରେ ଶେଷ ହୋଇଯିବ । ଏଣେ ପ୍ରଦେଶର ଆତ୍ମଶକ୍ତି ପ୍ରକାଶ ପାଇବ ନାହିଁ ।

ଯାହାହେଉ ଉତ୍କଳ ପ୍ରଦେଶର ନିଖିଳ କଂଗ୍ରେସ କମିଟିଠାରୁ ଆଉ ଅଧିକ ସାହାଯ୍ୟ ଆଶା କରିବା ସୁନ୍ଦର ବା ସଙ୍ଗତ ନୁହେଁ । ତିଳକ ସ୍ୱରାଜ୍ୟପାଣ୍ଠିର ଚତୁର୍ଥାଂଶ ଛଅ ହଜାର ଟଙ୍କା ମାତ୍ର ଉତ୍କଳରୁ ନିଖିଳ କଂଗ୍ରେସ କମିଟିକି ଦିଆଯାଇଅଛି । ମାତ୍ର ଉକ୍ତ କମିଟି ଉତ୍କଳକୁ ସର୍ବମୋଟ ଏ ପର୍ଯ୍ୟନ୍ତ ୬୦ ହଜାର ସାହାଯ୍ୟ ଦେଇଅଛନ୍ତି । ଏହିସବୁ

ଟଙ୍କା ସ୍ୱଦେଶୀ ପ୍ରଚାର ନିମନ୍ତେ ଭିନ୍ନ ଭିନ୍ନ ଜିଲାକୁ ଦିଆଯାଇଅଛି । ଚଳିତ ବର୍ଷର ଖର୍ଚ୍ଚ ଆମ୍ଭମାନଙ୍କୁ ଆମର ଉତ୍କଳ ପ୍ରଦେଶରୁ ଉଠାଇବାକୁ ହେବ । ସମଗ୍ର ଉତ୍କଳ ପ୍ରଦେଶରୁ ଗତ ବର୍ଷ ୫୨ ହଜାର ମେମ୍ବର ହୋଇଥିଲେ । ଚଳିତ ବର୍ଷ ନିମନ୍ତେ ସେମାନଙ୍କଠାରୁ ଚାରିଅଣା ଫିସ୍ ଆଦାୟ ହେବ । ସେମାନଙ୍କ ଛଡ଼ା ଆଉ ମଧ୍ୟ ଅଧିକ ମେମ୍ବର ହେବେ । ଅଧିକ ନ ହେଲେ ଏ ବର୍ଷ ଅନ୍ତତଃ ଆଉ ୫୨ ହଜାର ହେବା ଉଚିତ । ଏହା ନ ହେଲେ କଂଗ୍ରେସକାର୍ଯ୍ୟ ସ୍ଥାୟୀ ହୋଇଅଛି ବୋଲି କୁହାଯାଇ ନ ପାରେ । କୌଣସି ଖଣ୍ଡେ ଡାଳ ପୋତିଦେଲେ ସେଥିରୁ ଚେର ବାହାରି ଯେବେ ମାଟିରେ ପ୍ରବେଶ କରେ ତେବେ ସେ ଗଛ ଉତ୍ତରୋତ୍ତର ବଢ଼େ; ସେଥିରେ ନୂଆପତ୍ର ଧରେ, ନୂଆଡାଳ ବାହାରେ; ଚେର ମାଟି ନ ଧରିଲେ ତାହା କ୍ରମେ ଝାଉଁଳି ପଡ଼େ । ସେହିପରି କଂଗ୍ରେସ ଆନ୍ଦୋଳନରେ ଯେ ଡାଳ ଉତ୍କଳରେ ପୋତା ହୋଇଛି ତାହାର ଚେର ଏ ପ୍ରଦେଶ ମାଟିରେ ପ୍ରବେଶ କରିଥିଲେ, ଯେ ମେମ୍ବର ହୋଇଛନ୍ତି ସେଥିରୁ କେହି ଗୋଟିଏ ଝାଉଁଳିବେ ନାହିଁ କି ଝଡ଼ିବେ ନାହିଁ ଏବଂ ପୁଣି ନୂଆ ମେମ୍ବର ଓ ନୂତନକର୍ମୀ ଓ ପୃଷ୍ଠପୋଷକ ବାହାରିବେ ।

ମହାତ୍ମାଗାନ୍ଧୀ ଲେଖିଛନ୍ତି ଯେ ତାଙ୍କୁ କେହି କେହି କହନ୍ତି କି କଂଗ୍ରେସ ମେମ୍ବର କରିବାଦ୍ୱାରା ଯେ ଫିସ୍ ଆଦାୟ ହୁଏ ସେଥିକେ ତହୁଁ ଅଧିକ ଖର୍ଚ୍ଚ ହୁଏ । ଅନ୍ୟାନ୍ୟ ପ୍ରଦେଶର କଥା କିଏ କେଜାଣି । ଉତ୍କଳର କୌଣସି କୌଣସି ସ୍ଥାନରେ ଗଲାବର୍ଷ ଏପରି ଘଟିଥିଲା । ଅବଶ୍ୟ ଗଲାବର୍ଷ କାର୍ଯ୍ୟ ନୂଆ ଆରମ୍ଭ ହୋଇଥିଲା । ଲୋକେ ବୁଝି ନ ଥିଲେ । ମାତ୍ର ଏବର୍ଷ ଏଭଳି ଘଟିବାର ଆଶଙ୍କା ନାହିଁ । ଭିନ୍ନ ଭିନ୍ନ ଅଞ୍ଚଳରେ ସ୍ଥାନୀୟ ସ୍ୱେଚ୍ଛା-ସେବକମାନଙ୍କଦ୍ୱାରା ବିନା ଖର୍ଚ୍ଚରେ କାର୍ଯ୍ୟ ହେବ ବୋଲି ଆଶା କରାଯାଏ । ଲୋକେ ମଧ୍ୟ ସ୍ୱରାଜ୍ୟ କାର୍ଯ୍ୟରେ ନିଜ ଇଚ୍ଛାରେ ଚାରିଅଣା ଲେଖାଏଁ ଦେବାଲାଗି କୁଣ୍ଠିତ ହେବେ ନାହିଁ । ମହାତ୍ମାଗାନ୍ଧୀ କହନ୍ତି ଆଦାୟଖର୍ଚ୍ଚ କୌଣସିମତେ ଶତକରା ୫୨ରୁ ଅଧିକ ହେବା ଉଚିତ ନୁହେଁ । ସ୍ୱରାଜ୍ୟରେ ଆମ୍ଭମାନଙ୍କ ହାତକୁ ପୂରା ଶାସନ ଭାର ଆସିଲେ ଅଳ୍ପ ପଇସାରେ କିପରି କାର୍ଯ୍ୟ ଚଳିବ ତହିଁର ନମୁନା ଆମ୍ଭମାନଙ୍କ ଉପସ୍ଥିତ କାର୍ଯ୍ୟରୁ ଜଣାପଡ଼ିବ ।

ବିହାର ଗୁଜରାଟ ପ୍ରଭୃତି ଭାରତବର୍ଷର ଭିନ୍ନ ଭିନ୍ନ ପ୍ରଦେଶରେ ଗ୍ରାମମାନ ଏପରି ସୁଗଠିତ ହୋଇଛି ଯେ ସେ ସବୁରୁ ନିୟମିତରୂପେ ମୁଠି ଆଦାୟ ହୁଏ । ସେ ମୁଠିରୁ ତିନିଭାଗ ଗାଁରେ ରହେ । ଭାଗେ ଜିଲା କଂଗ୍ରେସ କମିଟି ହାତକୁ ଆସେ । ଏହି ସୂତ୍ରରେ ଏକ ଏକ ଜିଲାରୁ ମାସିକ ହଜାରେ ବାରଶଟଙ୍କା ସରିକି ଜିଲା କମିଟିକି ମିଳେ । ମୁଠି ବ୍ୟବସ୍ଥାତ

ଆମ ଦେଶର ଅତି ପୁରୁଣାକଥା । ଗ୍ରାମବାସୀମାନେ ଆପଣା ମଧ୍ୟରେ ପଞ୍ଚାୟତ ବସାଇ ଏହି ମୁଠି ବନ୍ଦୋବସ୍ତ କଲେ ଟଙ୍କାର କୌଣସି ଅଭାବ ରହିବ ନାହିଁ ।

ଉତ୍କଳ ପ୍ରଦେଶ ଏତେ ଦିନ, ଭାରତର ରାଜନୀତିରେ ଯୋଗ ଦେଇଛି । ଅନ୍ୟାନ୍ୟ ପ୍ରଦେଶ ସଙ୍ଗେ ଏତେକାଳ ଉତ୍କଳର ନାମ ଗଣତିରେ ଆସିଛି । ଅନ୍ୟାନ୍ୟ ପ୍ରଦେଶ ବାଂଶ ହେଲେ ଉତ୍କଳ ଝିଶିଣ ନ ହୋଇ ପାରଲେ ଅନ୍ତତଃ ସତର ଛ ଷୋହଳ ହେବା ଦରକାର ତା ନ ହେଲେ "ଯେ ଡିମିରେ ସେ ଡିମିରେ" । ମୋର ସମ୍ପୂର୍ଣ୍ଣ ଆଶା ଉତ୍କଳବାସୀ ଏତେବେଳେ ପଛଘୁଞ୍ଚା ଦେବେ ନାହିଁ । ଜାତୀୟମାନ ତଳେ ପକାଇବେ ନାହିଁ । ଆମ ଦେଶରେ କଥା ଅଛି " ପୁଅ ପଛକେ ମରୁ ସଭାରେ ନ ହାରୁ " । ଭାରତର ମହା ଜାତୀୟ ସଭାରେ ଉତ୍କଳକୁ ଯେପରି ମୁଣ୍ଡପୋତି ବସିବାକୁ ନ ହୁଏ ସେଥିପ୍ରତି ଉତ୍କଳର ନରନାରୀ ଶିକ୍ଷିତ ଧନୀ ଦରିଦ୍ର ପ୍ରତ୍ୟେକେ ଯନ୍ନବାନ ହେବା ନିମନ୍ତେ ମୁଁ ସବିନୟ ପ୍ରାର୍ଥନା କରୁଅଛି । ସେ ମନ ଧନ ଏପରିକି ଦରକାର ପଡ଼ିଲେ ଜୀବନ ଦେଇ ଜାତୀୟ ଗୌରବ ରଖିବେ ବୋଲି ମୋର ପୂର୍ଣ୍ଣ ଆଶା ।

('ସମାଜ' ତା ୧୪ । ୧ । ୨୨)

---

# ଉତ୍କଳର ସ୍ୱାତନ୍ତ୍ର୍ୟର ସ୍ୱୀକୃତି

ଏଥିପୂର୍ବେ ଭାରତ ଜାତୀୟ ମହାସମିତିରେ ଓଡ଼ିଶାର କେବେ ଜଣେ ଦୁଇଜଣ ପ୍ରତିନିଧି ଯାଉଥିଲେ । ସେ ସମୁଦ୍ରରେ ଜଳବିନ୍ଦୁ ପରି କାହାରି ଆଖିରେ ପଡ଼ୁ ନ ଥିଲେ । ପୁଣି ସେମାନଙ୍କ ମଧ୍ୟରୁ କେବେ କିଏ ବଙ୍ଗଳା କିଏ ବା ବିହାର ସୂତ୍ରରେ ଯାଉଥିଲେ । ଉତ୍କଳର ନାମ ନ ଥିଲା । ମାତ୍ର ଏଥର ଆହମଦାବାଦ କଂଗ୍ରେସରେ ସର୍ବପ୍ରଥମେ ଉତ୍କଳ ଏକ ସ୍ୱତନ୍ତ୍ର ପ୍ରଦେଶ ବୋଲି ସ୍ୱୀକାର କରାଯାଇଅଛି । ପ୍ରତିନିଧିମାନଙ୍କ ବାସଭବନରେ ଏବଂ କଂଗ୍ରେସ ମଣ୍ଡପରେ ଉତ୍କଳ ନିମନ୍ତେ ଅଲଗା ସ୍ଥାନ ନିରୂପିତ ହୋଇଥିଲା । ଏହି ସ୍ୱାତନ୍ତ୍ର୍ୟ ସ୍ୱୀକାର ଉତ୍କଳ ପକ୍ଷରେ କମ ଲାଭ ନୁହେଁ । ଓଡ଼ିଶା ବାହାରେ ଭାରତର ଦୂରବର୍ତ୍ତୀ ଅଞ୍ଚଳରେ ଉତ୍କଳ ପ୍ରଦେଶ ବା ଉତ୍କଳ ଜାତିର ନାମ ବଡ଼ ବେଶୀ ଲୋକ ଜାଣନ୍ତି ନାହିଁ । ଓଡ଼ିଆ ବୋଲି କହିଲେ ପଞ୍ଜାବରେ କେହି କହେ ବଙ୍ଗାଳୀ, ବମ୍ବେଇରେ କେହି କହେ ବିହାର ଲୋକଙ୍କ ସଙ୍ଗେ ରହି । ଗଲାବର୍ଷ ମହାତ୍ମାଗାନ୍ଧୀ ୟଙ୍ଗଇଣ୍ଡିଆ ଖବର କାଗଜରେ ଲେଖିଥିଲେ କି ଓଡ଼ିଶା କେବଳ ଭୂଗୋଳରେ ଗୋଟିଏ ନାମ ମାତ୍ର । ଏଥିର ଅର୍ଥ ଏହି ଯେ ଭୂଗୋଳ ପଢ଼ିବା ଲୋକେ କେବଳ ଓଡ଼ିଶାର ନାମ ଜାଣନ୍ତି । ତାଛଡ଼ା ଆଉ କୌଣସି କାର୍ଯ୍ୟରେ ବା କୌଣସି ଘଟନାରେ ଓଡ଼ିଶାର ନାମ କେଉଁଠାରେ ପଡ଼େ ନାହିଁ । ଯଥାର୍ଥରେ ଆଲାହାବାଦ, ଲାହୋର, ଆହମଦାବାଦ, ବମ୍ବେଇ ପ୍ରଭୃତି ସ୍ଥାନରେ ଆମ ଘର ଓଡ଼ିଶାରେ କହିଲେ କେହି ତେତେ ବୁଝି ପାରନ୍ତି ନାହିଁ, କେବଳ ଜଗନ୍ନାଥ ପ୍ରଭୁଙ୍କ ବାନାଧରି ପୁରୀ ନାମରେ ଓଡ଼ିଆମାନେ ଦୂର ଦେଶରେ ପରିଚିତ ହୋଇଥାନ୍ତି । ଏଥିର କାରଣ ଏହି ଯେ ଭାରତର ରାଜନୈତିକ ଆନ୍ଦୋଳନରେ ଏବଂ ଭାରତର ମହାଜାତୀୟ ସମସ୍ୟାରେ ଓଡ଼ିଆମାନେ କେବେ ଜଣାପଡ଼ିବା ଭଳି ଯୋଗ ଦେଇ ନାହାନ୍ତି କିମ୍ବା ସେମାନଙ୍କର ସ୍ୱତନ୍ତ୍ରତାର ପରିଚୟ ମିଳି ନାହିଁ । ଏପରିକି ଓଡ଼ିଆ-ଭାଷୀ ଅଞ୍ଚଳ ସବୁକୁ ଏକତ୍ରରେ ଏକ ଶାସନାଧୀନ ରଖିବାର ଯେ ଆନ୍ଦୋଳନ ପ୍ରାୟ ଗଲା କୋଡ଼ିଏ ବର୍ଷ ହେଲା ଓଡ଼ିଶାରେ ଲାଗିଅଛି ଉତ୍କଳ ବାହାରେ ତାହା ଅତି ଅଳ୍ପ ଲୋକ ଜାଣନ୍ତି । ଓଡ଼ିଶା ଅସହଯୋଗରେ ମିଶି କଂଗ୍ରେସରେ ଯୋଗଦେବା ଦ୍ୱାରା ଉତ୍କଳ ଦେଶମିଶ୍ରଣରେ ବାଧା ଘଟିଲା ବୋଲି କାହାରି କାହାରିଠାରୁ ଶୁଣାଯାଏ । ଏପରିକି ଯେଉଁମାନେ ଏପର୍ଯ୍ୟନ୍ତ ଓଡ଼ିଶାରେ ମୁଖିଆ ନେତା ବୋଲାଇ ଆସିଥିଲେ ସେମାନଙ୍କ ଭିତରୁ

ଅନେକ ଏହା କହୁଥାନ୍ତି । ମାତ୍ର ଆମ୍ଭମାନଙ୍କ ମତରେ ଭାରତ ଜାତି ନିକଟରେ ଉତ୍କଳ ସ୍ୱତନ୍ତ୍ରରେ ଜଣାପଡ଼ି ନ ଥିବାରୁ ଆମ୍ଭମାନଙ୍କର ଦେଶମିଶ୍ରଣ ଉଦ୍ୟମ ଏପର୍ଯ୍ୟନ୍ତ ସଫଳ ହୋଇନାହିଁ । ଆମ୍ଭମାନଙ୍କ ପରେ ଆନ୍ଧ୍ରମାନେ ସ୍ୱତନ୍ତ୍ର ଆନ୍ଧ୍ର ପ୍ରଦେଶ ଗଠନର ଉଦ୍ୟମ କଲେ । ମୂଳରୁ ଭାରତ ଜାତି ସେମାନଙ୍କର ଏ ଉଦ୍ୟମର ଆବଶ୍ୟକତା ସ୍ୱୀକାର କରି ଅଛନ୍ତି ଏବଂ ଆନ୍ଧ୍ର ପ୍ରଦେଶ କଂଗ୍ରେସରେ ଏକ ସ୍ୱତନ୍ତ୍ର ସ୍ଥାନ ହୋଇଅଛି । ଆନ୍ଧ୍ରମାନେ ଆପଣାର ଏ ଉଦ୍ୟମରେ ଭାରତୀୟ ଜନସାଧାରଣଙ୍କର ସ୍ୱୀକାର ଓ ସହାନୁଭୂତି ପାଇ ଅଛନ୍ତି । ଫଳରେ ଉତ୍କଳର ଆନ୍ଦୋଳନ ଅପେକ୍ଷା ଆନ୍ଧ୍ର ଆନ୍ଦୋଳନ ଅଧିକ କୃତକାର୍ଯ୍ୟ ଓ ସଫଳ ହୋଇଅଛି । ଓଡ଼ିଆମାନେ ଦେଶମିଶ୍ରଣ ଲାଗି ଏତେକାଳ ସରକାରଙ୍କ ଆଶ୍ରା ଧରିଛନ୍ତି, ତହିଁରେ କି ଫଳ ହୋଇଅଛି ? ଭାରତ ସେକ୍ରେଟାରୀ ମଣ୍ଟେଗୁ ସାହେବ ଓଡ଼ିଆମାନଙ୍କ ଦାବୀ ନ୍ୟାୟସଙ୍ଗତ ବୋଲି ସ୍ୱୀକାର କରି ସୁଦ୍ଧା କଣ କହି ଅଛନ୍ତି ? ସେ କହିଛନ୍ତି କି ଭିନ୍ନ ଭିନ୍ନ ପ୍ରଦେଶମାନେ ଆପୋଷରେ ଆପଣା ଭିତରେ ଏ ପ୍ରସଙ୍ଗରେ ମୀମାଂସା କରିବା ଆବଶ୍ୟକ । ଏଥିଲାଗି ଭାରତ ଜାତିର ସାହାଯ୍ୟ ଅବଶ୍ୟକ ନୁହେଁ କି ? ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ, ଓଡ଼ିଆମାନେ ଏକ ସ୍ୱତନ୍ତ୍ର ଜାତି ଏହା ଭାରତରେ ପ୍ରଥମେ ଜଣା ପଡ଼ିବା ଦରକାର । ତାହାହେଲେ ଓଡ଼ିଆମାନଙ୍କ ଦାବୀ ନ୍ୟାୟସଙ୍ଗତ କି ନୁହେଁ ଭାରତ ଜନସାଧାରଣ ବିଚାର କରିପାରିବେ । ଆମ୍ଭମାନଙ୍କ ଦାବୀ ନ୍ୟାୟସଙ୍ଗତ ବୋଲି ଜଣାଗଲେ ଭାରତ ଜାତିର ସହାନୁଭୂତି ଓ ସହଯୋଗିତା ମିଳିବ । ଯେଉଁମାନେ ଉତ୍କଳ ଦେଶ ମିଶ୍ରଣ ବିଷୟରେ ସରକାରଙ୍କ ଫଏସଲା ଉପରେ ନିର୍ଭର କରନ୍ତି ସେମାନେ ମଧ୍ୟ ଅବଶ୍ୟ ସ୍ୱୀକାର କରିବେ ଯେ ଭାରତ ଜାତିର ଏପ୍ରକାର ସହାନୁଭୂତି ଓ ସହଯୋଗିତା ସରକାରଙ୍କ ମୀମାଂସାରେ ବହୁତ କାମ ଦେଖାଇବ । ଦେଶମିଶ୍ରଣ ଏପର୍ଯ୍ୟନ୍ତ ଓଡ଼ିଆ-ମାନଙ୍କର ଏକମାତ୍ର ପ୍ରଧାନ ରାଜନୈତିକ ଆକାଂକ୍ଷା ହୋଇ ରହିଅଛି । ଗଲାବର୍ଷ ଚକ୍ରଧରପୁର ଉତ୍କଳ ସମ୍ମିଳନୀରେ କଂଗ୍ରେସର ଉଦ୍ଦେଶ୍ୟ, ସମ୍ମିଳନୀର ଉଦ୍ଦେଶ୍ୟର ଅନ୍ତର୍ଭୁକ୍ତ ହେଲାବେଳେ ଅସହଯୋଗ ବିରୋଧୀ କେହି କେହି ଆପତ୍ତି କରିଥିଲେ କି ଏହାଦ୍ୱାରା ଉତ୍କଳ ଦେଶମିଶ୍ରଣରେ ବାଧା ଘଟିବ । ଆମ୍ଭେମାନେ ସେତେବେଳେ କହିଥିଲୁ ଓ ଏବେ ମଧ୍ୟ କହୁଅଛୁ ଯେ ଭାରତ ଜାତୀୟ ମହାସମିତିରେ ଯୋଗ ଦେବା ଏବଂ ତହିଁର ଉଦ୍ଦେଶ୍ୟ ପୂରଣ କରିବାରେ ଏକା ଉତ୍କଳର ଏହି ଜାତୀୟ ଆକାଂକ୍ଷା ପୂର୍ଣ୍ଣ ହେବ । ତେଣୁ ସକଳ ଶ୍ରେଣୀର ଉତ୍କଳବାସୀଙ୍କର କଂଗ୍ରେସରେ ଯୋଗଦେବା ଏବଂ ଆପଣା ଆପଣା ମତ ଅନୁସାରେ କଂଗ୍ରେସ କାର୍ଯ୍ୟ ପ୍ରଚାରରେ ସହାୟତା କରିବା ଉଚିତ । ଅସହଯୋଗର ସମୁଦାୟ କାର୍ଯ୍ୟ ଯେଉଁମାନେ ପୂରାପୂରି ଗ୍ରହଣ କରିବାକୁ ରାଜି ନୁହନ୍ତି, ସେମାନଙ୍କର

କଂଗ୍ରେସରେ ଯୋଗଦେବାର କୌଣସି ଆପତ୍ତି ହୋଇ ନ ପାରେ । ସ୍ୱଦେଶୀ ପ୍ରଚାର ନିଶାନିବାରଣ ପ୍ରଭୃତି କାର୍ଯ୍ୟରେ ସେମାନଙ୍କର ବୋଧହୁଏ ଅମତ ନାହିଁ । ଏହି ଦୁଇଟି କାର୍ଯ୍ୟ ସେମାନେ ଭଲରୂପେ କରନ୍ତୁ । ଆଇନ ଭାଙ୍ଗିବା ନିମନ୍ତେ ଉତ୍କଳର ଅସହଯୋଗୀମାନେ ଏବେ ସୁଦ୍ଧା ତେତେ ଉଦ୍‌ବ୍ୟସ୍ତ ନୁହନ୍ତି । ମହାତ୍ମାଗାନ୍ଧି ମଧ୍ୟ ଓଡ଼ିଶାର ତାହା ଆଶା କରନ୍ତି ନାହିଁ । ମାତ୍ର ଭାରତର ଅନ୍ୟାନ୍ୟ ପ୍ରଦେଶ ଲାଗି ଉତ୍କଳ ଖଦଡ଼ର ଏକ ଗୋଦାମ ହୋଇପାରିଲେ ସେ ଅତ୍ୟନ୍ତ ସୁଖୀ ହେବେ । ଏ ପ୍ରଦେଶର ଚିରଦରିଦ୍ରତା ଏହାଦ୍ୱାରା ଘୁଞ୍ଚିବ ଏବଂ ଏହାଦ୍ୱାରା ଉତ୍କଳ ଭାରତର ଉପସ୍ଥିତ ଜାତୀୟ ଆନ୍ଦୋଳନରେ ଯେ ସହାୟତା କରିବ ତାହା ନିଶ୍ଚୟ ସମସ୍ତଙ୍କ ଗୋଚରରେ ଆସିବ ।

('ସମାଜ', ତା ୨୧ । ୧ । ୨୨)

---

# କମଧିକଂ ବଜ୍ଜବଚରେଷ୍ଟ

ପଣ୍ଡିତ ମଦନମୋହନ ମାଳବ୍ୟଙ୍କ ପୁଅ ଶ୍ରୀମାନ ରାଧାକାନ୍ତ ମାଳବ୍ୟ ଯୁକ୍ତପ୍ରଦେଶ ସରକାରଙ୍କ ବ୍ୟବସ୍ଥାପକ ସଭାରେ ଜଣେ ମେମ୍ବର ଥିଲେ । ରାଓଲଟ୍ ଆଇନ ବଡ଼ଲାଟ ସଭାରେ ମଞ୍ଜୁର ହେଲାବେଳେ ଭାରତର ଲୋକସାଧାରଣଙ୍କ ମତ ଗ୍ରାହ୍ୟ ହୋଇ ନ ଥିଲା ବୋଲି ପଣ୍ଡିତ ମଦନମୋହନ ପ୍ରତିବାଦ ସ୍ୱରୂପ କାଉନ୍‌ସିଲ ଛାଡ଼ିଥିଲେ । ପରେ ଅସହଯୋଗ ପ୍ରଭାବରେ ଆଉ କୌଣସି କାଉନ୍‌ସିଲକୁ ଗଲେ ନାହିଁ । ମାତ୍ର ତାଙ୍କ ପୁଅଙ୍କର ଶାସନ ସଂସ୍କାରରେ ବିଶ୍ୱାସ ଥିଲା । ତେଣୁ ଅସହଯୋଗ ଆନ୍ଦୋଳନରେ ଯୋଗ ନ ଦେଇ ସେ ଆପଣା ପ୍ରଦେଶର ଲାଟସଭାକୁ ମେମ୍ବର ହୋଇ ଯାଇଥିଲେ । ଯୁକ୍ତପ୍ରଦେଶ ସରକାର ଭାରି କଡ଼ା । ଅସହଯୋଗ ଆନ୍ଦୋଳନକୁ ଦବାଇବା ଲାଗି ସେଠାରେ ଯେପରି କାଣ୍ଡ ହେଉଛି ବଙ୍ଗଳା ଛଡ଼ା ଅନ୍ୟ କୌଣସି ପ୍ରଦେଶରେ ସେତେଦୂର ହେଉଥିବାର ଜଣା ଯାଉନାହିଁ । ଯେସବୁ ଆଇନଦ୍ୱାରା ସରକାର ସେ ପ୍ରଦେଶରେ ଦମନ ନୀତି ଜାରି କରିଅଛନ୍ତି ସେସବୁ ଆଇନ ଉଠାଇ ଦେବା କାରଣ ସେଠା ଲାଟସଭାରେ ଏକ ପ୍ରସ୍ତାବ ହୋଇଥିଲା । ସରକାରଙ୍କ ପକ୍ଷ ସମର୍ଥନକାରୀ ଜଣେ ମେମ୍ବର ଏ ପ୍ରସ୍ତାବରେ କେତେକ ପରିବର୍ତ୍ତନ ଆଣିଲେ । ସରକାର ହାଇ ମାଇଲେ ଫୁଟିକି ମାରିବା ଲାଗି ସବୁବେଳେ ଛଅ।ଣ ପଞ୍ଚାଏ ମେମ୍ବର ସବୁ କାଉନ୍‌ସିଲରେ ଅଛନ୍ତି । ଏମାନେ ହିଁ ସରକାରଙ୍କ ବଳ । ଶାସନ ସଂସ୍କାରରେ ଏମାନଙ୍କ ସଂଖ୍ୟା ବଢ଼ିଛି । ଫଳରେ ପ୍ରସ୍ତାବିତ ପରିବର୍ତ୍ତନ ଗୃହୀତ ହେଲା । ମାତ୍ର ଏ ପରିବର୍ତ୍ତନ ଫଳରେ ସରକାରଙ୍କର ଉତ୍କଟ ଓ ଅନ୍ୟାୟ ଦମନ ନୀତିର କିଛି ମାତ୍ର ପରିବର୍ତ୍ତନ ହେବ ନାହିଁ । ଯୁକ୍ତପ୍ରଦେଶ ବ୍ୟବସ୍ଥା ସଭାର ଅନେକ ସଭ୍ୟ ଏଥିର ଘୋର ପ୍ରତିବାଦ କରିଥିଲେ । ପଣ୍ଡିତ ରାଧାକାନ୍ତ ମାଳବ୍ୟ ବିଶେଷ ଆପତ୍ତି ଉଠାଇ ଥିଲେ । ମାତ୍ର ଏସବୁ ବ୍ୟର୍ଥହେଲା । ଏହାଛଡ଼ା ଅଳ୍ପଦିନ ତଳେ ଅଯୋଧ୍ୟାର ପ୍ରଜାସ୍ୱତ୍ତ୍ୱ ଆଇନ ଏହି ବ୍ୟବସ୍ଥାପକ ସଭାରେ ପାସ୍ ହୋଇଥିଲା । ଏହା ପ୍ରଜାସାଧାରଣଙ୍କ ପକ୍ଷେ ବଡ଼ ଅନିଷ୍ଟକର ହେବ । ସମସ୍ତଙ୍କର ଆଶାଥିଲା ଯେ ଲାଟ ଏଥିରେ ମଞ୍ଜୁର ଦେବେ ନାହିଁ । ମାତ୍ର ସେ ଆଶା ବୃଥା ହୋଇଅଛି । ଏସବୁ ଘଟଣା ଦେଖି ରାଧାକାନ୍ତଙ୍କର ସରକାରଙ୍କ ଠାରୁ ବିଶ୍ୱାସ ଛାଡ଼ିଅଛି । କାଉନ୍‌ସିଲରେ କିଛି ଫଳ ନାହିଁ ବୋଲି ସେ ଏବେ ବେଶ୍ ବୁଝିଛନ୍ତି । ଏହିସବୁ କାରଣ ଦେଖି ସେ କାଉନ୍‌ସିଲ ସଭ୍ୟପଦରୁ ଇସ୍ତଫା ଦେଇଛନ୍ତି । ସରକାରଙ୍କ କାର୍ଯ୍ୟରେ ପ୍ରତିବାଦ କରିବାର ଯେତେ ଉପାୟ ଅଛି କାଉନ୍‌ସିଲ ମେମ୍ବର

ପଦ ଛାଡ଼ିବା ତହିଁ ମଧ୍ୟରୁ ଗୋଟିଏ ପ୍ରଧାନ । ଅସହଯୋଗରେ ଯେଉଁମାନେ ମତ ଦେଉ ନାହାନ୍ତି ସେମାନେ ସୁଦ୍ଧା ନିଜ କାର୍ଯ୍ୟଦ୍ୱାରା ଏହା ପ୍ରମାଣ କରୁଅଛନ୍ତି । ମାଲବ୍ୟଙ୍କ ପୁଅ ପୁତୁରା ପୂର୍ବ ଅସହଯୋଗ ଦୀକ୍ଷା ଗ୍ରହଣ କରି କେତେଣେ ଜେଲରେ । ସୁଯୋଗ୍ୟ ସହଯୋଗୀ ବଡ଼ପୁଅ ଏବେ ଫଳିରେ ଅସହଯୋଗୀ ହୋଇ ବସିଲେଣି । ନଜେ ନ ଯଯୌ ନ ତସ୍ଥୌ । ବଡ଼ଲାଟଙ୍କ ସହିତ ସାଲିସ ସଭାର ଫଳାଫଳରେ ମାଲବ୍ୟଙ୍କ ପରିବାରରେ କି ପରିବର୍ତ୍ତନ ହେବ ଦେଖାଯାଉ ।

ଭାରତର ଭିନ୍ନ ଭିନ୍ନ ପ୍ରଦେଶରୁ ଦମନ ନୀତି ସମ୍ପର୍କୀୟ ଆଇନମାନ ଉଠାଇବା ପ୍ରସଙ୍ଗରେ ବଡ଼ଲାଟ ସଭାରେ ପ୍ରସ୍ତାବ ହୋଇଥିଲା । ଅଧିକାଂଶ ମେମ୍ବରଙ୍କ ମତ ପ୍ରସ୍ତାବ ବିରୁଦ୍ଧରେ ହେଲା । ସରକାରୀ ମେମ୍ବରଯାକ ସମସ୍ତେ ବିପକ୍ଷରେ ମତ ଦେଲେ । ଗୋରା ବେସରକାରୀ ମେମ୍ବରମାନେ ଏସବୁ କ୍ଷେତ୍ରରେ ଯାହା କରିଥାନ୍ତି ତାହାହିଁ କଲେ । ଆପଣା ଗୋଷ୍ଠୀ ଛାଡ଼ି ସେମାନେ ଅନ୍ୟଆଡ଼େ ଯିବା ଅସମ୍ଭବ । ସରକାରଙ୍କ ସୁପାରିଶରେ ଯେଉଁ ଦେଶୀ ଲୋକେ ଲାଟସଭାରେ ବସିଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ନିମକହଲାଲ ପଣ ଦେଖାଇଲେ । ଲୋକଙ୍କ ଦ୍ୱାରା ନିର୍ବାଚିତ ହୋଇ ଯାଇଥିଲେ ସୁଦ୍ଧା ସରକାରଙ୍କ ମୁହଁର ଖାତିରି ଏଡ଼ିବା ଯେଉଁମାନଙ୍କ ପକ୍ଷେ କଷ୍ଟସାଧ୍ୟ ସେମାନେ ବି ବିପକ୍ଷରେ ଗଲେ । ଫଳରେ ପ୍ରସ୍ତାବ ବ୍ୟର୍ଥ ହେଲା । ଶାସନସଂସ୍କାର ଫଳରେ ବ୍ୟବସ୍ଥାପକ ସଭାମାନ କଳ୍ପଦ୍ରୁମ ହୋଇଅଛି ବୋଲି ଯେଉଁମାନେ ଭାବୁଥିଲେ ଏସବୁ ଘଟଣାରେ ସେମାନଙ୍କ ଆଖି ଫିଟିବ କି ? ଏତ ଗୋଟିଏ ଘଟଣା ନୁହେଁ । ଗତ ଏକବର୍ଷ ମଧ୍ୟରେ ଏଭଳି କେତେ ଘଟଣା ଦେଖାଗଲାଣି "କିମଧିକଂ ବିସ୍ତରେଣ" ।

('ସମାଜ', ତା ୨୮ । ୧ । ୨୨)

# ୧୪୪ ଧାରା

ଜାନୁୟାରୀ ୧୦ ତାରିଖଠାରୁ ୨୫ ତାରିଖ ସୁଦ୍ଧା ପନ୍ଦରଦିନ ମଧ୍ୟରେ ମୋ ଉପରେ ପାଞ୍ଚଟା ୧୪୪ ଧାରା ହୁକୁମ ଜାରି ହୋଇଯାଇଛି । କଟକରେ ଦୁଇଟା, ସିଂହଭୂମି, ସମ୍ବଲପୁର ଓ ବାଲେଶ୍ୱରରେ ଗୋଟିଏ ଲେଖାଏଁ । ଏସବୁ ହୁକୁମ, ତାହାର ଜାରି ଓ ଘଟନାରେ କେତେକ ବିଶେଷତ୍ୱ ଅଛି ।

## କଟକ

୧୦ ତାରିଖ ହୁକୁମରେ କଟକ ମେଜେଷ୍ଟ୍ରେଟ ମୋର ଜିଲାର ସାଧାରଣ ସଭାରେ ବକ୍ତୃତା ଦେବା ଏପରିକି ଉପସ୍ଥିତ ହେବାକୁ ମଧ୍ୟ ନିଷେଧ କଲେ । ତାହାର ପରଦିନ ଅର୍ଥାତ୍ ୧୧ ତାରିଖ କଟକରେ ଯେଉଁ ସାଧାରଣସଭା ହୋଇଥିଲା ସେଥିରେ ମୁଁ ଉପସ୍ଥିତ ନ ହୋଇ ମୋର ସନ୍ଦେଶ ଲେଖି ପଠାଇଥିଲି । ତାହା ପଢ଼ାଗଲା ଏବଂ ସେଥିରୁ ଅନେକ ଖଣ୍ଡ ଉପସ୍ଥିତ ବ୍ୟକ୍ତିମାନେ କିଣିନେଇ ଯାଇଥିଲେ । ସେଥିରେ ଅବଶ୍ୟ କୌଣସିପ୍ରକାର ଶାନ୍ତିଭଙ୍ଗ ଘଟିନାହିଁ । ତଥାପି ଏଥିରେ କଟକ ଜିଲା କର୍ତ୍ତୃପକ୍ଷ ଟିକିଏ ଆପଣାକୁ ବୋଧହୁଏ ଅପଦସ୍ତ ମନେ କଲେ । ସେମାନେ ମନେ କରିଥିଲେ ଯେ ୧୪୪ ଧାରାର ଯେ ଅମୋଘଅସ୍ତ୍ର ପେଶିଛନ୍ତି ସେଥିରେ ମୋର ଆଉ କାବୁ ନାହିଁ । ଲିଖିତ ସନ୍ଦେଶ ପଢ଼ାହେବାଲାଗି ଯେ ଛିଦ୍ର ରହିଗଲା, ଏଥିରେ ଆପଣାର ବିଚକ୍ଷଣତା ଦୂରଦୃଷ୍ଟିର ପ୍ରଶଂସା କରିବାକୁ ସେମାନଙ୍କର ବାଟ ରହିବ ନାହିଁ । ତେଣୁ ସଙ୍ଗେ ସଙ୍ଗେ ଏ ଛିଦ୍ର ମୁଦିବାକୁ ଲାଗିଲେ । ମୁଦିବାକୁ ମାଲ ମସଲା କଣ ? ସେହି ୧୪୪ ଧାରା କାଦୁଅ । ୧୩ ତାରିଖ ଦିନ ପୁଣି ହୁକୁମ ବାହାରିଲା ଯେ ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟରେ କଟକ ଜିଲାର କୌଣସି ସାଧାରଣ ସଭାରେ ମୋର ମୌଖିକ ବା ଲିଖିତ ବକ୍ତୃତା ହୋଇ ପାରିବ ନାହିଁ । ଏଭଳି ହୁକୁମର ଆଇନ ସଙ୍ଗତ ଅସଙ୍ଗତ ବିଷୟରେ କିଛି କହିବା ଦରକାର ନାହିଁ । ମାତ୍ର ଏଥର ସୁଦ୍ଧା କଟକ ମେଜେଷ୍ଟ୍ରେଟ ଓ ତାଙ୍କ ପରାମର୍ଶଦାତା ବାହାଦୁରମାନଙ୍କ ଦୂରଦୃଷ୍ଟିର ବାହାଦୁରୀ କରାଯାଇ ନ ପାରେ । ମୁଁ ଯେବେ ଏ ହୁକୁମ ଅକ୍ଷରେ ଅକ୍ଷରେ ମାନେ ତଥାପି ହୁକୁମର ଉଦ୍ଦେଶ୍ୟ ବ୍ୟର୍ଥ କରିବା ଲାଗି ଛିଦ୍ର ବହୁତ ଅଛି । ସୂଚନା ସ୍ୱରୂପ କୁହାଯାଇପାରେ ଯେ ମୋ ବକ୍ତୃତା ଯଦି ଗ୍ରାମୋଫୋନଦ୍ୱାରା ସଭାରେ ପ୍ରକାଶିତ ହୁଏ, ତେବେ କି ବିଗିଡ଼ିବ ? ହୁଏତ ସେତେବେଳେ

"ଇଣ୍ଡିଆନ୍ ଡିଷ୍ଟ୍ରିକ୍ଟ" ନ୍ୟାୟରେ ପୁଣି ୧୪୪ ଧାରା ବାହାରିବ ଯେ ମୌଖିକ, ଲିଖିତ ବା ଗ୍ରାମୋଫୋନ୍ତ ନାହିଁ । ଦେଖାଯାଉ ଏହିପରି ମତରେ ବେପାର କେତେଦୂର ଯାଉଛି ।

## ସିଂହଭୂମି

ସିଂହଭୂମି ହୁକୁମ ଟିକିଏ କୌତୁକାବହ । ସେ ଜିଲାର ଖୋଦ ମାଲିକ ମୁଁ ଯିବାବେଳେ ନ ଥିଲେ । ଗୃକୁଲିଆ ଓ ଜାମସେଦପୁର ଦୁଇ ଯାଗାରେ କାର୍ଯ୍ୟସାରି କୋଲହାନକୁ ଯିବା ବାଟରେ ଖୋଦ ମାଲିକଙ୍କ ଅସ୍ଥାୟୀ ସ୍ଥଳାଭିଷିକ୍ତ ହାକିମଙ୍କଠାରୁ ଖଣ୍ଡେ ପତ୍ର ପାଇଲି । ସେଥିରେ ତାଙ୍କ ସହିତ କଚେରୀରେ ଦେଖା କରିବାକୁ ସେ ଅନୁରୋଧ କରିଛନ୍ତି । ଅନୁରୋଧ ରଖି ଯଥାସମୟରେ ଦେଖାକଲି । ମୋର କାର୍ଯ୍ୟ ଦାୟିତ୍ୱଜ୍ଞାନର ସେ ବହୁ ପ୍ରଶଂସା କଲେ । ମୋଭଳି ଲୋକଙ୍କ ବକ୍ତୃତାରେ ଶାନ୍ତିଭଙ୍ଗ ନାହିଁ ବୋଲି ମାନିଲେ । ଖଜଣା ବନ୍ଦ ବିଷୟରେ ମୁଁ ଲୋକଙ୍କୁ କହିବି ବୋଲି ତାଙ୍କର ଆତଙ୍କ ଥିଲା । ମୁଁ କହିଲି, ସେଥିଲାଗି ସିଂହଭୂମିରେ ବର୍ତ୍ତମାନ ସମୟ ଆସିନାହିଁ ; ବରଂ ପ୍ରଜାମାନଙ୍କର ସେଭଳି ଇଚ୍ଛା ବା ଅଭିପ୍ରାୟ ଥିଲେ ସେଥିରୁ କ୍ଷାନ୍ତ ରହିବାକୁ ମୁଁ ବୁଝାଇବି । ସ୍ୱଦେଶୀ ମାଦକ ନିବାରଣ ଆଦି ଅସହଯୋଗର ଅନ୍ୟାନ୍ୟ ବିଷୟରେ ଏ ଜିଲାର ଲୋକସାଧାରଣଙ୍କୁ ବିଶେଷତଃ କୋଲହାନର ହୋ ମାନଙ୍କୁ କହିବା ସ୍ଥିର କରିଛି । ସେ ମୋ କଥାରେ ବିଶ୍ୱାସ କଲେ ସୁଦ୍ଧା କୋଲହାନକୁ ନ ଯିବାଲାଗି ମୋତେ ଅନୁରୋଧ କଲେ । ପୂର୍ବରୁ ସମୟ ନିରୂପିତ ହୋଇଥିବାରୁ କୋଲହାନର ଆଦିମ ଅଧିବାସୀ ହୋ ଭାଇମାନଙ୍କୁ ହତାଶ କରି ମୁଁ ତାଙ୍କ ଅନୁରୋଧ ରଖିବାକୁ ଅସମର୍ଥ ବୋଲି କହିବାରୁ ସେ ମୋ ଆଗେ ୧୪୪ ଧାରା ହୁକୁମ ଲେଖିବାକୁ ଆରମ୍ଭ କଲେ । ତାଙ୍କ ଉଦ୍ୟମ ଦେଖି ମୁଁ ବିଦାୟ ନେବାକୁ ଉଠିବାରୁ ଆଉ ୫ ମିନିଟ ଅପେକ୍ଷା କରିବାକୁ ପୁନର୍ବାର ଅନୁରୋଧ କଲେ । ମୁଁ କହିଲି ମୁଁ ଏଠାରୁ ୧୪୪ ଧାରା ହୁକୁମ ନେବାକୁ ଆସିନାହିଁ । ଆପଣ କାଏଦା ମୁତାବକ ଜାରି କରନ୍ତୁ । ତେଣିକି ମାନିବା ନ ମାନିବା ମୋର ଇଚ୍ଛାଧୀନ । ଏତିକିରେ ତାଙ୍କଠାରୁ ବିଦାୟ ନେଇ ସଙ୍ଗେ ସଙ୍ଗେ ମଟରଯୋଗେ କୋଲହାନ ଗ୍ଲିଲି । ମାତ୍ର ମେଜେଷ୍ଟ୍ରର ତାଙ୍କ ହୁକୁମରେ ତ୍ରୁଟି କଲେ ନାହିଁ । କଳର ଗୋଟାଏ ଚକରେ ଯେବେ ଥରେ ଟିପ ବାଜିଗଲା ତେଣିକି ସବୁ ଚକ ଘୂରିଲା । ସେ ମୋତେ ଯେ ଖାଲି କୋଲହାନ ଯିବାକୁ ମନା କରୁଥିଲେ ତାହା ନ ମାନିବା ଫଳରେ ସିଂହଭୂମି ଜିଲାରେ କୌଣସିଠାରେ ସଭାସମିତିରେ ବକ୍ତୃତା ଦେବା ବା ଉପସ୍ଥିତ ହେବାକୁ ୧୪୪ ଧାରାର

ହୁକୁମରେ ନିଷେଧ କରାଗଲା । ହୁକୁମ ମୋ ପାଖେ ପହଞ୍ଚିଲା ବେଳକୁ ଗୃଇଁବସାରୁ ୭୦ ମାଇଲ ଦୂରବର୍ତ୍ତୀ କୋଲହାନ ଅନ୍ତର୍ଗତ ଜଗନ୍ନାଥପୁରଠାରେ କାର୍ଯ୍ୟ ଶେଷକରି ମୁଁ ଫେରିଛି । ଯଥାସମୟରେ ହୁକୁମଟା ମୋତେ ଧରାଇବାର ଖୁବ ଉଦ୍ୟମ ହୋଇଥିଲା । ବାଟରେ କେଉଁ ଦୂତର ମଟରକାର ଭାଙ୍ଗିଲା, କେଉଁ ଦୂତ ସାଇକେଲରେ ଧାଇଁ ଧାଇଁ ଥକି ପଡ଼ିଲା । ତଥାପି କାମ ପୂରା ପଡ଼ିଲା ନାହିଁ । ଉଦ୍ଦେଶ୍ୟ ସଫଳ ହେଲା ନାହିଁ । ମୁଁ ଫେରିଲା ବେଳକୁ ବାଟରେ ଏହି ଭଗ୍ନଦୂତ ଜଣକୁ ଦେଖିଲି । ଯୋରରେ ମଟର ଚଳାଇ ଥିଲେ ହୁକୁମର ଜାଲ ଏଡ଼ାଇ ପଳାଯାଇଥାଆନ୍ତି । ମାତ୍ର ଭଗ୍ନଦୂତ ବିଚରା ହୁକୁମଟା ମୋତେ ଦେବାକୁ ଯେପରି ଉତ୍କଣ୍ଠିତ ଓ ଉଦ୍‌ବ୍ୟସ୍ତ ଥିଲା ସେତେବେଳେ ତାହା ନ ନେଇଥିଲେ ତାହାପ୍ରତି ନିଷ୍ଠୁରତା ହୋଇଥାଆନ୍ତା ।

## ସମ୍ବଲପୁର

ସମ୍ବଲପୁର ଜିଲାର ଝାରସୁଗୁଡ଼ାରେ ୨୦ ତାରିଖ ସକାଳେ ପହଞ୍ଚିଲି । ସେ ଜିଲାର ଝାରସୁଗୁଡ଼ା, ସମ୍ବଲପୁର ଓ ବରଗଡ଼ ଏହି ତିନି ସ୍ଥାନରେ କେବଳ କଂଗ୍ରେସ ମେମ୍ବରଙ୍କର ସମ୍ମିଳନୀ ହେବାର ନୋଟିସ ଆଗରୁ ଦିଆଯାଇଥିଲା । ଏହି ସମ୍ମିଳନୀ ବନ୍ଦ କରିବା କାରଣ ଜିଲା ସାହେବ ୧୪୪ ଧାରା ଅନୁସାରେ ସାଧାରଣ ହୁକୁମ କରିଥିଲେ କି ଉକ୍ତ ତିନିସ୍ଥାନ ପୋଷ୍ଟଅଫିସରୁ ୫ମାଇଲ ମଧ୍ୟରେ ସାଧାରଣ ସଭା ହୋଇ ପାରିବ ନାହିଁ । ଏଭଳି କ୍ଷେତ୍ରରେ ଯେ ବିଧାନରେ ସଭା କରିବାକୁ କଂଗ୍ରେସ ଉପଦେଶ ଦେଇଛନ୍ତି ତଦନୁସାରେ ସଭା ହେବାର ସ୍ଥିରହେଲା । ସମ୍ବଲପୁର ଜିଲାରେ ପ୍ରବେଶ ପୂର୍ବରୁ ସେଠାରେ ୧୪୪ ଧାରା ପାଇବି ବୋଲି ଆଶା ରଖିଥିଲି । ମାତ୍ର ସାଧାରଣ ୧୪୪ ଧାରାରେ ମୋ ପାପ ଖଣ୍ଡନ ହେଲା ବୋଲି ବିଚାରିଲା ବେଳକୁ ସେହିଦିନ ସନ୍ଧ୍ୟା ସମୟରେ ସେ ଜିଲାର ପୋଲିସ ସାହେବ ଖୋଦ ୧୪୪ ହୁକୁମ ଧରି ମୋ ପାଖେ ଝାରସୁଗୁଡ଼ାରେ ଉପସ୍ଥିତ । ବାଞ୍ଛିତ ଫଳ ପାଇଲେ କିଏ ଖୁସି ନ ହୁଏ ? ସାହେବଙ୍କୁ ସାଦର ସମ୍ଭାଷଣ କରି ହୁକୁମ ଆଗ୍ରହରେ ନେଲି । ଯୋଡ଼ା ୧୪୪ ଧାରା ସତ୍ତ୍ୱେ ସମ୍ବଲପୁରର ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ ନିର୍ଦ୍ଦିଷ୍ଟ ସମୟରେ କଂଗ୍ରେସ ନିରୂପିତ ବିଧାନ ଅନୁସାରେ ସଭା ହେଲା । ପ୍ରତ୍ୟେକ ସଭାରେ ମୋର ଲିଖିତ ବକ୍ତୃତା ପଢ଼ା ହୋଇଥିଲା । ସମ୍ବଲପୁର ସଭାରେ ମୁଁ ନିଜେ ଉପସ୍ଥିତ ଥିଲି । ସଭାପରେ କଂଗ୍ରେସ ମେମ୍ବର ଓ ଅନ୍ୟାନ୍ୟମାନଙ୍କ ସଙ୍ଗେ ସ୍ୱତନ୍ତ୍ର ଘରୋଇ ଭାବରେ ମୁଲାକାତ ଓ କଥାବାର୍ତ୍ତା ହୋଇଥିଲା ।

## ବାଲେଶ୍ୱର

ବାଲେଶ୍ୱରରେ ସଭା ହେବାର ବନ୍ଦୋବସ୍ତ ନ ଥିଲା । ତେଣୁ ସମ୍ବଲପୁରରୁ ବାହୁଡ଼ିବାବେଳେ ସେଠାରେ ମୋର ଓହ୍ଲାଇବାର ଠିକ୍ ନ ଥିଲା । ତଥାପି ବାଲେଶ୍ୱର କର୍ତ୍ତୃପକ୍ଷମାନେ କିପରି 'ସୁରାଖବାର' ମୋ ବାଟକୁ ଚାହିଁ ରହିଥିଲେ । ବାଲେଶ୍ୱର ଷ୍ଟେସନରେ ରେଲ୍ ପହଞ୍ଚିଛି କି ନାହିଁ ପୋଲିସ ସବ୍ଇନ୍ସପେକ୍ଟର ମେଜେଷ୍ଟରଙ୍କ ୧୪୪ ଧାରା ହୁକୁମ ଧରି ମୋ ଗାଡ଼ି ଭିତରେ ଉପସ୍ଥିତ । ନୋଟିସର ଆକାର ପ୍ରକାରରୁ ଜଣାଗଲା ଯେ ଲେଖିବାକୁ ଯେପରି ତର ସହୁ ନାହିଁ ।

('ସମାଜ', ତା ୨୮ । ୧ । ୨୨)

---

# "ନାୟମାତ୍ମା ବଳହୀନେନ ଲଭ୍ୟଃ"

ମହାତ୍ମା ଗାନ୍ଧି କହନ୍ତି କି ସାଲିସ ସଭା ବସି ଭାରତର ସ୍ୱରାଜ୍ୟ ବିଷୟ ବିଚାର ହେବାର ଠିକ୍ ସମୟ ଏବେ ଆସିନାହିଁ । ଏପର୍ଯ୍ୟନ୍ତ ଭାରତବାସୀ ଆପଣାର ପୂର୍ଣ୍ଣଶକ୍ତିର ପରିଚୟ ଦେଇନାହିଁ । ଭାରତବର୍ଷ ଅନେକ କଷ୍ଟ ସହିଲଣି, ଦୁଃଖଦୁର୍ଦ୍ଦଶା ଭୋଗିଲଣି । ମାତ୍ର ଆମ୍ଭେମାନେ ଯାହା ପାଇବାକୁ ଚାହୁଁଛୁ ତା ଦୃଷ୍ଟିରେ ଏ ଦୁଃଖଯନ୍ତ୍ରଣା ଯଥେଷ୍ଟ ନୁହେଁ । ଆହୁରି ଅଧିକ ଶୁଦ୍ଧି ଓ ସାଧନା ଆବଶ୍ୟକ । ବିଶେଷତଃ ଅସହଯୋଗୀ ଦଳ ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ସମର୍ଥ ହୋଇନାହାନ୍ତି । ଯେପରି ସାଧନା ଦରକାର ତାହା ଏପର୍ଯ୍ୟନ୍ତ ହୋଇନାହିଁ । ଲୋକେ କଂଗ୍ରେସର ସ୍ୱେଚ୍ଛାସେବକ ହେଉଛନ୍ତି । ମାତ୍ର ସେମାନଙ୍କ ମଧ୍ୟରୁ ଅନେକେ ଖଦଡ଼ ପିନ୍ଧି ନାହାନ୍ତି କିମ୍ବା ଅସ୍ପୃଶ୍ୟବର୍ଣ୍ଣମାନଙ୍କ ସଙ୍ଗେ ମିଳାମିଶା ବିଷୟରେ ଯେ ବିଧାନ ଅଛି ତାହା ଠିକ୍‌ମତେ ପାଳୁ ନାହାନ୍ତି । ପୂର୍ଣ୍ଣ ଶାନ୍ତି ଓ ଅହିଂସାର ସହିତ ପ୍ରତ୍ୟେକ ସ୍ୱେଚ୍ଛାସେବକ କାର୍ଯ୍ୟ କରିପାରିବେ ବୋଲି ସମ୍ପୂର୍ଣ୍ଣ ବିଶ୍ୱାସ ହୋଇନାହିଁ । ଏହିସବୁ ସାଧନାରେ ଉପଯୁକ୍ତ ନ ହେବାଯାଏ ଅସହଯୋଗୀମାନେ ସ୍ୱରାଜ୍ୟର ଉପଯୋଗୀ ହୋଇଅଛନ୍ତି ବୋଲି ବୋଲିଯାଇ ନ ପାରେ । ଏଭଳି ଉପଯୁକ୍ତ ହୋଇଗଲେ ଦିନ ସ୍ୱରାଜ୍ୟ ଆମ୍ଭମାନଙ୍କ ହାତକୁ ଆପେ ଆପେ ଆସିବ । ମହାତ୍ମାଗାନ୍ଧି କହନ୍ତି ଅସହଯୋଗୀମାନଙ୍କର ଏପରି ଉପଯୋଗିତା ଦେଖିଲେ ସେ ସେହି ଦିନ ବଡଲାଟଙ୍କ ଦ୍ୱାରସ୍ଥ ହୋଇ ନିଜେ ସାଲିସ କମିଟିର ପ୍ରସ୍ତାବ କରିବେ ଏବଂ ସେ ଅବସ୍ଥାରେ ବଡ଼ଲାଟ ମଧ୍ୟ ସୁଯୋଗ ଛାଡ଼ିବେ ନାହିଁ । ଯଥାର୍ଥରେ ଆତ୍ମବଳ ଲାଭ ହିଁ ସ୍ୱରାଜ୍ୟ ଲାଭ । ବୈଦିକ ଋଷି କହିଛନ୍ତି, "ନାୟମାତ୍ମା ବଳହୀନେନ ଲଭ୍ୟଃ" ବଳହୀନ ଲୋକର ଆତ୍ମଲାଭ ହୁଏ ନାହିଁ । ସ୍ୱରାଜ୍ୟପ୍ରାପ୍ତି ଭାରତବାସୀ ପକ୍ଷରେ ଆତ୍ମଲାଭ ଏବଂ ପୂର୍ଣ୍ଣ ବଳ ସଞ୍ଚୟ କରି ନପାରିଲେ ତାହା ଅସମ୍ଭବ । ଭାରତବାସୀ ପକ୍ଷରେ ଏ ବଳ ଧନବଳ ବା ଅସ୍ତ୍ରଶସ୍ତ୍ରର ବଳ ନୁହେଁ, ଏ ତାହାର ଆତ୍ମାର ବଳ, ଧର୍ମର ବଳ ଏବଂ ଚରିତ୍ରର ବଳ । ଅସହଯୋଗୀର କାର୍ଯ୍ୟ ମହାତପସ୍ୟା । ଯେଉଁମାନେ କଂଗ୍ରେସର କର୍ମୀ ବା ସ୍ୱେଚ୍ଛାସେବକ ଦଳଭୁକ୍ତ ହୋଇଅଛନ୍ତି ସେମାନଙ୍କର ଏକଥା ସବୁବେଳେ ମନେ ରଖି କାର୍ଯ୍ୟ କରିବା ଉଚିତ ।

('ସମାଜ', ତା ୨୮ । ୧ । ୨୨)

—————

# ବିହାର ଓ ଓଡ଼ିଶା ସରକାରୀ ନୀତି

ଅସହଯୋଗ ସମ୍ପର୍କୀୟ ସ୍ୱେଚ୍ଛାସେବକ ଦଳ ବେଆଇନ ଘୋଷଣା କରି ବିହାର ଓଡ଼ିଶା ସରକାର ଯେ ଆଇନ ଜାରି କରିଥିଲେ ପରେ ତାହା ଏକପ୍ରକାର ସ୍ଥଗିତ କରି ଯାଇଥିଲା ଏବଂ ସାଙ୍ଗ ଆଦେଶ ହୋଇଥିଲା ଯେ ସରକାରଙ୍କ ଅନୁମତି ଆଗରୁ ନ ନେଇ କୌଣସି ଜିଲ୍ଲା ହାକିମ ଉକ୍ତ ଆଇନ ବଳରେ କାହାରିକୁ ଗିରଫଦାର କରିପାରିବେ ନାହିଁ । ଏ ଆଇନକୁ ଏକାବେଳକେ ଉଠାଇ ଦେଇ ଏବଂ ଏ ଆଇନ ବଳରେ ଦଣ୍ଡ ପାଇଥିବା ଲୋକଙ୍କୁ ଖଲାସ କରିଦେବା କାରଣ ଏଥର ବିହାର ଓଡ଼ିଶା ଲାଟସଭାରେ ପ୍ରସ୍ତାବ ହୋଇଥିଲା । ଏ ପ୍ରସ୍ତାବ ସମ୍ପର୍କରେ ବହୁତ ଆଲୋଚନା ଓ ଆନ୍ଦୋଳନ ହୋଇଥିଲା । ପ୍ରାୟ ସମସ୍ତ ବେସରକାରୀ ସଭ୍ୟ ଆଇନର ତୀବ୍ର ପ୍ରତିବାଦ କରି ପ୍ରସ୍ତାବ ସମର୍ଥନ କରିଥିଲେ । କୋଇଲାଖଣି ମାଲିକମାନଙ୍କର ପ୍ରତିନିଧି ଜଣେ ଗୋରା ମେମ୍ବରଙ୍କ ମନକୁ ଏ ପ୍ରସ୍ତାବ ଭଲ ଲାଗିଲା ନାହିଁ । ଦେଶୀ ମେମ୍ବରମାନେ ଏପରି ଏକମେଳ ବାନ୍ଧିବାର ଦେଖି ତାଙ୍କ ଦେହ ସହିଲା ନାହିଁ । ସେ କହୁ କହୁ କହି ପକାଇଲେ ଯେ ଦେଶୀ ମେମ୍ବରମାନେ ଭୀରୁ ବୋଲି ସରକାରଙ୍କୁ ସମର୍ଥନ ନ କରି ଅଇନ ଉଠାଇବାର ପ୍ରସ୍ତାବ କରୁଛନ୍ତି । ଏଥିର ଜବାବ ସେ ସଙ୍ଗେ ସଙ୍ଗେ ପାଇଗଲେ ଏବଂ କାଉନ୍‌ସିଲ ଘର ଛାଡ଼ି ପଳାଇଲେ । ଜଣେ ସରକାରୀ ଓକିଲ ମେମ୍ବର ଥିଲେ । ସରକାରଙ୍କ ଲାଗି ଖୁବ୍ ଲଢ଼ିଲେ । ଶେଷକୁ ମାକଫରସନ ସାହେବ ମଧ୍ୟ ସରକାରଙ୍କ ତରଫରେ ବହୁତ କଥା କହିଲେ । ସେ ଜମିଦାର ମେମ୍ବରମାନଙ୍କୁ ଅନେକ ବୁଝାଇଲେ । ଆହୁରି ମଧ୍ୟ କହିଲେ କି ବର୍ତ୍ତମାନ ଯେ ଶାସନପ୍ରଣାଳୀ ଚାଲୁଛି ତାହା ବଦଳରେ ଅନ୍ୟ କୌଣସି ବିଧାନ ଚାଲିଲେ ପ୍ରଜାମାନଙ୍କର ବଡ଼ ଖରାପ ହେବ । କବି କହିଛନ୍ତି "ଜଳଗଲା ବନ, ଭଲଗଲା ମନ ଲେଉଟି ନ ଆସେ ଆଉ ।" ମାକଫରସନଙ୍କ ଚାଟୁରେ କେହି ଭୁଲିଲେ ନାହିଁ । ତିନିଦିନ ତର୍କବିତର୍କ ଆଲୋଚନା ଆନ୍ଦୋଳନ ପରେ ଏ ପ୍ରସ୍ତାବ ବିଷୟରେ ମେମ୍ବରମାନଙ୍କ ମତ ନିଆଗଲା । ପ୍ରସ୍ତାବ ସପକ୍ଷରେ ଅଧିକାଂଶଙ୍କ ମତ ଥିବାର ସଭାପତି ଜଣାଇଲେ । ଫଳରେ ପ୍ରସ୍ତାବ କାଉନ୍‌ସିଲରେ ଗୃହୀତ ହେଲା ।

କାଉନ୍‌ସିଲରେ କୌଣସି ପ୍ରସ୍ତାବ ଗୃହୀତ ହେବାପରେ ତଦନୁସାରେ ସଙ୍ଗେ ସଙ୍ଗେ କାର୍ଯ୍ୟ ହୁଏନାହିଁ । ପ୍ରାଦେଶିକ ଲାଟସାହେବ ସେଥିରେ ମଞ୍ଜୁର ଦେବା ଦରକାର ।

ବିହାର ଓଡ଼ିଶା କାଉନ୍‌ସିଲର ଏ ପ୍ରସ୍ତାବକୁ ଲାଟସାହେବ ମଞ୍ଜୁର କରୁଛନ୍ତି କି ନାହିଁ ଦେଖାଯାଉ ।

× × ×

ଚମ୍ପାରନ ଜିଲାର ମାଗୁବା, ସିପ୍ରାହିଆ ପ୍ରଭୃତି ଗୁଡ଼ିଏ ଗାଁରେ ପୁଲିସଫୌଜ ଲୋକମାନଙ୍କୁ ମାରଧର କରି ଘରେ ପଶି ଜିନିଷପତ୍ର ଲୁଟିକରି ଯେସବୁ ଅତ୍ୟାଚାର କରିଥିଲେ ବୋଲି ଗଲଥର ସମାଜରେ ପ୍ରକାଶିତ ହୋଇଥିଲା । ସେ ବିଷୟରେ ବିହାର ଓଡ଼ିଶା ଲାଟସଭାରେ ପ୍ରଶ୍ନ ଉଠିଥିଲା । ସରକାର ତରଫରୁ ଯେ ଉତ୍ତର ମିଳିଲା ସେଥିରେ ବେଶ୍ ଜଣାଯାଉଛି ଯେ ଫଉଜମାନଙ୍କ ଉପରେ କୌଣସି ଲଗାମ୍ ନ ଥିଲା ଏବଂ ସେମାନେ ମନଇଚ୍ଛା ମୁତାବକ ଯାହା ପାରନ୍ତି ତାହା କରିଛନ୍ତି । କାଉନ୍‌ସିଲରେ ସରକାର ତରଫର ଉତ୍ତରଗୁଡ଼ାକ ପ୍ରାୟ ଭାଷା କୌଶଳରେ ଢଙ୍କା ହୋଇ କୁହାଯାଏ ।

ମାତ୍ର ଯେତେ ଲୁଚିଲେ ସୁଦ୍ଧା ଗୋଡ଼ ଦୁଓଟି ଦିଶୁଥାଏ । ସେଥିରୁ ଆକାର ପ୍ରକାରଟା ସଫା ବୁଝା ପଡ଼ିଯାଏ । ଏ ଅତ୍ୟାଚାରର ପ୍ରତିକାର ସରକାର କଅଣ କରିଛନ୍ତି ବୋଲି ପଚରାଯିବାରେ ଉତ୍ତର ମିଳିଲା ଯେ ବିଭାଗୀୟ ନିୟମ ଅନୁସାରେ ସବାର ସିପାହୀମାନଙ୍କର ଦଣ୍ଡବିଧାନ କରାଯାଇ ପାରେ । ବିହାର ଓଡ଼ିଶା ମେମ୍ବରମାନଙ୍କ ମଧ୍ୟରେ ଅନେକ ବାହାଦୁର ଅଛନ୍ତି । ଅନେକ ଘଟନାରେ ସେମାନେ ଟାଣ ଦେଖାଇ ସରକାରୀ ମେମ୍ବରମାନଙ୍କୁ ହଟାଇ ଦେଉଛନ୍ତି । ମାତ୍ର ଚମ୍ପାରନର ଅତ୍ୟାଚାର ଯୋଗୁଁ ଫଉଜର ସବାର ଅଧ୍ୟକ୍ଷଙ୍କର କି ଦଣ୍ଡ ହେବ ବୋଲି ସେମାନେ ଆଶା କରନ୍ତି ? ହେଲେ ହୁଏତ ସେହି ଗରିବ ଦେଶୀ ସବାରମାନଙ୍କର କିଛି ଦଣ୍ଡ ହୋଇପାରେ । ମାତ୍ର ପିଅରସନ ସାହେବଙ୍କର କି ଦଣ୍ଡ ହେବ ? ସେ ଡାୟାର ସାହେବଙ୍କ ଜ୍ଞାତି ଗୋତ୍ର ନୁହନ୍ତି କି ? ରାୟବାହାଦୁର ଦ୍ୱାରିକାନାଥ ଠିକ୍ ପଚାରିଥିଲେ ଯେ ପିଅରସନ ସାହେବଙ୍କର ଏହି କାର୍ଯ୍ୟ ଲାଗି ସରକାର ତାଙ୍କୁ ଉପରଓ୍ୱାଳାଙ୍କୁ ଉଠାଇବାର ପ୍ରସ୍ତାବ କରନ୍ତି କି ? ସେ ଅନ୍ଧାରେ ଏହା ପଚାରି ପାରିଥାନ୍ତି; ମାତ୍ର ଏହା ଆଦୌ ଅସମ୍ଭବ ନୁହେଁ, ବରଂ ଏହା ନ ହେବାଇ ଆଶ୍ଚର୍ଯ୍ୟ । ପଞ୍ଜାବ ଘଟନାଠାରୁ ଚମ୍ପାରନ ଅତ୍ୟାଚାର ଅବଶ୍ୟ ଅଧିକ ଉତ୍କଟ ନୁହେଁ, କିମ୍ବା ମଦନମୋହନ ମାଲବ୍ୟଙ୍କଠାରୁ ବିହାର କାଉନ୍‌ସିଲରେ ଅଧିକ ଟାଣୁଆ ମେମ୍ବର ନାହାନ୍ତି । ସେ ଏତେ ଲଢ଼ି ଲଢ଼ି ଶେଷକୁ ଧନୁଶର ଛାଡ଼ିଦେଇ ହତାଶ ହୋଇପଡ଼ିଲେ । ପଞ୍ଜାବ ଅତ୍ୟାଚାରର ଏବେ ସୁଦ୍ଧା କୌଣସି ପ୍ରତିକାର ହୋଇନାହିଁ ଆଉ ଚମ୍ପାରନ ଲାଗି ହେବ କଅଣ ?

('ସମାଜ', ତା ୪ । ୨ । ୨୨)

# ଅସହଯୋଗର କରାମତ

ଆଲ୍ଲାଇ ଦୁଇଙ୍କର ମା ଚଉରାଅଶୀ ବର୍ଷର ବୁଢ଼ୀ ବର୍ତ୍ତମାନ ଭାରତବର୍ଷର ନାନା ସ୍ଥାନରେ ବୁଲି ଆଙ୍ଗୋରା ଫଣ୍ଡ ନିମନ୍ତେ ସାହାଯ୍ୟ ସଂଗ୍ରହ କରୁଅଛନ୍ତି । ମହମ୍ମଦ ଅଲ୍ଲିଙ୍କ ବେଗମ ମଧ୍ୟ ଅବିଶ୍ରାନ୍ତ ଭାବରେ କଂଗ୍ରେସ୍ କାର୍ଯ୍ୟରେ ଲାଗିଛନ୍ତି । ମୁସଲମାନ ମହିଳାମାନେ ପରଦାନସୀନ । ଏପରିକି ବାହାରେ ଗଲାବେଳେ ମୁହଁ କେହି ନ ଦେଖିବେ ବୋଲି ତାଳୁଠାରୁ ତଳପାଯାଏ ଗୋଟିଏ ଘଣ୍ଟାଢୋପ ଏମାନେ ପକାଇଥାନ୍ତି । ବୃଦ୍ଧା ଅଲ୍ଲିମାତା ଏବଂ ତାଙ୍କ ବୋହୂ ଏହିପରି ଘଣ୍ଟାଢୋପ ପକାଇ ସର୍ବତ୍ର ବୁଲୁଛନ୍ତି । ଓଡ଼ିଶାର କୁଳବଧୂମାନେ ଏଥିରୁ କିଛି ଶିଖିବେ କି ?

× × ×

ବଙ୍ଗପ୍ରବାସୀ କେତେକ ଓଡ଼ିଆଙ୍କଠାରୁ ଆମ୍ଭେମାନେ କେତେଖଣ୍ଡ ପତ୍ର ପାଇଅଛୁଁ । ସେମାନଙ୍କ ମଧ୍ୟ କିଏ ରୋଷେଇ କାମରୁ କରନ୍ତି, କିଏ କୁଲିକାମ କରନ୍ତି, କିଏ ବା ଅନ୍ୟ କୌଣସି ପ୍ରକାରେ ଜୀବିକା ନିର୍ବାହ କରନ୍ତି । ସୁଖର କଥା ଯେ ପେଟ ପୋଷିବାଲାଗି ଏହିପରି ସାମାନ୍ୟ କାର୍ଯ୍ୟକରି ସେମାନେ ବଙ୍ଗଳାର ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଛନ୍ତି । ଓଡ଼ିଆ ମୋଟିଆ ଓ ପୁଝାରୀ ବ୍ରାହ୍ମଣମାନଙ୍କ ମଧ୍ୟରୁ କେତେକ ସ୍ୱେଚ୍ଛାସେବକ ଦଳରେ କଲିକତାରେ ନାମ ଲେଖାଇ ଅଛନ୍ତି; କେତେଜଣ ଜେଲ ଯାଇଛନ୍ତି । ଯେଉଁ ଓଡ଼ିଆମାନଙ୍କୁ ବଙ୍ଗଦେଶରେ ଦିନେ ଅତି ଅପଦାର୍ଥ ଓ ଅମନୁଷ୍ୟ ବୋଲି କହି ଲୋକସାଧାରଣତଃ ଅତି ଅବଜ୍ଞା କରୁଥିଲେ ସେମାନେ କଂଗ୍ରେସ୍ ଆନ୍ଦୋଳନରେ ଏକ ସେଠାରେ ମିଶିଥିବା ଅତ୍ୟନ୍ତ ସୁଖର କଥା । ବଙ୍ଗଳାର କେତେ ଶିକ୍ଷିତ ବ୍ୟକ୍ତି ଓଡ଼ିଶାରେ ଅଛନ୍ତି । ସେମାନଙ୍କଠାରୁ ଓଡ଼ିଶାରେ ଉପସ୍ଥିତ ଆନ୍ଦୋଳନରେ ଅନେକ ଆଶା କରାଯାଇଥିଲା । ମାତ୍ର ଏ ପର୍ଯ୍ୟନ୍ତ ସେମାନେ ପୂର୍ଣ୍ଣ ଉଦାସୀନ ରହିଛନ୍ତି । ଏତେବେଳେ ସୁଦ୍ଧା ସମୟ ଅଛି । ବଙ୍ଗପ୍ରବାସୀ ଓଡ଼ିଆ କୁଲିମାନଙ୍କ କାର୍ଯ୍ୟରୁ ସେମାନେ କିଛି ଶିଖିବେ କି ?

× × ×

ବିଲାତି ବସ୍ତ୍ର ବର୍ଜନ କରିବାଦ୍ୱାରା ବିଲାତର ବ୍ୟବସାୟ ଓ ବାଣିଜ୍ୟ ଯେ ଭାରତବାସୀମାନେ ନଷ୍ଟ କରିବାକୁ ବସିଛନ୍ତି, ଏହା ସାର ଉଇଲିୟମ ଭିନ୍‌ସେଣ୍ଟଙ୍କ ମତରେ ରାଜଦ୍ରୋହ । ଏଥିରୁ ଏ ଦେଶର ସାଧାରଣ ଲୋକେ ଅତି ସହଜରେ ଅସଲ ନିଗମ କଥା ବୁଝିପିବେ । ଭାରତ ମରୁ, ଉଚ୍ଛନ୍ନ ଯାଉ ମାତ୍ର ବିଲାତକୁ ପୋଷୁ । ତା ନ ହେଲେ ତାର ରାଜଭକ୍ତିର ପ୍ରମାଣ କଅଣ ?

———

('ସମାଜ' ତା ୪ । ୨ । '୨)

# ସବୁ ଦୋଷ ଅସହଯୋଗ ମୁଣ୍ଡରେ !

ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାରେ ଦମନ ନୀତିର ଆଲୋଚନା ହେଲାବେଳେ ସାର୍ ଉଇଲ୍ୟମ ଭିନ୍‌ସେଣ୍ଟ ସାହେବ ଉକ୍ତ ନୀତିର ସମର୍ଥନ କରି ବହୁତ କଥା କହିଥିଲେ । ଅନ୍ୟାନ୍ୟ ବିଷୟ ମଧ୍ୟରେ ସେ କହିଥିଲେ ଯେ ଅସହଯୋଗ ଆନ୍ଦୋଳନ ଦ୍ୱାରା ଯେପରି ଶାନ୍ତିଭଙ୍ଗ ଘଟୁଛି ଏବଂ ନାନା ସ୍ଥାନରେ ଉତ୍ପାତ ଉପଦ୍ରବ ହେଉଛି ସେଥିରେ ଦମନ-ନୀତିକ ଆହୁରି ତୀବ୍ରଭାବରେ ଚଳାଇବା ଆବଶ୍ୟକ । ମୋପଲା ଗୋଳମାଳ, ବମ୍ବେଇ ଗୋଳମାଳ ପ୍ରଭୃତି ଅସହଯୋଗର ଫଳବୋଲି ସେ ବ୍ୟକ୍ତ କରିଥିଲେ । ଅସହଯୋଗନୀତି ପୂର୍ଣ୍ଣ ଶାନ୍ତିମୂଳକ । ଅସହଯୋଗୀମାନେ ଆଦ୍ୟରୁ ଏହା ସ୍ପଷ୍ଟ ପ୍ରକାଶ କରି ଆସୁଅଛନ୍ତି । ସ୍ୱଦେଶୀ ପ୍ରଭୃତି ଅପେକ୍ଷା ଶାନ୍ତିରକ୍ଷା ବିଷୟରେ ସେମାନେ ଅଧିକ ଧ୍ୟାନ ଦେଇଛନ୍ତି । ଶାନ୍ତିଛଡ଼ା ଅସହଯୋଗ ଅସମ୍ଭବ ବୋଲି ସେମାନଙ୍କର ମତ ଓ ବିଶ୍ୱାସ । ଅସହଯୋଗ ନାମରେ ମଧ୍ୟ କୌଣସିଠାରେ ଅସହଯୋଗ ଦଳଭୁକ୍ତ ଲୋକଙ୍କଦ୍ୱାରା କେତେ ସମୟରେ ଶାନ୍ତିଭଙ୍ଗ ଘଟୁଅଛି । ସେଥି ନିମନ୍ତେ ଅସହଯୋଗ ନେତାମାନେ ଲଜ୍ଜିତ ଓ ଦୁଃଖିତ ମାତ୍ର ଏହା ଅସହଯୋଗନୀତିର ଦୋଷ ନୁହେଁ । ବରଂ ଅସହଯୋଗୀମାନେ ନାନା ଘଟଣାରେ ଯେପରି ଶାନ୍ତି ସଂଯମ ଦେଖାଇଅଛନ୍ତି ଏବଂ ନାନା ଉତ୍କଟ ଅତ୍ୟାଚାର ସହି ଯେପରି ଅନେକ ସମୟରେ ଅବିଚଳିତ ଅଛନ୍ତି ତାହା ଏ ଆନ୍ଦୋଳନ ପକ୍ଷରେ ଅତ୍ୟନ୍ତ ପ୍ରଶଂସା ଓ ଗୌରବର ବିଷୟ । ଅସହଯୋଗ ଆନ୍ଦୋଳନ ଫଳରେ ଦେଶର ସାଧାରଣ ଲୋକ ଚରିତ୍ର ଯେ ବହୁ ପରିମାଣରେ ଶୁଦ୍ଧ ଓ ସଂଶୋଧିତ ହୋଇଅଛି ତାହା କେହି ଅସ୍ୱୀକାର କରି ପାରିବେ ନାହିଁ । ସରକାରୀ କର୍ତ୍ତୃପକ୍ଷମାନେ ମନରେ ହୁଏତ ଏହା ବେଶ୍ ଜାଣିଥିବେ । ମାତ୍ର ମୁହଁରେ ସ୍ୱୀକାର କରୁନାହାନ୍ତି, ବରଂ ଅସହଯୋଗ ମୁଣ୍ଡରେ ସବୁ ପ୍ରକାର ଦୋଷ ଅପରାଧ ଲଦି ତାକୁ ଦମନ କରିବାର ବାହାନା ଖୋଜୁଛନ୍ତି । ମୋପଲା ବିଦ୍ରୋହରେ ଅସହଯୋଗର କୌଣସି ସମ୍ପର୍କ ନାହିଁ । ମାଲବାର ଜିଲ୍ଲାକୁ କେହି କଂଗ୍ରେସ ବା ଖିଲାଫତ ଲୋକ ଏ ପର୍ଯ୍ୟନ୍ତ ଯାଇନାହାନ୍ତି । ଗଲା ଅହମଦାବାଦ ବୈଠକରେ କଂଗ୍ରେସ ଅପବାଦର ତୀବ୍ର ପ୍ରତିବାଦ କରିଛନ୍ତି । ତଥାପି ସାର ଉଇଲ୍ୟମ ଭିନ୍‌ସେଣ୍ଟ ମୋପଲା ବିଦ୍ରୋହକୁ ଅସହଯୋଗ ଆନ୍ଦୋଳନ ସଙ୍ଗେ ଲଗାଇବାକୁ ଛାଡ଼ୁ ନାହାନ୍ତି । ଏକା ଭିନ୍‌ସେଣ୍ଟ କାହିଁକି ? ତାଳଚରୁ ତଳପା ପର୍ଯ୍ୟନ୍ତ ସରକାର କଳ ତ ଗୋଟାଏ

କାଇଦାରେ ଚଳେ । ପ୍ରତି ପ୍ରଦେଶର ପତି ବିଭାଗ ଓ ଜିଲ୍ଲାର ଏପରିକି ଥାନାର ସରକାରୀ କର୍ତ୍ତୃପକ୍ଷମାନେ ଆପଣା ଆପେକ୍ଷା ଇଲାକାରେ ସମସ୍ତପ୍ରକାର ଦୋଷ ଦୁର୍ନୀତି କି ଅସହଯୋଗ ମୁଣ୍ଡରେ ଲଗାଇ ନିଷ୍କୃତି ପାଇବାକୁ ଉଦ୍ୟତ ଯେପରିକି ଅସହଯୋଗ ପୂର୍ବରୁ ଆଉ ଏ ରାମରାଜ୍ୟରେ କୌଣସିଠାରେ କୌଣସିପ୍ରକାର ଅନ୍ୟାୟ, ଅକ୍ରିୟା ଓ ଅଶାନ୍ତି ଘଟୁ ନ ଥିଲା । ଅନ୍ୟାନ୍ୟ ଦେଶରେ ସରକାରୀ କର୍ତ୍ତୃପକ୍ଷଙ୍କ ମତାମତ କେଜାଣି କଅଣ, ମାତ୍ର ଓଡ଼ିଶାରେ ଯେପରି ଦେଖାଯାଉଛି ସେମାନଙ୍କ ଦୃଷ୍ଟିରେ ସବୁ ଦୋଷ ଅସହଯୋଗର । କୌଣସିଠାରେ ଯେବେ ଘର ପୋଡ଼ିଗଲା, ଅସହଯୋଗୀମାନେ ନିଆଁ ଲଗାଇଛନ୍ତି । କୌଣସି ଗାଁରେ ଯେବେ ଗ୍ରାମୀୟ ବିବାଦ ବା ସାମାଜିକ କଳହହେତୁ ଲୋକଙ୍କ ମଧ୍ୟରେ ଡକାୟତି ଲାଗିଲା ତେବେ ସେ ଗାଁ ଅସହଯୋଗୀମାନେ ତାର କାରଣ, କୌଣସିଠାରେ ଯେବେ କିଏ କାହାକୁ ହତ୍ୟାକଲା, ତେବେ ତା ଅସହଯୋଗ କାର୍ଯ୍ୟଫଳ । ଏଥର ବିହାର ଓଡ଼ିଶା ଲାଟସଭାରେ ଅସହଯୋଗର ଅନିଷ୍ଟ ଫଳର ଯେ ଯେ ତାଲିକା ସରକାର ତରଫରୁ ଦିଆଯାଇଥିଲା ସେଥିରେ ପୁରୀ ଜିଲ୍ଲାର ଅଳନ୍ଦନ ତଳେ ଘଟିଥିବା ଏକ ନରହତ୍ୟାର କଥା ଉଲ୍ଲେଖ ଥିଲା । ଯେଉଁମାନେ ସେ ହତ୍ୟା ସଂକ୍ରାନ୍ତରେ ସ୍ଥାନୀୟ ଘଟଣା ଜାଣନ୍ତି ସେ ବେଶ୍ ବୁଝିଛନ୍ତି ଯେ ଅସହଯୋଗର ତହିଁରେ କୌଣସି ସମ୍ପର୍କ ନାହିଁ । ହତ ହୋଇଥିବା ଲୋକର କାର୍ଯ୍ୟକଳାପ ଆଗ୍ରହ ବ୍ୟବହାର ଦେଖି ଜନେ ତାହାର ଦଶା ଏହିପରି ହେବ ବୋଲି ଅନେକ ଆଗରୁ ଆଶଙ୍କା କରିଥିଲେ । ଆମ୍ଭେମାନେ ଶୁଣି ସୁଖୀହେଲୁ ଯେ ସଭ୍ୟ ଶ୍ରୀଯୁକ୍ତ ପୀତବାସ ପଟ୍ଟନାୟକ ଏ ଘଟନା ସମ୍ପର୍କରେ ସରକାରଙ୍କ କଥାର ପ୍ରତିବାଦ କରିଥିଲେ । ଏଥିପୂର୍ବେ ଗଲା କେତେବର୍ଷ ମଧ୍ୟରେ ପୁରୀ ଜିଲ୍ଲାର କେତେଜଣ ଦୁଷ୍ଟଲୋକ ଏହିପରି ହାଣ ଖାଇଛନ୍ତି ଏବଂ ମକଦ୍ଦମାରେ ଆସାମୀମାନେ ଖଲାସ ପାଇଛନ୍ତି । ସେତେବେଳେ ଅସହଯୋଗର ଜନ୍ମ ହୋଇ ନ ଥିଲା । ମାତ୍ର ଆଜି ଘରପୋଡ଼ି ମଣିଷମାରୁଠାରୁ ଆରମ୍ଭକରି କାଞ୍ଜିଆହୁଦାରେ ଗୋରୁ ପକାଇବାଯାଏ ଯେତେ ଗୋଳମାଳ ଯେଉଁଠାରେ ଲୋକଙ୍କ ମଧ୍ୟରେ ଘଟୁଛି ସେସବୁ ଲାଗି ଅସହଯୋଗ ଦାୟୀ । ସରକାର ଏପରି ମିଛଧରି ଆତ୍ମପ୍ରତାରଣା କରୁଛନ୍ତି । ଏହାଦ୍ୱାରା ଦୁଷ୍ଟଲୋକେ ପ୍ରଶ୍ରୟ ପାଉଛନ୍ତି କାରଣ ସେମାନେ ଜାଣୁଛନ୍ତି ଯେ ସେମାନେ ଯାହା କରନ୍ତୁ ଦୋଷ ଅନ୍ୟଆଡ଼େ ଯିବ । ଫଳରେ ଦେଶରେ ଅଧିକ ଅଶାନ୍ତି ଓ ଉପଦ୍ରବ ହେଉଛି ଓ ହେବ । ସ୍ଥାନୀୟ ସରକାର ଲୋକେ ହୁଏତ ଭାବିଥାଇ ପାରନ୍ତି ଯେ ଏପରି ଯେତେ ଅଧିକ ଅଶାନ୍ତି ଓ ଉପଦ୍ରବ ହୁଏ ତେତେ ମକଦ୍ଦମା ବଢ଼ିବ ଏବଂ ତଦ୍ଦ୍ୱାରା ସେମାନେ ଅସହଯୋଗ ବ୍ୟର୍ଥ ହେଲା ବୋଲି ଦେଖାଇବେ କିମ୍ବା ଖୋଦ ସରକାର ହୁଏତ ବିଗୁଡୁଥିବେ ଯେ ଏଭଳି

ଅନିଷ୍ଟ ଉତ୍ପାତ ବଢ଼ିବାଦ୍ୱାରା ସେସବୁ ଦୋଷ ଅସହଯୋଗ ମୁଣ୍ଡରେ ଢ଼ାଳି ତାକୁ ଦମନ କରିବା; କାରଣ ଅ.ହୁରି ଅଧିକ ଚଣ୍ଡ ନୀତି ଚଳାଇବାର ସୁବିଧା ଓ କାରଣ ମିଳିବ । ମାତ୍ର ଧର୍ମ ଜଗତରେ ଏସବୁ କୌଶଳ ବେଶିଦିନ ତିଷ୍ଠିବ ନାହିଁ । ସତ୍ୟର ଅବଶ୍ୟ ଜୟ ହେବ ।

('ସମାଜ' ତା ୧୧ । ୨। '୨)

---

# ବର୍ଦ୍ଦୋଲୀ ସତ୍ୟାଗ୍ରହ

ଏ ମାସ ୧୨ ତାରିଖରେ ମହାତ୍ମାଗାନ୍ଧୀ ବର୍ଦ୍ଦୋଲିରେ ଆଇନ ଅମାନ୍ୟ କରିବାର ସ୍ଥିର ହୋଇଥିଲା । ସେ ଭାରତର ବଡ଼ଲାଟଙ୍କୁ ଧର୍ମ ଛଡ଼ାଇ ପତ୍ର ଲେଖିଥିଲେ । ବଡ଼ଲାଟ ସେ ପତ୍ରର ଉତ୍ତର ଦେଇଥିଲେ । ମହାତ୍ମାଗାନ୍ଧି ପୁଣି ଉକ୍ତ ପତ୍ରର ପ୍ରତ୍ୟୁତ୍ତର ମଧ୍ୟ ପ୍ରକାଶ କରିଅଛନ୍ତି । ସରକାର ପକ୍ଷରେ କିଛି ଅନ୍ୟାୟ ବା ବେଆଇନ ହୋଇନାହିଁ ବୋଲି ବଡ଼ଲାଟ ଯାହା ଆପଣା ପତ୍ରରେ ଲେଖିଥିଲେ ମହାତ୍ମାଗାନ୍ଧି ତାହାଁର ପ୍ରତିବାଦ କରି ଦଫା ଦଫାରେ ସରକାରଙ୍କ ଅନ୍ୟାୟ ଅତ୍ୟାଚାରର ବିବରଣମାନ ଉଲ୍ଲେଖ କରିଅଛନ୍ତି । ବଡ଼ଲାଟ ସଭାର ଜଣେ ମେମ୍ବର ଗାନ୍ଧିଙ୍କ ପ୍ରତ୍ୟୁତ୍ତର ସମ୍ପର୍କରେ କେତେକ ପ୍ରଶ୍ନ ପଚାରି ଥିଲେ । ସରକାରୀ ତରଫରୁ ସାର ଉଇଲିୟମ ଭିନ୍‌ସେଣ୍ଟ ଏସବୁ ପ୍ରଶ୍ନର ଯେପରି ଗୋଲାଇ ଗୋଲାଇ ଉତ୍ତରଦେଲେ ସେଥିରେ ଦେଶବାସୀଙ୍କ ମନ ମାନୁନାହିଁ । ଲାଟସଭାର ଉତ୍ତରଙ୍କ କ୍ରମ ଓ କ୍ରିୟା ବହୁବର୍ଷ ହେଲା ଭାରତବାସୀ ଦେଖୁଛନ୍ତି, ଶୁଣୁଛନ୍ତି; ତଥାପି ସେଥିରୁ ସେମାନଙ୍କର ମାୟା ତୁଟୁନାହିଁ ।

"କ୍ଵ ମାଷ୍ଟର୍ଯ୍ୟ ମତଃପରଂ"

× × ×

ମହାତ୍ମାଙ୍କ ସମୂହ ଭାବରେ ବର୍ଦ୍ଦୋଲିରେ ଆଇନ ଅମାନ୍ୟ କ୍ରିୟା ନିଶ୍ଚୟ ଆରମ୍ଭ କଲେ ବୋଲି ଜାଣି ପଣ୍ଡିତ ମଦନମୋହନ ମାଲବ୍ୟ ପ୍ରଭୃତି କେତେଜଣ ମଧ୍ୟସ୍ଥ ନେତା ଏବେ ତାଙ୍କୁ ଆସି ଧରିଛନ୍ତି ଏବଂ ଆଇନ ଲଙ୍ଘନ କାର୍ଯ୍ୟ ବର୍ତ୍ତମାନ ସ୍ଥଗିତ ରଖିବାକୁ ଅନୁରୋଧ କରନ୍ତି । ବିଶେଷତଃ ଗୋରଖପୁର ଘଟନା ଦୃଷ୍ଟିରେ ହଠାତ୍ ଆଇନ ଅମାନ୍ୟ ଆରମ୍ଭ କରିବା ଉଚିତ ନୁହେଁ ବୋଲି ଅନେକଙ୍କର ମତ । ଏ ମାସ ୧୧ ତାରିଖ ନିଖିଳ-ଭାରତ କାର୍ଯ୍ୟକାରୀ ସଭାର ଏକ ବୈଠକ ବର୍ଦ୍ଦୋଲିଠାରେ ହୋଇଥିଲା । ସେଥିରେ ଆଇନଭଙ୍ଗ କଥାର ବିଶେଷ ଆଲୋଚନା ହୋଇଥିବ । "ଫଳରେ ପଦ୍ମ ଘୁଞ୍ଚି ଘୁଞ୍ଚି ଯାଉଛି ।" ଏଥିରେ କେତେଲୋକ ଟିକିଏ ବଡ଼ ଚଞ୍ଚଳ ଓ ଅଧୀର ହୋଇ ପଡ଼ୁଥିବାର ଜଣାଯାଏ । ମାତ୍ର ଏ ବ୍ୟାପାର ପିଲାଙ୍କ ଖେଳଘର କଥା ନୁହେଁ । ସମସ୍ତ ଶକ୍ତି ସୁବିଧା ସୁଯୋଗ ଦେଖି ଏ କାର୍ଯ୍ୟରେ ପ୍ରବର୍ତ୍ତିବା ଉଚିତ । "ବିଲମ୍ବେ କାର୍ଯ୍ୟସିଦ୍ଧିଃ" ।

('ସମାଜ', ତା ୧୮ । ୨ । ୨୨)

———

# ଅସହଯୋଗ ସମ୍ବାଦ

ଅସହଯୋଗୀମାନେ ଶାନ୍ତ ରଖିବା ଲାଗି ଲୋକମାନଙ୍କୁ ବୁଝାଉଥିଲେ ସୁଦ୍ଧା ଲୋକେ ସ୍ଥାନେ ସ୍ଥାନେ ଉତ୍କଟ ରକମର ଶାନ୍ତିଭଙ୍ଗ ଘଟାଉଥିବା ଅତ୍ୟନ୍ତ ଆକ୍ଷେପର କଥା । ଏପର୍ଯ୍ୟନ୍ତ ଖବରକାଗଜମାନଙ୍କରେ ଯେ ସମ୍ବାଦ ପ୍ରକାଶ ପାଇଅଛି ତାହା ସତ୍ୟହେଲେ ଗୋରଖପୁର କାଣ୍ଡ ବାସ୍ତବିକ ଘୋର ନିନ୍ଦା ଓ ଲଜ୍ଜାର ବିଷୟ । କୌଣସି ଅସହଯୋଗ କର୍ମୀ କିମ୍ବା ସ୍ୱେଚ୍ଛାସେବକ ଏହିସବୁ ଶାନ୍ତିଭଙ୍ଗରେ ଜଡ଼ିତ ଥାନ୍ତୁ ବା ନ ଥାନ୍ତୁ ସାଧାରଣ ଦେଶବାସୀଙ୍କ ଦ୍ୱାରା ଯଦି ଏ ସମୟରେ ଏଭଳି ଘଟନା ହୁଏ ତଦ୍ଦ୍ୱାରା ଅସହଯୋଗ ଆନ୍ଦୋଳନ ନିନ୍ଦା ପାଇବା ସନ୍ଦେହ ନାହିଁ । ବମ୍ବେଇ ଗୋଳମାଳ ହୋଇ ନ ଥିଲେ ମହାତ୍ମାଗାନ୍ଧି ଆପଣାର ନିରୂପିତ କାର୍ଯ୍ୟରେ ବହୁତ ଆଗେଇ ଥାନ୍ତେ; ହୁଏତ ଗଲା କଂଗ୍ରେସ ଅଧିବେଶନରେ ସ୍ୱରାଜ୍ୟ ଘୋଷଣା ହୋଇ ପାରିଥାନ୍ତା । ବମ୍ବେଇ ଘଟଣା ପରେ ମାନ୍ଦ୍ରାଜ ଏବଂ ମାନ୍ଦ୍ରାଜ ପରେ ଗୋରଖପୁରରେ ଯାହାହେଲା ସେଥିରେ ଅସହଯୋଗୀ-ମାନଙ୍କର ସାହସ ବହୁତ କମିଗଲା । ସରକାର ତରଫ ଲୋକେ ଏବେ ଗୋରଖପୁର ଘଟନାକୁ ଗୋଟାଏ ବଡ଼କଥା କରି ଧରିଛନ୍ତି । ସେପରି କରିବା ସେମାନଙ୍କର ଫାଇଦା । ମୋଟକଥା ଅସହଯୋଗ ଆନ୍ଦୋଳନ ଦ୍ୱାରା ଦେଶ ଲୋକଙ୍କର ତେତେ ଆତ୍ମଶୁଦ୍ଧି ହୋଇ ନାହିଁ ଏବଂ ଶାନ୍ତ ଓ ଅହିଂସା ଧର୍ମରେ ସେମାନଙ୍କର ପୂର୍ଣ୍ଣବିଶ୍ୱାସ ଜନ୍ମି ନାହିଁ । ଏହା ନ ହେବାଯାଏ ଆମ୍ଭମାନଙ୍କର ତପସ୍ୟା ଅସମ୍ପୂର୍ଣ୍ଣ । ଖଣ୍ଡ ତପସ୍ୟାରେ ଅଖଣ୍ଡ ସ୍ୱରାଜ୍ୟପ୍ରାପ୍ତି ଅସମ୍ଭବ ।

× × ×

ମହାତ୍ମାଗାନ୍ଧୀ ଗିରଫଦାର ହୋଇଛନ୍ତି ବୋଲି ଏଥିମଧ୍ୟରେ ଅନେକ ଥର ଗୋଟାଏ ଭାରି ଜନରବ ଶୁଣାଯାଉଅଛି । କଲିକତା ପ୍ରଭୃତି ନାନା ସ୍ଥାନରୁ ଲୋକେ ଏ ସମ୍ବାଦ ତଥ୍ୟ ଜାଣିବା କାରଣ ବ୍ୟସ୍ତବ୍ୟସ୍ତ ହୋଇ ଟେଲିଗ୍ରାମ କରିଥିଲେ । ଜନରବ ଅମୂଳକ ବୋଲି ଖବର ଆସିଛି । ତେବେ ଆଜିକାଲି ଘଟନା ଯେପରି ହେଉଛି ସେଥିରେ କେଉଁ ମୁହୂର୍ତ୍ତରେ ଯେ କଅଣ ହେବ କୁହାଯାଇ ନ ପାରେ ।

× × ×

ଆନ୍ଧ୍ର ପ୍ରାଦେଶିକ କଂଗ୍ରେସ କମିଟି ଗୁଣ୍ଟୁର ଜିଲ୍ଲାର ଅବସ୍ଥା ଅନୁସନ୍ଧାନ କରିବା କାରଣ ଯେଉଁମାନଙ୍କୁ ନିଯୁକ୍ତ କରିଥିଲେ ସେମାନେ ଏଥିମଧ୍ୟରେ ଉକ୍ତ ଜିଲ୍ଲାର ଭିନ୍ନ ଭିନ୍ନ ସ୍ଥାନମାନ ଉତ୍ତମ ରୂପେ ତଦନ୍ତ କରି ରିପୋର୍ଟ ଦେଇଅଛନ୍ତି । ଶୁଣାଯାଏ, ସେ ରିପୋର୍ଟରେ ଲେଖାଅଛି ଯେ ଏପର୍ଯ୍ୟନ୍ତ କଂଗ୍ରେସ ନିରୂପିତ ସର୍ତ୍ତ ଅନୁସାରେ ଗୁଣ୍ଟୁର ଜିଲ୍ଲାରେ ସମ୍ପୂର୍ଣ୍ଣ କାର୍ଯ୍ୟ ହୋଇନାହିଁ । ଏହାଯଦି ଯଥାର୍ଥ ହୋଇଥାଏ ତେବେ ଗୁଣ୍ଟୁର ଜିଲ୍ଲାରେ ଆଇନଭଙ୍ଗ କାର୍ଯ୍ୟ ବର୍ତ୍ତମାନ ସ୍ଥଗିତ ରହିବ । ଆହୁରି ମଧ୍ୟ ଶୁଣାଯାଏ ଯେ ଦେଶର କେତେକ ସ୍ଥାନରେ ଲୋକମାନଙ୍କ ମଧ୍ୟରେ ପୂର୍ଣ୍ଣ ଶାନ୍ତ ଓ ଅହିଂସାଭାବ ଆସି ନ ଥିବାରୁ ଏବର୍ଷ ଲାଗି ଆଇନ ଅମାନ୍ୟ କାର୍ଯ୍ୟ ବନ୍ଦ ରଖିବା ନିମନ୍ତେ ନାନା ସ୍ଥାନରୁ ମହାତ୍ମାଗାନ୍ଧୀଙ୍କ ନିକଟକୁ ଅନୁରୋଧ ଆସିଅଛି । ଏ ସମ୍ବନ୍ଧରେ ଏଥର କଂଗ୍ରେସ କାର୍ଯ୍ୟକାରୀ ସଭାରେ ସିଦ୍ଧାନ୍ତ ହେବ ।

('ସମାଜ' ତା ୧୮ । ୨ । ୨୨)

---

# ଗଡ଼ଜାତରେ ଅସହଯୋଗ ହାଉଆ

ଓଡ଼ିଶା ଗଡ଼ଜାତର ପ୍ରଜାମାନେ ଯେ ବହୁଦିନରୁ ନାନାପ୍ରକାର ଅନ୍ୟାୟ ଓ ଅତ୍ୟାଚାର ଭୋଗୁଛନ୍ତି ତାହା ଜଣାଶୁଣା କଥା । ସେମାନଙ୍କର ଦୁଃଖମୁଣ୍ଡ ଫିଟେ ନାହିଁ, ଫିଟାଇବାର ସୁବିଧା ସୁଯୋଗ, ସେମାନଙ୍କୁ ଦିଆଯାଏ ନାହିଁ । ଫଳରେ ସେମାନେ ଅନ୍ୟକୌଣସି ଉପାୟ ନ ଦେଖି ବେଳେ ବେଳେ ଅତି ନିରାଶାରେ ମେଳି ବାନ୍ଧିଥାନ୍ତି ଏବଂ ଗୁରୁତର ଗୋଳମାଳ ଘଟାଇଥାନ୍ତି । ଅସହଯୋଗ ଆନ୍ଦୋଳନ ଗଡ଼ଜାତରେ ପ୍ରଚାର କରିବା ଲାଗି କେହି ଏପର୍ଯ୍ୟନ୍ତ ଉଦ୍ୟମ କରି ନାହାନ୍ତି; ବରଂ ଗଡ଼ଜାତର କର୍ତ୍ତାମାନେ ଅସହଯୋଗ ହାଉଆ ପର୍ଯ୍ୟନ୍ତ ନିଜ ନିଜ ରାଜ୍ୟରେ ନ ପଶିଇ ଦେବାଲାଗି ସବୁବେଳେ ସବୁବେଳେ ବିଶେଷ ସାବଧାନ । ମାତ୍ର ଅସହଯୋଗ ବାର୍ତ୍ତା ଆମଦେଶର କେଉଁଠାରେ ନ ପହଞ୍ଚିଛି ନାହିଁ । ବିଶେଷତଃ ଯେଉଁ ଶ୍ରେଣୀର ଲୋକେ ଅତ୍ୟାଚାର ଉତ୍ପାତରୁ ଅଧିକ ପ୍ରପୀଡ଼ିତ ସେମାନଙ୍କ ମଧ୍ୟରେ ଏ ଆନ୍ଦୋଳନ ଅତି ସହଜରେ ଆପେ ଆପେ ପ୍ରଚାରିତ ହେଉଅଛି । କର୍ତ୍ତୃପକ୍ଷ ଅସହଯୋଗକୁ ପୂରାଇ ନ ଦେବା କାରଣ ଯେତେ ବାନ୍ଧବନ୍ଧା ଦିଅନ୍ତୁ ଗଡ଼ଜାତ ଲୋକଙ୍କର ଏ ଆନ୍ଦୋଳନ ପ୍ରତି ପ୍ରଗାଢ଼ ଆସ୍ଥା, ଆଦର ଓ ବିଶ୍ୱାସ ଜନ୍ମିଅଛି ।

"ମୁଁ ହୁଏ ଯାହାକୁ ସଦୟ
ଜ୍ଞାନ ତା ହୃଦରୁ ଉଦୟ ।"

ଭିନ୍ନ ଭିନ୍ନ ଗଡ଼ଜାତର କେତେ ଲୋକ ମୋଗଲବନ୍ଦୀର ଅସହଯୋଗର ନେତାମାନଙ୍କୁ ପତ୍ର ଲେଖିବାର ଆମ୍ଭେମାନେ ଜାଣୁ । ଅସହଯୋଗ ଫନ୍ଦାକ୍ରରେ କାର୍ଯ୍ୟ କରିବାକୁ ଗଡ଼ଜାତମାନଙ୍କରେ ଅନେକ ଲୋକ ପ୍ରସ୍ତୁତ ଅଛନ୍ତି । ମାତ୍ର ଆମ୍ଭମାନଙ୍କ ମତରେ ଗଡ଼ଜାତର ବର୍ତ୍ତମାନ ଅବସ୍ଥା ଦୃଷ୍ଟିରେ ସେ ସବୁରେ ଅସହଯୋଗ ଆନ୍ଦୋଳନ ପଶିବା ଉଚିତ ବା ଆବଶ୍ୟକ ନୁହେଁ । ସେଠା ଲୋକେ ଯେବେ କୃଷିକାର୍ଯ୍ୟ କରୁଛନ୍ତି, ଆହୁରି ଅଧିକ କରନ୍ତୁ; ଅରଟରେ ଯେବେ ସୂତା କାଟୁଛନ୍ତି ଆହୁରି ଅଧିକ କାଟନ୍ତୁ । ଦେଶୀ ଲୁଗା ଆପଣା ରାଜ୍ୟରେ ତିଆରି କରି ପିନ୍ଧନ୍ତୁ ଏବଂ ରାଜ୍ୟ ବାହାରକୁ ପଠାନ୍ତୁ । ଗଞ୍ଜାଇ, ମଦ, ଅଫିମ ଛାଡ଼ନ୍ତୁ । ଆପଣାର ଆଚାର ବ୍ୟବହାର ଶୁଦ୍ଧ କରନ୍ତୁ । ଗ୍ରାମମାନଙ୍କରେ କଳହ ବିବାଦ ନ କରି ମେଳ ରଖନ୍ତୁ । ଏହାଦ୍ୱାରା ସେମାନଙ୍କ ଷ୍ଟେଟର ଲାଭ ଏବଂ ନିଜର ଲାଭ ।

ଷ୍ଟେଟର କର୍ତ୍ତାମାନେ ଏ ବିଷୟରେ ବାଧା ଦେବେ ନାହିଁ ବରଂ ସହାୟତା କରିବେ । କୌଣସି କୌଣସି ଗଡ଼ଜାତରେ ରାଜା ଓ ସୁପରିଣ୍ଟେଣ୍ଡେଣ୍ଟମାନେ ଏସବୁ କାର୍ଯ୍ୟରେ ହସ୍ତକ୍ଷେପ ଥିବାର ମଧ୍ୟ ଦେଖାଯାଏ । ଏହା ଅତ୍ୟନ୍ତ ଦୁଃଖର କଥା । ଭାରତୀୟ ଅସହଯୋଗ ଆନ୍ଦୋଳନରେ ଗଡ଼ଜାତର ଯେଉଁମାନେ ଯୋଗଦେବାକୁ ଏକାନ୍ତ ଇଚ୍ଛୁକ ସେମାନେ ଗଡ଼ଜାତ ବାହାରେ ଆସି ମୋଗଲବନ୍ଦି ବା ଖାସମାହାଲରେ କାମ କରିବା ଦରକାର । ଗଡ଼ଜାତ ପ୍ରଜାମାନଙ୍କର ମନେ ରଖିବା ଉଚିତ ଯେ ଇଂରେଜଶାସିତ ଖାସମାହାଲରେ ଅସହଯୋଗ ଆନ୍ଦୋଳନ ହଠାତ୍ ଏକାଦିନକେ ହୋଇ ନାହିଁ । କଂଗ୍ରେସ ବା ଭାରତ ମହାସଭା ଆଜକୁ ଛତିଶବର୍ଷ ହେଲା ହୋଇଅଛି । ଏହାଛଡ଼ା ଭିନ୍ନ ଭିନ୍ନ ପ୍ରଦେଶରେ କେତେ ସାଧାରଣ ସଭାସମିତି ଅଛି ଏବଂ ଖବରକାଗଜମାନ ପ୍ରକାଶିତ ହୋଇଅଛି ।

ଏହାଦ୍ୱାରା ମୋଗଲବନ୍ଦିରେ ଲୋକମତ ଗଠିତ ହୋଇଅଛି । ଲୋକେ ଆପଣାର ସତ୍ତ୍ୱ ଓ ଅଧିକାର ଦାବୀ କରି ଶିଖିଛନ୍ତି । ଅତ୍ୟାଚାରର ଅଭିଯୋଗମାନ ଦଳବଦ୍ଧ ଭାବରେ ମର୍ଯ୍ୟାଦାରକ୍ଷିତ ବ୍ୟକ୍ତ କରିବାକୁ ସମର୍ଥ ହୋଇଛନ୍ତି । ସେମାନଙ୍କ ଗୁହାରିର ସୁବିଚାର ନ ହେଲେ ପ୍ରବଳ ଲୋକମତଦ୍ୱାରା ଆପଣାର ଅସନ୍ତୋଷ ଓ ଅଶାନ୍ତି କର୍ତ୍ତୃପକ୍ଷମାନଙ୍କୁ ଜଣାଇ ପାରନ୍ତି । ଏସବୁ ଉପାୟରେ ପ୍ରତିକାର ନ ମିଳିଲେ ଅସହଯୋଗ ଶେଷ ପନ୍ଥା । ବର୍ତ୍ତମାନ ଏ ଶେଷ ପନ୍ଥା ଧରିବା ଗଡ଼ଜାତ ଲୋକଙ୍କର ଦରକାର ହୋଇନାହିଁ । ଆଗେ ସେମାନେ ନିଜ ନିଜ ମଧ୍ୟରେ ଲୋକମତ ଗଠନ କରନ୍ତୁ, ସଭାସମିତି କରି ସାଧାରଣ ସୁବିଧା ଅସୁବିଧାର ପ୍ରସଙ୍ଗ ବିଚାର କରନ୍ତୁ ଏବଂ ତାହାସବୁ ନିର୍ଭୀକ ଭାବରେ ସମସ୍ତଙ୍କ ଅବଗତି ନିମନ୍ତେ ଖବରକାଗଜ ଆଦି ନାନା ବିହିତ ଉପାୟରେ ପ୍ରକାଶ କରନ୍ତୁ । ଯେକୌଣସି ଅନ୍ୟାନ୍ୟ ଅତ୍ୟାଚାରର ପ୍ରଧାନ ପ୍ରତିକାର ପ୍ରବଳ ଲୋକମତ । ଜଗତର ଅଧିକାଂଶ ଅନ୍ୟାୟ ଓ ପାପ ହୁଏ ଗୁପ୍ତରେ, ଅନ୍ଧାରରେ, ଆଲୁଅରେ ସର୍ବସାଧାରଣଙ୍କ ଦୃଷ୍ଟି ଉପରେ ଅନ୍ୟାୟ ବା ଅକ୍ରିୟା ହେବା ସହଜ ନୁହେଁ । ଅବଶ୍ୟ ଆମ୍ଭମାନଙ୍କର ପୂର୍ବ ଆଶଙ୍କା ଯେ ଅନେକ ଗଡ଼ଜାତର କର୍ତ୍ତୃପକ୍ଷମାନେ ସେଠା ପ୍ରଜା ସାଧାରଣଙ୍କର ଏପରି ବିଧିସଙ୍ଗତ ଉପାୟରେ ଲୋକମତ ଗଠନରେ ବାଧା ଦେବେ । ସେଥିଲାଗି ପ୍ରଜାମାନଙ୍କ ମଧ୍ୟରେ ଦୃଢ଼ ଏକତା ଶାନ୍ତି ଓ ସାହସ ହେବା ଆବଶ୍ୟକ । ବାଧାସତ୍ତ୍ୱେ ସେମାନଙ୍କୁ କାର୍ଯ୍ୟ କରିବାକୁ ହେବ; ପ୍ରଥମେ ପ୍ରଥମେ କେତେଜଣଙ୍କୁ ଦୁଃଖ କଷ୍ଟ ସହିବାକୁ ହେବ । ମାତ୍ର କର୍ତ୍ତୃପକ୍ଷମାନେ ଲୋକମତ ଗଠନ ଉଦ୍ୟମକୁ କଦାପି ଏକାବେଳକେ ଚପାଇ ପାରିବେ ନାହିଁ । କର୍ତ୍ତୃପକ୍ଷଙ୍କର ମଧ୍ୟ ବୁଝିବା ଉଚିତ ଯେ ଲୋକମତ

ଚରଦ୍ୱନ କେନ୍ଦ୍ର ଚପାଇ ରଖି ପାରନାହାଁନ୍ତି କ ପାରବ ନାହିଁ । ଏଭଳ ଉଦ୍ୟମର ପରିଣାମ ଯେପର ଅନେକ ଘଟଣାରେ ହୋଇଅଛି ବରାବର ସେହିପର ସାଘାତକ ହେବ । ଓଡ଼ିଶା ଗଡ଼ଜାତମାନଙ୍କ ଉପରେ ପଲ୍‌ଟିକାଲ ଏଜେଣ୍ଟ ମାଲିକ ହୋଇ ରହିବା ଦିନୁଁ ଶାସନତନ୍ତ୍ରର ଏପର କ୍ରମେ ସଙ୍ଗଠନ ହୋଇଅଛି ଯେ ବର୍ତ୍ତମାନ ମୋଗଲବନ୍ଦିରୁ ଗଡ଼ଜାତମାନ ଏକପ୍ରକାର ପୃଥ୍ୱ ଅଲଗା ହୋଇ ଗଲେଣି । ଉତ୍କଳ ସମ୍ମିଳନୀରେ ଗଡ଼ଜାତ ପ୍ରଜାମାନେ ସେପର ବଶେଷଭାବରେ ଯୋଗ ଦଅନ୍ତି ନାହିଁ । ଫଳରେ, ଗଡ଼ଜାତ ପ୍ରସଙ୍ଗ ସେଥିରେ ବଶେଷ କିଛି ପଡ଼େ ନାହିଁ । ଉତ୍କଳ ସମ୍ମିଳନୀ ସଙ୍ଗେ ସେମାନଙ୍କର ଯେପର ସମ୍ପର୍କ ଅଛି ଥାଉ । ତାହାଛଡ଼ା ଉତ୍କଳ ପ୍ରଦେଶର ସମସ୍ତ ଗଡ଼ଜାତର ପ୍ରଜାମାନଙ୍କର ଏକ ସ୍ୱତନ୍ତ୍ର ସମ୍ମିଳନୀ ହେବାର ପ୍ରୟୋଜନ । ସେଥିରେ କେବଳ ଗଡ଼ଜାତର ପ୍ରସଙ୍ଗ ପଡ଼ିବ ଏବଂ ଗଡ଼ଜାତବାସୀମାନେ ଆପଣା ଅବସ୍ଥା ବିଷୟରେ ଦଳଗତ ଭାବରେ ଦୃଢ଼ ଲୋକମତ ବ୍ୟକ୍ତ କରବେ । ଗଡ଼ଜାତ ଲୋକଙ୍କ ପକ୍ଷରେ ଏହାହିଁ ବର୍ତ୍ତମାନ ପ୍ରଥମ ସୋପାନ । ଏହା ସହଯୋଗର ପନ୍ଥା । ଏହାଛଡ଼ା ନଜେ ନଜ ସୂତାକାଟି ଲୁଗା ପିନ୍ଧିବା, ଗଞ୍ଜାଇ ବା ମଦ ଆଦ ଛାଡ଼ିବା, ମାମଲା ମକଦ୍ଦମା ଆଦ ଗ୍ରାମରେ ପଞ୍ଚାୟତଦ୍ୱାରା ନକାଶ କରବାଦ୍ୱାରା ସେମାନେ ଷ୍ଟେଟ ସଙ୍ଗେ ଅସହଯୋଗ କଲେ ନାହିଁ ବରଂ ବଶେଷ ଭାବରେ ସହଯୋଗ କଲେ । ସହଯୋଗ ବ୍ୟର୍ଥହେଲେ ପରେ ଅସହଯୋଗ ।

('ସମାଜ' ତା ୧୮ । ୨ । ୨୨)

———

# ଅସହଯୋଗର ପ୍ରତିକ୍ରିୟା

ଗତବର୍ଷ ବିହାର ଓଡ଼ିଶା ସରକାରଙ୍କ ଆୟ ବ୍ୟୟ ହିସାବବେଳେ ୫୧ ଲକ୍ଷ ଟଙ୍କା ଅଭାବ ପଡ଼ିଥିଲା । ଏବର୍ଷ ଅବସ୍ଥା ତହିଁରୁ ବଳି ଖରାପ । ବିହାର ନୌକରସାହିର ଏଥିରେ ଯେ କେତେଦୂର ଆତଙ୍କ ଉପସ୍ଥିତ ହୋଇଛି ଓ ନୂତନ କର ବସାଇବାକୁ ସେ କିପରି ଆଳ ବାହାର କରୁଛନ୍ତି ତାହା ରାଜସ୍ୱ ମେମ୍ବରଙ୍କ ନିମ୍ନଲିଖିତ ବକ୍ତୃତାରୁ ଜଣା ପଡ଼ିବ । ଗତ ୧୪ ତାରିଖ ବ୍ୟବସ୍ଥାପକ ସଭାରେ ଆୟ ବ୍ୟୟ ହିସାବ ପେଶ୍ କଲବେଳେ ସରକାରଙ୍କ ରାଜସ୍ୱ ମେମ୍ବର କହିଛନ୍ତି କି "ଏବର୍ଷ ଆମ୍ଭମାନଙ୍କର ଅବସ୍ଥା ବଡ଼ ଖରାପ ହୋଇଛି । ଯେ ପରିମାଣରେ ଆୟ ପାଇବା ବୋଲି ଆମ୍ଭେମାନେ ଆଶା କରିଥିଲେ ତାହା ଅନେକ କମିଯାଇଛି । ଆମ୍ଭମାନଙ୍କ ଆୟର ତେରପଣ ସିକି ଖଜଣା, କୋର୍ଟଫିସ ଓ ଅବକାରୀରୁ ମିଳେ । ଖଜଣାଟା ତ ପ୍ରାୟ ସବୁବେଳେ ସମାନ, କେବଳ ଅବକାରୀ ଏବଂ କୋର୍ଟଫିସରୁ ବେଳୁବେଳ ଅଧିକ ଆୟ ହୁଏ । କିନ୍ତୁ ଏବର୍ଷ ଅସହଯୋଗୀଙ୍କ ଦାଉରୁ କୋର୍ଟଫିସ ବାବଦରେ ଦଶଲକ୍ଷ ଓ ଅବକାରୀ ବାବଦରେ ୩୦ ଲକ୍ଷ ଏପରି ୪୦ ଲକ୍ଷ ଟଙ୍କା କମିଯାଇଛି । ମନ୍ତ୍ରୀମାନେ ସାଧାରଣ ସ୍ୱାସ୍ଥ୍ୟ ଓ ଶିକ୍ଷା ସକାଶେ ଯଥେଷ୍ଟ ଟଙ୍କା ପାଇ ପାରୁ ନାହାନ୍ତି । ବର୍ତ୍ତମାନ ନୂତନ କର ବସାଇବା ନିତାନ୍ତ ଦରକାର ହେଲାଣି ।"

× × ×

ବିଲାତ ପାର୍ଲିଆମେଣ୍ଟରେ ଭାରତ ଅବସ୍ଥା ନେଇ ଘୋର ଆତଙ୍କ ପଡ଼ିଛି । କିଏ କହୁଛି 'ଗାନ୍ଧିଙ୍କି ଧର' କିଏ କହୁଛି 'ଅସହଯୋଗୀଙ୍କୁ ମାର' । ଏହିପରି ଅନେକଙ୍କର ଭୟ ଓ କ୍ରୋଧରେ ବୁଦ୍ଧି ନାଶ ଘଟିଲାଣି । କିନ୍ତୁ ପ୍ରକୃତ ଯେ ସେମାନଙ୍କର ଏବେ ଆତଙ୍କ ଉପସ୍ଥିତ ହୋଇଛି ଏଥିରେ ସନ୍ଦେହ ନାହିଁ । ଭାରତ ମନ୍ତ୍ରୀ ମଣ୍ଟେଗୁ ସାହେବ ଖିଲାଫତ୍ ପ୍ରଶ୍ନର ଶୀଘ୍ର ମୀମାଂସା କରିଦେବେ ବୋଲି ସଫା କହି ସାରିଲେଣି । ସାରଜନ ରିକ୍ ନାମକ ଜଣେ ସଭ୍ୟ ସ୍ପଷ୍ଟ କହିଛନ୍ତି ଯେ ବାହାରେ ଥାଇ ଗାନ୍ଧୀର ଯେ କ୍ଷମତା ଜେଲଖାନାରେ ତାହାଠାରୁ ଅଧିକ ହେବ ।

× × ×

ଇଷ୍ଟଇଣ୍ଡିଆ ରେଲବାଇ କମ୍ପାନୀର ସମସ୍ତ ଭାରତୀୟ କର୍ମଚାରୀ ଏବେ ଧର୍ମଘଟ କରିଛନ୍ତି । ଏହା ଗୋରାମାନଙ୍କ ଅତ୍ୟାଚାରର ଫଳ । ତୁନ୍ଦଲା ଷ୍ଟେସନଠାରେ ରାମଲାଲ୍ ନାମକ ଜଣେ ଦେଶୀ ଫାୟାରମ୍ୟାନକୁ ଦୁଇଜଣ ଗୋରା ଅଯଥାରେ ପିଟି ପକାଇଲେ । ସେ ସରକାର ଓ କମ୍ପାନୀଙ୍କଠାରେ ନାନାପ୍ରକାର ଆପତ୍ତି କଲେସୁଦ୍ଧା କେହି ଶୁଣିଲେ ନାହିଁ ଓ ଗୋରା କର୍ମଚାରୀଙ୍କ ବିରୁଦ୍ଧରେ ମିଥ୍ୟା ମକଦ୍ଦମା ବୋଲି ଖାରଜ କରି ଦେଲେ । ଫଳରେ ସମସ୍ତ ଦେଶୀ କର୍ମଚାରୀ ମେଳ ବାନ୍ଧି ଧର୍ମଘଟ କରିଛନ୍ତି ; ରେଲବାଇର ପ୍ରାୟ ସମସ୍ତ କାର୍ଯ୍ୟ ଏକାବେଳକେ ବନ୍ଦ । ଶାସନସଂସ୍କାର ଦ୍ୱାରା ଅନେକ ଗୋରା ସରକାରୀ କର୍ମଚାରୀ କହନ୍ତି କଳା ଗୋରାଙ୍କ ମଧ୍ୟରେ ଏଥର ଅଭେଦ ପ୍ରୀତି ଜନ୍ମିଛି । ଏ ତାହାର ଗୋଟିଏ ନିଦର୍ଶନ ନୁହେଁ କି ?

× × ×

ଲର୍ଡ଼ ସିଂହଙ୍କ ପରେ ସାର ଜେମ ସୁରିଅର ବିହାର ଓଡ଼ିଶାର ଲାଟ ହୋଇଛନ୍ତି । ମାତ୍ର ଏପର୍ଯ୍ୟନ୍ତ ସେ ସ୍ଥାୟୀ ହୋଇ ନାହାନ୍ତି । ଶୁଣାଯାଏ ମାନ୍ୟବର ଶ୍ରୀନିବାସ ଶାସ୍ତ୍ରୀ ଇଂଲଣ୍ଡରୁ ଫେରି ଆସିଲେ ବିହାର ଓଡ଼ିଶାର ଲାଟ ହେବେ । ଶାସ୍ତ୍ରୀ ମହାଶୟ ଗଲା କେତେବର୍ଷ ହେଲା ସରକାରଙ୍କ ବହୁତ ପୂଜା ସେବା କରିଛନ୍ତି । ଏହିପରି କୌଣସି ଗୋଟିଏ ବର ପାଇବେ ବୋଲି ଆମ୍ଭେମାନେ ମଧ୍ୟ ଅନୁମାନ କରିଥିଲୁ । କିନ୍ତୁ ଏ ସମ୍ବାଦ ସ୍ଥିର ବୋଲି ପ୍ରକାଶ ପାଇନାହିଁ ।

× × ×

ମୌଲନା ମହମ୍ମଦ ଆଲି, ସୌକତ ଆଲି ଓ ଡାକ୍ତର କିଚଲୁ ଓଗେର କରାଚୀ ବନ୍ଦୀମାନଙ୍କ ପ୍ରତି ଖରାପ ବ୍ୟବହାର ହେଉଥିବାର ପ୍ରକାଶ ପାଇଥିଲା । ସେମାନଙ୍କୁ ଗୁମ୍ଫାରେ ରଖି ଖାଇବାକୁ ଦିଆ ଯାଉନାହିଁ ଏପରିକି ଜଣେ ସେମାନଙ୍କ ମଧ୍ୟରୁ ମରିଗଲେଣି ବୋଲି ଜନରବ ଉଠିଥିଲା । ଏଥିରେ କରାଚୀର ପ୍ରାୟ ୧୫ ହଜାର ଲୋକ ଉତ୍ତେଜିତ ହୋଇ ମୌଲନାମାନଙ୍କୁ ଦେଖିବାପାଇଁ ଜେଲଖାନା ପାଖରେ ଯାଇ ହାଜର ହେଲେ । ଅଲି ଭାଇମାନଙ୍କୁ ନ ଦେଖିଲେ ସେମାନେ କେବେହେଁ ଫେରିବେ ନାହିଁ ବୋଲି ଜିଦ୍ ଧରିବାରୁ ବମ୍ବେଇ ଜେଲ ବିଭାଗର ହାକିମ ଅଲିଭାଇମାନଙ୍କୁ ଲୋକଙ୍କୁ ଦେଖାଇ ଦେଲେ । ଦୁଇଭାଇ ଜେଲ ପାଇବା ଦିନୁଁ ପରସ୍ପରକୁ ଦେଖି ନ ଥିବାରୁ ଦେଖାଦେଖି କୁଣ୍ଢାକୁଣ୍ଢି ହେଲେ ଓ ଲୋକଙ୍କୁ ଅସହଯୋଗ ପାଳି ଶାନ୍ତ ରଖିବାକୁ ଉପଦେଶ ଦେଲେ । ଲୋକେ

ଆଲିଭାଇଙ୍କୁ ଦେଖି ଆଶ୍ୱସ୍ତ ହୋଇ ଧୀରସ୍ଥିର ଭାବରେ ଫେରି ଯାଇଥିଲେ । ଏବେ କେଜାଣି କାହିଁକି ଆଲିଭାଇ ଓ ଟେର ବନ୍ଦୀମାନଙ୍କୁ ଭିନ୍ନ ଭିନ୍ନ ଜେଲଖାନାକୁ ପଠାଇ ଦିଆଗଲେଣି । ମୌଲାନା ମହମ୍ମଦ ଆଲି ସୁରାଟ ଜିଲା ଧୂଲିଆ ଜେଲଖାନାରେ ଅଛନ୍ତି । ରେଲରେ ଗଲାବେଳେ ବର୍ଦ୍ଧୋଲି ଷ୍ଟେସନଠାରେ ମହାତ୍ମାଗାନ୍ଧିଙ୍କ ସହିତ ତାଙ୍କର ଦେଖା ହୋଇଥିଲା । ସେ ଅସହଯୋଗ କାର୍ଯ୍ୟର ବର୍ତ୍ତମାନ ବ୍ୟବସ୍ଥା ବିଷୟରେ ମହାତ୍ମାଗାନ୍ଧିଙ୍କ ସହିତ ଏକମତ ହୋଇଛନ୍ତି ।

('ସମାଜ', ତା ୨୫ । ୨ । ୨୨)

# ଆନ୍ଦୋଳନ ବିରୋଧରେ ପୁଲିସଙ୍କ କରାମତ

ଓଡ଼ିଶା ମଧ୍ୟରେ ପୁରୀ ଜିଲାର ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ଗାଇସ ସାହେବ ଅସହଯୋଗ ଆନ୍ଦୋଳନ ଦବାଇବା ଲଗି ସର୍ବପ୍ରଥମେ ପାଞ୍ଚଅାଇନର କରାମତ ପ୍ରକାଶ କଲେ । ପୁରୀ ଖୋର୍ଦ୍ଧା ଦୁଇ ସହରରେ କୌଣସିପ୍ରକାର ସଭାସମିତି ପଟୁଆର ଆଦି ଗଳି ସଦର ରାସ୍ତା ଆଦିରେ ତାଙ୍କ ବିନାନୁମତିରେ ହୋଇ ନ ପାରିବ ବୋଲି ସେ ନୋଟିସ ଜାରି କଲେ । ଏ ନୋଟିସ ଫଳରେ ଉଚ୍ଚଇଂରାଜୀ ବିଦ୍ୟାଳୟର ପିଲାମାନଙ୍କୁ ସରସ୍ୱତୀ ପୂଜାରେ ପ୍ରତିମା ବିସର୍ଜନ କରିବାକୁ ନେବାବେଳେ ପଟୁଆରରେ ଯିବା କାରଣ ପୋଲିସଁ-ଠାରୁ ଅନୁମତି ନେବାକୁ ହୋଇଥିଲା । ଏ ମାସ ୩ ତାରିଖ ଖୋର୍ଦ୍ଧାର କଂଗ୍ରେସ ମେମ୍ବର-ମାନଙ୍କ ସମ୍ମିଳନୀ ବନ୍ଦ କରିବା ଉଦ୍ଦେଶ୍ୟରେ ଜିଲା ପୋଲିସ ସାହେବ ପୁନର୍ବାର ଉପର ସାନ ପାଞ୍ଚଆଇନ ନୋଟିସ କଂଗ୍ରେସ କର୍ମୀମାନଙ୍କ ଉପରେ ଦେଇଥିଲେ ତାହା ପାଠକମାନେ ଜାଣନ୍ତି । ପାଞ୍ଚଆଇନରେ ଅଛି ଯେ କେବଳ ଗଳି ବା ସଦର ରାସ୍ତା ଉପରେ ସଭାସମିତି ପଟୁଆର ଆଦି କୌଣସି ପ୍ରକାର ଜନତା କରି ପାରିବେ ନାହିଁ । ମାତ୍ର ୩ ତାରିଖ ନୋଟିସରେ ରାସ୍ତା ଗଳି ସଙ୍ଗେ ସହରର, ସମସ୍ତ ସାଧାରଣ ସ୍ଥାନ ଯୋଡ଼ା ହୋଇଥିଲା । ଅବଶ୍ୟ ଏହା ସାହେବଙ୍କ ଜ୍ଞାତସାରରେ ହୋଇଥିଲା କି ଆଉ କାହାର କାରସାଦି ଆମ୍ଭେମାନେ କହି ପାରୁନାହୁଁ । କାରଣ ଟାଇପ ଛପା ନୋଟିସ ଦେହରେ ଏ କଥାଟା ହାତରେ ଲେଖା ହୋଇଥିଲା ଏବଂ ସେଥିରେ ସାହେବଙ୍କର ଦସ୍ତଖତ ନ ଥିଲା । ଯେ ଏହା କରନ୍ତୁ ନା କାହିଁକି ଗ୍ରେଟ ଲୁଟ ଭାବରେ ସାଧାରଣଙ୍କୁ ଅଯଥା ଭୁଲାଇବା ଲଗି ଏପରି ବେଆଇନ କାର୍ଯ୍ୟ କରିବା ନିତାନ୍ତ ଗୁରୁତା । ପୁଣି ଏ ନୋଟିସରେ ୧୪୪ ଧାରା ହୁକୁମ ପରି ଏକାବେଳକେ ସଭା ବନ୍ଦର ହୁକୁମ ହୋଇଥିଲା । ଲାଇସେନ୍ସ ବା ଅନୁମତି ନେବାର କୌଣସି ଉଲ୍ଲେଖ ନ ଥିଲା । ମୋଟ ଉପରେ ପାଞ୍ଚଆଇନର ୩୦ ଧାରାରେ ପୋଲିସ ସାହେବମାନଙ୍କୁ ଯେ କ୍ଷମତା ଦିଆ ହୋଇଅଛି ଏ ନୋଟିସରେ ସେ କ୍ଷମତାର ଅତିରିକ୍ତ ହୁକୁମ ବାହାରିଥିଲା । ସେ ଯାହାହେଉ, ଏକା ପୁରୀ ପୁଲିସ ସାହେବ ପାଞ୍ଚଆଇନ ହତିଆର ଖଣ୍ଡିକ ଧରିଛନ୍ତି । ମାତ୍ର ଏବେ ଦେଖାଯାଉଛି ଓଡ଼ିଶାର ଅନ୍ୟାନ୍ୟ ସହରରେ ମଧ୍ୟ ଏ ହତିଆର ବ୍ୟବହାରରେ ଲଗୁଅଛି । ବାଲେଶ୍ୱରର ପିକେଟିଂ କରୁଥିବା କେତେଜଣଙ୍କୁ ଏଥିମଧ୍ୟରେ ପାଞ୍ଚଅାଇନ୍‌ରେ ଧରି ପାଞ୍ଚଟଙ୍କା ଲେଖାଏଁ ଜରିମାନା ହୋଇଥିଲା ଏବଂ ସେମାନେ ଜରିମାନା ନ ଦେବାରୁ ଦିନେ ଲେଖାଏଁ ଅର୍ଥାତ୍ ସେଦିନ କଚେରୀ ଭାଙ୍ଗିବା

ଯାଏ ସେମାନଙ୍କୁ ବନ୍ଦୀ କରାଯାଇଥିଲା । ସାଧାରଣ ଲୋକେ ଜାଣିଥିଲେ ଯେ ସହର-ମାନଙ୍କରେ ଅଥାନରେ ମଳମୂତ୍ର ନିବାରଣ କରିବାରେ ଖାଲି ପାଞ୍ଚଅାଇନ୍ କାମରେ ଲାଗେ । ମାତ୍ର ଏଥର ଅସହଯୋଗ ଆନ୍ଦୋଳନକୁ ବନ୍ଦ କରିବାର କାମନ୍ତ ଅଛି ବୋଲି କେହି ସ୍ୱପ୍ନରେ ଭାବି ନ ଥିଲେ । ଏ ଆନ୍ଦୋଳନକୁ ଦବାଇବା ଲାଗି କୌଣସି କୌଣସି ପ୍ରାଦେଶିକ ସରକାର ରାଜବିଦ୍ରୋହ ସଭା ଆଇନ (ସିଡ଼ିଶସ୍ ମିଟିଂ ଆକ୍ଟ) ଫୌଜ କାନୁନ (କ୍ରିମିନାଲ୍ ଲ ଆମେଣ୍ଡମେଣ୍ଟ ଆକ୍ଟ) ଜାରି କରିଛନ୍ତି । ବିହାର ଓଡ଼ିଶା ସରକାର କେବଳ ଫୌଜ ଆଇନକୁ ଟିକିଏ ଦେଖାଇଦେଇ ବର୍ତ୍ତମାନ ଏକପ୍ରକାର ସ୍ଥଗିତ ରଖିଛନ୍ତି । ପୁଣି ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାରେ ଏ ଆଇନକୁ ଏକାବେଳକେ ଏ ପ୍ରଦେଶରୁ ଉଠାଇ ଦେବା ନିମନ୍ତେ ପ୍ରସ୍ତାବ ଗୃହୀତ ହୋଇଅଛି । ପ୍ରାଦେଶିକ ସରକାରମାନଙ୍କ ଉଦ୍ୟମ ପଛକୁ ଜିଲା ସାହେବମାନେ ଆପଣା ଆପଣା ହତିଆରଖଣ୍ଡମାନ ଧରି ଛିଆ ହୋଇଛନ୍ତି । ସେମାନଙ୍କର ଏକମାତ୍ର ହତିଆର ୧୪୪ ଧାରା । ସେମାନେ ଯଦି ତଦି ତାକୁ ଯାହାଇଚ୍ଛା ତା ଉପରେ ଲଗାଇ ଦେଉଛନ୍ତି । କୌଣସି ଅଞ୍ଚଳରେ ସଭା ବନ୍ଦ କରିବାକୁ ହେବ, ତା ଉପରେ ୧୪୪ ଧାରା । ସ୍ୱେଚ୍ଛାସେବକ ଦଳ ଗଠନ ବନ୍ଦ କରିବାକୁ ହେବ ବା ଅବଲାଖି ଦୋକାନ ନିଲମ ଧରିବାରେ ଲୋକଙ୍କୁ ଉତ୍ସାହ ଦେବାକୁ ହେବ ୧୪୪ ଧାରା । କୌଣସି ବ୍ୟକ୍ତିବିଶେଷର ହାତ ମୁହଁ ବନ୍ଦ କରିବାକୁ ହେବ ସେହି ୧୪୪ । ୧୪୪ ଧାରା ଜିଲା ହାକିମମାନଙ୍କର ବିଫଳା ମହୌଷଧ । କଫ କଲେରାଠାରୁ ଗୋରୁ ହଜିବା ପର୍ଯ୍ୟନ୍ତ ସବୁଥିରେ ଏହା କାମ୍ କରିବ ବୋଲି ସେମାନଙ୍କର ବିଶ୍ୱାସ ।

ଏ ପ୍ରଦେଶ ସରକାରଙ୍କ ଫୌଜ ଆଇନ ଆଦି ବଡ଼ ବଡ଼ ତୋପ ପ୍ରଭୃତି ଚଳାଇବା ନ ଚଳାଇବା ବିଚାରାଧୀନ ଥିଲାବେଳେ ଜିଲା ହାକିମମାନେ ଆପଣାର ହତିଆର ଖଣ୍ଡିକୁ ଆଉ ଟିକିଏ ବିଶ୍ରାମ ଦେଉ ନାହାନ୍ତି । ଜିଲା ହାକିମମାନଙ୍କର ଏ ଉଦ୍ୟମ ଦେଖି ଜିଲା ପୋଲିସ ସାହେବମାନେ ହୁଏତ ଅସ୍ଥିର ହୋଇ ରହି ପାରୁନାହାନ୍ତି । ସେମାନେ ବିଚାରୁଥିବେ ଆମ କାଉଡ଼ି କଣ କାଣି ? ଆମ ହାତରେ ଯେ ଛୁରି ଖଣ୍ଡିକ ଅଛି ଆମେ ତାକୁଇ ନେଇ ପ୍ରସ୍ତେ ଲଢ଼ିବା । ମାତ୍ର କାହିଁ ରାଜଦ୍ରୋହ ସମିତ ଆଇନ, କାହିଁ ଫୌଜଦାରୀ ପରିବର୍ତ୍ତିତ ଆଇନ ପରି ବଡ଼ ବଡ଼ ହତିଆର ସମ୍ଭାଳା ପଡ଼ୁନାହିଁ । କୌଣସି କୌଣସି ପ୍ରଦେଶରେ ଅତ୍ୟଧିକ ବ୍ୟବହାରରେ ଏସବୁ ଏକପ୍ରକାର ଅକର୍ମା ହୋଇ ପଡ଼ିଲେଣି । ଜିଲା ସାହେବମାନଙ୍କ ତରବାରିକି ଏବେତ ଅନେକେ ଖାତିର କରୁନାହାନ୍ତି । ଏ ଅବସ୍ଥାରେ ପାଞ୍ଚଆଇନ କି ଦମ୍ଭରେ ବାହାରୁଛନ୍ତି ?

"ବଡ଼ ବଡ଼ ହାତୀ ବୁଡ଼ି ଯାଆନ୍ତି
ଗଧ ବୋଲେ ପାଣି କେତେ ।"

———

('ସମାଜ' ତା ୨୫ । ୨ । ୨୨)

# ସ୍ୱରାଜ୍ୟ ସବୁ ସମାଧାନ କରିବ

ଲର୍ଡ଼ ନର୍ଥ କ୍ଲିଫବୋଲ୍ ବିଲାତ ସମ୍ବାଦ ପତ୍ରର ଜଣେ ପ୍ରତିନିଧି ଭାରତବର୍ଷକୁ କେତେଦିନ ତଳେ ଆସିଥିଲେ । ସେ ବିଲାତରେ ଯାଇ ବର୍ଣ୍ଣନା କରିଥିଲେ ଯେ ମୁସଲମାନ-ମାନଙ୍କର ଖିଲାଫତ୍ ପ୍ରସଙ୍ଗ ସମାଧାନହୋଇଗଲେ ଭାରତ ସମସ୍ୟା ମେଣ୍ଟିଯିବ । ଭାରତର ମୁସଲମାନ ନେତାମାନେ ଏ ଉଦ୍ୟମର ଗୂଢ଼ ରହସ୍ୟ ବେଶ୍ ବୁଝିପାରୁଛନ୍ତି । "ଭାଇ ଭାଇ ଠାଇ ଠାଇ" ନୀତିବଳରେ ରାଜ୍ୟ ଶାସନର ବିଷମଫଳ ସେମାନେ ଅଙ୍ଗେ ନଭେଇ ସାରିଛନ୍ତି । ମୁସଲମାନ ନେତା କେହି କେହି ବିଶେଷତଃ କଲିକତାର ଅବ୍‌ଦୁଲ୍ କଲମ ଆଜାଦ ଏଥି ମଧ୍ୟରେ ନର୍ଥ କ୍ଲିଫ ସାହେବଙ୍କ କୌଶଳର ଜବାବ ଦେଇ ସାରିଲେଣି । ମୁସଲମାନମାନେ ଏବେ ଭଲରୂପେ ଜାଣିଲେଣି ଯେ ହିନ୍ଦୁ ମୁସଲମାନଙ୍କ ଭାଗ୍ୟ ଏକ ଡୋରରେ ବନ୍ଧା । ସେମାନେ ଏକ ମା'ର ଦୁଇଟି ଯାଆଁଳା ପୁଅ, ଏକା ଡେମ୍ଫରେ ଦୁଇଟି ଫୁଲ । ଯେଉଁମାନେ ହରଗୌରୀ ମୂର୍ତ୍ତି ଦେଖିଥିବେ ସେମାନେ ହିନ୍ଦୁ ମୁସଲମାନର ବର୍ତ୍ତମାନ ଭାବ ବୁଝିପାରିବେ । ଅବ୍‌ଦୁଲ କାଲମ ଆଜାଦ କହିଛନ୍ତି "ସ୍ୱରାଜ୍ୟସିଦ୍ଧି ନ ହେବାଯାଏ ଖାଲି ଖିଲାଫତ୍ ପ୍ରସଙ୍ଗ ସମାଧାନରେ ମୁସଲମାନ ସନ୍ତୁଷ୍ଟ ରହିବେ ନାହିଁ । ସ୍ୱରାଜ୍ୟ ହେଲେ ଖିଲାଫତ୍ ସମସ୍ୟା ଆପେ ଆପେ ନିଷ୍ପତ୍ତି ହୋଇଯିବ ।

× × ×

ଏଥର ବିହାର ଓଡ଼ିଶା ସରକାରଙ୍କ ଆୟ ବ୍ୟୟ ବିଚାରବେଳେ ମନ୍ତ୍ରୀ ମାନ୍ୟବର ମଧୁସୂଦନ ଦାସ କେତେଗୁଡ଼ିଏ ଭିତର କଥା ସଫା ସଫା ଖୋଲି କହିଛନ୍ତି । ତାଙ୍କ ବକ୍ତୃତାର ମର୍ମ ସମାଜରେ ଅନ୍ୟତ୍ର ପ୍ରକାଶିତ ହୋଇଅଛି । ସେଥିରୁ ଜଣାଯାଏ ଯେ ମଧୁବାବୁ ତାଙ୍କର ବର୍ତ୍ତମାନ ପଦରେ ଆଦୌ ସନ୍ତୁଷ୍ଟ ନୁହନ୍ତି । ଦେଶୀଲୋକ ମନ୍ତ୍ରୀହେଲେ ଓ ସେମାନଙ୍କ ହାତେ କେତେଗୁଡ଼ିଏ ବିଭାଗର କ୍ଷମତା ରହିଲା ବୋଲି ଯେଉଁମାନେ ନାଚୁଥିଲେ ଏବଂ ଶାସନ ସଂସ୍କାର ଦ୍ୱାରା ଲୋକସାଧାରଣଙ୍କର ସ୍ୱର୍ଗଲାଭ ହେଲାବୋଲି ବିଚାରୁଥିଲେ ମଧୁବାବୁଙ୍କ କଥାରୁ ସେମାନେ ଏବେ ଭଲରୂପେ ବୁଝିପାରିବେ ଯେ ଶାସନ ସଂସ୍କାର "ଦିଲ୍ଲୀକା ଲଡ୍ଡୁ" । ମଧୁବାବୁ ତାହାଖାଇ ଏବେ ଏକପ୍ରକାର ପସ୍ତାଉଥିଲା ପରି ବୋଧହୁଏ । ଶାସନ ସଂସ୍କାର ଏହାହିଁ ବୋଲି ଦେଶର ଅନେକ ବିଚକ୍ଷଣ ଲୋକ ଆଦ୍ୟରୁ କହି ଆସୁଛନ୍ତି । ମଧୁବାବୁଙ୍କ ପରି ପ୍ରବୀଣ ବ୍ୟକ୍ତି ଏହା ଯେ ନ ବୁଝିଥିଲେ

ତାହା ନୁହେଁ । ଉତ୍କଳ ସମ୍ମିଳନୀର ବିଶେଷ ଅଧିବେଶନରେ ସଭାପତି ରୂପେ ଶାସନ ସଂସ୍କାର ସମ୍ବନ୍ଧେ ସେ ପୂର୍ବେ ଆପଣା ମତ ଯାହା ବ୍ୟକ୍ତ କରିଥିଲେ ସେଥିରୁ କିଏ କହିବ ଯେ ସଂସ୍କାରର ଅସାରତା ତାଙ୍କୁ ଦେଖାପଡ଼ି ନ ଥିଲା । କଥାରେ ଅଛି "ଯାହା ନ ଦେଖିବ ବେନି ନୟନେ, ପରତେ ନ ଯିବ ଗୁରୁବଚନେ" । ମଧୁବାବୁ କଳ ଭିତରେ ପଶି ଏବେ କେତେକ କଥା ନିଜ ଅଙ୍ଗେ ନିଭାଇଛନ୍ତି । ସେ ଆଉ ବାହାରର ବାଜେ ଲୋକ ନୁହନ୍ତି । ତାଙ୍କ କଥାଦ୍ୱାରା ଅନେକଙ୍କର ମୋହ ଛୁଟିବ; ଭ୍ରମ ତୁଟିବ । ଦେଶୀଲୋକ ମନ୍ତ୍ରୀହେଲେ, ତାଙ୍କ ତଳେ କେତେ ବଡ଼ ବଡ଼ ସାହେବ ରହିଲେ, ଦେଶୀଲୋକଙ୍କର ଭାରି କ୍ଷମତା ବଢ଼ିଲା । ଏସବୁ ପୂରା ଭ୍ରମ । ଯେଉଁମାନେ ଏପରି ବିଶ୍ୱାସ କରୁଛନ୍ତି ସେମାନେ କୁହୁଡ଼ି ପହଁରୁଛନ୍ତି । ମଧୁବାବୁ କହୁଛନ୍ତି, ଲୋକେ ତାଙ୍କୁ ଗଣ୍ଡ ଭେରବ ଚଢ଼େଇ ବୋଲି ମନେକରି ପାରନ୍ତି; ବଡ଼ ବଡ଼ ହାତୀମାନଙ୍କୁ ଆପଣା ପଞ୍ଝା ଭିତରେ ରଖିବାର ତାଙ୍କର କ୍ଷମତା ଅଛି । ମାତ୍ର ମଧୁବାବୁ ମନ୍ତ୍ରୀପଦର କ୍ଷମତା ଅନୁଭବରେ—ଆଣି କହନ୍ତି କି ମନ୍ତ୍ରୀ ଗଣ୍ଡ ଭେରବ ନୁହନ୍ତି; ମନ୍ତ୍ରୀ ଗୋଟିଏ ପେଚା । ଆମ୍ଭେମାନେ ତ ଅନେକଥର କହିଛୁ ଶାସନ ସଂସ୍କାରରେ ସରକାରର ଲୋକଙ୍କୁ ଯେ କ୍ଷମତା ଦେଇଛନ୍ତି ତାହାର ଅର୍ଥ ଯେ "ଧରୁ ତୋର, କାନ୍ଧରେ ହାତ ଦେବୁନାହିଁ ।" ମାତ୍ର ମଧୁବାବୁ ହାତ ବାନ୍ଧିହୋଇ ବନ୍ଦିବା ଲୋକ ନୁହନ୍ତି । ସେ ଯେ କ୍ଷେତ୍ରରେ ପଶିବେ ସେଥିରେ ଆପଣା ହାତ ଚଳାଇବେ । ଏବେ ସରକାରଙ୍କ କଳରେ ସ୍ୱଚ୍ଛନ୍ଦରେ ହାତ ଚଳାଇବାର ସୁବିଧା ନ ପାଇ ସେ ସମ୍ଭାଳି ହୋଇ ନ ପାରି କେତେଗୁଡ଼ାଏ ମନକଥା କହି ପକାଇଛନ୍ତି । ସରକାରଙ୍କୁ ଟାଣ ଟାଣ କଥା ଶୁଣାଇବା ମଧୁବାବୁଙ୍କର ଏହା ନୂଆକଥା ନୁହେଁ । ମାତ୍ର ଖାଲି କଥାରେ ଚୂଡ଼ା ଭିଜେ ନାହିଁ । ସରକାର ମଧ୍ୟ ବହୁକାଳ କେତେ ଲୋକଙ୍କଠାରୁ କେତେ ଘଟଣାରେ କଡ଼ା କଥା ଶୁଣି ଶୁଣି ତାହା ତାଙ୍କର ଦେହସହିଆ ହୋଇଗଲଣି । ଏଥିକି "ମୋତେ ଯେତେ ବୋଲିବୁ ବୋଲ, ମୋ ଦେହଟା ଯାକଇ ପୋଲ ।"

('ସମାଜ ତା ୪ । ୩ । ୨୨)

———

# ପଞ୍ଚଘଣ୍ଟା ଏକ ରଣକୌଶଳ

କଂଗ୍ରେସ କାର୍ଯ୍ୟକାରୀ ସଭା ବର୍ଦ୍ଦୋଲିଠାରେ ଯେ ପ୍ରସ୍ତାବ ଧାର୍ଯ୍ୟ କରିଥିଲେ, ସେଥିରେ ଦେଶଲୋକ ଅନେକଙ୍କ ମନ ଫିକା ପଡ଼ିଯାଇଥିଲା । ବହୁତଲୋକ ମନେକଲେ ଯେ ଅସହଯୋଗ ଦବିଗଲା । ବର୍ଦ୍ଦୋଲିଠାରେ ସମୂହଭାବରେ ଯେଉଁ ଆଇନଭଙ୍ଗର କଥା ଥିଲା ତାହାତ ବନ୍ଦହେଲା । ତାହାଛଡ଼ା ବିଦେଶୀ ଲୁଗା ଦୋକାନରେ ପିକେଟିଂ କରି ଖରିଦଦାରମାନଙ୍କୁ ବିଦେଶୀ ଲୁଗା କିଣାରୁ ନିବର୍ତ୍ତାଇବାକୁ ମନା କରାଗଲା । ବ୍ୟକ୍ତିଗତ ଭାବରେ ବଳାତ୍କାର କରି କେହି ଆଇନ ଭାଙ୍ଗିବେ ନାହିଁ ବୋଲି ମଧ୍ୟ କୁହାଗଲା । ଅସହଯୋଗ ଆନ୍ଦୋଳନ ଯେତେଗୁଡ଼ାଏ ଆଗକୁ ଗଡ଼ିଯାଇଥିଲା ସେଥିରୁ ଠିକ୍ ଏ ପଛକୁ ଘୁଞ୍ଚି ଆସିଲାପରି ଜଣାଗଲା । ଏଥିରେ ଲୋକଙ୍କର ଆଶା ଉତ୍ସାହ କେତେକ ପରିମାଣରେ ମଉଳି ପଡ଼ିବାର କଥା । ଅନେକେ ବୁଝି ନ ପାରି ମହାତ୍ମାଗାନ୍ଧିଙ୍କି ଦୋଷ ଦେଲେ ମାତ୍ର—

"ଯେ ପକ୍ଷୀ ଉଡ଼େ ଯେତେଦୂର
ସେ ଜାଣେ ତାହାର ବିଚାର"

ଯୁଦ୍ଧରେ କେତେବେଳେ ଆଗକୁ ବଢ଼ିକି ଯିବାକୁ ହୁଏ କେତେବେଳେ ବା ପଛକୁ ଘୁଞ୍ଚି ଆସିବାକୁ ହୁଏ ସାଧାରଣ ସୈନ୍ୟମାନେ ତାହା ଜାଣନ୍ତି ନାହିଁ । ସେନାପତିଙ୍କି ତାହା ଜଣା । ପଛକୁ ଘୁଞ୍ଚି ଆସିଲେ ହାର ହୁଏନାହିଁ । କେତେକ ସମୟରେ ପଛକୁ ଘୁଞ୍ଚି ଆସିଲେ ପୁଣି ପରେ ଆଗକୁ ଅଧିକ ଜୋରରେ ଚଢ଼ିବସିବାକୁ ହୁଏ । ଅସହଯୋଗ ଯୁଦ୍ଧ ତ ଶାନ୍ତ ଯୁଦ୍ଧ । ଦେଶର ସାଧାରଣ ଏ ଯୁଦ୍ଧର ସୈନ୍ୟ ସାମନ୍ତ । ସେ ପୂର୍ଣ୍ଣ ଶାନ୍ତ ରଖିବାକୁ ସମର୍ଥ ନ ହେଲେ ଏ ଯୁଦ୍ଧରେ ଉପଯୁକ୍ତ ସିପାହୀ ହୋଇ ପାରିବେ ନାହିଁ । ସେପରି ସିପାହୀମାନଙ୍କୁ ନେଇ ଯୁଦ୍ଧ ଲଢ଼ିଲେ ଅନିଷ୍ଟଛଡ଼ା ଇଷ୍ଟନାହିଁ । ଚଉରିଚଉରାଠାରେ ଲୋକେ ଯେ ବଜ୍ରପାତ ଘଟାଇଲେ ସେଥିରୁ ମହାତ୍ମାଗାନ୍ଧି ବେଶ୍ ବୁଝିପାରିଲେ ଯେ ଆମ ଦେଶ ଲୋକେ ବର୍ତ୍ତମାନ ସମୂହଭାବରେ ଆଇନଭଙ୍ଗ କରିବାକୁ ସକ୍ଷମ ହୋଇ ନାହାନ୍ତି । ଏମାନଙ୍କର ଆହୁରି ଅଧିକ ଶିକ୍ଷା, ସାଧନା ଓ ଡ୍ରିଲ୍ ଆବଶ୍ୟକ । ଘରେ ଘରେ ଅଳ୍ପରେ ସୂତାକାଟି ଦେଶୀ ଖଦଡ଼ ଲୁଗା ପୋଲଣା ଚଳାଇବାକୁ ହେବ । ଗ୍ରାମପଞ୍ଚାୟତି ବସାଇବାକୁ ହେବ, ଜାତୀୟ ବିଦ୍ୟାଳୟମାନଙ୍କୁ ଭଲ କରିବାକୁ ହେବ, ହିନ୍ଦୁ ମୁସଲମାନ ଏକତା ଦୃଢ଼ କରିବାକୁ ହେବ, ଉଚ୍ଚନୀଚ ବର୍ଣ୍ଣମାନଙ୍କ ମଧ୍ୟରେ ଛୁଆଁଛୁଇଁ ଦୋଷ

ଉଠାଇବାକୁ ହେବ । ଏହିପରି ଅସହଯୋଗର ନାନାବିଧ କାର୍ଯ୍ୟମାନ କରି ପ୍ରତ୍ୟେକ ଗ୍ରାମରେ ଲୋକମାନଙ୍କୁ ପ୍ରସ୍ତୁତ କରିବାକୁ ହେବ ଏବଂ ଭବିଷ୍ୟତରେ ସେମାନେ ଯେପରି ଶାନ୍ତିଭଙ୍ଗ ନ ଘଟାଇବେ ତହିଁର ବ୍ୟବସ୍ଥା କରିବାକୁ ହେବ । ଏହିସବୁ କାର୍ଯ୍ୟ ଅସହଯୋଗ ଆନ୍ଦୋଳନର ସାଧନା ଥିଲା । ଅସହଯୋଗ ଆନ୍ଦୋଳନ ଯେ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ସରକାରଙ୍କର ଏଥିରେ ଆଗରୁ ସନ୍ଦେହ ଥିଲେ ବର୍ଦ୍ଦୋଲି ପ୍ରସ୍ତାବ ଦ୍ୱାରା ତାହା ଘୁଞ୍ଚି ଯାଇ ଥିବ ବୋଲି ଅନେକେ ମନେ କରିଥିଲେ । ମାତ୍ର ବଡ଼ଲାଟ ସଭାରେ ଜଣେ ଦେଶୀ ମେମ୍ବର ଏ ବିଷୟରେ ପ୍ରଶ୍ନ ପଚାରି ତହିଁର ଯେ ଜବାବ ପାଇଛନ୍ତି ସେଥିରୁ ଜଣାଯାଏ ଯେ ସରକାରଙ୍କର ମତଗତି ଆଦୌ ଫେରିନାହିଁ । ସରକାର ତରଫରୁ ଭିନ୍‌ସେଣ୍ଟ ସାହେବ କହିଲେ କି ଭବିଷ୍ୟତରେ ଅଧିକ ଜୋରରେ ଯୁଦ୍ଧ କରିବାଲାଗି ଅସହଯୋଗୀମାନେ ବର୍ଦ୍ଦୋଲି ପ୍ରସ୍ତାବ ଧାର୍ଯ୍ୟ କରିଛନ୍ତି । ସରକାର ଭାରତୀୟ ସମସ୍ୟାର ସୁମୀମାଂସା ନ କଲେ ଭବିଷ୍ୟତରେ ଅସହଯୋଗୀମାନେ ଯେ ଆପଣା ରାସ୍ତା ଦେଖିବେ ଏବଂ ଆପଣାର ଶକ୍ତିମତେ ଶାନ୍ତିପୂର୍ଣ୍ଣ ଚଳାଇବେ , ଏହାତ ଗୋପ୍ୟ ଛପା କଥା ନୁହେଁ । ଦିଲ୍ଲୀଠାରେ ନିଖିଳ-ଭାରତ କଂଗ୍ରେସ କମିଟି ଏହାମଧ ପ୍ରକାଶ କରିଅଛନ୍ତି । ବର୍ଦ୍ଦୋଲି ପ୍ରସ୍ତାବଦ୍ୱାରା ସମୂହ ଭାବରେ ଆଇନଭଙ୍ଗ ପ୍ରସ୍ତାବ ଏକାବେଳକେ ଛାଡ଼ି ଦିଆଯାଇନାହିଁ । ଲୋକସାଧାରଣଙ୍କ ଇଚ୍ଛା ଓ ଅଭିପ୍ରାୟ ବିରୁଦ୍ଧରେ ସରକାର ଅବିଚାର କାର୍ଯ୍ୟ କଲେ ସେମାନେ ବାଧହୋଇ ଆଇନ ଅମାନ୍ୟ କରିବେ, ଏହା ପ୍ରଜାସାଧାରଣଙ୍କର କର୍ତ୍ତବ୍ୟ ଓ ଅଧିକାର ବୋଲି ନିର୍ଦ୍ଦିଷ୍ଟ ଓ ସ୍ପଷ୍ଟ ଭାବରେ ଦିଲ୍ଲୀ ନିର୍ଦ୍ଧାରଣରେ ବ୍ୟକ୍ତ କରି ଯାଇଅଛି । ଏବେ ସୁଦ୍ଧା ସମୟ ଅଛି । ଭାରତୀୟ ସମସ୍ୟାର ସୁବିଚାର କରିବାକୁ ସରକାରଙ୍କୁ ସୁବିଧା ଓ ଅବକାଶ ମିଳିଅଛି । ବଡ଼ଲାଟ ଲର୍ଡ଼ ରିଡ଼ିଂ ସାଲିସ ସଭା କରିବାକୁ କେତେ ଆଗ୍ରହ ଓ ହୃଦ୍‌ବେଗ ଦେଖାଉଥିଲେ । ତାହା ଯଦି ତାଙ୍କର ଆନ୍ତରିକ ଇଚ୍ଛାହୁଏ ତେବେ ବର୍ତ୍ତମାନ ମଧ କରିପାରନ୍ତି । ସେଥିରେ ଭାରତୀୟମାନଙ୍କର ଆପତ୍ତି ମେଣ୍ଟିବାର ବ୍ୟବସ୍ଥା ହେଲେ ସମୂହଭାବରେ ଆଇନଭଙ୍ଗର ଆବଶ୍ୟକ ହେବ ନାହିଁ । ମାତ୍ର ସରକାରଙ୍କ ମତଗତିରୁ ବୁଝାଯାଏ ଯେ ସେ ଅସହଯୋଗୀ-ମାନଙ୍କୁ ସବୁପ୍ରକାର କାର୍ଯ୍ୟ ଏକାବେଳକେ ବନ୍ଦ କରିବାକୁ ଚାହାନ୍ତି । ଅସହଯୋଗୀମାନେ ଆହୁରି ଛାଡ଼ିଦେଇ ନିରାଶ୍ରୟ ଓ ନିରୁଦ୍ୟମ ହୋଇ "ଦେହି ମେ ପଦପଲ୍ଲବ ମୁଦାରଂ" ବୋଲି ସରକାରଙ୍କୁ କେବେ କହିବେ, ଏହା ଯେବେ ବଡ଼ଲାଟ ବା ତାଙ୍କର ସଦସ୍ୟମାନେ ବିଚାରି ଥାନ୍ତି ତାହାହେଲେ ସେମାନେ ଭ୍ରମରେ ପଡ଼ିଛନ୍ତି ।

( 'ସମାଜ', ତା ୪ । ୩ । ୨୨)

---

# ଅସହଯୋଗ ସମ୍ବାଦ

ଗତ ୨୫ ତାରିଖ ଦିନ ଯୁବରାଜ ପଞ୍ଜାବର ରାଜଧାନୀ ଲାହୋରଠାରେ ପହଞ୍ଚିଲେ । ସେଦିନ ଲାହୋର ସହରରେ ପୂର୍ଣ୍ଣ ହରତାଳ ହୋଇଥିଲା ।

ମାର୍ଚ୍ଚ ୬ ତାରିଖ ଦିନ ସେ ପଞ୍ଜାବରୁ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ପେଶାବାରଠାରେ ଯାଇଁ ପହଞ୍ଚିଛନ୍ତି । ସେଠାର କର୍ତ୍ତାମାନେ ଯୁବରାଜଙ୍କର ଅଭ୍ୟର୍ଥନା ସକାଶେ ବହୁତ ସାଜସଜ୍ଜା କରୁଥିଲେ; ଲୋକେ ମଧ୍ୟ ଏଥିରେ ଉତ୍ସାହରେ ଯୋଗ ଦେବାର ଦେଖା ଯାଉଥିଲା । ଏଥିରେ ହରତାଳର ଆଶଙ୍କା ନ ଥିବାରୁ କର୍ତ୍ତୃପକ୍ଷମାନେ ଯୁବରାଜଙ୍କୁ ଦେଶୀଲୋକଙ୍କ ବଜାର ଓ ବସ୍ତି ଦେଇ ପଞ୍ଚାଆରରେ ଅଣାଇଲେ । କିନ୍ତୁ ଯୁବରାଜ ବସ୍ତି ଭିତରକୁ ପଶିଲାବେଳେ ହଠାତ୍ ଦେଖାଗଲା କି ଚାରିଆଡ଼େ ଦୋକାନ ବଜାର-ଗୁଡ଼ିକ ବନ୍ଦ ହୋଇ ପୂର୍ଣ୍ଣ ହରତାଳ ହୋଇଗଲାଣି । ଗାଡ଼ି ଘୋଡ଼ା ବା ଲୋକ ସମାଗମ କିଛି ନାହିଁ । କଲିକତା ବା ଏଲାହାବାଦ ପ୍ରଭୃତି ସହର ଅପେକ୍ଷା ଏଠା ହରତାଳ ଏପରି ଅଦ୍ଭୁତ ଭାବରେ ହୋଇଯିବାରୁ ସ୍ଥାନୀୟ କର୍ତ୍ତାମାନେ ବଡ଼ ଅପଦସ୍ଥ ଓ ଲଜ୍ଜିତ ହୋଇଛନ୍ତି । ଏଠାରେ କୌଣସି ପ୍ରକାର ଗୋଳମାଳ ବା ଶାନ୍ତିଭଙ୍ଗ ଘଟିନାହିଁ ।

× × ×

ଭାରତ ବ୍ୟବସ୍ଥାପକ ସଭାରେ ସରକାର ଏବେ ଏକ ନୂଆ ଆଇନ ପେଶ୍ କରିଛନ୍ତି । କୌଣସି ଲୋକ କୌଣସି ସରକାରୀ କର୍ମଚାରୀଙ୍କୁ ଚାକିରି ଛାଡ଼ିବାପାଇଁ ଶିଖାଇଲେ ବା ଜବରାନ କଲେ ଏ ଆଇନ ଅନୁସାରେ ଦଣ୍ଡ ପାଇବେ; ଦଣ୍ଡ ପରିମାଣ ଦୁଇବର୍ଷ ଜେଲଖାନା ବା ୨୦୦୦ ଟଙ୍କା ଜୋରିମାନା ବା ଉଭୟ । ଏ ଆଇନ ସରକାର ଅନେକ ପୁଲିସ ଓ ସୈନ୍ୟ ବିଭାଗର କର୍ମଚାରୀମାନେ ଚାକିରୀ ଛାଡ଼ୁଥିବାର ଦେଖି ଭୟରେ କରିଛନ୍ତି ।

× × ×

ଛାପାଖାନା ଆଇନ ଉଠିଯିବାପାଇଁ ବ୍ୟବସ୍ଥା ସଭାଦ୍ୱାରା ନିଯୁକ୍ତ କମିଟିର ଶେଷ ରିପୋର୍ଟ ମିଳିଅଛି । ଭାରତ ବ୍ୟବସ୍ଥାପକ ସଭାରେ ଏ ବିଷୟରେ ମଧ୍ୟ ବିଲ୍ ପେଶ୍ ହୋଇଲାଣି । ଶେଷଫଳ ଜଣାଯାଇ ନାହିଁ ।

× × ×

ଭାରତ ବ୍ୟବସ୍ଥାପକ ସଭାରେ ବେସରକାରୀ ସଭ୍ୟମାନେ ନିୟମିତ ରୂପେ ଯୋଗ ଦେଉନାହାନ୍ତି । ଯେ କେତେଜଣ ଯାଉଛନ୍ତି ସେଥିମଧ୍ୟରୁ ଅନେକ ଗୁଡ଼ିଏ ସବୁବେଳେ ସରକାରଙ୍କ କଥାରେ 'ହାଁଜି' ମାରନ୍ତି । ଏଣୁ ବେସରକାରୀ ସଭ୍ୟଙ୍କ ପକ୍ଷରୁ କୌଣସି ପ୍ରକାର ନିର୍ଦ୍ଧାରଣ ବା ପ୍ରସ୍ତାବ ହେଲେ ସେଥିର ସପକ୍ଷରେ ଯଥେଷ୍ଟ ଭୋଟ ନ ହେବାରୁ ତାହା ରଦ୍ଦ ହେଉଛି । ଡାକ୍ତର ଗୌର ଓଗେର କେତେକ ସଭ୍ୟ ସମସ୍ତ ବ୍ୟବସ୍ଥାପକ ମେମ୍ବରମାନଙ୍କୁ ପ୍ରଜା ସାଧାରଣ ଓ ଦେଶଲୋକଙ୍କ ଉପକାର ପାଇଁ ବଡ଼ଲାଟଙ୍କର ବ୍ୟବସ୍ଥା ସଭାରେ ଯୋଗ ଦେବାକୁ ପ୍ରାର୍ଥନା କରିଛନ୍ତି ।

× × ×

ଲାଲା ଲଜପତ ରାୟଙ୍କର ବିଚାର ଏପର୍ଯ୍ୟନ୍ତ ଶେଷ ହୋଇନାହିଁ । ଗଲା ୬ ତାରିଖ ଦିନ ଲାହୋରଠାରେ ଲାଲାଜୀଙ୍କର ବିଚାର ହେଉଥିଲା । ଫଉଜି ଆଇନର ୧୭ ଦଫା, ରାଜ ବିଦ୍ରୋହ ସଭା ଅଇନ ଓ ପିଙ୍ଗଲ କୋଡ଼ର '୧୭ ଦଫା ଅନୁସାରେ ତାଙ୍କୁ ଗିରଫଦାର କରାଯାଇଥିଲା । ଇତି ମଧ୍ୟରେ ପ୍ରମାଣ ନ ମିଳିବାରୁ ଫୌଜି ଆଇନର ୧୭ ଦଫା ସରକାର ଉଠାଇ ନେଇଛନ୍ତି । ଅନ୍ୟାନ୍ୟ ଦଫାରେ ଏ ପର୍ଯ୍ୟନ୍ତ ମଧ୍ୟ ପ୍ରମାଣ ମିଳୁନାହିଁ ।

× × ×

ପଣ୍ଡିତ ମୋତିଲାଲ ନେହେରୁଙ୍କର ପୁତ୍ର ପଣ୍ଡିତ ଜବାହାରଲାଲ ନେହେରୁ ବାରିଷ୍ଟର ଫୌଜି ଆଇନର ୧୭ ଦଫା ଅନୁସାରେ ୬ ମାସ ଜେଲ ପାଇଥିଲେ । ଏବେ ସେଠା ସରକାର ପଣ୍ଡିତ ଜବାହାରଲାଲ ଓ ଅନ୍ୟାନ୍ୟ ୬ ଜଣଙ୍କୁ ଖଲାସ କରି ଦେଇଛନ୍ତି । ପଣ୍ଡିତ ମୋତିଲାଲ ନେହେରୁଙ୍କର ଅପ୍ରେଲମାସରେ ଖଲାସ ହେବାର କଥା । ବନ୍ଦୀ ନେତାମାନେ ଖଲାସ ହେଲାବେଳେ ସହରର ବହୁ ସଂଖ୍ୟକ ଲୋକ ପଚ୍ଛିଆରରେ ସେମାନଙ୍କୁ ଅଭ୍ୟର୍ଥନା କରିଥିଲେ ।

× × ×

କଲିକତାର ପ୍ରଧାନ ଦୁଇ ଦୈନିକପତ୍ର "ଅମୃତ ବଜାର ପତ୍ରିକା" ଏବଂ "ସରଭାଣ୍ଟ" ନାମରେ ମାନହାନି ମକଦ୍ଦମା ଚାଲିଅଛି । ପତ୍ରିକାମାନଙ୍କର ପ୍ରକାଶକମାନେ ଓକିଲ ବାରିଷ୍ଟର ଦେଇ ମକଦ୍ଦମା ଲଢ଼ୁଛନ୍ତି ।

× × ×

ପଞ୍ଜାବର ଜମିଦାର ପତ୍ରିକାର ସମ୍ପାଦକ ଗିରଫଦାର ହୋଇଛନ୍ତି ।

× × ×

ବିଲାତର ରାଜନୈତିକ ଦଳ ମଧ୍ୟରେ ନାନାପ୍ରକାର ମତଭେଦ ଘଟିଅଛି । ମନ୍ତ୍ରୀ ଲଏଡ଼ ଜର୍ଜ ଆପଣା ପଦ ଇସ୍ତଫା ଦେବାର ଆଶଙ୍କା ଉପସ୍ଥିତ ହୋଇଅଛି ।

('ସମାଜ', ତା ୨୧ । ୩ । ୨୨)

———

# ଜାତୀୟ ପ୍ରେରଣା ଓ ମହାତ୍ମା ଗାନ୍ଧୀ

ଜାତିର ପତନବେଳେ ଭଗବାନ ମାନବକୁ ପ୍ରେରଣା ଦିଅନ୍ତି । ପରାଧୀନ ଭାରତରେ ଏହି ପ୍ରେରଣା ନାନା ଭାବରେ ପ୍ରାୟ ଷାଠିଏ ବର୍ଷ ହେଲା ଦେଖାଯାଉଅଛି । ୬୦-୫ ବର୍ଷ ତଳେ କେତେକ ଯୋଗ୍ୟ ଲୋକ ଜାତୀୟ ମହାସମିତି କରି ସରକାରଙ୍କୁ ଅଧିକାର ମାଗିବାକୁ ସଙ୍କଳ୍ପ କଲେ । ଅତି ଧୀନଲୋକଙ୍କୁ କେହି କେହି ମାଗିଲେବେଳେ ହେଳାରେ ପଇସାଏ ଅଧଲାଏ ଫୋପାଡ଼ି ଦିଅନ୍ତି । ସେହିପରି ଭାରତବାସୀ ମାଗିବାରେ କିଛି ଅବା ପାଇଥିବେ । ମାତ୍ର ଜାତୀୟଶକ୍ତି ଯେ ବଢ଼ୁଥିଲା, ସନ୍ଦେହ ନାହିଁ । ବଙ୍ଗର ଶକ୍ତି ହ୍ରାସ କରିବା ଆବଶ୍ୟକ ବିଗ୍ଚରି ଲର୍ଡ଼ କର୍ଜନ ବଙ୍ଗଳାକୁ ଦୁଇଫାଳ କରିଦେଲେ । ଫଳରେ ସମସ୍ତ ଶାସନତନ୍ତ୍ର ଥରେ ଚହଲିଗଲା । ତା'ପରେ ଜାତୀୟ ପ୍ରେରଣା 'ଦାଦା-ଭାଇ'ଙ୍କ ମୁଖରେ ୧୯୦୬ ରେ ସ୍ୱରାଜବାଣୀ । କଲିକତା କଂଗ୍ରେସରେ ଏହି ବାଣୀ ସେତେବେଳର ନରମଗରମ ଦୁଇଦଳଙ୍କୁ କିଛିକାଳପାଇଁ ଏକ କରିଦେଲା । ସମସ୍ତେ ମନେକଲେ ଏହି ଶବ୍ଦରେ ଜାତୀୟ ଆକାଂକ୍ଷାରୁ ପୂର୍ଣ୍ଣତା ପ୍ରକାଶ ପାଇଲା । ମାତ୍ର ପରବର୍ଷ ନରମଦଳ ଲୋକେ ଗରମପନ୍ଥୀଙ୍କ ଠାରୁ ଭିନ୍ନହୋଇ ପରଦା ପକାଇ ଜାତୀୟ ମହାସଭାକୁ ନୂଆ କରି ଗଢ଼ିଲେ । ୫।୭ ବର୍ଷ ଚଳିଲା, ପୁଣି କ ପ୍ରେରଣାରେ ସେହି ସ୍ୱରାଜ୍ୟ ମାନ୍ଦ୍ରାଜରୁ 'ହୋମରୁଲ' ନାମରେ ବାହାରିଲା । ସ୍ୱରାଜର ଅର୍ଥ ସେତେବେଳକୁ ବହୁତ ଭିନ ହୋଇଗଲାଣି । ସରକାର ଏ କେତେବର୍ଷ ମଧ୍ୟରେ ପୂର୍ବକାଳର ବଦାନ୍ୟ ସ୍ୱେଚ୍ଛାଚାରିତା ଛାଡ଼ି, ଶକ୍ତି ଦେଖାଇ, ଗୋଇନ୍ଦା ଲଗାଇ ଜାତୀୟ ଶକ୍ତି ଓ ବିକାଶ ଦମନ କରିବାର ଆରମ୍ଭ କଲେ ।

କହିପାରୁ, ସରକାରଙ୍କର ଏହା ଭୁଲ । କିନ୍ତୁ ପୃଥିବୀର ଇତିହାସ ଏହି ଭୁଲରେ ପୂର୍ଣ୍ଣ । ଯାହାର ଅଧିକାର ଆଉ ସେ ନାକ ଦଣ୍ଡିରେ ପ୍ରାଣଥିବାଯାଏ, ତାହା ଛାଡ଼ିବାକୁ ଚାହେଁ ନାହିଁ । ଏ ଦେଶରେ ମଧ୍ୟ ଶୂଦ୍ର ବେଦ ପଢ଼ିବାର ଦେଖି ବ୍ରାହ୍ମଣ ନ ସହି, ତା କାନରେ ସୀସା ଢାଳିବାର ବିଧି ଦେଇଛନ୍ତି । ରାମଚନ୍ଦ୍ର ମଧ୍ୟ ଶୂଦ୍ର ତପସ୍ୱୀକୁ ହାଣିଥିବାର ପୁରାଣ କହନ୍ତି ।

କିନ୍ତୁ ସବୁ ଚାପିବାର ଉଦ୍ୟମସତ୍ତ୍ୱେ ଭଗବତ୍ ପ୍ରେରଣାରେ ଦମନ ଅସମ୍ଭବ । ତାହାର ବିକାଶରେ ଦମନ ନାହିଁ । ଅତି ଅଳ୍ପଦିନ ମଧ୍ୟରେ ହୋମରୁଲ୍ କାହିଁ ପଛରେ

ପଡ଼ିଗଲାଣି । ଏବେ ସତ୍ୟାଗ୍ରହର 'ସ୍ୱରାଜ' ଏବଂ ତାର ମୂଳମନ୍ତ୍ର ସରକାରଙ୍କ ସଙ୍ଗେ ସମସ୍ତ ସମ୍ପର୍କ ତ୍ୟାଗ, ଏବଂ ସମସ୍ତ ଦଣ୍ଡ ଓ ଲାଞ୍ଛନା ସହ୍ୟକରି ନିଷ୍କାମ ଆତ୍ମସେବାର ସାଧନା ।

ଏ ପ୍ରେରଣାର କେନ୍ଦ୍ର ମହାତ୍ମା ଗାନ୍ଧୀ । ଗାନ୍ଧୀଙ୍କର ଏ ନୀତି ପ୍ରଚାରପରେ ଏବେ ଭାରତର ସବୁଶ୍ରେଣୀର ନେତା ଓ କର୍ମୀମାନଙ୍କ ପ୍ରାଣରେ ଏକ ନୂତନ ଚହଳ ପଡ଼ିଯାଇ-ଅଛି । ଉପସ୍ଥିତ କ୍ଷେତ୍ରରେ କେତେକ ବ୍ୟବସ୍ଥାପକ ସଭାର ସଦସ୍ୟ ଓ ଓକିଲ ଆତ୍ମଗ୍ଲାନିରେ ଜର୍ଜରିତ ଓ ଯୁବକମାନଙ୍କ ଉପର ଏବଂ ଛାତ୍ରସମାଜ ଉଦ୍‌ବେଳିତ । ଜାତିର ପ୍ରତ୍ୟେକ ଶିରା ପ୍ରଶିରାରେ ନୂତନ ଜୀବନର ସଞ୍ଚାର । ଦେଶର ଆମୂଳଚୂଳ ସ୍ପନ୍ଦନ ଓ ଶକ୍ତି, ସାଧୁତା ଓ ସହିଷ୍ଣୁତାର ଲୀଳା ।

ତଥାପି ଏ ପ୍ରେରଣାର ଶକ୍ତି ଅନେକଙ୍କ ପକ୍ଷରେ ଅବୋଧ୍ୟ ହେବାର କଥା । ପଞ୍ଜୁରୀରେ ଯେଉଁ ପକ୍ଷୀଥାଏ ସେ ଆକାଶର ମୁକ୍ତବାୟୁ ଗ୍ରହେ ନାହିଁ । ଗ୍ରହିଲେ ମଧ୍ୟ ସହିପାରେ ନାହିଁ । ପଞ୍ଜୁରୀ ଭିତରେ ଭଲକରି ଯଥା ସମୟରେ ଖାଇବାକୁ ପାଇଲେ, ସେ ନିଜକୁ ସ୍ୱାଧୀନ ମନେକରେ । ଆକାଶରେ ଉଡ଼ି କପରି ଅନ୍ୟ ପକ୍ଷୀଙ୍କ ସଙ୍ଗେ ସମାନ ହେବ, ତାହା ସେ କଳ୍ପନା କରିବ କାହୁଁ ? ଏହାକୁ ହିଁ ମହାତ୍ମାଗାନ୍ଧୀ Slave-Mentality ବା ଦାସୋଚିତ ମନର ଅବସ୍ଥା ବୋଲି କହିଅଛନ୍ତି । ମନର ଏ ଅବସ୍ଥାରୁ ବାହାରି ମୁକ୍ତ ସ୍ୱାଧୀନତାର କଥା କଳ୍ପନା କରିବା ଆମମାନଙ୍କ ପକ୍ଷରେ ଦୁଷ୍କର ।

ଗାନ୍ଧୀ ପ୍ରଥମେ ପାଠପଢ଼ୁଆ ଲୋକଙ୍କୁ ଲକ୍ଷ୍ୟକରି କହନ୍ତି, ସ୍କୁଲ କଚେରି ଓ ବ୍ୟବସ୍ଥାପକ ସଭା ଏହି ତିନୋଟି ଏ ଦାସତ୍ୱର ପ୍ରଧାନମୋହ । ଏ ତିନୋଟିକୁ ପ୍ରଥମେ ଛାଡ଼ିବାକୁ ହେବ । ତାପରେ ଜନ ସାଧାରଣଙ୍କ କଥା । ସଂସାରୀ ପକ୍ଷରେ ପୁତ୍ର ପରିବାର ସ୍ପୃହାଛାଡ଼ି, ସନ୍ନ୍ୟାସୀ ହେବା ଯେପରି କଠିନ, ଏ ତିନୋଟି ମୋହଛାଡ଼ି ସ୍ୱାଧୀନହେବା ସେହିପରି ଦୁଃସାଧ୍ୟ । ମହାତ୍ମାଜୀ ଯଥାର୍ଥ କହିଛନ୍ତି, ଏ ତିନୋଟି ମୋହ ଛାଡ଼ିବାମାତ୍ରେ, ସଙ୍ଗେ ସଙ୍ଗେ ଆମେ ସ୍ୱାଧୀନ ହେବା । ଏ ସ୍ୱାଧୀନତାର ଅର୍ଥ ବଡ ଗଭୀର । ଏ ସ୍ୱାଧୀନତାରେ ଇଂରେଜ ସରକାର ବା କୌଣସି ଶାସନର ସମ୍ପର୍କ ନାହିଁ । ଏ ସ୍ୱାଧୀନତା ନିଜର ଆୟତ୍ତ, ଏଥିରେ ମନୁଷ୍ୟ ଆତ୍ମଭୂ ଓ "ସ୍ୱରାଟ୍" । ଏ ସ୍ୱାଧୀନତା ନିରପେକ୍ଷ; ଏ ସ୍ୱାଧୀନତା ଆୟତ୍ତ କରି ପାରିଲେ ଯନ୍ତ୍ରଣା ଜେଲ, ଏପରିକି ପ୍ରାଣନାଶ ପର୍ଯ୍ୟନ୍ତ କେହି ପ୍ରାଣକୁ ପରାଧୀନ କରି ପାରିବେ ନାହିଁ । ଯନ୍ତ୍ରଣା ଜେଲ ପ୍ରାଣନାଶ ପ୍ରଭୃତିରେ ପରାଧୀନତା ନାହିଁ । ଏସବୁ ସ୍ୱାଧୀନ ତଥା ପରାଧୀନ ଦୁହିଁଙ୍କ ଭାଗ୍ୟରେ ଘଟେ । ପରାଧୀନତା ମନରେ, ମୋହରେ,

ବନ୍ଧନରେ, ବାଟରେ ବୁଲିଗଲାବେଳେ କୁକୁର କାମୁଡ଼ିଲେ ମନୁଷ୍ୟ ନିଜକୁ ପରାଧୀନ ବିଚାରେ ନାହିଁ । କିନ୍ତୁ ନିଜର ମତଗ୍ରୁଡ଼ି ଅନ୍ୟ ଆଦେଶରେ ବାଧହୋଇ କାର୍ଯ୍ୟ କରିବାହିଁ ପରାଧୀନତା । ନେଉଳ ପଞ୍ଜୁରିରେ ରହି ଦୁଧଭାତ ଖାଇଲେ ସ୍ୱାଧୀନ ହୁଏ ନାହିଁ । ବଣରେ ନିରାହାର ରହିଲେ ମଧ୍ୟ ସେ ସ୍ୱାଧୀନ । ପରାଧୀନତାର ସ୍ୱାଚ୍ଛନ୍ଦ୍ୟ ନୀଚ, ସ୍ୱାଧୀନତାର ଦୈନ୍ୟ ଗର୍ବିତ ।

ଅନେକଠାରୁ ଶୁଣାଯାଏ ଆଜି ସ୍କୁଲ ବା କଚେରି ଛାଡ଼ିଦେଲେ ଲୋକେ କରିବେ କଅଣ ? ଏହିଠାରେ ମୋହ । ଦେଶର ୩୦ କୋଟି ଲୋକ ଓକିଲାତି କିରାଣିଗିରି କରି ଖାଆନ୍ତି ନାହିଁ । ସେମାନଙ୍କ ସଙ୍ଗେ ଏକ ହେବାକୁ ଆମ୍ଭ ପ୍ରାଣ ସହୁ ନାହିଁ । କିରାଣିଗିରି ଛଡ଼ା ଆମ ଶିକ୍ଷାର ଆଉ ଉଦ୍ଦେଶ୍ୟ ନାହିଁ । ଏହା ଦାସତ୍ୱର ଫଳ, ପରାଧୀନତାର କ୍ଷୋଭ । ଜାତୀୟ ଶିକ୍ଷା ବୋଲି ଯାହା ଯେତେ ଲୋକକଳ୍ପନା ସ୍କୁଲକଲେଜ ଛାଡ଼ିଦେଲି ବାସିଦିନ ସେ ଶିକ୍ଷାପାଇଁ କ୍ଷେତ୍ର ଯେ ମନକୁ ଫିଟିଯିବ, ଏକଥା ବୁଝିବା ଦୁଷ୍କର ହେଲେହେଁ ଉଚିତ । ସେଦିନ ସ୍କୁଲ ନ ଥିଲେ ମଧ୍ୟ ପାଠପଢ଼ୁଆ ଲୋକେ ମନକୁ ଗୃହ ଶିଖିବେ, ବୋଝ ବୋହିବାଠାରୁ ପାଇଖାନା ସଫା କରିବା ଯାଏ କୌଣସି କାର୍ଯ୍ୟକୁ ନୀଚ ବିଚାରିବେ ନାହିଁ ।

ସ୍ୱାଧୀନତା ଗୋଟିଏ ମନର ଭାବ । ସେ ଭାବ ଥରେ ଆସିଲେ 'କଣ କରିବି' ଏ ପ୍ରଶ୍ନ ଉଠିବ ନାହିଁ । ଏ ସ୍ୱାଧୀନତା ନିଜ ଭିତରେ; ଏହାକୁ ପାଇବାକୁ ଅସ୍ତ୍ରଶସ୍ତ୍ରର ଲୋଡ଼ାନାହିଁ ପରର କୃପା ଦରକାର ନାହିଁ, ଏହା ଆସିଲାବେଳେ ଜଗତରେ କୌଣସି ଭୂତଶକ୍ତିର ବଳ ନାହିଁ, ଏହାକୁ ବନ୍ଦ କରିପାରେ ।

ମହାତ୍ମାଜୀଙ୍କର ଏହି ପ୍ରେରଣାହିଁ ଆର୍ଯ୍ୟର ସନାତନ ନିଷ୍କାମ କର୍ମସେବା । ଭାରତବାସୀର ଏହା ପାରମ୍ପରିକ ଆଦର୍ଶ । କିନ୍ତୁ ଦାସତ୍ୱରେ ରହି ନେଉଳ ଅନ୍ଧାରଘର ଗୁଡ଼ିକଣାକୁ ବାରମ୍ବାର ଫେରିଲାପରି ଆମ୍ଭ ମନ ବାରମ୍ବାର ସେହି 'କଅଣ କରିବୁ'କୁ ଫେରୁଅଛୁ । ଦାସତ୍ୱରେ ଯାହାଥରେ ଧରିଛୁ ତାହା ଛାଡ଼ିବାର ଉପାୟ ନାହିଁ । ସର୍ବଦା ଫଳାକାଂକ୍ଷା, ସେ ଆକାଂକ୍ଷାରେ ପୁଣି ଏକ ଓକିଲାତି, କିରାଣିଗିରି ଛଡ଼ା ଆଉ ପନ୍ଥା ନାହିଁ । ବୁଝିପାରୁ ନାହିଁ ଯେ ଏହି ମୋହ ଦାସତ୍ୱର ଏକମାତ୍ର ପାଶ, ଏହା କଦାପି ବୁଦ୍ଧିର ପୁରୋଦୃଷ୍ଟି ନୁହେଁ ।

କର୍ମରେ ମନୁଷ୍ୟର ଅଧିକାର ଫଳ ଭଗବାନଙ୍କ ହାତରେ । କର୍ମର ସାଧାରଣ ଆଦର୍ଶ ମୁକ୍ତି ସ୍ୱାଧୀନତା । ଏହି ସ୍ୱାଧୀନତା ଅନୁଭବ କରିବାପାଇଁ ଦାସତ୍ୱ ସୁଲଭ ମନୋଭାବ

ଗ୍ରନ୍ଥ ଏହ ମୁକ୍ତ ତାର ସାଧନାରେ ମନୁଷ୍ୟତ୍ୱ ଅର୍ଜିବାପାଇଁ ବିଶ୍ୱକର୍ତ୍ତାଙ୍କର ଭାରତବାସୀ ପ୍ରତି ପ୍ରେରଣା ଆସିଅଛୁ । ଜୀବନର ଏହ ମହାପ୍ରେରଣାରେ ସାଧନାର ଏହ ପ୍ରଶସ୍ତ ବିଶାଳ କ୍ଷେତ୍ରରେ ବିଶ୍ୱମୈତ୍ରୀ ଲୋକପ୍ରୀତିରେ ଜୈନଧ୍ୱଜା ଉଡ଼ୁଅଛୁ । ପରାଧୀନତାର ମୋହରେ ଅନ୍ଧହୋଇ ସେ ଜୈନ ପ୍ରେରଣା ଦେଖି ନ ପାରିବା ବିଚିତ୍ର ନୁହେ । ମାତ୍ର ପ୍ରାଣ ବିସ୍ତୀର୍ଣ୍ଣ କରିବାକୁ ହେବ, ସାଧନାରେ ସିଦ୍ଧିଲାଭ କରିବାକୁ ହେବ । ମୈତ୍ରୀର ସାଧନାରେ ସିଦ୍ଧିଲାଭ କରିବାକୁ ମହାପନ୍ଥା ଆର୍ଯ୍ୟ କେବଳ ଅନୁଭବ କରିପାରେ । ପୃଥିବୀ ଆର୍ଯ୍ୟଠାରୁ ଏ ଶିକ୍ଷା ଲଭକରି କୃତାର୍ଥ ହେବ । ଜନସମାଜ ପ୍ରତି ଆର୍ଯ୍ୟ ଜୀବନର କର୍ତ୍ତବ୍ୟ ପୂର୍ଣ୍ଣ ହେବ ।

('ସମାଜ' ତା ୧୭ । ୩ । ୨୨)

---

# ଉତ୍କଳର ଜନସାଧାରଣଙ୍କ ପ୍ରତି

ମହାତ୍ମାଗାନ୍ଧି ଏତେ ଦିନେ ଗିରଫଦାର ହେଲେ । ଏଥିରେ ଆଶ୍ଚର୍ଯ୍ୟର କଥା ନାହିଁ । କାରାବାସ ତାଙ୍କ ପକ୍ଷେ ନୂଆ ନୁହେଁ । ଦକ୍ଷିଣ-ଆଫ୍ରିକାରେ ଭାରତୀୟମାନଙ୍କ ସ୍ୱତ୍ୱ ଓ ଅଧିକାର ରକ୍ଷା କରିବାକୁ ସତ୍ୟାଗ୍ରହ ସଂଗ୍ରାମ କଲାବେଳେ ସେ ତିନି ଥର ଜେଲ ଯାଇ ଥିଲେ । ଜେଲ ଯିବାରେ ତାଙ୍କର ଜୟ । ଏଥର ଅସହଯୋଗ ଆନ୍ଦୋଳନରେ ସେ ଆହୁରି ଆଗରୁ ଜେଲ ଯିବେ ବୋଲି ମନେ କରିଥିଲେ । ତାଙ୍କ ଗିରଫଦାରି ଓ କାରାବାସ ଅସହଯୋଗ ଆନ୍ଦୋଳନ ଫଳସିଦ୍ଧିର ଲକ୍ଷଣ । ପୃଥିବୀର ସ୍ୱାଧୀନତା ସଂଗ୍ରାମରେ ପ୍ରଧାନ ପ୍ରଧାନ ଜନନାୟକ ଓ ମହାପୁରୁଷମାନେ ଏହିପରି ଜେଲ ଯାଇଛନ୍ତି, ଦାରୁଣ ଦୁଃଖ ଦୁର୍ବିପାକ ସହିଛନ୍ତି । ଇତିହାସ ଓ ପୁରାଣରେ ଯୁଗେ ଯୁଗେ ଏହା ଘଟିଅଛି । ମହାପୁରୁଷମାନେ ନିଜେ କଷ୍ଟ ଯନ୍ତ୍ରଣା ଭୋଗି ନିଜର ଜୀବନ ପର୍ଯ୍ୟନ୍ତ ଦେଇ ଜଗତରେ ସତ୍ୟ ଓ ସ୍ୱାଧୀନତାର ଜୟପତାକା କାଳେ କାଳେ ଉଡ଼ାଇଛନ୍ତି । ତେଣୁ ମହାତ୍ମାଗାନ୍ଧିଙ୍କ ଗିରଫଦାରରେ କାହାରି ବିଚଳିତ ହେବା ଉଚିତ ନୁହେଁ । ମହାତ୍ମାଙ୍କର ଭୟ ଯେ ତାଙ୍କ ଗିରଫଦାର ହେବାପରେ ଲୋକେ ଉତ୍ତେଜିତ ହୋଇ କୌଣସି କୌଣସିଠାରେ ଶାନ୍ତିଭଙ୍ଗ ଘଟାଇପାରନ୍ତି । ସେଥିଲାଗି ସେ ସମସ୍ତଙ୍କୁ ବିଶେଷ ଭାବରେ ବାରମ୍ବାର ସାବଧାନ କରି ଦେଇ ଯାଇଅଛନ୍ତି । ଶାନ୍ତିଭଙ୍ଗ ଅସହଯୋଗ ପଥରେ ଏଥିମଧ୍ୟରେ ବହୁତ ବାଧା ଦେଇ ଅଛି । ବମ୍ବେଇର ଗୋଳମାଳ ଓ ଚଉରି ଚଉରାର ଉତ୍ପାତ ଘଟି ନ ଥିଲେ ଅସହଯୋଗ କାର୍ଯ୍ୟ ଆଜି ଅନେକଦୂର ଆଗେଇଥାନ୍ତା । ବର୍ଦ୍ଦୋଲି ଆନ୍ଦୋଳନରେ ସମୂହଭାବରେ ମର୍ଯ୍ୟାଦାର ସହିତ ଆଇନ ଲଙ୍ଘନ କାର୍ଯ୍ୟ କରାଯାଇ ଯାହାହେବାର ଏଥିମଧ୍ୟରେ ହୋଇ ସାରନ୍ତାଣି । ଅଶାନ୍ତି ଘଟିଲେ ଆମ୍ଭମାନଙ୍କର ଶାନ୍ତି ଯୁଦ୍ଧରେ ଜୟ ଅସମ୍ଭବ । ମହାତ୍ମାଙ୍କ ଗିରଫଦାରି ପରେ କୌଣସିଠାରେ ଲେଶ ଶାନ୍ତିଭଙ୍ଗ ହୋଇ ନାହିଁ ବୋଲି ଶୁଣିଲେ ସେ ଜେଲଖାନାରେ ପରମ ଶାନ୍ତିରେ ବିଶ୍ରାମ କରିବେ । ବଡ଼ ଆଶା ଓ ଆଶ୍ୱାସନାର କଥା ଯେ ଏପର୍ଯ୍ୟନ୍ତ ଭାରତରେ କୌଣସିଠାରେ ଅଶାନ୍ତି ଉତ୍ପାତର ସୂଚନା ଏପର୍ଯ୍ୟନ୍ତ ହୋଇନାହିଁ । ମୁଁ ଦିନେ ମନେ କରିଥିଲି ଯେ ଓଡ଼ିଶାରେ କଦାପି ଶାନ୍ତିଭଙ୍ଗର ଆଶଙ୍କା ନାହିଁ । ମାତ୍ର ଏଥିମଧ୍ୟରେ କୌଣସି କୌଣସିଠାରେ ଓଡ଼ିଶା ଲୋକେ ଯେପରି ଭାବ ଦେଖାଇଅଛନ୍ତି, ସେଥିରେ ଶାନ୍ତିଭଙ୍ଗର ଭୟ ଏକାବେଳକେ ନାହିଁ ବୋଲି କୁହାଯାଇ ନ ପାରେ । ଓଡ଼ିଶାର କେତେକ ଯାଗାରେ ସମୟେ ସମୟେ ହାଟଲୁଟି ହେଉଥିବାର ଖବର ମିଳେ ।

ପୁରୀ ଜିଲାର ତ୍ରିବେଣୀ ଯାତ୍ରାରେ ପୋଲିସ ପ୍ରତି ଲୋକଙ୍କର ଯେପରି ବ୍ୟବହାର ହେଲା ତାହା ଭବିଷ୍ୟତରେ ଶାନ୍ତଭାବରେ କାର୍ଯ୍ୟ ଚଳିବା ପକ୍ଷେ ମୋ ମନରେ ବଡ଼ ଭୟ ଓ ଚିନ୍ତା ଜନ୍ମାଇଅଛି । ଅସହଯୋଗୀମାନେ ଆଦ୍ୟରୁ ଶାନ୍ତି ଓ ଅହିଂସା ମନ୍ତ୍ର ପ୍ରଚାରକରି ଆସୁଛନ୍ତି । ଏହା ଆମ୍ଭମାନଙ୍କର ଉପସ୍ଥିତ ଆନ୍ଦୋଳନର ମୂଳ ବୀଜ । ଏହାକୁ ଛାଡ଼ିଲେ ସମୁଦାୟ ଉଦ୍ୟମ ବୃଥା ହେବ । ଅମୃତ ହାଣ୍ଡିରେ ବିଷ କଣିକାଏ ପରି ସାମାନ୍ୟ ଅଶାନ୍ତି ବା ଉତ୍ପାତ କୌଣସି ଏକ ସ୍ଥାନରେ ଘଟିଲେ ସମଗ୍ର ଦେଶର ବିରାଟ ଆୟୋଜନ ମୁହୂର୍ତ୍ତିକ ମଧ୍ୟରେ ପଣ୍ଡ ହୋଇଯିବ । କ୍ରୋଧ ପରମ ଶତ୍ରୁ, କ୍ରୋଧକୁ ଦମନ କରି ନପାରିଲେ ଆମ୍ଭମାନଙ୍କର ନିଜ ହୃଦୟରେ ସ୍ୱରାଜ୍ୟ ହୋଇ ପାରିବ ନାହିଁ । ଭିତରେ ସ୍ୱରାଜ୍ୟ ନହେଲେ ବାହାରେ ହେବ କାହୁଁ ? ଯେଉଁମାନେ ହଠାତ୍ ରାଗିଯାଇ ଶାନ୍ତିଭଙ୍ଗରେ ମାତିଯାଆନ୍ତି ସେମାନେ ଏକ ହିସାବରେ ଭୀରୁ; ସେମାନଙ୍କର ସହିବା ଶକ୍ତି ନାହିଁ, ହୃଦୟରେ ଧୈର୍ଯ୍ୟ ନାହିଁ ଅହିଂସା ଧର୍ମରେ ବିଶ୍ୱାସ ନାହିଁ; ତେଣୁ ସେମାନେ ସ୍ୱରାଜ ପାଇବାର ଉପଯୁକ୍ତ ନୁହନ୍ତି । ଖାଲି ଯେ ଲୋକେ ମାତିଯାଇ ଶାନ୍ତିଭଙ୍ଗ କରିବା ଏକମାତ୍ର ଭୟ ତାହା ନୁହେ, ଅନେକ ମହାତ୍ମାଙ୍କ ଗିରଫଦାରୀରେ ଦବିଯାଇ ପାରନ୍ତି । ଓଡ଼ିଶାରେ ଏ ଆଶଙ୍କା ବେଶୀ । ଓଡ଼ିଶାର ଅଧିକାଂଶ ଜନସାଧାରଣ ସବୁବେଳେ ଡରିମରି ରହିଛନ୍ତି । ଗାଁର ଚୌକିଦାର, ଦଫାଦାର, ପଞ୍ଚାୟତକୁ ସେମାନଙ୍କର ଡର, ଜମିଦାର ମକଦ୍ଦମଙ୍କୁ ଡର, ଏହା ବାଦ ପୋଲିସ, କାନଗୋଇ ଓ ଅନ୍ୟାନ୍ୟ ବାବୁଭାୟାଙ୍କ ଡର । ମୋଟକଥା ଓଡ଼ିଶାର ପ୍ରଜା-ସାଧାରଣ ଏହିପରି ସବୁବେଳେ ସମସ୍ତଙ୍କ ପାଖେ ଶଙ୍କି ଶଙ୍କି ଜଡ଼ସଡ଼ ହୋଇଗଲେଣି । ମୁଁ ଜାଣେ ମହାତ୍ମାଗାନ୍ଧିଙ୍କ ପ୍ରତି ଉତ୍କଳବାସୀଙ୍କର ଭକ୍ତି ଶ୍ରଦ୍ଧା ଓ ବିଶ୍ୱାସ କମ ନୁହେଁ । ସେମାନେ ଅସହଯୋଗର କେତକ କାର୍ଯ୍ୟ ଭିନ୍ନ ଭିନ୍ନ ସ୍ଥାନରେ କରୁଅଛନ୍ତି । ତଥାପି କେହି ପଞ୍ଚାୟତ ଆଦି କରୁଥିଲେ ସୁଦ୍ଧା ଭୟରେ ପୋଲିସ ଆଗେ ସ୍ୱୀକାର କରିବାକୁ ସାହସ କରିନାହାନ୍ତି । ଯେଉଁମାନଙ୍କର ବୁଥାରେ ଏତେ ଡ଼ର ସେମାନେ ସ୍ୱରାଜ୍ୟ ପାଇବାର ଉପଯୁକ୍ତ ନୁହନ୍ତି । ଶାସ୍ତ୍ର କହିଛନ୍ତି "ବୀରଭୋଗ୍ୟା ବସୁନ୍ଧରା" । ଯେ କେବଳ ଅନ୍ୟକୁ ମାରି ଧରି ଜବଦ୍ କରିପାରେ ସେ ବୀର ନୁହେଁ । ଯେ ସତ୍ୟ ଓ ଧର୍ମପଥରେ ଚାଲି କୌଣସି ବିପଦ ନ ଗଣେ, ମୁଣ୍ଡ ଯାଉ ବା ରହୁ ପଛକେ ଯେ ଯଥାର୍ଥ ନ୍ୟାୟରୁ ତିଳେ ବିଚଳିତ ହୁଏନାହିଁ, ଆପଣାର ହକ ଓ ଅଧିକାର ଦାବୀ କରିବାରେ ଯେ ଅନ୍ୟପାଖରେ ବିରାଡ଼ି କୁକୁର ପରି ଲାଙ୍ଗୁଡ଼ ନ ଗୁଞ୍ଜି ସିଂହପରି ଛିଡ଼ାହୁଏ ସେହି ଏକା ପ୍ରକୃତ ବୀର । ଏହିପରି ବୀରତ୍ୱ ଏକା ମଣିଷପଣିଆ । ଓଡ଼ିଆ ଲୋକେ ଏହିପରି ବୀରତ୍ୱ ନ ଦେଖାଇବାଯାଏ ମନୁଷ୍ୟ ତଳେ ଗଣତିରେ ଆସିବେ ନାହିଁ । ସୁଖର କଥା ଓଡ଼ିଆ ଲୋକଙ୍କ ହୃଦୟରେ ଅସହଯୋଗ

ଆନ୍ଦୋଳନ ଫଳରେ ଟିକିଏ ନୂତନ ଭାବ ଓ ତେଜ ଦେଖା ଦେଇଅଛି । ମହାତ୍ମାଗାନ୍ଧି ଗିରଫଦାର ହେବାରେ ଅସହଯୋଗ ଆନ୍ଦୋଳନ ଭାଙ୍ଗିଯିବ ବୋଲି ଅନ୍ୟାନ୍ୟ ପ୍ରଦେଶର ଲୋକେ ଆଦୌ ବିଚାରୁ ନାହାନ୍ତି । ବରଂ ସେମାନେ ଅଧିକ ଉତ୍ସାହ ଓ ତେଜରେ କାମ ଆରମ୍ଭ କରିଦେଲେଣି । ମୋର ଆଶା, ଉତ୍କଳବାସୀ ମଧ୍ୟ ସେହିପରି କରିବେ । ସ୍ୱରାଜ୍ୟ ତ ଆମ୍ଭମାନଙ୍କର ଜନ୍ମ ଅଧିକାର । ଅସହଯୋଗ ତାହା ପାଇବାର ପଥ । ମହାତ୍ମାଗାନ୍ଧି ଦେଶବାସୀଙ୍କି ସିଧା ସଡ଼କ ଉପରେ ଛାଡ଼ି ଦେଇଛନ୍ତି । ସମ୍ମୁଖରେ ସ୍ୱରାଜ ନୀଳଚକ୍ର ପତାକା ଉଡ଼ୁଛି । ଏହି ରାସ୍ତାରେ ଗଲେ ସିଧା ସ୍ୱରାଜ୍ୟ ସିଂହଦ୍ୱାରେ ପହଞ୍ଚିବାକୁ ହେବ । ବାଟ ହୁଡିବାର ଭୟ ନାହିଁ । ଆମ୍ଭମାନଙ୍କୁ ସେହି ରାସ୍ତାଧରି ଚାଲିବାକୁ ହେବ । ଭୟ ନାହିଁ ବା ପଛଘୁଞ୍ଚା ଦେବାର ଦରକାର ନାହିଁ । ଯେଉଁମାନେ ମହାତ୍ମାଙ୍କୁ ଅବତାର ବୋଲି ବିଶ୍ୱାସ କରନ୍ତି ମହାତ୍ମାଙ୍କ ଗିରଫଦାରିରେ ସେମାନଙ୍କ ମନରେ ସନ୍ଦେହ ଓ ଅବିଶ୍ୱାସ ଆସିପାରେ । ମହାତ୍ମା ନିଜେ କହୁଛନ୍ତି ସେ ଅବତାର ନୁହନ୍ତି, ସେ ଦେଶର ସେବକ ଏବଂ ଭଗବାନଙ୍କର ସେବକ । ତାଙ୍କର ଇଚ୍ଛା ପ୍ରତ୍ୟେକ ଭାରତବାସୀ ଦେଶର ଓ ଭଗବାନଙ୍କର ସେବକ ହୁଅନ୍ତୁ; ସତ୍ୟ ଓ ସ୍ୱାଧୀନତା ନିମନ୍ତେ ଶାନ୍ତି ଓ ଅହିଂସା ଧର୍ମ ଗ୍ରହଣ କରି ଜୀବନ ଉତ୍ସର୍ଗ କରନ୍ତୁ । ଏଥିରେ ହିଁ ସ୍ୱରାଜ ସିଦ୍ଧି ହେବ । ଅଛୁଆଁ ଜାତିଙ୍କ ମଧ୍ୟରେ ଛୁଆଁ ଛୁଇଁ ଉଠାଇବା ଓ ଖଦଡ଼ ପ୍ରଚାର କରିବାରେ ସ୍ୱରାଜ୍ୟ ମିଳିବ । ଜେଲଖାନାରେ ରହି ଏହି ଉପଦେଶ ମହାତ୍ମାଜୀ ଦେଶବାସୀଙ୍କଠାକୁ ବାରମ୍ବାର ପଠାଉଛନ୍ତି । ଏ ଦୁଇଟି କାର୍ଯ୍ୟରେ ଭାରତର ଅନ୍ୟାନ୍ୟ ପ୍ରଦେଶ ଲୋକଙ୍କମଧ୍ୟରେ ଉତ୍କଳବାସୀ ଆଗେ ବଢ଼ି ଚାଲିବା ଆବଶ୍ୟକ । ଉତ୍କଳୀୟମାନଙ୍କ ପୂର୍ବପୁରୁଷମାନେ ପବିତ୍ର ପୁରୀଧାମରେ ବହୁ ପୂର୍ବରୁ ଏହି ସ୍ୱରାଜ୍ୟ ପନ୍ଥା ଦେଖାଇ ଅଛନ୍ତି । ଅଛୁଆଁ ଜାତିଭେଦ ନୀଳାଚଳ ଧାମରେ ଲୋପ ପାଇଅଛି । ଆଜି ସେହି ଦୀକ୍ଷା ଗ୍ରାମେ ଗ୍ରାମେ ପ୍ରଚାର କରିବାକୁ ହେବ । ଘରେ ଘରେ ଅରଟ ଚଳାଇ ଦେଶୀୟ ଲୁଗାରେ ଆପଣାର ଲଜ୍ଜା ନିବାରଣ କରିବାକୁ ହେବ । ଏହାଛଡ଼ା ପଞ୍ଚାୟତ, ନିଶାନିବାରଣ, ଜାତୀୟ ବିଦ୍ୟାଳୟ, ହିନ୍ଦୁ ମୁସଲମାନ ଏକତା ଆଦି କଂଗ୍ରେସ ଯେ ସବୁ କାର୍ଯ୍ୟ ନିର୍ଦ୍ଦେଶ କରିଛନ୍ତି ତାହା ଯଥାଶକ୍ତି ଗ୍ରାମ ଓ ସହରରେ ପ୍ରଚାର କରିବାକୁ ହେବ । ଏଥିରେ ହିଁ ଆମ୍ଭମାନଙ୍କର ମହାତ୍ମାଗାନ୍ଧିଙ୍କ ପ୍ରତି ଭକ୍ତି ଓ ମମତା ପ୍ରକାଶ ପାଇବ । ମୁଁ ଆଶାକରେ ଉତ୍କଳବାସୀ ନିର୍ଭୀକ ଭାବରେ କାର୍ଯ୍ୟପଥରେ ଚାଲିବେ । କର୍ତ୍ତବ୍ୟରୁ କଦାପି ବିମୁଖ ହେବେ ନାହିଁ ।

('ସମାଜ' ତା ୧୮ । ୩ । ୨୨ ।

———

# ମହାତ୍ମାଗାନ୍ଧି ଗିରଫ

ମହାତ୍ମାଗାନ୍ଧଙ୍କର ଜେଲ୍ ହେବାପରେ କେହି କେହି ଭାବୁଥିବେ ଅସହଯୋଗ ଆନ୍ଦୋଳନ ଦବିଯିବ ? ଭାରତବର୍ଷର ଯେଉଁଦଳ ଲୋକେ ସରକାରଙ୍କ ସଙ୍ଗେ ସହଯୋଗ କରୁଛନ୍ତି ସେମାନେ ହୁଏତ ବିଚାରୁଥିବେ ଯେ ଏ ଆନ୍ଦୋଳନ ଏକାବେଳକେ ଗଲା । ସରକାର ଅବଶ୍ୟ ସେହି ମତଲବରେ ଗାନ୍ଧିଙ୍କି ଗିରଫଦାର କରିଛନ୍ତି । ହଁ, ଏଥିରେ ଏ ଆନ୍ଦୋଳନ ହଠାତ୍ ଟିକିଏ ଦବି ଯାଇପାରେ । ମାତ୍ର ଏକାବେଳକେ କଦାପି ଲୋପ ପାଇବ ନାହିଁ । କୌଣସି ଜାତିର ସ୍ୱାଧୀନତା ନିମନ୍ତେ ଜଗତରେ ଏହିପରି ଯେତେ ଆନ୍ଦୋଳନ ହୋଇଛି ତାହା ଉପରେ ବହୁ ଆକ୍ରମଣ ଉତ୍ପାତ ହୋଇଥିଲେ ସୁଦ୍ଧା ତାହା ଏକାବେଳକେ କଦାପି ଲଭି ଯାଇ ନାହିଁ । ଅସହଯୋଗ ଆନ୍ଦୋଳନ ଭାରତବାସୀର ଧର୍ମଯୁଦ୍ଧ । କାହାରିପ୍ରତି ହିଂସା ବିଦ୍ୱେଷରୁ ଏହା ଉତ୍ପନ୍ନ ହୋଇନାହିଁ । ପୃଥିବୀର ଅନ୍ୟାନ୍ୟ ଜାତି ଯାହା ପାଇଛନ୍ତି ଭାରତ ତାହା ହରାଇଅଛି ଏବଂ ଯାହା ଆପଣାର ଯାହା ନ୍ୟାଯ୍ୟ ଅଧିକାର ବୋଲି ସେ ବିଶ୍ୱାସ କରେ, ଯାହା ପ୍ରତ୍ୟେକ ଜାତିର ନୁହେଁ ପ୍ରତ୍ୟେକ ବ୍ୟକ୍ତିର ସୁଦ୍ଧା ସହଜ ସ୍ୱତ୍ୱ ତାହା ପାଇବା ନିମନ୍ତେ ଭାରତବାସୀ ଆଜି ବ୍ୟାକୁଳ । ତାକୁ ସ୍ୱରାଜ କୁହ, ସ୍ୱରୂପ ନିର୍ଣ୍ଣୟ (Self determination) କହ ବା ସ୍ୱାୟତ୍ତଶାସନ (Self-Government) କହ, ଭାରତ ପ୍ରାଣର ଏହି ବ୍ୟାକୁଳତା ଅସହଯୋଗ ଆନ୍ଦୋଳନ ଆକାରରେ ପ୍ରକାଶ ପାଇଅଛି । ଅସହଯୋଗ ଆନ୍ଦୋଳନର ଲୋପ ବୋଇଲେ ଭାରତ ଜାତୀୟ ଜୀବନର ବିନାଶ । ମୋଟକଥା ଭାରତ ଜାତିର ଆକାଂକ୍ଷା ପୂର୍ଣ୍ଣ ନ ହେବା ଯାଏ ଉପସ୍ଥିତ ଆନ୍ଦୋଳନ ବନ୍ଦ ହେବନାହିଁ । ସ୍ୱରାଜ୍ୟ ସିଦ୍ଧି ନ ହେଲେ ଭାରତର ଜାତୀୟ ଆକାଂକ୍ଷା ପୂର୍ଣ୍ଣ ହେବନାହିଁ । ସୁତରାଂ ସ୍ୱରାଜ୍ୟ ନ ମିଳିବାଯାଏ ଅସହଯୋଗ ଆନ୍ଦୋଳନ ଚାଲିଥିବ । ଶାନ୍ତିପୂର୍ଣ୍ଣ ଅସହଯୋଗ ଛଡ଼ା ଭାରତବାସୀ ଟଙ୍କେ ମୁକ୍ତିର ଅନ୍ୟ ପନ୍ଥା ନାହିଁ । ମହାତ୍ମାଗାନ୍ଧି ଛ ବର୍ଷ ସକାଶେ ଜେଲ ଗଲେ; ମାତ୍ର ସେ ଆଶା ଛାଡ଼ି ନାହାନ୍ତି । ବରଂ ତାଙ୍କ ଜେଲ ଯିବାଦ୍ୱାରା ଆନ୍ଦୋଳନର କାର୍ଯ୍ୟ କ୍ଷିପ୍ରଗତିରେ ଚାଲିବ ବୋଲି ତାଙ୍କର ବିଶ୍ୱାସ । ସେ ଜେଲରୁ ଦେଶବାସୀଙ୍କଠାକୁ ଏହି ମର୍ମରେ ସନ୍ଦେଶ ପଠାଇଛନ୍ତି ଏବଂ ଜେଲ ଘରୁ ଦେଶବାସୀଙ୍କ ଆଡ଼କୁ ଚାହିଁ ରହିଛନ୍ତି । ଗାନ୍ଧୀ ଯଥାର୍ଥରେ ମହାତ୍ମା; ସେ ଆତ୍ମାର ବଳରେ ବିଶ୍ୱାସ କରନ୍ତି । ଏପର୍ଯ୍ୟନ୍ତ ସେ ଯାହା କରିଛନ୍ତି ଏବୁ ଆତ୍ମାର ବଳରେ

କରିଛନ୍ତି । ହାତ ହତିଆର ତୋପ ବନ୍ଧୁକ ଗୁଳି ବାରୁଦ ଆଦିରେ ତାଙ୍କର ବିଶ୍ୱାସ ନାହିଁ । ସେ କହନ୍ତି ଆତ୍ମାର ବଳ ପାଖରେ ଶାନ୍ତି ଅହିଂସା ଆଗରେ ଲୁହାର ଅସ୍ତ୍ରଶସ୍ତ୍ର ତରଳି ଯିବ । ଗୋଳାବାରୁଦ ଶୀତଳ ବରଫ ପରି ହୋଇଯିବ । ତେଣୁ ମହାତ୍ମାଗାନ୍ଧି ଜେଲରେ ରହିଲେ ଅସହଯୋଗ ଶାନ୍ତିସଂଗ୍ରାମରେ କୌଣସି ବାଧାନାହିଁ । ସେ ଶାନ୍ତି - ଲେଢ଼ୁଥିଲେ ତାଙ୍କୁ ଜେଲରେ ଯେ ବିଶ୍ରାମ ମିଳିଲା ତଦ୍ୱାରା ତାଙ୍କର ଆତ୍ମବଳ ଅଧିକ ପ୍ରକାଶ ପାଇବାର ସୁଯୋଗ ହେଲା । ଜେଲରେ ଥିଲେ ସୁଦ୍ଧା ତାଙ୍କ ଆତ୍ମା ବରାବର ଆମ୍ଭମାନଙ୍କ ସଙ୍ଗେ ସଙ୍ଗେ ଥିବ । ଯେଉଁମାନେ ମହାତ୍ମାଗାନ୍ଧିଙ୍କ ଭକ୍ତ କରନ୍ତି ଓ ଆତ୍ମବଳକୁ ବିଶ୍ୱାସ କରନ୍ତି ସେମାନେ ଏହି ଦୃଢ଼ ବିଶ୍ୱାସ ରଖି କାର୍ଯ୍ୟରେ ଲାଗିବେ ।

ଚିତ୍ତରଞ୍ଜନ ଦାସ, ମୋତିଲାଲ ନେହେରୁ, ଲାଲା ଲଜପତ, ଅାଲିଭାଇମାନେ ଜେଲରେ ଥିଲେ । ପ୍ରତି ପ୍ରଦେଶର ଆଉ ଦାନ ବଡ଼ କେତେ ନେତା ଓ କର୍ମୀ ବନ୍ଦୀ ହୋଇଅଛନ୍ତି । ଶେଷକୁ ମହାତ୍ମା ଗଲେ । କେହି କେହି ବନ୍ଧୁ ଶଙ୍କାକରି ବିଚାରୁଥିବେ "ଅପରେ କିଂ ଭବିଷ୍ୟତି ?" ଏହାପରେ କଅଣ ହେବ ? ଏହାପରେ ହେବ ସ୍ୱରାଜ୍ୟ । କୁରୁକ୍ଷେତ୍ରର ଧର୍ମଯୁଦ୍ଧରେ ଜୟ ପତାକା ଉଡ଼ାଇବା ପୂର୍ବରୁ ପାଣ୍ଡବମାନେ ବାରବର୍ଷକାଳ ବନବାସ କ'ଣ ଯାଇ ନ ଥିଲେ ? ମୁର ରାବଣ ପ୍ରଭୃତି ରାଜାମାନେ ଇନ୍ଦ୍ର, ଚନ୍ଦ୍ର, ବରୁଣ ପ୍ରଭୃତିଙ୍କୁ ବନ୍ଦୀକରି ରଖି ନ ଥିଲେ କି ? ଏପରି ଘଟନା ତ ଇତିହାସ ପୁରାଣାଦିରେ ଯୁଗେ ଯୁଗେ ଘଟିଅଛି । ବରଂ ଏହାସବୁ ଧର୍ମ ଯୁଦ୍ଧରେ ଜୟର ଚିହ୍ନ । ମହାତ୍ମା ଗାନ୍ଧି ଜେଲ୍ ଗଲେ, ତାଙ୍କର ଦ୍ୱୀପାନ୍ତର ବା ପ୍ରାଣଦଣ୍ଡ ପର୍ଯ୍ୟନ୍ତ ହେଲେ ସୁଦ୍ଧା ନିରାଶାର କିଛି କାରଣ ନ ଥିଲା । ପ୍ରଭୁ ଯିଶୁଖ୍ରୀଷ୍ଟଙ୍କୁ ସେ କାଳର ରାଜା ଗୋଟିଏ ଖୁଣ୍ଟରେ ବାନ୍ଧି ତାଙ୍କ ଦେହରେ ମୁଣ୍ଡରେ ଆଖିରେ କଣ୍ଟା ବାଡେଇ ମାରି ପକାଇଥିଲା । ଫଳରେ କଅଣ ହେଲା ? ଯିଶୁ ଖ୍ରୀଷ୍ଟ ଜିଣିଲେ; ଜଗତରେ ତାଙ୍କର ବିଜୟବାନା ଉଡ଼ିଲା । ମହାତ୍ମାଗାନ୍ଧି ତିରିଶକୋଟି ଭାରତବାସୀର ପ୍ରାଣର ଆକାଂକ୍ଷା ଓ ବ୍ୟାକୁଳତା କେବଳ ପ୍ରକାଶ କରିଛନ୍ତି, ମାନବ ଜଗତକୁ ରାଜନୈତିକ କ୍ଷେତ୍ରରେ ଶାନ୍ତି ଓ ଅହିଂସାର ପରମ ପଥ ଦେଖାଇଛନ୍ତି । ସତ୍ୟ ଓ ଧର୍ମ ନିମନ୍ତେ ଆପଣା ଜୀବନ ବଳି ଦେବାକୁ ପ୍ରସ୍ତୁତ ହୋଇଛନ୍ତି ।

ଜେଲଖାନାରୁ ସେ ଯେ ପତ୍ର ଲେଖିଛନ୍ତି ସେଥିରେ ସ୍ପଷ୍ଟ କହିଛନ୍ତି, "ମୁଁ ଜେଲ ଯିବାପରେ ଆଉ କାହାରି ଜେଲ ଯିବା ଦରକାର ହେବ ନାହିଁ " ଅର୍ଥାତ୍ ଦେଶବାସୀ ସମସ୍ତଙ୍କପାଇଁ ସେ ଜୀବନ ଉତ୍ସର୍ଗ କରିଦେଲେ । ଅତଏବ ଆଗକୁ ପଛକୁ ନ ବିଚାରି ମହାତ୍ମା

ଦେଖାଇଥିବା ରାସ୍ତାରେ ସମସ୍ତେ ଏକମନ ଏକପ୍ରାଣରେ ଚାଲନ୍ତୁ । କଂସ ଶ୍ରୀକୃଷ୍ଣଙ୍କୁ ଅକ୍ରୂର ଦ୍ୱାରା ମଥୁରାକୁ ନେଇଗଲାବେଳେ ଗୋପୀମାନେ କହିଥିଲେ—

"କଂସ ଯାହାଙ୍କୁ ପଛେ କରନ୍ତା
ଗୋପପୁରଯାକ ହେଲେ ମାରନ୍ତା
ତହିଁ ମଲେ ସେ ହୁଅନ୍ତା କାରଣ
ଯାହା ଉପେକ୍ଷି ଗଲେ ନାରାୟଣ ।"

ମହାତ୍ମାଗାନ୍ଧି ଜେଲ ଯିବାପରେ ଆଜି ସମସ୍ତେ ଏହି ଭାବରେ ସେ ଦେଇଯାଇଥିବା ଦୀକ୍ଷା ଧରି କାର୍ଯ୍ୟ କରନ୍ତୁ । ବିଶେଷତଃ ଅହିଂସାଧର୍ମର ଆୟୁଧ ସ୍ୱରୂପ ସେ ଯେଉଁ ଅରଟ ବା ସୁଦର୍ଶନଚକ୍ର ଧରାଇ ଦେଇ ଯାଇଛନ୍ତି ମନଧ୍ୟାନ ଦେଇ ସମସ୍ତେ ତାକୁ ଚଳାନ୍ତୁ । ଏଥିରେ ସକଳ ବିପତ୍ତି ଖଣ୍ଡିବ ଏବଂ ସ୍ୱରାଜ୍ୟ ମିଳିବ । ମହାତ୍ମାଙ୍କ କଥା କଦାପି ଅନ୍ୟଥା ହେବ ନାହିଁ ।

('ସମାଜ' ତା ୨୫ । ୩ । ୨୨)

# ଜାତୀୟ ଭାବନା

ଏ ମାସ ୧୬ ତାରିଖ ଯୁବରାଜ କରାଚୀଠାରୁ ଜାହାଜରେ ଚଢ଼ି ବିଲାତ ଯାତ୍ରା କଲେ । ଯୁବରାଜ ଆସିଲେ ଭାରତର ଭାଗ୍ୟ ଫେରିବ ବୋଲି ଯେଉଁମାନେ ବିଚାରିଥିଲେ, ଏବେ ସେମାନଙ୍କ ଆଶା ତୁଟିଲା । ଭାରତ ଉପକୂଳ ଛାଡ଼ିବା ପୂର୍ବରୁ ସେ ବଡ଼ଲାଟଙ୍କୁ ଯେ ଟେଲିଗ୍ରାମ କରିଛନ୍ତି ସେଥିରେ ଲେଖିଛନ୍ତି କି ସେ ଭାରତର ରାଜା ପ୍ରଜା ସମସ୍ତଙ୍କୁ ଦେଖିଲେ, ଭାରତର ନାନା ବିଗରେ ଉନ୍ନତିର ଲକ୍ଷଣ ଦେଖି ସେ ସୁଖି ହୋଇଛନ୍ତି । ଭାରତରେ ବୁଲି ତାଙ୍କର କୌଣସି ପ୍ରକାର ଶାରୀରିକ ବା ମାନସିକ କଷ୍ଟ ହୋଇ ନ ଥିବା ଅବଶ୍ୟ ସମସ୍ତଙ୍କ ପକ୍ଷରେ ସୁଖର କଥା । ମାତ୍ର ସେ ଭାରତର ପ୍ରଜାଙ୍କୁ ଦେଖିଗଲେ ବୋଲି ଯାହା ମନେ କରିଛନ୍ତି ତାହା କେତେଦୂର ଠିକ୍ କୁହାଯାଇ ପାରୁନାହିଁ । ଭାରତୀୟ ପ୍ରଜାର ଅନ୍ନକଷ୍ଟ, କରପୀଡ଼ା, ରୋଗଯନ୍ତ୍ରଣା, ଅକାଳମୃତ୍ୟୁ ତାଙ୍କ ଦୃଷ୍ଟିରେ ପଡ଼ିଛି କି ? ଏ ଦେଶରେ ପ୍ରଜା ସାଧାରଣଙ୍କର ଦୁଃଖ ଦିନୁଦିନ ବଢ଼ୁଛି ଏହାହିଁ କି ଉନ୍ନତିର ଲକ୍ଷଣ ? ସେ ଯାହାହେଉ, ଯୁବରାଜ ଏବେ ସୁରୁଖୁରୁରେ ପହଞ୍ଚନ୍ତୁ, ଏହା ଆମ୍ଭମାନଙ୍କର କାମନା ।

× × ×

ଲର୍ଡ଼ ସିଂହ ବିହାର ଓଡ଼ିଶା ପ୍ରଦେଶର ଲାଟପଦ ଛାଡ଼ିବାପରେ ଲେମସୁରିଅର ସାହେବ ଅସ୍ଥାୟୀଭାବରେ ସେ କାମ ଚଳାଉଛନ୍ତି । ଏଥିମଧ୍ୟରେ ସେ ପାଇବେ ବୋଲି କେତେ ଲୋକଙ୍କ ନାଁ ଶୁଣାଯାଇଛି । ଅନେକେ ମନେ କରିଥିଲେ ଯେ ଭାରତବାସୀ ଜଣେ କେହି ହେବେ । ଶେଷକୁ ଏବେ ଯେପରି ବୁଝାପଡ଼ୁଛି କୌଣସି ଭାରତବାସୀ ଭାଗ୍ୟରେ ଏ ବଡ଼ ପଦ ଜୁଟୁନାହିଁ । ବଙ୍ଗଳା ସରକାରଙ୍କର ସୁନାମଧନ୍ୟ ସଦସ୍ୟ ହୁଇଲର ସାହେବ ବିହାର ଓଡ଼ିଶାର ଲାଟ ହେବେ ବୋଲି କଥା ଉଠିଛି । ବଡ଼ଲାଟ ସଭାରେ ଏ ପର୍ଯ୍ୟନ୍ତ ଏ ବିଷୟର ପ୍ରଶ୍ନ ପଡ଼ିଲାଣି । ସେଠାରେ ସରକାର ତରଫରୁ ଯାହା ଶୁଣାଗଲା ଖବରଟା ନିତାନ୍ତ ଗୁଜବ ବୋଲି କୁହାଯାଇ ପାରୁନାହିଁ ।

ଏବେ ପୁଣି ବଡ଼ଲାଟ ସଭାରେ ମେମ୍ବରମାନେ ନୂଆ ଟିକସ ବସାଇବା ବିଷୟରେ ଆପତ୍ତି କରୁଛନ୍ତି; ସରକାର ଯେତେଟଙ୍କା ଖର୍ଚ୍ଚ କରିବାକୁ ସ୍ଥିର କରୁଛନ୍ତି ତାହା ମଞ୍ଜୁର କରୁନାହାନ୍ତି । ଏ ସବୁ ଖବର ବିଲାତରେ ପହଞ୍ଚିଗଲାଣି । ସେ ଦେଶର କୌଣସି କୌଣସି

ପ୍ରଧାନ ସମ୍ବାଦ ପତ୍ର କହିଲେଣି କି ଭାରତବାସୀ ଏପରି ହଟକାରଙ୍କ ସ୍ରୋତରେ ବାଧାଦେଲେ ଶାସନ ସଂସ୍କାର ପାଇବାରେ ସେମାନେ ଉପଯୁକ୍ତ ହୋଇ ନାହାନ୍ତି । ସେମାନେ ଉପଯୁକ୍ତ ହେଲେ ସିନା ଶାସନ ସଂସ୍କାର ଫଳ ଭୋଗ କରିବାର କଥାଥିଲା; ସେମାନେ ଯେବେ ଏପରି ଅବାଧ ହେଉଛନ୍ତି, ସରକାରଙ୍କ ମନୋରଥ ସିଦ୍ଧିରେ ବାଧା ଦେଉଛନ୍ତି ତେବେ ଶାସନ ସଂସ୍କାର ବିଧାନମାନ ଉଠାଇଦେବା ଉଚିତ । ତଥାସ୍ତୁ, ଆମ୍ଭେମାନେ ବାରମ୍ବାର କହୁଛୁଁ ଶାସନ ସଂସ୍କାର ବିଧାନରେ ଭାରତବାସୀଙ୍କି ଏକପ୍ରକାର କୁହାଯାଇଛି—"ସବୁ ଚୋର, ଖବରଦାର, କାହିଁରେ ହାତ ଦେବୁନାହିଁ" । ଏ କଥାରେ ବିଶ୍ୱାସ କରି ସବୁ ମୋର ମୋର କହି ଅପଣାକୁ ମାଲିକମଣି ଗୁଡ଼ ଫୁଲାଇ ଚୁପ୍ ହୋଇ ବସ, ତେବେ ତୁମେ ସିନା ପୁଅ, ନାହିଁ ଯେବେ କୌଣସି କଥାରେ ପାଟି ଫିଟାଇଲ କି କୌଣସି ଜିନଷରେ ଟିପ ଛୁଇଁଲ ତେବେ ତୁମେ ଅନୁପଯୁକ୍ତ ।

ଶାସନ ସଂସ୍କାର ଫଳରେ ଭାରତବାସୀଙ୍କର ଭାଗ୍ୟ ଫେରିଛି । ଦେଶୀଲୋକ ଲାଟସାହେବ ହେଲେ, ଗୋରା ଲୋକଙ୍କ ସମାନ ହଜାର ହଜାର ଟଙ୍କା ଦରମା ପାଇ ମନ୍ତ୍ରୀ ହେଲେ; ଆଉ ବାକି କଅଣ ରହିଲା ? ଯେଉଁମାନେ ଏହାକହି ନାଚୁଥିଲେ ଏବେ ସେମାନେ କଅଣ ବିଚାରୁଛନ୍ତି ? ଗତିଗତି ଦେଖି ସେମାନଙ୍କ ମଧ୍ୟରୁ କେହି କେହି ହୁଏତ ମନେ ମନେ କହିଲେଣି ।

"ଜଣାଗଲା ହେ ଶ୍ୟାମ ପ୍ରୀତି ରୀତି ତୁମ୍ଭର"

× × ×

ଭାଗଲପୁରଠାରେ ଏକ ଶିଳ୍ପ ପ୍ରଦର୍ଶନୀ ହୋଇଥିଲା । ସେଠାର ବେସରକାରୀ ସାଧାରଣ ଲୋକଙ୍କ ଉଦ୍ୟମରେ ଏଥିର ଆୟୋଜନ କରାଯାଇଥିଲା । ଅବଶ୍ୟ ଭାଗଲପୁର ବିଭାଗର କମିଶନର ସେନ ସାହେବ ଏ ଉଦ୍ୟମର ପ୍ରଧାନ ଚାଳକ ଥିଲେ । ପ୍ରଦର୍ଶନୀ ମଣ୍ଡପ ମଣ୍ଡଳୀରେ ସ୍ୱରାଜ୍ୟ ପତାକା ଦିଆଯାଇ ଥିବାରୁ ସେନ ସାହେବ ପ୍ରଦର୍ଶନୀରେ କୌଣସି ସମ୍ପର୍କ ରଖିବେ ନାହିଁ ବୋଲି କହିଥିଲେ । ସ୍ୱରାଜ୍ୟ ପତାକାମାନ ଉଠାଇ ଦିଆ ଯାଇଅଛି ବୋଲି ମନେକରି ସେନ ସାହେବଙ୍କ ଭାର୍ଯ୍ୟା ପ୍ରଦର୍ଶନୀ ଖୋଲିଥିଲେ । ତହିଁ ଆରଦିନ ଦେଖାଗଲା ଯେ ଗାନ୍ଧୀ ସ୍ୱରାଜ୍ୟ ପତାକା ଏକ ପ୍ରକାଶ୍ୟ ସ୍ଥାନରେ ଖୁବ୍ ପ୍ରକଟ ଭାବରେ ରଖାଯାଇ ଅଛି । ତାହାକୁ ଉଠାଇବା ଲାଗି ସେନ ସାହେବ ବହୁତ କହିଲେ ସୁଦ୍ଧା ଅସହଯୋଗୀମାନେ ଘୋର ଆପତ୍ତି ଉଠାଇଥିଲେ । ପରେ ଏହି ପ୍ରକାର ରଫା ହେଲା ଯେ ସ୍ୱରାଜ୍ୟ ପତାକା ଉପରେ ଇଂରେଜ ସମ୍ରାଜ୍ୟ ପତାକା ଦିଆଯାଉ; ତାହାହେଲେ ଇଂରେଜ

ସାମ୍ରାଜ୍ୟ ମଧ୍ୟରେ ଭାରତୀୟ ସ୍ୱରାଜ୍ୟ ରହିବ । ଏଥିରେ ସୁଦ୍ଧା ଅନେକ ସ୍ଥାନୀୟ ସରକାରୀ ଓ ବେସରକାରୀ ଗୋରା ବିରକ୍ତ ହେଲେ ଏବଂ ପ୍ରଦର୍ଶନୀରେ ଯୋଗ ଦେଲେ ନାହିଁ ।

ବିହାର ଓଡ଼ିଶା ଲାଟ ସଭାରେ ଜଣେ ଗୋରା ମେମ୍ବର ଏ ବିଷୟରେ ପ୍ରଶ୍ନ ପଚାରିଥିଲେ । ସରକାର ତରଫରୁ ଉଲ୍ଲିଖିତ ପ୍ରକାରେ ତାଙ୍କୁ ଜବାବ ମିଳିଥିଲା । ଶେଷକୁ ସରକାରଙ୍କ ଜବାବରେ ଥିଲା ଯେ ଏ ସବୁ ସ୍ଥାନୀୟ ବ୍ୟାପାର ସ୍ଥାନୀୟ କର୍ମଚାରୀଙ୍କ ବିଚାର ଉପରେ ଛାଡ଼ିଦେବା ସରକାର ଉଚିତ ମନେ କରନ୍ତି । ଏହାତ ଅବଶ୍ୟ ସୁବିଚାର । ଭାଗଲପୁର ଅସହଯୋଗୀମାନେ ପତାକା ନ ଉଠାଇ ଯେ ଟାଣ ଦେଖାଇଲେ ତାହା ମଧ୍ୟ ପ୍ରଶଂସନୀୟ । ମାତ୍ର ଅନେକ ଗୋରାଙ୍କ ବ୍ୟବହାରରୁ ଯେପରି ଦେଖାଯାଉଛି ମହାତ୍ମାଗାନ୍ଧୀଙ୍କ ଛାଇ ପଡ଼ିଲେ ସେମାନଙ୍କ ନାକ ଡେଉଁଛି । ଖାଲି ଗୋରା କାହିଁକି କେତେ କଳା ସରକାରୀ କର୍ମଚାରୀ ତ ମହାତ୍ମାଗାନ୍ଧୀଙ୍କ ନାମ ଧରିଲେ ଅପରାଧ ବୋଲି ଲୋକଙ୍କୁ ଧମକାଉଛନ୍ତି । କଂସ, ହିରଣ୍ୟ କଶିପୁ ପ୍ରଭୃତି ଦୈତ୍ୟ ଦାନବମାନେ ଏହିଭଳି ଢଙ୍ଗ ଧରିଥିଲେ । ହରି ବା କୃଷ୍ଣନାମ କେହି ଧରିଲେ ତାଙ୍କୁ ଦଣ୍ଡୁଥିଲେ ।

"ମୁଗଲ ଯୁଗ ଏହିମତେ
ଲୀଳା ଲାଗିଛି ଏ ଜଗତେ ।"

× × ×

କଲିକତାର କୌଣସି ସମ୍ବାଦପତ୍ରରେ ପ୍ରକାଶ ଯେ, ପାବନା ଜିଲ୍ଲାର ଜଣେ ମୁସଲମାନ ଆପଣାର ଓ ପରିବାରର ଉଦରଜ୍ୱାଳା ନିବାରଣର କୌଣସି ଉପାୟ ନ ଦେଖି ନିଜର ଭାର୍ଯ୍ୟା, ପୁଅଝିଅଙ୍କୁ ହତ୍ୟାକରି ଆତ୍ମହତ୍ୟା କରିବାକୁ ବସିଲାବେଳେ ଧରା ପଡ଼ିଲା । ସେ ଏବେ ହାଜତରେ ଅଛି । ମକଦ୍ଦମା ବିଚାରାଧୀନ । କେତେଦିନ ତଳେ ଖବର କାଗଜରେ ବାହାରିଥିଲା କଟକ ଜିଲ୍ଲାର ଜଣେ ଓଡ଼ିଆ ଅନ୍ନକଷ୍ଟରେ କଲିକତା ପଳାଇଯାଇ ସେଠାରେ କିଛି ଦିନ କାଳ ବୁଲି କିଛି ଉପାୟ ନ ଦେଖି ଶେଷକୁ ଉଦରଜ୍ୱାଳାରେ ପ୍ରପୀଡ଼ିତ ହୋଇ ଆତ୍ମହତ୍ୟା କରିବା ଲାଗି ଗଙ୍ଗାକୁ ଡେଇଁ ପଡ଼ିଲାବେଳେ ଧରା ପଡ଼ିଥିଲା । ଏ ରାଜ୍ୟରେ କେତେ ସ୍ଥାନରେ କେତେ ସ୍ଥାନରେ କେତେ ମହାପ୍ରାଣୀ ପେଟଜ୍ୱାଳାରେ ଏହିପରି କେତେ ମହାପାତକ କରୁଛନ୍ତି, ତାହା କିଏ କହିବ ? ହିନ୍ଦୁ ଶାସ୍ତ୍ର ପୁରାଣରେ ବର୍ଣ୍ଣନା ଅଛି ଯେ କାହାରି ପୁଅ ଅକାଳରେ ମରୁଥିଲେ ସେ ଆସି ରାଜାଙ୍କ ଆଗେ ଗୁହାରି

କରୁଥିଲେ । ରାଜ୍ୟରେ ଅନ୍ୟାୟ ଅଧର୍ମ ପ୍ରବଳ ହେବାରୁ ଏପରି ଘଟନା ହେଲାବୋଲି ରାଜା ତହିଁର ପ୍ରତିକାର କରନ୍ତି । କାରଣ ସେ କାଳ ରାଜାଙ୍କର ବିଶ୍ୱାସ ଥିଲା ଯେ ରାଜ୍ୟପାପ ରାଜା ମୁଣ୍ଡରେ । ଏବେ ସୁଦ୍ଧା ଏ ବିଶ୍ୱାସ ତୁଟି ନାହିଁ । ମାତ୍ର ଏ ଯୁଗ ରାଜଶକ୍ତିର ବିଶ୍ୱାସ କଅଣ ?

('ସମାଜ' ତା ୧ । ୪ । ୨୨)

———

# ଅସହଯୋଗ ସମ୍ବାଦ

ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ମୋକଦ୍ଦମାର ବିଚାର ବେଆଇନ ଓ ଅନ୍ୟାୟ ହୋଇଅଛି ବୋଲି କହି ତହିଁର ଆଲୋଚନା ଓ ପୁନର୍ବିଚାର କରିବା ଭାର ଦୁଇଜଣ ହାଇକୋର୍ଟ ଜଜ୍‌ଙ୍କ ଉପରେ ଦିଆଯିବା କାରଣ ବଙ୍ଗଳା ଲାଟସଭାରେ ଜଣେ ସଭ୍ୟ ପ୍ରଶ୍ନ ଉଠାଇ ଥିଲେ । ତହିଁର ଉତ୍ତରରେ ସରକାର ତରଫରୁ ମନ୍ତ୍ରୀ କହିଲେ କି ସରକାର ନିଜେ ସେ ବିଷୟର ବିଚାର କରୁଛନ୍ତି । ତେଣୁ ହାଇକୋର୍ଟ ଜଜ୍‌ଙ୍କ ଉପରେ ଭାର ଦେବା ଦରକାର ନାହିଁ । ଦେଶବନ୍ଧୁଙ୍କୁ ୬ ମାସ ବିନା ପରିଶ୍ରମରେ କାରାଦଣ୍ଡ ହୋଇଅଛି । ଦଣ୍ଡ ପୂର୍ବରୁ ସେ ପ୍ରାୟ ଅଢେଇମାସ କାଲ ହାଜତରେ ଥିଲେ । ଏବେ ଦଣ୍ଡ ପାଇବା ଦେଢ଼ମାସ ଉପରେ ହେଲାଣି । ମୋଟରେ ଚାରିମାସ ବିନା ପରିଶ୍ରମରେ ସେ ଜେଲଖାନାରେ ରହିଲେଣି । ସରକାର ତାଙ୍କ ମକଦ୍ଦମାର ନ୍ୟାୟ ଅନ୍ୟାୟ କଥା ବିଚାର ଫଇସଲା କଲା ବେଳକୁ ବୋଧହୁଏ ତାଙ୍କର ଜେଲଭୋଗ ସମୟ ବିତି ଯାଇଥିବ । ସେତେବେଳେ ତାଙ୍କ ମକଦ୍ଦମାର ଅନ୍ୟାୟ ବିଚାର ହୋଇଛି ବୋଲି ସ୍ଥିର ହେଲେ ସୁଦ୍ଧା ଫଳ କଅଣ ? ଜେଲ ଭୋଗତ ଜୋରିମାନା ନୁହେଁ ଯେ ସେ ଟଙ୍କା ଫେରସ୍ତ ଦିଆଯାଇ ପାରିବ ? ଯେଉଁମାନଙ୍କ ଅନ୍ୟାୟ ଅବିଚାରରେ ସେ ଜେଲ ପାଇଲେ, ଦେଶବନ୍ଧୁଙ୍କ ପାଇଥିବା ଦଣ୍ଡ ସେମାନଙ୍କୁ ଦେଇ ଉପଯୁକ୍ତ ବିଚାରକୁ ସରକାର ସମାନ କରିବେ କି ? ଚିତ୍ତରଞ୍ଜନଙ୍କ ମିଆଦି ପୂରିଲା ବେଳକୁ ସରକାର ତାଙ୍କ ସଜା ରଦ୍ଦ କଲେ ସେ ଜେଲ ଭୋଗିଲେ ସୁଦ୍ଧା ଶେଷରେ ସରକାରଙ୍କ ବିଚାରରେ ମୁକ୍ତି ପାଇଛନ୍ତି ବୋଲି ଇତର ସାଧାରଣ ଆସାମୀଙ୍କ ପରି ଗୌରବ ମଣିବେ ନାହିଁ । ତେବେ ଆଉ ସରକାର ବିଚାର କରୁଛନ୍ତି ବୋଲି କହି କାଳକ୍ଷେପ କରିବାର ଅଭିପ୍ରାୟ କଅଣ ?

× × ×

ସ୍କୁଲମାନଙ୍କରେ ଅରଟରେ ସୂତାକଟା ଶିକ୍ଷା ଦିଆଯିବା ପ୍ରସ୍ତାବ ବଙ୍ଗଳା ଲାଟ ସଭାରେ ଧାର୍ଯ୍ୟ ହୋଇଅଛି । ଓଡ଼ିଶାର କୌଣସି କୌଣସି ମଫସଲ ଗାଁରେ ପୋଲିସ ତରଫ ଲୋକେ ଅରଟ ଚଳାଇବା ବିଷୟରେ ଲୋକଙ୍କୁ ଧମକ ଦେବାର ଶୁଣାଯାଏ । ଚରଖା ଉପରେ ଟିକସ ବସିବ, ଚରଖା ଚଳାଉଥିବା ଲୋକଙ୍କୁ ଜେଲ ନ ହେଲେ ଜୋରିମାନା ହେବ ଇତ୍ୟାଦି ପ୍ରକାର କହି ଭୟ ଦେଖାଉଛନ୍ତି । ଏଥିରେ ମଧ୍ୟ କେତେ

ସ୍ଥାନର ନିରୀହ ଲୋକେ ଡରଯାଇ ଅରଟ ଲୁଗାଇ ରଖି ଦେଉଥିବାର ଜଣାଯାଏ । କୌଣସି କୌଣସି ଚୌକିଦାରୀ ପଞ୍ଚାୟତଙ୍କ ମୁହଁରୁ ଶୁଣାଯାଇଅଛି ଯେ ସେମାନଙ୍କ ଘରେ ଚରଖାରେ ସୂତା କାଟିବାକୁ ଆଗ୍ରହ ଥିଲେ ସୁଦ୍ଧା ସରକାରୀ ସମ୍ପର୍କ ଥିବାଯୋଗୁଁ ସେମାନେ ତାହା କରିପାରୁ ନାହାନ୍ତି । କି ଚୌକିଦାରୀ ପଞ୍ଚାୟତ, କି ଜମିଦାର ମକଦ୍ଦମ ମହାଜନ, କି ସାଧାରଣ ପ୍ରଜା ଓଡ଼ିଶାର ଅଧିକାଂଶ ଲୋକେ ଅଶିକ୍ଷିତ ଥିବାରୁ ଆପଣାର ଅଧିକାର ବୁଝି ନ ପାରି ଅନ୍ଧାର ଘରେ ପିଲାଏ ଭୂତ ଦେଖିଲାପରି ସରକାର ସମ୍ପର୍କୀୟ ପ୍ରତି କଥାରେ ଜେଲ ଜୋରିମାନା ଭୟ ଦେଖୁଛନ୍ତି । ସରକାର ଚର୍ଚ୍ଚଫନ କେହି କେହି କର୍ମଚାରୀ ଲୋକଙ୍କର ଏହି ଅଜ୍ଞତାର ସୁବିଧା ନେବା ନିନ୍ଦାର କଥା । ଅରଟ ଚଳାଇବାରେ କିଛି ଦୋଷ ନାହିଁ । ବଙ୍ଗଳା ଲାଟସଭାରେ ଧାର୍ଯ୍ୟ ହୋଇଥିବା ଉଲ୍ଲିଖିତ ପ୍ରସ୍ତାବରୁ ଏହା ବୁଝି ଓଡ଼ିଶାର କେହି ଆଉ ଏଣିକି ପୋଲିସ ବା ଅନ୍ୟ କାହାରି ବୃଥା ଧମକରେ ଯେପରି ନ ଡରନ୍ତି ।

× × ×

ଭାରତବର୍ଷର କଳକାରଖାନାରେ ତିଆରି ହେଉଥିବା ଲୁଗା ଓ ସୂତା ଉପରେ ଯେ ଟିକସ ବସିବାର କଥା ଥିଲା ତାହା ନ ହେଲା । ବିଲାତ କଳକାରଖାନାମାନଙ୍କରେ ତିଆରି ସୂତା ଓ ଲୁଗା ଏ ଦେଶକୁ ଆମଦାନୀ ହେଲେ ଶହେ ଟଙ୍କାର ମାଲ ଉପରେ ୧୧ ଟଙ୍କା ମହାସୁଲ ଭାରତ ସରକାର ଗଲାବର୍ଷଠାରୁ ନେଇ ଆସୁଛନ୍ତି । ଏ ବିଷୟରେ ବିଲାତ କାରଖାନାର ମାଲିକମାନେ ଗଲାବର୍ଷ ଆପତ୍ତି ଉଠାଇଥିଲେ । ପୁଣି ଏବେ ନୂଆ ଭାରତ ସେକ୍ରେଟାରୀଙ୍କଠାରେ ଆପତ୍ତି କରିଛନ୍ତି । ଆମଦାନୀ ରପ୍ତାନି ଉପରେ ଟିକସ ବସାଇବା ଲାଗି ଶାସନସଂସ୍କାର ବିଧାନରେ ଭାରତ ସରକାରଙ୍କୁ ଷୋଳଅଣା ଅଧିକାର ଦିଆ ଯାଇଅଛି ବୋଲି କହି ସେକ୍ରେଟାରୀ ସେମାନଙ୍କ ଆପତ୍ତି ନାମଞ୍ଜୁର କରିଛନ୍ତି । ବିଲାତ ବେପାରୀମାନେ ଏକଥା ଜାଣିଲେ ସୁଦ୍ଧା ମାଡ଼ି ଗୁଡ଼ାଉଛନ୍ତି କେତେକେ ? କେଜାଣି ଉଦ୍ୟମ କରୁ କରୁ ବାଜି ଯାଇପାରେ ।

× × ×

ଗଲା ମାର୍ଚ୍ଚ ୩୦ ତାରିଖ ସନ୍ଧ୍ୟାରେ ପଣ୍ଡିତ ମଦନମୋହନ ମାଲବ୍ୟ ବମ୍ବେଇ ମାରବାଡ଼ି ମହାବିଦ୍ୟାଳୟରେ ଏକ ସୁଦୀର୍ଘ ବକ୍ତୃତା ଦେଇଥିଲେ । କଂଗ୍ରେସ ଆଦେଶ ଅନୁସାରେ ଚଳିତ ଅପ୍ରେଲ ୬ ତାରିଖଠାରୁ ୧୩ ତାରିଖ ପର୍ଯ୍ୟନ୍ତ ଯଥାରୀତିରେ ଜାତୀୟ

ସପ୍ତାହ ପାଳବା ଓ ଘରେ ଘରେ ଅରଟ ଚଲାଇ ସ୍ୱଦେଶୀ ପ୍ରଚାର କରିବାଲାଗି ସେ ଉପଦେଶ ଦେଇଥିଲେ । ମହାତ୍ମାଗାନ୍ଧି ଜେଲ ଯିବାପରେ କଂଗ୍ରେସ କାର୍ଯ୍ୟରେ ବିଶେଷତଃ ସ୍ୱଦେଶୀ ସମ୍ପର୍କରେ ପଣ୍ଡିତ ମାଲବ୍ୟଙ୍କର ଏଭଳି ଉଦ୍ୟମ ଦେଶବାସୀଙ୍କ ହୃଦୟରେ ଆଶା ଓ ଉତ୍ସାହ ଜନ୍ମାଇବ, ସନ୍ଦେହ ନାହିଁ ।

× × ×

ବଡ଼ଲାଟ ସଭାର ଗଲା ବୈଠକରେ ଛାପାଖାନା ଆଇନ ଉଠାଇ ଦିଆଯିବା ସ୍ଥିର ହୋଇଅଛି । ଅବଶ୍ୟ ବଡ଼ଲାଟ ଏପର୍ଯ୍ୟନ୍ତ ଏଥିରେ ମଞ୍ଜୁର ଦେଇନାହାନ୍ତି । ମାତ୍ର ସରକାର ପକ୍ଷର ସଦସ୍ୟମାନଙ୍କ ମତରୁ ଯେପରି ଜଣାଯାଏ ତାଙ୍କର ମଞ୍ଜୁର ଦେବାରେ ବିଶେଷ ଆପତ୍ତି ହେବ । ଏପର୍ଯ୍ୟନ୍ତ ଛାପାଖାନା ସମ୍ପର୍କୀୟ ଯେ ଆଇନ ଚାଲୁଛି ତଦନୁସାରେ କେହି ଛାପାଖାନା ବା ଖବରକାଗଜ କରିବାକୁ ଚାହିଁଲେ ତାଙ୍କୁ ପାଞ୍ଚଶ ଟଙ୍କାରୁ ଦୁଇହଜାର ଟଙ୍କା ପର୍ଯ୍ୟନ୍ତ ଜାମିନ ଜିଲା ମେଜେଷ୍ଟ୍ରର ତଲବ କରୁଥିଲେ । ସ୍ଥଳବିଶେଷରେ ବିଶେଷ କାରଣ ଥିଲେ ଏହା କ୍ଷତି ଗୁଡ଼ା ଦିଆଯାଉଥିଲା । ମାତ୍ର ନୂତନ ବିଧାନ ଜାରି ହେଲେ ଆଉ ଏଣିକି ଜାମିନ ଦେବାକୁ ହେବ ନାହିଁ । ଖବରକାଗଜ ବା ଛାପାଖାନା ସମ୍ପର୍କୀୟ ଅପରାଧମାନ ଫୌଜଦାରୀ ଦଣ୍ଡବିଧି ଆଇନ ଅନୁସାରେ ବିଚାର କରାଯିବ । କୌଣସି ଖବରକାଗଜରେ ରାଜଦ୍ରୋହ ବିଷୟକ କିମ୍ବା ଅନ୍ୟ କୌଣସି ପ୍ରକାର-ଆପତ୍ତି-ଜନକ ବିଷୟ ଥିଲେ ଡାକବିଭାଗ ତାହାର ପ୍ରଚାର ବନ୍ଦକରି ଦେଇପାରନ୍ତି । ଡାକବିଭାଗର ଯେଉଁ କର୍ମଚାରୀମାନେ ଖବରକାଗଜ ଅଟକାଇ ପାରିବେ ତାହା ପୋଷ୍ଟମାଷ୍ଟର ଜେନେରାଲ ପରେ ସ୍ଥିର କରିବେ । ଖବରକାଗଜମାନଙ୍କରେ ଏପର୍ଯ୍ୟନ୍ତ କେବଳ ପ୍ରିଣ୍ଟର ଓ ପ୍ରକାଶକଙ୍କ ନାମ ଛାପା ହେବାର ନିୟମ ଥିଲା । ଏଥିର ଫଳରେ ସମ୍ପାଦକମାନଙ୍କ ଉପରେ ଅନେକ ସମୟରେ ବିଶେଷ କିଛି ଦାୟିତ୍ୱ ପଡ଼ୁ ନ ଥିଲା । ଏଣିକି କେବଳ ସମ୍ପାଦକଙ୍କ ନାମ ପ୍ରକାଶିତ ହେବ । ଫଳକଥା ଯେ କରିବ ସେ ମରିବ ।

('ସମାଜ' ତା ୮ । ୪ । ୨୨)

# ଜାତୀୟ ସପ୍ତାହ

ଅପ୍ରେଲ ମାସ ୬ ତାରିଖ ଠାରୁ ୧୩ ତାରିଖ ପର୍ଯ୍ୟନ୍ତ ଜାତୀୟ ସପ୍ତାହ । ଏ କେତେଦିନକୁ ସମସ୍ତ ଭାରତବର୍ଷରେ ଲୋକେ ପାଳିବେ ବୋଲି କଂଗ୍ରେସର କାର୍ଯ୍ୟକାରୀ ସମିତି ଆଦେଶ କରି ଅଛନ୍ତି । ୬ ତାରିଖ ଦିନ ଉପବାସ ରହି ଭାରତର ଜାତୀୟ ସ୍ୱାଧୀନତା ଓ ସ୍ୱରାଜ୍ୟ ନିମନ୍ତେ ଈଶ୍ୱରଙ୍କଠାରେ ପ୍ରାର୍ଥନା ଏବଂ ୧୩ ତାରିଖ ଦିନ ହରତାଳ କରିବାକୁ ହେବ । ହରତାଳ କରିବା ଲାଗି ଲୋକଙ୍କୁ ଜଣାଇ ଦେବାକୁ ହେବ ମାତ୍ର, କରିବା ନ କରିବା ସେମାନଙ୍କ ଇଚ୍ଛାଧୀନ । ସମଗ୍ର ସପ୍ତାହ ମଧ୍ୟରେ ସ୍ୱରାଜ୍ୟ ନିମନ୍ତେ ଅର୍ଥ ସଂଗ୍ରହ କରାଯିବ ଏବଂ ସ୍ୱଦେଶୀ ପ୍ରଚାର ନିମନ୍ତେ ଅରଟ ଚଳାଇବା, ଖଦଡ଼ ବିକିବା କାର୍ଯ୍ୟ ପ୍ରଭୃତି ମଧ୍ୟ ହେବ । ଏ ଜାତୀୟ ସପ୍ତାହ ନୂତନ ବ୍ୟବସ୍ଥା ନୁହେ, ଆଜିକୁ ୩ ବର୍ଷ ହେଲା ସମଗ୍ର ଦେଶରେ ଏହା ପାଳନ କରା ଯାଉଅଛି । ୧୯୧୯ ମସିହାରେ ପଞ୍ଜାବର ଅତ୍ୟାଚାର କଥା ସମସ୍ତଙ୍କର ମନେ ଥିବ । ତାହା କେବେ ପାଶୋରି ଯିବାର ନୁହେଁ । ବରଂ ପ୍ରଧାନ ପ୍ରଧାନ ରାଜପୁରୁଷମାନେ ସେ ଘଟନାକୁ ଭୁଲି ଯିବାଲାଗି ଯେତେ ବାରମ୍ବାର କହୁଛନ୍ତି ତାହାର ଦାରୁଣ ସ୍ମୃତି ସେତିକି ଅଧିକ ଲୋକଙ୍କ ମନରେ ଜାଗୁଅଛି । ରାଉଲାଟ ଆଇନ ଏବେ ବଡ଼ଲାଟ ସଭାରେ ପଡ଼ି ଉଠାଇ ଦିଆଯାଇଅଛି । ଏ ଆଇନ ଅଢ଼େଇ-ବର୍ଷରୁ କିଛି ବେଶି ଦିନ ରହିଲା । ମାତ୍ର ଏହାଦ୍ୱାରା କିଛି କାର୍ଯ୍ୟ ହୋଇନାହିଁ । କେବଳ ଶାହାଣଦିଆ ହତିଆର ପରି ଏ କେତେଦିନ ସରକାରଙ୍କ ମାଲଖାନାରେ ରହି ରହି ଶେଷକୁ ରଦ୍ଦ ପାଇଲା । କିନ୍ତୁ ଏହି ରାଉଲାଟ ଆଇନ ସମସ୍ତ ଉତ୍ପାତର ମୂଳ । ୧୯୧୯ ସାଲ ମାର୍ଚ୍ଚ ମାସ ୩୦ ତାରିଖ ରାତି ୧୨ଟା ବେଳେ ଦେଶବାସୀ ସକଳ ଶ୍ରେଣୀ ଜନ-ସାଧାରଣଙ୍କର ଘୋର ଆପତ୍ତି ଏବଂ ବଡ଼ଲାଟ ସଭାର ସମସ୍ତ ବେସରକାରୀ ଦେଶୀୟ ସଭ୍ୟଙ୍କ ଅମତ ସତ୍ତ୍ୱେ ଏହା ଧାର୍ଯ୍ୟ ହୋଇଥିଲା । ପ୍ରଜା ସାଧାରଣଙ୍କର ସକଳ ପ୍ରକାର ସ୍ୱାଧୀନତା ଲୋପ କରିବା ଏ ଆଇନର ଉଦ୍ଦେଶ୍ୟ ଥିଲା । ସାଧାରଣ ସଭା ସମିତି କରିବା, ସ୍ୱଚ୍ଛନ୍ଦରେ ଆପଣାର ମତ ବ୍ୟକ୍ତ କରିବା ପ୍ରଭୃତି ଜନସାଧାରଣଙ୍କର ସହଜ ଅଧିକାର ଏହାଦ୍ୱାରା ନଷ୍ଟ କରାଯାଇଥିଲା, ଯେପରିକି ସେମାନଙ୍କ ଗୋଡ଼ରେ ବେଡ଼ି ହାତରେ କଡ଼ି ଏବଂ ମୁହଁରେ ଲଗାମ ଦିଆଗଲା । ଦେଶର ସାଧାରଣ ମତ ସରକାର ଆଗ୍ରାହ୍ୟ

କରିବାରୁ ବଡ଼ଲାଟ ସଭାର କେନ୍ଦ୍ର ମୁଖିଆବ୍ୟକ୍ତି ଆପଣାର ସଭ୍ୟପଦ ତ୍ୟାଗ କରିଥିଲେ । ମାତ୍ର ତାହାଛଡ଼ା ଆଉ କାହାରିକୁ କିଛି ଉପାୟ ଦେଖାଯାଇ ନ ଥିଲା । ମହାତ୍ମାଗାନ୍ଧୀ କେବେ କୌଣସି ଲାଟ ସଭାର ମେମ୍ବର ହୋଇ ନାହାନ୍ତି । ଭାରତବାସୀଙ୍କର ଉପକାର ଆଶାରେ ଏବଂ ଭାରତ ଜାତିର ସ୍ୱାଧୀନତା ନିମନ୍ତେ ସେ ଏତେକାଳ ନାନା ଘଟଣାରେ ସରକାରଙ୍କ କାର୍ଯ୍ୟର ସହାୟତା କରି ଆସୁଥିଲେ । ରାଉଲାଟ ଆଇନ ଯେ ପ୍ରକାରେ ଲୋକମତ ବିରୁଦ୍ଧରେ ଜାରି କରାଗଲା ସେଥିରୁ ସେ ସରକାରଙ୍କ ମତିଗତି ଭଲରୂପେ ବୁଝିପାରିଲେ । ପ୍ରବଳ ଲୋକମତହିଁ ପ୍ରଜା ସାଧାରଣଙ୍କ ପ୍ରଧାନ ବଳ । ତାହା ଉପେକ୍ଷା କରାଗଲେ ଆଉ ପ୍ରଜାଙ୍କର ବା ଉପାୟ କଅଣ ? ଏହି ନିରୁପାୟ ଅବସ୍ଥାରେ ଆଇନ ଅମାନ୍ୟ କରି ସତ୍ୟାଗ୍ରହ ବ୍ରତପାଳନ କରିବାକୁ ମହାତ୍ମାଗାନ୍ଧୀ ସ୍ଥିର କଲେ । ରାଉଲାଟ ଆଇନକୁ ରଦ୍ଦ କରିବା ଲାଗି ୧୯୧୯ ମସିହା ଏପ୍ରିଲ ମାସ ୬ ତାରିଖ ଦିନ ମହାତ୍ମାଗାନ୍ଧୀଙ୍କର ସତ୍ୟାଗ୍ରହ ବ୍ରତର ଆରମ୍ଭ । ଦୈବଯୋଗକୁ ସେ ବର୍ଷ ସେ ଦିନ ହିନ୍ଦୁମାନଙ୍କର ରାମ-ନବମୀ ବ୍ରତ ପଡ଼ିଥିଲା ଏବଂ ମୁସଲମାନମାନଙ୍କର ଧର୍ମ ଅନୁସାରେ ମଧ୍ୟ ତାହା ଏକ ପର୍ବଦିନ ଥିଲା । ଭାରତୀୟ ପ୍ରଜାସାଧାରଙ୍କର ସ୍ୱାଧୀନତା ରକ୍ଷା ନିମନ୍ତେ ଏହା ହିନ୍ଦୁ ମୁସଲମାନମାନଙ୍କର ମହା ମିଳନ ଦିବସ । ରାଉଲାଟ ଆଇନ ଫଳରେ ପଞ୍ଜାବରେ ଅଶାନ୍ତି ବଢ଼ିଲା । ଶେଷକୁ ୧୩ ତାରିଖ ଦିନ ଜାଲିଆନାୱାଲା ବାଗରେ ଡାୟାର ସାହେବ ଯେ ଭୀଷଣ ହତ୍ୟାକାଣ୍ଡ ଘଟାଇଲେ ତହିଁର ଫଳରେ ମୁହୂର୍ତ୍ତକ ମଧ୍ୟରେ ଶତ ଭାରତବାସୀ ହିନ୍ଦୁ ମୁସଲମାନ ଓ ଶିଖଙ୍କର ରକ୍ତନଦୀ ବୋହିଲା । ସେ ରକ୍ତର ଦାଗ ପ୍ରତ୍ୟେକ ଭାରତବାସୀ ହୃଦୟରେ ଏବେ ସୁଦ୍ଧା ଲାଗି ରହିଅଛି । ମାତ୍ର ବିଧାତାଙ୍କର ମହିମା ଅଗମ୍ୟ । ଅପ୍ରେଲ ମାସ ୬ ତାରିଖ ଦିନ ହିନ୍ଦୁ ମୁସଲମାନ ତଥା ଭିନ୍ନ ଭିନ୍ନ ସମ୍ପ୍ରଦାୟ ସମଗ୍ର ଭାରତବାସୀଙ୍କର ଯେ ମିଳନର ସୂତ୍ରପାତ ହୋଇଥିଲା ଜାଲିଆନାୱାଲାର ପବିତ୍ର ରକ୍ତରେ ତହିଁ ଉପରେ ମୋହର ଛାପା ଦିଆଗଲା । ଏ ଏକତା ମିଳନ କେବେ ତୁଟିବାର ନୁହେଁ, କେବେ ଭାଙ୍ଗିବାର ନୁହେଁ । ବାସ୍ତବରେ ୧୯୧୯ ମସିହାର ଅପ୍ରେଲ ୬ ତାରିଖଠାରୁ ୧୩ ତାରିଖ ମଧ୍ୟରେ ଭାରତର ଜାତୀୟତା ଗଠିତ ହୋଇଅଛି । ଏତେ ଜାତି, ଏତେ ଧର୍ମ, ଏତେ ଭାଷା, ଏତେ ମତ ମଧ୍ୟରେ ଭାରତର ଏକତା ଅସମ୍ଭବ ବୋଲି ଯାହା ଚିରଦିନ ଲୋକେ ମନେ କରିଥିଲେ ସେ ଧାରଣା ଦୂର ହେଲା । ହିନ୍ଦୁ ମୁସଲମାନ ଓ ଅନ୍ୟାନ୍ୟ ସମ୍ପ୍ରଦାୟ ମଧ୍ୟରେ ଏକତା ବିଷୟରେ ଆଜି କଂଗ୍ରେସ ଯେ ବାରମ୍ବାର ଉପଦେଶ ଦେଉଅଛନ୍ତି ମହାତ୍ମାଗାନ୍ଧୀ ନିଜେ ୧୯୧୯ ମସିହାରେ ସେ ଏକତାର ମୂଳପିଣ୍ଡ ସ୍ଥାପିଛନ୍ତି । ଭାରତ ପକ୍ଷରେ ଯଥାର୍ଥରେ ଏ ସପ୍ତାହ ମହାପୁଣ୍ୟକାଳ । ୧୯୨୦ ମସିହାଠାରୁ ବର୍ଷକୁ

ବର୍ଷ ଭାରତବାସୀ ସମସ୍ତେ ଏ ପୁଣ୍ୟକାଳର ଉପଯୁକ୍ତ ପାଳନା ମଧ୍ୟ କରୁଛନ୍ତି । ମହାତ୍ମାଗାନ୍ଧୀ ବର୍ତ୍ତମାନ ଜେଲରେ । ସେ ଜେଲରେ ଥାଆନ୍ତୁ ବା ଯେଉଁଠାରେ ଥାଆନ୍ତୁ, ସେ ଯାହା ଆରମ୍ଭ କରି ଯାଇଛନ୍ତି ତାହା ସମସ୍ତଙ୍କୁ ପାଳିବାକୁ ହେବ । କାରଣ ସେ ଯାହା ଆରମ୍ଭ କରିଛନ୍ତି ସେତ ତାଙ୍କର ନିଜର ବ୍ୟକ୍ତିଗତ କଥା ନୁହେଁ, ତାହା ସମଗ୍ର ଭାରତର ଜାତୀୟ କାର୍ଯ୍ୟ ।

ଉତ୍କଳରେ ଜାତୀୟ ସପ୍ତାହ ଯଥା ବିଧିରେ ପାଳନ କରାଯିବ ସନ୍ଦେହ ନାହିଁ । ମାତ୍ର ଯେପରି ଏଥି ମଧ୍ୟରେ ଦେଖା ଯାଇଅଛି ଉତ୍କଳର କୌଣସି କୌଣସି ସ୍ଥାନରେ ଲୋକେ ଏ ସବୁ ଘଟନାକୁ ପାଳନ କରିବାକୁ ଯାଇ ଟିକିଏ ତାମସିକ ଭାବ ଦେଖାଉଛନ୍ତି । ଗଲା ମାର୍ଚ୍ଚ ମାସ ୧୩ ତାରିଖ ଉତ୍କଳରେ ଗାନ୍ଧୀ ଦିବସ ଧାର୍ଯ୍ୟ କରାଯାଇଥିଲା । ଗ୍ରାମମାନଙ୍କରେ ଲୋକେ ଅବଶ୍ୟ ସେ ଦିନ ପାଳନ କରିଥିଲେ । କିନ୍ତୁ ଖବର ମିଳୁଛି ଯେ କୌଣସି କୌଣସିଠାରେ ଯାତ୍ରା ସଙ୍କୀର୍ତ୍ତନ ଆଦିକରି ଆଡମ୍ବର ସହକାରେ ଭୋଜନ ଏବଂ ମଉଜ ମଜ୍‌ଲିସ ଆଦିର ବ୍ୟବସ୍ଥା ହୋଇଥିଲା । ଏହା ଗାନ୍ଧୀ ଦିବସର ବିହିତ ପାଳନା ନୁହେଁ । ବରଂ ଉପବାସ ରହିବା ଉଚିତ ଥିଲା । ସୁଖର କଥା ଅନେକ ସ୍ଥାନରେ ଲୋକେ ଉପବାସ ମଧ୍ୟ କରିଥିଲେ । ଆମ ଦେଶରେ ବର୍ତ୍ତମାନ ଅବସ୍ଥା ଯେପରି ସେଥିରେ ମେଳା ମହୋତ୍ସବ କରିବା ସୁନ୍ଦର କି ? ଦେଶବାସୀଙ୍କର ବ୍ୟବହାର ଏବଂ ଦେଶର ଅବସ୍ଥାରେ ଦୁଃଖିତ ହୋଇ ମହାତ୍ମାଗାନ୍ଧୀ ନିଜେ କେତେଦିନ ଉପବାସ ରହୁଛନ୍ତି । ଦେଶପାଇଁ ଆଜି ସେ ଇତର ସାଧାରଣ ଲୋକଙ୍କ ପରି ଜେଲ୍ ଯନ୍ତ୍ରଣା ଭୋଗୁଛନ୍ତି । ରାଉଲଟ ଆଇନ ଉଠିଗଲାଣି ସତ, କିନ୍ତୁ ଜାଲିଆନାୱାଲାର ରକ୍ତର ଦାଗ ପର୍ଯ୍ୟନ୍ତ ଲିଭିନାହିଁ । ପଞ୍ଜାବର ପ୍ରେତାତ୍ମା ଏ ପର୍ଯ୍ୟନ୍ତ ମୁକ୍ତି ପାଇନାହାନ୍ତି । ମୁସଲମାନମାନଙ୍କର ଖିଲାଫତ ଉପରେ ଯେ ଆଘାତ ହୋଇଅଛି ସେ ଘା ଏ ପର୍ଯ୍ୟନ୍ତ ଶୁଖିନାହିଁ । ଏ ସବୁ ଲାଗି ଭାରତବାସୀ ବ୍ରତ, ଉପବାସ, ଉପାସନା ଆଦି ଅବଶ୍ୟ କରିବେ । ଈଶ୍ୱରଙ୍କ ନିକଟରେ ପ୍ରାଣର ଦୁଃଖ ଜଣାଇ ୩୩ କୋଟି ଭାରତବାସୀ ଆଖିରୁ ଯେ ଲୁହ ଗଡ଼ାଇବେ ସେହି ଶୁଦ୍ଧ ଗଙ୍ଗାଜଳରେ ପଞ୍ଜାବର ରକ୍ତଦାଗ ଧୁଆହେବ । ଜାଲିଆନାୱାଲାର ପ୍ରେତାତ୍ମା ଉଦ୍ଧାର ପାଇବେ । ମୁସଲମାନ ହୃଦୟର ଆଘାତ ଶାନ୍ତ ପାଇବାଲାଗି ତାହାହିଁ ମଲମ ହେବ । ଖୋଳ କରତାଳ ବଜାଇ ସଙ୍କୀର୍ତ୍ତନ କରିବାର ପ୍ରୟୋଜନ ନାହିଁ । କେବଳ ଭଜନ ସ୍ମରଣ ନିମନ୍ତେ କେହି ଟିକିଏ ଦରକାର କଲେ ତାହା କରିପାରନ୍ତି । ମାତ୍ର ମହାତ୍ମାଗାନ୍ଧୀ ସ୍ୱରାଜ୍ୟ ଧର୍ମର ପ୍ରଧାନ ଆୟୁଧ ରୂପେ ଦେଶବାସୀଙ୍କ ହାତେ ଯେ ଅରଟ

ଦେଇଛନ୍ତି ତାହାଙ୍କୁ ନିଷ୍ଠା ଓ ଭକ୍ତିର ସହିତ ଚଳାଇବାକୁ ହେବ । ଯେଉଁମାନଙ୍କର ଅରଟ ନାହିଁ ସେମାନେ ଏହି ସପ୍ତାହ ମଧ୍ୟରେ ତିଆରି କରାଇ ଦିନେ ହେଲେ ଚଳାନ୍ତୁ । ଏହି ଘଟନାରେ ଓଡ଼ିଶାର ଗୃହେ ଗୃହେ ଅରଟ ପୂଜାପାଉ । ଅରଟର ମଧୁର ଧ୍ୱନିରେ ଭଗବାନ ସନ୍ତୁଷ୍ଟ ହେବେ । ଅରଟରେ ସୂତାକାଟି ଭାରତରେ ସ୍ୱରାଜ୍ୟ ସିଦ୍ଧି ନିମନ୍ତେ ଉତ୍କଳବାସୀ ଜାତିର ଭାଗ୍ୟଡ଼ୋର ତିଆରି କରନ୍ତୁ ।

('ସମାଜ' ତା ୮ । ୪ । ୨୨)

---

# ମହାତ୍ମାଙ୍କ କଷଣ ଭୋଗ

ଗଲା ମାସ ୧୮ ତାରିଖ ମହାତ୍ମାଗାନ୍ଧିଙ୍କର ଜେଲ ହୁକୁମ ହୋଇଥିଲା । ଆଜିକି ପ୍ରାୟ ଏକମାସ ହେଲା ସେ ଜେଲରେ ଅଛନ୍ତି । ପ୍ରଥମେ କେତେଦିନ ସେ ସାବରମତି ଜେଲରେ ଥିଲେ । ଏବେ ପୁନା ବଡ଼ ଜେଲରେ ରହିଛନ୍ତି । ଅନ୍ୟାନ୍ୟ ଅସହଯୋଗୀ କଏଦୀଙ୍କର ଜେଲରେ ରହିବାବେଳେ ନାନାପ୍ରକାର କଷ୍ଟ ଅସୁବିଧାର କଥା ଶୁଣା ଯାଉଥିଲା । ମାତ୍ର ମହାତ୍ମାଙ୍କ ବିଷୟରେ ପ୍ରଥମ କେତେଦିନ କିଛିମାତ୍ର ଶୁଣାଗଲା ନାହିଁ । ତାଙ୍କୁ ଯେତେକଷ୍ଟ ଦିଆଗଲେ ସେତ ସବୁ ସହିବାକୁ ପ୍ରସ୍ତୁତ । ଛବର୍ଷ ଜେଲଦଣ୍ଡକୁ ଯେ କି ଲଘୁଦଣ୍ଡ ହେଲା ବୋଲି କହି ହସି ହସି ଜେଲକୁ ଗଲେ ତାଙ୍କ ପକ୍ଷରେ କାରାବାସର ଯନ୍ତ୍ରଣା ବିନା ଆପତ୍ତିରେ ସହିବା ତ ଆଶ୍ଚର୍ଯ୍ୟ କଥା ନୁହେଁ, ଜେଲରେ ତାଙ୍କୁ କିପରି ଅବସ୍ଥାରେ ରଖାଯାଇଅଛି ସେ ବିଷୟରେ ବର୍ତ୍ତମାନ କେତେକ କଥା ଖବରକାଗଜମାନଙ୍କରେ ପ୍ରକାଶ ପାଇଅଛି । ତାଙ୍କର ଜଣେ ପରମଭକ୍ତ ଶ୍ରୀଯୁକ୍ତ ରାଜଗୋପାଳ ଆଚାରି ଏବଂ ତାଙ୍କର କନିଷ୍ଠ ପୁତ୍ର ନିଜ ଆଖିରେ ଯାହା ଦେଖି ଆସିଅଛନ୍ତି ସେଥିରେ ମହାତ୍ମା ଅବଶ୍ୟ ତିଳେମାତ୍ର ବିଚଳିତ ନୁହନ୍ତି । ମାତ୍ର ତାହା ଶୁଣିଲେ କିଏ ଧୈର୍ଯ୍ୟଧରି ରହିପାରିବ ? ଜେଲଯିବା ପୂର୍ବରୁ ଆଣ୍ଠୁ ନ ଡେଇଁବାଭଳି ସେପରି ଖଣ୍ଡିଏ ଖଦଡଲୁଗା ପିନ୍ଧୁଥିଲେ ସେହିପରି ଖଣ୍ଡିଏ ଲୁଗା ପିନ୍ଧିଛନ୍ତି । ସାଧାରଣ କଏଦୀଙ୍କୁ ଯେପରି ଦୁଇଖଣ୍ଡ କମ୍ବଳ ଦିଆଯାଇଥାଏ ଆଜି ମହାତ୍ମାଗାନ୍ଧିଙ୍କର ସେହି ଦୁଇଖଣ୍ଡ କମ୍ବଳ ମାତ୍ର ସମ୍ବଳ । ଶୋଇବା ବେଳେ ମୁଣ୍ଡକୁ ଦେବାକୁ ସୁଦ୍ଧା ଖଣ୍ଡେ ତକିଆ ନାହିଁ । ଆଗେ ଦିନ ଭିତରେ ତିନିଥର ଛେଳିଦୁଧ, ରୁଟି ଏବଂ ସୁରଙ୍ଗୀ କମଳା ଖାଇବା ତାଙ୍କର ଅଭ୍ୟାସ ଥିଲା । ଜେଲରେ ଅବଶ୍ୟ ତାଙ୍କୁ ଏହି ଜିନିଷ ଦିଆଯାଉଛି । ମାତ୍ର ତାହା ପରିମାଣରେ ଏତେ କମ ଯେ ମହାତ୍ମା ଏବେ ଆଉ ତିନିଥର ନ ଖାଇ ଦୁଇଥର ମାତ୍ର ଖାଉଛନ୍ତି । ସେ ଯେଉଁ ଘରେ ଥାଆନ୍ତି ଅନ୍ୟାନ୍ୟ କଏଦୀଖାନା ଭଳି ସେ ଘରେ ସନ୍ଧ୍ୟାବେଳକୁ ଚାବି ଦିଆଯାଏ ପୁଣି ସକାଳେ ଫିଟେ । ଆପଣା ଇଚ୍ଛା ମୁତାବକ ବହି କିମ୍ବା ଖବରକାଗଜ ପଢ଼ିବାକୁ ସେ ପାଉନାହାନ୍ତି । ଭକ୍ତ ରାଜଗୋପାଳ ଏବଂ ପୁତ୍ର ଦେବୀଦାସ ମହାତ୍ମାଙ୍କ ସଙ୍ଗେ ଘଣ୍ଟାକ ଉପରେ କଥାବାର୍ତ୍ତା ହେଲେ; ଜେଲ ସୁପରିଣ୍ଟେଣ୍ଡେଣ୍ଟ ଚଉକି ଉପରେ ବସିଥାନ୍ତି; ମହାତ୍ମା ପ୍ରାୟ ଦେଢ଼ଘଣ୍ଟାକାଳ ଛିଡ଼ା ହୋଇ ଏମାନଙ୍କ ସଙ୍ଗେ କଥାବାର୍ତ୍ତା କଲେ । ବିଧିର ବିଧାନ ବିଚିତ୍ର । ଦିନେ ଯାହାଙ୍କ ଦର୍ଶନ ପାଇବାପାଇଁ ହଜାର ହଜାର ଲୋକ

୨୫।୩୦ କୋଶ ଦୂରରୁ ବ୍ୟାକୁଳ ହୋଇ ଦଉଡ଼ି ଆସୁଥିଲେ ଏବଂ ଦେଖିବା ମାତେ ଆପଣାକୁ କୃତାର୍ଥ ମଣୁଥିଲେ ଆଜ ସେ କାହାକୁ ଦେଖିବାକୁ ପାଉନାହାନ୍ତି । ଲକ୍ଷପତି, କୋଟିପତିମାନେ ସୁଯୋଗ୍ୟ ପ୍ରବୀଣ ବ୍ୟକ୍ତିମାନେ ଯାହାଙ୍କ ନିକଟରେ ଘଣ୍ଟାଏ ଛିଡ଼ା ହେବାର ସୁଯୋଗ ପାଇଲେ ଧନ୍ୟ ହେଉଥିଲେ ଆଜ ସେ ମହାତ୍ମା ଇତର ସାଧାରଣ କଏଦୀଙ୍କ ପରି ଜଣେ ସାଧାରଣ ଜେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଖରେ ଛିଡ଼ା ହୋଇ ରହିଛନ୍ତି । ଚିତ୍ତରଞ୍ଜନ,ମୋତିଲାଲ ନେହେରୁଙ୍କ ପରି ଲକ୍ଷ ଲକ୍ଷ ଟଙ୍କା ରୋଜଗାରି ଦେଶର ପ୍ରଧାନ ପ୍ରଧାନ ଲୋକେ ଯାହାଙ୍କ ଗୁଣରେ ମୁଗ୍ଧ ହୋଇ ପ୍ରେମରେ ବଶୀଭୂତ ହୋଇ ସମସ୍ତ ଭୋଗସମ୍ପଦକୁ ତୃଣବତ୍ ଜ୍ଞାନକରି ଦେଶଲାଗି ସନ୍ନ୍ୟାସୀ ହୋଇଛନ୍ତି ଏବଂ ତାହାର ଫଳରେ ଜେଲ ଯନ୍ତ୍ରଣା ଭୋଗୁଛନ୍ତି ଆଜ ସେହି ମହାତ୍ମାଙ୍କୁ ପେଟ ପୂରିବାଭଳି ଛେଳିଦୁଧ ଠିକଏ ମିଳୁନାହିଁ, ମନବୋଧ କରି ଖାଇବାକୁ ୨ଟାରୁ ୩ଟା କମଲାଲେମ୍ବୁ ମିଳୁନାହିଁ । ଯାହାଙ୍କ ଯିବା ବାଟରେ ଲୋକେ ଫୁଲ ଆଞ୍ଜୁଳି ପକାଇ ଫୁଲରେ ସାଜସଜ୍ଜା କରି କୃତକୃତ୍ୟ ହେଉଥିଲେ ଏବେ ତାଙ୍କ ଶୋଇଲାବେଳେ ମୁଣ୍ଡରେ ଦେବାକୁ ଖଣ୍ଡେ ମାଣ୍ଡି ମିଳୁନାହିଁ । କମଳ ଉପରେ ପକାଇବାକୁ ଖଣ୍ଡେ ବିଛଣା ଚଦର ପର୍ଯ୍ୟନ୍ତ ନାହିଁ । ମାତ୍ର ଏ ସମସ୍ତ ଅସୁବିଧା ଦୁଃଖକଷ୍ଟ, ଯନ୍ତ୍ରଣା ମଧ୍ୟରେ ମହାତ୍ମା ଅଚଳ ଅଟଳସିଦ୍ଧି ଯୋଗୀପରି ଦୃଢ଼ ଓ ପ୍ରଫୁଲ୍ଲ ରହିଛନ୍ତି । ଏପରିକି ଜେଲଖାନାରେ ସେ ଭୋଗୁଥିବା ଅସୁବିଧା ବିଷୟ ଖବରକାଗଜରେ ପ୍ରକାଶିତ ହେବା ତାଙ୍କ ଇଚ୍ଛା ନୁହେଁ । ମହାପୁରୁଷମାନଙ୍କର ଏପରି ଅସୁବିଧା ଭୋଗିବା ଶାସ୍ତ୍ର ପୁରାଣ ଇତିହାସମାନଙ୍କରେ ଯୁଗେଯୁଗେ ଦେଖାଯାଇଅଛି । ନିଜେ ରାମଚନ୍ଦ୍ର କହିଥିଲେ "ପ୍ରାତର୍ଭବାମି ବସୁଧାଧିପ ଚକ୍ରବର୍ତ୍ତୀ, ସୋଽହଂ ବ୍ରଜାମି ବିପିନେ ଜଟିଳ ତପସ୍ୱୀ ।" ରାତି ପାହିଲେ ଯେ ମୁଁ ସମସ୍ତ ବସୁଧାର ଚକ୍ରବର୍ତ୍ତୀ ହୋଇଥାନ୍ତି ଆଜ ସେହି ମୁଁ ଜଟା ବଲ୍କଲ ଧାରି ତପସ୍ୱୀ ବେଶରେ ଅରଣ୍ୟରେ ଭ୍ରମୁଅଛି । ମହାତ୍ମାମାନଙ୍କ ଜୀବନ ତ ପର ନିମନ୍ତେ; ମାନବର କଲ୍ୟାଣ ନିମନ୍ତେ ଏବଂ ଜଗତର ହିତ ନିମନ୍ତେ । ନିଜେ ଦୁଃଖଯନ୍ତ୍ରଣା ସହି ସେମାନେ ଜଗତକୁ ଶିକ୍ଷା ଦେଇଯାଆନ୍ତି । ତେଣୁ ମହାତ୍ମାଗାନ୍ଧି ଆଜ ଜେଲରେ । କାହାଲାଗି ? ପୁଣ୍ୟଭୂମି ଭାରତରୁ ପାପ ନିବାରଣଲାଗି କୋଟି କୋଟି ନରନାରୀଙ୍କର ପ୍ରାଣରେ ଶାନ୍ତି ଏବଂ ପରିବାରରେ ସୁଖ ଦେବାଲାଗି; ସତ୍ୟର ଜୟଲାଗି, ଅହିଂସା ଧର୍ମର ସ୍ଥାପନଲାଗି । ମାତ୍ର ସେ ଏହିପରି ଜେଲ ଭୋଗୁଥିବେ । କିନ୍ତୁ ଦେଶବାସୀଙ୍କୁ ଯେ ଦୀକ୍ଷା ଦେଇଗଲେ, ଯେ ରାସ୍ତା ଦେଖାଇ ଦେଇଗଲେ, ଯେ ଉପଦେଶ ଶୁଣାଇଗଲେ ଦେଶବାସୀ ତଦନୁସାରେ ଯେବେ ନ ଚାଲନ୍ତି ପାପର ଭାଗୀ କିଏ ? ଦେଶବାସୀ ! ଦେଶବାସୀ ଏତେବେଳେ ସୁଦ୍ଧା ଅରଟ ଧରିବେ ନାହିଁକି ? ବିଦେଶୀ ପିନ୍ଧିବା ଛାଡ଼ିବେ

ନାହିଁକି ? ପାଷଣ୍ଡମାନଙ୍କୁ ଦମନ ବା ବଶୀଭୂତ କରିବା ଲାଗି ଶ୍ରୀ ଚୈତନ୍ୟଦେବ ଭକ୍ତ-ମାନଙ୍କୁ ଖୋଲ କରତାଳ ଆୟୁଧ ରୂପେ ଧରାଇ ଯାଇଥିଲେ । ମହାତ୍ମାଗାନ୍ଧି ସେହିପରି ପାଷାଣ୍ଡ ଦଳନ ଲାଗି ଦେଶବାସୀଙ୍କୁ ଅର୍‌ଖ ଆୟୁଧ ଧରାଇ ଯାଇଛନ୍ତି । ଜେଲ୍ ଗଲାବେଳେ ବାରମ୍ବାର କହିଯାଇଛନ୍ତି, "ମୁଁ ଥାଏ ବା ନ ଥାଏ, ଏହି ଆୟୁଧ ଚଳାଅ, ମୁକ୍ତି ପାଇବ ।" ଏ ଉପଦେଶ ଭୁଲିଲେ ଆମ୍ଭମାନଙ୍କର ଆଉ ରକ୍ଷା ନାହିଁ । ମହାତ୍ମାଗାନ୍ଧି ଜେଲରେ ଏହିପରି ଆମ୍ଭମାନଙ୍କ ଲାଗି ଦୁଃଖ ଭୋଗୁଥିବେ । ଦେଶର ଶିକ୍ଷିତ ଯୁବକମାନେ ତାଙ୍କଆଡ଼କୁ ଟିକିଏ ଚାହିଁବ ନାହିଁକି ? ଦେଶର କାର୍ଯ୍ୟଲାଗି ଦେଶର ଲକ୍ଷ ଲକ୍ଷ ଅଶିକ୍ଷିତ ପଲ୍ଲୀବାସୀଙ୍କ ମଧ୍ୟରେ ମହାତ୍ମାଗାନ୍ଧିଙ୍କ ଧର୍ମପ୍ରଚାର ଲାଗି ତୁମ୍ଭେମାନେ ବାହାରିଲେ କେଡ଼େ ଗୌରବର କଥା ହୁଅନ୍ତା ! ମହାତ୍ମାଗାନ୍ଧି ଜେଲରେ ରହିଥିବେ, ଉତ୍କଳବାସୀ ତାଙ୍କ କଥା ମନେ ନ ପକାଇ ପୂର୍ବପରି ମାମଲା ମକଦ୍ଦମାରେ ମାତିଥିବ, ଅଫିମ ଗଞ୍ଜାଇ ମଦ ଖାଇ ଆତ୍ମା ଅଶୁଦ୍ଧ କରୁଥିବ । ଏ ପାପର ଫଳ ଯେ କେବଳ ତୁମ୍ଭଙ୍କୁ ଭୋଗିବାକୁ ହେବ ତାହା ନୁହେଁ; ପୁତ୍ରପୌତ୍ରାଦି କ୍ରମେ କେତେ ଯୁଗ ଭୋଗିବାକୁ ହେବ କିଏ କହିପାରେ ? ମହାତ୍ମା ବାହାରେ ଥିବାବେଳେ ତାଙ୍କ ଉପଦେଶ ଯେତେ ମାନୁଥିଲେ ତାଙ୍କ ଜେଲ ଯିବାପରେ ଅଧିକ ଭକ୍ତି ଓ ବିଶ୍ୱାସରେ ତାହା ମାନିବା ଏବଂ ପାଳିବା ଉଚିତ । ବରଂ ତାଙ୍କ ଉପଦେଶ ମାନି ଜେଲଯିବା ବା ମରିବା ଭଲ । କିନ୍ତୁ ତାଙ୍କୁ ଜେଲରେ ଏ ଅବସ୍ଥାରେ ଦେଖି ମାୟାମୋହରେ ପଡ଼ି ଘରେ ନିଶ୍ଚିନ୍ତ ହୋଇ ବସି ରହିବା ଘୋର ଅଧର୍ମ । ଗୋପୀମାନେ ଠିକ୍ କହିଥିଲେ—

"ତହିଁ ମଲେ କି ହୁଅନ୍ତା କାରଣ
ଯାହା ଉପେକ୍ଷି ଗଲେ ନାରାୟଣ ।"

ଏହିପରି ଅଟଳଭକ୍ତି, ବିଶ୍ୱାସ ଓ ପ୍ରୀତି ନ ହେଲେ ମୁକ୍ତି ମିଳିବ ନାହିଁ ।

('ସମାଜ' ତା ୧୫ । ୨ । ୨)

# ରାଜକୁଡ଼ାରେ ସତ୍ୟାଗ୍ରହ

ଓଡ଼ିଶା ଗଡ଼ଜାତମାନଙ୍କ ପରି କାଠିଆବାଡ଼ରେ ଅନେକଗୁଡ଼ିଏ ଛୋଟ ଛୋଟ ରାଜୁଡ଼ା ରାଜ୍ୟ ଅଛି । ଲିମ୍ବ୍ଡି ସେମାନଙ୍କ ମଧ୍ୟରୁ ଗୋଟିଏ । ଗଲା ଅପ୍ରେଲ ୧୩ ତାରିଖ ଦିନ ସେଠାରେ ଗୋଟିଏ ଭାରି ଚହଳ ଲାଗିଯାଇଥିଲା । ସେହି ରାଜ୍ୟର ଅମୃତଲାଲ ସେଠ ନାମରେ ଜଣେ ବ୍ୟକ୍ତିଙ୍କୁ ଷ୍ଟେଟର ଲୋକମାନଙ୍କୁ ୧୩ ତାରିଖ ଦିନ ହରତାଳ କରିବାକୁ ପରାମର୍ଶ ଦେଇଥିବା ଅପରାଧରେ ୨୪ ଘଣ୍ଟା ମଧ୍ୟରେ ରାଜ୍ୟରୁ ବାହାର କରିଦେବା ନିମନ୍ତେ ରାଜା ଆଦେଶ ଦେଇଥିଲେ । ଅମୃତଲାଲ ଏଥିପୂର୍ବେ ଏହି ଷ୍ଟେଟରେ ଜଣେ ମାଜିଷ୍ଟ୍ରେଟ ଥିଲେ । ଏବେ ପ୍ରାୟ ଦେଢ଼ବର୍ଷ ହେଲା ସେ ଚାକିରି ଛାଡ଼ିଦେଇ କାଠିଆବାଡ଼ର ଜଣେ ପ୍ରଧାନ କର୍ମୀରୂପେ କାର୍ଯ୍ୟ କରୁଅଛନ୍ତି । 'ସୌରାଷ୍ଟ୍ର' ନାମକ ଖଣ୍ଡେ ସାପ୍ତାହିକ କାଗଜ ସେ ଚଳାନ୍ତି । ଏ କାଗଜ ଲିମ୍ବ୍ଡି ଷ୍ଟେଟ ମଧ୍ୟରେ ଛପା ହୁଏ ନାହିଁ । ନିକଟବର୍ତ୍ତୀ ଖାଲସାମୁଲକ ରଣପୁର ସହରରୁ ଏହା ବାହାରେ । ଏହି ପତ୍ରିକାରେ ଲୋକମାନଙ୍କୁ ୧୩ ତାରିଖ ଦିନ ହରତାଳ କରିବାକୁ ପରାମର୍ଶ ଦେଇଥିବା ତାଙ୍କର ପ୍ରଧାନ ଅପରାଧ । ରାଜ୍ୟର ପ୍ରଧାନମନ୍ତ୍ରୀଙ୍କଠାରୁ ଏହି ଆଦେଶ ପାଇ ସେ ତାହା ବେଆଇନ ଓ ଅନ୍ୟାୟ ଥିବା ମନେକରି ପାଳନ କରିବେ ନାହିଁ ବୋଲି ସ୍ଥିର କଲେ ଏବଂ ତାହାଙ୍କର ଏ ଇଚ୍ଛା ପତ୍ରଦ୍ୱାରା ପ୍ରଧାନମନ୍ତ୍ରୀଙ୍କୁ ଜଣାଇଦେଲେ । ହେ ଯାହାହେଉ ପୁଲିସ ତାଙ୍କୁ ଜୋର କରି ରାଜ୍ୟରୁ ବାହାର କରିଦେବାର ହୁକୁମ ଦେଖାଇ ତାଙ୍କୁ ଗୋଟିଏ ଘୋଡ଼ା ଗାଡ଼ିରେ ବସାଇ ରାଜ୍ୟର ସୀମାବାହାରେ ଗୋଟିଏ ରେଲ୍ୱେ ଷ୍ଟେସନକୁ ନେଇଗଲେ । ଶେଠ ମହାଶୟ ସେଠାରୁ ପୁଲିସକୁ ଜଣାଇଦେଲେ ଯେ ଅଧଘଣ୍ଟାକ ପରେ ସେ ପୁଣି ରାଜ୍ୟ ଭିତରକୁ ଯିବେ । ବାସ୍ତବିକ ସେ କିଛି ସମୟ ପରେ ମଧ୍ୟ କେତେକ ସ୍ୱେଚ୍ଛାସେବକଙ୍କ ସହିତ ଶୋଭାଯାତ୍ରା କରି ଜାତୀୟ ସଙ୍ଗୀତ ଗାଇ ଗାଇ ରାଜ୍ୟ ଭିତରକୁ ପଶିଲେ । ରାତି ଆଠଟାବେଳେ ପୁଲିସ ତାଙ୍କୁ ଗୋଟିଏ ଟାଙ୍ଗାରେ ବସାଇ ହାଜତକୁ ନେଇଗଲେ । ଏଥିମଧ୍ୟରେ ଏହି ଖବର ଚାରିଆଡ଼େ ବାଜିଯିବାରୁ ଶତ ଶତ ଲୋକ ଆସି ହାଜତ ନିକଟରେ ଜମା ହୋଇଗଲେ । ସହରର ମୁଖିଆ ମୁଖିଆ ଲୋକମାନେ ଯାଇ ରାଜ୍ୟର ଠାକୁର

ସାହେବଙ୍କ ସହିତ ଦେଖାକରି ବହୁତ ବେଳଯାଏ କଥାବାର୍ତ୍ତା କଲେ । ଶେଷକୁ ରାଜା ସାହେବ ରାତି ୮ଟା ବେଳେ ଅମୃତଲାଲ୍ ସେଠଙ୍କୁ ହାଜତରୁ ଖଲାସ କରିଦେବା ନିମନ୍ତେ ମୋଲିସକୁ ହୁକୁମ ଦେଲେ । ସେଠ ମହାଶୟ ଖଲାସ ହେବା ପରେ ବହୁ ସଂଖ୍ୟକ ଲୋକ ଶୋଭାଯାତ୍ରା କରି ତାଙ୍କୁ ନିଜ ଘରକୁ ଘେନିଗଲେ । ଓଡ଼ିଶା ଗଡ଼ଜାତରେ ଏହା ସମ୍ଭବ କି ?

('ସମାଜ' ତା ୨୨ । ୪ । ୨୨)

———

# ଉତ୍କଳଗୌରବ ରକ୍ଷା ହେଉ

ଏ ମାସ ମଧ୍ୟରେ ପେନ୍‌ଠାରେ ମହାରାଷ୍ଟ୍ର ଜାତୀୟ ସମ୍ମିଳନୀ ଏବଂ ଚଟ୍ଟଗ୍ରାମରେ ବଙ୍ଗ ପ୍ରାଦେଶିକ ସମ୍ମିଳନୀର ଅଧିବେଶନ ହୋଇଯାଇଅଛି । ଦେଶର ବର୍ତ୍ତମାନ ରାଜନୈତିକ ଅବସ୍ଥା ଉଭୟ ସମ୍ମିଳନୀରେ ବିଶେଷଭାବରେ ଆଲୋଚିତ ହୋଇଥିଲା । ବଙ୍ଗ ପ୍ରାଦେଶିକ ସମ୍ମିଳନୀରେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ସହଧର୍ମିଣୀ ଶ୍ରୀମତୀ ବାସନ୍ତୀଦେବୀ ସଭାପତିର ଆସନ ଗ୍ରହଣ କରିଥିଲେ ଏବଂ ମହାରାଷ୍ଟ୍ର ସମ୍ମିଳନୀରେ ସୁପ୍ରସିଦ୍ଧ 'ଲୋକମାନ୍ୟ' ପତ୍ରିକାର ସମ୍ପାଦକ ଖାଦିଲକର ସଭାପତି ହୋଇଥିଲେ । ଉଭୟ ସଭାପତି ଅସହଯୋଗଦୀକ୍ଷା ସମର୍ଥନ କରିଥିଲେ । ମହାତ୍ମାଗାନ୍ଧୀ ପ୍ରମୁଖ ଦେଶର ମୁଖ୍ୟ ମୁଖ୍ୟ ନେତାମାନେ ଏବଂ ଦେଶର ୨୫ ସହସ୍ର କର୍ମୀ ବର୍ତ୍ତମାନ ଜେଲରେ ଥିବା-ସ୍ଥଳେ ଦେଶବାସୀଙ୍କର କର୍ତ୍ତବ୍ୟ ଯେ କି ଗୁରୁତର ତାହା ଉଭୟ ସମ୍ମିଳନୀରେ ଉତ୍ତମରୂପେ ସମସ୍ତଙ୍କୁ ବୁଝାଇ ଦିଆ ଯାଇଥିଲା । ବର୍ଦ୍ଦୋଲି ଏବଂ ଦିଲ୍ଲୀର ନିର୍ଦ୍ଧାରଣ ଅନୁସାରେ କାର୍ଯ୍ୟ କରିବା ନିମନ୍ତେ ସମସ୍ତଙ୍କୁ ଉତ୍ସାହିତ କରାଯାଇଥିଲା । ଅସହଯୋଗର ନିରୂପିତ କାର୍ଯ୍ୟରେ କେତେକ ପରିବର୍ତ୍ତନ ଆବଶ୍ୟକ ବୋଲି ଏହି ଉଭୟ ସମ୍ମିଳନୀରେ କଥା ଉଠିଥିଲା । ଶ୍ରୀମତୀ ବାସନ୍ତୀଦେବୀ ତାଙ୍କ ବକ୍ତୃତାରେ କହିଥିଲେ କି ଦରକାର ହେଲେ ଏଥର ଅସହଯୋଗୀମାନେ କାଉନ୍‌ସିଲରେ ପ୍ରବେଶ କରି ସର୍କାରଙ୍କ ସଙ୍ଗେ ସେ କ୍ଷେତ୍ରରେ ଲଢ଼ାଇ ଭିଡ଼ାଇ ଲଗାଇବା ଉଚିତ । ମହାରାଷ୍ଟ୍ର ସମ୍ମିଳନୀରେ ଅସହଯୋଗର କାର୍ଯ୍ୟକଳାପ ପରୀକ୍ଷାକରି ଆବଶ୍ୟକ ମନେକଲେ ତହିଁର ପରିବର୍ତ୍ତନ ବ୍ୟବସ୍ଥା କରିବା କାରଣ ଏକ କମିଟି ନିଯୁକ୍ତ ହୋଇଅଛି । ବୋଲିବା ବାହୁଲ୍ୟ ଯେ ମହାରାଷ୍ଟ୍ରୀୟମାନେ କାଉନ୍‌ସିଲକୁ ଯିବା, ମକଦ୍ଦମାରେ ଲଢ଼ିବା ଇତ୍ୟାଦି ନ ଛାଡ଼ିବାକୁ ମୂଳରୁ ଆପତ୍ତି କରି ଆସୁଛନ୍ତି । ଏହିପରି ଅସହଯୋଗର କେତେକ ବିଷୟରେ ମୂଳରୁ କେତେକଙ୍କର ମତଭେଦ ରହିଅଛି ଓ ସ୍ଥଳ ବିଶେଷରେ ତାହା ପ୍ରକାଶ ପାଉଅଛି । ହୁଏତ ଆଗାମୀ କଂଗ୍ରେସ ବୈଠକରେ ଏ ସବୁର ବିଶେଷ ଆଲୋଚନା ହେବ । ମୋଟକଥା କଂଗ୍ରେସରେ କୌଣସି କଥା ଥରେ ଅଧିକାଂଶଙ୍କ ମତ ଅନୁସାରେ ଧାର୍ଯ୍ୟ ହୋଇଗଲା ବୋଲି ତାହା ଯେ ବେଦବାକ୍ୟ ଓ ସମସ୍ତେ ତାହା ସବୁବେଳେ ମାନିବାକୁ ବାଧ୍ୟ କିମ୍ବା ଘଟଣା ଓ ଅବସ୍ଥାର ସଙ୍ଗେ ତହିଁର ପରିବର୍ତ୍ତନ କରାଯାଇ ନ ପାରେ ଏପରି ମନେ କରିବା କାହାରି

ଉଚିତ ନୁହେଁ । ମାତ୍ର ଦେଶର ଭିନ୍ନ ଭିନ୍ନ ସ୍ଥାନରେ ସଭାସମିତି ସମ୍ମିଳନୀ ଆଦି ହେଲେତ ଏ ସମସ୍ତଙ୍କର ବିଚାର ହେବ ? ଲୋକମତ ଗଠିତ ହେବ ? ଦୁଃଖର କଥା ଓଡ଼ିଶାର ଲୋକେ ସଭାସମିତିର ଏଭଳି ଆବଶ୍ୟକତା ଏପର୍ଯ୍ୟନ୍ତ ବୁଝିନାହାନ୍ତି । ଉତ୍କଳ ସମ୍ମିଳନୀ ଓଡ଼ିଶାର ଏକମାତ୍ର ଜାତୀୟ ଅନୁଷ୍ଠାନ । ତାହାର ଅଧିବେଶନ ବିଷୟରେ ଆମ୍ଭେମାନେ ବାରମ୍ବାର ଲେଖିଅଛୁଁ । ଆକ୍ଷେପର ବିଷୟ ଜିଲ୍ଲାମାନଙ୍କରେ ଏତେଦିନ ମଧ୍ୟରେ ସମ୍ମିଳନୀର କମିଟି ହୋଇ ପାରିଲା ନାହିଁ । କେହି କେହି କହନ୍ତି କଂଗ୍ରେସର ଉଦ୍ଦେଶ୍ୟ ସ୍ୱରାଜ୍ୟକୁ ସମ୍ମିଳନୀର ଅନ୍ତର୍ଭୁକ୍ତ କରିବାରୁ ସମ୍ମିଳନୀର ଏ ଦଶା ହେଲା, ଏ ଯୁକ୍ତି କେତେଦୂର ସଙ୍ଗତ ଆମ୍ଭେମାନେ ବୁଝିପାରୁନାହୁଁ । ଆମ୍ଭେମାନେ ପଚାରୁ ସ୍ୱରାଜ୍ୟ କି ବାସ୍ତବ ଉତ୍କଳ ଜାତିର ଆକାଂକ୍ଷାର ବସ୍ତୁ ନୁହେଁ ? ସହଯୋଗୀ ହୁଅନ୍ତୁ ବା ଅସହଯୋଗୀ ହୁଅନ୍ତୁ ଭାରତରେ ଆଜି ସମସ୍ତେ ସ୍ୱରାଜ୍ୟ ଚାହୁଁଛନ୍ତି । ବଡ଼ ବଡ଼ ରାଜପୁରୁଷମାନେ ବି କହୁଛନ୍ତି ଯେ ଭାରତବାସୀଙ୍କୁ କ୍ରମେ କ୍ରମେ ସ୍ୱରାଜ୍ୟ ଦିଆଯିବ । ଏ ଅବସ୍ଥାରେ ସ୍ୱରାଜ୍ୟ ଉତ୍କଳ ସମ୍ମିଳନୀ ଉଦ୍ଦେଶ୍ୟ ବୋଲି କହିବାକୁ ସଙ୍କୁଚିତ ବା ଭୀତହେବା ଦୁର୍ବଳତା ବଡ଼ା ଆଉ କଅଣ ? ପୁଣି ସମ୍ମିଳନୀର ଉଦ୍ଦେଶ୍ୟରେ ଏ ଯେ ପରିବର୍ତ୍ତନ ହେଲା ତାହାତ ପ୍ରକାଶ୍ୟରେ ଆଲୋଚନା ଓ ବହୁ ତର୍କ ବିତର୍କପରେ ମତାମତ ନିଆଯାଇ ଧାର୍ଯ୍ୟ ହେଲା । ଆମ୍ଭେମାନେ ବାରମ୍ବାର କହି ଆସୁଅଛୁଁ ଯେ ଯେଉଁମାନେ ଆବଶ୍ୟକ ମନେ କରନ୍ତି ସମ୍ମିଳନୀର ଆଗାମୀ ଅଧିବେଶନରେ ପୁନର୍ବାର ପରିବର୍ତ୍ତନ ପ୍ରସ୍ତାବ କରି ପାରନ୍ତି । ବିଚାରରେ ପଞ୍ଚ ଭାଇର ଯେ ନିଷ୍ପତ୍ତି ହେବ ସେଥିରେ କାହାରି କୌଣସି ପ୍ରକାର ଆପତ୍ତି ହୋଇ ନ ପାରେ । ଶୃଙ୍ଖଳାବଦ୍ଧ ସାଧାରଣ ସଭାସମିତିମାନଙ୍କର ଏହାହିଁ ତ ନିୟମ । ଯେ ଯାହା କହନ୍ତୁ ଉତ୍କଳ ସମ୍ମିଳନୀ ଅଧିବେଶନ ଏଥି ମଧ୍ୟରେ ନ ହେବାର ପ୍ରଧାନ କାରଣ ଆମ୍ଭମାନଙ୍କୁ ଯେତେଦୂର ଦେଖାଯାଏ ତାହା ଏହି--- ଯେଉଁ କେତେଜଣଙ୍କ ଯତ୍ନରେ ଓଡ଼ିଶାର ଭିନ୍ନ ଭିନ୍ନ ସ୍ଥାନରେ ସମ୍ମିଳନୀର ବୈଠକ ହୋଇଥାଏ ସେମାନଙ୍କ ମଧ୍ୟରୁ ଅଧିକାଂଶ ଅସହଯୋଗରେ ମାତି କଂଗ୍ରେସ କାର୍ଯ୍ୟରେ ଲାଗି ଅଛନ୍ତି । ସମ୍ମିଳନୀର ଆୟୋଜନ କରାଇବାରେ ମନଧ୍ୟାନ ଦେବାକୁ ସେମାନଙ୍କର ତେତେ ଅବସର ନାହିଁ । ଆଉ ଯେ କେଣେ ଅଧେ ଅସହଯୋଗରେ ମିଶି ନାହାନ୍ତି ସେ ସହଯୋଗୀ ବୋଲାଇ ଗଲା ଅଧିବେଶନରେ ସେମାନଙ୍କ ଇଚ୍ଛାବିରୁଦ୍ଧେ ସମ୍ମିଳନୀର ଉଦ୍ଦେଶ୍ୟ ପରିବର୍ତ୍ତନ ହୋଇଥିବାରୁ ମନ କୁଣ୍ଠାକରି ବସିଅଛନ୍ତି । ମାତ୍ର ସମ୍ମିଳନୀ ସହଯୋଗୀ ଅସହଯୋଗୀ ଉଭୟଙ୍କର । ସମଗ୍ର ଉତ୍କଳବାସୀଙ୍କର । ବମ୍ବେଇର ସର୍ଭାଣ୍ଟ ଅଫ ଇଣ୍ଡିଆ ସୋସାଇଟିରେ ଗୋପବନ୍ଧୁ ଦାସେ ଓଡ଼ିଶା ଜାତୀୟ ପ୍ରସଙ୍ଗରେ ବକ୍ତୃତା ଦେବାବେଳେ କହିଥିଲେ

ଅସହଯୋଗୀ ଓ ସହଯୋଗୀଙ୍କ ମଧ୍ୟରେ ମତପାର୍ଥକ୍ୟ ଥିଲେ ସୁଦ୍ଧା ଏପରି ଅନେକ ସାଧାରଣ କାର୍ଯ୍ୟକ୍ଷେତ୍ର ଅଛି ଯହିଁରେ କି ଉଭୟ ଦଳର ଲୋକ ଏକମେଳରେ କାର୍ଯ୍ୟ କରି ପାରନ୍ତି । ତାଙ୍କର ସେକଥା ଅନେକଙ୍କ ମନକୁ ଦେଉନଥିଲା । ଭାରତ ସେବକ ସମାଜର ସହକାରୀ ସମ୍ପାଦକ ଓ ଅନ୍ୟାନ୍ୟ ବିଶିଷ୍ଟ ସଭ୍ୟମାନେ ତୀବ୍ର ସହଯୋଗୀ ହେଲେ ମଧ୍ୟ ଉତ୍କଳର ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ନିମନ୍ତେ ଅର୍ଥସଂଗ୍ରହର ସହାୟତା ଓ ସହାନୁଭୂତି ଦେଖାଇଛନ୍ତି । ଉତ୍କଳରେ ସାଧାରଣ ଜୀବନ ଏପର୍ଯ୍ୟନ୍ତ ବିକାଶ ପାଇନାହିଁ । ଏ ଅବସ୍ଥାରେ ଯଦି ସହଯୋଗୀ ଓ ଅସହଯୋଗୀମାନଙ୍କ ମଧ୍ୟରେ ରାଜନୈତିକ ମତର ପାର୍ଥକ୍ୟହେତୁ କୌଣସି କ୍ଷେତ୍ରରେ ବା କାର୍ଯ୍ୟରେ ସେମାନଙ୍କର ମେଳ ନ ହୁଏ ତେବେ ଏହା କେବଳ ସେମାନଙ୍କର ବୋଲି ବୋଲିବାକୁ ହେବ । ବଙ୍ଗଳାର ଗଲା ଗ୍ରୀଷ୍ମ ସମ୍ମିଳନୀରେ କେବଳ ଅସହଯୋଗୀ ନୁହନ୍ତି ବହୁସଂଖ୍ୟକ ସହଯୋଗୀ ମଧ୍ୟ ଯୋଗ ଦେଇଥିଲେ । ଭିନ୍ନ ଭିନ୍ନ ପ୍ରଦେଶର ପ୍ରାଦେଶିକ ସମ୍ମିଳନୀର ବୈଠକ ହୋଇ ଲୋକସାଧାରଣଙ୍କ ମଧ୍ୟରେ ନୂତନ ଉତ୍ସାହ ଓ ଶକ୍ତି ସଂଚାର କରୁଅଛି । ଦେଶର ଉପସ୍ଥିତ ଅବସ୍ଥା ବିଷୟରେ ଭିନ୍ନ ଭିନ୍ନ ପ୍ରଦେଶର ମତ ଭାରତର ଜନସାଧାରଣଙ୍କ ନିକଟରେ ପ୍ରକାଶିତ ହେଉଅଛି । ଉତ୍କଳ ଏତେଦିନେ ଭାରତୀୟ ସମସ୍ୟାରେ ଯୋଗ ଦେଇଅଛି । ଯେଉଁସବୁ ଭାରତୀୟ ଘଟନାରେ ଅନ୍ୟ ପାଞ୍ଚଟା ପ୍ରଦେଶର ନାମ ପଡ଼ୁଅଛି ଉତ୍କଳର ନାମ ସେଠାରେ ଆଗରେ ନ ହେଲେ ସୁଦ୍ଧା ପଛରେ ହେଲେ ଉଲ୍ଲେଖ କରାଯାଉଅଛି । ଏ ଅବସ୍ଥାରେ ଅଲଗା ହୋଇ ନୀରବ ରହିବା କେବଳ ଉତ୍କଳ ପକ୍ଷରେ ଅସୁନ୍ଦର ନୁହେଁ, ଏହା ଆତ୍ମଘାତୀ ନୀତି ହେବ । ଅସହଯୋଗୀ, ସହଯୋଗୀ, ରାଜା, ପ୍ରଜା, ଶିକ୍ଷିତ ସାଧାରଣ ଗଡ଼ଜାତ ଓ ମୋଗଲ-ବନ୍ଦୀର ସକଳଶ୍ରେଣୀର ଉତ୍କଳବାସୀଙ୍କୁ ଆମ୍ଭେମାନେ ବିନୀତ ଅନୁରୋଧ କରୁଅଛୁଁ କି ଅଧିକକାଳ ବିଳମ୍ବ ନ କରି ଉତ୍କଳ ସମ୍ମିଳନୀ ଅଧିବେଶନର ଆୟୋଜନ କରନ୍ତୁ । ଉତ୍କଳର ସମ୍ମାନ ଏବଂ ଗୌରବ ରକ୍ଷାହେଉ ।

('ସମାଜ'. ତା ୯ । ୪ । ୨୨)

---

# ଆସାମ ନେତାଙ୍କ ଆହ୍ୱାନ

ଆସାମର ସର୍ବଶ୍ରେଷ୍ଠ ନେତା ଅସହଯୋଗୀ ବାରିଷ୍ଟର ଶ୍ରୀଯୁକ୍ତ ତରୁଣରାମ ଫୁକନ ବର୍ତ୍ତମାନ ସିଲଚର ଜେଲଖାନାରେ ଆବଦ୍ଧ ହୋଇ ରହିଛନ୍ତି । ତାଙ୍କର ତ୍ୟାଗ ଓ ଦେଶଭକ୍ତି ଯୋଗୁଁ ସମସ୍ତ ଆସାମ ପ୍ରଦେଶର ଲୋକେ ତାଙ୍କୁ ଦେବତା ପରି ଭକ୍ତି କରନ୍ତି । ତାଙ୍କର ଉଦ୍ୟମ ଫଳରେ ଆସାମର ଜେଲା ଜନସାଧାରଣ ଅକ୍ଷରେ ଅକ୍ଷରେ ଅହିଂସା ଧର୍ମ ପାଳନ କରି ଆସାମ କର୍ତ୍ତାମାନଙ୍କର ଅସଭ୍ୟ ଅତ୍ୟାଚାର ସହ୍ୟକରି ଅବିଚଳିତ ଭାବରେ ସ୍ୱରାଜ୍ୟ କାର୍ଯ୍ୟରେ ଲାଗି ରହିଛନ୍ତି । ଭାରତର ଅନ୍ୟାନ୍ୟ ପ୍ରଦେଶମାନଙ୍କଠାରୁ ପଞ୍ଜାବ ଓ ଆସାମରେ ନୌକର ସାହେବ ବ୍ୟବହାର ନିତାନ୍ତ ଅଭଦ୍ର ଓ ଅସହ୍ୟ । ଆସାମରୁ କେତେ ହଜାର ଲୋକ ବନ୍ଦିଶାଳରେ ପଶିଲେଣି ତାର ଇୟତ୍ତା ନାହିଁ । ମାନ, ମହତ୍ତ୍ୱ, ଧନସମ୍ପତ୍ତି ଏପରିକି ଜୀବନ ପର୍ଯ୍ୟନ୍ତ ଅପହୃତ ହେଉଥିଲେ ସୁଦ୍ଧା ସେମାନେ ଲକ୍ଷ୍ୟସାଧନ ପର୍ଯ୍ୟନ୍ତ ଲାଗି ରହିଛନ୍ତି । ଏହି ବୀର ଆସାମୀମାନଙ୍କର ବୀରନେତା ଫୁକନ ମହାତ୍ମାଗାନ୍ଧି ଗିରଫଦାର ହେବାର ଅବ୍ୟବହିତ ପୂର୍ବରୁ ତାଙ୍କଠାକୁ ଏକ ପତ୍ର ଲେଖିଥିଲେ ।

ଆମ୍ଭମାନଙ୍କ ଦେଶରେ ଅନେକ ଲୋକ ଅସହଯୋଗର ମହତ୍ତ୍ୱ ଓ ଗୁରୁତ୍ୱ ଏପର୍ଯ୍ୟନ୍ତ ବୁଝି ପାରୁନାହାନ୍ତି । ବୀର ଫୁକନଙ୍କର ଏହି ପତ୍ରରୁ ଏହା ସ୍ପଷ୍ଟ ବୁଝାଯିବ । ଆମ୍ଭେମାନେ ଏହିପରି ସନ୍ଦିଗ୍ଧମନାମାନଙ୍କ ଅବଗତି ସକାଶେ ନିମ୍ନରେ ତାଙ୍କ ପତ୍ରର ସାର ମର୍ମ ଉଦ୍ଧାର କଲୁ । ସେ ଲେଖିଛନ୍ତି—

"ମହାତ୍ମାଜୀ, ନିଖିଳ-ଭାରତ କଂଗ୍ରେସ କମିଟିରେ ଅନେକ ସଭ୍ୟ ତୀବ୍ର ପ୍ରତିବାଦ କରିଥିଲେ ସୁଦ୍ଧା ଶେଷରେ ବର୍ଦ୍ଦୋଲି ନିର୍ଦ୍ଧାରଣ ସବୁ ଗୃହୀତ ହେବା ବଡ଼ ସୁଖର କଥା । ଲୋକେ ଏପର୍ଯ୍ୟନ୍ତ ଅସହଯୋଗ କାର୍ଯ୍ୟ ଗୋଟିଏ ଉତ୍ତେଜନାରେ କରୁଥିଲେ । ଏହି ଉତ୍ତେଜନା ହେତୁ ଏ କାର୍ଯ୍ୟରେ କିପରି ଧୈର୍ଯ୍ୟ, ସ୍ୱାର୍ଥତ୍ୟାଗ ଓ ଦୃଢ଼ସଂକଳ୍ପ ଦରକାର ତାହା ଅନେକେ ବୁଝିପାରୁ ନ ଥିଲେ । ଯେଉଁମାନେ ଉତ୍ତେଜନାରେ ପଡ଼ି ମାତୁଥିଲେ ଓ ଭାବୁଥିଲେ ମୁହୂର୍ତ୍ତକେ ସରକାରକୁ ଧ୍ୱଂସ କରିଦେବେ, ବର୍ଦ୍ଦୋଲି ନିର୍ଦ୍ଧାରଣଦ୍ୱାରା ସେମାନଙ୍କ ମନରେ ଅବଶ୍ୟ ନୈରାଶ୍ୟ ଜନ୍ମିଥିବ ଏବଂ ସେମାନଙ୍କ ମଧ୍ୟରୁ କେତେକ ଅସହଯୋଗ କାର୍ଯ୍ୟ ଛାଡ଼ି ଦେଇ ପାରନ୍ତି । ବର୍ତ୍ତମାନ ଅବସ୍ଥାରେ ତାହାହିଁ ଲୋଡ଼ା । ଅସହଯୋଗ ଧର୍ମ ପୂର୍ଣ୍ଣ ଅହିଂସା ଉପରେ ନିର୍ଭର କରେ । ଆପଣ ସ୍ପଷ୍ଟ ଓ ନିର୍ମଳ ଭାବରେ

ଏକଥା ବାରମ୍ବାର ଲୋକମାନଙ୍କୁ ବୁଝାଇଛନ୍ତି । ଅସହାୟ ଓ ଦରିଦ୍ର ଜନସାଧାରଣ ନିଜର ଭବିଷ୍ୟତ ବିପଦ ବୁଝି ପାରୁନାହାନ୍ତି ବା ଜାଣିପାରୁ ନାହାନ୍ତି । ଆପଣ ଏକା ସେମାନଙ୍କୁ ତାହା ବୁଝାଇଛନ୍ତି ଓ ଉଦ୍ଧାରର ପନ୍ଥା ଦେଖାଇଛନ୍ତି । ଦେଶର ନେତା ଓ କର୍ମୀମାନଙ୍କୁ ଏ ଯୁଦ୍ଧରେ ସ୍ୱରାଜ୍ୟପ୍ରାପ୍ତି ନିମନ୍ତେ କି କଠୋର ତ୍ୟାଗ ସ୍ୱୀକାର କରିବାକୁ ହେବ ତାହା ମଧ୍ୟ ଆପଣ ସ୍ପଷ୍ଟଭାବରେ ଅନେକଥର କହିଛନ୍ତି । ଏଣିକି ତାହା ବିଶ୍ୱସ୍ତ ଭାବରେ ପାଳନ କରିବା ସେମାନଙ୍କର କର୍ତ୍ତବ୍ୟ । ତାହା ନ ହେଲେ ଆପଣଙ୍କୁ ସେମାନେ ଅନ୍ତର କରିଦେଇ ନିଜ ଇଚ୍ଛା ଅନୁସାରେ କାର୍ଯ୍ୟ କରିବେ । କିନ୍ତୁ ପ୍ରକୃତରେ ଯଦି ଆମ୍ଭମାନଙ୍କର ମନୁଷ୍ୟତ୍ୱ ଥାଏ, ଆତ୍ମସମ୍ମାନ ଥାଏ, ତାହାହେଲେ ମାନବ କଲ୍ୟାଣର ଶତ୍ରୁ ବିରୁଦ୍ଧରେ ଆମ୍ଭେମାନେ ଯେ ଶାନ୍ତିଯୁଦ୍ଧ ଆରମ୍ଭ କରିଥାଉଁ ତାହାର ଶେଷ ପର୍ଯ୍ୟନ୍ତ ଲଢ଼ିବା । ପ୍ରକୃତ ଶାନ୍ତି ନ ପାଇବାଯାଏ ବିଶ୍ରାମ ନାହିଁ । ଅହିଂସା ଯୁଦ୍ଧର ଜୟ ନିମନ୍ତେ ମୁଁ ଜେଲଖାନାରେ ପଡ଼ି ମରିଯିବି ପଛକେ କିନ୍ତୁ ଭୋଗବିଳାସରେ ରହି ସରକାରର ଜଘନ୍ୟ ଅଦାଲତରେ ଓକିଲାତି କରିବାକୁ ମୁଁ ଅକ୍ଷମ । ଭାରତ ଜାତି ବର୍ତ୍ତମାନ କାଙ୍ଗାଳ ଓ ଅନ୍ନହୀନ, ତା'ର ଶାନ୍ତି ନାହିଁ । ସେ ଅନ୍ୟଙ୍କୁ ମଧ୍ୟ ଶାନ୍ତି ଦେଇ ନ ପାରେ । ସରକାର ଯେତେ ଅତ୍ୟାଚାର କରୁ, ଯେତେ ତାଣ ଦେଖାଉ, ମୋର ବିଶ୍ୱାସ ଅନ୍ୟାୟର ପ୍ରତିକାର ନ ହେବା ପର୍ଯ୍ୟନ୍ତ ଭାରତ କୌଣସି ପ୍ରକାରେ ଟଳିବ ନାହିଁ । ଇଂରେଜ ସାମ୍ରାଜ୍ୟର ସାମରିକ ଶକ୍ତି ବଡ଼ ପ୍ରବଳ । ସେ ଭୟ ଦେଖାଇ ଆମ୍ଭମାନଙ୍କୁ ମୂକ ଓ ପରାଜିତ କରିବାକୁ ଚେଷ୍ଟା କରିବେ । କିନ୍ତୁ ପ୍ରାଣ ପ୍ରାୟଶ୍ଚିତ୍ତ ହୋଇ ଆମ୍ଭମାନଙ୍କୁ ଅନ୍ୟାୟର ପ୍ରତିକାର ନିମନ୍ତେ ଲଢ଼ିବାକୁ ହେବ । ଭାରତର ଲୋକଙ୍କୁ ମନୁଷ୍ୟ ବୋଲି ଜ୍ଞାନ ନ କରିବା ଯାଏ, ସେମାନେ ପେଟ ପୂରାଇ ଖାଇବାକୁ ନ ପାଇବା ଯାଏ ଆମ୍ଭମାନଙ୍କର ଶାନ୍ତି ନାହିଁ, ସରକାର ଭାଗ୍ୟରେ ମଧ୍ୟ ଶାନ୍ତି ନାହିଁ । ଇଂଲଣ୍ଡର ସାମ୍ରାଜ୍ୟ ଗଠନ ଛଳନାରେ ଲୁଣ୍ଠନ ପ୍ରବୃତ୍ତି ଥିବାଯାଏ ତାର ମଧ୍ୟ ପରିତ୍ରାଣ ନାହିଁ । ବନ୍ଧୁଭାବରେ ଚଳିବାକୁ ରାଜି ନ ହେବାଯାଏ ଇଂଲଣ୍ଡ ତଥା ପୃଥିବୀରେ ଶାନ୍ତି ଅସମ୍ଭବ । ଏଥର ବ୍ୟବସ୍ଥାପକସଭାରେ ସରକାରୀ ସଭ୍ୟ ଯେ ଆୟବ୍ୟୟର ହିସାବ ଦେଖାଇଛନ୍ତି ସେଥିରୁ ଭାରତବାସୀଙ୍କର ବର୍ତ୍ତମାନ ଓ ଭବିଷ୍ୟତ ଦୁରବସ୍ଥା ସମ୍ପୂର୍ଣ୍ଣ ବୁଝା ଯାଉଛି । ଲୋକେ ଏତିକିବେଳୁ ତତ୍ପର ଓ ଏକମେଳ ହୋଇ ଶୀଘ୍ର କାର୍ଯ୍ୟକ୍ଷେତ୍ରରେ ଅଗ୍ରସର ନ ହେଲେ ଭବିଷ୍ୟତରେ ଯେ ଅସହ୍ୟ ଦୁଃଖ ଭୋଗିବାକୁ ହେବ ସେଥିପାଇଁ ସରକାର ଦାୟୀ ହେବେ ନାହିଁ । ଦାୟୀ କେବଳ ଆମ୍ଭେମାନେ ।

('ସମାଜ' ତା ୭ । ୫ । ୨୨)

---

# ଜେଲଖାନାହିଁ ପ୍ରକୃତ ବାସସ୍ଥାନ

ମହାତ୍ମାଗାନ୍ଧିଙ୍କ ଗିରଫଦାରୀଠାରୁ ଭାରତବ୍ୟାପୀ ଗୃହଅଡ଼େ ଧରପଗଡ଼ ବେଳୁବେଳ ଅଧିକ ହେଉଛି । ନ୍ୟାୟ ଅନ୍ୟାୟ ବିଚାର ନାହିଁ, ଏପରିକି ଜୁରୀ ଆସେସରମାନଙ୍କର ମତ ବିରୁଦ୍ଧରେ ଅସହଯୋଗୀମାନଙ୍କୁ କଠିନ ଦଣ୍ଡ ଦିଆଯାଉଛି । ଅସହଯୋଗ ଆନ୍ଦୋଳନରୁ ଆକ୍ରମଣମୂଳକ ସମସ୍ତ କାର୍ଯ୍ୟ ଅନ୍ତର କରି ଦିଆ ହୋଇଥିଲେ ସୁଦ୍ଧା ସରକାରୀ ଅତ୍ୟାଚାରର ବିରାମ ନାହିଁ । ଯୁକ୍ତପ୍ରଦେଶ, ପଞ୍ଜାବ, ଆସାମ ପ୍ରଭୃତି ପ୍ରଦେଶରୁ ଯେ ସମସ୍ତ ଭୀଷଣ ଅତ୍ୟାଚାରର ସମ୍ବାଦ ମିଳୁଛି ସେଥିରେ ଲୋକେ ଶାନ୍ତିରକ୍ଷା କରି ରହିଥିବା ବଡ଼ ଆଶ୍ଚର୍ଯ୍ୟ ଓ ପ୍ରଶଂସାର କଥା । ସାଧାରଣ କଂଗ୍ରେସ କର୍ମୀ ଓ ଲୋକଙ୍କ ଉପରେ ହେଉଥିବା ଅତ୍ୟାଚାରରୁ ଏଥର ସମାଜରେ ଆମ୍ଭେମାନେ କେତେକ ବିବରଣ ମହାତ୍ମାଗାନ୍ଧିଙ୍କ 'ୟଙ୍ଗ ଇଣ୍ଡିଆ' ଖବରକାଗଜରୁ ଉଦ୍ଧାର କରି ଦେଇଛୁ । ପଞ୍ଜାବ କଂଗ୍ରେସ କମିଟିଙ୍କ ତରଫରୁ ଯେ ସମ୍ବାଦ ମିଳିଛି ସେଥିରୁ ଜଣାଯାଏ ଲୁଧିଆନା, ସିଆଲକୋଟ ଓ ହୁଶିଆରପୁର ଜିଲାରେ ଅତ୍ୟାଚାର ସବୁଠାରୁ ଅଧିକ । ମଇମାସ ପ୍ରଥମ ସପ୍ତାହ ମଧ୍ୟରେ କେବଳ ହୁସିଆରପୁରରୁ ୨୯ ଓ ସିଆଲକୋଟରୁ ୨୪ ଜଣଙ୍କୁ ଗିରଫଦାର କରାଯାଇଥିଲା । ଗଲା ମାର୍ଚ୍ଚ ମାସ ତାରିଖଠାରୁ ଅନୁମାନ ସର୍ବମୋଟ ୨ ହଜାର ୫ ଶହ ଜଣ ପଞ୍ଜାବରୁ ଜେଲ ଗଲେଣି । ଏଥିମଧ୍ୟରୁ ୧୪୭୧ ଜଣ ପଞ୍ଜାବୀ ଶିଖ । ଅତ୍ୟାଚାର ଅନୁସନ୍ଧାନ କରିବାପାଇଁ କଂଗ୍ରେସ ତରଫରୁ ଏକ ଅନୁସନ୍ଧାନ କମିଟି ବସିଛି । ପଣ୍ଡିତ ମାଲବ୍ୟ ଲୋକମାନଙ୍କୁ ଏସବୁ ସହି କଂଗ୍ରେସର ସ୍ୱଦେଶୀ ଆଦି ସଙ୍ଗଠନ କାର୍ଯ୍ୟରେ ଦ୍ୱିଗୁଣ ଉତ୍ସାହରେ ଲାଗିବା ପାଇଁ ବୁଝାଉଛନ୍ତି । ବୀର ପଞ୍ଜାବୀମାନେ ଏ କ୍ଷେତ୍ରରେ ଯେପରି ଉତ୍ସାହ ଓ ଆତ୍ମସଂଯମ ଦେଖାଇଛନ୍ତି ତାହାହିଁ ସର୍ବତ୍ର ବାଞ୍ଛନୀୟ ।

× × ×

ପଣ୍ଡିତ ମୋତିଲାଲ ନେହେରୁ ଗଲା ଡିସେମ୍ବର ମାସରେ ଫୌଜି କାନୁନ ଅନୁସାରେ ୬ମାସ ବିନା ପରିଶ୍ରମ ଜେଲ ହୁକୁମ ପାଇଥିଲେ । ସେ ଖଲାସ ହେବାକୁ ଆଉ ମାସେ ଅଛି । ଗଲା ୫ମାସ ମଧ୍ୟରେ ତାଙ୍କୁ ଦୁଇଟି ଜେଲଖାନାକୁ ବଦଳି କରାଗଲାଣି । ଅଳ୍ପଦିନ ତଳେ ସେ ଲକ୍ଷ୍ନୌ ଜେଲରେ ଥିଲେ । ସେ ଶ୍ୱାସରୋଗୀ । ତାଙ୍କର ଦୁଇଜଣ ସହକର୍ମୀ ଅସହଯୋଗୀ ଡାକ୍ତରଙ୍କ ଦ୍ୱାରା ସେ ଚିକିତ୍ସିତ ହେଉଥିଲେ । ଇତିମଧ୍ୟରେ ତାଦ୍ୱାରା ମଧ୍ୟ ଭଲ ଫଳ ହୋଇଥିଲା । ଯୁକ୍ତପ୍ରଦେଶ କାର୍ଯ୍ୟକାରୀ ସଭାର ସଭ୍ୟ ମହମୁଦାବାଦର

ରାଜପଣ୍ଡିତ ନେହେରୁଙ୍କର ଅନ୍ତରଙ୍ଗ ବନ୍ଧୁ । ତାଙ୍କର ନିଜ ସମ୍ବନ୍ଧି ପଣ୍ଡିତ ଜଗନ୍ନାଥପ୍ରସାଦ ସେ ପ୍ରଦେଶର ଜଣେ ମନ୍ତ୍ରୀ । ଉଭୟେ ଜେଲଖାନାକୁ ଯାଇ ପଣ୍ଡିତଜୀଙ୍କୁ ଏବେ ଦେଖିକରି ଆସିଥିଲେ । ଅନେକେ ମନେ କରିଥିଲେ ଯେ ପଣ୍ଡିତଜୀଙ୍କୁ ଶୀଘ୍ର ଖଲାସ କରି ଦିଆଯିବ । କିନ୍ତୁ ଫଳ ଓଲଟା ଫଳିଲା । ଗଲା ସପ୍ତାହ ହଠାତ୍ ପଣ୍ଡିତ ନେହେରୁଙ୍କୁ ଲକ୍ଷ୍ନୌ ଜେଲଖାନାରୁ ନୈନିତାଲ ଜେଲଖାନାକୁ ବଦଳି କରି ଦିଆଯାଇଛି । ସେ ଡାକ୍ତରମାନଙ୍କ ଚିକିତ୍ସାରୁ ବଞ୍ଚିତ ହେବାଫଳରେ ଘୋର ପ୍ରତିବାଦ କଲେସୁଦ୍ଧା ତାହା ଶୁଣାଗଲା ନାହିଁ । ଯେପରି ଦେଖାଯାଉଛି ପଣ୍ଡିତଜୀ ମାସକ ପରେ ଖଲାସ ପାଇଲେ ମଧ୍ୟ ସଙ୍ଗେ ସଙ୍ଗେ ପୁଣି ଗିରଫଦାର ହେବେ । ସରକାର ବର୍ତ୍ତମାନ ପ୍ରଧାନ ପ୍ରଧାନ ନେତାମାନଙ୍କୁ ବନ୍ଦୀ କରିଦେଇ ଜନସାଧାରଣଙ୍କ ଉପରେ ଅତ୍ୟାଚାର କରି ଅସହଯୋଗ ଆନ୍ଦୋଳନକୁ ଦବାଇ ଦେବାପାଇଁ ଚେଷ୍ଟା କରୁଛନ୍ତି । କିନ୍ତୁ ଅସହଯୋଗ ଏକ ପବିତ୍ର ଧର୍ମ । ଏହା ପାଶବିକ ବଳରେ ଲୋପ ପାଇ ନପାରେ ।

× × ×

ଗଲା ସପ୍ତାହ ଯୁକ୍ତପ୍ରଦେଶରୁ ମହାତ୍ମାଗାନ୍ଧିଙ୍କ ସାନପୁଅ ଦେବଦାସ ଗାନ୍ଧି ଓ ପଣ୍ଡିତ ମୋତିଲାଲଙ୍କ ପୁଅ ଜବାହାରଲାଲ ନେହେରୁ ଗିରଫଦାର ହୋଇଥିଲେ । ଦେବଦାସ ଓ ଜବାହାରଲାଲ ଫୌଜଦାରୀ ଆଇନର ୧୨୪ [କ] (ରାଜବିଦ୍ରୋହ) ଧାରା ଅନୁସାରେ ଅଭିଯୁକ୍ତ ହୋଇଥିଲେ । ଇତିମଧ୍ୟରେ ଦେବଦାସ ଗାନ୍ଧିଙ୍କର ବିଚାର ହୋଇ ତାଙ୍କୁ ୧୮ ମାସ ବିନା ଶ୍ରମ ଜେଲ ଦିଆଯାଇଛି । ସେ ପିତାଙ୍କ ପରି ସରକାର ପ୍ରତି ଅଶ୍ରଦ୍ଧା ଜନ୍ମାଇ ଥିବାରୁ ଦୋଷ ସ୍ୱୀକାର କଲେ ଓ କଠୋର ଦଣ୍ଡ ଦେବା ସକାଶେ ବିଚାରପତିଙ୍କୁ ଅନୁରୋଧ କରିଥିଲେ । ସେ ଜେଲଖାନାକୁ ଗଲାବେଳେ କହିଥିଲେ, "ଇଂରେଜ ଶାସନର ବର୍ତ୍ତମାନ ଅବସ୍ଥାରେ ପ୍ରତ୍ୟେକ ଆତ୍ମସମ୍ମାନପ୍ରିୟ ଭାରତବାସୀ ପକ୍ଷରେ ଜେଲଖାନାହିଁ ପ୍ରକୃତ ବାସସ୍ଥାନ"। ପଣ୍ଡିତ ଜବାହାରଲାଲ ନେହେରୁଙ୍କର ବିଚାର ଏପର୍ଯ୍ୟନ୍ତ ଶେଷ ହୋଇନାହିଁ । ଏହା ସବୁତ ବିଚାର ନୁହେଁ ସୁଆଙ୍ଗ ମାତ୍ର ।

× × ×

ପଣ୍ଡିତ ମଦନମୋହନ ମାଲବ୍ୟ ଓ ବିହାରର ଶ୍ରୀଯୁକ୍ତ ରାଜେନ୍ଦ୍ର ପ୍ରସାଦ ବର୍ତ୍ତମାନ କଂଗ୍ରେସ କାର୍ଯ୍ୟ ପ୍ରଚାର କରିବା ସକାଶେ ଆସାମ ଯାଇଛନ୍ତି ।

('ସମାଜ', ତା ୧୦ । ୫ । ୨୨)

# ଓଡ଼ିଶାପାଇଁ କଂଗ୍ରେସ ସବୁ

ଅସହଯୋଗ ଆନ୍ଦୋଳନ ପୂର୍ବରୁ ଦେଶମିଶ୍ରଣ ଓଡ଼ିଶାରେ ଏକମାତ୍ର ଆଲୋଚନା ଓ ଆନ୍ଦୋଳନର ବିଷୟ ଥିଲା । ଉତ୍କଳ ସମ୍ମିଳନୀ ୧୯।୧୫ ବର୍ଷକାଳ କେବଳ ଏହି ବିଷୟରେ ନିର୍ଦ୍ଧାରଣ କରୁଥିଲେ । ଶେଷକୁ ଖାଲି ନିର୍ଦ୍ଧାରଣରେ କିଛି ଫଳ ହେବନାହିଁ ବୋଲି ସମ୍ମିଳନୀରୁ ଅନେକଙ୍କର ପ୍ରାୟ ଆସ୍ଥା ଓ ବିଶ୍ୱାସ ତୁଟି ଆସିଥିଲା । ୧୯୨୦ ସାଲରେ ସମ୍ମିଳନୀର କଟକ ଅଧିବେଶନରେ ଆମେ ଆନ୍ଦୋଳନର ସଫଳତା ନିମନ୍ତେ ଶାନ୍ତିପୂର୍ଣ୍ଣ ଅସହଯୋଗ ନୀତି ଧରିବା ଆବଶ୍ୟକ ବୋଲି ସୂଚନା ଦେଇଥିଲୁ । ଦେଶମିଶ୍ରଣ ସମ୍ପର୍କରେ ଅସହଯୋଗ ନୀତିର ପ୍ରସାର ଓଡ଼ିଶାରେ ନ ହୋଇଥିଲେ ସୁଦ୍ଧା ଭାରତ ଜାତୀୟ ମହାସମିତିର ନିର୍ଦ୍ଧାରଣ ଅନୁସାରେ ସ୍ୱରାଜ୍ୟ ନିମନ୍ତେ ଉତ୍କଳବାସୀ ଏ ନୀତି ଗ୍ରହଣ କରି ଅଛନ୍ତି । ଏ ଆନ୍ଦୋଳନର ପ୍ରଭାବରେ ସରକାରଙ୍କଠାରୁ ଲୋକଙ୍କର ଯେ ଆସ୍ଥା ଓ ବିଶ୍ୱାସ ତୁଟିଅଛି ତାହା ସ୍ପଷ୍ଟ ପ୍ରକାଶ ପାଇଛି । ଦେଶମିଶ୍ରଣ ସକାଶେ ସୁଦ୍ଧା ସରକାରଙ୍କ ପାଖକୁ ଯିବା ଦରକାର ନାହିଁ ବୋଲି ଅଧିକାଂଶଙ୍କର ବର୍ତ୍ତମାନ ମତ । ମାତ୍ର ଯେ କେତେଜଣ ଅସହଯୋଗ ନୀତି ଗ୍ରହଣ କରିନାହାନ୍ତି ସେମାନଙ୍କର ଏବେ ସୁଦ୍ଧା ମାୟା ତୁଟିନାହିଁ । ସେମାନଙ୍କର ଆଶା ଯେ କାଉନ୍‌ସିଲରେ ପ୍ରସ୍ତାବ ଆଗତ କରି ସେମାନେ କାମ ହାସଲ କରିନେବେ । ଏଥିମଧ୍ୟରେ ମାନ୍ଦ୍ରାଜ ଓ ବିହାର ଓଡ଼ିଶା ଲାଟସଭାରେ ଓଡ଼ିଆ ମେମ୍ବର-ମାନେ ପ୍ରସ୍ତାବ ଆଣିଥିଲେ । ମାନ୍ଦ୍ରାଜରେ ପ୍ରସ୍ତାବ ଅଗ୍ରାହ୍ୟ ହେଲା । ବିହାର ଓଡ଼ିଶାରେ ଗୃହୀତ ହେଲା ବୋଲି ମେମ୍ବରମାନଙ୍କର କାହାର କାହାର ହୁଏତ ଗୁମର ଫୁଲି ଯାଉଥିବ; ମାତ୍ର ଆମ୍ଭେମାନେ ଏହାକୁ ହାଉଆ ନିଲାମ ବୋଲି ମନେକରୁଁ । ପୋଲା ତମସୁକ ନିଲାମ କରି କେହି ମହାଜନ ଖାଲି ଡିଗ୍ରୀ ଟଙ୍କା ଲାଗି ଖାତକର ଆଗରୁ ଅନ୍ୟଠାରେ ବନ୍ଧକ ଆବଦ୍ଧ ଥିବା ଜମିକି ନିଲାମ କଲେ ସେ ନିଲାମକୁ ହାଉଆ ନିଲାମ କହନ୍ତି । ଏ ନିଲାମଦ୍ୱାରା ଜମିରେ କୌଣସି ସତ୍ତ୍ୱ ହୁଏ ନାହିଁ । ବନ୍ଧକଦାର ଆପଣା ସତ୍ତ୍ୱ ନ ଛାଡ଼ିଲେ ଏଭଳି ନିଲାମଦାର କିଛି ପାଆନ୍ତି ନାହିଁ । ପ୍ରସ୍ତାବ ହେଲାକି ଭିନ୍ନ ଭିନ୍ନ ପ୍ରଦେଶ ଅନ୍ତର୍ଗତ ଓଡ଼ିଆ-ଭାଷୀ ଅଞ୍ଚଳମାନଙ୍କୁ ଏକ ଶାସନରେ ରଖାଯାଉ । କାଉନ୍‌ସିଲ ମେମ୍ବରମାନେ କହିଲେ 'ହେଉ', ସରକାର ବି କହିଲେ 'ତଥାସ୍ତୁ' । କିଏ କାହାକୁ ଦେଉଛି ନା ନେଉଛି । ମାତ୍ର ଦଖଲ ଦେଉଛି କିଏ ବା ନେଉଛି କିଏ ? ସତ୍ତ୍ୱ କେଉଁଠାରେ କେତେ ତାହା ମଧ୍ୟ ଠିକଣା ନାହିଁ । ସେ ପ୍ରଶ୍ନ ଉଠିଲାବେଳକୁ ବିହାର ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶର ମେମ୍ବର-

ମାନେ ଆପଣାର ବନ୍ଧକ ସତ୍ତ୍ୱ ଯେ ଦାବୀକରି ବସିବେ ଏଥିରେ କିଛି ସନ୍ଦେହ ଅଛି କି ? ସେତେବେଳକୁ ସରକାର କହିବେ କି ସେ ନାଗୃର । ଯଥାର୍ଥରେ ଓଡ଼ିଆମାନଙ୍କର ଦେଶମିଶ୍ରଣ ସମସ୍ୟା ସମାଧାନ ଲାଗି ସରକାରଙ୍କ ସହାୟତା ଅପେକ୍ଷା ଭାରତୀୟ ଲୋକ-ମତର ସହାୟତା ଅଧିକ ଆବଶ୍ୟକ । ଯେ ଆନ୍ଦୋଳନ ପଛରେ ପ୍ରବଳ ଲୋକମତ ନାହିଁ ତାହା ଆନ୍ଦୋଳନ ନୁହେଁ, ତହିଁର ସଫଳତା ଆଶା କରାଯାଇ ନ ପାରେ । ଅତି ଭାଗ୍ୟର କଥା ସ୍ୱରାଜ୍ୟ ଆନ୍ଦୋଳନ ଫଳରେ ଉତ୍କଳ ସମସ୍ୟା ମହାଭାରତ ସମସ୍ୟାର ଅନ୍ତର୍ଭୁକ୍ତ ହୋଇଅଛି । ଭାରତ ଜନସାଧାରଣଙ୍କର ସର୍ବପ୍ରଧାନ ପ୍ରତିନିଧି ସଭା, ଭାରତ ଜାତୀୟ ମହାସମିତି ଉତ୍କଳର ସ୍ୱାତନ୍ତ୍ର୍ୟ ସ୍ୱୀକାର କରିଅଛନ୍ତି ଏବଂ କେଉଁ କେଉଁ ସ୍ଥାନ ଉତ୍କଳ ପ୍ରଦେଶର ଅନ୍ତର୍ଗତ ତାହା ମଧ୍ୟ ନିରୂପଣ କରି ଦେବାକୁ ପ୍ରସ୍ତୁତ ଅଛନ୍ତି । ସିଂହଭୂମି ଘେନି ଯେ ଆନ୍ଦୋଳନ ଚାଲିଥିଲା ତାହା ଏକପ୍ରକାର ନିଷ୍ପତ୍ତି ହୋଇଅଛି । ବର୍ତ୍ତମାନ କୋଲହାନକୁ ଛାଡ଼ି ସମୁଦାୟ ସିଂହଭୂମି ଜିଲା ଉତ୍କଳ ପ୍ରଦେଶର ଅନ୍ତର୍ଗତ ହୋଇଅଛି । କୋଲହାନ ପ୍ରସଙ୍ଗ ବିଚାରାଧୀନ । ଗଞ୍ଜାମ ଜୟପୁର ବିଷୟରେ କଂଗ୍ରେସ ନିଷ୍ପତ୍ତି ଲାଗି ଏକବର୍ଷରୁ ଅଧିକକାଳ କଥା ଚାଲିଅଛି । ଆନ୍ଧ୍ର ଉତ୍କଳ ଉଭୟ ପକ୍ଷରୁ ପ୍ରତିନିଧି ନିଯୁକ୍ତ ହୋଇ ଆପୋଷରେ ବିବାଦ ମେଣ୍ଟାଇବାର ଉଦ୍ୟମ ହୋଇଥିଲା । ମାତ୍ର ଆନ୍ଧ୍ରମାନଙ୍କ ଅବହେଳାରୁ ଏପର୍ଯ୍ୟନ୍ତ କୌଣସି ମୀମାଂସା ହୋଇ ପାରିନାହିଁ ।

ନିଖିଳ-ଭାରତ କଂଗ୍ରେସ କାର୍ଯ୍ୟକାରୀ ସଭା ଅଧିକକାଳ ବିଳମ୍ବ ସହି ନ ପାରି କେବଳ ଶ୍ରୀଯୁକ୍ତ ରାଜଗୋପାଳାଚାରୀଙ୍କୁ ନିଷ୍ପତ୍ତି କରିବା କାରଣ ମଧ୍ୟସ୍ଥ ନିଯୁକ୍ତ କରିଛନ୍ତି । ସେ ଯାହା କରିଦେବେ କଂଗ୍ରେସ ତାହାହିଁ ଶେଷ ସିଦ୍ଧାନ୍ତ ବୋଲି ଗ୍ରହଣ କରିବେ । ଓଡ଼ିଶାର କଂଗ୍ରେସବାଲାଙ୍କ ପକ୍ଷରେ କଂଗ୍ରେସ ହିଁ ସରକାର । ସେମାନେ କୌଣସି ପ୍ରସଙ୍ଗରେ ଇଂରେଜ ସରକାରଙ୍କୁ ଅପେକ୍ଷା ନ ରଖିବାର କଥା । ସୁତରାଂ ଦେଶମିଶ୍ରଣ ସମ୍ବନ୍ଧେ କଂଗ୍ରେସ ମୀମାଂସା ସେମାନଙ୍କର ଶିରୋଧାର୍ଯ୍ୟ ହେବ ଏବଂ ତାହାକୁ ସେମାନେ ଦେଶମିଶ୍ରଣ ସମସ୍ୟାର ଶେଷ ସମାଧାନ ବୋଲି ଧରିବେ । ମାତ୍ର ଯେଉଁମାନେ କଂଗ୍ରେସ ବାହାରେ ଅଛନ୍ତି ଏବଂ ଦେଶମିଶ୍ରଣ ଲାଗି ସରକାରଙ୍କ ଆଡ଼କୁ ଚକାଇଛନ୍ତି ସେମାନେ ଏଭଳି ଆପୋଷ ନିଷ୍ପତ୍ତିକୁ ଖାତର ନ କରି ପାରନ୍ତି । କିନ୍ତୁ ସେମାନଙ୍କର ବୁଝିବା ଉଚିତ ଯେ ଏ ନିଷ୍ପତ୍ତି ପଛଆଡ଼େ ସମଗ୍ର ଭାରତୀୟ ଜନସାଧାରଣଙ୍କର ମତ ବିଦ୍ୟମାନ ରହିଅଛି । ଓଡ଼ିଆମାନେ ମୂଳରୁ ଏ ଲୋକମତର ଗୁରୁତ୍ୱ ବୁଝିଥିଲେ କାର୍ଯ୍ୟ ବହୁଦୂର ଅଗ୍ରସର ହୋଇଥାନ୍ତା । ଆମ୍ଭେମାନେ ଆଶା କରୁଁ ଅସହଯୋଗୀ ସହଯୋଗୀ ଯେଉଁମାନେ ଦେଶମିଶ୍ରଣ

ସକାଶେ ଏକାନ୍ତ ଇଚ୍ଛୁକ ସମସ୍ତେ ଶ୍ରୀ ରାଜଗୋପାଲାଚାରୀଙ୍କ ବକ୍ତୃତାବେଳେ ଉକ୍ତ ପକ୍ଷର କାରଣ ଓ ଆପତ୍ତିମାନ ଦେଖାଇଲେ ଭଲ ହେବ । ଅସହଯୋଗୀମାନଙ୍କ ପକ୍ଷେ କଂଗ୍ରେସ ନଷ୍ଟତ୍ତି ବର୍ତ୍ତମାନଠାରୁ ଶେଷ ନଷ୍ଟତ୍ତି; ସହଯୋଗୀମାନଙ୍କ ପକ୍ଷେ ଆଖରକୁ ଏହାହିଁ ଶେଷ ନଷ୍ଟତ୍ତି ହେବ ସନ୍ଦେହ ନାହିଁ ।

('ସମାଜ' ତା ୨୨ । ୫ । ୨୨)

---

# ରେଲଗାଡ଼ିରୁ ବାର୍ତ୍ତା ।

ଫୌଜିକାନୁନର ୧୭ ଦଫା ଅନୁସାରେ ମୁଁ ୱାରେଣ୍ଟରେ ଧରାହୋଇ ବର୍ତ୍ତମାନ ପୁରୀରୁ କଟକ ଯାଉଛି । ମୋର ଏ ମକଦ୍ଦମା ବିଚାର ଜୁନ୍ ୧୨ ତାରିଖରେ ହେବ । ଭଦ୍ରକଠାରୁ ୧୪୪ ଧାରା ନୋଟିସ ଅମାନ୍ୟ କରିଥିବା ଅପରାଧରେ ମୋ ନାମରେ ୧୮୮ ଦଫାରେ ପୁଣି ଏକ ମକଦ୍ଦମା କରାଯାଇଛି । ଜୁନ୍ ୬ ତାରିଖ ଏହାର ବିଚାର ହେବ । ମୁଁ ପୁଣି ଶୁଣିପାରୁଛି କନିକା ରାଜାଙ୍କର ଜଣେ ପ୍ରଜା ମୋ ବିରୁଦ୍ଧରେ ମାନହାନି ମକଦ୍ଦମା ଦାଏର କରି ସମନ ବାହାର କରିଛନ୍ତି । ମୋ ବିରୁଦ୍ଧରେ ଯେ ଏ ମାଲିମକଦ୍ଦମା ସୁଅ ଚଳାନ୍ତି ମୋର ଆଶଙ୍କା ଏହା କେବଳ ମୋତେ କନିକା ଅନୁସନ୍ଧାନରୁ ଅନ୍ତର କରି ଜବତ୍ କରି ରଖିବାପାଇଁ କରାଯାଉଛି । କନିକାର ବର୍ତ୍ତମାନ ଅବସ୍ଥା ବିଷୟରେ ସ୍ୱାଧୀନ ଏବଂ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରିବା ନିତାନ୍ତ ଦରକାର । ଦେଶବାସୀଙ୍କର ଏହା ପ୍ରଧାନ କର୍ତ୍ତବ୍ୟ । ମୁଁ ଏଥିପାଇଁ ବଡ଼ ଚିନ୍ତିତ । ଅବିଳମ୍ବେ ଏହା କାର୍ଯ୍ୟରେ ପରିଣତ କରିବାପାଇଁ ମୁଁ ବରାବର ଚେଷ୍ଟା କରୁଥିଲି । ଏପ୍ରକାର ଅନୁସନ୍ଧାନଦ୍ୱାରା କର୍ତ୍ତୃପକ୍ଷଙ୍କର ପ୍ରାୟ ସବୁବେଳେ ଆତଙ୍କ ଜନ୍ମିଥାଏ । ପୂର୍ବ ଦୁର୍ଭିକ୍ଷବେଳେ ଏହିପରି କରାଯାଇଥିଲା । ସେ ଅନୁସନ୍ଧାନ ଫଳରେ ସରକାରୀ ଗଳତି ଓ ଅତ୍ୟାଚାର ସବୁ ପ୍ରକାଶ ପାଇଥିଲା । ମୋର ମନେହୁଏ ବର୍ତ୍ତମାନ ଘଟଣାରେ କୌଣସି ଅନୁସନ୍ଧାନ କରାଇ ନ ଦେବାପାଇଁ ସରକାରୀ ଲୋକେ ପ୍ରାଣପଣେ ଚେଷ୍ଟା କରୁଛନ୍ତି । କିନ୍ତୁ ମୁଁ ମୋର ଦେଶବାସୀ ବିଶେଷତଃ ବିହାର, ବଙ୍ଗଳା ଓ ଓଡ଼ିଶାର ନେତାମାନଙ୍କଠାରେ ଦାବୀ କରେକ ସେମାନେ ଆଉ କାଳବିଳମ୍ବ ନକରି ଅତିଶୀଘ୍ର ବିଚକ୍ଷଣତା ଓ ସାବଧାନତାର ସହିତ କନିକା ଅତ୍ୟାଚାରର ଅନୁସନ୍ଧାନ କରନ୍ତୁ । ମୋର ଆଶଙ୍କା ଇତିମଧ୍ୟରେ ସେଠା ଲୋକେ ନସ୍ତବ୍ୟସ୍ତ ଓ ଛିନ୍ନ-ଚରନ୍ଦ ହୋଇଗଲେଣି । ଆଉ କାଳବିଳମ୍ବ କଲେ ସେମାନଙ୍କର ଅବସ୍ଥା ବଦଳିବାର ଆଉ କୌଣସି ଆଶା ରହିବ ନାହିଁ; ଅତିଶୟ ଶୋଚନୀୟ ହେବ । ପ୍ରତ୍ୟେକ ଶିକ୍ଷିତ ଓ ସଭ୍ୟଜାତି ଲୋକଙ୍କର ଆତ୍ମୀୟ ଓ ପ୍ରତିବେଶୀମାନଙ୍କ ପ୍ରତି ନିଜ ନିଜର କର୍ତ୍ତବ୍ୟ ଅଛି । କନିକା ଘଟଣାର ଉପଯୁକ୍ତ ଅନୁସନ୍ଧାନ ନ କରି ପାରିଲେ ତାହା ଏକ କଳଙ୍କ ଓ ମନୁଷ୍ୟ ପ୍ରତି ମନୁଷ୍ୟର ଏହି କର୍ତ୍ତବ୍ୟରେ ଘୋର ତ୍ରୁଟି ଘଟିବ । ମୋର ଶରୀର ନିତାନ୍ତ ଅସୁସ୍ଥ

ଥିବାରୁ ମୁଁ ୭।୭ ଦିନ ବିଶ୍ରାମ ନେଉଥିଲି । ମୋର ଆନନ୍ଦ ଯେ ସରକାରୀ ଲୋକେ ମୋତେ ଅଧିକଦିନ ବିଶ୍ରାମ ଦେବାକୁ ବ୍ୟାକୁଳ ହୋଇ ପଡ଼ିଛନ୍ତି । କିନ୍ତୁ ଏ ବିଶ୍ରାମ ମୋ ପକ୍ଷରେ ସୁଖକର ହେବ କି ନା ଏହା କେବଳ ଦେଶବାସୀଙ୍କ ଉପରେ ନିର୍ଭର କରେ । ମୋର ଦେଶବାସୀ ନିଜ ନିଜର କର୍ତ୍ତବ୍ୟ କରି ଦେଶରେ ପୂର୍ଣ୍ଣସ୍ୱଦେଶୀର ଚଳିଲୁ କରିପାରିଲେ ମୋ ପକ୍ଷରେ ତାହାହିଁ ପୂର୍ଣ୍ଣ ଆନନ୍ଦ ଓ ଶାନ୍ତିଦାୟକ ହେବ ।

('ସମାଜ', ତା ୩ । ୬ । ୨୨)

—— —

# ବିଦାୟ ବାର୍ତ୍ତା

( ୧୯୨୨ରେ କନିକାରେ ପ୍ରଜାମାନଙ୍କର ଖଜଣାବନ୍ଦ . ଆନ୍ଦୋଳନ ଓ ତା ଫଳରେ ରାଜାଙ୍କ ଆଜ୍ଞା ଗୁଳିଗୋଳା ଆଦିରେ ବହୁ ପ୍ରଜା ମୃତାହତ ହେଲ ପରେ କଂଗ୍ରେସ ପକ୍ଷରୁ ଘଟଣାର ତଦନ୍ତ ପାଇଁ ଉଦ୍ୟମ ହୋଇଥିଲା । ମାତ୍ର ସରକାର ଓ ରାଜାଙ୍କ ପକ୍ଷରୁ କନିକାର ଏ ପ୍ରଜା ଆନ୍ଦୋଳନକୁ କଂଗ୍ରେସବାଲାଙ୍କ କାଣ୍ଡ ବୋଲି ଚିହ୍ନ କରାଯାଇ ଗୋପବନ୍ଧୁଙ୍କ ଉପରେ ଭଦ୍ରକ ଓ ବାଲେଶ୍ୱର ପ୍ରଭୃତିରେ ୧୪୪ ଧାରା ଜାରି କରାଗଲା ଏବଂ ଶେଷରେ ମେ ମାସ ୩୧ତାରିଖରେ ପୁରୀରୁ ତାଙ୍କୁ ଏକ ଓ୍ୱାରଣ୍ଟ ବଳରେ ଗିରଫ କରାଗଲା ଓ ୧୯୨୨ ମସିହା ଜୁନ ୨୭ ତାରିଖରେ ୨ ବର୍ଷ ଅଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଗଲା ।

ତା ୩୧ । ୫ । ୨୨ରେ ପଣ୍ଡିତ ଗୋପବନ୍ଧୁ ଦାସ ଗିରଫ ହୋଇ ପୁରୀଠାରୁ କଟକ ଗଲାବେଳେ ରେଲରେ ଉତ୍କଳପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟ ଶ୍ରୀ ନିରଞ୍ଜନ ପଟ୍ଟନାୟକ ତାଙ୍କ ସହିତ ନାନା ବିଷୟରେ କଥାବାର୍ତ୍ତା କରିଥିଲେ । ଗୋପବନ୍ଧୁ ବାବୁ ଓଡ଼ିଶାର ବର୍ତ୍ତମାନ ଅବସ୍ଥା ବିଷୟ ଆଲୋଚନା କଲାବେଳେ ତାଙ୍କର ହୃଦୟ ଦୁଃଖରେ ପୂରି ଯାଇଥିଲା ଓ ଆଖି ଲୁହରେ ଛଳ ଛଳ ହୋଇ ଯାଇଥିଲା । ନିରଞ୍ଜନବାବୁ ଦେଶବାସୀଙ୍କ ପ୍ରତି ତାଙ୍କର ବିଦାୟବାର୍ତ୍ତା ଦେଇଯିବାକୁ ଅନୁରୋଧ କରିବାରୁ ସେ ତାଙ୍କୁ ନିମ୍ନଲିଖିତ ବାର୍ତ୍ତା ଦେଇ ଯାଇଛନ୍ତି ।

## କନିକା ଦୁର୍ଘଟଣା

କନିକା ଲୋକଙ୍କ ପ୍ରତି ମୋର ପଦେ ଅଧେ କହିବାର ଅଛି । ୧୨ତାରିଖ ଦିନ ମୋର ଗିରଫଦାରୀ ଓ ବିଚାର ହେବାର କଥା । ତାର ୩ ଦିନ ପୂର୍ବରୁ ସରକାର ଆଜି ମୋତେ ଧରି ନେଉଛନ୍ତି । ମୋର ଆଶଙ୍କା ଏଥିରେ ସରକାରର ଦୁରଭିସନ୍ଧି ଅଛି । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି କନିକା ଅତ୍ୟାଚାରର ଅନୁସନ୍ଧାନ କରିବାପାଇଁ ପ୍ରସ୍ତାବ କରିଛନ୍ତି । ମୋତେ ସେଥିରୁ ଅନ୍ତର କରି ରଖିବାପାଇଁ ବୋଧହୁଏ ସରକାରର

ଏ ଉଦ୍ୟମ । ମୋର ବଡ଼ ଦୁଃଖ ଯେ କନକାର ଲୋକେ ତାଙ୍କ ଜମିଦାରଙ୍କ ସହିତ ଆପଣା ଆପଣାର ସ୍ୱତ୍ୱ ବିଷୟରେ ଟଣା ଓଟରା କରି ଶେଷରେ ମାରପିଟ ପର୍ଯ୍ୟନ୍ତ କଥା ନେଲେ । ସେମାନଙ୍କ ପ୍ରତି ମୋର ଉପଦେଶ ଯେ ଏ ଦୁର୍ଘଟଣା ଫଳରେ ସେମାନେ ଯେପରି ହୀନ ଚରିତ୍ର ନ ହୁଅନ୍ତି ଓ ହତାଶ ହୋଇ ନିଜର ହକ୍‌ଦାବୀ ସକାଶେ ଏ ଆନ୍ଦୋଳନ ଛାଡ଼ି ନ ଦିଅନ୍ତି । ମୋର ବିଶ୍ୱାସ, ସେମାନେ ଦୃଢ଼ ଓ ଅଟଳ ରହିଲେ ସେମାନଙ୍କ ହକ୍‌ଦାବୀ ଅବଶ୍ୟ ସାବ୍ୟସ୍ତ ହେବ । କନକାରେ ଯେ ହତ୍ୟାକାଣ୍ଡ ହୋଇଯାଇଅଛି ସେଥିରୁ କେତୋଟି ଘଟଣାମାତ୍ର ସାଧାରଣ ଲୋକେ ଜାଣିଛନ୍ତି । ଏହାର ପୂର୍ଣ୍ଣ ପ୍ରକାଶ ଓ ଅନୁସନ୍ଧାନ ନିମନ୍ତେ ଦେଶବାସୀ ଶୀଘ୍ର ତତ୍ପର ହେବା ଦରକାର । ମୁଁ ଆଶାକରେ, ଦେଶର ନେତାମାନେ ଅବିଳମ୍ବେ ଏ କାର୍ଯ୍ୟ ଆରମ୍ଭ କରିବେ । ନ ହେଲେ ଲୋକେ ଭୟରେ ତ୍ରସ୍ତ ବ୍ୟସ୍ତ ଓ ହୀନଚରିତ୍ର ହୋଇଯିବେ । ମୋର ବଡ଼ବଡ଼ ଆଶଙ୍କା ଯେ ସରକାର ଜମିଦାରଙ୍କ ସହିତ ଏକମେଳ-ବାନ୍ଧି ଉଭୟେ ଅଯଥା ଅସହଯୋଗୀଙ୍କ ମୁଣ୍ଡରେ ଅଠାଲଗାଇ ସେମାନଙ୍କ ଉପରେ ନାନା ପ୍ରକାର ଅତ୍ୟାଚାର କରୁଛନ୍ତି ।

## ଓଡ଼ିଶାର ଜନସାଧାରଣଙ୍କ ପ୍ରତି

ଓଡ଼ିଶାର ଲୋକଙ୍କୁ ମୁଁ ବା କି ବାର୍ତ୍ତା ଦେବି ? ଖଦଡ଼ ମୋର ଏକମାତ୍ର ବାର୍ତ୍ତା । ଓଡ଼ିଶା ତ ଚିରକାଳ ଦୁର୍ଭିକ୍ଷରେ ପଡ଼ୁଛି । ଏ ଦୁର୍ଭିକ୍ଷର ଉପଶମ ସକାଶେ ଖଦଡ଼ ଆମଦାନୀ ସର୍ବୋତ୍କୃଷ୍ଟ ପନ୍ଥା । ଲୋକେ ଟିକିଏ ମନଦେଇ ଆଳସ୍ୟ ଛାଡ଼ି ଏହି କାମରେ ଲାଗିଗଲେ ସେମାନଙ୍କର ଅନେକ ଦୁଃଖ ଦୂର ହୋଇଯାନ୍ତା । ବର୍ତ୍ତମାନ ନାନା ସ୍ଥାନରେ ଜଳର ଅଭାବ । ବର୍ଷା ଏ ପର୍ଯ୍ୟନ୍ତ ହେଉନାହିଁ । ଆସନ୍ତା ବର୍ଷ ପୁଣି ଦୁର୍ଭିକ୍ଷ ହେବାର ସମ୍ଭାବନା । ବିନା କ୍ଷେତରେ ବର୍ଷଟାଏ ଚଳିଯିବାପାଇଁ ଓଡ଼ିଶା ଲୋକଙ୍କର ସମ୍ବଳ ନାହିଁ । ତେଣୁ ସେମାନଙ୍କ ପ୍ରତି ମୋର ନିବେଦନ ସେମାନେ ଏତିକିବେଳୁ ନୀରବ ଓ ନିଷ୍ଠାପର ଭାବରେ ଘରେ ଘରେ ଚରଖା ଚଳାନ୍ତୁ । ଓଡ଼ିଶାର ଅନେକ ସହଯୋଗୀ ଅସହଯୋଗ ଆନ୍ଦୋଳନକୁ ଭୁଲ ବୁଝିଥିବାର ଜଣାଯାଏ । ଅବଶ୍ୟ ଦେଶମିଶ୍ରଣ ପ୍ରସଙ୍ଗ ସମସ୍ତଙ୍କ ପକ୍ଷରେ ଗୋଟିଏ ଗୁରୁତର ସମସ୍ୟା । କିନ୍ତୁ ମୋର ବିଶ୍ୱାସ ଭାରତୀୟ ଆନ୍ଦୋଳନରେ ଯୋଗଦେବା ଦ୍ୱାରା ଆମ୍ଭେମାନେ ଏ କାର୍ଯ୍ୟରେ କୌଣସି ପ୍ରକାର ବାଧା ଦେଉନାହୁଁ । ବରଂ ଆମ୍ଭେମାନେ ଯେ ମଲ୍ଲପରି ପଡ଼ି ରହିଥିଲେ ଏ ଆନ୍ଦୋଳନରେ ଅନେକ ପରିମାଣରେ ଜାଗି ଉଠିଥାଉଁ । ଉତ୍କଳ ସମ୍ମିଳନୀ

ଗତ ୧୫ ବର୍ଷ ଧରି ଯାହା କରିନାହିଁ ଅସହଯୋଗ ଆନ୍ଦୋଳନ ୧୪ ମାସ ମଧ୍ୟରେ ତାହାଠାରୁ ଢେର ଅଧିକ କାମ କରିଅଛି । ସରକାର ଓଡ଼ିଆମାନଙ୍କର ହକ୍‌ଦାବୀର ଉଚିତ ବିଚାର ନ କଲେ ଆମ୍ଭମାନଙ୍କର ଅସହଯୋଗ କରିବା ଉଚିତ ବୋଲି ୧୯୧୭ ମସିହାରେ ସମ୍ମିଳନୀର ସଭାପତି ରୂପେ ମୁଁ ମୋର ବକ୍ତବ୍ୟରେ ପ୍ରକାଶ କରିଥିଲି । ବର୍ତ୍ତମାନ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇ ନ ଥିଲେ ଓ ବ୍ୟବସ୍ଥା ସଭାକୁ ଯାଇ ସେଠାରେ ନିରାଶ ହୋଇଥିଲେ ମୁଁ ଦେଶମିଶ୍ରଣ ପ୍ରସଙ୍ଗରେ କୌଣସି ପ୍ରକାର ହେଲେ ଅସହଯୋଗ ଦୀକ୍ଷା ଗ୍ରହଣ କରିଥାନ୍ତି । ଯେଉଁମାନେ ବ୍ୟବସ୍ଥାପକ ସଭାରେ ସହଯୋଗ କରିଛନ୍ତି ସେମାନେ ମଧ୍ୟ ଏ ସମ୍ପର୍କରେ କିଛି କରି ପାରିଲେ ନାହିଁ । ସରକାରଠାରେ କେବଳ କେତୋଟା ଚାକିରୀ ଓ ସୁବିଧା ପାଇଁ ଆବେଦନ ନିବେଦନ କଲେ ଜାତିର ଦୁଃଖ ଯିବନାହିଁ । ଏଥିରେ କେବଳ ଆମ୍ଭମାନଙ୍କର ଦାସତ୍ୱ ବଢ଼ିବ । ବରଂ ଆମ୍ଭ-ମାନଙ୍କର ଏ ସବୁ କ୍ଷୁଦ୍ର ସ୍ୱାର୍ଥଗୁଡ଼ିକ ସମସ୍ତ ଭାରତର ମଙ୍ଗଳ ସକାଶେ ସାହାଯ୍ୟ ଓ ତ୍ୟାଗ ସ୍ୱୀକାର କରିବା ଉଚିତ । ମୁଁ ନିଜେ ମନେକରେ ଯେ ଓଡ଼ିଶା ଯେବେ ଭାରତର ସ୍ୱାର୍ଥ ପାଇଁ ଜାଣିଶୁଣି ସ୍ୱଇଚ୍ଛାରେ ନିଜର ସଙ୍କୀର୍ଣ୍ଣ ସ୍ୱାର୍ଥ ତ୍ୟାଗକରେ ସେଥିରେ ମୋର ଲେଶମାତ୍ର ଦୁଃଖ ହେବନାହିଁ ।

## ଛାତ୍ରମାନଙ୍କ ପ୍ରତି

ଓଡ଼ିଶାର ଛାତ୍ରମାନଙ୍କ ଉପରେ ମୋର ଦାବୀ ଅଛି । ସତ୍ୟବାଦୀ ସ୍କୁଲରେ ହେଉ ବା ବିଶ୍ୱବିଦ୍ୟାଳୟର ସିନେଟ ସିଣ୍ଡିକେଟ୍‌ରେ ହେଉ ମୋର ଅଧିକାଂଶ କାର୍ଯ୍ୟ ଶିକ୍ଷା ବିଷୟରେ । ଏ ନୂତନ ଆନ୍ଦୋଳନରେ ଛାତ୍ରମାନଙ୍କଠାରୁ ଯାହା ଆଶା କରାଯାଇଥିଲା ସେମାନେ ତାହା କରିନାହାନ୍ତି । ମହାତ୍ମାଗାନ୍ଧୀ ଓଡ଼ିଶା ବିଷୟରେ ଯାହା କହିଛନ୍ତି ବା ଲେଖିଛନ୍ତି ସେମାନଙ୍କର ସେ ସବୁ ସ୍ମରଣ ରଖିବା ଉଚିତ । ମୁଁ ନିଶ୍ଚୟ କରେ ମହାତ୍ମାଗାନ୍ଧୀ ବର୍ତ୍ତମାନ ଜେଲଖାନାରେ ଓଡ଼ିଶା କଥା ଚିନ୍ତିଲାବେଳେ ବ୍ୟାକୁଳ ହେଉଥିବେ । ଛାତ୍ରମାନଙ୍କର ଓଡ଼ିଶା ପ୍ରତି କର୍ତ୍ତବ୍ୟ ଅଛି । ସମସ୍ତ ପ୍ରକାର ଦୁଃଖ କଷ୍ଟ ସହି ସେମାନେ ଏ କର୍ତ୍ତବ୍ୟ ପାଳନ କରିବା ଉଚିତ । କେବଳ ରାଜନୈତିକ ଅଧିକାର ଲାଭ ସକାଶେ ଯେ ମୁଁ ଏ ଆନ୍ଦୋଳନରେ ଯୋଗ ଦେଇଛି ତାହା ନୁହେଁ । ଏହାଦ୍ୱାରା ଓଡ଼ିଶାର ନିରନ୍ନ ଲୋକଙ୍କୁ ଅନ୍ନଦେବା ଓ ଓଡ଼ିଶାର ଦରିଦ୍ରତା ଦୂର କରିବା ମୋର ଉଦ୍ଦେଶ୍ୟ । ଏହାହିଁ ହୋଇପାରିଲେ ମୋର ପରମ ସନ୍ତୋଷ । ଯେଉଁ ଜାତିର ତ୍ୟାଗ ନାହିଁ ସେ ଜାତିର ଅସ୍ତିତ୍ୱ ନାହିଁ । ମୋର ଶେଷ ଅନୁରୋଧ ଓଡ଼ିଶାର ଭାଇଭଉଣୀ-

ମାନେ ଗ୍ରାମେ ଗ୍ରାମେ ଘରେ ଘରେ ବସି ଅରଟ ଚଳାନ୍ତୁ । ଏତକ ନ ହୋଇପାରିଲେ ବନ୍ଦୀଶାଳରେ ମୋ ଦୁଃଖର ସୀମା ରହିବ ନାହିଁ । ବାସ୍ତବକ୍ ଜେଲଖାନାରୁ ଫେରିଲା-ବେଳେ ଯଦି ମୁଁ ଦେଖେ ଯେ ଓଡ଼ିଶାବାସୀ କିଛି କରି ନାହାନ୍ତି ତେବେ ଏ ରାଜ୍ୟରେ ବାସ କରିବା ମୋ ପକ୍ଷେ ଅସମ୍ଭବ ହେବ ।

('ସମାଜ' ତା ୧୦ । ୭ । ୨୨)

---

# ପଡ଼ୋଶୀ ରାଜ୍ୟ ଲୋକଙ୍କୁ ନିବେଦନ

( ନିରଞ୍ଜନ ପଟ୍ଟନାୟକ ଲେଖିଛନ୍ତି, ଗୋପବନ୍ଧୁ ବାବୁ ଏହି କଥା କହୁଥିଲାବେଳେ ତାଙ୍କ ଆଖି ଲୁହରେ ଛଳ ଛଳ ହୋଇଯାଇଥିଲା, ହୃଦୟର ଆବେଗରେ ସେ କେତେବେଳ ପର୍ଯ୍ୟନ୍ତ କଥା ସୁଦ୍ଧା କହି ପାରିଲେ ନାହିଁ । ଦେଖିଲି ତାଙ୍କ ଆଖିରୁ ଦୁଇଟୋପା ଲୁହ ଗଡ଼ି ପଡ଼ିଲା । କେତେକ ସମସ୍ତ ସମସ୍ତେ ନିରବରେ ବସିବାପରେ ମୁଁ ପଚାରିଲି, ଓଡ଼ିଶା ବାହାରର ଲୋକମାନଙ୍କ ପ୍ରତି ଆପଣଙ୍କର କିଛି କହିବାର ଅଛି । କେତେକ କ୍ଷଣ ପରେ ସେ ନିମ୍ନଲିଖିତ ରୂପେ କହିବାକୁ ଆରମ୍ଭ କଲେ ) ।

ଓଡ଼ିଶା ବାହାରେ ବିଭିନ୍ନ ପ୍ରଦେଶର ନେତା ଓ ଜନସାଧାରଣଙ୍କ ପ୍ରତି ମୋର ଅନୁରୋଧ ଯେ ସେମାନେ ଏ ଦରିଦ୍ର ଉତ୍କଳୀୟଙ୍କ ପ୍ରତି ନିଜ ନିଜର କର୍ତ୍ତବ୍ୟ ଟିକିଏ ସ୍ମରଣ ରଖିଥିବେ । ରାଜନୀତି କ୍ଷେତ୍ରରେ ଓଡ଼ିଶା ନିତାନ୍ତ ପଛରେ ପଡ଼ିଛି । ଲୋକମାନେ ନିତାନ୍ତ ଦରିଦ୍ର । ଫଳରେ ସେମାନଙ୍କର ଚରିତ୍ର ମଧ୍ୟ ନଷ୍ଟ ହୋଇଗଲାଣି । ଏତେବେଳେ ସେମାନେ ଓଡ଼ିଆମାନଙ୍କର ସହାୟତା ନ କଲେ ଭାରତରେ ଜାତୀୟ ଜୀବନର ଅଖଣ୍ଡ ଓ ପୂର୍ଣ୍ଣ ବିକାଶ ହୋଇ ପାରିବ ନାହିଁ । ଓଡ଼ିଶା ଦେଶମିଶ୍ରଣ ସମସ୍ୟାରେ ସେମାନେ ବେଳେ ବେଳେ ବିଗିଡୁଥିଲେ । ଅନେକେ କହନ୍ତି, ଓଡ଼ିଶାର ଏ ଆନ୍ଦୋଳନ ଭାରତୀୟ ଆନ୍ଦୋଳନରେ ବାଧା ଦେଉଛି । କିନ୍ତୁ ଓଡ଼ିଶାର ଅସହଯୋଗୀମାନେ ଏ ସମ୍ପର୍କରେ ବିଭିନ୍ନ ପ୍ରଦେଶ ସହିତ ମତଭେଦ ମେଣ୍ଟାଇବା ପାଇଁ ଯଥେଷ୍ଟ କାର୍ଯ୍ୟ କରିଛନ୍ତି । ବାସ୍ତବିକ୍ ଅସହଯୋଗ ସମ୍ପର୍କରେ ଭାରତୀୟ ରାଜନୈତିକ ଆନ୍ଦୋଳନରେ ଯୋଗଦେବା ଓଡ଼ିଆମାନଙ୍କ ପକ୍ଷେ ଏହା ପ୍ରଥମ । ଓଡ଼ିଶାର ଜନସାଧାରଣ ନିତାନ୍ତ ଗରିବ ଓ ଚିର ପ୍ରପୀଡ଼ିତ । ଏ ନୂତନ ଆନ୍ଦୋଳନରେ ସେମାନଙ୍କର ଦୁଃଖ ଦୂରହେବ ବୋଲି ସେମାନେ ଆଶା ଓ ବିଶ୍ୱାସ କରୁଛନ୍ତି ଏବଂ ଏହି ବିଶ୍ୱାସରେ ସେମାନେ ପଇସାକଠାରୁ ପାହୁଲାକ ପର୍ଯ୍ୟନ୍ତ ତିଳକ ସ୍ୱରାଜ୍ୟ ପାଣ୍ଠିକୁ ଦାନ କରିଛନ୍ତି । ଶିକ୍ଷା ବିଷୟରେ ମଧ୍ୟ ଆମ୍ଭେମାନେ ଯାହା ପାରିଛୁ କରିଛୁ । ମୋର ବିଶ୍ୱାସ ଦେଶର ସ୍ଥାୟୀ ବିଦ୍ୟାଳୟମାନଙ୍କ ମଧ୍ୟରୁ ବୋଧହୁଏ ସର୍ବ-ପ୍ରଥମେ ସତ୍ୟବାଦୀ ସ୍କୁଲକୁ ଜାତୀୟ ବିଦ୍ୟାଳୟ କରାଯାଇଛି । ବର୍ଦ୍ଦୋଲି ଓ ଦିଲ୍ଲୀଠାରେ ସ୍ଥିର କରାଯାଇଥିବା କଂଗ୍ରେସ କାର୍ଯ୍ୟ ପ୍ରଣାଳୀରେ ମୋର ଅଟଳ ବିଶ୍ୱାସ । ବାସ୍ତବିକ୍

ଅରୁଟ ପ୍ରଶ୍ନରରେ ହିଁ ଏ ଦେଶରେ କୋଟି କୋଟି ଲୋକଙ୍କର ଦୁଃଖ ଦୁର୍ଗତି ଦୂର ହେବ। ବ୍ୟବସ୍ଥା ସଭାରେ ଲଢ଼େଇ କରିବା ଦ୍ୱାରା କୌଣସି ଲାଭ ନାହିଁ। ଏଥିରେ କେବଳ ସମୟ ଓ ଶକ୍ତି ନଷ୍ଟ ହୁଏ । ବ୍ୟବସ୍ଥା ସଭା ତ୍ୟାଗ କରି ଗ୍ରାମେ ଗ୍ରାମେ ଯେ ସ୍ୱଦେଶୀ ଇତ୍ୟାଦି କାର୍ଯ୍ୟ କରାଯାଉଛି ଏହାହିଁ ପ୍ରକୃତ କାର୍ଯ୍ୟ। ମୋ ମତରେ ବ୍ୟବସ୍ଥା ସଭାରେ କେବଳ ସ୍ୱରାଜ୍ୟ ସହିତ ଅଯଥା ଲଢ଼େଇ କରିବା ଅପେକ୍ଷା ବାହାରେ ଲୋକ ସେବା କରିବାରେ ଦେଶର ପ୍ରକୃତ ମଙ୍ଗଳ ସାଧିତ ହେବ ।

('ସମାଜ' ତା ୧୦ । ୬ । ୨୨)

---

# ଦେଶର ବର୍ତ୍ତମାନ ଅବସ୍ଥା

ଦୁଇବର୍ଷ ପରେ ଜେଲରୁ ଖଲାସ ହୋଇ ମୁଁ ପୁଣି ଆଜ କାର୍ଯ୍ୟ କ୍ଷେତ୍ରରେ ଉପସ୍ଥିତ ହୋଇଅଛୁ । ଜେଲରେ ଥିଲାବେଳେ ଓଡ଼ିଶାର ଖବର ବିଶେଷ କିଛି ମିଳୁ ନ ଥିଲା । ବେଳେ ବେଳେ କୌଣସି ସୂତ୍ରରେ ଯାହା ସାମାନ୍ୟ ମିଳୁଥିଲା ସେଥିରେ କେବେ ଥରେ ଆଶା ଯେବେ ଜାଗି ଉଠୁଥିଲା; ଆଉଥରକୁ ଲିଭି ଯାଉଥିଲା । ମୋର ଆଶଙ୍କା ହେଉଥିଲା, ମୁଁ ଯିବା ବେଳକୁ ଆଉ କିଛି ନ ଥିବ ପରି । ସୁଖର କଥା, ଅବସ୍ଥା ସେତେଦୂର ହୋଇନାହିଁ । ଉତ୍କଳରେ କଂଗ୍ରେସ କାର୍ଯ୍ୟ ଅଦ୍ୟାପି ବଞ୍ଚି ରହିଛି । ପୂର୍ବପରି ନ ଥିଲେ ସୁଦ୍ଧା ଲୋପ ପାଇନାହିଁ ।

ମୁଁ ଜେଲରୁ ଆସିବା ସଙ୍ଗେ ସଙ୍ଗେ ଦେଖିଲି, ଉତ୍କଳ ପ୍ରାଦେଶିକ ସମ୍ମିଳନୀ ସେଥିରେ ଉତ୍କଳର ଭିନ୍ନ ଭିନ୍ନ ଅଞ୍ଚଳରୁ ବହୁ ସଂଖ୍ୟାରେ ପ୍ରତିନିଧିମାନେ ଯୋଗ-ଦେଇଥିଲେ । ମଫସଲରୁ ସ୍ତ୍ରୀଲୋକେ ପ୍ରତିନିଧି ହୋଇ ଆସିଥିଲେ । ଅସ୍ପୃଶ୍ୟବର୍ଗଙ୍କରୁ ପୁରୁଷ ସ୍ତ୍ରୀ ମଧ୍ୟ ଦର୍ଶକ ଓ ପ୍ରତିନିଧି ହୋଇ ବସିଥିଲେ । ସମସ୍ତଙ୍କର ଅତି ଅପୂର୍ବ ଉତ୍ସାହ ଦେଖାଯାଉଥିଲା । ଭିନ୍ନ ଭିନ୍ନ ଜିଲାର କଂଗ୍ରେସ କର୍ମୀମାନେ ମିଳିମିଶି ଅତି ସୁନ୍ଦରରୂପେ କାର୍ଯ୍ୟ ନିର୍ବାହ କରିଥିଲେ । ଏ ଘଟନାରେ କଂଗ୍ରେସ କର୍ମୀ ସ୍ୱେଚ୍ଛାସେବକ ଓ ପ୍ରତିନିଧିମାନଙ୍କର ଭାବ ଦେଖି ମୋର ଆଶଙ୍କା ବହୁତ ଦୂର ହୋଇଥିଲା । ତଥାପି ମୁଁ ଭାବୁଥାଏ, ସମ୍ମିଳନୀ ପରି କାର୍ଯ୍ୟରେ ଦିନେ ଦି ଦିନ ଏପରି ଉତ୍ସାହ ପ୍ରାୟ ଦେଖାଯାଇଯାଏ । ଏଥିରୁ ପ୍ରକୃତ ଅବସ୍ଥା ଜଣାଯାଇ ନ ପାରେ । ସମ୍ମିଳନୀ ସରିଛି । ଏଥି ମଧ୍ୟରେ କେତେକ କର୍ମୀଙ୍କ ସଙ୍ଗେ ମୋର ଏକାନ୍ତରେ ଦେଖା ହୋଇଛି । ଦେଶର ସାଧାରଣ ଲୋକଙ୍କ ସଙ୍ଗେ କେତେକ ସ୍ଥାନରେ ମିଶିବାର ସୁଯୋଗ ମିଳିଛି; କେତେକ ସ୍ଥାନରୁ ପତ୍ର ପାଇଛି । ଦେଖୁଛି ଲୋକ ସାଧାରଣଙ୍କର କଂଗ୍ରେସ ପ୍ରତି ଆସ୍ଥା ଆଦୌର କମିନାହିଁ, ବରଂ ବଢ଼ିଛି । ଗଲା ଜିଲାବୋର୍ଡ଼ ମେମ୍ବର ନିର୍ବାଚନରୁ ଏହା ସଫା ଦେଖାଯାଏ । କଟକ, ପୁରୀ, ବାଲେଶ୍ୱର ତିନି ଜିଲା ବୋର୍ଡ଼କୁ କଂଗ୍ରେସ ଲୋକେ ବହୁ ସଂଖ୍ୟାରେ ନିର୍ବାଚିତ ହୋଇଛନ୍ତି । କଂଗ୍ରେସ ଲୋକଙ୍କ ପ୍ରତି ଭୋଟଦାତାଙ୍କର ଦୃଢ଼ ବିଶ୍ୱାସ ଏଥିରୁ ବେଶ୍ ଜଣାପଡ଼ୁଛି । ଲୋକସାଧାରଣଙ୍କର ଏ ପ୍ରକାର ମତଗତି ଦେଖି କୌଣସି କୌଣସି ଜିଲାରେ ଯେଉଁମାନେ ଏ ପର୍ଯ୍ୟନ୍ତ କଂଗ୍ରେସ ମେମ୍ବର ହୋଇ ନ ଥିଲେ

ଭୋଟ ନ ଦେବା ପୂର୍ବରୁ କଂଗ୍ରେସ ଉଦ୍ଦେଶ୍ୟ ଗ୍ରହଣ କରି କଂଗ୍ରେସ ଲୋକଙ୍କ ନିକଟରେ ଚଳିଆଇଥିଲେ । କେବଳ ଭୋଟ ଦେବାଛଡ଼ା ଲୋକସାଧାରଣଙ୍କର ଆଉ କୌଣସି କାର୍ଯ୍ୟରେ କଂଗ୍ରେସ ପ୍ରତି ଆଦର ଆଗ୍ରହ ଦେଖାଯାଉ ନାହିଁ । ଗ୍ରାମମାନଙ୍କରେ ଆଉ ଅରଟ ଚଳୁନାହିଁ । ୧୯୨୧ ଓ ୨୨ ସାଲରେ ଯେ ସବୁ ଅରଟ ତିଆର ହୋଇଥିଲା ଓ ଚଳୁଥିଲା, ସେଥିରୁ କାହିଁ କେତେଖଣ୍ଡ କାଁ କାଁ ଗୁଳୁଛି । ତାହାପୁଣି ନିୟମିତ ରୂପେ ନୁହେଁ; ଆଉ ପ୍ରାୟ ସବୁ କେଉଁ କଣରେ ପଡ଼ିଛି; କେତେ ଭାଙ୍ଗି ଗଲଣି; କାହା ଘରେ କେଉଁଠାରେ ମେଞ୍ଚାଏ ତୂଳା ପଡ଼ିଛି, କଏ ବା ଦୁଇବର୍ଷ ତଳେ ଯେ ସୂତା କାଟିଥିଲା ତାହା ପିଣ୍ଡୁଳା କରି କେଉଁଠାରେ ରଖି ଦେଇଛି । ଅରଟ ସୂତା କଟା କଥା ଗ୍ରାମଲୋକେ ଭୁଲିଗଲେଣି କହିଲେ ଚଳେ । ମୁଁ ଯେଉଁମାନଙ୍କୁ ଖଦଡ଼ ପିନ୍ଧିବାର ଦେଖିଯାଇଥିଲି, ସେମାନଙ୍କ ମଧ୍ୟରୁ କାହାରି କାହାରିକୁ କଳଲୁଗା ପିନ୍ଧିବାର ଏବେ ଦେଖୁଛି । କଂଗ୍ରେସ ତରଫରୁ ଯେ ସବୁ ଖଦଡ଼ କେନ୍ଦ୍ର ବସିଥିଲା, ସେଥିରୁ ଅଧିକାଂଶ ଉଠିଗଲଣି । ସମଗ୍ର ଉତ୍କଳରେ କଂଗ୍ରେସ ତରଫରୁ ୩୪ ଜାଗାରେ ଖଦଡ଼ ବିକ୍ରୀ ଏବଂ ଉନତା କେନ୍ଦ୍ରରେ ଖଦଡ଼ ତିଆରି ହେଉଛି ମାତ୍ର । ଅସହଯୋଗ ଆଦ୍ୟରେ ଗ୍ରାମମାନଙ୍କରେ ଯେ ପଞ୍ଚାୟତମାନ ବସିଥିଲା, ସେଥିରୁ ଅଧିକାଂଶ ଲୋପ ପାଇଲଣି, ଯେ କେତୋଟା ରହିଛି, ତାହାର ତେତେ ଶକ୍ତି ଓ ପ୍ରଭାବ ନାହିଁ । ଏହିପରି ଅବସ୍ଥା ହେଲେ ସୁଦ୍ଧା ଲୋକ ସାଧାରଣଙ୍କର ଆଗ୍ରହ ତୁଟିଅଛି ବୋଲି ମୁଁ କହିପାରୁନାହିଁ । ପୁନର୍ବାର ସେମାନଙ୍କୁ ପ୍ରବର୍ତ୍ତାଇଲେ ନୂତନ ଦୁଇଗୁଣ ଉତ୍ସାହରେ କାମ ଆରମ୍ଭ ହେବ ବୋଲି ମୋର ଆଶା ହେଉଅଛି । କାର୍ଯ୍ୟ କେଉଁଠାରେ କିଛି ନ ହେବାରୁ କର୍ମୀମାନେ ନିଜ ନିଜ ଘରେ ବସିଛନ୍ତି, କେହି କେହିବା ସ୍ଥାନାନ୍ତରରେ ଆପଣାର ଜୀବିକା ଉପାୟ କଲେଣି । ଏଥିମଧ୍ୟରେ ମୋର କେତେକ କର୍ମୀଙ୍କ ସଙ୍ଗେ ସାକ୍ଷାତ ହୋଇଅଛି । ସେମାନେ ଏବେସୁଦ୍ଧା କାର୍ଯ୍ୟ କରିବାକୁ ପ୍ରସ୍ତୁତ ଅଛନ୍ତି । କୌଣସି କୌଣସି ଗ୍ରାମର ଲୋକମଧ୍ୟ ତାଙ୍କ ଅଞ୍ଚଳ ଲାଗି କଂଗ୍ରେସ କର୍ମୀଙ୍କି ଲୋଡ଼ୁଛନ୍ତି । ଲୋକେ ଆଗ୍ରହୀ ଅଛନ୍ତି, କର୍ମୀ ଇଚ୍ଛୁକ ଅଛନ୍ତି । ମୁଁ ଦେଖୁଛି କେବଳ କାର୍ଯ୍ୟର ଶୃଙ୍ଖଳା-କରି କାମରେ ଲଗାଇଲେ ହେଲା । ମାତ୍ର ପୂର୍ବ ଅନୁଭବରୁ ଯେପରି ଦେଖା-ଯାଇଛି କର୍ମୀମାନଙ୍କୁ ଉପଯୁକ୍ତ ଭାବରେ ଶିକ୍ଷିତ ନ କରି ପଠାଇବା ନିରାପଦ ନୁହେଁ । ସେମାନଙ୍କର ଉତ୍ସାହ ଯଥେଷ୍ଟ ଅଛି, ମାତ୍ର ସଂଯମ ନାହିଁ ଏବଂ ଅସହଯୋଗ ଆନ୍ଦୋଳନରେ କାର୍ଯ୍ୟ କରିବାରେ ଯେ ଧୈର୍ଯ୍ୟ ଦରକାର ତା ମଧ୍ୟ ନାହିଁ । ଉପଯୁକ୍ତ ରୂପେ ଶିକ୍ଷିତ ନ ହୋଇଥିବା କର୍ମୀମାନଙ୍କ ଯୋଗେ ଖଦଡ଼ କେନ୍ଦ୍ରମାନ କୃତକାର୍ଯ୍ୟ ହୋଇପାରି ନାହିଁ । ଅନେକ କର୍ମୀ ବକ୍ତୃତା ଦେବାକୁ ଯେତେ ବ୍ୟାକୁଳ ଲୋକଙ୍କ ମଧ୍ୟରେ ଧୀର ସ୍ଥିର ଭାବରେ

କାର୍ଯ୍ୟକର ଲୋକଙ୍କୁ ଅରଟ ଧରାଇବାକୁ ତେତେ ବ୍ୟାକୁଳ ଓ ଯତ୍ନବାନ ନୁହନ୍ତି । ଏଣିକି ବଡ଼ ବଡ଼ ସଭାରେ କର୍ମୀମାନଙ୍କର ବକ୍ତୃତାଦେବା ଦରକାର ନାହିଁ । ଘରେ ଘରେ ବୁଲି ଲୋକଙ୍କୁ ଚରଖାଚଲା ଶିଖାଇଦେବା ଦରକାର । ମୁଁ ଗିରଫଦାର ହେବା କେତେଦିନ ଆଗରୁ କୌଣସିଠାରେ ବକ୍ତୃତା ନ ଦେଇ କେତେକ ମଫସଲ ଗାଁ ବାଡ଼ିଆଡ଼େ ସ୍ତ୍ରୀ ଲୋକମାନଙ୍କ ମଧ୍ୟରେ ବସି ନିଜେ ଅରଟ ଚଲାଇ ସେମାନଙ୍କୁ ଅରଟ ସୂତାକଟାର ଆବଶ୍ୟକତା ଓ ଉପକାର ବୁଝାଉଥିଲି । ସେଥିରେ ଦେଖିଥିଲି ଅନେକ ସ୍ତ୍ରୀ ଲୋକଙ୍କର ଅରଟ ପ୍ରତି ଆଗ୍ରହ ଜନ୍ମୁଥିଲା; ତହିଁ ଆରଦିନଠାରୁ ଅରଟ ନେଇ ସୂତା କାଟିବା ସେମାନେ ଆରମ୍ଭ କରୁଥିଲେ । ମାତ୍ର ଏ ନୀରବ ଭାବରେ ପଲ୍ଲୀର ସ୍ତ୍ରୀ ଲୋକମାନଙ୍କ ମଧ୍ୟରେ କାମ କରିବାକୁ ମତେ ବେଶିଦିନ ସୁବିଧା ମିଳି ନ ଥିଲା; ଏଥିର ଅଳ୍ପଦିନ ମଧ୍ୟରେ ମୁଁ ଗିରଫଦାର ହେଲି । ଏଣିକି ଖଦଡ଼ ବିସ୍ତାର ଲାଗି ଗ୍ରାମର ଲୋକଙ୍କ ମଧ୍ୟରେ ଚୁପ୍‌ଚାପ କାର୍ଯ୍ୟ କରିବାକୁ ହେବ । ଓଡ଼ିଶାରେ କପାର ଅଭାବ ଖଦଡ଼ କାର୍ଯ୍ୟର ପ୍ରଧାନ ବାଧା । ନାଗପୁରରୁ ତୂଳା କିଣି ସୂତା କାଟିବା ଓଡ଼ିଶା ଲୋକଙ୍କ ପକ୍ଷେ ଲାଭଜନକ ହେଉନାହିଁ । ଗ୍ରାମମାନଙ୍କରେ କପାଗଛ ନ ହେଲେ ଅରଟରେ ସୂତାକଟା ସ୍ଥାୟୀ ହେବ ନାହିଁ କିମ୍ବା ଖଦଡ଼ର ପ୍ରଚାର ହେବ ନାହିଁ । ଅରଟ ସୂତାରେ ଲୁଗା ବୁଣିବାର ଅସୁବିଧା ଆଉ ନାହିଁ । ଏଥିମଧ୍ୟରେ ତନ୍ତୀମାନେ ତାହା ଅଭ୍ୟାସ କରି-ଗଲେଣି । ଅନେକ ତନ୍ତୀ ସୂତା ମାଗୁଛନ୍ତି । ପ୍ରଧାନ ଅଭାବ ସୂତା । ସୂତା ନିମନ୍ତେ ପ୍ରଧାନ ଅଭାବ କପା । ସୁତରାଂ ଓଡ଼ିଶାରେ ଖଦଡ଼ ପ୍ରଚାର ଲାଗି ମୂଳରୁ କପାଗଛଠାରୁ କାର୍ଯ୍ୟ ଆରମ୍ଭ କରିବାକୁ ହେବ । ନିଖିଳ ଭାରତ କଂଗ୍ରେସ କମିଟିଙ୍କ ନିର୍ଦ୍ଧାରଣରୁ ଯେପରି ଦେଖାଯାଉଛି ବର୍ତ୍ତମାନ ଅଉସବୁ ଉଦ୍ୟମ ଛାଡ଼ି କଂଗ୍ରେସର ସମସ୍ତ ଶକ୍ତି କେବଳ ଖଦଡ଼ରେ ଲଗାଇବା ଆବଶ୍ୟକ । ଗୋଟିଏ ମାତ୍ର ଅଣ୍ଟିରେ ପୂରାଇବାନୀତି କଂଗ୍ରେସ ବର୍ତ୍ତମାନ ଧରିଛନ୍ତି । ଏହା ଭଲ ବିଚାର । ଉତ୍କଳରେ ଖଦଡ଼ କାର୍ଯ୍ୟର ସଫଳତାରେ ଅଧାଅଧି ସ୍ୱରାଜ୍ୟ ପ୍ରାପ୍ତି । ମହାତ୍ମାଗାନ୍ଧୀ ସବୁବେଳେ ଉତ୍କଳବାସୀଙ୍କି କେବଳ ଖଦଡ଼ କରିବାକୁ ଉପଦେଶ ଦେଉଥାନ୍ତି । ଉତ୍କଳ ଯେବେ ଦିନେ ସମଗ୍ର ଭାରତର ଖଦୀ ଭଣ୍ଡାର ହୋଇପାରେ ତାହାହେଲେ ତାହାର ସବୁ ଦୁଃଖ ଦୂରହେବ । ଏହି ସମସ୍ତ ଅବସ୍ଥା ଦେଖି ମୁଁ ବର୍ତ୍ତମାନ ମନେ ମନେ ନିମ୍ନ ଲିଖିତ ବ୍ୟବସ୍ଥା କରୁଅଛି ।

୧ । ଉତ୍କଳର ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଗୋଟିଏ ଖଦଡ଼କେନ୍ଦ୍ର ରଖିବାକୁ ହେବ । ଏହି କେନ୍ଦ୍ରରେ ଭଲ ଭଲ ଦଶ ବିଶ୍ୱାସୀ କର୍ମଠ ଓ ଶିକ୍ଷିତ ଦୁଇଜଣରୁ କମ

ନୁହେଁ କିମ୍ବା ଗୃହ ଜଣରୁ ବେଶୀନୁହେଁ କର୍ମୀ ରଖିବାକୁ ହେବ । ସେ ଭଳି କର୍ମୀ ନ ମିଳିବାଯାଏ କେନ୍ଦ୍ର ଖୋଲାଯିବ ନାହିଁ । ଆବଶ୍ୟକ ହେଲେ ବଙ୍ଗଳା ଖଦୀ ଅନୁଷ୍ଠାନକୁ କିମ୍ବା ଅନ୍ୟ ସେହିପରି କୌଣସିଠାକୁ କେତେଜଣ କର୍ମୀ ପଠାଇ ତାଲିମ କରି ଆଣିବାକୁ ହେବ । କପାଗୃଷଠାରୁ ଲୁଗାବୁଣା ପର୍ଯ୍ୟନ୍ତ ସବୁ କାର୍ଯ୍ୟରେ କର୍ମୀମାନଙ୍କର ଅଳ୍ପ ବହୁତ ଜ୍ଞାନ ଥିବା ଦରକାର । ଅରଟ ଚଳାଇ ସୂତା କାଟିବାରେ ସମ୍ପୂର୍ଣ୍ଣ ପାରଗତା ଥିବ । ସେମାନେ ନିଜେ ନିଷ୍ଠାକରି ପ୍ରତ୍ୟହ କେନ୍ଦ୍ର ଆଶ୍ରମରେ ସୂତା କାଟିବେ ଏବଂ ଗ୍ରାମର ସ୍ତ୍ରୀ ପୁରୁଷମାନଙ୍କର ସୁବିଧା ଅସୁବିଧା ବୁଝି ଘର ଘରକୁ ଯାଇ ଅରଟରେ ସୂତାକଟା ଶିଖାଇବେ । ଗ୍ରାମବାସୀଙ୍କର ସ୍ୱାସ୍ଥ୍ୟରକ୍ଷ୍ୟା ଓ ସେବା ଶୁଶ୍ରୂଷାରେ ଆବଶ୍ୟକମତେ ସହାୟତା କରିବେ । ମାତ୍ର ଅନ୍ୟ କୌଣସି ଗ୍ରାମ ପ୍ରସଙ୍ଗରେ ଯୋଗ ଦେବେ ନାହିଁ । ଖଦଡ଼ ବୋର୍ଡ଼ର ଆଦେଶମତେ ଯଥା ସମୟରେ ଖିତମତେ ହିସାବ ପଠାଇବେ ।

୨ । ପ୍ରତ୍ୟେକ ଜିଲ୍ଲା ଓ ସବ୍‌ଡ଼ିଭିଜନ ସହରରେ ଥିବା ସ୍ୱରାଜ୍ୟାଶ୍ରମରେ ଖଦଡ଼ ବକ୍ରୀର ବନ୍ଦୋବସ୍ତ ରହିବ । ଏହାଛଡ଼ା ପ୍ରାଦେଶିକ ଖଦୀବୋର୍ଡ଼ କୌଣସି ଏକ ସ୍ଥାନରେ ପ୍ରାଦେଶିକ ଖଦଡ଼ବକ୍ରି କେନ୍ଦ୍ର ନିର୍ମାଣ କରି ପାରନ୍ତି ।

୩ । ଖଦଡ଼ କେନ୍ଦ୍ରଛଡ଼ା ଜିଲ୍ଲାର କୌଣସି ଭଲ ଭଲ ସ୍ଥାନ ବାଛି ସେଠାରେ ସଙ୍ଗଠନର ଆୟୋଜନ କରିବାକୁ ହେବ । କର୍ମୀମାନଙ୍କୁ ଉପଯୁକ୍ତ ଶିକ୍ଷାଦେଇ ଏ କାର୍ଯ୍ୟକୁ ପଠାଇବାକୁ ହେବ । ଏ ଉଦ୍ଦେଶ୍ୟରେ ସମସ୍ତ ପ୍ରଦେଶରେ କର୍ମୀମାନଙ୍କୁ ପ୍ରସ୍ତୁତ କରିବା କାରଣ ଏକ ପ୍ରାଦେଶିକ ଟ୍ରେନିଂ ସେଣ୍ଟର କୌଣସି ସୁବିଧାଜନକ ସ୍ଥାନରେ ଖୋଲିବାକୁ ହେବ । ପ୍ରଥମେ କର୍ମୀମାନେ ସେଠାରେ ଅନ୍ତତଃ ଛଅମାସ ଶିକ୍ଷା ପାଇବେ । ନିର୍ଦ୍ଦିଷ୍ଟ କେନ୍ଦ୍ରର ନିକଟବର୍ତ୍ତୀ ଗ୍ରାମରେ ସେମାନଙ୍କୁ ପ୍ରତ୍ୟକ୍ଷ ଅଭ୍ୟାସଦ୍ୱାରା ଶିକ୍ଷା ଦିଆଯିବ । ଗ୍ରାମ ସଙ୍ଗଠନ କାର୍ଯ୍ୟରେ ପଠାଇବା ପୂର୍ବରୁ ପ୍ରତ୍ୟେକ କର୍ମୀର ଆଚରଣ, ବ୍ୟବହାର, ଦକ୍ଷତା ଓ ଯୋଗ୍ୟତା ଭଲରୂପେ ପରଖି ନେବାକୁ ହେବ । ଗ୍ରାମ ସଙ୍ଗଠନରେ ଅରଟ ସୂତାକଟା ଛଡ଼ା କଂଗ୍ରେସ ମେମ୍ବର କରିବା, ତିଳକ ସ୍ୱରାଜ୍ୟ ପାଣ୍ଠି ଲାଗି ମୁଠି ଆଦାୟ କରିବା, ଜାତୀୟ ପ୍ରାଥମିକ ବିଦ୍ୟାଳୟ ବସାଇବା, ଗ୍ରାମବାସୀଙ୍କ ମଧ୍ୟରେ ଖବର କାଗଜ ପ୍ରଚାର କରିବା ପ୍ରଭୃତି କେତେକ କାର୍ଯ୍ୟ ରହିବ ।

୪ । ଗ୍ରାମ ସଙ୍ଗଠନ ଖଦଡ଼ ତିଆରି ଓ ବିକ୍ରି କେନ୍ଦ୍ରର କାର୍ଯ୍ୟ ପରିଚାଳନା ନିମନ୍ତେ ଯେଉଁ ନିୟମମାନ ଧାର୍ଯ୍ୟ ହେବ ତଦନୁସାରେ କାର୍ଯ୍ୟ କରିବାକୁ କର୍ମୀମାନେ ବାଧ୍ୟ ହେବେ । ପ୍ରତ୍ୟେକ କେନ୍ଦ୍ରର କାର୍ଯ୍ୟର ମାସକେ ଅନ୍ତତଃ ଥରେ ତଦନ୍ତ କରାଯିବ ।

୫ । ଖଦଡ଼ କେନ୍ଦ୍ରର ଆବଶ୍ୟକ ଖର୍ଚ୍ଚ ପ୍ରାଦେଶିକ ଖଦୀବୋର୍ଡ଼ ଦେବେ । ଗ୍ରାମ ସଙ୍ଗଠନ ନିମନ୍ତେ କର୍ମୀ ପ୍ରସ୍ତୁତ କରିବା ଓ ସେମାନଙ୍କୁ ପ୍ରଥମେ କେତେମାସ କାର୍ଯ୍ୟରେ ଲଗାଇ ଗ୍ରାମକୁ ଶୃଙ୍ଖଳାବଦ୍ଧ କରିବା ନିମନ୍ତେ ଅନ୍ତତଃ ଦଶହଜାର ଟଙ୍କା ବର୍ତ୍ତମାନ ଦରକାର । ଗ୍ରାମ ସଙ୍ଗଠନ କାର୍ଯ୍ୟ ଠିକଏ ଶୃଙ୍ଖଳାରେ ପଡ଼ିଗଲେ ତେଣିକି ଗ୍ରାମର ମୁଠି ଓ ଅନ୍ୟାନ୍ୟ ପ୍ରକାର ସାହାଯ୍ୟରେ ସେଠାକାମ ଚାଲିବ । ମୁଁ ଶୀଘ୍ର ଉତ୍କଳର ଭିନ୍ନ ଭିନ୍ନ ଅଞ୍ଚଳକୁ ଯିବାର ସ୍ଥିର କରିଅଛି । ଉତ୍କଳରେ କଂଗ୍ରେସର ଗ୍ରାମ ସଙ୍ଗଠନ କାର୍ଯ୍ୟ ପୁଣି ଆରମ୍ଭ କରିବା ଲାଗି ଏହି ଯେ ଦଶହଜାର ଟଙ୍କା ଦରକାର ହେବ ମୋର ଏକାନ୍ତ ଆଶା ଉତ୍କଳବାସୀ ଏହା ଆଗ୍ରହର ସହିତ ଦେବେ ।

ଯେଉଁ କର୍ମୀମାନେ ଟ୍ରେନିଂ ପାଇ ପଲ୍ଲୀରେ କାମ କରିବାକୁ ଇଚ୍ଛୁକ ଅଛନ୍ତି ସେମାନେ ମୋତେ ଆପଣାର ଅଭିପ୍ରାୟ ଜଣାନ୍ତୁ । ମୁଁ ଜିଲ୍ଲା ଓ ସବ୍‌ଡିଭିଜନ ସହର-ମାନଙ୍କୁ ଗଲାବେଳେ ସେମାନଙ୍କ ସଙ୍ଗେ ଦେଖା କରିବି ବୋଲି ଆଶାକରେ ।

('ସମାଜ' ତା ୧୯ । ୭ । ୨୪)

---

# ସ୍ୱାୟତ୍ତଶାସନ ସଂସ୍ଥାର ସଦସ୍ୟମାନଙ୍କ ପ୍ରତି

( ୧୯୨୪ ମସିହା ଡିସେମ୍ବର ମାସ ୨ ତାରିଖରେ ଭଦ୍ରକ ଲୋକାଲବୋର୍ଡ଼ ପକ୍ଷରୁ ଏକ ଅଭିନନ୍ଦନ ଦିଆଯାଇଥିଲା । ସେତେବେଳେ ଓଡ଼ିଶାର ବିଭିନ୍ନ ସ୍ୱାୟତ୍ତଶାସନ ଅନୁଷ୍ଠାନମାନଙ୍କରେ, ବିଶେଷତଃ ଜିଲ୍ଲାବୋର୍ଡ଼ ଓ ଲୋକାଲ-ବୋର୍ଡ଼ ଭଳି ସ୍ୱାୟତ୍ତଶାସନ ସଂସ୍ଥାମାନଙ୍କରେ କଂଗ୍ରେସ ସଂଖ୍ୟାଗରିଷ୍ଠ ଦଳ-ରୂପେ ପରିଚାଳନା ଦାୟିତ୍ୱ ହାତକୁ ଆଣିଥାଏ । ଗୋପବନ୍ଧୁ ଏହି ଅଭିନନ୍ଦନର ଉତ୍ତରରେ ଜିଲ୍ଲାବୋର୍ଡ଼ ଓ ଲୋକାଲବୋର୍ଡ଼ ସଭ୍ୟମାନଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ, ସ୍ୱତାକଟା ଓ ଖଦୀ ପ୍ରଚାର ଏବଂ ପରସ୍ପର ହିନ୍ଦୁ ମୁସଲମାନ ସଦ୍‌ଭାବ ଓ ସାମ୍ପ୍ରଦାୟିକ ସଂପ୍ରୀତି ସମ୍ପର୍କରେ ଯେଉଁ ସାରଗର୍ଭକ ଭାଷଣ ଦେଇଥିଲେ ଆଜି ୫୭ ବର୍ଷପରେ ମଧ୍ୟ ସେସବୁ ଅମ ପ୍ରତି ସମାନ ଭାବରେ ପ୍ରଯୁଜ୍ୟ । ଏଠାରେ ତାଙ୍କର ସେହି ଭାଷଣ ଦିଆଯାଉଛି )

ଆପଣମାନେ ମତେ ଆଜି ଯେ ଅଭିନନ୍ଦନ ପତ୍ର ଦେଇଛନ୍ତି, ଏହା ଓଡ଼ିଶାରେ ଏକ ସମ୍ପୂର୍ଣ୍ଣ ନୂତନ ବ୍ୟାପାର । ଜିଲ୍ଲାବୋର୍ଡ଼, ମ୍ୟୁନିସିପାଲିଟି ଆଦି ସ୍ୱାୟତ୍ତଶାସନ ସଭାମାନ ଆଗେ ଲାଟ ପ୍ରଭୃତି ସରକାରଙ୍କର ମୁଖ୍ୟ ପ୍ରତିନିଧି ମାନଙ୍କୁ ଅଭିନନ୍ଦନ ଦେଉଥିଲେ । ଏବେ ଅନେକସ୍ଥଳେ ଲାଟ ଆଦିଙ୍କୁ ଦେବା ପ୍ରାୟ ବନ୍ଦ କଲେଣି । ଦେଶର ମୁଖ୍ୟ ବ୍ୟକ୍ତିମାନଙ୍କୁ ଦେଉଛନ୍ତି । କୌଣସି କୌଣସି ପ୍ରଦେଶରେ ସରକାର ଏଥିରେ ଆପତ୍ତି ଉଠାଇଥିବାର ଦେଖାଯାଉଛି । ମାତ୍ର ଜିଲ୍ଲାବୋର୍ଡ ଓ ମ୍ୟୁନିସିପାଲିଟି-ମାନେ ସେ ଆପତ୍ତିକି ଆଗ୍ରାହ୍ୟ କରି ବେସରକାରୀ ବିଶିଷ୍ଟ ଦେଶୀୟ ବ୍ୟକ୍ତିଙ୍କୁ ଅଭ୍ୟର୍ଥନା କରିଛନ୍ତି ଓ ଅଭିନନ୍ଦନ ଦେଇଛନ୍ତି । ଜିଲ୍ଲାବୋର୍ଡ଼ ଓ ମୁନିସିପାଲିଟି ଲୋକସାଧାରଣଙ୍କର ପ୍ରକୃତ ସ୍ୱାୟତ୍ତଶାସନ ଥିବାସ୍ଥଳେ ସେମାନେ ଲୋକସାଧାରଣଙ୍କର କୌଣସି ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ଏଭଳି ସମ୍ମାନ ଦେଖାଇବା କଦାପି ଅସଙ୍ଗତ ହୋଇ ନ ପାରେ ।

ଯାହାହେଉ, ଓଡ଼ିଶାର କୌଣସି ସ୍ୱାୟତ୍ତଶାସନ ସଭା ଏ ପର୍ଯ୍ୟନ୍ତ ଏପରି କାର୍ଯ୍ୟ କରି ନ ଥିଲେ । ଭଦ୍ରକ ଲୋକାଲବୋର୍ଡ଼ ଏ କ୍ଷେତ୍ରରେ ପ୍ରଥମ; ଏହା ଭଦ୍ରକପକ୍ଷେ ପ୍ରଶଂସାର କଥା । ତେବେ ମୋପରି ବ୍ୟକ୍ତିଠାରେ ଓଡ଼ିଶାର ଏ ପ୍ରଥମ ଉଦ୍ୟମ ଆରମ୍ଭ ନ ହୋଇ ଯୋଗ୍ୟତର ବ୍ୟକ୍ତିଙ୍କ ସମ୍ପର୍କରେ ହୋଇଥିଲେ, ଅଧିକ ଗୌରବର କଥା ହୋଇଥାଆନ୍ତା ଏବଂ ମୁଁ ସେଥିରେ ଅଧିକ ସୁଖୀହୋଇ ଥାଆନ୍ତି । ମୋ ପ୍ରତି ଆପଣ-ମାନେ ଏହି ଯେ ଆଦର ଓ ସମ୍ମାନ ଦେଖାଇଛନ୍ତି, ତାହା ଆପଣମାନଙ୍କ ସ୍ନେହ ଓ ଶ୍ରଦ୍ଧାର ପରିଚୟ ଦେଉଅଛି । ମାତ୍ର ଆଜ ଆପଣମାନେ ମୋତେ ଯେ ସମ୍ମାନ ଦେଉଛନ୍ତି, ଭଦ୍ରଖ ପୂର୍ବରୁ ମୋତେ ଏହା ଅପେକ୍ଷା ବଡ଼ ସମ୍ମାନ ଦେଇଅଛି । ଭଦ୍ରଖରେ ୧୪୪ ଧାରା ହୁକୁମ ନ ମାନି ଥିବାରୁ ମୋର ଆଦ୍ୟ କାରାଦଣ୍ଡ ହୋଇଥିଲା ବୋଲି ଆପଣମାନେ ଯାହା ଉଲ୍ଲେଖ କରିଛନ୍ତି, ତାହା ମୋ ଜୀବନରେ ଏକ ବିଶିଷ୍ଟ ସମ୍ମାନ । ତେଣୁ ଭଦ୍ରକଠାରେ ମୁଁ ବିଶେଷ ଋଣୀ ଏବଂ ଏହି କାରଣରୁ ଭଦ୍ରଖ ପ୍ରତି ମୋର ବିଶେଷ ମମତା । ମନେ ଏବେ ପଡ଼େ ମୋର, ଉତ୍କଳରୁ ନେଲେ ମୋତେ ଯେ ଦିନ ଛଡ଼ାଇ ହଜାରିବାଗ ଜେଲକୁ । ଭଦ୍ରକ ଷ୍ଟେସନରେ କେତେ କି ଭାବ ହୃଦୟରେ ଖେଳିଥିଲା । ପଲକେ ପୁଣି ସେ ଭାବ ଆସି ଅନ୍ତରରେ ନାଚଯାଏ । ଥାଉ ସେ ସବୁ କଥା ।

ମୁଁ ଆଜି ଆପଣମାନଙ୍କୁ ଏହି ସୁଯୋଗରେ ସାମାନ୍ୟ କେତୋଟି କଥା କହିବାକୁ ଇଚ୍ଛାକରେ । ଲାଟସାହେବ ଆଦିଙ୍କୁ ଯେ ଅଭିନନ୍ଦନ ପତ୍ର ଦିଆଯାଏ, ତାହାର ଚିଠା ଆଗେ ସେ ଦେଖି ତାଙ୍କ ସୁବିଧା ମୁତାବକ ବଦଳା ବଦଳି କରି ଦିଅନ୍ତି । ସେ ମଧ୍ୟ ପୂର୍ବରୁ ଜବାବ ତିଆରି କରି ଥାନ୍ତି । ଆପଣମାନେ ଏ ଅଭିନନ୍ଦନ ପତ୍ରକୁ ଇଂରାଜୀରେ ସେହି ସରକାରୀ କାଏଦାରେ ଲେଖିଛନ୍ତି । ମୋଠାକୁ ଚିଠା ପଠାଇନାହାନ୍ତି, ରକ୍ଷା । ପୂର୍ବରୁ ପଠାଇଥିଲେ ମୁଁ ହୁଏତ ଗୋଟାଏ କାଇଦା ମୁତାବକ ଜବାବ ତିଆରି କରିବାକୁ ମନ ବଳାଇଥାନ୍ତି । ବର୍ତ୍ତମାନ ସ୍ୱତଃ ହୃଦୟରେ ଯାହା ଉଦିତ ହେବ, ତାହାହିଁ କହିବି । ଆପଣମାନଙ୍କର ଏ ଅଭିନନ୍ଦନ ପତ୍ର ଓଡ଼ିଆରେ ଲେଖା ହୋଇଥିଲେ ସଙ୍ଗତ ହୋଇଥାଆନ୍ତା । ମୋ ମତରେ, ଜିଲ୍ଲାବୋର୍ଡ଼ ଓ ଲୋକାଲବୋର୍ଡ଼ ଓ ମ୍ୟୁନିସିପାଲିଟିର କାର୍ଯ୍ୟକଳାପ ଦେଶୀୟ ଭାଷାରେ ପରିଚାଳିତ ହେବା ଉଚିତ ।

ଆଗେ ଆଇନରେ ଥିଲା ଇଂରେଜୀ ଭାଷାରେ ହେବବୋଲି; ଏବେ ଆଇନରେ ଏ ସମ୍ପର୍କରେ କି ନିୟମ ଅଛି, ମତେ ଜଣାନାହିଁ । ମାତ୍ର ଏହା ଯେତେବେଳେ

ଲୋକସାଧାରଣଙ୍କର ସ୍ୱାୟତ୍ତଶାସନ, ଏଥିରେ ଲୋକ ଲୋକସାଧାରଣଙ୍କର ସୁବୋଧ ଭାଷାରେ ସବୁ କାମ ହେବା ଆବଶ୍ୟକ ଓ ସୁବିଧାଜନକ । ପୂର୍ବେ ଜିଲ୍ଲା ମେଜେଷ୍ଟର ଚେୟାରମ୍ୟାନ ଥାଇ ଇଂରାଜୀରେ ଯେ ସବୁ କଥୋପକଥନ ଓ ନିର୍ଦ୍ଧାରଣମାନ ହେଉଥିଲା, ଅନେକ ସଭ୍ୟ ତାହା ଆଦୌ ବୁଝି ନ ଥିଲେ, ଏହା ମୁଁ ନିଜେ ଦେଖିଛି । ଏଣିକି ସେପରି ହେବା ସ୍ୱାୟତ୍ତଶାସନ ପକ୍ଷେ ବିଡ଼ମ୍ବନା । (ଏଠାରେ ସଭାପତି ଶ୍ରୀମାନ୍-ହରେକୃଷ୍ଣ ମହତାବ କହିଲେ, ବାଲେଶ୍ୱର ଜିଲାବୋର୍ଡ଼ରେ ଓଡ଼ିଆରେ ସବୁ କାର୍ଯ୍ୟ ହେବାର ସ୍ଥିର ହୋଇଅଛି ) ଏହା ପ୍ରଶଂସାର କଥା । ମୁଁ ଆଶାକରେ, ବାଲେଶ୍ୱରର ଏ ବିଧାନ ଓଡ଼ିଶାର ଅନ୍ୟାନ୍ୟ ଜିଲାବୋର୍ଡ଼ମାନେ ଅନୁସରଣ କରିବେ ।

ଦ୍ୱିତୀୟ କଥା—ଏ ସବୁ ବୋର୍ଡ଼ମାନଙ୍କରେ କଂଗ୍ରେସ ମେମ୍ବରମାନଙ୍କର ଦାୟିତ୍ୱ । କଂଗ୍ରେସ କର୍ମୀମାନେ ଏହିସବୁ ବୋର୍ଡ଼ରେ ମେମ୍ବର ହୋଇ ଆପଣା କାନ୍ଧରେ ଗୁରୁଦାୟିତ୍ୱ ନେଇଛନ୍ତି । ଏହା ସେମାନଙ୍କପକ୍ଷେ କଠିନ ପରୀକ୍ଷା । ଏହି ପରୀକ୍ଷାରେ ସେମାନେ ଯେତେଦୂର କୃତିତ୍ୱ ଦେଖାଇବେ ସେଥିରୁ ଆମ୍ଭମାନଙ୍କର ପୂର୍ଣ୍ଣ ସ୍ୱାୟତ୍ତଶାସନ ଚଳାଇବାର କ୍ଷମତା ଜଣାପଡ଼ିବ ଏବଂ ସ୍ୱରାଜ୍ୟ ନିମନ୍ତେ ଆମ୍ଭମାନଙ୍କର ଯୋଗ୍ୟତା ପ୍ରମାଣିତ ହେବ । ସରକାର କଂଗ୍ରେସବାଲାଙ୍କ ପ୍ରତି ତୀବ୍ରଦୃଷ୍ଟି ରଖିଛନ୍ତି ଏବଂ ଆମ୍ଭମାନଙ୍କ ମତବିରୋଧୀ ଦେଶୀୟ କେତେ ଲୋକ ହୁଏତ ଆମ୍ଭମାନଙ୍କୁ ଛିଦ୍ରକରୁଛନ୍ତି । ଅଳ୍ପଦିନ ତଳେ ଆପଣମାନଙ୍କର ଏହି ଭଦ୍ରକ ଲୋକାଲବୋର୍ଡ଼ରେ ଚେୟାରମ୍ୟାନ ଭାଇସଚେୟାରମ୍ୟାନଙ୍କ ନିର୍ବାଚନ ବିଷୟରେ ଜିଲାବୋର୍ଡ଼ରେ କେହି କେହି ଆପତ୍ତି ଉଠାଇଥିଲେ ପରା । ମତେ ସେ କଥା ବଡ଼ ବାଧିଥିଲା । ଆମ୍ଭେମାନେ ଧନୀ ନୋହୁଁ ବୋଲି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟର ଉପଯୁକ୍ତ ନୋହୁଁ, ଏ ଯୁଗରେ ଏଭଳି କଥା ଯେ କାହାର କାହାର ତୁଣ୍ଡକୁ ଆସିଲା, ଏହାହିଁ ବିଚିତ୍ର ।

ଆଜିକାଲି ଦେଶ ବା ଜାତିର କାର୍ଯ୍ୟ ପୂର୍ବପରି କେତେକ ଧନୀପଦସ୍ଥ ଲୋକଙ୍କର କେବଳ ବିଳାସ ନୁହେଁ, ଏହା କଠିନ କର୍ତ୍ତବ୍ୟ ଓ ଏଥିଲାଗି ବିପୁଳ ତ୍ୟାଗ ଲୋଡ଼ା । ଯେଉଁମାନେ ତ୍ୟାଗ କରିବେ, ସେମାନେ ତ ଅଭାବଗ୍ରସ୍ତ ହେବେଇ ହେବେ । ପ୍ରଭୁ ଯୀଶୁ କହିଥିଲେ, ତୁମର ବାପ ମା'ଙ୍କୁ ଛାଡ଼ିଆସ, ମତେ ଅନୁସରଣ କର । କୃଷ୍ଣଙ୍କର ମଧୁର-ମୋହନ ବଂଶୀ ଗୋପାଙ୍ଗନାମାନଙ୍କୁ ମଧ୍ୟ ଏହି ମନ୍ତ୍ର ଶିଖାଇଥିଲା । ସେମାନେ ଘରଦ୍ୱାର ପତି ପୁତ୍ରଙ୍କୁ ଛାଡ଼ିଥିଲେ । ଆଜି ଦେଶରେ ସେହି ବଂଶୀ ବାଜୁଛି । ଆଜି ଭାରତମାତା

ଗୁରୁ ଗମ୍ଭୀର ସ୍ୱରରେ ସମସ୍ତଙ୍କୁ କହୁଛନ୍ତି—ତ୍ରିଭୁବନର ଧନଜନ, କର ମୋର ପାଦେ ସେବା । ଯେଉଁମାନେ ଜନନୀଙ୍କର ଏ ଡାକ ପୁଣି ତାଙ୍କର ସେବାରେ ଆପଣାକୁ ନିଯୋଗ କରି ପାରୁଛନ୍ତି ସେହିମାନେ ଦରିଦ୍ର ହେବେ ସତ, ମାତ୍ର ସେହିମାନେ ଧନ୍ୟ । ସେମାନେ ଏ ଜଗତରେ ଲାଞ୍ଛନା ଅବମାନନା ସହିପାରନ୍ତି ସତ; ମାତ୍ର ସ୍ୱର୍ଗରାଜ୍ୟ ବା ସ୍ୱରାଜ୍ୟ ସେହିମାନଙ୍କର । ବାଇବେଲ୍‌ରେ ଅଛି—ଛୁଞ୍ଚିର ଛିଦ୍ରରେ ଓଟ ଚାଲିଯାଇପାରେ, ମାତ୍ର ସ୍ୱର୍ଗଦ୍ୱାରରେ ଧନୀର ଗଳିଯିବା ଅସମ୍ଭବ । ଯଥାର୍ଥରେ ଦରିଦ୍ର ଜନସାଧାରଣଙ୍କର ତ ରାଜ୍ୟ, ଧନୀମାନଙ୍କର ସମୟ ଶେଷ ହୋଇ ଆସୁଛି, ସମୟର ଏହି ଇଙ୍ଗିତ ବୁଝି ତୁମ୍ଭେମାନେ ଏ ଭଳି ଆପତ୍ତିରେ ଦୁଃଖିତ ବା ହତାଶ ନ ହୋଇ ଉତ୍ସାହ ଓ ବିଶ୍ୱାସର ସହିତ କାର୍ଯ୍ୟକର । ମାତ୍ର ଗୋଟିଏ କଥା ଏ ସମ୍ପର୍କରେ ମୁଁ ବିଶେଷ ଭାବରେ କହି ରଖେଁ—ବୋର୍ଡ଼ର ପଇସା କଉଡ଼ି ଆୟବ୍ୟୟ ହିସାବ ବିଷୟରେ ସର୍ବଦା ବିଶେଷ ସାବଧାନ ହୁଅ । ସେଥିରେ ସାମାନ୍ୟ କିଛି ତ୍ରୁଟି ଘଟିଲେ କଂଗ୍ରେସ କର୍ମୀମାନଙ୍କର ନିନ୍ଦା ରଟିବ ଏବଂ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ଚଳାଇବାରେ ସେମାନେ ଅନୁପଯୁକ୍ତ ବୋଲି ସରକାର ଦୁଆ ଉଠାଇବେ । ଏଣେ ପୁଣି ଆମ୍ଭମାନଙ୍କର ସମାଲୋଚକ ବିରୁଦ୍ଧ ମତାବଲମ୍ବୀମାନଙ୍କୁ ତାହା ସୁହାଇବ । ଏ ବିଷୟରେ ସବୁବେଳେ ସାବଧାନ ରହିବା ଆବଶ୍ୟକ । ଦେଶର ଜନସାଧାରଣ ନ ହେଲେ ଅନ୍ତତଃ ମତଦାତାମାନଙ୍କ ନିକଟରେ ଆପଣମାନଙ୍କର ଗୁରୁଦାୟିତ୍ୱ ଅଛି ।

ପ୍ରବର ଜିଲ୍ଲାବୋର୍ଡ଼, ଲୋକାଲ ବୋର୍ଡ଼ର ମେମ୍ବରମାନଙ୍କ ପରି ଆପଣମାନେ ବୋର୍ଡ଼ ବୈଠକରେ କେବଳ ଉପସ୍ଥିତ ହୋଇ, ସେ ବିଷୟରେ ମଧ୍ୟ କେବେ କେବେ ଉଦାସୀନ ହୋଇ ଖାଲି ମେମ୍ବର ପଦର ଗୌରବ ଭୋଗକଲେ ଚଳିବନାହିଁ । ଦେଶ-ଲୋକେ ଆମଠାରୁ ବହୁତ ଆଶା କରନ୍ତି । ତାହା ନ ହେଲେ କଂଗ୍ରେସ ପକ୍ଷୀୟ ଏତେ ଅଧିକ ମେମ୍ବର ଏହିସବୁ ବୋର୍ଡ଼ମାନଙ୍କରେ ପ୍ରବେଶ କରିପାରି ନ ଥାନ୍ତେ । ଲୋକଙ୍କର ଧନୀ, ମହାଜନ, ଜମିଦାର, ଓକିଲ ପ୍ରଭୃତିଙ୍କ ଉପରେ ଆଉ ତେତେ ବିଶ୍ୱାସ ବା ଆସ୍ଥା ନାହିଁ । ସେମାନେ ତେଣୁ ନିରାଶ ହୋଇଛନ୍ତି, ଧକ୍କା ଖାଇଛନ୍ତି । ସେମାନଙ୍କ ମନରେ ବିଶ୍ୱାସ ହୋଇଛି ଯେ, କଂଗ୍ରେସ କର୍ମୀମାନେ ଆମପାଇଁ ଦୁଃଖ ସହୁଛନ୍ତି; କିଛି କରି ପାରନ୍ତୁ, ନପାରନ୍ତୁ ଆମପାଇଁ ଲଢ଼ୁଛନ୍ତି, ଆମପାଇଁ ବ୍ୟଥିତ ଓ ବ୍ୟାକୁଳ ହେଉଛନ୍ତି । ବୋର୍ଡ଼ର କଂଗ୍ରେସ ମେମ୍ବରମାନେ ଆମଣା ଆପଣାର କାର୍ଯ୍ୟଦ୍ୱାରା ଲୋକଙ୍କର ଏ ବିଶ୍ୱାସକୁ ଯେପରି ଦୃଢ଼ କରନ୍ତି । ସ୍ୱାୟତ୍ତଶାସନରେ ଲୋକମାନଙ୍କର କି ଅଧିକାର ଓ କି କର୍ତ୍ତବ୍ୟ, ଏହା ସେମାନଙ୍କୁ ଶିଖାଇବା ସର୍ବପ୍ରଥମ କାର୍ଯ୍ୟ ।

ଗ୍ରାମରେ ସ୍ୱାସ୍ଥ୍ୟ, ଶିକ୍ଷା ଓ ପଥର ସୁବିଧା ଆଦିର ସୁବ୍ୟବସ୍ଥା କରିବାତ ବୋର୍ଡର ପ୍ରଧାନ କର୍ତ୍ତବ୍ୟ । ସେ ବିଷୟରେ ଅଧିକ କହିବା ଅନାବଶ୍ୟକ । ମାତ୍ର ଆଜିକାଲି ଯେ ମାଲେରିଆ ଓଡ଼ିଶାର ସମୁଦ୍ରକୂଳ ତିନ ଜିଲାରେ ବ୍ୟାପିଛି, ଶୁଣିଲି, ଏବର୍ଷ ଭଦ୍ରଖ ସବ୍‌ଡିଭିଜନର କେତେକ ଥାନାରେ ଏହା ଯେପରି ଅତ୍ୟନ୍ତ ଭୀଷଣ ହୋଇଅଛି, ସେଥିରେ ବୋର୍ଡର କଂଗ୍ରେସ ମେମ୍ବରମାନଙ୍କର କାର୍ଯ୍ୟ ଓ ଦାୟିତ୍ୱ ଦ୍ୱିଗୁଣ ନୁହେଁ, ଦଶଗୁଣ ନୁହେଁ, ଶତଗୁଣ ବଢ଼ି ଯାଇଛି । ଲୋକସେବା ଆମ୍ଭମାନଙ୍କର ବ୍ରତ; ସୁତରାଂ ଉପସ୍ଥିତ କ୍ଷେତ୍ରରେ ଯଥାସାଧ୍ୟ ଯତ୍ନ କରିବା କର୍ତ୍ତବ୍ୟ । କେବଳ ସେତିକି ନୁହେଁ, ଏ ସମସ୍ୟା ସମୟରେ, ଏ ପରୀକ୍ଷାବେଳେ ଆମ୍ଭେମାନେ ଯେପରି ଲେଶ ମାତ୍ର ହେଲା ବା ବା ତ୍ରୁଟି ନ କରେଁ । ଲୋକ ସାଧାରଣ ବୁଝନ୍ତୁ, କଂଗ୍ରେସବାଲାମାନେ ବୋର୍ଡରେ ଥିବାରୁ ଆମର ଜୀବନରକ୍ଷା ହେଲା, ନ ହେଲେ ଅନ୍ତତଃ ଆମଲାଗି ଯଥାସାଧ୍ୟ ଯତ୍ନ ଓ ବିଶ୍ୱାସହିଁ ଆମ୍ଭମାନଙ୍କ କାର୍ଯ୍ୟର ପ୍ରଧାନ ପୁରସ୍କାର; ଏହାହିଁ ଆମ୍ଭମାନଙ୍କର ପ୍ରଧାନ ସମ୍ବଳ ।

ବୋର୍ଡର ବେ-କଂଗ୍ରେସ ମେମ୍ବରମାନଙ୍କଠାରେ ମୋର ବିଶେଷ ଅନୁରୋଧ ଯେ ସେମାନେ ଯେପରି କଂଗ୍ରେସ ମେମ୍ବର ମାନଙ୍କ ପ୍ରତି ପ୍ରତିଦ୍ୱନ୍ଦ୍ୱୀଭାବ ସବୁବେଳେ ନ ରଖନ୍ତି, କିମ୍ବା କଂଗ୍ରେସ ମେମ୍ବରମାନେ ସେମାନଙ୍କୁ ଯେପରି ନିଜ ଦଳରୁ ଅଲଗାବୋଲି ନ ବିଚାରନ୍ତି । ଏଭଳି ଭାବ ପରସ୍ପର ମଧ୍ୟରେ ରହିଲେ ବୋର୍ଡର କାର୍ଯ୍ୟ ପରିଚାଳନା ସହଜ ଓ ସୁଗମ ହେବନାହିଁ । ବେ-କଂଗ୍ରେସ ବା କଂଗ୍ରେସର ଯେ କେହି ମେମ୍ବର ହୁଅନ୍ତୁ, ବୋର୍ଡର ପ୍ରତ୍ୟେକ ମେମ୍ବର ଆପଣାକୁ ମତଦାତାମାନଙ୍କଠାରେ ଓ ଜନସାଧାରଣଙ୍କଠାରେ ଦାୟୀ ବୋଲି ଜାଣିବା ଆବଶ୍ୟକ । ଲୋକ ସାଧାରଣଙ୍କ କଥାକୁ ପଛକୁ ପକାଇ ସରକାରଙ୍କ ମୋହବଶତ ବା ଖାତିରରେ ଚାଲିତ ହୋଇ କୌଣସି କାର୍ଯ୍ୟ କରିବା ସ୍ୱାୟତ୍ତଶାସନ ସମ୍ବନ୍ଧରେ କୌଣସି ସଭ୍ୟପକ୍ଷେ ମହାପାପ ।

କଂଗ୍ରେସ ମେମ୍ବରମାନେ କଂଗ୍ରେସର ଗଠନମୂଳକ କାର୍ଯ୍ୟରେ ସହାୟତା କରିବା ଆଶାରେ ବୋର୍ଡ ଆଦିରେ ପଶିଛନ୍ତି । ଗଠନମୂଳକ କାର୍ଯ୍ୟରେ ବେକଂଗ୍ରେସବାଲା ବା ଅନ୍ୟ କାହାରି କିଛି ଆପତ୍ତି ହୋଇ ନ ପାରେ । କଂଗ୍ରେସର ଗଠନମୂଳକ କାର୍ଯ୍ୟ ମଧ୍ୟରେ ଖଦଡ଼ ପ୍ରଚାର ପ୍ରଧାନ । ସୁଖରକଥା ଓଡ଼ିଶାର ବୋର୍ଡମାନ ଏ ଦିଗରେ ଉଦ୍ୟମ ଆରମ୍ଭ କରିଛନ୍ତି । କିନ୍ତୁ ତାହା ଖାଲି କାଗଜ କଲମରେ ବା ଅଫିସ ସଜାଇବା ମୁତାବକ ଲଫାପା ଦୋରସ୍ତ ରଖିବା ଉଦ୍ଦେଶ୍ୟରେ ଚଳାଇଲେ ହେବନାହିଁ । ସେଥିରେ ବୋର୍ଡର

ପ୍ରତ୍ୟେକ ମେମ୍ବର, ଏପରିକି ବୋର୍ଡ଼ର କର୍ମଚାରୀ ଓ ବୋର୍ଡ଼ ଅଧୀନ ସମସ୍ତ ଶିକ୍ଷକ ଓ ଅନ୍ୟାନ୍ୟମାନେ ମନପ୍ରାଣ ଢାଳିଦେଇ ନ ଲାଗିଲେ ହେବ ନାହିଁ ।

ଓଡ଼ିଶାପରି ଦରିଦ୍ର ଦେଶରେ ମୁଁ ଘରେଘରେ ଅରଟ ଚାଲିଲେ ଓଡ଼ିଶାର ତନ୍ତୀମାନେ ଖଦଡ଼ ଲୁଗାବୁଣି ଏ ପ୍ରଦେଶକୁ ଏବଂ ଏ ପ୍ରଦେଶର ବାହାରକୁ ଖଦଡ଼ ଯୋଗାଇଲେ ଆମର ଦରିଦ୍ରତା ବହୁପରିମାଣରେ ଦୂର ହେବ ବୋଲି ମୋର ସମ୍ପୂର୍ଣ୍ଣ ବିଶ୍ୱାସ । ଏହି ଭଦ୍ରଖ ସବ୍‌ଡ଼ିଭିଜନରେ ଯେବେ ଲୋକସଂଖ୍ୟା ପାଞ୍ଚଲକ୍ଷ ଧରାଯାଏ, ପ୍ରତି ଘରକେ ଯେବେ ପାଞ୍ଚଜଣ ଲୋକ ଧରାଯାନ୍ତି, ତାହାହେଲେ ଏକଲକ୍ଷ ପରିବାର ଅଛନ୍ତି ବୋଲି ବୁଝି । ପ୍ରତି ପରିବାରରେ ଖଣ୍ଡେକରି ଅରଟ ଚାଲିଲେ ଏବଂ ସେଥିରେ ଅଧିକ ନ ହେଉ ଦିନକୁ ଦୁଇପଇସାର ସୂତାକଟା ହେଲେ, ମାସକୁ ଏକଲକ୍ଷ ଟଙ୍କା । ବର୍ଷକୁ ବାରଲକ୍ଷଟଙ୍କା ଭଦ୍ରକ ସବ୍‌ଡିଭିଜନର ଅଧିକ ଆୟ ହେଲା । ଦରିଦ୍ର ଦେଶ ପକ୍ଷରେ ଏହା ଅଳ୍ପ ଆୟ କି ? ଦିନକେ ବା ବର୍ଷକେ ଏହା ନ ହୋଇପାରେ । ପାଞ୍ଚବର୍ଷରେ ହେଉ, ତାହାହିଁ ମୋ ପକ୍ଷେ ବଡ଼ ଆଶ୍ୱାସନା । ଘରେ ଘରେ ଏପରି ଅରଟ ଚଳାଇବା ଲାଗି ବିପୁଳ ଆୟୋଜନ ଦରକାର । ପ୍ରତ୍ୟେକ ସ୍କୁଲପିଲା ସୂତାକାଟି ଜାଣନ୍ତୁ । ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ, ଗୁରୁଟ୍ରେନୀ ସମସ୍ତେ ସୂତାକାଟି ଶିଖନ୍ତୁ; ଆପଣମାନେ ଗ୍ରାମରେ ବୁଲିବାବେଳେ ଲୋକଙ୍କୁ ବୁଝାନ୍ତୁ ଏବଂ ସୂତାକାଟିବା ଲାଗି ସେମାନଙ୍କର ସୁବନ୍ଦୋବସ୍ତ କରି ଦିଅନ୍ତୁ । ଯତ୍ନକଲେ ବୋର୍ଡ଼ ମେମ୍ବରମାନେ ଏ ବିଷୟରେ ବହୁତ କାର୍ଯ୍ୟ କରିପାରିବେ ।

ପ୍ରାଥମିକ ଶିକ୍ଷା ବୋର୍ଡର ଏକ ମୁଖ୍ୟ କାର୍ଯ୍ୟ । ପ୍ରତି ଗାଁରେ ପ୍ରାଥମିକ ବିଦ୍ୟାଳୟ ବସାଇବାକୁ ବୋର୍ଡର ଯଥେଷ୍ଟ ଧନ ନାହିଁ । ଯାହା ଅଛି ସେଥିରେ ଯେତେଦୂର ହୋଇପାରେ ହେଉ; ତାହାଛଡ଼ା ଆପଣମାନେ ଲୋକଙ୍କୁ ପରାମର୍ଶ ଦେଇ ଆମର ପୂର୍ବ ଗାଁରେ ଚାଟଶାଳୀ ବସାନ୍ତୁ । ସେଥିକି ବୋର୍ଡ ବର୍ତ୍ତମାନ କିଛି ସାହାଯ୍ୟ ନ ଦେଇ ପାରେ, ପୂର୍ବପରି ଗ୍ରାମ ଲୋକେ ଶିକ୍ଷକଙ୍କୁ ଖାଇବାକୁ ଦେଇ କିଛି କିଛି ପଇସା ଦେଇ ଏବଂ ଶ୍ରୀପଞ୍ଚମୀ ଓ ହରିତାଳିକାକୁ କିଛି କିଛି ବିଦାକି ଦେଇ କାର୍ଯ୍ୟ ଚଳାନ୍ତୁ । ମୁଁ ଶୁଣିଛି, ଏବେ ସୁଦ୍ଧା ଗଞ୍ଜାମରେ ଏ ଭାବରେ କେତେ ସ୍ଥାନରେ ପ୍ରାଥମିକ ବିଦ୍ୟାଳୟ ଚଳୁଛି । ଏହିସବୁ ଆମ୍ଭମାନଙ୍କର ଜାତୀୟ ପ୍ରାଥମିକ ବିଦ୍ୟାଳୟ ହେବ । ଏ ବିଦ୍ୟାଳୟରେ ଅରଟ ଚଳାଇବାର ଭଲ ବନ୍ଦୋବସ୍ତ ହେଲେ ସେଥିରୁ କିଛି ମଧ୍ୟ ଆୟ ହେବ ।

ମୋଟକଥା ଏହି ପ୍ରକାରେ କାର୍ଯ୍ୟ କଲେ ଶିକ୍ଷକଙ୍କର ଯଥା କଥା କାର୍ଯ୍ୟ ଚାଲିଯିବ । ଆପଣମାନେ ଗ୍ରାମ ଲୋକଙ୍କୁ ବୁଝାଇ ଉତ୍ସାହିତ କଲେ ସେମାନେ ଏହା କେତେକ ସ୍ଥାନରେ ଅନ୍ତତଃ କରିବେ ବୋଲି ଆଶା ।

ମୋର କଥା ଶେଷ କରିବା ପୂର୍ବରୁ ଭଦ୍ରଖବାସୀ ଜନସାଧାରଣ ହିନ୍ଦୁ ମୁସଲମାନ ଭାଇମାନଙ୍କୁ ଅନ୍ତରର ସ୍ନେହ, ପ୍ରୀତି ଓ କୃତଜ୍ଞତା ଜଣାଉଅଛି । ଭାଇ, ଆପଣମାନେ ଅଭିନନ୍ଦନ ପତ୍ର ରେ ମୋର ଯେ ଗୁଣଗାନ କରିଛନ୍ତି, ତହିଁରେ ଢେର ତାଳ ହୋଇଅଛି । ମୋର କ୍ଷମତା, ଶକ୍ତି, ସାମାନ୍ୟ ଗୁଣ ଓ କ୍ଷୁଦ୍ର କ୍ଷୁଦ୍ର କାର୍ଯ୍ୟ ଆପଣମାନଙ୍କ ସ୍ନେହ ଅଣୁବୀକ୍ଷଣରେ ଅତିବଡ଼ ଦେଖାଯାଉଛି । ଆପଣମାନଙ୍କୁ ଅଧିକ କିଛି କହିବାର ନାହିଁ । ଲୋକାଲବୋର୍ଡ ମେମ୍ବରମାନଙ୍କୁ ମୁଁ ଯେ ଉତ୍ତର ଦେଲି, ସେଥିରୁ ଅନେକ କଥା ଆପଣମାନଙ୍କ ଅଭିନନ୍ଦନର ଉତ୍ତରରେ ଖଟିବ ।

ଏଠାରେ କେବଳ ହିନ୍ଦୁ ମୁସଲମାନ ମିଳନ ବିଷୟରେ ଦୁଇକଥା କହିବା ଆବଶ୍ୟକ ମନେ କରୁଅଛି । ଭଦ୍ରଖରେ ଏଗାର ବାର ହଜାର ମୁସଲମାନ ବାସ କରନ୍ତି । ପଡ଼ୋଶୀ ହିନ୍ଦୁମାନଙ୍କ ସଙ୍ଗେ ସେମାନଙ୍କର ବରାବର ଭାଇ ଭାବ ରହିଥିବା ବଡ଼ ସୁଖର କଥା । ଓଡ଼ିଶାରେ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ବାଦବିବାଦ ନାହିଁ, ଏ ପ୍ରଦେଶର ଏ ଗୌରବ ସର୍ବଦା ଯେପରି ଅକ୍ଷୁଣ୍ଣ ରହେ, ତାହା ମୋର ଏକାନ୍ତ ପ୍ରାର୍ଥନା । ହିନ୍ଦୁ ମୁସଲମାନ ମିଳନ ବିନା ସ୍ୱରାଜ୍ୟ ଅସମ୍ଭବ । ଆମ୍ଭମାନଙ୍କର ଅନୁଡ଼ଶାଳ ଏକା ଜାଗାରେ, ଜୀବନର ଲୀଳାଖେଳା ଏକ ଜାଗାରେ, ଶେଷରେ ମଶାଣି ଏକ ଜାଗାରେ । ଭଦ୍ରଖ ଭୂମି ହିନ୍ଦୁ ମୁସଲମାନ ଭେଦ ନ ରଖି, ବ୍ରାହ୍ମଣ ଚଣ୍ଡାଳ ଭେଦ ନ ରଖି, ଜନ୍ମବେଳେ ସମସ୍ତଙ୍କୁ ଆପଣାର ପାଣି ପିଇବାକୁ ଦେଉଛନ୍ତି । ଭଦ୍ରଖର ଭୂମି ସମସ୍ତଙ୍କୁ ସମାନରୂପେ ଶସ୍ୟ ଯୋଗାଉଛି, ଶେଷରେ ଭଦ୍ରଖ ପୁଣି ଭେଦାଭେଦ ନ ରଖି ସମସ୍ତଙ୍କୁ ଅନ୍ତିମ ଶଯ୍ୟାରେ ଆପଣାର କ୍ରୋଡରେ ସ୍ଥାନ ଦେଇଛି । ଏ ମାତୃଭୂମି ସମସ୍ତଙ୍କ ପ୍ରତି ସମାନ । ତାଙ୍କ କୋଳରେ ଭେଦାଭେଦ ନାହିଁ । ଏହା ସ୍ୱରାଜ୍ୟର ମୂଳମନ୍ତ୍ର । ଏହା ମନେ ରଖିଲେ ହିନ୍ଦୁ ମୁସଲମାନ ବା ଅନ୍ୟାନ୍ୟ ଧର୍ମ ବା ସମ୍ପ୍ରଦାୟ ମଧ୍ୟରେ କିମ୍ବା ବ୍ରାହ୍ମଣ, ଶୂଦ୍ର ବା ଅଛୁଆଁ ଜାତିଙ୍କ ମଧ୍ୟରେ କୌଣସି ଭେଦବାଦ ବା ବିବାଦ ଘଟିବ ନାହିଁ । ସୂତାକଟାରେ ଆମ ଦେଶରେ ମୁସଲମାନ ସ୍ତ୍ରୀମାନଙ୍କର ବହୁ ପୂର୍ବରୁ ସୁଖ୍ୟାତି ଅଛି । ଭଦ୍ରଖର ପ୍ରତ୍ୟେକ ମୁସଲମାନ ପରିବାର ଏହି ପୂର୍ବ ଗୌରବ ପୁଣି ଉଦ୍ଧାର କରନ୍ତୁ ଏବଂ ହିନ୍ଦୁ ପରିବାର

ସେମାନଙ୍କୁ ଦେଖି ଶିଖନ୍ତୁ । ଏହିପରି ପଡ଼ୋଶୀ ଦେଖା ଶିଖା ଦିଆନିଆ ଭାବ ଦ୍ୱାରା ଭଦ୍ରଖରେ ହିନ୍ଦୁ ମୁସଲମାନମାନଙ୍କ ଭାଇଭାବ ଦୃଢ଼ରୁ ଦୃଢ଼ତର ହେଉ । ଅଳ୍ପଦିନ ତଳେ ଖବର କାଗଜରେ ପଢ଼ିଥିଲି ସୋରୋର କୌଣସି ମୁସଲମାନ ପରିବାରରେ କାହାର ସୁନତ୍ ହେବା ଉପଲକ୍ଷେ ହିନ୍ଦୁ ପଡ଼ୋଶୀମାନଙ୍କ ନିମନ୍ତେ ସ୍ୱାମୀସ୍ତ ରଘୁନାଥଙ୍କ ମନ୍ଦିରରେ ଆଦାରିଦିର ବ୍ୟବସ୍ଥା ହୋଇଥିଲା । ହିନ୍ଦୁମାନେ ଏ ମୁସଲମାନ ଭାଇଙ୍କର ପାରିବାରିକ ଉତ୍ସବରେ ଯୋଗ ଦେଇଥିଲେ । ଏ ଖବର ମୋ ପ୍ରାଣରେ ପରମ ଆହ୍ଲାଦ ଦେଇଥିଲା । ଆମ ଓଡ଼ିଶାରେ ହିନ୍ଦୁମାନଙ୍କର ଦଶହରା ଆଦି ଉତ୍ସବରେ ମୁସଲମାନମାନେ ଏବଂ ମୁସଲମାନମାନଙ୍କର ମହରମ ପ୍ରଭୃତି ଉତ୍ସବରେ ହିନ୍ଦୁମାନେ ଅତି ଉତ୍ସାହରେ ଯୋଗ ଦେଇଥାନ୍ତି । ପୂର୍ବର ହିନ୍ଦୁ ରାଜା ଓ ଜମିଦାରମାନେ ମୁସଲମାନ ପୀରମାନଙ୍କ ଲାଗି ଅନେକଠାରେ ପିରୋତ୍ତର, ଦେବୋତ୍ତର ବୃତ୍ତି ଛାଡ଼ିଛନ୍ତି ଓ ମୁସଲମାନ ନବାବ ଏବଂ ବାଦଶାହମାନେ ହିନ୍ଦୁ ମଠ ଆଦିରେ ବୃତ୍ତି ଛାଡ଼ିଛନ୍ତି । ମୁଁ ଯେତେଦୂର ଜାଣେ, ଏ ଭଦ୍ରଖରେ ସଦାବ୍ରତ ମଠ ଏଥିର ଏକ ପ୍ରମାଣ । ଦେଶରେ ପୂର୍ବରୁ ଯେ ଏହିପରି ସ୍ନେହ ସଦ୍ଭାବ ରହିଛି ଉକ୍ତ ସୋରୋ ଘଟଣା ଭଳି କାର୍ଯ୍ୟ ଦ୍ୱାରା ତାହାକୁ ବର୍ତ୍ତମାନ ସହଜ ସୁମଧୁର ଏବଂ ଜାଗ୍ରତ କରିବାକୁ ହେବ । ସାଇ ପଡ଼ିଶାରେ ଘର କଲେ ବେଳେ ବେଳେ କୌଣସି କୌଣସି କାରଣରୁ ଯେ କାହାର କାହାର ଭିତରେ କଳହ ବିବାଦ ନ ଘଟିବ, ଏହା କୁହାଯାଇ ନ ପାରେ; ମାତ୍ର ଏପରି ବ୍ୟକ୍ତିଗତ ବିବାଦକୁ ଯେପରି କେବେ ଦଳଗତ ବିବାଦ କରି ଛିଡ଼ା କରା ନ ଯାଏ, ତାହାହିଁ ବିପଦ । ପ୍ରଭୁ ଅମ୍ଭମାନଙ୍କୁ ଏ ବିବାଦରୁ ସର୍ବଦା ରକ୍ଷା କରନ୍ତୁ । ଆଉ ଅଧିକ କିଛି ମୋର କହିବାର ନାହିଁ । ଆପଣମାନେ ଆଜି ମତେ ଯେ ଆଦର ଓ ସ୍ନେହ ସଂବର୍ଦ୍ଧନା ଦେଖାଇଛନ୍ତି ତଦ୍ୱାରା ଭଦ୍ରଖଠାରେ ମତେ ଚିରଦିନ କୃତଜ୍ଞତା ପାଶରେ ବାନ୍ଧି ରଖିଲେ । ଏଥିରୁ ମୋର ଆଉ ମୁକୁଳିବାର ଉପାୟ ନାହିଁ । ମୋ ଶକ୍ତିମତେ ଯଥା ସମୟରେ ଆପଣମାନଙ୍କର ସେବା କରିବାର ସୁବିଧା ସୁଯୋଗ ପାଇଲେ ମୁଁ ସୁଖୀ ହେବି ଏବଂ ଆପଣାକୁ କୃତାର୍ଥ ମଣିବି ।

('ସମାଜ' ତା: ୭ । ୧୨ । ୨୪)

———

# ଲୁଗା ବେପାରୀଙ୍କ ସର୍ବନାଶ

ଭାରତରେ ଲୁଗା ବେପାରୀମାନଙ୍କର ବର୍ତ୍ତମାନ ଘୋର ଅତଙ୍କ । ସେମାନେ କୋଟି କୋଟି ଟଙ୍କା ଖଟେଇ କରି ଯେ ବ୍ୟବସାୟ ଆରମ୍ଭ କରିଥିଲେ ତାହା ବୁଡ଼ିଯିବା ଉପରେ ବସିଛି । ଭାରତରେ ଯେ ସବୁ କଳଲୁଗା ବ୍ୟବହାର ହୁଏ ତାହା ତିନ ଜାଗାରୁ ଆସେ । ବିଲାତରେ ମାଞ୍ଚେଷ୍ଟର ସହର, ଜାପାନ ଓ ଭାରତର ବମ୍ବେ, ଅହମଦାବାଦ, ନାଗପୁର ପ୍ରଭୃତି ମିଲ ବା ଲୁଗା କାରଖାନା । ଯେଉଁସବୁ ମାନ୍ଦ୍ରାଜୀ, ନାଗପୁରୀ ଲୁଗା ମିଳୁଛି, ତାହା ଏ ଦେଶ କଳ କାରଖାନାରେ ତିଆରି, ଏ ଦେଶ ଲୋକଙ୍କ ଟଙ୍କାରେ ଏସବୁ କାରଖାନା ବମ୍ବେ ଅହମଦାବାଦ ପ୍ରଭୃତିରେ ବସିଛି । ଏ ଦେଶର ମଜୁରିଆମାନେ ଏଥିରେ କାମ କରନ୍ତି । ତେଣୁ ଏ କଳଲୁଗା ସବୁ ଦେଶୀମାଲ । ଏହା ବିଲାତି ବା ଜାପାନୀ ଲୁଗାଠାରୁ ସଫା । ବେଶୀଦିନଯାଏ । ଯୁଦ୍ଧବେଳେ ବିଲାତ ପ୍ରଭୃତିରୁ ଯେତେ-ବେଳେ ଲୁଗା ନ ଆସିଲା, ମହଙ୍ଗା ହେଲା, ସେତେବେଳେ ଏମାନେ ବହୁତ ଲୁଗା ଯୋଗାଇଲେ ଏବଂ ଲାଭ ମଧ୍ୟ କଲେ । ଯୁଦ୍ଧପରେ ଏବେ ବିଲାତ ଜାପାନ ଭାରି ଶସ୍ତାରେ ସରୁସୂକ୍ଷ୍ମ ପାତଳା ଲୁଗା ଆଣି ଭାରତର ଘରଅଡ଼େ ବିକି କରାଉଛନ୍ତି । ଏ ଦେଶରୁ ତୂଳାନେଇ ତାହାରେ ବିଲାତ ଜାପାନରେ ଲୁଗା ତିଆରି କରି ଏଡ଼େ ଶସ୍ତାରେ ଏମାନେ ଦେଉଛନ୍ତି ଯେ ଦେଶୀ କଳଲୁଗାବାଲାମାନେ ତାଙ୍କ ସଙ୍ଗେ ପାରୁନାହାନ୍ତି । ଏଥିର କାରଣ ଭାରତ ସରକାର ଏକ ପେଞ୍ଚକରି ଦେଶୀ କଳଲୁଗା ବାଲାଙ୍କୁ ଦବାଇ ଦେଉଛନ୍ତି । ଏ ଦେଶ ତିଆରି ଲୁଗା ଉପରେ ଭାରତ ସରକାର ଏବେ ଅଧିକ କର ବସାଇ ଦେଉଛନ୍ତି । ଫଳରେ ଲୁଗା ଦାମ ଉପରେ ଏ ସବୁ ଟିକସ ଟଙ୍କା ମିଶି ବିଲାତି ଲୁଗା ଦାମଠାରୁ ଅଧିକ ହେଉଛି । ଦେଶୀ କଳଲୁଗାବାଲାଙ୍କୁ ଏ ବିପତ୍ତିରୁ ରକ୍ଷା କରିବାପାଇଁ ସେମାନେ ଏବେ ବଡ଼ଲାଟଙ୍କ ଠାରେ ଗୁହାରି କରିଥିଲେ । ବଡ଼ଲାଟ ବର୍ତ୍ତମାନ କିଛି କରି ପାରିବେ ନାହିଁ ବୋଲି ନାସ୍ତି କଲେ । ଏଣୁ କ୍ରମେ ଅନେକ ଦେଶୀଲୁଗା କାରଖାନା ବନ୍ଦ ହୋଇ ଯାଉଛି । ଅନେକ କଳକାରଖାନା ବର୍ତ୍ତମାନ ମଜୁରିଆମାନଙ୍କର ଦରମା କମାଇ ଦେଉଛନ୍ତି । କେତେ କାରଖାନାରେ ମଧ୍ୟ ଆମଦାନୀ କମାଇ ଦିଆହେଉଛି । କଲିକତାରେ ବେପାରୀମାନଙ୍କଠାରେ ବର୍ତ୍ତମାନ ଦେଶୀକଳଲୁଗା ବହୁତ ଜମାହୋଇ ରହିଛି ।

ଯେପରି ଦେଖାଯାଉଛି ବିଲାତି ଲୁଗା ବେପାରୀମାନେ ଭାରତରେ ଖଦଡ଼ କି କଳଲୁଗା କୌଣସିଟି ଚଳାଇ ନ ଦେବାର ଯୋଗାଡ଼ରେ ଅଛନ୍ତି । ଭାରତରେ ସ୍ୱଦେଶୀ ଆନ୍ଦୋଳନକୁ ଜବତ୍ କରିବାପାଇଁ ବିନାଲାଭରେ ହେଉ ପଛକେ ଶସ୍ତାରେ ସରୁ ସୂକ୍ଷ୍ମଲୁଗା ଦେଖାଇ ଲୋକଙ୍କୁ ଭୁଲାଉଛନ୍ତି । ଲୋକେ ଏ ସବୁ ବୁଝି ସୁଝି ସାବଧାନ ହୋଇ ସ୍ୱଦେଶୀ ପାଇଁ ଟାଣ ଧରନ୍ତୁ । ନ ହେଲେ ସର୍ବନାଶ ।

('ସମାଜ' ତା ୨୨ । ୮ । ୨୫)

———

# ଖଦଡ଼ ହିଁ ମୁଖ୍ୟ କାମ

ମହାତ୍ମାଜୀ କଟକ ଆସିବା ଘଟନାରେ ଅନେକ ଗୁଡ଼ିଏ କଂଗ୍ରେସ କର୍ମୀ ଏକାଠି ହୋଇଥିଲେ । ଯେପରି ସମ୍ବାଦ ମିଳେ ୫୦ ଜଣ ସକ୍ରିୟ କର୍ମୀ ମହାତ୍ମାଜୀଙ୍କ ସହିତ ସାକ୍ଷାତ କରିଥିଲେ; ସ୍ୱଚ୍ଛନ୍ଦରେ କଥାବାର୍ତ୍ତା କରିବାର ମଧ୍ୟ ସୁବିଧା ପାଇଥିଲେ । ଓଡ଼ିଶାରେ ଅଦ୍ୟାପି ଏତେଗୁଡ଼ିଏ କର୍ମୀ ଅଛନ୍ତି ଏହା ବଡ଼ ଆଶାର କଥା । ଦୁଃଖର କଥା ଏହି ଯେ ଏମାନେ ସଂଘବଦ୍ଧ ହୋଇ କାର୍ଯ୍ୟ କରିବାର ସୁବିଧା ଓ ସୁଯୋଗ ପାଉନାହାନ୍ତି । ସେଥିରେ ମଧ୍ୟ ନାନା କାରଣ ଥାଇପାରେ । କଂଗ୍ରେସ କାର୍ଯ୍ୟ ଦବି ଯାଇଛି, ଲୋକଙ୍କ ମତଗତି ଟିକିଏ ଅନ୍ୟପ୍ରକାର ହୋଇଯାଇଛି । ଗୁରିଆଡ଼େ ଦେଶର ଅବସ୍ଥା ଦେଖି କର୍ମୀମାନଙ୍କର ଉତ୍ସାହ ମଧ୍ୟ କମି ଯାଇଛି । ଏଣେ ପୁଣି ଅନେକଙ୍କୁ ପରିବାର ଚିନ୍ତା ଓ ଭବିଷ୍ୟତ ଭାବନା ଗ୍ରାସ କରୁଅଛି । ସମସ୍ତଙ୍କୁ ଏକାଠିରେ ଟାଣି ଧରିବାଭଳି କାର୍ଯ୍ୟ ଦେଶରେ ସେପରି କିଛି ନାହିଁ । ତଥାପି ବଡ଼ ସୁଖ ହୋଇ ୫୦ ଜଣ ଯେ ଆପଣାକୁ ଏବେ ବୁଢ଼ା ଦେଶର କର୍ମୀ ବୋଲି ପରିଚୟ ଦେଉଛନ୍ତି ଏହା କମ୍ ଆଶ୍ୱାସନାର କଥା ନୁହେଁ । କର୍ମୀମାନେ ମହାତ୍ମାଙ୍କ ସହିତ କଥାବାର୍ତ୍ତା କରି ଅବଶ୍ୟ ନୂତନଭାବ ପାଇଥିବେ । ଏଣିକି ଏମାନେ ମିଳିମିଶି ଦେଶରେ ଶୃଙ୍ଖଳାବଦ୍ଧ ଭାବରେ କୌଣସି କାର୍ଯ୍ୟ ଆରମ୍ଭ କଲେ ଶୋଚନାର କାରଣ ରହିବ ନାହିଁ । କାମ ନ ଥିଲେ ମନୁଷ୍ୟ ମନକୁ ନାନା ଦୁଶ୍ଚିନ୍ତା ଆସେ । ଅନେକ କର୍ମୀଙ୍କର ସେହି ଅବସ୍ଥା ହୋଇଅଛି । କେତେକ ଅଳସୁଆ ହେଲେଣି । କେହି କେହି ଆପଣା ପୂର୍ବ ସହକର୍ମୀଙ୍କ ଗୁଣ ଦୋଷ ବିଗ୍ଭରରେ ବ୍ୟସ୍ତ । କାହାର କାହାର ଜ୍ଞାନ ଅନ୍ୟ ମାର୍ଗରେ ଦୌଡ଼ିଲଣି । ଏ ସମସ୍ତଙ୍କୁ ଠିକ୍ ରାସ୍ତାରେ ଧରି ରଖିବାର ଏକମାତ୍ର ଉପାୟ କର୍ମ । କଟକରେ ଯେତେ ଗୁଡ଼ିଏ କର୍ମୀ ମିଳିଥିଲେ ଅନ୍ୟଥାରେ ସେତିକିଗୁଡ଼ିଏ ଏକାଠି ହେବା ବଡ଼ ସହଜ ନୁହେଁ । ଭବିଷ୍ୟତର କାର୍ଯ୍ୟ ସ୍ଥିର କରିବା ଲଗି ଏହା ଏକ ସୁବିଧା ଘଟିଥିଲା । ସେପରି କିଛି ଯଦି ସ୍ଥିର ନ ହୋଇଯାଏ ତାହାହେଲେ ଗାନ୍ଧୀଙ୍କର କଟକ ଅବସ୍ଥାନ ଦୁଇଦିନ ଯାତ୍ରା ମାତ୍ର ବୋଲିଧିବ । ସାଧାରଣ ଲୋକଙ୍କ ପ୍ରତି ଏହା ଯାତ୍ରା ହୋଇପାରେ । ସେମାନେ 'ମହାତ୍ମାଗାନ୍ଧୀ କି ଜୟ' ବୋଲି ରଡ଼ିଗୁଡ଼ି ପାଦଧୂଳି ମୁଣ୍ଡରେ ଲଗାଇ ଆପଣାକାମ ଶେଷକଲେ ବୋଲି ବିଗ୍ଭରି ପାରନ୍ତି । ମାତ୍ର କର୍ମୀମାନେ ସେଠାରେ ଏତିକିରେ କାର୍ଯ୍ୟ ଶେଷ କରିବା ଠିକ୍ ନୁହେଁ । ମହାତ୍ମାଗାନ୍ଧୀ ଜାତୀୟଭାବ ଓ ଜାତୀୟ

ଶକ୍ତିର ଜୀବନ୍ତ ପ୍ରତିମୂର୍ତ୍ତି । ତାଙ୍କ ସଙ୍ଗ ଲାଭ କରି କଂଗ୍ରେସ କର୍ମୀମାନେ ଯେବେ ନବ ଭାବରେ ଜାତୀୟ କାର୍ଯ୍ୟରେ ଲାଗିବାକୁ ନ ବାହାରନ୍ତି ତେବେ ତାଙ୍କର ଓଡ଼ିଶା ଆସିବା ବୃଥା । ମହାତ୍ମାଙ୍କ ସଙ୍ଗେ କର୍ମୀମାନଙ୍କ କଥାବାର୍ତ୍ତାର ଯେଉଁ ସାମାନ୍ୟ ସମ୍ବାଦ ଖବର କାଗଜରେ ବାହାରିଥିଲା, ସେଥିରୁ ଜଣାଯାଏ ଯେ ମହାତ୍ମା କର୍ମୀମାନଙ୍କୁ ନିଷ୍ଠାପର-ଭାବରେ କୌଣସି ଏକ କାର୍ଯ୍ୟରେ ଲାଗି ରହିବାକୁ ପରାମର୍ଶ ଦେଇଛନ୍ତି । ମହାତ୍ମାଙ୍କ ମତରେ ତ ସାରାଦେଶ ପ୍ରତି ଖଦଡ଼ ପ୍ରଥମ ଓ ପ୍ରଧାନ କାର୍ଯ୍ୟ । ଓଡ଼ିଶା ପକ୍ଷରେ ଏଥିର ଆବଶ୍ୟକତା ସେ ନାନା ଘଟଣାରେ ବିଶେଷ ଭାବରେ କହିଥାନ୍ତି । ସେଦିନ ମୁନସି-ପାଲଟି ପଢ଼ିଆ ସଭାରେ ମଧ୍ୟ କହି ଅଛନ୍ତି । କର୍ମୀମାନଙ୍କୁ ଯେ ତାହାହିଁ କହିଥିବେ ସନ୍ଦେହ ନାହିଁ । ଉତ୍କଳକୁ ସମସ୍ତ ଭାରତବର୍ଷର ଖଦଡ଼ ଦୋକାନ ଦେଖିଲେ ମହାତ୍ମାଜୀ ସନ୍ତୁଷ୍ଟ ହେବେ । ସେଥିରେ ଉତ୍କଳର ଦରିଦ୍ରତା ଘୁଞ୍ଚିବ । ମହାତ୍ମାଙ୍କ ସହିତ କଥାବାର୍ତ୍ତା କରି କର୍ମୀମାନେ ଯଦି ଏହି ବିଶ୍ୱାସରେ ଫେରି ଯାଇଥାନ୍ତି ଏବଂ ନିଜ ନିଜ ଅଞ୍ଚଳରେ ଏହି ବିଶ୍ୱାସ ଅନୁସାରେ ସାଧ୍ୟମତେ କାର୍ଯ୍ୟ କରିବାକୁ ଲାଗନ୍ତି, ତାହାହେଲେ ଗାନ୍ଧୀଙ୍କର ଓଡ଼ିଶା ଆସିବା ସାର୍ଥକ ଓ କର୍ମୀମାନଙ୍କର ସାକ୍ଷାତ କରିବା ସଫଳ । ଅବଶ୍ୟ ଗାନ୍ଧି ସନ୍ତୁଷ୍ଟ ହେବେବୋଲି ଖଦଡ଼ କାର୍ଯ୍ୟ କରିବାକୁ ହେବ ଏକଥା କେହି କହୁନାହିଁ । କୌଣସି କାର୍ଯ୍ୟରେ କାହାରି ଦୃଢ଼ ବିଶ୍ୱାସ ନ ଜନ୍ମିଲେ କେବଳ ଅନ୍ୟକୁ ସନ୍ତୁଷ୍ଟ କରିବା ଲାଗି ସେ ଉକ୍ତ କାର୍ଯ୍ୟକୁ ବହନ କରି ନ ପାରେ ! କାର୍ଯ୍ୟର ମୂଳବୀଜ ବିଶ୍ୱାସ । ସେପରି ଗାଢ଼ ଅଟଳ ବିଶ୍ୱାସ ନ ଥିଲେ କେହି କୌଣସି କାର୍ଯ୍ୟରେ ମନପ୍ରାଣ ଢାଳିଦେଇ ବହୁଦିନ ଲାଗିରହି ନ ପାରେ । ମାତ୍ର ଦୁଃଖର କଥା, ଅତି ଅଳ୍ପ ଲୋକଙ୍କ ମନରେ ବିଶ୍ୱାସ ବୋଲି ଗୋଟିଏ ଜିନିଷ ଅଛି କି ନାହିଁ ସନ୍ଦେହ । ଏହି ବିଶ୍ୱାସ ଅଭାବରୁ ଆମ୍ଭେମାନେ ବାର ଘଡ଼ିରେ ତେର କାର୍ଯ୍ୟରେ ହାତ ଦେଉ । ଫଳରେ କୌଣସି କାର୍ଯ୍ୟ ଭଲ ହୁଏ ନାହିଁ । ଦେଶର ତ ଅଭାବ ରହିଛି ବହୁତ । ଲୋକେ ଖାଇବାକୁ ଓ ପିନ୍ଧିବାକୁ ପାଉନାହାନ୍ତି; ପ୍ରାଥମିକ ଶିକ୍ଷାର ଯଥେଷ୍ଟ ସୁବିଧା ନାହିଁ; ମାଲେରିଆର ପ୍ରତିକାର ଲୋଡ଼ା; ଗ୍ରାମ୍ୟ ସ୍ୱାସ୍ଥ୍ୟର ଉନ୍ନତି ଦରକାର । ପାଣି ଝଲସିର ବ୍ୟବସ୍ଥା ହେବା ଆବଶ୍ୟକ । ଓଡ଼ିଆ ଦେଶମିଶ୍ରଣର ପ୍ରୟୋଜନ, ସାହିତ୍ୟର ଅଭାବ; ଖବରକାଗଜ ପ୍ରଚାର ବୃଦ୍ଧି, ଶିଳ୍ପ କୃଷି ବାଣିଜ୍ୟର ଉନ୍ନତି କରିବାକୁ ହେବ । ଶ୍ରମଜୀବୀ ସଙ୍ଘ ଗଢ଼ିବାକୁ ହେବ । ସ୍ତ୍ରୀ ଶିକ୍ଷା ପ୍ରଚାର କରିବାକୁ ହେବ । ଏହିପରି ଗୋଟି ଗୋଟି କରି ଆବଶ୍ୟକ କାର୍ଯ୍ୟରେ ତାଲିକା କରିବାକୁ ଗଲେ ସେ ସବୁର ସଂଖ୍ୟା ସରିବ ନାହିଁ । ଓଡ଼ିଶାର ଅବସ୍ଥା ଏପରି ଯେ ସବୁଆଡ଼ୁ ଶୂନ୍ୟ । ଅନ୍ୟାନ୍ୟ ଦେଶ ବା ପ୍ରଦେଶର ସଙ୍ଗେ ତୁଳନା କରି ଓଡ଼ିଶାର

କାର୍ଯ୍ୟ ଦେଖିବାକୁ ଗଲେ ହୃଦୟବାନ ଲୋକ ବିଚଳିତ ହେବା ସହଜ । ସେ କେତେବେଳେ ବିଶ୍ରିବ ଖଦଡ଼ କରିବ, କେବେ ବା ଭାବିବ ସାହିତ୍ୟ ଲେଖିବି; କେବେ ଅନାଥାଶ୍ରମ କାମରେ ଲାଗିବ, କେବେ ନା ଅଛୁଆଁ ଉଦ୍ଧାର ବିଷୟରେ ଆନ୍ଦୋଳନ କରିବ । ଫଳରେ ଆପଣାଶକ୍ତି, ରୁଚି ଓ ସୁବିଧା ଅନୁସାରେ କାର୍ଯ୍ୟ ବାଛି ବିଚାରି ସେଥିରେ ଲାଗି ନ ରହିଲେ ମନୁଷ୍ୟ ଏଣେ ତେଣେ ଧନ୍ଦା ହୋଇ ପାଗଳ ହୋଇଯିବ । ଅଥଚ ଶିବେଇ ସାନ୍ତରା ଦେଉଳ ତୋଳିଲା ପରି ସବୁଯାକ ପଥର ନାଳରେ ଉବୁ ଯିବ; ତାଙ୍କ ଶ୍ରମର କିଛି ଫଳ ହେବ ନାହିଁ । ତେଣୁ ଆମର କର୍ମୀମାନଙ୍କର ପ୍ରଥମେ କାମ ବାଛି ନେବା ଦରକାର, ଖଦଡ଼ ଭଲକାର୍ଯ୍ୟ ସତ । ଆମ୍ଭମାନଙ୍କ ମତରେ ତାହା ଦେଶର ବର୍ତ୍ତମାନ ଅବସ୍ଥାରେ ସର୍ବୋତ୍କୃଷ୍ଟ ଓ ପ୍ରଥମ କାର୍ଯ୍ୟ, ତେବେ ଅନ୍ୟର ସେଥିରେ ସେତକ ବିଶ୍ୱାସ ନ ଥାଇ ପାରେ । ତାଙ୍କର ରୁଚି ଓ ପ୍ରକୃତି ତହିଁର ତେତେ ଅନୁକୂଳ ନ ହୋଇ ପାରେ । ସେ ଅନ୍ୟ ଗୋଟିଏ କିଛି କାର୍ଯ୍ୟ ବାଛନ୍ତୁ । ମନେକର ସେ ବାଛିଲେ ଦେଶର ଶିକ୍ଷା ପ୍ରଚାର । ଅନ୍ୟ ଜଣେ ସେହିପରି ବାଛିଲେ ଗ୍ରାମ ସ୍ୱାସ୍ଥ୍ୟର ଉନ୍ନତି । ସେ ଯାହା ବାଛିଲେ ସେ ସେଥିରେ ଲାଗି ରହନ୍ତୁ, ସେଥିରେ ଆପଣା କାର୍ଯ୍ୟକୁ ସର୍ବାଙ୍ଗ ସୁନ୍ଦର କରିବାକୁ ଚେଷ୍ଟା କରନ୍ତୁ । ଏହା ବୋଲି ଅନ୍ୟ କାର୍ଯ୍ୟଗୁଡ଼ିକ ସେ କାର୍ଯ୍ୟର ବିରୋଧୀ ବୋଲି ଭାବିବା ଉଚିତ ନୁହେଁ । 'ଭିନ୍ନରୁଚି ହି ଲୋକାଃ' । ନାନା ଅଙ୍ଗ, ନାନା ଭାବରେ ଜାତୀୟତା ପରିପୁଷ୍ଟ ହେବ । ଅବଶ୍ୟ ଯେଉଁଠାରେ କାର୍ଯ୍ୟ କରିବା ଲୋକ କମ୍ ସେଠାରେ ଅନେକଗୁଡ଼ିଏ କାମରେ ଜାତୀୟଶକ୍ତି ବିକ୍ଷିପ୍ତ ନ କରି ମୁଖ୍ୟ ଦୁଇଟି ଗୋଟିଏ କାର୍ଯ୍ୟରେ ସମସ୍ତଙ୍କ ମିଳିତ ଶକ୍ତି ଲଗାଇଲେ ଅଧିକ ଫଳ ହେବ । ଫଳ ଲାଭଦ୍ୱାରା ଆମ୍ଭମାନଙ୍କ ମନରେ ବିଶ୍ୱାସ ଦୃଢ଼ତର ହେବ ଏବଂ ଅଧିକ ସାହସ ଓ ଉତ୍ସାହ ଆସିବ । ଉତ୍କଳର କର୍ମୀମାନେ ଶୀଘ୍ର ଏପରି କାର୍ଯ୍ୟ ବାଛନ୍ତୁ । ଶିକ୍ଷା ବୋଲ, ସାହିତ୍ୟ ବୋଲ, ଦେଶମିଶ୍ରଣ ବୋଲ ବା ଅନାଥାଶ୍ରମ ବୋଲ ଏ ସବୁ ପଛ କଥା । ଖାଇବା ପିନ୍ଧିବା କଥା ସବୁ ପ୍ରଥମ । ଖଦଡ଼ଦ୍ୱାରା ଏ ସମସ୍ୟା ଅନେକ ପରିମାଣରେ ସମାଧାନ ହେବ । ଅନ୍ୟାନ୍ୟ ଯେ ଯେଉଁ କାର୍ଯ୍ୟ ବାଛନ୍ତୁ ମଛନେ ଖଦଡ଼ରେ ଉତ୍କଳର ସମଗ୍ର ଶକ୍ତି ଲଗାଇବା ବର୍ତ୍ତମାନ ପ୍ରଧାନ କର୍ତ୍ତବ୍ୟ । ଯେଉଁମାନେ ଅନ୍ୟ କାର୍ଯ୍ୟକୁ ମୁଖ୍ୟ କରି ନେବାକୁ ଚାହାନ୍ତି ସେମାନେ ଖଦଡ଼କୁ ଆନୁଷଙ୍ଗିକ କାର୍ଯ୍ୟକରି ରଖନ୍ତୁ । ଯେଉଁମାନେ ଖଦଡ଼କୁ ମୁଖ୍ୟକରି ନେଉଛନ୍ତି ସେମାନେ ଅନ୍ୟକାର୍ଯ୍ୟ ଲାଗି ତେତେ ବ୍ୟାକୁଳ ହେବା ଦରକାର ନାହିଁ । କାଳକ୍ରମେ ଗ୍ରାମ ସ୍ୱାସ୍ଥ୍ୟ, ପଲ୍ଲୀ ଶିକ୍ଷା ପ୍ରଭୃତି ଅନ୍ୟାନ୍ୟ ଲୋକହିତକର କାର୍ଯ୍ୟ ପଛେ ପଛେ ଆସିବ । ('ସମାଜ' ତା ୨୯ । ୮ । ୨୫)

# ସ୍ୱରାଜ୍ୟ ଦଳର ଗତି

ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ବିୟୋଗ ପରେ ସ୍ୱରାଜ୍ୟ ଦଳର ଭବିଷ୍ୟତ ବିଷୟରେ ଅନେକଙ୍କର ଘୋର ଶଙ୍କା ଓ ସନ୍ଦେହ ଆସିଅଛି । ମହାତ୍ମା ଗାନ୍ଧିଙ୍କ ପ୍ରଭାବରେ ବଙ୍ଗଳାର ସ୍ୱରାଜ୍ୟ ଦଳ ସଂଗଠନ ଏ ପର୍ଯ୍ୟନ୍ତ ଠିକ୍ ଅଛି ସତ; ମାତ୍ର ଆଉ ସେ ପୂର୍ବ ଶକ୍ତି ନାହିଁ । ସ୍ୱରାଜ୍ୟ ଦଳ ଭିତରେ ମେମ୍ବରମାନଙ୍କର ଯେପରି ମେଳ ଥିଲା ପରି ଜଣାପଡ଼ୁ ନାହିଁ । ବଙ୍ଗଳା କାଉନସିଲରେ ସ୍ୱରାଜ୍ୟ ମେମ୍ବର ସଭାପତି ହେବାଲାଗି ଚେଷ୍ଟାକରି ବିଫଳ ହୋଇଗଲେ । ତେଣେ ବଡ଼ଲାଟ ସଭାରେ ପଟେଲ୍ ସାହେବ ସଭାପତି ହୋଇ ସ୍ୱରାଜ୍ୟ ଦଳକୁ ଛାଡ଼ିଗଲେ । ସେ ଏଣିକି ସରକାର ସଙ୍ଗେ ସହଯୋଗିତା କରିବେ ବୋଲି ଇଙ୍ଗିତ ଦେଇସାରିଲେଣି । ସ୍ୱରାଜ୍ୟ ଦଳର ଅଧିନାୟକ ପଣ୍ଡିତ ମୋତିଲାଲ ନେହେରୁ ଭାରତୀୟ ଯୁବକମାନଙ୍କ ଯୁଦ୍ଧଶିକ୍ଷା ବିଷୟ ବିଚାର କରିବାଲାଗି ନିଯୁକ୍ତ ହୋଇଥିବା ସ୍କିନ୍ କମିଟିରେ ସରକାର ତରଫରୁ ମେମ୍ବର ନିଯୁକ୍ତ ହୋଇଛନ୍ତି । ଏ ନିଯୁକ୍ତିରେ କେତେ ଲୋକଙ୍କ ମନରେ ସନ୍ଦେହ ଜନ୍ମିଲା । ତା'ପରେ ପୁଣି ଏଥର ବଡ଼ଲାଟ ସଭା ବୈଠକରେ ବିଚାର ଅଦାଲତର ଅବମାନନା ସମ୍ପର୍କରେ ଏକ ଆଇନର ପ୍ରସ୍ତାବ ଆସିଥିଲା । ଦେଶର ନରମଦଳ, ଗରମଦଳ ଓ ସାଧାରଣ ଖବରକାଗଜ ସମସ୍ତେ ପ୍ରାୟ ଏ ପ୍ରସ୍ତାବିତ ଆଇନର ବିପକ୍ଷରେ ମତ ପ୍ରକାଶ କରିଛନ୍ତି । ସଭାରେ ଭୋଟ ନିଆ ହୋଇଥିଲେ ଏ ପ୍ରସ୍ତାବ ନାମଞ୍ଜୁର ହେବାର ଖୁବ୍ ସମ୍ଭାବନା ଥିଲା, ମାତ୍ର ସରକାର ତରଫରୁ ବୁଝାଇ ଦିଆଗଲାଯେ କମିଟିରେ ପଡ଼ିଲେ ପ୍ରସ୍ତାବିତ ଆଇନର ଆପତ୍ତିଜନକ ଦଫାମାନ ଉଠାଇ ଦିଆଯିବ । ଏଭଳି ଜବାବ ପାଇ ପଣ୍ଡିତ ମୋତିଲାଲ ନେହେରୁ ଓ ତାଙ୍କ ଦଳର ଅନ୍ୟାନ୍ୟ ଅନେକ ମେମ୍ବର ପ୍ରସ୍ତାବ କମିଟିକୁ ଦିଆ ବିଷୟରେ ସମ୍ମତ ହେଲେ । ଏ ଆଇନ ଯଦି ଗ୍ରହଣୀୟ ନୁହେଁ ତାହେଲେ ତ ପ୍ରଥମରୁ ସେଥିରେ ଦୃଢ଼ତଃ ପରିବର୍ତ୍ତେ ବିଧିରେ ବାଧା ଦେବା ଉଚିତ ଥିଲା । "ମୃତ୍ୟୁ ମାଇଲେ ଯାଏ ସରି, ଦେବଙ୍କ ସଙ୍ଗେ କାମ୍ପା କଲି" । ଯେପରି ଦେଖାଯାଉଛି ସ୍ୱରାଜ୍ୟ ଦଳ ଆପଣାର ବାଧା ବା ମାତରୁ କ୍ରମେ ଛୁଡ଼ି ଛୁଡ଼ି ଧଇଲେଣି, ନାଗପୁର ସ୍ୱରାଜ୍ୟଦଳର ସ୍ୱର ଶବ୍ଦ ତ ଆଉ ସେତେ ଶୁଣା ଯାଉନାହିଁ । ବାଧା ଦେବା ସେମାନଙ୍କର ପୂର୍ବପୂର ମୂଳମନ୍ତ୍ର ନୁହେଁ ।

ସ୍ୱରାଜ୍ୟ ଦଳ ଭାରତବର୍ଷରେ ଏକମାତ୍ର ଶକ୍ତିଶାଳୀ ରାଜନୈତିକ ଦଳ । ମହାତ୍ମା ଗାନ୍ଧୀ ସେମାନଙ୍କ ହାତରେ ଏକପ୍ରକାର କଂଗ୍ରେସକୁ ପୂର୍ଣ୍ଣମାତ୍ରାରେ ଛାଡ଼ି ଦେଲେଣି । ଆଗାମୀ କାଉନ୍‌ସିଲ୍ ନିର୍ବାଚନ ଲାଗି ଉଦ୍ୟମ କରିବା ସମୟ ଆଉ ବେଶିଦିନ ନାହିଁ । ସ୍ୱରାଜ୍ୟ ଦଳ ବର୍ତ୍ତମାନ ଆପଣାର ନୀତି ଓ କାର୍ଯ୍ୟକ୍ରମ ସ୍ପଷ୍ଟଭାବରେ ଦେଶ ନିକଟରେ ଜଣାଇଦେବା ଆବଶ୍ୟକ ।

('ସମାଜ' ତା ୧୨ । ୯ । ୨୫)

———

# ବୋଲଗଡ଼ ସଭା

( ଅସହଯୋଗ ଆନ୍ଦୋଳନ ଚଉରିଚୌରାର ହିଂସାତ୍ମକ କାଣ୍ଡ ଫଳରେ ଉଠାଇ ନିଆଯିବା ପରେ ପରେ ଭାରତର ଅନ୍ୟତ୍ର ଯେପରି, ଓଡ଼ିଶାରେ ମଧ୍ୟ ସେହିପରି ଗଠନମୂଳକ କାର୍ଯ୍ୟରେ ହାତ ଦିଆଗଲା । ଦେଶବାସୀଙ୍କୁ ସେ କାର୍ଯ୍ୟରେ ଉଦବୁଦ୍ଧ କରି ସେମାନଙ୍କ ସହଯୋଗ ଲାଭ କରିବା ଓଡ଼ିଶାରେ... ପ୍ରାଦେଶିକ ସମ୍ମିଳନୀ ଗୋପବନ୍ଧୁଙ୍କ ପ୍ରେରଣା ଓ ପ୍ରରୋଚନାରେ ଆରମ୍ଭ ହେଲା । ୧୯୨୫ ମସିହା ନଭେମ୍ବର ମାସ ୨୪ ତାରିଖରେ ଖୋର୍ଦ୍ଧା ସବ୍‌ଡିଭିଜନର ବୋଲଗଡ଼ଠାରେ ଏହିଭଳି ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ଅଭ୍ୟର୍ଥନା ସମିତିର ସଭାପତିରୂପେ ଗୋପବନ୍ଧୁ ଏହି ସମ୍ମିଳନୀରେ ସମବେତ ପ୍ରତିନିଧି ତଥା ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଇ ଯେଉଁସବୁ ପ୍ରାଣସ୍ପର୍ଶୀ କଥାମାନ କହିଥିଲେ, ତହିଁରୁ ତାଙ୍କ ଦେଶ ଓ ଜାତିପ୍ରାଣତାର ସୁନ୍ଦର ପରିଚୟ ମିଳେ । ତଳେ ତାଙ୍କର ସେହି ଭାଷଣଟି ଦିଆଯାଉଛି )

ଭାଇ ଓ ଭଉଣୀମାନେ ! ପ୍ରତିନିଧି ଓ ଦର୍ଶକଗଣ !

ଅଭ୍ୟର୍ଥନା ସମିତି ପକ୍ଷରୁ ମୁଁ ଆପଣମାନଙ୍କୁ ସାଗ୍ରହ ସମ୍ବର୍ଦ୍ଧନା କରୁଅଛି । ଆନ୍ତରିକ ଆଦର ଜଣାଉଛି । ସମ୍ମିଳନୀରେ ଯୋଗଦେବାଲାଗି ବୋଲଗଡ଼କୁ ଆସି ଆପଣମାନେ ଆମ୍ଭମାନଙ୍କୁ ଧନ୍ୟ କରିଛନ୍ତି । ପୁରୀଜିଲା ପକ୍ଷରୁ ବୋଲଗଡ଼ରେ ଏ ସମ୍ମିଳନୀ ହେଉଛି । ବୋଲଗଡ଼ ଏକ କ୍ଷୁଦ୍ର ପଲ୍ଲୀ । ସହରରୁ ବହୁ ଦୂରରେ, ଆପଣମାନଙ୍କର ସତ୍କାର ଉପଯୋଗୀ ସୁବିଧା ବା ସଂଗତି ଏଠାରେ ନାହିଁ । କେତେଦୂର ସ୍ଥାନରୁ କେତେ ଅସୁବିଧା ସହି ଏ ଜାତୀୟ ଯଜ୍ଞରେ ଯୋଗଦେବାଲାଗି ଆପଣମାନେ ଆସିଛନ୍ତି । ଏ ପଲ୍ଲୀରେ ଆପଣମାନଙ୍କ ଶୁଭାଗମନ ଏକ ଅଭିନବ ଘଟଣା । ଆମ୍ଭେମାନେ ଏହା କେବେ ସ୍ୱପ୍ନରେ ଭାବି ନ ଥିଲୁ । କେବଳ ଓଡ଼ିଶାରେ କାହିଁକି, ସମଗ୍ର ଭାରତର ରାଜନୈତିକ ଆନ୍ଦୋଳନରେ ପଲ୍ଲୀରେ ଏଭଳି ବିଶାଳ ଜାତୀୟ ଅନୁଷ୍ଠାନର ଆୟୋଜନ ଏକ ନୂତନ

ପରୀକ୍ଷା । ଆଜ ଆମ୍ଭର ଭାଗ୍ୟବଶୁଁ—ସର୍ବେ ମିଳିଲେ ସର୍ବ ଦେଶୁଁ । ବାସ୍ତବିକ ଆପଣମାନଙ୍କ ଶୁଭାଗମନ ଆମ୍ଭମାନଙ୍କ ପକ୍ଷେ ପରମ ସୌଭାଗ୍ୟ । ମୋର ହେ ତୁମ୍ଭେ ହିଁ ଉପଗତ, ଲୋକେ କରିବେ ନାହିଁ ସତ । ଉତ୍କଳ ବ୍ୟାସ ଜଗନ୍ନାଥ ଦାସଙ୍କର ଏ ପଦ ଏବେ ଏ ଘଟଣାରେ ମନକୁ ଆସୁଛି । ବୋଲଗଡ ନାହିଁ ପୁରୀଜିଲାର କେଉଁ ଅଜ୍ଞାତ କୋଣରେ, ସେଠାରେ ପୁଣି ପ୍ରାଦେଶିକ ସମ୍ମିଳନୀ । ସ୍ୱଜାତିବତ୍ସଳ ଦେଶାନୁରାଗୀ କର୍ମୀ ଓ ନେତାମାନଙ୍କର ସମାଗମ । ଏଠାରେ ଆପଣମାନଙ୍କ ରହିବା ଭଳି ଘରନାହିଁ । ଆହାର ଉପଯୋଗୀ ପଦାର୍ଥ ନାହିଁ । ବାହନ ଉପଯୋଗୀ ଯାନନାହିଁ । ଏତେ ଅଭାବ ମଧ୍ୟରେ ଆପଣମାନଙ୍କ ଅଭ୍ୟର୍ଥନା ଅସମ୍ଭବ, ଅନ୍ୟତ୍ର ଅଭ୍ୟର୍ଥନା ସମିତି ସାଧାରଣତଃ ମର୍ଯ୍ୟାଦା ଜଗି ତ୍ରୁଟିମାର୍ଜନା ଲାଗି କ୍ଷମା ମାଗିଥାଆନ୍ତି । ମାତ୍ର ଏଠାରେ ଆମ୍ଭେମାନେ ବିଧିରକ୍ଷା କରି କିଛି କହୁନାହୁଁ । ଆମ୍ଭମାନଙ୍କ ତ୍ରୁଟି ହେବ କାହିଁ ? ମୂଳରୂପେ ଅଭ୍ୟର୍ଥନାର କିଛି ନାହିଁ । ତେଣୁ ତ୍ରୁଟି ଲାଗି ମାମୁଲି କ୍ଷମା ନ ଲୋଡ଼ି ମୁଁ କରଯୋଡ଼ି କବିଙ୍କ ଭାଷାରେ ଆପଣମାନଙ୍କଠାରେ ଜଣାଉଅଛି, "ତୋତେ ହିଁ ତୁହି ରକ୍ଷାକର, ମୁଁ ଗୁହାର ତୋ ପଦ କିଙ୍କର" । ଯେ ଅନୁଗ୍ରହ ବୋଧି ଏତେଦୂର—ପଥ କଷ୍ଟ ସହି ଏଠାକୁ ଆସିଛନ୍ତି, ସେହି ଦୟାଭାବ ରଖି ସମସ୍ତ ଅଭାବ ଅସୁବିଧା ମଧ୍ୟରେ ଏଠାରେ ଦୁଇଦିନ ଅତିବାହିତ କରି ଆମ୍ଭମାନଙ୍କୁ ସଙ୍ଗ ସୁଖର ସୌଭାଗ୍ୟ ଦେଇଯାନ୍ତୁ ।

ଆପଣମାନଙ୍କ ମଧ୍ୟରୁ କେହି କେହି ପଚାରି ପାରନ୍ତି, ଏତେ ଯେବେ ଅସୁବିଧା ବୋଲଗଡ଼ରେ ଆୟୋଜନ କଲ କାହିଁକି ? ବୋଲଗଡ଼ରେ ଯେପରି ଅଭାବ ଅନାଅଡ଼, ଦେଖିଲେ ସମ୍ମିଳନୀର ବୈଠକଲାଗି ଏହାର କେତେଗୁଡ଼ିଏ ଦାବୀ ଅଛି । ଆପଣମାନେ ଜାଣନ୍ତି, ଖୋର୍ଦ୍ଧା ଏକ ସମୟରେ ଓଡ଼ିଶାର ରାଜଧାନୀ ଥିଲା । ଏହା ବେଶୀ ଦିନର କଥା ନୁହେଁ । ଅଦ୍ୟାପି ସେ ସ୍ମୃତି ଲୋକଙ୍କ ମନରୁ ଲିଭିନାହିଁ । ସ୍ୱାଧୀନତାର ଶେଷ ଦୀପଶିଖା ଦିକ୍ ଦିକ୍ ହୋଇ ଅତି କ୍ଷୀଣ ଭାବରେ ଜଳୁଥିଲା । ଏହି ଖୋର୍ଦ୍ଧାରେ ଏବେଯୁକା ସେ ଫାଉଁଶ ଖୋର୍ଦ୍ଧା ନିକଟରେ ପଡ଼ିରହିଅଛି । ଖୋର୍ଦ୍ଧାର ଗିରିଗହ୍ୱର ଶେଷଦିନ ପର୍ଯ୍ୟନ୍ତ ସ୍ୱାଧୀନଭାବ ଧରି ରଖିଥିଲା । ଓଡ଼ିଶାର ଇତିହାସ ଏ ପର୍ଯ୍ୟନ୍ତ ଲେଖା ହୋଇନାହିଁ । କବି କଣ୍ଠରୁ ସ୍ୱଚ୍ଛନ୍ଦ ଜାତୀୟ ଗୀତ ପ୍ରସରିନାହିଁ; ତେଣୁ ଖୋର୍ଦ୍ଧାର ଗିରିଗୁମ୍ଫା କାନନ ତଡ଼ାଗ ଦେବାଳୟ ନିଜ ନିଜ କଥା ଜଗତକୁ ଶୁଣାଇ ନାହାନ୍ତି । ଉତ୍କଳର କେତେ ବୀରଶୂରଙ୍କର ପବିତ୍ର ଅସ୍ଥିମଜ୍ଜା ଏହି ସବୁ ଗିରି ଗହ୍ୱରରେ ଅଲକ୍ଷିତ ଭାବରେ ପଡ଼ି ରହିଛି । ତାର ହିସାବ ଏପର୍ଯ୍ୟନ୍ତ ଦିଆଯାଇନାହିଁ । ବିଶାଶହେ ବର୍ଷରୁ ଅଧିକକାଳ ଅତୀତ ହେଲା । ଏବେ

ମୁକ୍ତି ଜନ୍ୟ ରାଜଗୁରୁଙ୍କ ଆତ୍ମା ଶାନ୍ତି ଲାଭ କରିନାହିଁ । ପ୍ରେତାକାରରେ କାହିଁ ବଣରେ, କାହିଁ ଝରଣା କୂଳରେ ହା ହା କାର କରି ଆଜି ବୁଲୁଛି । ହୁଏତ ଏହି ଶୈଳ ଶିଖରରେ ରହି ଆଜି ଏହି ମୁହୂର୍ତ୍ତରେ ଆମ୍ଭମାନଙ୍କର ଏ ଜାତୀୟ ଉଦ୍ୟମ ଦେଖି ଟିକିଏ ଆଶ୍ୱାସନା ପାଉଛି ଏବଂ ଦେଶର ସ୍ୱାଧୀନତା ଜାତିର ଗୌରବ ଧର୍ମର ଟେକ ରଖିବାଲାଗି ପ୍ରୟୋଜନ ହେଲେ ଫାଶି କାଠରେ ଶିର ଦେବାପାଇଁ ନୀରବ ଗମ୍ଭୀର ନାଦରେ ଦେଶବାସୀଙ୍କୁ ପ୍ରେରଣା ଦେଉଛି । ଖୋର୍ଦ୍ଧା ରାଜଧାନୀ ଥିବା ସମୟରେ ବୋଲଗଡ଼ ଏକ ଗଡ଼ଥିଲା । ତେଣୁ ଖୋର୍ଦ୍ଧାର ଏହି ଅଞ୍ଚଳକୁ ଏବେସୁଦ୍ଧା ପାଞ୍ଚଗଡ଼ କୁହାଯାଏ । ଗୃହଅଡ଼େ ପର୍ବତମାଳା ପରିବେଷ୍ଟିତ; ବୀରପ୍ରସବିନୀ ଏ ମୃତ୍ତିକା କେତେ ଗୌରବାବହ ଦିନ ଦେଖିଛି । ୧୮୨୭ ସାଲର ଯେଉଁ ଆଇନକୁ ଏବେ ଲଗାଇ ବଙ୍ଗଳାର ଧରପଗଡ଼ ଆଇନ ସୃଷ୍ଟି କରାଯାଇଛି, ତାହାର ଉତ୍ପତ୍ତି ପ୍ରଥମେ ଏହି ଖୋର୍ଦ୍ଧାର ସ୍ୱାଧୀନଚେତା ବୀରପୁରୁଷମାନଙ୍କର ଦମନଲାଗି । ଯେଉଁ କୃଷକ ସୈନିକଗଣ ଏକ ସମୟରେ ଦକ୍ଷିଣରେ ଗୋଦାବରୀ, କୃଷ୍ଣା, କାବେରୀ ଓ ଉତ୍ତରରେ ଗଙ୍ଗା ତୀରେ ଉତ୍କଳର ଜୟ ପତାକା ବହୁଦୂର ପର୍ଯ୍ୟନ୍ତ ନେଇ ଯାଇଥିଲେ ସେମାନଙ୍କ ବଂଶଧରମାନେ ଖୋର୍ଦ୍ଧା, ବିଶେଷତଃ ଏହି ବୋଲଗଡ଼ ଅଞ୍ଚଳରେ ବହୁ ସଂଖ୍ୟାରେ ରହିଅଛନ୍ତି । ସିଂହ, ସାମଲ, ସେନାପତି, ନାୟକ, ପ୍ରଧାନ, ବଳିୟାରସିଂହ, ବଳବନ୍ତ ରାୟ ପ୍ରଭୃତି ଉପାଧି ଅଛନ୍ତି । ମାତ୍ର ପୂର୍ବ ଅଧିକ କଣିକାଏ ବାକି ନାହିଁ । ସାହସୀ ମଲ୍ଲର ସାହସ ମଲଣି । ସିଂହ ଶୃଗାଳ ହୋଇଗଲେଣି । ରହିଛି କେବଳ ଅହଙ୍କାର, କିନ୍ତୁ ପୂର୍ବର ସେ ସ୍ପୃହା ବା ଅଧିକାର ନାହିଁ । ଏ ସବୁ ପୂର୍ବ ସ୍ମୃତିରୁ ଏ ଅଞ୍ଚଳର ଭବିଷ୍ୟତ ସମ୍ଭାବନା ବୁଝିବାକୁ ହେବ । ସେ ସମ୍ଭାବନାକୁ ବାସ୍ତବ କ୍ଷେତ୍ରରେ ପରିଣତ କରିବାକୁ ହେବ । ସୁତରାଂ ଜାତୀୟ ଉଦ୍ୟମରେ ଏଭଳି ଅଞ୍ଚଳ ପ୍ରତି ବିଶେଷ ସମୁଚିତ ଧ୍ୟାନ ଦେବା ଯେ ଆବଶ୍ୟକ, ଏହା ଅସ୍ୱୀକାର କରାଯାଇ ନ ପାରେ । ଏହାହିଁ ଖୋର୍ଦ୍ଧା ଅନ୍ତର୍ଗତ ବୋଲଗଡ଼ର ପ୍ରଥମ ଦାବୀ ।

ଏ ଅଞ୍ଚଳରୁ ପୂର୍ବ ଶୌର୍ଯ୍ୟ ବର୍ଯ୍ୟ ଛାଡ଼ିଛି । କିନ୍ତୁ ପୂର୍ବ ଶିଳ୍ପ ଏକାବେଳେକେ ଯାଇନାହିଁ । ଆଜି ଯେ ସୂତାକଟା ଲାଗି ଦେଶର ଗୃହଅଡ଼େ ଏତେ ଚହଲ ପଡ଼ିଛି, ବୋଲଗଡ଼ରୁ ତାହା ଲୋପ ପାଇନାହିଁ । ବୋଲଗଡ଼ ଏବଂ ନିକଟବର୍ତ୍ତୀ ଅଞ୍ଚଳରେ ,୦୦୦ ରୁ ଅଧିକ ଅରଟ ଏବେ ସୁଦ୍ଧା ଉଣା ଅଧିକ ଚାଲୁଛି । ସୂତାକଟା ଶିଳ୍ପ ଏଠାରେ ବହୁ କାଳରୁ ରହିଥିବାରୁ କଂଗ୍ରେସର ଖଦୀ ବିଭାଗ ଏହାକୁ ଖଦୀ କେନ୍ଦ୍ର କରିଛନ୍ତି । ଖଦୀ ବିଭାଗରେ ତତ୍ତ୍ୱାବଧାନରେ ୭୦୦ ରୁ ଅଧିକ ଅରଟ ଏ ଅଞ୍ଚଳରେ ଚାଲିଲାଣି ।

ବୋଧହୁଏ ସମଗ୍ର ଉତ୍କଳ ମଧ୍ୟରେ ସୂତାକଟା ବିଷୟରେ ଏପରି ପ୍ରସିଦ୍ଧ ସ୍ଥାନ ଦ୍ୱିତୀୟ ନାହିଁ । ଯଥୋଚିତ ଅନୁପ୍ରେରଣ ଓ ଉପଯୋଗ ହେଲେ ସୂତାକଟା କାର୍ଯ୍ୟ ଏଠାରେ ଆହୁରି ପ୍ରସାରଲାଭ କରିବ । ମହାତ୍ମାଗାନ୍ଧୀ ଉତ୍କଳକୁ ସମଗ୍ର ଭାରତର ଖଦୀ ଭଣ୍ଡାର ହେବା ଇଚ୍ଛାକରନ୍ତି । ବୋଲଗଡ଼ ସେ ଭଣ୍ଡାରର ପ୍ରଧାନକେନ୍ଦ୍ର ହୋଇପାରିବ । ବୋଲଗଡ଼ବାସୀ ଯେ ସୂତାକଟାକୁ ଟିକୋଇ ରଖିଛନ୍ତି ଏବଂ ଏବେ ସୁଦ୍ଧା ତହିଁର ଉନ୍ନତି ଓ ପ୍ରସାର କରିବା ନିମନ୍ତେ ପ୍ରସ୍ତୁତ ଅଛନ୍ତି, ସମଗ୍ର ଉତ୍କଳ ଜାତି ତାଙ୍କର ଏ କାର୍ଯ୍ୟ ଦେଖି ଜାତୀୟ ନିମନ୍ତେ ଆନ୍ଦୋଳନର ବର୍ତ୍ତମାନ ଅବସ୍ଥାରେ ଶ୍ରଦ୍ଧା ଓ ଆଦର ଦେଖାଇବା ଆବଶ୍ୟକ ନୁହେଁ କି ? ଏହା ବୋଲଗଡ଼ର ଦ୍ୱିତୀୟ ଦାବି ।

ବୋଲଗଡ଼ ମୋଗଲବନ୍ଦୀ ଜିଲ୍ଲାର ସୀମାନ୍ତ ସ୍ଥାନ । ୩।୪ଟି ଗଡ଼ଜାତ ରାଜ୍ୟ ଏଠାକୁ ଲାଗିଛି । ଶାସନ ବିଧାନରେ ଗଡ଼ଜାତ ମୋଗଲବନ୍ଦୀଠାରୁ ଅଲଗା । ଗଡ଼ଜାତ ଲୋକେ ଆମ୍ଭମାନଙ୍କର ଆତ୍ମୀୟ ଏବଂ ଜାତି ଓ ଜାତିର ଲୋକ ହେଲେହେଁ ଆମ୍ଭମାନଙ୍କର ଜାତୀୟ ଆଶା ଆକାଂକ୍ଷା ଉଦ୍ୟମରେ ସେମାନଙ୍କର ଭାଗ ନାହିଁ । ବୋଲଗଡ଼ରେ ସମ୍ମିଳନୀ ହେବାଦ୍ୱାରା ନିକଟବର୍ତ୍ତୀ ଗଡ଼ଜାତର ଲୋକେ ଇଚ୍ଛା କଲେ ଯୋଗ ଦେବାର ସୁବିଧା ପାଇପାରିବେ । ଅବଶ୍ୟ ସେମାନେ ସମ୍ମିଳନୀ ଦେଖିବା ଦୋଷାବହ ନୁହେଁ । ସେଥିରେ ସେମାନଙ୍କ ରାଜ୍ୟର କୌଣସି ଆପଦ ନାହିଁ । ତଥାପି ବଡ଼ ଦୁଃଖର କଥା, କୌଣସି କୌଣସି ନିକଟବର୍ତ୍ତୀ ଗଡ଼ଜାତର କର୍ତ୍ତୃପକ୍ଷ ସମ୍ମିଳନୀରେ ସେମାନଙ୍କୁ ଯୋଗଦେବାପାଇଁ ଛାଡ଼ି ଦେଇ ନାହାନ୍ତି । କାଳେ କେହି ଆସି ଯୋଗ ଦେବେ ବୋଲି ଏ ସମ୍ମିଳନୀ ସମୟରେ ତାଙ୍କ ରାଜ୍ୟରୁ ଏ ଆଡ଼କୁ ଲୋକଙ୍କୁ ଆସିବାକୁ ମନା ହୋଇଛି । ଏମନ୍ତକି, ସେଠା ଲୋକଙ୍କ ସଙ୍ଗେ ଏଠା ଲୋକଙ୍କର ଯେ ନିତି ଦରକାରୀ ଓ ଅନ୍ୟାନ୍ୟ ପଣ୍ୟଦ୍ରବ୍ୟର କାରବାର ଅଛି, ତାହା ଏ ପର୍ଯ୍ୟନ୍ତ ସମ୍ମିଳନୀ ଯୋଗୁଁ ବନ୍ଦ କରାଯାଇଛି । ଏ ଅନ୍ଧାରି ମୁଲକରେ ପ୍ରଜାମାନେ ଆମ୍ଭର ଆତ୍ମୀୟ ବନ୍ଧୁ ସ୍ୱଜନ, ଆମର ଆନନ୍ଦ ଉତ୍ସବରେ ବା ସୁଖ ଦୁଃଖରେ ପାଖରେ ଆସି ଛିଡ଼ା ହେବାରୁ ଏମାନେ ବଞ୍ଚିତ । ବୋଲଗଡ଼ରେ ସମ୍ମିଳନୀ ହେଲେ ସମ୍ମିଳନୀର ପ୍ରଶଂସା ଓ ଭାବ ଲୋକମୁଖ ପରମ୍ପରାରେ ଗୁରିଆଡ଼େ ଖେଳିବ, ଆମର ଏହି ଅନ୍ଧାରିମୁଲକ ଭାଇମାନଙ୍କ କାନରେ ହେଲେ ଟିକିଏ ବାଜିବ । ସେଥିରେ ସେମାନେ ଆନନ୍ଦ ଓ ଆଶ୍ୱାସନା ପାଇବେ । ବୋଲଗଡ଼ର ସମ୍ମିଳନୀ ବସିବାର ଏହା ତୃତୀୟ କାରଣ ।

ଗ୍ରାମ ସଂଗଠନ ଅମ୍ଭମାନଙ୍କ ଜାତୀୟ ଉଦ୍ୟମରେ ଏକ ପ୍ରଧାନ କାର୍ଯ୍ୟ । ଆମ୍ଭମାନଙ୍କର ଜାତୀୟ ଚେଷ୍ଟା ପଲ୍ଲିଅଭିମୁଖୀ ହେବା ଆବଶ୍ୟକ ବୋଲି ସମସ୍ତେ ଉକ୍ତି କରୁଛନ୍ତି । ଦେଶ ନାୟକମାନେ କହୁଛନ୍ତି ସରକାରର ଉଚ୍ଚପଦସ୍ଥ କର୍ତ୍ତାମାନେ ବି କହୁଛନ୍ତି; ମାତ୍ର ସେ ଦିଗରେ ଆମ୍ଭମାନଙ୍କର ଆନ୍ତରିକ ଉଦ୍ୟମ କାହିଁ ? ଦେଶନାୟକମାନେ ସହର ଛାଡ଼ିବାକୁ ନାରାଜ । ସହରର ସୁଖ ସୁବିଧାର ଏପରି ଦାସ ହେଲେଣି ଯେ ଟିକିଏ ବ୍ୟତିକ୍ରମ ସହିବା ସେମାନଙ୍କର ଦୁଃସାଧ୍ୟ । ଆମ୍ଭେମାନେ ଲାଟ ସଭା ସମିତିରେ ଯେତେ କ୍ରୁଦ୍ଧ ମାରୁ, ଏହା ନିଶ୍ଚୟ ଯେ, ଦେଶ ସେଥିରେ ଢଳେହେଲେ ହଟିବ ନାହିଁ । ଦେଶକୁ ହଟାଇବାକୁ ହେଲେ ତାକୁ ପ୍ରଥମେ ଚହ୍ନିବାକୁ ହେବ । ଦେଶର ନାଡ଼ି ଚିପିବାକୁ ହେବ । ଧାତୁ ଓ ପ୍ରକୃତି ବୁଝିବାକୁ ହେବ । ପରେ ରୋଗର ନିଦାନ ଠିକ୍ କରି ଔଷଧ ପ୍ରୟୋଗ କରିବାକୁ ହେବ । ଆମ୍ଭମାନଙ୍କର ଏ ପର୍ଯ୍ୟନ୍ତ ଦେଶ ସଙ୍ଗେ ପରିଚୟ ହୋଇନାହିଁ କହିଲେ ଚଳେ । ଅସହଯୋଗ ଆନ୍ଦୋଳନ ପୂର୍ବରୁ ଶିକ୍ଷିତ ଓ ସାଧାରଣ ବୋଲି ଗୋଟିଏ ଭେଦ ଥିଲା । ଅସହଯୋଗ ସ୍ରୋତରେ ଏ ଉଭୟେ ଟିକିଏ ମିଶିଛନ୍ତି; କିନ୍ତୁ ପୂର୍ବ ତ୍ରୁଟି ନାହିଁ । ଏ ଭେଦ ନ ଗଲାଯାଏ ଦେଶନାୟକମାନଙ୍କର ତର୍ଜନ ଗର୍ଜନ ବୃଥା ଆସ୍ଫାଳନ ମାତ୍ର । ଲୋକେ ଆମ କଥା ଶୁଣିଲେ ନାହିଁ ବୋଲି ଅଭିମାନ କଲେ ଚଳିବ ନାହିଁ । ଆମେତ ଏ ପର୍ଯ୍ୟନ୍ତ ଶୁଣାଇ ପାରି ନାହୁଁ । ସେଥିଲାଗି ଲୋକଙ୍କ ଦ୍ୱାରସ୍ଥ ହୋଇନାହୁଁ । ସୁଖ ଦୁଃଖ ଭଲ ମନ୍ଦରେ ଲୋକଙ୍କର ନିକଟ ହୋଇ ତାଙ୍କ ପାଖେ ଛିଡ଼ା ହୋଇନାହୁଁ । ଲୋକଙ୍କ ସଙ୍ଗେ ହସିନାହୁଁ କି କାନ୍ଦିନାହୁଁ । ତେବେ ଆମ ଇଚ୍ଛା ଓ ଆମ ଆଦର୍ଶ ଅନୁସାରେ ଲୋକେ ଉଠିବେ କିପରି ? ଏଥିଲାଗି ସମ୍ମିଳନୀ ପ୍ରଭୃତି ବଡ଼ ବଡ଼ ଜାତୀୟ ଅନୁଷ୍ଠାନ ମଧ୍ୟେ ମଧ୍ୟେ ପଲ୍ଲିରେ ହେବା ଆବଶ୍ୟକ; ଏହାଦ୍ୱାରା ସହର ଓ ମଫସଲର ସମ୍ବନ୍ଧ ଗାଢ଼ତର ହେବ । ଶିକ୍ଷିତ ସାଧାରଣ ଭେଦ ଘୁଞ୍ଚିବ । ପଲ୍ଲିବାସୀ ଦେଶର ପ୍ରଧାନ ପ୍ରଧାନ ବ୍ୟକ୍ତିଙ୍କୁ ନିଜ ଦୁଆର ମୁହଁରେ ଦେଖି ଉଷତ ଓ ଉତ୍ସାହିତ ହେବେ । ପଲ୍ଲୀ ସହର ଆଡ଼କୁ ଏତେଦିନ ଗଡ଼ିଛି ଓ ଧାଇଁଛି । ଏଣିକି ସହରରୁ ସ୍ରୋତ ପଲ୍ଲୀକୁ ଫେରୁ । ବୋଲଗଡ଼ରେ ସମ୍ମିଳନୀ ବସାଇବାର ଏହା ଅନ୍ୟତମ ଉଦ୍ଦେଶ୍ୟ ।

ସମ୍ମିଳନୀ ନିମନ୍ତେ ଏଠାରେ ଯାହାକିଛି ଆୟୋଜନ ହୋଇଅଛି, ସେ ସମସ୍ତ ପଲ୍ଲିବାସୀଙ୍କ ଉଦ୍ୟମରେ । ଆଜିକାଲି ଯୁଗର ଆଦର୍ଶ କାୟଦା ବିଧିବିଧାନ ସେମାନଙ୍କୁ ଅଜଣା । ସୁତରାଂ ସେ ସବୁଥିରେ ତ୍ରୁଟି ପ୍ରମାଦ ଘଟିବ । ମୋର ଆଶା, ଆପଣମାନେ

ତାହା ଧରିବେ ନାହିଁ । ପଲ୍ଲୀର ସରଳତା ସ୍ନେହ ଆଦର ଆଦି ହୃଦୟର ଭାବ ଗ୍ରହଣ କରିବେ । ଆଜି ଏକ ବିଷୟରେ ଓଡ଼ିଆ ଜାତି ଭାଇମାନଙ୍କ ନିକଟରେ ଆମ୍ଭମାନଙ୍କର କ୍ଷମା ମାଗିନେବା ଉଚିତ । ଏଥର ସମ୍ମିଳନୀର ସମୟ ଅନେକ ବିଳମ୍ବ ହେଲାଣି । ଆର ଥର ପ୍ରଥମ ସମ୍ମିଳନୀ ଜୁନ୍ ଶେଷରେ ହୋଇଥିଲା । ଏଥର ସେହି ସମୟରେ ହେବା ଉଚିତ ଥିଲା । ସେହି ସମୟକୁ ଆୟୋଜନ ଚାଲିଥିଲା । ମାତ୍ର ଦୁର୍ଯୋଗବଶତଃ ତାହା କାର୍ଯ୍ୟରେ ହୋଇପାରିଲା ନାହିଁ । ଜୁନ୍ ଶେଷଆଡ଼କୁ ଘୋର ବଢ଼ି ବର୍ଷା । ତାହା ଉତ୍କଳର କେତେକ ଅଂଶରେ, ବିଶେଷତଃ ପୁରୀ ଜିଲ୍ଲାର ସଦର ସବ୍‌ଡିଭିଜନରେ ଘୋର ବିପତ୍ତି ଘଟାଇଛି । ୩ ମାସ କାଳ ଓ ପରେ ପରେ ବଢ଼ି ବର୍ଷା ଲାଗି ରହିଛି । ତହିଁର ଫଳରେ ଆଜି ଏ ଜିଲ୍ଲାରେ ଲକ୍ଷ ଲକ୍ଷ ଲୋକ ନିରନ୍ନ । ହଜାର ହଜାର ଲୋକ ଘରଦ୍ୱାର ଛାଡ଼ି ବିଦେଶକୁ ପଳାଇଛନ୍ତି । ତାଙ୍କୁ ଗୋଟିଏ ଦୁଇଗ୍ରାସ ମିଳୁନାହିଁ । ବସ୍ତ୍ର ଅଭାବରେ ସ୍ତ୍ରୀ ଲୋକ ଲଜ୍ଜାରେ ମରି ଯାଉଛନ୍ତି । ଶୀତ ପଡ଼ିଆସିଲା । ଅନ୍ନ ଅଭାବ, ବସ୍ତ୍ର ଅଭାବ, ଏପରିକି ମୁଣ୍ଡ ଗୁଞ୍ଜିବାକୁ ଘରର ଅଭାବ, କେତେ ଘର ମାଟିରେ ମିଶିଯାଇଛି, କେତେ କାନ୍ଥ ଭାଙ୍ଗି ପଡ଼ିଛି, ଅଧିକାଂଶ ଚାଳରେ ଛଣ ନାହିଁ, ରୁଅ ବତା ପର୍ଯ୍ୟନ୍ତ କେତେ ଲୋକ ବିକିଲେଣି । ଏ ଶୀତଋତୁ ବିତାଇବା ସେ ଲୋକଙ୍କ ପକ୍ଷେ ଅସାଧ୍ୟ । ଶ୍ରଦ୍ଧେୟ ଅଣ୍ଡ୍ରୁଜ ସାହେବ ଏ ବିଷୟରେ ବିଶଦ ବର୍ଣ୍ଣନା କରିଛନ୍ତି । ଆପଣମାନେ ସମସ୍ତେ ବୋଧହୁଏ ପଢ଼ିଥିବେ ମୁଁ ଢନାଧନ ତଳେ ବନ୍ୟା ବିପନ୍ନ ଅଞ୍ଚଳର ଏକ ସ୍ଥାନରୁ ଫେରିଛି । ନିଜ ଆଖିରେ ଦେଖିଛି, ଲୋକଙ୍କର ବର୍ତ୍ତମାନ ପ୍ରଧାନ ଖାଦ୍ୟ କଇଁନାଡ଼ ଓ କଇଁମୂଳ । ଏହି ବନ୍ୟା ବିଭ୍ରାଟ ଯଥା ସମୟରେ ସମ୍ମିଳନୀ କରାଇ ଦେଲାନାହିଁ । ବର୍ତ୍ତମାନ ଯେ ସମ୍ମିଳନୀ ହେଲା ଜିଲ୍ଲାର ଏ ଅବସ୍ଥାରେ ସେଥିଲାଗି ଉପଯୁକ୍ତ ଆୟୋଜନ କରିବାକୁ ଆମ୍ଭମାନଙ୍କର କି ବଳ ଅଛି ? ଏହା ହେଉଛି କେବଳ ବିଧିରକ୍ଷା । ଏ ପ୍ରସଙ୍ଗରେ କହିବା ଆବଶ୍ୟକ ଯେ ଜୁନ୍ ଜୁଲାଇ ସମ୍ମିଳନୀ ନିମନ୍ତେ ପ୍ରଶସ୍ତ ସମୟ ନୁହେଁ । ସେତେବେଳକୁ ବର୍ଷା ଆସି ଯାଇଥାଏ । ଦେଶଲୋକେ ଗୃଷବନ୍ଦୀ କାମରେ ଲାଗିଥାନ୍ତି ଏହି କାରଣରୁ ପୂର୍ବକାଳରୁ ମଧ୍ୟ ବର୍ଷାସମୟରେ ଆମ୍ଭମାନଙ୍କର ଜାତୀୟ ପର୍ବ ଉତ୍ସବ ଆଜି ନାହିଁ । ହେଲେ ଚତୁର୍ମାସ୍ୟା ପୂର୍ବରୁ ବା ଚତୁର୍ମାସ୍ୟା ପରେ ସମ୍ମିଳନୀ ବସିବା ସୁବିଧାଜନକ । ଏହା ଜାତୀୟ ପଦ୍ଧତିର ଅନୁକୂଳ, ଯାଥାର୍ଥରେ ବର୍ଷାପରେ ଶରତ ଓ ହେମନ୍ତ ଏଥିନିମନ୍ତେ ପ୍ରଶସ୍ତସମୟ । ପୂର୍ବେ ଏହି ସମୟରେ ଯାଗଯଜ୍ଞାଦି ହେଉଥିଲା । ବିଶେଷ ଦୁର୍ଘଟଣା ନ ଘଟିଲେ ଏତେବେଳେ ପ୍ରଜାର ମନ ସାଧାରଣତଃ ଉତ୍ଫୁଲ୍ଲ ଥାଏ, ତାକୁ ବିଶ୍ରାମ ମିଳେ, ତେଣୁ ଅନେକେ ଏହି ସମୟରେ ଏବେସୁଦ୍ଧା ତୀର୍ଥଯାତ୍ରା

କରିଆନ୍ତି । ସମ୍ମିଳନୀକୁ ଜାତୀୟ ଯଜ୍ଞ ବୋଲି ଧରିଲେ ଏହି କାର୍ତ୍ତିକ ମାର୍ଗଶୀରରେ ତାହାର ଅନୁଷ୍ଠାନ ହେବା ଉଚିତ । ଯେପରି ଦେଶର ଭିନ୍ନ ଭିନ୍ନ ସ୍ଥାନରୁ ମାତୃଭକ୍ତ ଦେଶବତ୍ସଳ ସନ୍ତାନ ତୀର୍ଥଯାତ୍ରୀରୂପେ ଆସି ପୂର୍ଣ୍ଣପ୍ରାଣରେ ଏଥିରେ ଯୋଗଦେଇ ପାରିବେ ।

ଭାଇ ଭଉଣୀମାନେ !

ମୁଁ ପ୍ରାଣର ଆବେଗ ଚାପି ଚାପି ଏ ପର୍ଯ୍ୟନ୍ତ କର୍ତ୍ତବ୍ୟ ଅନୁରୋଧରେ କେତେ କଥା କହି ଆସିଲି । ଆଉ ଅଧିକ କହିବାକୁ ଇଚ୍ଛା ହେଉନାହିଁ । ଯେଉଁତବେଳେ ଦେଶରେ ଶତ ଶତ ଲୋକେ ଅନ୍ନାଭାବରେ ହାହାକାର କରୁଛନ୍ତି, ଘରଦ୍ୱାର ଛାଡ଼ି ବିଦେଶକୁ ପଳାଉଛନ୍ତି, ନୈରାଶ୍ୟରେ ଅନେକ ଧନ୍ଦାମଗ୍ନ ହୋଇ ବସିଯାଉଛନ୍ତି । ସେତେବେଳେ ବକ୍ତୃତା କରିବାକୁ କାହାପ୍ରାଣରେ ଉତ୍ସାହ ଓ ଉନ୍ମାଦନା ଆସିବ ? ହୁଏତ ଏହି ମୁହୂର୍ତ୍ତରେ ମୁଁ ଆପଣମାନଙ୍କୁ ଅଭିଭାଷଣ ଶୁଣାଇଲାବେଳେ ବ୍ରହ୍ମଗିରିରୁ ବା ଚନ୍ଦ୍ରଶେଖରପୁରରୁ ଦଳେ ଯୁବକ ଘରଛାଡ଼ି ଆଖିରେ ଲୁହ ଛଳ ଛଳ କରି ରେଙ୍ଗୁନ ଯାତ୍ରା କରୁଛନ୍ତି । ଗୋପ, ଡେଲାଙ୍ଗ ଅଞ୍ଚଳର କେତେ ସ୍ତ୍ରୀ ଲୋକ ପାଣିରେ ପଶି କଇଁମୂଳ ସାଉଁଟୁଛନ୍ତି । କାକଟପୁରର କୌଣସି କୌଣସି ପରିବାରରେ ବୁଢ଼ାବୁଢ଼ୀ ବାଳକ ଅନ୍ନାଭାବରେ ଧକାଇ ପଡ଼ି ଘାଏ ନିଃଶ୍ୱାସ ଛାଡ଼ିଲେଣି । ଏ ସବୁ ଦାରୁଣ ଦୃଶ୍ୟ ଦେଖିଲେ ମନେହୁଏ, 'କେଉଁ ସୁଖାଶାରେ ଏ ଘୋର ସଂସାରେ ?' ବାସ୍ତବିକ୍ ଦେଶର ଅବସ୍ଥା ଯେପରି ସେଥିରେ ପ୍ରାଣଧରି ତାହାସବୁ ଦେଖି ଆମ୍ଭେମାନେ ଯେ ରହିଛେଁ ଏହାହିଁ ଆଶ୍ଚର୍ଯ୍ୟ । ଏ ଅଳ୍ପ କଷ୍ଟ ଉପରେ ପୁଣି ମ୍ୟାଲେରିଆ ବସନ୍ତ ଆଦି ରୋଗର ଉତ୍ପାତ । ତାହାସବୁ ଅନ୍ନକଷ୍ଟ ମୃତ୍ୟୁ ଅଭିଯୋଗରୁ ସରକାରକୁ ବଞ୍ଚାଇପାରେ ; ମାତ୍ର ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ଭାବରେ ଅନ୍ନକଷ୍ଟ ଯେ ଏ ସବୁ ରୋଗ ବା ମୃତ୍ୟୁର କାରଣ, ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ । ଏକା ପୁରୀ ଜିଲ୍ଲାର କଥା ନୁହେଁ, ଓଡ଼ିଶାର କୌଣସି ନା କୌଣସି ଅଞ୍ଚଳରେ ସବୁବେଳେ ଏହି ଦାରୁଣ ଦୁର୍ଦ୍ଦଶା ଘୋଟି ରହିଛି । ସରକାର କମ୍ୟୁନିକ୍ ଉପରେ କମ୍ୟୁନିକ୍ ବାହାର କରି ଆପଣାକୁ ଯେତେ ସଫାଇ କରୁ, ପ୍ରଜାର ଏ ଦୁର୍ଗତି ନିମନ୍ତେ ସେ ଅନେକ ପରିମାଣରେ ଦାୟୀ । କମ୍ୟୁନିକ୍ ସଫାଇରେ ଏ କଳଙ୍କ ଘୁଞ୍ଚିବ ନାହିଁ । ପ୍ରଜାର ମନ ମାନିବ ନାହିଁ । ଏ ଦେଶର ପ୍ରଜା ବୁଝେ, "ରାଜ୍ୟପାପ ରାଜା ମୁଣ୍ଡେ" । ଏ ଦେଶର ଶାସ୍ତ୍ର ପୁରାଣ ମଧ୍ୟ ଏ ଶିକ୍ଷା ଦେଇଛି । ପୁରାଣ ଯୁଗରେ ଅସମୟରେ କାହାରି ପୁଅ ମରିଗଲେ ସେ ସେଥିଲାଗି ରାଜାକୁ ଦାୟୀ କରୁଥିଲେ ।

ରାଜା ମଧ୍ୟ ସେ ଦାୟିତ୍ୱ ମୁଣ୍ଡାଇ ଆପଣାକୁ ଦୋଷୀ ବୋଲି ବୁଝୁଥିଲେ । ଏଣୁ ଏ ଦେଶରେ ପ୍ରଗାଢ଼ ରାଜଭକ୍ତି ଥିଲା । "ମହତୀ ଦେବତାହ୍ୟେଷା ନରରୂପେଣ ତିଷ୍ଠତି" ରାଜା ଦେବତା ବୋଲି ଲୋକଙ୍କ ବିଶ୍ୱାସ ଥିଲା ; ଏବେ ସେ ଭାବ ନାହିଁ । ରାଜପୁରୁଷର ପ୍ରଜାପ୍ରତି ଦୟାମାୟା ନାହିଁ । ସେ ମରୁ ସରୁ; କରପୀଡ଼ାରୁ ତାର ଉଦ୍ଧାର ନାହିଁ । ଭାଷା ଆବରଣରେ ଶାସକ ଆପଣାକୁ ସବୁବେଳେ ଧନ୍ଦାଇବାରେ ବ୍ୟସ୍ତ । ଜୋର ଜବରଦସ୍ତିରେ ଭକ୍ତି ଆସେ ନାହିଁ । ସେ ଦିନ ସରକାର କମ୍ୟୁନିକରେ କୁହାହୋଇଛି, ଲକ୍ଷେ ଟଙ୍କା ସରକାର ପୁରୀରେ ବନ୍ୟା ବିପନ୍ନ ଅଞ୍ଚଳରେ ବଣ୍ଟା ସରିଲାଣି । ଲେଖା ରୀତି ଏପରି ଯେ, ପଢ଼ିଲେ ଜାଣିବା ଲୋକ ବୁଝିବ, ଲକ୍ଷେ ଟଙ୍କା ପ୍ରଜାଙ୍କୁ ବିତରଣ କରାଯାଇଛି । ସତେ ଯେପରି ରାଜସୂୟ ଯଜ୍ଞରେ ଯୁଧିଷ୍ଠିର ମୁକ୍ତହସ୍ତରେ କୋଟିନିଧି ବାଣ୍ଟି ଦେଇଛନ୍ତି ; ମାତ୍ର ପ୍ରକୃତରେ ଏହା ବିତରଣ ନୁହେଁ ଋଣ । ଏଥିରୁ ସାମାନ୍ୟ ବିତରଣ କରାଯାଇଥିବ । ତାହା କେବଳ ଧର୍ମକୁ ଆଖିମିଟିକା ମାରି ନାମ ଜଗାଇବା ନିମନ୍ତେ ସ୍ୱାହା ସ୍ୱାହା । ତଗାବି ଋଣ ପୁଣି ସମସ୍ତଙ୍କୁ ମିଳୁ ନାହିଁ । ଯେଉଁମାନଙ୍କୁ ମିଳୁଥିଲା ଦୁର୍ଭାଗ୍ୟବଶତଃ ତାହାସବୁ ବାରମ୍ବାର ଧୋଇରେ ଯାଇଛି ; ମାତ୍ର ଡାଗଡ଼ ପଛେ କିଆବାଡ଼ରେ ପଡ଼ୁ, ଭଡ଼ା ମଜୁରି ଛାଡ଼ ହେବ ନାହିଁ । ଗଲା ପୁରୀ ଦୁର୍ଭିକ୍ଷରେ ଯେଉଁମାନଙ୍କୁ ତଗାବୀ ଦିଆଯାଇଥିଲା, ତହିଁରୁ ସେମାନେ ଅଳ୍ପ ସରକା ମୁକ୍ତ ହୋଇଥିଲେ ଏବଂ ସେଥିରେ ଅନେକଙ୍କର ଭୂମିବୃତ୍ତି ସର୍ବସ୍ୱ ଯାଇଛି । ଲୋକେ ପ୍ରାଣବୋକାଳରେ କେବଳ ତଗାବୀ ଲୋଡ଼ନ୍ତି ଏବଂ ଏବେ ସୁଦ୍ଧା ଲୋଡ଼ୁଛନ୍ତି; ମାତ୍ର ଜାଣନ୍ତି, ସେ ଅତି ବିଷମ ଜଞ୍ଜାଳ । ସେଥିରୁ ଉଦ୍ଧରିବା ଅନେକଙ୍କ ପକ୍ଷେ ଅସାଧ୍ୟ । ତେବେ ଏ ଋଣ ବାଣ୍ଟି ଲକ୍ଷେ ବିତରଣ ବୋଲି ଯେ ଦୁଆ ଉଠାଯାଉଛି, ଏହା ଭାଷା ଚୂନପାଣିରେ ଧଉଳା ଧଉଳ ନୁହେଁ ତ ଆଉ କଅଣ ? କାହିଁକି ଏତେ ବ୍ୟସ୍ତ ? ଓଡ଼ିଶାର ଏ ବନ୍ୟା ସମସ୍ୟାର କି ସମାଧାନ ନାହିଁ ? ସମସ୍ୟା ବଡ଼ ଗୁରୁତର ସତ, ମାତ୍ର ସେଥିଲାଗି ପ୍ରତିକାର କଅଣ ? ପ୍ରତିକାରର ବିଚାରରେ ଯେତେ ବ୍ୟସ୍ତ ହେଉଛ, ପରୀକ୍ଷାସ୍ୱରୂପ ପ୍ରତିକାରରେ ସେତିକି ଖର୍ଚ୍ଚ କରାଯାଉଥିଲେ ଲୋକଙ୍କ ମନରେ ଟିକିଏ ବିଶ୍ୱାସ ଆସିଥାନ୍ତା । ତଦନ୍ତକାରୀ କମିଟି ପିଛା ଖର୍ଚ୍ଚ ହେଲା ପ୍ରାୟ ୭୦ ହଜାର ଟଙ୍କା, ସେତିକି ଟଙ୍କାରେ ବାଲେଶ୍ୱର ମୁହାଣ ଖୋଲା ହୋଇ ପାରିଥାନ୍ତା । ତହିଁର ଫଳ ଯାହା ହେଉ ଲୋକଙ୍କ ମନ ମାନିଥାନ୍ତା । ଚିଲିକା ମୁହାଣ ମେଲା ହୋଇପାରିବ ନାହିଁ । କାହିଁକି ନା, ସେଥିରେ ବହୁତ ଟଙ୍କା ଲାଗିବ; ମାତ୍ର କ୍ରମାଗତ ବାରମ୍ବାର ଲକ୍ଷ ଲକ୍ଷ ଲୋକଙ୍କର ଯେ ଦୁର୍ଗତି ଘଟୁଛି, ତା ଦୃଷ୍ଟିରେ ୫୦ ଲକ୍ଷ ଟଙ୍କା ଖର୍ଚ୍ଚ ହେବ ତ, ହାନି କଅଣ ? ଗୋଟାଏ

ଗୋଟାଏ କୋଠା ତିଆରରେ ୧୫।୨୦।୨୫।୩୦ ଲକ୍ଷ ଖର୍ଚ୍ଚ ହୋଇଯାଉଛି । ମଟର-କାର ଯିବାଲାଗି ମସୃଣ ସଡ଼କ ତିଆରରେ ହଜାର ହଜାର ଟଙ୍କାର ଆଲକାତରା ଢଳାଯାଉଛି; ଲକ୍ଷ ଲକ୍ଷ ପ୍ରଜାର ରକ୍ଷା ନିମନ୍ତେ ଖର୍ଚ୍ଚ କରିବାକୁ କୁଣ୍ଠା କାହିଁକି ? କେତେ କାଗଜରେ ବନ୍ଧ ପକାଇବାଲାଗି ପ୍ରଜାଏ ରକ୍ତ ଗ୍ରୁଡ଼ୁଛନ୍ତି । ତହିଁର ପ୍ରତିକାର ନାହିଁ । ଧୋଇ ମରୁଡ଼ିରେ ବା ଦାରୁଣ ଅନ୍ନ କଷ୍ଟରେ ପ୍ରଜାର କର ଭାରରୁ ମୁକ୍ତି ନାହିଁ । ଦୁର୍ଭିକ୍ଷ ସାହାଯ୍ୟ ଗୃହଲ ଆଣି ତାକୁ ବଳ ଚୌକିଦାର ଟିକସ ଦିଅ । ଶାସନର ଏହିସବୁ ଅମାନୁଷିକ ବ୍ୟବହାର ଦେଖିଲେ ମନେ ଆସେ—"ହା କଷ୍ଟଂ କଳୁ ବର୍ତ୍ତିତେ କଲିଯୁଗେ ଧନ୍ୟା ନରାଃ ଯେ ମୃତାଃ" ।

ସରକାର କର୍ମ୍ମଚାରୀଙ୍କର ପ୍ରତିବାଦ କରିବା କିମ୍ବା ଶାସନନୀତିର ସମାଲୋଚନା କରିବା ମୋର ଉଦ୍ଦେଶ୍ୟ ନୁହେଁ ଓ ପରେ ଯାହା କୁହାଗଲା, ତାହା କେବଳ ବର୍ତ୍ତମାନ ସମୟରେ ରାଜା ପ୍ରଜାର ସଂପର୍କ ଦେଖାଇବାଲାଗି । ଏ ଅବସ୍ଥାରେ ସରକାରଙ୍କଠାରୁ ପ୍ରକୃତ ଉପକାର ଆଶା କରିବା ଯେ ବିଡ଼ମ୍ବନା, ସେହା କାହାରିକୁ ଅଧିକ ବୁଝାଇବାକୁ ହେବ ନାହିଁ । ଭାରତବାସୀ ସମସ୍ତେ ଢେର ଅଧିକେ ଏହା ବୁଝିସାରିଲେଣି । ଏହିପରି ବୁଝିବା ଫଳରେ ତ ଅସହଯୋଗ ଆନ୍ଦୋଳନର ଉତ୍ପତ୍ତି । ଅସହଯୋଗ ଆନ୍ଦୋଳନ କୃତକାର୍ଯ୍ୟ ହେଲନାହିଁ; ଦେଶ ସେଥିଲାଗି ଉପଯୁକ୍ତ ଦେଖାଗଲା ନାହିଁ, ମାତ୍ର ଆଉ କିଛି ହେଉ ନ ହେଉ ଅସହଯୋଗ ଆନ୍ଦୋଳନ ଫଳରେ ଲୋକଙ୍କ ମନରେ ଏ ବିଶ୍ୱାସ ଆସିଛି ଯେ ସରକାରଆଡ଼ୁ କିଛି ବିଶେଷ ଆଶା କରିବା ବୃଥା, ଆଶା ନ ରଖିବା ବରଂ ଭଲ । ଯଦି କିଛି ଦେଶକୁ ଉପକାର ଆସିଲା ତ ଯଥାଲାଭ ! ଏଣିକି ନିଜ ଉପରେ ନିର୍ଭର କରିବାକୁ ହେବ । ନିଜେ ପାରିବ ତ ବଞ୍ଚିବ; ନ ହେଲେ ମରିବାକୁ ପ୍ରସ୍ତୁତ ହେବ । ଏହି ଆତ୍ମନିର୍ଭର ଉଦ୍ୟମ ଛଡ଼ା ଉଦ୍ଧାରର ଅନ୍ୟ ଉପାୟ ନାହିଁ । ଏଥିରେ ବଞ୍ଚିବାରେ ସୁଖ, ମରିବାରେ ଶାନ୍ତି । ଅନେକ କହନ୍ତି ଅସହଯୋଗରେ ଦେଶର ଭଲ ହୋଇ ନାହିଁ, ଅନିଷ୍ଟ ହୋଇଛି, ଦେଶ ୫୦ ବର୍ଷ ପଛକୁ ପଡ଼ିଯାଇଛି; ମାତ୍ର ସେମାନେ ତଳେଇ ଦେଖୁନାହାନ୍ତି । ଅସହଯୋଗ ଆନ୍ଦୋଳନରେ ସଦ୍ୟଲାଭ ଅନେକଙ୍କୁ ଦେଖାଯାଇ ନ ପାରେ । ବର୍ଷକ ଭିତରେ ସ୍ୱରାଜ୍ୟ ହୋଇନାହିଁ, ମାତ୍ର ସ୍ୱରାଜ୍ୟପ୍ରାପ୍ତିର ବାଟ ମିଳିଛି । ଲୋକଙ୍କର ଚେତନା ଆସିଛି, ଜାତିର ଆତ୍ମଜ୍ଞାନ ଜନ୍ମିଛି; ଅସହାୟ ଶସ୍ତ୍ରଶୂନ୍ୟ ଶାନ୍ତିପ୍ରିୟ ଜାତି ପକ୍ଷରେ ଅସହଯୋଗ ଏକମାତ୍ର ଉପାୟ ବୋଲି ଭାରତବାସୀ ସବୁଶ୍ରେଣୀର ଲୋକେ ଢେର ଅଧିକେ ବୁଝିଛନ୍ତି । ଏପରିକି ଭାରତ ବାହାରେ ଅନେକ

ସଭ୍ୟ ଜାତିଙ୍କର ଏହା କେତେ ବିଷୟରେ ଆଖି ଫିଟାଇଛି । ଅସହଯୋଗ ଆନ୍ଦୋଳନ ଜଗତଙ୍କୁ ଏକ ନୂତନ ବାଟ ଦେଖାଇଛି । ଅସହଯୋଗର ଉପାଦେୟତାରେ ଭାରତବାସୀର ବିଶ୍ୱାସ ଜନ୍ମିଛି ସତ; ମାତ୍ର ପରୀକ୍ଷାରେ ଦେଖାଗଲା, "ଦୁର୍ଗମ ପଥ ଏ ଭଜନ" । ଏ ପଥରେ ପଥିକ ହେବାଲାଗି ଦେଶବାସୀ ପ୍ରସ୍ତୁତ ନୁହନ୍ତି, ଅଧିକ ସାଧନା ଲୋଡ଼ା । ଏହି ସାଧନା ହିଁ ଆଜି ସମଗ୍ର ଜାତିର ପ୍ରଧାନ ଓ ପ୍ରଥମ କାର୍ଯ୍ୟ । ଏହି କାର୍ଯ୍ୟ ଗଠନ କ୍ରିୟା; ରାଜନୀତି କ୍ଷେତ୍ରରେ ଭାରତର ନେତାମାନଙ୍କ ମଧ୍ୟରେ ଯେତେ ମତଭେଦ ହେଉ ପଛକେ, ଏ ଗଠନ କ୍ରିୟାରେ କାହାର ଅବିଶ୍ୱାସ ନାହିଁ । ଗଠନ କାର୍ଯ୍ୟ ଯେ ଅନ୍ୟ ସମସ୍ତ କାର୍ଯ୍ୟର ମୂଳଭିତ୍ତି, ତାହା କେହି ଅସ୍ୱୀକାର କରୁ ନାହାନ୍ତି ପ୍ରକୃତ ବାଟ ମିଳିଛି, ସେଥିରେ ଚାଲିବାକୁ ଆମ୍ଭେମାନେ ଯୋଗ୍ୟ ହୋଇନାହୁଁ ବୋଲି ଯେ ବୁଝୁଛୁ, ଯୋଗ୍ୟତା ଅର୍ଜନ ଆବଶ୍ୟକ ବୋଲି ଯେ ଜାଣିଛୁ, ଏହି ଜ୍ଞାନ ଅସହଯୋଗର ପ୍ରକୃଷ୍ଟ ଫଳ । ବୋଲିବା ବାହୁଲ୍ୟ ଯେ, ଅସହଯୋଗ ସମସ୍ତ ଜାତିକୁ ତାଳରୁ ତଳିପା ପର୍ଯ୍ୟନ୍ତ ଚହଲାଇଛି । ମୋହ ନିଦ୍ରା ଭାଙ୍ଗିଛି; ସ୍ୱରାଜ୍ୟ ଆକାଂକ୍ଷା, ସ୍ୱାଧୀନ ଚିନ୍ତା, ଜାତୀୟ ଅସ୍ମିତ୍ୱଜ୍ଞାନ ଜନତାର ନିମ୍ନତମସ୍ତର ପର୍ଯ୍ୟନ୍ତ ଜଗାଇଛି ।

ଓଡ଼ିଆର ଏ ଆନ୍ଦୋଳନରେ ଯୋଗଦେଇ ଲାଭ ଛଡ଼ା କ୍ଷତି ହୋଇନାହିଁ । ଅସହଯୋଗ ଆନ୍ଦୋଳନ ପୂର୍ବରୁ ଓଡ଼ିଶାରେ ରାଜନୈତିକ ଆନ୍ଦୋଳନ ନ ଥିଲା ବୋଲି କହିଲେ ଚଳେ । ଉନ୍ନତ ଜାତୀୟ ଆକାଂକ୍ଷା ଓଡ଼ିଶାରେ ବ୍ୟାପକ ଭାବରେ ଜାଗି ନ ଥିଲା । ଓଡ଼ିଶାର ଏକମାତ୍ର ଆକାଂକ୍ଷା ଥିଲା ଓଡ଼ିଆ ଦେଶ ମିଶ୍ରଣ । ତାହାହିଁ ଗଲା ୬୫ ବର୍ଷ ହେଲା ଆମ୍ଭମାନଙ୍କର ସମସ୍ତ ଜାତୀୟ ଆନ୍ଦୋଳନର ବିଷୟ ହୋଇ ଆସିଅଛି । ଯଥାର୍ଥରେ ଦେଖିବାକୁ ଗଲେ ଓଡ଼ିଆ ଦେଶ ମିଶ୍ରଣ ରାଜନୈତିକ ସମସ୍ୟା ନୁହେଁ, ଏହାହିଁ ଓଡ଼ିଆଙ୍କର ଜାତୀୟ ବା ସାମାଜିକ ସମସ୍ୟା, ଅସହଯୋଗ ଆନ୍ଦୋଳନରେ ଉତ୍କଳ ସମଗ୍ର ବିଶାଳ ଭାରତ ସମ୍ପର୍କରେ ଆସିଅଛି । ମହାଭାରତ ଜାତୀୟ ଆକାଂକ୍ଷାରେ ଅନୁପ୍ରାଣିତ ହୋଇଅଛି । "ହତ୍‌କୋଟୀକଂଠୋ ଜନନୀ ଭାରତ ଧରଣୀ କଲକଲତେଶ୍ୟଂ" ଏ କବି ଉକ୍ତିର ସତ୍ୟତା ପ୍ରାଣରେ ଅନୁଭବ କରିବାକୁ ଶିଖିଅଛି । ଥରେ ଜଣେ ଉଚ୍ଚପଦସ୍ଥ ଓଡ଼ିଆ ସରକାରୀ କର୍ମଚାରୀ ଆକ୍ଷେପ କରି କହୁଥିଲେ, ଅସହଯୋଗରେ ନ ମିଶିଥିଲେ ଓଡ଼ିଶାର ବହୁ ଉନ୍ନତିର ସୁଯୋଗ ହୋଇଥାନ୍ତା ।" ଏଥିର ଅର୍ଥ ଏହି ଯେ ଓଡ଼ିଆମାନେ ସରକାରଙ୍କର ସୁନାପୁଅ ହୋଇଥାନ୍ତେ ଏବଂ ସେ ସୁଯୋଗରେ କିଛି ଲାଭ ପାଇଥାନ୍ତେ । ସୁଖର କଥା, ଉଲ୍ଲିଖିତ କର୍ମଚାରୀଙ୍କର ଏ ଭାବ ଓଡ଼ିଆ ଜାତିର ହୃଦୟରୁ କ୍ରମେ ଦୂର ହେଉଅଛି । ଉତ୍କଳ

ଭାରତର ଅଙ୍ଗ । ଭାରତର ଉତ୍ଥାନ ପତନରେ ଏହାର ଉନ୍ନତି ଓ ଅଧୋଗତି । ଅବଶ୍ୟ ପ୍ରତ୍ୟେକ ପ୍ରଦେଶର ସ୍ୱାତନ୍ତ୍ର୍ୟ ଅଛି, ସ୍ୱତନ୍ତ୍ର ଅଭାବ ଅଭିଯୋଗ ଅଛି । ସେ ସ୍ୱାତନ୍ତ୍ର୍ୟର ବିକାଶ ଓ ସେସବୁ ଅଭିଯୋଗର ସମାଧାନ ହେବା ଆବଶ୍ୟକ । ତାହା ଭାରତୀୟ ଉନ୍ନତିର ପ୍ରତିଦ୍ୱନ୍ଦ୍ୱୀ ନୁହେଁ, ଅନୁକୂଳ । ଭାରତୀୟ ସମସ୍ୟାର ସମାଧାନ ଏବଂ ଭାରତର ମହାଜାତୀୟ ଆକାଂକ୍ଷା ପୂରଣରେ ପ୍ରାଦେଶିକ ଉନ୍ନତି ଓ ବିକାଶ ସହାୟ । ବ୍ୟକ୍ତି ବିଶେଷର ଉନ୍ନତି ପରିବାରର ଉନ୍ନତିର ବିରୋଧୀ ନୁହେଁ । ପରିବାରର ଉନ୍ନତି ଗ୍ରାମୋନ୍ନତିର ଅନ୍ତରାୟ ନୁହେଁ । ଗ୍ରାମର ଉନ୍ନତି ପ୍ରଦେଶର ଉନ୍ନତିର ପ୍ରତିଦ୍ୱନ୍ଦ୍ୱୀ ନୁହେଁ । ଜଗତ ବା ମାନବ ଉନ୍ନତିର ବାଧକ ନୁହେଁ । ଏ ପ୍ରତ୍ୟେକର ପ୍ରତ୍ୟେକ ସଙ୍ଗେ ଅଙ୍ଗାଙ୍ଗୀ ସମ୍ବନ୍ଧ । ପ୍ରତ୍ୟେକ ପ୍ରତ୍ୟେକର ସହାୟ ଓ ପରିପୂରକ । ଏ ଉଦାର କାର୍ଯ୍ୟସ୍ୱଭାବ ଅସହଯୋଗ ଆନ୍ଦୋଳନ ଫଳରେ ଉତ୍କଳରେ ଖେଳିଛି । ଉତ୍କଳର ପ୍ରାଦେଶିକ ସ୍ୱତନ୍ତ୍ରତା ଭାରତ ଜାତି ସ୍ୱୀକାର କରିଛି । ଏହାଛଡ଼ା ଦେଶକାର୍ଯ୍ୟ କରିବାକୁ ଉତ୍କଳରେ କେତେଗୁଡ଼ିଏ ତ୍ୟାଗୀକର୍ମୀ ବାହାରିଛନ୍ତି । ଏଥିପୂର୍ବରୁ ଉତ୍କଳରେ ଯେତେ ସଭା ସମିତି ଆଦି ସାଧାରଣ ଉଦ୍ୟମ ବା ଅନୁଷ୍ଠାନ ଥିଲା । କଂଗ୍ରେସ ଅନୁଷ୍ଠାନ ପରି କେହି ସୁଗଠିତ ଓ ସୁନିୟନ୍ତ୍ରିତ ନ ଥିଲା । ଏଥିରେ ଦେଶ ଲୋକେ ଶୃଙ୍ଖଳାବଦ୍ଧ ନିୟମିତ ଅନୁଷ୍ଠାନ ଚଳାଇବାରେ ଶିକ୍ଷିତ ହେଉଅଛନ୍ତି । ଏ ସବୁର ପରିଚାଳନାରେ ତ୍ରୁଟି ଘଟିବା ସ୍ୱାଭାବିକ । ମାତ୍ର ଏହିସବୁ ତ୍ରୁଟିରୁ କର୍ମୀମାନଙ୍କୁ ଏବଂ ଜାତିକୁ ଶିକ୍ଷା ମିଳିଅଛି ।

ଅସହଯୋଗ ପରି ବ୍ୟାପକ ଅହିଂସାମୂଳକ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ କେବେ କୌଣସି ଦେଶ ବା ଜାତିକୁ ପଛକୁ ପକାଇବ ନାହିଁ । ଏ ଆନ୍ଦୋଳନରେ ଯୋଗ ଦେଇ ନ ଥିଲେ ଉତ୍କଳର କୌଣସିଠାରେ ମୁହଁ ଦେଖାଇବାକୁ ବାଟ ନ ଥାନ୍ତା । ଭାରତ ମହାଜାତି ନିକଟରେ ଏହାର ସ୍ଥାନ ନ ଥାନ୍ତା । ଯୁଗେ ଯୁଗେ ଉନ୍ନତ ଉଦାର ଆନ୍ଦୋ-ଳନରେ ଉତ୍କଳ ଯୋଗଦେଇ ଆସିଅଛି । ସମୟୋଚିତ ପରିବର୍ତ୍ତନ ଓ ସଂସ୍କାର ଏହା ସବୁବେଳେ ସାଦରେ ଗ୍ରହଣ କରିଅଛି । ତେଣୁ ଅନେକ ସାମାଜିକ ବିଷୟରେ ଅନ୍ୟାନ୍ୟ ପ୍ରଦେଶରୁ କେତେ ଉତ୍କଳ ଆଜି ବହୁତ ଆଗରେ । ତେଣୁ ଭାରତ ମହାପୁରୁଷମାନେ ଯୁଗେ ଯୁଗେ ଉତ୍କଳରେ ଆପଣାର ମତ ପ୍ରଚାରର ସୁବିଧା ପାଇଛନ୍ତି ଏବଂ ଉତ୍କଳର ନୀଳାଚଳ ଧାମରେ ବିଭିନ୍ନମତ ଓ ଜାତିର ସମନ୍ୱୟ ଘଟିଅଛି ।ଅସହଯୋଗ ବିଷୟରେ କେତେକଙ୍କର ଏହିପରି ବିରୁଦ୍ଧ ମତ ଥିବାରୁ ଓଡ଼ିଶାରେ କାର୍ଯ୍ୟ ଆଶାନୁରୂପ ଅଗ୍ରସର ହୋଇପାରିନାହିଁ । ସବୁଆଡ଼ୁ ଆଶାନୁରୂପ ଉତ୍ସାହ ଓ ସାହାଯ୍ୟ ମିଳିନାହିଁ । ଅଳ୍ପସଙ୍ଖ୍ୟା ଏ

ସମ୍ମିଳନୀର ଆୟୋଜନରେ ଆମ୍ଭେମାନେ ଏ ଅଭାବ ଅନୁଭବ କରୁଅଛୁଁ । ଅସହଯୋଗର କାର୍ଯ୍ୟ ବର୍ତ୍ତମାନ ଭାରତରେ ସ୍ଥଗିତ । ଅବସ୍ଥା ଦେଖି ଏ ଅବସ୍ଥା ହୋଇଅଛି । ଏବର କାର୍ଯ୍ୟ ଗଠନମୂଳକ, ଏଥିରେ କାହାରି ଅମତ ହେବାର କଥା ନୁହେଁ । ଏଥିରେ ସହଯୋଗ ଅସହଯୋଗର ଭେଦାଭେଦ ନାହିଁ । ସହଯୋଗରେ ଅସହଯୋଗରେ ବା ଉଭୟର ସହଯୋଗରେ ଦେଶକୁ ଏବେ ଗଢ଼ିବାକୁ ହେବ । ଆମ ଗାଁମାନ ଭାଙ୍ଗିଯାଇଛି । ଲୋକଙ୍କ ଭିତରେ ବିବାଦ, ଗ୍ରାମ୍ୟଶିଳ୍ପ ଲୁପ୍ତ, ଗ୍ରାମରେ ସଙ୍ଘବଦ୍ଧ ଜୀବନ ନାହିଁ, ପର୍ବ ଅନୁଷ୍ଠାନ ସବୁ ନଷ୍ଟ ହୋଇଗଲାଣି, ଅନ୍ନର ଅଭାବ ,ଶିକ୍ଷା ଓ ସଂଘର ଅଭାବରେ ଗ୍ରାମର ଶ୍ରୀ ତୁଟିଲାଣି, ଗ୍ରାମରେ ସ୍ୱାସ୍ଥ୍ୟନାହିଁ । ଏହା ରୋଗର ସ୍ଥାନ ହେଲାଣି । ଏ ଅବସ୍ଥା ବଦଳାଇବାକୁ ହେବ, ଗଠନମୂଳକ କାର୍ଯ୍ୟର ଏହାହିଁ ପ୍ରଥମ ଉଦ୍ୟମ ଦେବା ଉଚିତ । ଏ ଉଦ୍ୟମରେ ସୂତାକାଟି ଶ୍ରୀ ଗଣେଶାୟ ନମଃ କରିବାକୁ ହେବ ।

ଓଡ଼ିଶା ପକ୍ଷରେ ଖଦଡ଼ କେତେ ଅତି ଆବଶ୍ୟକ ଏହା ବାରମ୍ବାର କୁହାଯାଇଅଛି । ସମସ୍ତେ ପ୍ରାୟ ବୁଝିଛନ୍ତି; ମାତ୍ର ଧୈର୍ଯ୍ୟଧରି ନିଷ୍ଠାର ସହିତ ଏ ପର୍ଯ୍ୟନ୍ତ କେହି ସେ କାମରେ ଲାଗିନାହାନ୍ତି । ମୋର ମନେହୁଏ ଓଡ଼ିଶାର କୌଣସି କୌଣସି ଅଞ୍ଚଳରେ ଅତି ବର୍ଷାଦ୍ୱାରା ଯେ ବାରମ୍ବାର ଅନ୍ନକଷ୍ଟ ଘଟୁଅଛି, ତାହା ଦୈବଦଣ୍ଡ । ଭଗବାନ ଆମ୍ଭମାନଙ୍କୁ ବେତମାରି ଅରଟ ଧରିବାକୁ ବାରମ୍ବାର ଚେତାଇ ଦେଉଛନ୍ତି । ଏଥିରେ ନ ଚେତିଲେ ଆମ୍ଭମାନଙ୍କର ଦୁର୍ଗତିର ସୀମା ରହିବନାହିଁ । ଓଡ଼ିଶାପକ୍ଷେ ଭଲରୂପେ ପେଟ ପୂରାଇ ମୁଠେ ଖାଇ ବା ଭଲକରି ଖଣ୍ଡେ ପିନ୍ଧିବା ହିଁ ସମସ୍ୟା । ଏହାହିଁ ଏକପ୍ରକାର ଆମ୍ଭମାନଙ୍କର ସ୍ୱରାଜ୍ୟ । ପ୍ରତି ଘରେ ଘରେ ଅରଟ ଗୁଞ୍ଜିଲେ ଓଡ଼ିଶାର ଦାରିଦ୍ର୍ୟ ସମସ୍ୟାର ଅନେକ ପରିମାଣରେ ସମାଧାନ ହେବ । ଅରଟ ସୂତାରେ ଗ୍ରାମଲୋକେ ତଥା ଦେଶ-ଲୋକେ ଏକତ୍ର ବନ୍ଧାହେବେ । ସମଗ୍ର ଜାତି ମଧ୍ୟରେ ଏକତା ଆସିବ । ଗ୍ରାମଗଠନର ଏହାହିଁ ମୂଳଭିତ୍ତି । କ୍ରମେ ଏହା ଉପରେ ଅନ୍ୟାନ୍ୟ ଉଦ୍ୟମ ବି ଗଢ଼ାହେବ । ଗ୍ରାମରେ ପଞ୍ଚାୟତ ବସିବ । ଗାଁ ପୋଖରୀ ଉଦ୍ଧାର ହେବ, ସ୍ୱାସ୍ଥ୍ୟରକ୍ଷା ବିଧାନ ହେବ, ଭାଗବତ ଘରେ ଧର୍ମ ଓ ସମାଜଗତ ଜୀବନ ଜାଗିବ, ଗ୍ରାମରେ ଶିକ୍ଷା ପ୍ରଚାର ହେବ । କୃଷି ଆଦି ବୃତ୍ତି ଓ ବ୍ୟବସାୟର ଉନ୍ନତି ହେବ । ଫଳରେ କ୍ରମେ ଗ୍ରାମର ସର୍ବାଙ୍ଗୀନ ଶ୍ରୀବୃଦ୍ଧି ସମ୍ପାଦିତ ହେବ । ଅରଟର ଏ ଶୁଭ ପରିଣାମ ଜାଣିଲେ ସୁଦ୍ଧା ଉତ୍କଳବାସୀ ଏ ପର୍ଯ୍ୟନ୍ତ ଯେ ତିଆରି ହୋଇନାହାନ୍ତି, ଆମ୍ଭମାନଙ୍କର ଆଳସ୍ୟ, ବିଶ୍ୱାସର କ୍ଷୀଣତା ଏବଂ ସ୍ୱାଭାବିକ ଉତ୍ସାହହୀନତା ଏହାର କାରଣ । ଅବଶ୍ୟ ଏଥିର ଆୟୋଜନ କରିବାରେ ଅନେକ

ଅସୁବିଧା ଅଛି । କେଉଁ କାର୍ଯ୍ୟରେ ବା ତାହା ନାହିଁ ? ସହଜରେ ସୁଫଳ ବା ସ୍ୱରାଜ୍ୟ କହ, ମିଳିବ କାହିଁ ? ଗୋଟିଏ ଲୁପ୍ତ ଜାତୀୟ ଶିଳ୍ପକୁ ପୁଣି ଉଦ୍ଧାର କରିବା ବହୁ ଅଧ୍ୟବସାୟ, ବ୍ୟୟ ସାପେକ୍ଷ । ଯେଉଁମାନେ କହନ୍ତି, ଅଳ୍ପ ସୂତା କଣ୍ଟା କାମ ଆରମ୍ଭ କଲେ ମାସକ ଭିତରେ ଲାଭ ପାଇବେ ବୋଲି ସେମାନେ ଖଦଡ଼ର ତତ୍ତ୍ୱ ଏବଂ ରହସ୍ୟ ବୁଝିନାହାନ୍ତି । ଖଦଡ଼ ଜାତିର ଲାଭଜନକ ପାରିବାରିକ ଶିଳ୍ପ; ଏହା ଲାଭଜନକ ବ୍ୟବସାୟ ନୁହେଁ ।

କଳ ଏହାର ପ୍ରତିଦ୍ୱନ୍ଦୀ । ଖଦଡ଼ ଦାମ ବର୍ତ୍ତମାନ ବେଶି; ଏଥିରେ ଖର୍ଚ୍ଚ ବେଶୀ । ମିଲ୍‌ଲୁଗା ତୁଳନାରେ ଖଦଡ଼ ଲାଗି ଯେ ଅଧିକ ଦାମ ଦେବାକୁ ହୁଏ ତାହା ଜାତୀୟ ଶିଳ୍ପ ଉନ୍ନତି ନିମନ୍ତେ ଦାମ । ଘରେ ଘରେ ଖଦଡ଼ ନ ହେବାଯାଏ ଏହିପରି ଦାମରେ ଏ ଶିଳ୍ପର ଉଦ୍ଧାର ଓ ଉନ୍ନତି କରିବାକୁ ହେବ । କୌଣସି କୌଣସି ଶିଳ୍ପର ରକ୍ଷା ଏବଂ ଉନ୍ନତି ଲାଗି ବଡ଼ ବଡ଼ କଳକାରଖାନାକୁ ଭିନ୍ନ ଭିନ୍ନ ଦେଶର ସରକାରମାନେ ସାହାଯ୍ୟ ଦେଇଛନ୍ତି । ଆମ୍ଭମାନଙ୍କ ହାତରେ ଶାସନ ଅକ୍ତିଆର ଥିଲେ ଖଦଡ଼ଲାଗି ଆମେ ସେହିପରି ସାହାଯ୍ୟ ଦେଇ ଅତି ଅଳ୍ପ ସମୟ ମଧ୍ୟରେ ଏ ଲୁପ୍ତ ଶିଳ୍ପକୁ ଜଗାଇ ପାରିଆନ୍ତେ । ସେ ସୁବିଧା ନ ଥିବା ସ୍ଥଳେ ଜାତିର ସମସ୍ତଙ୍କୁ ଉଣା ଅଧିକେ ସେ ସାହାଯ୍ୟ ଦେବାକୁ ହେବ । ଆମଲୋକେ ଏହାକୁ ବୁଝିଲେ ଖଦଡ଼କାମ ଓଡ଼ିଶାରେ ନିଶ୍ଚୟ ଅଗ୍ରସର ହେବ । ଯେ କୌଣସି ପ୍ରକାର ଖଦଡ଼ ହେଉ ପଛକେ, ଦେଶର ଜିନିଷ । ଏହାକୁ କିଣିବା ଦ୍ୱାରା ଦେଶର ଦୁର୍ଗତି ଘୁଞ୍ଚିବ । ଲୋକେ ଏହା ବୁଝି ଅଧିକ ଦାମ ଦେଇ ଖଦଡ଼ କିଣିବାକୁ ପ୍ରସ୍ତୁତ ହେଲେ କ୍ରମେ ଖଦଡ଼ ଶସ୍ତା ହେବ । ଘରେ ଘରେ ସୂତାକଣ୍ଟା ଲାଗିବ । ପ୍ରତି ଗାଁର ଲୁଗା ପ୍ରତି ଗାଁରେ ତିଆରି ହେବ । ତେଣିକି ଆଉ କାହାରିକି ଖଦଡ଼ଲାଗି ବେଶି ଦାମ ଦେବାକୁ ପଡ଼ିବ ନାହିଁ । କ୍ରମେ ଏହିପରି ଖଦଡ଼ ଆନ୍ଦୋଳନର ଉଦ୍ଦେଶ୍ୟ ସିଦ୍ଧ ହେବ । ବର୍ତ୍ତମାନ ଖଦଡ଼ କାର୍ଯ୍ୟ ଜାତିର ଏକ ଶିକ୍ଷା କାର୍ଯ୍ୟ । ପିଲାଙ୍କୁ ପାଠ ପଢ଼ାଇବା ଲାଗି ଯେପରି ଟଙ୍କା ଖର୍ଚ୍ଚ ହୁଏ, ଅଥଚ ସଦ୍ୟଫଳ କିଛି ମିଳେ ନାହିଁ; ମାତ୍ର ପୁଅ ଯୋଗ୍ୟ ଓ ବିଦ୍ୱାନ୍ ହେଲେ ବ୍ୟୟ ସାର୍ଥକ ହୁଏ, ଏହା ଠିକ୍ ସେହିପରି । ଖଦଡ଼ କାର୍ଯ୍ୟରେ ଆମ୍ଭମାନଙ୍କ ପରିଶ୍ରମ, ଅଧ୍ୟବସାୟ ଓ ଅର୍ଥ ବ୍ୟୟକୁ ସେହି ଦୃଷ୍ଟିରେ ଦେଖିବାକୁ ହେବ । ଉତ୍କଳବାସୀ ସ୍ତ୍ରୀ ପୁରୁଷ, ରାଜା ପ୍ରଜା, ଧନୀ, ଦରିଦ୍ର, ସରକାରୀ, ବେସରକାରୀ ସମସ୍ତେ ଖଦଡ଼ର ଆଶ୍ରୟ ନିଅ । ଏଥିରେ ଦୁର୍ଗତି ଘୁଞ୍ଚିବ । ଅନେକଙ୍କର ଜୀବିକା ଉପାର୍ଜ୍ଜନ ହେବ; ଅନାହାର କଷ୍ଟ ଦୂର ହେବ ।

ଏ ଜିଲ୍ଲାରେ ଆମ୍ଭେମାନେ ବନ୍ୟା ଅଞ୍ଚଳରେ ବିପନ୍ନ ଲୋକଙ୍କ ସାହାଯ୍ୟ ନିମନ୍ତେ ସୂତାକଟାର ଆୟୋଜନ କରୁଅଛୁ । ଯାହା ଆଶାନୁରୂପ ଅଗ୍ରସର ହେଲେ ପରେ ଉତ୍କଳର ଅନ୍ୟାନ୍ୟ ଅଞ୍ଚଳରେ ଏ ଉଦ୍ୟମର ପ୍ରସାର ପାଇଁ ଚେଷ୍ଟା ହେବ । ଏ ଜିଲ୍ଲାର ବିପନ୍ନ ଅଞ୍ଚଳ କମ୍ ନୁହେ । ପୁଣି ସଦର ସବ୍‌ଡ଼ିଭିଜନ ସମୁଦାୟ ବନ୍ୟାପୀଡ଼ିତ ବୋଲି ସରକାର ନିଜେ ସ୍ୱୀକାର କରିଛି । ନିମାଗଡ ୩ ମାସ ସାଢ଼େ ଛଅ ମାସକାଳ ଉପର୍ଯ୍ୟୁପରି ବନ୍ୟାଦ୍ୱାରା ଏ ସବ୍‌ଡ଼ିଭିଜନର ଅଧିକାଂଶ ସ୍ଥାନରେ ଶସ୍ୟର ଆଶା ଏକାବେଳକେ ଲୋପ ପାଇଅଛି । ୧୫୦୦ ହଜାର ବର୍ଗମାଇଲ ମଧ୍ୟରୁ ୫୦୦ ବର୍ଗମାଇଲ ଶେଷକୁ କୌଣସି ପ୍ରକାରେ ଉଠିଆ ହୋଇଥିଲେ କଡ଼ । ବାକି ୧୦୦୦ ବର୍ଗମାଇଲରେ ପ୍ରାୟ ୪ ଲକ୍ଷ ଲୋକଙ୍କର ଅବସ୍ଥା ଅତୀବ ଶୋଚନୀୟ । ଏହି ବିସ୍ତୀର୍ଣ୍ଣ ଭୂଖଣ୍ଡରେ ସୂତାକଟା ଦ୍ୱାରା ସାହାଯ୍ୟ କରିବାକୁ ଗଲେ ବହୁ ଅର୍ଥ ଆବଶ୍ୟକ । ବହୁତ କର୍ମୀ ଲୋଡ଼ା । ପୁଣି ସମଗ୍ର ଦେଶର ସାହାଯ୍ୟ ସହାନୁଭୂତି ନ ମିଳିଲେ ବିଶେଷ କିଛି ହୋଇପାରିବ ନାହିଁ । ଦୁର୍ଭିକ୍ଷ ଅଞ୍ଚଳର ଏହି କ୍ଷୁଦ୍ର କାର୍ଯ୍ୟରେ ଗ୍ରାମସଂଗଠନର ସୂତ୍ରପାତ ହେବ, ଏଥିରେ ଜାତୀୟ କର୍ମୀମାନେ ଶିକ୍ଷିତ ହୁଅନ୍ତୁ; ଅନାହାରରେ ପ୍ରପୀଡ଼ିତ ଦେଶବାସୀଙ୍କୁ ଦେଖି ଦେଶ ଅବସ୍ଥା ସେମାନେ ବୁଝନ୍ତୁ । ଏହି ପ୍ରାଥମିକ ଶିକ୍ଷା କ୍ଷେତ୍ରରୁ ଭବିଷ୍ୟତରେ ଦେଶର ସହାୟତା କରନ୍ତୁ । ଏଥିରେ ମାନବର ପ୍ରାଣରକ୍ଷା ହେବ । ଜାତୀୟ ଶିଳ୍ପର ପୁନରୁଦ୍ଧାର ହେବ । ଜାତୀୟ କର୍ମୀ ଓ ଯୁବକମାନଙ୍କର ଶିକ୍ଷା ବ୍ୟବସ୍ଥା ହେବ । ଗ୍ରାମସଂଗଠନର ମୂଳଦୁଆ ପଡ଼ିବ ।

ଅନ୍ୟାନ୍ୟ ଲାଭଜନକ କାର୍ଯ୍ୟ ଛାଡ଼ି କେବଳ ସୂତା କାଟିବାକୁ କେହି କହୁନାହିଁ । ପରିବାରରେ ବା ଦେଶରେ ଯେଉଁ ଶ୍ରେଣୀର ଲୋକେ ଅନ୍ୟ କିଛି କାମ ନ କରି ଦିନର ଅଧିକାଂଶ ସମୟ କଟାଉଛନ୍ତି ବା ସମସ୍ତଙ୍କର ଯେଉଁ ସମୟ ଅଳସରେ ବିତୁଛି କେବଳ ସେହି ସମୟରେ ଲୋକେ ସୂତା କାଟନ୍ତୁ । ଅଳସରେ ଦିନ କାଟିବା ଆମ୍ଭମାନଙ୍କର ଅବସ୍ଥା ନୁହେଁ । ଯାହାହେଉ, ଖଦଡ଼ ବା ସଂଗଠନ କାର୍ଯ୍ୟରେ ସମସ୍ତେ ଯୋଗଦିଅନ୍ତୁ ବା ନ ଦିଅନ୍ତୁ, ଉତ୍ସାହ ଆଗ୍ରହ ଦେଖାନ୍ତୁ ବା ନ ଦେଖାନ୍ତୁ, ଏବିକି ଏ କାର୍ଯ୍ୟରେ ସମସ୍ତଙ୍କଠାରୁ ଅଧିକ ସାହାଯ୍ୟ ଓ ସହାନୁଭୂତି ମିଳିବ ବୋଲି ଆଶା କରାଯାଏ ।

ଭାଇ ଭଉଣୀମାନେ, ଯେଉଁସବୁ କାରଣ ଓ ଘଟଣାଯୋଗେ ଆମ୍ଭମାନଙ୍କ ଏ ସମ୍ମିଳନୀ ଆୟୋଜନରେ ଏବଂ ଆପଣମାନଙ୍କ ଅଭ୍ୟର୍ଥନାରେ ନାନା ଅସୁବିଧା ଘଟିଅଛି,

ତାହାସବୁ ଆପଣମାନଙ୍କୁ ଜଣାଇଲି । ଏ ସମ୍ପର୍କରେ ଆଉ ଏକ ବିଷୟ ଉଲ୍ଲେଖଯୋଗ୍ୟ, ଆମ୍ଭମାନଙ୍କର ଏ ପ୍ରାଦେଶିକ ସମ୍ମିଳନୀ ଦୁଇବର୍ଷ ହେଲା ମାତ୍ର ହୋଇଛି । କଂଗ୍ରେସ ସଙ୍ଗେ ଏହାର ପ୍ରତ୍ୟକ୍ଷ ସମ୍ବନ୍ଧ । ଏଥିପୂର୍ବରୁ ଅପର ଜାତୀୟ ଅନୁଷ୍ଠାନ ଥିଲା 'ଉତ୍କଳ-ସମ୍ମିଳନୀ' ତାହା ଏବେ ହେଉନାହିଁ । ଅନେକଙ୍କର ଅଦ୍ୟାପି ଏ ପ୍ରାଦେଶିକ ସମ୍ମିଳନୀରେ ଆସ୍ଥା ଜନ୍ମିନାହିଁ । ପୂର୍ବ ସମ୍ମିଳନୀ ଲୋପ ପାଇବାରେ ସେମାନଙ୍କର ଆକ୍ଷେପ । ତେଣୁ ପ୍ରାଦେଶିକ ସମ୍ମିଳନୀରେ ସମସ୍ତଙ୍କଠାରୁ ଆଶାନୁରୂପ ପୂର୍ଣ୍ଣ ସାହାଯ୍ୟ ଓ ସହାନୁଭୂତି ଏ ପର୍ଯ୍ୟନ୍ତ ମିଳିନାହିଁ । ପୂର୍ବ ଉତ୍କଳ ସମ୍ମିଳନୀର ମୁଁ ଜଣେ ଭକ୍ତ । ମୂଳରୁ ଯୋଗଦେଇ ଆସିଛି, ସେଥିରେ ସଭାପତି ସମ୍ମାନ ବି ପାଇଛି; କିନ୍ତୁ ମୋର ବିଶ୍ୱାସ ଯେ, ସମ୍ମିଳନୀ କ୍ରମେ ଯେ ଅବସ୍ଥାକୁ ଆସିଥିଲା ସେ ଅବସ୍ଥାରେ ଆଉ ଅଧିକ ଦିନ ରହିବା ନିରର୍ଥକ, ରହି ପାରନ୍ତା ନାହିଁ, ରହିଲା ନାହିଁ । ମୁଁ ମନେକରେ ଯେ, ଏହି ପ୍ରାଦେଶିକ ସମ୍ମିଳନୀ ସେହି ପୂର୍ବ ସମ୍ମିଳନୀର ରୂପାନ୍ତର; ସୁତରାଂ ପୂର୍ବର ସମ୍ମିଳନୀ ମରିନାହିଁ; ତାହାର ଆକୃତି ପ୍ରକୃତି ବଦଳିଛି ମାତ୍ର । ଦେଶ କାଳ ପାତ୍ର ଅନୁସାରେ ଦେଶର ସାଧାରଣ ଅନୁଷ୍ଠାନର ଉତ୍ପତ୍ତି ହୋଇଥାଏ, ପରିବର୍ତ୍ତନ ମଧ୍ୟ ହୁଏ । ସେଥିରେ ଦୁଃଖ କରିବାର କାହାର କାରଣ ନାହିଁ । ମୁଁ ଆଶାକରେ, ଉତ୍କଳର ଭିନ୍ନ ଭିନ୍ନ ଶ୍ରେଣୀ ଓ ମତର ଲୋକେ ଏହା ବୁଝି ଏଣିକି ପ୍ରାଦେଶିକ ସମ୍ମିଳନୀରେ ପୂର୍ଣ୍ଣ ପ୍ରାଣରେ ଯୋଗଦେବେ । ପ୍ରାଦେଶିକ ସମ୍ମିଳନୀ ପୂର୍ଣ୍ଣ ରାଜନୈତିକ ବୋଲି ଅନେକେ ନାନା କାରଣରୁ ଏଥିରେ ଯୋଗଦେବାକୁ ସାହସ କରନ୍ତି ନାହିଁ । ମୁଁ ସେଥିଲାଗି କାହାରିକୁ ଦୋଷ ଦେଉନାହିଁ । ସବୁ ଦେଶରେ ସବୁବେଳେ ଏପରି କେତେକ ଲୋକ ରହିବେ, ମାତ୍ର ଓଡ଼ିଶାରେ ଉପଯୁକ୍ତ ଲୋକଙ୍କ ସଂଖ୍ୟା କମ୍ । ଆମ୍ଭମାନଙ୍କର ଶକ୍ତି କ୍ଷୀଣ, ସେଥିରେ କେତେକ ଅଲଗା ହୋଇ ରହିଲେ ନାନା ବିଷୟରେ ଜାତିର ସମୂହ ଉନ୍ନତିରେ ବାଧା ପଡ଼ିବ; ତେଣୁ ମୋର ମନେ ହୁଏ, ପ୍ରାଦେଶିକ ସମ୍ମିଳନୀ ଅର୍ଥାତ୍ Utkal Political Conference ହୋଇ ରହିବା ଉଚିତ । ଏହାଛଡ଼ା ଉତ୍କଳ ଭିନ୍ନ ଭିନ୍ନ ରାଜ୍ୟରେ ବିକ୍ଷିପ୍ତ ହୋଇ ରହିଥିବ । ଉତ୍କଳବାସୀଙ୍କର ନିଖିଳ ଉତ୍କଳ ସମ୍ମିଳନୀ ହେଉ, ସେଥିରେ ରାଜନୀତିର ସଂସ୍ରବ ରହିବା ଉଚିତ ନୁହେଁ । ଶିକ୍ଷା, ସାହିତ୍ୟ, ଧର୍ମ, ଶିଳ୍ପ ଆଦି ବିଷୟରେ ଉନ୍ନତି ଲାଗି ଏ ସମ୍ମିଳନୀ କାର୍ଯ୍ୟ କରୁ । ଏହା ନିଖିଳ ଉତ୍କଳ ଜାତୀୟତା ଗଠନରେ ପ୍ରକୃଷ୍ଟ ସହାୟକ ହେବ, ସନ୍ଦେହ ନାହିଁ । ମୋହର ବକ୍ତବ୍ୟ ଶେଷ କରିବା ପୂର୍ବରୁ ଦେଶର ମନସ୍ୱୀ ତ୍ୟାଗୀ ପୁରୁଷମାନଙ୍କର ଯେ ଅକାଳ ବିୟୋଗ ଘଟିଅଛି ସେଥିଲାଗି ମୁଁ ହୃଦୟର ଗଭୀର ଦୁଃଖପ୍ରକାଶ କରୁଅଛି । ଦେଶବନ୍ଧୁ ଚିତ୍ତରଞ୍ଜନ, ପ୍ରବୀଣ ବୃଦ୍ଧ ସୁରେନ୍ଦ୍ରନାଥ ବେନାର୍ଜୀଙ୍କ ମୃତ୍ୟୁ ସମସ୍ତ ଭାରତକୁ ବାଧିଛି । ମାତ୍ର ଆମ୍ଭମାନଙ୍କର

ଏ ଉତ୍କଳରେ ଏଥିମଧ୍ୟରେ ଯେ କେତୋଟି ଶୋକାବହ ଘଟନା ଘଟିଛି, ଆମ୍ଭମାନଙ୍କ ପକ୍ଷେ ତାହା ସାମାନ୍ୟ କ୍ଷତି ନୁହେଁ । ଏ ଜିଲାର ଡାକ୍ତର ବାଳକୃଷ୍ଣ ମିଶ୍ର ଜଣେ ଉତ୍ସାହୀ ସ୍ୱାଧୀନଚେତା କଂଗ୍ରେସ କର୍ମୀ ଥିଲେ, ତାଙ୍କଠାରୁ ଦେଶର ଅନେକ ଆଶା ଥିଲା । ପୁରୀ ଜିଲା କଂଗ୍ରେସ କମିଟିର ସେ ସମ୍ପାଦକ ଥିଲେ ଏବଂ ସେ ସମ୍ପର୍କରେ ସେ ଜେଲ ଯାଇଥିଲେ । ତାଙ୍କର ଆକସ୍ମିକ ବିୟୋଗ ଆମ୍ଭମାନଙ୍କ ପ୍ରାଣରେ କଠୋର ଆଘାତ ଦେଇଛି । କଟକ ଜିଲାର ଶ୍ରୀ ଭିକାରୀଚରଣ ନାୟକଙ୍କ ବିୟୋଗ ମଧ୍ୟ ସେହିପରି ଶୋକାବହ । ଏହିପରି ନାନାପ୍ରକାର ଦୁଃଖ ଦୁର୍ଗତି, ଶୋକ ଶୋଚନା, ଅଭାବ ଅସୁବିଧା ମଧ୍ୟରେ ଆମ୍ଭେମାନେ ଏ କ୍ଷୁଦ୍ର ପଲ୍ଲୀରେ ସମ୍ମିଳନୀର ଆୟୋଜନ କରିଅଛୁଁ । ଏଥିରେ ଅନେକ ତ୍ରୁଟି ନିଶ୍ଚୟ ଘଟିବ ଓ ଘଟୁଛି । ଆପଣମାନଙ୍କର ସମୁଚିତ ଅଭ୍ୟର୍ଥନା ହୋଇ-ପାରୁନାହିଁ । ସେଥିଲାଗି ଅଭ୍ୟର୍ଥନା ସମିତି ପକ୍ଷରୁ ଆପଣମାନଙ୍କ ପାଖେ ମୁଁ ଶେଷରେ ପୁଣି କ୍ଷମା ମାଗି ଆପଣମାନଙ୍କଠାରୁ ବିଦାୟ ନେଉଛି ।

ବନ୍ଦେ ମାତରଂ

(‘ସମାଜ’ ତା ୨୪ । ୧ । ୨୫)

# ଇଂରେଜ ଶାସକଙ୍କ କାରସାଦି

ଇନ୍ଦୋର ରାଜ୍ୟର ଗୋଳମାଳ ନ ସରୁଣୁ ପୁଣି ନିଜାମ ରାଜ୍ୟରେ ଗୋଳମାଳର ସୂତ୍ରପାତ । ଶୁଣାଯାଏ ପ୍ରଜାମାନେ ନିଜାମଙ୍କ ଉପରେ ଅତି ଅସନ୍ତୁଷ୍ଟ । ନିଜାମଙ୍କର ପୂର୍ବେ ଏକବାଲ ଉଦ୍ଦୌଲା ନାମକ ଜଣେ ଓଜିରର ମନ୍ତ୍ରୀ ଥିଲେ । ସେ ନିଜାମଙ୍କର ନିଜ ଭଣୋଇ । ଏକବାଲ ଉଦ୍ଦୌଲା ମଲେଣି, ତାଙ୍କର ସାତପୁଅଯାକ ବର୍ତ୍ତମାନ ଜେଲରେ । ଏପରିକି ମା' ବଡ଼ମା ପ୍ରଭୃତିଙ୍କ ସଙ୍ଗେ ସେମାନଙ୍କୁ ସାକ୍ଷାତ କରିବାକୁ ଦିଆଯାଉନାହିଁ । ଏହାଛଡ଼ା ୧୦, ୨ ଜଣ ହିନ୍ଦୁ ମୁସଲମାନ ଓମରାହଙ୍କର ସମ୍ପତ୍ତି ନିଜାମ ବାଜ୍ୟାପ୍ତ କରିଛନ୍ତି । ନିଜାମତ ଦେଶୀୟ ରାଜ୍ୟ । ଆମ୍ଭମାନଙ୍କ ଭାଷାରେ ଅନ୍ଧାରମୂଳକ ସେଠାରେ; ପ୍ରକୃତ ତଥ୍ୟ ବାହାରକୁ ଜଣାପଡ଼ିବା ଦୁଷ୍କର । ମାତ୍ର ଯେତେଦୂର ଖବର ମିଳେ ରାଜ୍ୟରେ ଏସବୁ ଅତ୍ୟାଚାର ଓ ଗୋଳମାଳ ହେଉଛି ବଡ଼ଲାଟ ନିଜାମଙ୍କୁ ବାରମ୍ବାର ଡକାଇ ପଠାଉଛନ୍ତି । ସେ କୌଣସିମତେ ଏଡ଼ାଇ ଥିଲେ । ପୁଣି ରେସିଡ଼େଣ୍ଟ ସାହେବଙ୍କ ସଙ୍ଗେ ଶୀଘ୍ର ନିଜାମ ଦିଲ୍ଲୀ ଆସିବେ ବୋଲି ଶୁଣାଯାଏ । ଛୋଟିଆ ଛୋଟିଆ ଗଡ଼ଜାତ ଓ ଉନ୍ନତ ନିଜାମ ଭିତରେ ତେବେ ତଫାତ୍ କଣ ? ଯାହାହେଉ ଦେଶୀୟ ରାଜ୍ୟ ଉପରେ କ୍ରମେ ସରକାରର ତୀକ୍ଷ୍ଣ ଦୃଷ୍ଟି ପଡ଼ୁଛି । ଆମ୍ଭମାନଙ୍କପରି ଏହା ଲଜ୍ଜାଜନକ ଓ ଅସହ୍ୟ ହେଲେ ସୁଦ୍ଧା କେତେ ହିସାବରେ ବାଞ୍ଛନୀୟ ।

× × ×

ସଂସ୍କାର ଆଇନ ଅନୁସାରେ ଲାଟ ଓ ତାଙ୍କ କାର୍ଯ୍ୟକାରୀ ସଭା ମେମ୍ବରମାନଙ୍କ ବେତନ ବିଷୟରେ ବ୍ୟବସ୍ଥାପକ ସଭାର ମତ ଦେବାର ଅଧିକାର ନାହିଁ, ଅର୍ଥାତ୍ ନୂଆବର୍ଷର ଆୟବ୍ୟୟର ବିଚାରବେଳେ ଏ ଦରମା ବିଷୟରେ ଲାଟସଭା ମେମ୍ବରମାନେ କିଛି କହି ପାରିବେ ନାହିଁ । ମାତ୍ର ତାହା ବୋଲି ଗଭର୍ଣ୍ଣରଙ୍କ ଗସ୍ତଖର୍ଚ୍ଚା, ଆହାର ବିହାର, ବିଳାସ ଆଦିର ବ୍ୟୟ ବିଷୟରେ କାଉନ୍‌ସିଲ ମତ ନ ଦେବାର କୌଣସି କାରଣ ନାହିଁ । କିନ୍ତୁ ବଜେଟ ଆଲୋଚନାବେଳେ ଏସବୁ ଖର୍ଚ୍ଚ କାଉନ୍‌ସିଲ ମତ ଲାଗି ପେଶ୍ ହୁଏ ନାହିଁ । ବମ୍ବେଇ ଲାଟସଭାରେ କେତେଜଣ ମେମ୍ବର ଏ ବିଷୟରେ ଆପତ୍ତି ଉଠାଇ ଥିଲେ, ଆପତ୍ତି ରହିଲା ନାହିଁ । ତେଣୁ ଗଭର୍ଣ୍ଣରଙ୍କ ଗସ୍ତଖର୍ଚ୍ଚା ଓ ବିଳାସ ବ୍ୟୟ ଆଦିରେ ବ୍ୟବସ୍ଥାପକ ସଭାର ମଞ୍ଜୁର ଦରକାର । ଏହା ସାବ୍ୟସ୍ତ କରିବାଲାଗି କେତେଜଣ ମେମ୍ବର ବମ୍ବେଇ

ହାଇକୋର୍ଟରେ ମକଦ୍ଦମା କଲେ । ହାଇକୋର୍ଟ ଜଜ୍ ସରକାରଙ୍କ ଅସ୍ଥାୟୀ ସଭ୍ୟ ମେମ୍ବରଙ୍କୁ କୈଫିୟତ ମାଗିଲେ । ମେମ୍ବର ଜଣ କୈଫିୟତ ଦେଲେ ନେଜାଣି; କିନ୍ତୁ କାଉନ୍‌ସିଲ ମେମ୍ବର ବାଦୀମାନଙ୍କ ଭିତରେ ପଶି ଆପୋଷରେ ମାମଲା ମେଣ୍ଟାଇବାର ଚେଷ୍ଟା କଲେ । ପାଠକମାନଙ୍କର ମନେଥିବ ପ୍ରାୟ ବର୍ଷକ ପୂର୍ବେ ବଙ୍ଗଳା ବ୍ୟବସ୍ଥାପକସଭାରେ ମନ୍ତ୍ରୀ ଦରମା ଦୋହର୍ଗୀ ବସ୍ତୁର ହୋଇ ପାରିବ ନାହିଁ ବୋଲି କଲିକତା ହାଇକୋର୍ଟରେ ମକଦ୍ଦମା ଦାଏର୍ ହୋଇଥିଲା । ଏଥିମଧ୍ୟରେ ବମ୍ବେଇ ପ୍ରଦେଶରେ ଅଉ ଦୁଇଟା କୌତୁକାବହ ଏଭଳି ମକଦ୍ଦମା ଦାଏର ହୋଇଥିଲା ।

ଗୋଟାଏ ଗାନ୍ଧୀ ଓ ଅନ୍ୟାନ୍ୟ ଅସହଯୋଗୀଙ୍କ ନାମରେ ଏବଂ ଆଉ ଗୋଟାଏ ଭାରତ ମନ୍ତ୍ରୀଙ୍କ ନାମରେ । ପ୍ରଥମଟାରେ ଅସହଯୋଗ ଆନ୍ଦୋଳନରେ ଦେଶରେ କ୍ଷତି ହୋଇଛି ବୋଲି ମୁଦେଇ ନିଜର କ୍ଷତିପୂରଣ ଦାବୀ କରିଥିଲା । ଦ୍ୱିତୀୟଟାରେ ଭାରତ ମନ୍ତ୍ରୀ ସ୍ୱରାଜ୍ୟ ନ ଦେଉଥିବାରୁ ଏବଂ ଅସହଯୋଗ ଆନ୍ଦୋଳନରେ ଅନ୍ୟାୟରେ ଲୋକଙ୍କୁ ଜେଲ, ଜୋରିମାନା, ସମ୍ପତ୍ତି ବାଜ୍ୟାପ୍ତି ଆଦି କରିଥିବାରୁ ଲୋକଙ୍କ ମନରେ ଅଶାନ୍ତି ଘଟି ଓ ରାଜଭକ୍ତି କମିଯାଇ ଅନେକ କ୍ଷତି ହୋଇଥିବା ଯୋଗୁଁ ମୁଦେଇ ତାଙ୍କ ନିଜ କ୍ଷତି ଅନୁପାତରେ କ୍ଷତିପୂରଣ ଦାବୀ କରିଥିଲେ । ଶୁଦ୍ଧ ସରଳ ଶାନ୍ତିପୂର୍ଣ୍ଣ ଅସହଯୋଗ ଆନ୍ଦୋଳନ ସକାଶରୁ ଏସବୁ କୂଟବୁଦ୍ଧି ପ୍ରକାଶ ପାଇଛି । ଓକିଲାତି ହାଇକୋର୍ଟ ଡିଗ୍ରୀରେ ସ୍ୱରାଜ୍ୟ ବା ସ୍ୱାଧୀନତା ମିଳିବ ନାହିଁ । ସ୍ୱରାଜ୍ୟ ଏଡ଼େ ସୁଲଭ ହୋଇଥିଲେ ପୃଥିବୀରେ ଚିରକାଳ ଯୁଦ୍ଧବିଗ୍ରହ ଲଢ଼େଇ ଭିଡ଼େଇ ଚାଲିଥାନ୍ତା କାହିଁକି ?

(‘ସମାଜ’, ତା ‘୭ । ୩ । ୨୭)

---

# ବିହାର ଓଡ଼ିଶା ପ୍ରସଙ୍ଗ

ଅସହଯୋଗ ଆନ୍ଦୋଳନ ଆରମ୍ଭରେ ଦେଶର ଚାରିଆଡ଼େ ଜାତୀୟ ସ୍ରୋତର ଶିକ୍ଷା ବହିଲା । କେତେ ଜାଗାରେ କେତେ ଜାତୀୟ ସ୍କୁଲ ବସିଲା । ପ୍ରତି ପ୍ରଦେଶରେ ଗୋଟିଏ ଗୋଟିଏ ବିଦ୍ୟାପୀଠ ବା କ୍ଷଣ୍ୱବିଦ୍ୟାଳୟ ଖୋଲିଲା । ଦୁଃଖର କଥା ଆନ୍ଦୋଳନ ଦବିବା ସଙ୍ଗେ ସଙ୍ଗେ ଏସବୁ ଅନୁଷ୍ଠାନରୁ ଅଧିକାଂଶ ଭାଙ୍ଗି ଯାଇଛି । ଏପରିକି ବଙ୍ଗ ଦେଶରେ ସୁଦ୍ଧା ଗୌଡ଼ୀୟ ବିଦ୍ୟାପୀଠ ଲୋପ ପାଇଛି । ବିହାର ବଡ଼ ବାହାଦୁର୍ । ଜାତୀୟ ଶିକ୍ଷାର ଅଖଣ୍ଡତା ଏପର୍ଯ୍ୟନ୍ତ ଜଳୁଛି । ଏ ମାସ ୨୦।୨୧ ତାରିଖରେ ବିହାର ବିଦ୍ୟାପୀଠର ବାର୍ଷିକ ଉତ୍ସବ ହୋଇଥିଲା । ଶ୍ରୀଯୁକ୍ତ ରାଜଗୋପାଳାଚାରି ସଭାପତି ହୋଇ-ଥିଲେ । ରିପୋର୍ଟରୁ ପ୍ରକାଶ ଯେ ବର୍ତ୍ତମାନ ବିଦ୍ୟାପୀଠ ଅଧୀନରେ ନଅଟି ଉଚ୍ଚବିଦ୍ୟାଳୟ ଓ ୧୬ଟି ମଧ୍ୟମ ବିଦ୍ୟାଳୟ ଅଛି । ଏ ୨୫ଟି ବିଦ୍ୟାଳୟରେ ମୋଟ ଛାତ୍ରସଂଖ୍ୟା ୨୦୨୨, ଶିକ୍ଷକ ସଂଖ୍ୟା ୧୪୯ ଏବଂ ମୋଟାମୋଟି ମାସିକ ଖର୍ଚ୍ଚ ଟ ୩୨୦୧ । ଏହାଛଡ଼ା ଅନେକ-ଗୁଡ଼ିଏ ପ୍ରାଥମିକ ବିଦ୍ୟାଳୟ ଅଛି । ସେସବୁ ବିଦ୍ୟାଳୟର ଛାତ୍ରସଂଖ୍ୟା ୧୦୧୯ ଓ ଶିକ୍ଷକ ସଂଖ୍ୟା ୩୪ ହାରାହାରି ମାସିକ ଖର୍ଚ୍ଚ ଟ୪୨୬୧ । ଆରମ୍ଭଠାରୁ ଏପର୍ଯ୍ୟନ୍ତ ଜାତୀୟ ବିଦ୍ୟା-ପୀଠର ଆୟ ହୋଇଛି ୧ ଲକ୍ଷ ୪୦ ହଜାର ୭୧୧ ଟଙ୍କା । ଖର୍ଚ୍ଚ ହେଉଛି ୧ ଲକ୍ଷ ୪୦ ହଜାର ୩୯୮ । ଏଥିରୁ ଅସହଯୋଗ ଆନ୍ଦୋଳନ ଆରମ୍ଭରୁ ଝରିଆରୁ ମହାତ୍ମାଗାନ୍ଧି ସଂଗ୍ରହ କରିଥିବା ୪୮ ହଜାର । ଗଲା କଂଗ୍ରେସର ବଳକା ଟଙ୍କା ୧୩ ହଜାର ଦୁଇଶହ । ନିଖିଳ-ଭାରତ କଂଗ୍ରେସ କମିଟିରୁ ମିଳିଥିବା ୧୫ ହଜାର; ବିହାର ପ୍ରାଦେଶିକ କଂଗ୍ରେସ କମିଟିଠାରୁ ମିଳିଥିଲା ୨୪ ହଜାର ଟଙ୍କା । ଯାହାହେଉ ଏତେ ଟଣାଟଣିରେ ବିହାର ନେତାମାନେ ଯେ କାର୍ଯ୍ୟ ଚଳାଇଛନ୍ତି ଏବଂ ଏତେଗୁଡ଼ାଏ ବିଦ୍ୟାଳୟ ରଖିପାରିଛନ୍ତି ଦେଶର ବର୍ତ୍ତମାନ ଅବସ୍ଥାରେ ଏହା ବଡ଼ ଆଶା ଓ ପ୍ରଶଂସାର କଥା ।

ବିହାର ଓଡ଼ିଶା କାଉନ୍‌ସିଲର ଯେ ୯ଜଣ ବେ-ସ୍ୱରାଜୀ ମେମ୍ବର କାଉନ୍‌ସିଲ ଛାଡ଼ି ଚାଲି ଆସିଥିଲେ ସେମାନଙ୍କ ମଧ୍ୟରୁ କେତେକ ବେଶୀ ସମୟ ସମ୍ଭାଳି ରହି ପାରିଲେ ନାହିଁ । କାଉନ୍‌ସିଲ ବୈଠକର ଶେଷଆଡ଼କୁ ଲାଟସାହେବ ଗୋଟାଏ ଉଦ୍ୟାନ ମିଳନ କରାନ୍ତି, ସେଥିରେ ମିଳାମିଶା ଖିଆପିଆ ଆମୋଦ ପ୍ରମୋଦ ହୁଏ । ଲାଟଙ୍କ ସଙ୍ଗେ କରମର୍ଦ୍ଦନ ଓ କଥାଭାଷାର ସୁଯୋଗ ମିଳେ । ଶୁଣାଯାଏ କାଉନ୍‌ସିଲ ଛାଡ଼ି ଚାଲି ଆସିଥିଲେ ସୁଦ୍ଧା

ଏ ୯ ଜଣଙ୍କ ମଧ୍ୟରୁ ଅନେକେ ଏ ମିଳନରେ ତହିଁ ପରଦିନ ଯୋଗ ଦେଇଥିଲେ । ମେମ୍ବରମାନଙ୍କର ଏଭଳି ଆଚରଣର ଅର୍ଥ ବୁଝି ପଡ଼ୁନାହିଁ । ସରକାର କାର୍ଯ୍ୟ ଓ ବ୍ୟବହାରରେ ଅସନ୍ତୁଷ୍ଟ ହୋଇ କାଉନସିଲ ଛାଡ଼ି ଚାଲି ଆସିବା ପରେ ପୁଣି ଗୋଟାଏ ଦିନ ନ ବିତୁଣୁ ସେହି ସରକାରର ଆମୋଦପ୍ରମୋଦରେ ଏତେ ଆଗ୍ରହର ସହିତ ଯୋଗ କାହିଁକି ? ମନରେ ପ୍ରକୃତ ବିରକ୍ତି ଓ ଅସନ୍ତୋଷ ଆସିଥିଲେ ଯୋଗଦେବାକୁ କଦାପି ଗୋଡ଼ ଉଠନ୍ତା ନାହିଁ । ବିଶେଷତଃ ଏ ଆମୋଦ ପ୍ରମୋଦ ସର ହ୍ୱିଲର ସାହେବ ବ୍ୟକ୍ତିଗତ ଭାବରେ କରାଇ ଥିଲେ ସେଥିରେ ଯୋଗଦେବାର କାରଣ ଥିଲା । ମାତ୍ର ଏହା ସରକାରୀ ଖର୍ଚ୍ଚରେ ସରକାରଆଡ଼ୁ ଲାଟଙ୍କ ନାମରେ ହୋଇଥାଏ । ଏହା ଗୋଟାଏ ପୂରା ସରକାରୀ ବ୍ୟାପାର । ବିରକ୍ତି ଓ ଅସନ୍ତୋଷ ଦେଖାଇ କାଉନସିଲରୁ ଚାଲିଆସି ପୁଣି ଏଥିରେ ଯାଇ ଯୋଗ ଦେବାଦ୍ୱାରା ଭାବ ଓ କାର୍ଯ୍ୟର ସଙ୍ଗତି ସାମଞ୍ଜସ୍ୟ ରହିଲା ନାହିଁ । ଏପରି ଢଙ୍ଗରେ କାମ ଚଳାଉଥିବା ଯାଏ ସରକାର ମନରେ ଚିନ୍ତା ବା ଉଦ୍‌ବେଗ ଆସିବ ନାହିଁ । ଏ ମେମ୍ବରମାନଙ୍କୁ ଉଦ୍ୟାନ ମିଳନରେ ଦେଖି ଲାଟ ଓ ଅନ୍ୟାନ୍ୟ ସରକାରୀ ମେମ୍ବରମାନେ ମୁହଁରେ ଲୁଗା ଦେଇ ହସୁଥିବେ । ହ୍ୱିଲର ସାହେବ ପୁରୁଣା ଓଡ଼ିଆ ସାହିତ୍ୟ ରସିକ ହୋଇଥିଲେ ମନେ ମନେ କହୁଥାନ୍ତେ—“ଘୁମାନ କର ଗୋର ରହି ପାରିବୁ କେତେ ।” ମେମ୍ବରମାନଙ୍କର ଏ ବ୍ୟବହାର ଦେଖି ଦେଶର ସାଧାରଣ ଲୋକ ଅନେକେ କହିବେ ଏ ମୃଦଙ୍ଗର ଦୁଇପଟେ ହାତ ପକାଇବା ନୀତି । ଏଣେ ଲୋକଙ୍କ ପାଖେ ଟାଣ ଦେଖାଇବା, ତେଣେ ସରକାର ପ୍ରୀତି ରଖିବା ! ଏ ନୀତିରେ କୌଶଳ ଥାଇପାରେ; ମାତ୍ର ନିଷ୍ଠା ନାହିଁ ।

('ସମାଜ' ତା ୨୭ । ୩ । ୦ )

---

# ସ୍ୱରାଜ୍ୟଦଳଙ୍କ କାର୍ଯ୍ୟକ୍ରମ

କଂଗ୍ରେସ ବର୍ତ୍ତମାନ ସ୍ୱରାଜ୍ୟଦଳଙ୍କ ହାତକୁ ପୂରା ଆସିଲା । ସ୍ୱରାଜ୍ୟ ଦଳ ଏବେ ଦେଶକୁ ବୁଝାଉଛନ୍ତି ଯେ ଆଇନଭଙ୍ଗ ଶେଷ ଉପାୟ । ଏତ ନୂଆ କଥା ନୁହେଁ । ୪ ବର୍ଷ ଆଗରୁ ମହାତ୍ମାଗାନ୍ଧି ଏହା କହିଛନ୍ତି। କେତେ ଜାଗାରେ ଆଇନଭଙ୍ଗର ମଧ୍ୟ ଉଦ୍ୟମ ହୋଇଛି, ତା ମଧ୍ୟ କେଉଁଠାରେ ପୂରା, କେଉଁଠାରେ ଆଂଶିକ ସଫଳ ହୋଇଛି । ଆଇନଭଙ୍ଗ ଅସହଯୋଗର ଶେଷ ସୋପାନ । ବଡ଼ ଆଶ୍ଚର୍ଯ୍ୟର କଥା, ଆଇନଭଙ୍ଗ ଉପରେ ଏତେ ଜୋର ଦେବା ସ୍ଥଳେ ଏଥର କଂଗ୍ରେସରେ ସ୍ୱରାଜ୍ୟ ଦଳ ଅସହଯୋଗର ନାମ ସୁଦ୍ଧା ଧରି ନାହାନ୍ତି । ଆଇନଭଙ୍ଗ କଥା ଭାରତବାସୀଙ୍କୁ ମହାତ୍ମାଗାନ୍ଧି ପ୍ରଥମେ ଶୁଣାଇ ଅଛନ୍ତି । ଦକ୍ଷିଣ-ଅଫ୍ରିକାରେ ସେ କାର୍ଯ୍ୟରେ ଏହା ସମଗ୍ର ଜଗତକୁ ଦେଖାଇଛନ୍ତି । ତାଙ୍କଛଡ଼ା ଆଇନଭଙ୍ଗ ତତ୍ତ୍ୱ ପୃଥିବୀ ମଧ୍ୟରେ ଅନ୍ୟ କେହି ଭଲରୂପେ ଜାଣନ୍ତି କି ନାହିଁ ସନ୍ଦେହ । ମାତ୍ର ଭାରତର ବର୍ତ୍ତମାନ ଅବସ୍ଥା ଦେଖି ସେ ଆଉ ଆଇନଭଙ୍ଗ କଥା ମୁହଁରେ ଆଣୁ ନାହାନ୍ତି । ସତ କହିଲେ ସେ ଏକପ୍ରକାର ନିର୍ବେଦ ହୋଇ ବସିଲେଣି । ତେବେ ସ୍ୱରାଜ୍ୟ ଦଳ କଣ ଭାବି କି ଦମ୍ଭରେ ଆଇନଭଙ୍ଗ ଉପରେ ଏତେ ଜୋର ଦେଉଛନ୍ତି ଜଣା ପଡ଼ୁ ନାହିଁ । ଏ ଲୋକ ଭୁଲାଣିଆ ଉଦ୍ୟମ ନୁହେଁ ତ ? ନ ହେଲେ ବିଷ ମନ୍ତ୍ର ନ ଜାଣି ସାପ ଗାତରେ ହାତ ଭର୍ତ୍ତି କରିବାକୁ ସାହସ ।

× × ×

ସ୍ୱରାଜ୍ୟଦଳ କହନ୍ତି "ଆଇନ ଭାଙ୍ଗିବା ଲାଗି ଦେଶକୁ ତିଆରି କରିବେ ।" କି ପ୍ରକାରେ ତିଆରି କରିବେ ? କେତେ ଦିନରେ ତିଆରି କରିବେ ? ମୋତିଲାଲ୍ ନେହେରୁଙ୍କ ପ୍ରସ୍ତାବରେ ଅଛି ଯେ ରାଜନୈତିକ ଅଧିକାର ବିଷୟରେ ଲୋକଙ୍କୁ ଶିକ୍ଷା ଦେବେ, ନାନା ବାଧା ସହି ଆପଣାର ଅଧିକାର ପାଇବାଲାଗି ଲୋକମାନଙ୍କୁ ପ୍ରସ୍ତୁତ କରିବେ, ଖଦଡ଼ ପ୍ରଚାର କରିବେ, ଭିନ୍ନ ଭିନ୍ନ ଶ୍ରେଣୀ ଓ ସମ୍ପ୍ରଦାୟମଧ୍ୟରେ ଏକତା ଆଣିବେ, ଅସ୍ପୃଶ୍ୟତା ଉଠାଇବେ, ଉପେକ୍ଷିତ ବର୍ଣ୍ଣମାନଙ୍କ ଅବସ୍ଥାର ଉନ୍ନତି କରିବେ, ନିଶା ନିବାରଣ କରିବେ, ଜିଲ୍ଲାବୋର୍ଡ଼ ମ୍ୟୁନିସିପାଲିଟିମାନଙ୍କରେ ପଶିବେ, ଶ୍ରମଜୀବୀ ଓ କୃଷକସଂଘ ଗଢ଼ିବେ, ଜମିଦାର ପ୍ରଜାଙ୍କ ମଧ୍ୟରେ ସଦ୍‌ଭାବ ଆଣିବେ, ଆଉ ଏହିପରି ଦେଶର ଯେତେପ୍ରକାର ଉନ୍ନତି ହୋଇପାରେ କରିବେ । ଏଥିମଧ୍ୟରୁ କେଉଁ କଥାଟି ନୂଆ ? ମାତ୍ର ଜିଲ୍ଲାବୋର୍ଡ଼ରେ ପଶିବା ଛଡ଼ା ଆଉ

ଏଥିମଧ୍ୟରୁ ସ୍ୱରାଜ୍ୟ ଦଳର କିଏ କେଉଁ କାମରେ କେତେ ମନଧ୍ୟାନ ଦେଇଛନ୍ତି ? ଫେବୃୟାରୀ ଭିତରେ ସରକାର ଜାତୀୟଦାବୀ ଗ୍ରହଣ ନ କଲେ ଦେଶକୁ ଆଇନଭଙ୍ଗ ଲାଗି ପ୍ରସ୍ତୁତ କରିବା କାରଣ ଏହିସବୁ କାର୍ଯ୍ୟ କରାଯିବ ଏବଂ ଏହାଛଡ଼ା ପୁଣି ଭୋଟଦାତାମାନଙ୍କୁ ଏହି ମତରେ ଶିକ୍ଷିତ କରିବାକୁ ହେବ । ସରକାର ନାମଞ୍ଜୁର ପର୍ଯ୍ୟନ୍ତ ଅପେକ୍ଷା କାହିଁକି ? ଏ କାର୍ଯ୍ୟର ଏ ତାଲିକା ଖୁବ୍ ଲମ୍ବା; ମାତ୍ର ଗୋଟିଏ ଗୋଟିଏ କାମ କେତେଦୂର ହୋଇଛି ? ସ୍ୱରାଜିଷ୍ଟ ହୁଅନ୍ତୁ ବା ଅନ୍ୟ ଯେ କୌଣସି ଦଳର ହୁଅନ୍ତୁ କାଉନ୍‌ସିଲକୁ ଯେଉଁମାନେ ଯାଇଛନ୍ତି ଭୋଟରମାନଙ୍କୁ ସଙ୍ଗଠନ କରିବା ଏବଂ ରାଜନୀତି ବିଷୟରେ ଶିକ୍ଷାଦେବା ସେମାନଙ୍କ କର୍ତ୍ତବ୍ୟ । କାଉନ୍‌ସିଲର କେତେଜଣ ସ୍ୱରାଜୀ ମେମ୍ବର ତାହା କରିଛନ୍ତି ? ଦେଶବନ୍ଧୁ ଚିତ୍ତରଞ୍ଜନ ଗ୍ରାମ ସଙ୍ଗଠନ ବିଷୟରେ କେତେଥର ଚିତ୍କାର କଲେଣି । ସ୍ୱରାଜୀ ଦଳ ପକ୍ଷରୁ ସେ ଦିଗରେ କଣ କରାଯାଇଛି ? ଆଉ ଫେବୃଆରୀ ଶେଷକୁ ସରକାର କଥା ନ ଶୁଣିଲେ ସ୍ୱରାଜୀ ଦଳ ଭିତରେ କି ଅଦ୍ଭୁତ ଶକ୍ତି, କି ଅସାଧାରଣ ବିକ୍ରମ ଆସିବ ଯେ ଦେଶରେ ବିପୁଳ କାର୍ଯ୍ୟତରଙ୍ଗ ଖେଳାଇ ଦେଶକୁ ଆଇନଭଙ୍ଗ ଲାଗି ଛିଡ଼ା କରିଦେବେ ?

କଥାରେ ଅଛି "ମା ଲୋ ମା, ମୁଁ କାଉଁଣ ବୁଦାରେ ବସିଲି ଯେ ଗଛ ଭାଙ୍ଗି ପଡ଼ିଲା, ହଁରେ ପୁଅ, ତୋ ବହି ମୁଣ୍ଡରୁ ଜଣାପଡ଼ୁଛି ।"

('ସମାଜ', ତା ୨ । ୧ । ୨୬)

# ବିନାଶକାଳେ ବିପରୀତ ବୁଦ୍ଧି

ବରିଶାଲ ସହରର ବ୍ରଜମୋହନ କଲେଜର ବୋର୍ଡିଂରେ କଲେଜ ଛାତ୍ରମାନେ ସରସ୍ୱତୀ ପୂଜା କରିବାର ଠିକ୍ କରିଥିଲେ । ପିଲାମାନେ ଗାଧୋଇ ସାରି କୀର୍ତ୍ତନ କରି ବୋର୍ଡିଂ ହତା ଭିତରକୁ ଆସିଲା ବେଳକୁ ପୁଲିସ ହତାକୁ ପଶିବାକୁ ନିଷେଧ କଲା । ପିଲାମାନଙ୍କ ସଙ୍ଗେ ସହରର ଅନେକ ଭଦ୍ରଲୋକ ପୂଜା କରିବାକୁ ଆସିଥିଲେ । ସେମାନଙ୍କୁ ମଧ୍ୟ ବାରଣ କରି ଦିଆଗଲା । ୧୪୪ ଧାରା ନିଷେଧ ଆଜ୍ଞା ସେମାନଙ୍କ ଉପରେ· ଜାରି କରା-ଗଲା । ସେମାନେ ତାହା ନ ମାନି ହତାରେ ପଶିଲେ । ହତା ଗୃହପଟେ ବହୁତ ପୋଲିସ ଜଗୁଆଳ ଥିଲେ । ସବ୍‌ଡିଭିଜନାଲ ମାଜିଷ୍ଟ୍ରେଟ ଥିଲେ, ସମସ୍ତଙ୍କୁ ଗିରଫଦାର କରାଗଲା ବୋଲି ଜଣାଇ ଦେଲେ । ଗିରଫଦାର ହେଲୁ ବୋଲି ଜଣାଇଲେ ହିଁ ସମସ୍ତେ ସରସ୍ୱତୀ ପୂଜା ଯଥାବିଧିରେ ନିର୍ବାହ କଲେ । ତହିଁ ଉତ୍ତାରୁ ସେମାନଙ୍କୁ ପୋଲିସ ଥାନାକୁ ନିଆଗଲା । ସେମାନଙ୍କର ନାମ ଓ ଠିକଣା ଲେଖି ନିଆଯାଇ କେତେ ସମୟ ପରେ ଛାଡ଼ି ଦିଆଗଲା । ଏ ବ୍ୟାପାରର ରହସ୍ୟ ଜଣାପଡ଼ୁ ନାହିଁ । ଏହା ସତ ନା ସ୍ୱପ୍ନ ନା ସୁଆଙ୍ଗ ।

× × ×

ବଡ଼ଲାଟ ସଭାର କାର୍ଯ୍ୟାରମ୍ଭ ପୂର୍ବରୁ ୨୦ ତାରିଖ ଦିନ ଲାଟ ରିଡ଼ିଂ ସାହେବ କାଉନ୍‌ସିଲରେ ଏକ ବକ୍ତୃତା ଦେଇଥିଲେ । ବକ୍ତୃତାଟି ଦେଖା ସୁନ୍ଦର କଥାରୁ ବଡ଼ । ଭାଷା, ଗାମ୍ଭୀର୍ଯ୍ୟ ତାନମାନ ସବୁକଥାରେ ଠିକ୍; ମାତ୍ର ନୂଆଭାବ କି ନୂଆ ପ୍ରସ୍ତାବ କିଛି ନାହିଁ । ସେହି ପୁରୁଣା ମାମୁଲି କଥା । ସରକାର ଭାରତବାସୀଙ୍କ ସହଯୋଗିତା ଚାହିଁଲେ ସେମାନେ ସହଯୋଗିତା କଲେ ନାହିଁ । ସହଯୋଗିତା କରିଥିଲେ ଇଂଲଣ୍ଡ ଓ ଭାରତ ମଧ୍ୟରେ ସ୍ନେହ ସଦ୍ଭାବ ବଢ଼ି ଥାନ୍ତା ଏବଂ ଭାରତ କ୍ରମେ ସ୍ୱରାଜ୍ୟ ଆଡ଼କୁ ଚାଲିଥାନ୍ତା । ଏଭଳି କଥା ଶୁଣି ଶୁଣି କାନ ବଧିର ହେଲାଣି । ସହଯୋଗିତା ବୋଇଲେ ଲର୍ଡ଼ ରିଡ଼ିଂ ମନେକରନ୍ତି କି ଆତ୍ମସମର୍ପଣ । ଭାରତବାସୀ ଏ ଦିଗରେ ଅନେକ ଦୂର ଗଲେଣି, ଆଉ ଅଧିକ ଯିବା ଅସମ୍ଭବ ।

ଲର୍ଡ଼ ରିଡ଼ିଂଙ୍କ ବକ୍ତୃତାରୁ ଜଣାଯାଏ ଯେ ଭାରତରେ କୃଷି ଅବସ୍ଥା ତଦନ୍ତ କରିବା ଲାଗି ଗୋଟିଏ କମିଶନ୍ ବସିବ । ପ୍ରଜାର ଅବସ୍ଥା, ରାଜସ୍ୱ ପରିମାଣ, ଜମିରେ ପ୍ରଜାର ସ୍ୱତ୍ୱ

ଇତ୍ୟାଦି ବିଷୟ ଏ କମିଶନ ତଦନ୍ତ କରିବ ନାହିଁ । ତଦନ୍ତ କରିବ କେବଳ କୃଷିର ଅବସ୍ଥା ଏବଂ କି ପ୍ରକାରରେ ତାହାର ଉନ୍ନତି କରା ଯାଇପାରେ । ତେବେ ଗୋଟାଏ କମିଶନ ବସିବା ଦରକାର କ'ଣ ? କୃଷିବିଦ୍ୟା ବିଶାରଦ କେତେଜଣଙ୍କ ଉପରେ ଏ ଭାର ଦିଆଗଲେ ତ ହୁଅନ୍ତା । ସେ ଯାହାହେଉ ଫଳ ଆଗେ ଆଗେ ଦେଖାପଡ଼ୁଛି । କେତେଗୁଡ଼ିଏ ନୂଆ ଗୃହକକ୍ଷ ଖୋଲିବ । ବିଲାତରୁ କେତେଗୁଡ଼ିଏ ବଡ଼ ବଡ଼ ଲୋକଙ୍କୁ କାମ ମିଳିବ ।

ସେମାନଙ୍କ ଅଧୀନରେ ଏ ଦେଶର କେତେଜଣ ରହିବେ । ହୁଏତ ବିଦେଶରୁ କଳକବ୍ଜାଦି ଓ ନାନାରକମ ଖତ ଆମଦାନୀ ହେବ । ଶିଳ୍ପ ବାଣିଜ୍ୟଆଡ଼ୁ ଏ ଦେଶ ଲୋକଙ୍କ ମତିଗତି ଫେରାଇ କୃଷିରେ ଲଗାଇବା ଉଦ୍ୟମ ହେଉଥିବା ବିଚିତ୍ର ନୁହେଁ । ଥରକୁଥର ନାନା ବିଷୟରେ କମିଶନ ବସି ଭାରତୀୟମାନେ କମିଶନ ଗସ୍ତ୍ୟା ହୋଇ ଗଲେଣି ! ଯାହାହେବ ଫଳେନ ପରିଚୀୟତେ ।

× × ×

ଗ୍ରାହାମ ପୋଲ ସାହେବ ବନାକେଟେ ହେଲ ଏ ଦେଶରେ ବୁଲୁଛନ୍ତି । ସେ ଶ୍ରମଜୀବୀ ଦଳର ଜଣେ ମୁଖିଆ ଲୋକ । ସେ କହନ୍ତି, ଭାରତର ଭିନ୍ନ ଭିନ୍ନ ଦଳର ଲୋକ ଏକମତ ହୋଇ ଭାରତ ଶାସନ ସଂକ୍ରାନ୍ତ ଦାବୀ ବିଲାତକୁ ପଠାଇଲେ ଶ୍ରମଜୀବୀଦଳ ତହିଁ ଉପରେ ଆନ୍ଦୋଳନ ଆରମ୍ଭ କରନ୍ତେ । ସମଗ୍ର ଭାରତ ଜାତି ଏକ ମୁଖରେ ଏକ ସ୍ୱରରେ କୌଣସି ଦାବୀକୁ ଧରି ବସିଲେ ପାର୍ଲିଆମେଣ୍ଟ ତାହା ଉପେକ୍ଷା କରିବା ସହଜ ନୁହେଁ । ସତକଥା, ମାତ୍ର ତାହା କପାଳରେ ହେବ କି ? ଆମର ଯେ ଆସି ପୋଟିଚି "ବିନାଶକାଳେ ବିପରୀତ ବୁଦ୍ଧି ।"

× × ×

ଦକ୍ଷିଣ-ଆଫ୍ରିକା ସରକାର ସେଠା ଭାରତୀୟମାନଙ୍କ ବିରୁଦ୍ଧରେ କରୁଥିବା ଆଇନର ପ୍ରତିବାଦ କରିବାପାଇଁ ଏ ସପ୍ତାହରେ ବମ୍ବେଇ ସହରରେ ଏକ ବିରାଟ ସଭା ହୋଇଥିଲା । ଭିନ୍ନ ଭିନ୍ନ ଦଳ ଓ ମତର ମୁଖିଆ ମୁଖିଆ ଲୋକେ ଏଥିରେ ଯୋଗ ଦେଇ ଥିଲେ । ଦକ୍ଷିଣ-ଆଫ୍ରିକା ବିଷୟରେ ଭାରତୀୟମାନଙ୍କ ମଧ୍ୟରେ ହିନ୍ଦୁ ମୁସଲମାନ ଭେଦ ନାହିଁ କି ସ୍ୱରାଜ ସ୍ୱତନ୍ତ୍ରବାଦୀଙ୍କର ପାର୍ଥକ୍ୟ ନାହିଁ ।

('ସମାଜ' ତା ୩୦ । ୧ । ୨୭)

———

# ସ୍ୱରାଜ୍ୟଦଳ ବିରୋଧରେ ମେଣ୍ଟ

ନୂଆ ବଡଲାଟ ଲର୍ଡ଼ ଏରଉଇନ ସାହେବ ଭାରତରେ ପାଦ ଦେଉ ଦେଉ ଭାରତର କୃଷି ସମସ୍ୟା ତଦନ୍ତ କରିବାଲାଗି ଏକ କମିଶନ ବସିଗଲାଣି । ଏ କମିଶନର ଉତ୍କଳ ଖଣ୍ଡରୁ ପାରଳା ରାଜା ସାହେବ ଅଛନ୍ତି । ଏଥିର ମେମ୍ବର କେହି ଲାଟ, କେହି କଲେଜ ଅଧ୍ୟାପକ, କେହି ଜମିଦାର ଆଉ କେହି ସରକାରୀ ବଡ଼ କର୍ମଚାରୀ ସିଭିଲିଆନ । ଜୀବନରେ କେହିହେଲେ ଥରେ କୃଷି କରିନାହାନ୍ତି କି ଚଷାଙ୍କ ସଙ୍ଗରେ ମିଶି ନାହାନ୍ତି, ବିଶେଷତଃ ଏ ଦେଶର ଚଷା ଯେ କି ଦୁଃଖରେ କାଳ କାଟେ, କେତେ ଅସୁବିଧାରେ ଜମି ଉଠିଆ କରେ ଏହା ସେମାନେ କେବେହେଲେ ଅନୁଭବ କରି ଆସି ନାହାନ୍ତି । ଏହିମାନେ ହେବେ କୃଷିକର୍ମରେ ଆଗୁଆଁ ଓ ବ୍ୟବସ୍ଥାପକ । ଅନର୍ଥକରୁଡ଼ାଏ କାଳି କାଗଜ ଖର୍ଚ୍ଚ । ଫଳ ଅଗ୍ରେ ଧାବତି ଧାବତି । ଏ କମିଶନ ସପର୍ଜୀସ୍ୱ ଖର୍ଚ୍ଚ ତ ପୁଣି ସେହି ଗରିବ ଚଷାଙ୍କ ମୁଣ୍ଡରେ ବସିବ । ସେମାନେ ଯେତେବେଳେ କୃଷିର ଉନ୍ନତି ଲାଗି ବସିବେ ସେ ବୋଝ ମୁଣ୍ଡାଇବ ନାହିଁ ତ ଆଉ କିଏ ମୁଣ୍ଡାଇବ । କଥାରେ ଅଛି:—

"ଘିଅ ହାଣ୍ଡିରେ ଘିଅ ପଶୁ
ଡାଙ୍ଗରା ମୁଣ୍ଡରେ ବୋଝ ବସୁ"

ଯେପରି ଦେଖାଯାଉଛି, ସ୍ୱରାଜ୍ୟ ଦଳ ବିରୁଦ୍ଧରେ ଭାରତରେ ଆଉସବୁ ରାଜନୈତିକ ଦଳ ଏକ ମେଳ ବାନ୍ଧିଛନ୍ତି । ଏ ମାସ ପ୍ରଥମ ସପ୍ତାହରେ ଏ ସମ୍ମିଳିତ ଦଳର ବୈଠକ ବମ୍ବେଇଠାରେ ହୋଇଥିଲା । ପଣ୍ଡିତ ମଦନମୋହନ ମାଲବ୍ୟ, ଡକ୍ଟର ଆନିବେଶାନ୍ତ, ସାପ୍ରୁ, ଚିନ୍ତାମଣି, ଜୟକାର, ଜିନା, ବିପିନଚନ୍ଦ୍ର ପାଲ, ବ୍ୟୋମକେଶ ଚକ୍ରବର୍ତ୍ତୀ ଅଷ୍ଟ ମହାରଥୀ ପ୍ରମୁଖ ନାନା ମତର ଅନେକଗୁଡ଼ିଏ ନେତା ଜୁଟିଥିଲେ । ବମ୍ବେଇ ଲୋକ ଏମାନଙ୍କ କଥାକୁ ସାଦରେ ଗ୍ରହଣ କଲେନାହିଁ । ଏମାନଙ୍କ ମଧ୍ୟରେ ବି ମୁନି ଗୋଟିକେ ମତ ଗୋଟିଏ ହେଲା । କିଛି ଗୋଟାଏ ସୁବିଧାଜନକ ରାସ୍ତା ହୋଇନାହିଁ । ଏଭଳି ମିଳନର ଏହାହିଁ ଫଳ ହୁଅନ୍ତା । ଏ ଦଳ ଗଠିତ ହେଲେ ସୁଦ୍ଧା ଏହାର ପରମାୟୁ ବେଶିଦିନ ନୁହେଁ । ତେବେ ପଣ୍ଡିତ ମଦନମୋହନ ମାଲବ୍ୟ, ଜୟକାର ପ୍ରଭୃତି ଯେପରି କହୁଛନ୍ତି ସେଥିରୁ ଆଶା ହୁଏ ଯେ ସ୍ୱରାଜ୍ୟ ଦଳ ସଙ୍ଗେ ଏମାନଙ୍କର ମିଳାମିଶ ହୋଇପାରେ । ପ୍ରଭୁ ଜାଣନ୍ତି ।

('ସମାଜ' ତା ୧୦ । ୪ । ୨୬)

— — —

# ଅନୁପସ୍ଥିତ ଜମିଦାର

ଜମିଦାରମାନେ ଆପଣା ଇଲାକାରେ ନ ରହି ଦୂର ସହରରେ କିମ୍ବା ଅନ୍ୟତ୍ର ରହୁଥିବା ଯୋଗୁଁ ବଙ୍ଗଳାର ମଫସଲରେ କୃଷିର ଉନ୍ନତି ହେଉନାହିଁ । ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ କୃଷି କମିଶନ ନିକଟରେ ଏହିପରି ମତ ବ୍ୟକ୍ତ କରିଥିଲେ । ଆଚାର୍ଯ୍ୟଙ୍କ କଥାରେ ଅନେକ ପରିମାଣରେ ସତ୍ୟ ଅଛି ବୋଲି ଆମ୍ଭେମାନେ ଏଥିପୂର୍ବେ ଲେଖିଥିଲୁଁ । ଗଞ୍ଜାମ ଓ ଓଡ଼ିଶାର କୌଣସି କୌଣସି ପ୍ରଜା ଏଥିରେ ପ୍ରତିବାଦ କରି ଲେଖିଛନ୍ତି । ସେମାନେ କହନ୍ତି ଯେ କୌଣସି କୌଣସି ରାଜା ବା ଜମିଦାର ଆପଣା ଜମିଦାରୀରେ ରହିଲେ ପ୍ରଜାମାନଙ୍କ ସୁଖ ଦୁଃଖରେ ସହାନୁଭୂତି କରିପାରନ୍ତି । ତାଙ୍କ ଦୃଷ୍ଟି ରହିଲେ କର୍ମଚାରୀମାନେ ପ୍ରଜାଙ୍କ ଉପରେ ତେତେ ଜୁଲମ କରିବାକୁ ସାହସ କରିବେ ନାହିଁ ସତ; ମାତ୍ର ଯେପରି ଦେଖାଯାଏ ଅନେକ ସ୍ଥଳେ ଜମିଦାର ଆପଣା ଇଲାକାରେ ପ୍ରଜାଙ୍କ ମଧ୍ୟରେ ରହିଲେ ଗରିବ ପ୍ରଜାଙ୍କର ବିପଦ । ଏପରିକି କେତେ ସ୍ଥାନରେ ପ୍ରଜାଙ୍କ ବୋହୂ ଝିଅ ନିରାପଦରେ ରହିବା କଷ୍ଟସାଧ୍ୟ । ବଡ଼ ବଡ଼ ଜମିଦାରଙ୍କର ଏ ଉତ୍ପାତ ଅଧିକ । ଇଲାକା ବା ରାଜ୍ୟରେ ସବୁବେଳେ ରହିଲେ ଜମିଦାର ବା ରାଜାମାନେ କାନକୁହା ଲୋକଙ୍କ କଥାରେ ଚାଳିତ ହୋଇଥାନ୍ତି, ପ୍ରଜାର ଅର୍ଥ ଶୋଷିବାକୁ ବାର ଫିସାଦ ବାହାର କରନ୍ତି । କାହା ଉପରେ ତୋଷ କାହା ଉପରେ ରୋଷ କରି ପ୍ରଜାଙ୍କ ମଧ୍ୟରେ ଅଶାନ୍ତି ଘଟାଇଥାନ୍ତି । ଦେଖାଯାଏ, ଯେଉଁଠାରେ ଜମିଦାର ନାହାନ୍ତି ଏବଂ ରାଜ୍ୟ ବା ଜମିଦାରୀ କୋର୍ଟ ଅଫ୍ ୱାର୍ଡ୍‌ସ ଅଧୀନରେ ଥାଏ ସେଠାରେ ପ୍ରଜାଙ୍କ ଉପରେ ଉତ୍ପାତ କମ । ଜମିଦାର ନ ଥିବା ରାଜ୍ୟରେ କର୍ମଚାରୀମାନେ ତେତେ ଅତ୍ୟାଚାର କରିବାକୁ ସାହସୀ ହୁଅନ୍ତି ନାହିଁ । ପ୍ରଜାମାନେ ମଧ୍ୟ କର୍ମଚାରୀଙ୍କୁ ତେତେ ଡରନ୍ତି ନାହିଁ । ଓଡ଼ିଶାର କେତେ ଜମିଦାରୀର ଅବସ୍ଥା ଦେଖିଲେ ଏ ପ୍ରତିବାଦ ଅସଙ୍ଗତ ବୋଲି କୁହାଯାଇ ନ ପାରେ । ପ୍ରଜାଙ୍କ ପ୍ରତି କିଛି କର୍ତ୍ତବ୍ୟ ଅଛି ବୋଲି ଓଡ଼ିଶାର ଅନେକ ଜମିଦାର ମନେ କରନ୍ତି ନାହିଁ । କୌଣସିଠାରେ ସ୍କୁଲ ବା ଡାକ୍ତରଖାନା ବସାଇବା, କୃଷିର ଉନ୍ନତିଲାଗି ବନ୍ଧ ପୋଖରୀ ନାଳ ଆଦି କରାଇବା କିମ୍ବା ପ୍ରଜାଙ୍କ ମଧ୍ୟରେ କୌଣସି ପ୍ରକାର ନୂତନ କୃଷି ବା ଶିଳ୍ପ ପ୍ରବର୍ତ୍ତାଇବା ଲାଗି କୌଣସି ଜମିଦାରର ଉତ୍ସାହ ଉଦ୍ୟମ ପ୍ରାୟ ଦେଖାଯାଏନାହିଁ । ଓଡ଼ିଶାରେ ଅସ୍ଥାୟୀ ବନ୍ଦୋବସ୍ତ ଏଥିର ଏକ ପ୍ରଧାନ କାରଣ । ଯଥାର୍ଥରେ ଓଡ଼ିଶାର

ଜମିଦାରମାନେ ସରକାରର ଜଣେ ଜଣେ ଗୁମାସ୍ତା ମାତ୍ର । ସେମାନେ ପ୍ରଜାଙ୍କଠାରୁ ଖଜଣା ଆଦାୟ କରି ସରକାରକୁ ରାଜସ୍ୱ ଦିଅନ୍ତି ଏବଂ ଏହି ଅସୁଲ କାମଲାଗି କମିଶନ ସ୍ୱରୂପ ମାଲିକାନା ପାଆନ୍ତି । ତେଣୁ ପ୍ରଜାର ଉନ୍ନତି ଅବନତିରେ ଆପଣାର କିଛି ସ୍ୱାର୍ଥ ଅଛି ବୋଲି ସେମାନେ ମନେ କରନ୍ତି ନାହିଁ; ବରଂ ପ୍ରଜା ଭାଙ୍ଗିଯାଇ ଗାଁ ଗୁଡ଼ି ପଳାଇଲେ ଜମିକି ଖାସ ଦଖଲରେ ନେଲେ ଆପଣାର ଲାଭ ବୋଲି ଭାବନ୍ତି । ଏହାବୋଲି ଚିରସ୍ଥାୟୀ ବନ୍ଦୋବସ୍ତ ମାହାଲର ଜମିଦାରମାନେ ଯେ ପ୍ରଜାର ଉନ୍ନତିଅର୍ଥେ ବିଶେଷ କିଛି ମନ-ଧ୍ୟାନ ଦିଅନ୍ତି ତାହାନୁହେଁ । ସେମାନେ ରାଜା । "ରାଜା ହରନ୍ତି ସର୍ବସ୍ୱ ତନ୍ତ୍ର ନା ପର-ବେଦନା ।" ଏହି ନୀତି ଅନୁସାରେ କାର୍ଯ୍ୟ କରିବା ତାଙ୍କର ହକ୍ କର୍ତ୍ତବ୍ୟ ବୋଲି ଯେପରି ସେମାନେ ଭାବନ୍ତି । ମୋଟକଥା ରାଜା ବା ଜମିଦାରମାନେ ପ୍ରଜାର ଅଧିକ କିଛି ଉପକାର କରନ୍ତୁ ବା ନ କରନ୍ତୁ ।

ଖଜଣା ବା କରର ଅନ୍ୟ ନ୍ୟାଯ୍ୟ ପାଉଣାଗଣ୍ଡାକ ନେଇ କର୍ଷି ନ୍ତ ରହିଲେଂପ୍ରଜା ବିଗ୍ରି ଶାନ୍ତିରେ ରହନ୍ତା । କିନ୍ତୁ ଅନେକ ସ୍ଥଳେ ସେମାନେ ପ୍ରଜା ପକ୍ଷରେ ଇତିଭିସ୍ୱ । "ଅତିବୃଷ୍ଟି ରନାବୃଷ୍ଟି ମୂଷିକା ଶଲଭା ଶୁକାଃ ଅତ୍ୟାସନ୍ନାଶ୍ଚ ରାଜାନାଃ ଷଡେ଼ତେ ଇତୟଃ ସ୍ମୃତାଃ ।" ଦେଶରେ ଅତିବୃଷ୍ଟି ଅନାବୃଷ୍ଟି ବିତ୍ରପାତ୍ରସାଙ୍ଗକୁ ରାଜା ଜମିଦାରଙ୍କ ଉତ୍ପାତ ପ୍ରଜାର ଏକ ଗୁରୁତର ବିପଦ । ଅବଶ୍ୟ ସବୁ ଜମିଦାରଙ୍କ ବ୍ୟବହାର ଭାବଗତି ଏପରି ନୁହେଁ; କେହି କେହି ପ୍ରଜାର ଭଲମନ୍ଦ ଦେଖନ୍ତି ଏବଂ ସମୟୋଚିତ ସାହାଯ୍ୟ ସହାନୁଭୂତି କରିଥାନ୍ତି; ମାତ୍ର ଏମାନଙ୍କ ସଂଖ୍ୟା ଏତେ କମ୍ ଯେ ସାଧାରଣତଃ ଆଖିରେ ଦେଖାଯିବା ଭଳି ନୁହେଁ । ଫଳରେ ପ୍ରଜା ସାଧାରଣଙ୍କର ରାଜା ଜମିଦାରଙ୍କଠାରେ ଆସ୍ଥା, ଭକ୍ତି, ଆଦର ଓ ବିଶ୍ୱାସ ନାହିଁ । ସେମାନଙ୍କ ମଧ୍ୟରେ ବାଜପାରି ସମ୍ପର୍କ ହୋଇଛି । ସୁତରାଂ ରଏତସଭା, ପ୍ରଜା ସମିତି ଆଦି ଦଳଗତ ଉଦ୍ୟମ କରି ପ୍ରଜାମାନେ ଆପଣାର ସ୍ୱତ୍ୱରକ୍ଷା ଓ ଶକ୍ତି ସଞ୍ଚୟର ଚେଷ୍ଟା କଲେ ଜମିଦାରମାନଙ୍କର ସେଥିରେ କ୍ରୁଦ୍ଧ ବା କାତର ହେବାର କାରଣ ନାହିଁ ।

('ସମାଜ' ତା ୨୨ । ୧ । ୨୭)

———

# ବଡ଼ଲାଟ ସଭାରେ ଓଡ଼ିଆ ମେମ୍ବର

କଂଗ୍ରେସ ପକ୍ଷରୁ ଏଥର ବଡ଼ଲାଟ ସଭାକୁ ଓଡ଼ିଶାରୁ ଦୁଇଜଣ ମେମ୍ବର ଯାଇଛନ୍ତି । ବାବୁ ଭୁବନାନନ୍ଦ ଦାସ—ପଣ୍ଡିତ ନୀଳକଣ୍ଠ ଦାସ । ବଡ଼ଲାଟ ସଭା ମେମ୍ବରମାନଙ୍କ ମଧ୍ୟରେ ଏଥି ମଧ୍ୟରେ ଅନେକଗୁଡ଼ିଏ ଦଳ ହେଲଣି । ପଣ୍ଡିତ ନୀଳକଣ୍ଠ କଂଗ୍ରେସ ଦଳରେ ଅଛନ୍ତି । ବାବୁ ଭୁବନାନନ୍ଦ ପଣ୍ଡିତ ମଦନମୋହନ ମାଳବ୍ୟ ଓ ଲାଲା ଲଜପତ-ରାଇଙ୍କ ଜାତୀୟ ଦଳରେ ଯୋଗ ଦେଇଛନ୍ତି । ଗଲାଥର ପରି ଏଥର ମଧ୍ୟ ନୀଳକଣ୍ଠ ବାବୁ କଂଗ୍ରେସ ଦଳର ଜଣେ ସେକ୍ରେଟେରୀ ରୂପେ ମନୋନୀତ ହୋଇଛନ୍ତି । ଦୁହେଁଯାକ ଦୁଇଟି ପ୍ରସ୍ତାବ ଆଣିବେବୋଲି ଲାଟ ସାହେବଙ୍କ ସେକ୍ରେଟେରୀଙ୍କୁ ନୋଟିସ ଦେଇଛନ୍ତି । ବଙ୍ଗଳାର ରାଜନୈତିକବନ୍ଦୀ ଶ୍ରୀଯୁକ୍ତ ସତ୍ୟେନ୍ଦ୍ର ଚନ୍ଦ୍ର ମିତ୍ର ବଡ଼ଲାଟ ସଭାକୁ ସଭ୍ୟ ନିର୍ବାଚିତ ହୋଇଥିବାରୁ ସେ ବ୍ରହ୍ମଦେଶୀ ଜେଲଖାନାରୁ ଆସି ଲାଟ ସଭାରେ ଯୋଗ-ଦେବାର ବ୍ୟବସ୍ଥା ହେବା ନୀଳକଣ୍ଠ ବାବୁଙ୍କର ପ୍ରସ୍ତାବ । ୧୯୨୫ ସାଲରେ ବଡ଼ଲାଟ ସଭାରେ ସବୁ ଦଳର ମେମ୍ବରମାନେ ମିଳି ଭାରତ ନିମନ୍ତେ ସ୍ୱରାଜ୍ୟ ପ୍ରାପ୍ତି ଲାଗି ଯେ ଜାତୀୟ ଦାବୀ ପ୍ରସ୍ତାବ ବଡ଼ଲାଟ ସଭାର ଅଧିକାଂଶ ମେମ୍ବରଙ୍କ ମତରେ ମଞ୍ଜୁର କରାଇଥିଲେ ସେହି ଜାତୀୟ ଦାବୀକୁ ପୁନର୍ବାର ଦୃଢ଼ୀଭୂତ କରିବାକୁ ଭୁବନାନନ୍ଦ ବାବୁ ଏଥର ପ୍ରସ୍ତାବ ଆଣୁଛନ୍ତି । ଏଥି ମଧ୍ୟରେ କଂଗ୍ରେସ ଦଳର ନେତା ପଣ୍ଡିତ ମୋତିଲାଲ ନେହେରୁ ଶ୍ରୀଯୁକ୍ତ ସତ୍ୟେନ୍ଦ୍ର ଚନ୍ଦ୍ର ମିତ୍ରଙ୍କ ସମ୍ବନ୍ଧେ ବିଚାର କରାଯିବା ଲାଗି କାଉନ୍‌ସିଲର ଅନ୍ୟାନ୍ୟ କାର୍ଯ୍ୟ ବନ୍ଦ ରହିବା କାରଣ ସରକାର ପ୍ରତି ଏକ ନିନ୍ଦାଗର୍ଭକ ପ୍ରସ୍ତାବ ଆଣିଥିଲେ । ତାହା ଅଧିକାଂଶଙ୍କ ମତରେ ଲାଟ ସଭାରେ ଧାର୍ଯ୍ୟ ହୋଇଛି । ସୁତରାଂ ଯେପରି ଦେଖାଯାଉଛି ନୀଳକଣ୍ଠ ବାବୁଙ୍କ ପ୍ରସ୍ତାବ ବିଚାରକୁ ଆସିବ ନାହିଁ ।

('ସମାଜ' ତା ୨୯ । ୧। ୨୭)

---

# ମାନ୍ୟବର ପଟେଲ

ବଡ଼ଲାଟ ସଭାରେ ଶ୍ରୀଯୁକ୍ତ ଭି. ଯେ. ପଟେଲ ସଭାପତି ନିର୍ବାଚିତ ହୋଇଛନ୍ତି । ତାଙ୍କର ଅନ୍ୟକେହି ପ୍ରତିଦ୍ୱନ୍ଦ୍ୱୀ ନ ଥିଲେ । ଗଲଥର ଲାଟସଭାରେ ସେ ସଭାପତିର କାର୍ଯ୍ୟ ଭଲରୂପେ କରିଥିଲେ ବୋଲି ଏଥର ସବୁ ଦଳର ମେମ୍ବରମାନେ ତାଙ୍କୁ ସମ୍ମାନ ଦେଖାଇ ନିର୍ବିବାଦରେ ସଭାପତି ବାଛିଛନ୍ତି । ଏହା ବିଲାତ ପାର୍ଲିଆମେଣ୍ଟର ରୀତି । ସରକାର କଥା କଥାକେ କହୁଛନ୍ତି, ଗ୍ରେଟବ୍ରିଟେନ ଓ ବଡ଼ଲାଟ ସଭାଦ୍ୱାରା ବିଲାତ ପାର୍ଲିଆମେଣ୍ଟର ବିଧି ବିଧାନ ଏ ଦେଶର ଶାସନରେ ପ୍ରବର୍ତ୍ତାଇବାର ଚେଷ୍ଟା ହେଉଛି । ମାତ୍ର ଯେପରି ଦେଖାଯାଉଛି, ଦରକାର ବେଳେ ସରକାର ଏ ଚେଷ୍ଟାର ଅନ୍ୟଥା କରିବାକୁ ଲେଶ୍ କୁଣ୍ଠିତ ନୁହେଁ । ବିଲାତ ପାର୍ଲିଆମେଣ୍ଟକୁ କେହି ମେମ୍ବର ନିର୍ବାଚିତ ହେଲେ ସେ ଯଦି ସେ ସମୟରେ ଜେଲରେ ଥାନ୍ତି, ତାହାହେଲେ ତାଙ୍କର ପାର୍ଲିଆମେଣ୍ଟ କାର୍ଯ୍ୟରେ ଯୋଗ ଦେବାର ବ୍ୟବସ୍ଥା ହୋଇଥାଏ । କାହିଁ, ସତ୍ୟେନ୍ଦ୍ର ଚନ୍ଦ୍ର ମିତ୍ରଙ୍କ ବେଳକୁ ତ ଏ ପାର୍ଲିଆମେଣ୍ଟ ବିଧି ଖଟୁ ନାହିଁ । ଯେଉଁ ମେମ୍ବର ସଂଖ୍ୟା ବେଶି ପାର୍ଲିଆମେଣ୍ଟର ମନ୍ତ୍ରୀ ବାଛିବାଲାଗି ସେହି ଦଳକୁ ପରାମର୍ଶ କରାଯାଇଥାଏ । କାହିଁ, ବିହାର ଓଡ଼ିଶା ଗଭର୍ଣ୍ଣମେଣ୍ଟ ତ ସେ ଦଳକୁ ପଚାରିଲା ନାହିଁ । ଯଥାର୍ଥରେ ଭାରତବାସୀଙ୍କୁ ପାର୍ଲିଆମେଣ୍ଟ ଦିଆଯାଉଛି ବୋଲି କହିବା ଭଣ୍ଡାଇବା ମାତ୍ର । ସେଥିରେ ବିଶ୍ୱାସ କରିବା ନିର୍ବୋଧତା । ଭାରତ ଶାସନ ବିଧାନର କାହାର ସଙ୍ଗେ ପଟାନ୍ତର ନାହିଁ । କାରଣ ପୃଥିବୀର କୌଣସି ଦେଶ ଭାରତ ଅବସ୍ଥାରେ ନାହିଁ ।

('ସମାଜ' ତା ୨୯ । ୧ । ୨୭)

---

# ବିହାର ଓଡ଼ିଶା ପ୍ରସଙ୍ଗ

ବିହାର ଓଡ଼ିଶା କାଉନ୍‌ସିଲ୍‌ରେ ମନ୍ତ୍ରୀମାନଙ୍କ ବେତନ କାଟିବା ପ୍ରସ୍ତାବ କଂଗ୍ରେସ ଦଳୀୟ ମେମ୍ବରମାନେ ଆଣିଥିଲେ । ମାତ୍ର ୭ଟା ଭୋଟଲାଗି ସେମାନେ ହାରିଗଲେ । ମନ୍ତ୍ରୀମାନେ ଲୋକଙ୍କ ଭୋଟରେ ମେମ୍ବରହୋଇ କାଉନ୍‌ସିଲରେ ପଶିଥିଲେ ସୁଦ୍ଧା ପ୍ରତି-କଥାରେ ସରକାର ପଟରେ ଆଉଜୁଛନ୍ତି । ଅନ୍ୟାନ୍ୟ ପ୍ରଦେଶର ମନ୍ତ୍ରୀମାନେ ଟିକିଏ ନିଜର କରାମତି କେତେକ ବିଷୟରେ ଦେଖାଉଛନ୍ତି । ମାତ୍ର ବିହାର ଓଡ଼ିଶା ମନ୍ତ୍ରୀ ଦୁଇଜଣଯାକ ସରକାରର ଗୋଟାକଯାକ । କାଉନ୍‌ସିଲର ଜଣେ ମେମ୍ବର କୌଣସି ମନ୍ତ୍ରୀଙ୍କି କହିଥିଲେ ଯେ ସେ ତାଙ୍କ ସେକ୍ରେଟେରୀ କଥା ଅନୁସାରେ ଚଳନ୍ତି । ଯଥାର୍ଥରେ ଏ ମନ୍ତ୍ରୀମାନଙ୍କର ନିଜର କୌଣସି କର୍ତ୍ତବ୍ୟ ନାହିଁ । ଏତେବେଳେ ବିହାର ଲୋକେ ମଧୁବାବୁଙ୍କୁ ଝୁରୁଛନ୍ତି "ହଜିଲା ଗାଈର ପହ୍ନା ବଡ଼ ।"

× × ×

ମନ୍ତ୍ରୀଙ୍କ ବେତନ କଟା ପ୍ରସ୍ତାବରେ ଓଡ଼ିଶାର କୌଣସି କୌଣସି ମେମ୍ବର ଓଡ଼ିଶାକୁ ମନ୍ତ୍ରୀପଦ ନ ଦିଆଯିବା ବିଷୟରେ ଆପତ୍ତି ଉଠାଇଥିଲେ । ସରକାର ପକ୍ଷରୁ ହାମଣ୍ଡ ସାହେବ ଏଥିର ଉତ୍ତରରେ କହିଥିଲେ ଯେ ସ୍ଥାନ ଓ ଜାତି ବିବେଚନାରେ ମନ୍ତ୍ରୀ ନିଯୁକ୍ତ କରାଗଲେ ଜାତୀୟତାର ବିକାଶପକ୍ଷେ ବାଧାହେବ । ଆମ୍ଭେମାନେ ସ୍ୱୀକାର କରୁଛୁ ଏ ଯୁକ୍ତି ସଙ୍ଗତ । ମାତ୍ର ଭାରତରେ ଜାତୀୟତା ବିକାଶ ଲାଗି ହାମଣ୍ଡ ସାହେବ ବା ତାଙ୍କ ସରକାର କେବେ ଏତେଦୂର ବ୍ୟାକୁଳ ଓ ମନଯୋଗୀ ହେଲେ ? ଆମ୍ଭେମାନେ ମୂଳରୁ ମନ୍ତ୍ରୀପଦର ପକ୍ଷପାତୀ ନୋହୁଁ । ମାତ୍ର ଯେଉଁମାନେ ସେ ପଦର ଆବଶ୍ୟକତା ଓ ଗୌରବ ବୁଝନ୍ତି ସେମାନଙ୍କର ଓଡ଼ିଶା ନିମନ୍ତେ ଦାବି କରିବାରେ କିଛି ଅସଙ୍ଗତ ନାହିଁ । ସେମାନେ ତ ମନ୍ତ୍ରୀପଦ ଉଠାଇବା ପକ୍ଷ ନୁହନ୍ତି, ବରଂ ଦୁଇଟା ଯାଗାରେ ତିନିଟା କରିବାକୁ ଚାହାନ୍ତି; ଏଥିରେ ତ ହାମଣ୍ଡ ସାହେବଙ୍କର ଖୁସି ହେବାର କଥା । ତେବେ ଆଉ ଜାତୀୟତା ବିଷୟରେ ବକ୍ତୃତା ଆରମ୍ଭ ହେଲା କାହିଁକି ?

× × ×

ପଣ୍ଡିତ ନୀଳକଣ୍ଠ ଦାସ ବଡ଼ଲାଟ ସଭାରେ ରେଲବାଇ ବଜେଟରୁ କେତେଟଙ୍କା କାଟିବାର ପ୍ରସ୍ତାବ ଆଣିଥିଲେ । ଏ ପ୍ରସ୍ତାବର ଉଦ୍ଦେଶ୍ୟ କେବଳ ସରକାରର ସମାଲୋଚନା କରିବା । "ବିନାଶ୍ରୟଂ ନ ବର୍ତ୍ତିନ୍ତେ କବିତା ବନିତା ଲତା ।" ଲାଟସଭାମାନଙ୍କରେ ଏହିପରି ଗୋଟାଏ କିଛି ଅବଲମ୍ବନ କରି ସରକାରଙ୍କୁ ଦୁଇ ଚାରି କଥା ଶୁଣାଇ ମେମ୍ବରମାନେ ମନ ଓରମାନ ମେଣ୍ଟାଇଥାନ୍ତି । ରେଲବାଇ ବିଭାଗରେ ଅଧିକ ସଂଖ୍ୟକ ଭାରତବାସୀଙ୍କି ବଡ ବଡ଼ ଚାକରି ଦିଆଯିବା ଲାଗି କ୍ରମାଗତ ଅନେକ ସ୍ଥାନରୁ ଆପତ୍ତି ହୋଇ ଆସୁଛି । ନୀଳକଣ୍ଠ ବାବୁ କହିଥିଲେ ଏ ଆପତ୍ତି ସରକାର ଏ ପର୍ଯ୍ୟନ୍ତ ଶୁଣିଲେ ନାହିଁ । ଭାରତବାସୀଙ୍କି ବଡ଼ ପଦରେ ବେଶି ବେତନରେ ରଖା ନ ଗଲାତ ନାହିଁ । ମାତ୍ର ଯେଉଁ ଇଂରେଜମାନେ ସେ ସବୁ ପଦରେ ଅଛନ୍ତି, ସେମାନେ ବେଶୀବେତନ ନେବେ କାହିଁକି ? ସେମାନେ ଭାରତୀୟ ଢ଼ଙ୍ଗରେ ରହନ୍ତୁ । ତାହାହେଲେ ଏତେ ଏତେ ଦରମା ଦେବା ସେମାନଙ୍କୁ ଦରକାର ହେବ ନାହିଁ । ଦକ୍ଷିଣ ଆଫ୍ରିକାରେ ମୀମାଂସା ହେଲା ଯେ ସେଠା ଭାରତୀୟ-ମାନେ ଇଉରୋପୀୟ ଢଙ୍ଗରେ ରହିବେ, ନ ହେଲେ ସେଠା ଛାଡ଼ି ଚାଲି ଆସିବେ । ଦକ୍ଷିଣ ଆଫ୍ରିକା ସରକାର ଯେବେ ସେଠାରେ ଇଉରୋପୀୟ ଢଙ୍ଗ ଭାରତବାସୀଙ୍କଠାରୁ ଦାବୀକରେ ଭାରତ ସରକାର ଏ ଦେଶରେ ବିଦେଶୀମାନଙ୍କଠାରୁ ଭାରତୀୟ ଢ଼ଙ୍ଗ ଦାବି ନ କରିବ କାହିଁକି ? ଯେଉଁମାନେ ଭାରତୀୟ ଢ଼ଙ୍ଗରେ ନ ରହି ପାରିବେ ସେମାନେ ଏ ଦେଶରୁ ଚାଲିଯିବେ । ସରକାରପକ୍ଷୀୟ ମେମ୍ବର ନୀଳକଣ୍ଠ ବାବୁଙ୍କ ଯୁକ୍ତି ଶୁଣି ମନେ ମନେ ବିଚାରୁଥିବେ ଏକଥା ସତ ଯେ ମାତ୍ର ମନକୁ ଆସୁନାହିଁ । କାରଣ ଏ ଯୁକ୍ତି ଅନୁସାରେ କାମ କରିବାକୁ ହେଲେ ଖୋଦ ଭାରତ ସରକାରଙ୍କୁ ଯେ ଏ ଦେଶ ଛାଡ଼ି ଯିବାକୁ ପଡ଼ିବ ।

('ସମାଜ' ତା ୧୨ । ୩ । ୨୭)

---

# ମହାତ୍ମାଗାନ୍ଧୀ

ଏ ମାସ ମଧ୍ୟରେ ମହାତ୍ମାଗାନ୍ଧୀଙ୍କ ବିହାର ଗସ୍ତ ସରୁଛି । ଏହାପରେ ସେ ମଧ୍ୟପ୍ରଦେଶ ଯିବେ । ଭାରତରେ ଖଦୀକାମ ଚଳାଇବା ଲାଗି ଚନ୍ଦାସଂଗ୍ରହ ସକାଶେ ମହାତ୍ମାଜୀ ଏ ଗସ୍ତ କରୁଛନ୍ତି । ବିହାରରେ ଅନେକ ଜାଗାରେ ଅନେକ ଲୋକ ତାଙ୍କୁ ବହୁତ ଟଙ୍କା ଭେଟି ଚଢ଼ାଇଛନ୍ତି । ସେଥିର ପରିମାଣ ଜଣା ପଡ଼ିନାହିଁ । ଯାହା ଆଦାୟ ହୋଇଥିବ ସେ ପ୍ରଦେଶର ଖଦୀକାମ ଓ ଜାତୀୟ ଶିକ୍ଷା ସକାଶେ ସେ ତାହାସବୁ ଦେଇଯିବେ । ଲକ୍ଷେ ଟଙ୍କା ମହାତ୍ମାଗାନ୍ଧିଙ୍କୁ ଦେବା ନିମିତ୍ତ ସେଠ ଯମୁନାଲାଲ ବେଜାଜ ମଧ୍ୟପ୍ରଦେଶ ଲୋକଙ୍କଠାରେ ନିବେଦନ କରିଛନ୍ତି । ମଧ୍ୟପ୍ରଦେଶ ପରେ ଗାନ୍ଧି ମାନ୍ଦ୍ରାଜ ଯିବେ । ମାନ୍ଦ୍ରାଜର ନେତା ରାଜଗୋପାଲ ଆଚାରୀ ଗାନ୍ଧିଙ୍କୁ ଲକ୍ଷେ ଟଙ୍କା ଦେବା ନିମନ୍ତେ ମାନ୍ଦ୍ରାଜ ଲୋକଙ୍କୁ ସାବଧାନ କରିନ ଦେଲେଣି । ଏହାଛଡ଼ା ଛାତ୍ରମାନଙ୍କ ମଧ୍ୟରେ ଅର୍ଥସଂଗ୍ରହ ଓ ଖଦଡ଼ ବିକ୍ରୀର ଉଦ୍ୟମ ଲାଗିଲଣି । ମଧ୍ୟପ୍ରଦେଶ ଓ ତାମିଲଦେଶ ଲୋକେ ମହାତ୍ମାଙ୍କ ଶୁଭ ଆଗମନ ଲାଗି ପ୍ରସ୍ତୁତ ହୋଉଛନ୍ତି । ଆଗାମୀ ନଭେମ୍ବର ମାସରେ ଓଡ଼ିଶାକୁ ଆସିବେ ବୋଲି ମହାତ୍ମାଜୀ ତାଙ୍କ ପତ୍ର 'ୟଙ୍ଗ ଇଣ୍ଡିଆ'ରେ ଲେଖିଛନ୍ତି । ଓଡ଼ିଶାରୁ ୧ଲକ୍ଷ ଟଙ୍କା ଉଠାଇବେ ବୋଲି ଆଶା ରଖି ସେ ଅବଶ୍ୟ ଆସିବେ ନାହିଁ । ଓଡ଼ିଶାର ଦରିଦ୍ରତା ତାଙ୍କୁ ବେଶ୍ ଜଣା । ପତ୍ରରେ ଏବେ ସୁଦ୍ଧା ତାହା ଲେଖିଛନ୍ତି । ସତ୍ୟବାଦୀଠାରେ ଲୋକେ ଅଣ୍ଟାରୁ କାଢ଼ି ଯେ ପଇସାଏ ଦୁଇପଇସା ତାଙ୍କୁ ଭେଟିଥିଲେ ସେକଥା ଏବେ ସୁଦ୍ଧା ତାଙ୍କର ମନେ ଅଛି । ପୁରୀରେ ଯେ ଦୁର୍ଭିକ୍ଷ ପୀଡ଼ିତ କଙ୍କାଳ ଦେଖିଥିଲେ ସେ ଦାରୁଣ ଦୃଶ୍ୟ ଏବେସୁଦ୍ଧା ସେ ଭୁଲି ନାହାନ୍ତି । କଲିକତାରେ କଂଗ୍ରେସରୁ ଫେରି ଆମେ ତାଙ୍କୁ ଓଡ଼ିଶାକୁ ଆମନ୍ତ୍ରଣ କଲାବେଳେ କହିଥିଲୁ, "ଓଡ଼ିଶାତ ଆପଣଙ୍କୁ ଖଦଡ଼ କାମ ସକାଶେ ଟଙ୍କା ଦେଇ ପାରିବ ନାହିଁ, ବରଂ ଅନ୍ୟଆଡ଼ୁ ଆପଣ ସଂଗ୍ରହ କରିବା ଟଙ୍କା ଓଡ଼ିଶା ନେବାକୁ ଚାହିଁବ । ଅବଶ୍ୟ ଆପଣ ଓଡ଼ିଶାକୁ ସବୁମତେ ସାହାଯ୍ୟ କରିବାକୁ ପ୍ରସ୍ତୁତ । ମାତ୍ର ଓଡ଼ିଶା ସେ ସାହାଯ୍ୟ ପାଇବାକୁ କେତେଦୂର ଉପଯୁକ୍ତ ତାହାହିଁ ସମସ୍ୟା ।" ଏ କଥାରେ ମହାତ୍ମାଜୀ ହସିକରି କହିଲେ, "ଠିକ୍ କହୁଛ" । ଯଥାର୍ଥରେ ମହାତ୍ମାଙ୍କର ସାହାଯ୍ୟ ଓ ସହାନୁଭୂତି ପାଇବାକୁ ଓଡ଼ିଶା ଯେ ଉପଯୋଗୀ ଏହା ପ୍ରତ୍ୟେକ ଉତ୍କଳବାସୀଙ୍କୁ କାର୍ଯ୍ୟରେ ଦେଖାଇବାକୁ ହେବ । ସେ ଆସିବାବେଳେ ଯାହାର ଯାହା ଶକ୍ତି ହେବ, ସେ ତାହା ଦେବେ । ମାତ୍ର ଟଙ୍କାପଇସା ଅପେକ୍ଷା କାର୍ଯ୍ୟରେ ନିଜର ଉପଯୋଗିତା ଦେଖାଇବା ଓଡ଼ିଶା ପକ୍ଷେ ଅଧିକ ଶ୍ରେୟସ୍କର ଓ

ଶୋଭନୀୟ । ତାଙ୍କ ଆସିବା ବେଳକୁ ଓଡ଼ିଶାର ସମୁଦାୟ ଜିଲାମାନଙ୍କରେ ଯଦି ଦଶହଜାର କଂଗ୍ରେସ ମେମ୍ବର ହୋଇପାରନ୍ତି, ତେବେ ତାହା ତାଙ୍କୁ ଦେଖାଇବାର ଉଚିତ ହେବ । ଏବର୍ଷ ମଧ୍ୟରେ ଯଦି ଏକଲକ୍ଷ ଟଙ୍କାର ଖଦଡ଼ ଓଡ଼ିଶାରେ ବିକ୍ରୀ ହୋଇପାରେ ତେବେ ଓଡ଼ିଶାର ଉପଯୋଗିତା ସେ ବୁଝିବେ । ସତ୍ୟବାଦୀକି ସେ ନିଜେ ଯାଉଥିଲେ, ସତ୍ୟବାଦୀ ସ୍କୁଲ କଥା ଅନେକ ଘଟଣାରେ ପଚାରନ୍ତି । ସେ ବିଷୟ ତାଙ୍କର ସବୁବେଳେ ମନେ ଥାଏ । ସତ୍ୟବାଦୀ ସ୍କୁଲର ଦୁରବସ୍ଥା ତାଙ୍କ ମନକୁ ବାଧୁଛି । ଏଥର ଫେରି ଓଡ଼ିଶାକୁ ଆସି ସେ ଯଦି ସତ୍ୟବାଦୀରେ ନବଜୀବନ ଓ ଜାତୀୟ ଶିକ୍ଷାର ପୁନଃ ପ୍ରତିଷ୍ଠା ଦେଖନ୍ତି ତାହେଲେ ଠିକଏ ଆଶ୍ୱସ୍ତ ହେବେ । ଏହାଛଡ଼ା ଓଡ଼ିଶାର ଭିନ୍ନ ଭିନ୍ନ କେନ୍ଦ୍ରରେ ଅଳକାଶ୍ରମ ପରି ଯଦି ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଖଦୀକେନ୍ଦ୍ର ବା ଅନ୍ୟ କୌଣସି ପ୍ରକାର ଜାତୀୟ ଅନୁଷ୍ଠାନ ତାଙ୍କୁ ଦେଖାଇବାଭଳି ଜୀବନ୍ତ ଭାବରେ ଚଳୁଥାଏ ତଦ୍ୱାରା ଓଡ଼ିଶାର ଭବିଷ୍ୟତ ବିଷୟରେ ତାଙ୍କ ହୃଦୟରେ ଆଶା ସମ୍ଭବ । ନିଶାନିବାରଣ ଓ ବନ୍ୟା ନିବାରଣ ଓଡ଼ିଶାର ଆଜି ଦୁଇଟି ଗୁରୁତର କାର୍ଯ୍ୟ । ଏ ଦୁଇଟି ପ୍ରତି ମହାତ୍ମାଗାନ୍ଧୀଙ୍କର ମନ ଧ୍ୟାନ ଥାଏ । ବାଲେଶ୍ୱର ଜିଲାର ଅଫିମ ତଦନ୍ତ କାର୍ଯ୍ୟ ଶ୍ରଦ୍ଧେୟ ଆଣ୍ଡ୍ରୁଜ୍ ସାହେବ ଦକ୍ଷିଣ-ଆଫ୍ରିକା ଫେରିଲାବେଳକୁ ଶେଷ ହୋଇଥିବା ବାଞ୍ଛନୀୟ । ବନ୍ୟାର ସ୍ଥାୟୀ ପ୍ରତିକାର ବିଷୟରେ ମହାତ୍ମାଗାନ୍ଧୀ ଆସିବା ପୂର୍ବରୁ କାର୍ଯ୍ୟ ଖଣ୍ଡେଦୂର ଅଗ୍ରସର ହୋଇଥିଲେ ସେ ସମ୍ବନ୍ଧରେ ତାଙ୍କର ପରାମର୍ଶ ନେବାର ସୁବିଧା ମିଳିବ । ସୁବିଧା ହେଲେ କୌଣସି କୌଣସି ବନ୍ୟା ଅଞ୍ଚଳକୁ ତାଙ୍କୁ ନିଆଯାଇ ପାରେ । ଉତ୍କଳ ପ୍ରଦେଶ ମଧ୍ୟରେ ସମ୍ବଲପୁର, ବାଲେଶ୍ୱର ଓ ଗଞ୍ଜାମ ଜିଲାର କୌଣସି କୌଣସି ସ୍ଥାନରେ ଅସ୍ପୃଶ୍ୟତା ନିବାରଣର ସାମାନ୍ୟ ଚେଷ୍ଟା ହେଉଅଛି । ଆହୁରି ଦୃଢ଼ତର ଓ ପ୍ରବଳ ଗତିରେ ଏ ଉଦ୍ୟମ ଚାଲିଲେ ଏହା ମଧ୍ୟ ଗାନ୍ଧୀଙ୍କ ଆଗେ ପ୍ରାଦେଶିକ କାର୍ଯ୍ୟର ଗୌରବ ଦେଖାଇବ । ସବୁ ଜିଲାର କଂଗ୍ରେସ ବେକଂଗ୍ରେସ ଶିକ୍ଷିତ ସାଧାରଣ ସହର ଓ ମଫସଲବାସୀ ଗାନ୍ଧିଙ୍କ ଆଗମନଲାଗି ଉଚିତ ଉପଯୋଗ କରିବେ ବୋଲି ଆଶା କରାଯାଏ ।

('ସମାଜ' ତା ୫ । ୨ । ୨୭)

— ——

# ମହାତ୍ମାଙ୍କ ଉତ୍କଳ ଆଗମ

ମହାତ୍ମାଗାନ୍ଧୀ ଓଡ଼ିଶାକୁ ମାସେ ଦେବେ ବୋଲି ଅଙ୍ଗୀକାର କରିଥିଲେ । ତାଙ୍କ ସ୍ୱାସ୍ଥ୍ୟଭଙ୍ଗ ହେତୁ ଅନ୍ୟାନ୍ୟ ଅଞ୍ଚଳକୁ ଯିବାରେ ବାଧା ଘଟିଲେ ସୁଦ୍ଧା ଉତ୍କଳକୁ ଆସିବାର ସଙ୍କଳ୍ପରେ କୌଣସି ବାଧା ଘଟିନାହିଁ । ତେବେ ନଭେମ୍ବର ପହିଲାରେ ଆସିବାର ଥିଲା, ତାହା ନ ହୋଇ ନଭେମ୍ବର ୨୦ ତାରିଖରେ ଆସିବା ସେ ସ୍ଥିର କରିଛନ୍ତି । ନଭେମ୍ବର ୨୦ରୁ ଡ଼ିସେମ୍ବର ୨୦ ପର୍ଯ୍ୟନ୍ତ ସେ ଓଡ଼ିଶାରେ ବିତାଇବେ । ମହାତ୍ମାଜୀ ଭାରତର ଯେଉଁସବୁ ଅଞ୍ଚଳକୁ ଯାଉଛନ୍ତି ସେଠାରେ ତାଙ୍କର କି ସମ୍ମାନ ସମ୍ବର୍ଦ୍ଧନା ହେଉଛି ସମ୍ବାଦ-ପତ୍ରର ପାଠକମାନେ ଜାଣନ୍ତି । ରାଜା, ପ୍ରଜା, ଶିକ୍ଷିତ, ସାଧାରଣ, ଶିକ୍ଷକ, ସରକାରୀ, ବେସରକାରୀ, ସ୍ତ୍ରୀ, ପୁରୁଷ, ବାଳକ ବୃଦ୍ଧ ସମସ୍ତେ ତାଙ୍କୁ ନାନାଭାବରେ ଆଦର ଅଭ୍ୟର୍ଥନା କରୁଛନ୍ତି । ଜିଲ୍ଲାବୋର୍ଡ଼ ମ୍ୟୁନିସିପାଲିଟିମାନଙ୍କରୁ ଅଭିନନ୍ଦନ ପତ୍ର ଦିଆଯାଉଅଛି । ଅଳ୍ପ ବହୁତ ସବୁ ଯାଗାରେ ଲୋକେ ଟଙ୍କା ଉପହାର ଦେଉଛନ୍ତି । ବସ୍ତ୍ରର ଖଦଡ଼ ବିକ୍ରୀ ହେଉଛି । ତାଙ୍କ ଆଗମନ ଉପଲକ୍ଷେ କେତେ ନୂଆ ଜାତୀୟ ଅନୁଷ୍ଠାନ ଆରମ୍ଭ ହେଉଛି । ସର୍ବତ୍ର ଲୋକେ ନାନାଭାବରେ ତାଙ୍କ ଆଗମନରେ ଉତ୍ସାହ ଦେଖାଉଛନ୍ତି । ଉତ୍କଳବାସୀ କଅଣ କରିବେ ଆଜଠାରୁ ଭାବି ସ୍ଥିର କରନ୍ତୁ । ଉତ୍କଳରେ ସେପରି ଦେଖାଇବା ଯୋଗ୍ୟ ଜାତୀୟ ଅନୁଷ୍ଠାନ କିଛି ନାହିଁ । କେତେ ଜାଗାରେ ଖଦୀ କେନ୍ଦ୍ର କେତୋଟି ଅଛି । ସେଥିମଧ୍ୟରୁ ଅବଶ୍ୟ ଅଧିକାଂଶ ସ୍ଥାନକୁ ଗାନ୍ଧୀ ଯାଇ କାର୍ଯ୍ୟ ଦେଖିବାକୁ ନିଜେ ଇଚ୍ଛୁକ ହେବେ । ଆଜିକାଲି ଖଦଡ଼ ତାଙ୍କର ଏକମାତ୍ର ଲକ୍ଷ୍ୟ କେବଳ ମାତ୍ର କାର୍ଯ୍ୟ । ଖଦଡ଼ ଛଡ଼ା ଆଉ କୌଣସିଆଡ଼େ ସେ ମନ ଧ୍ୟାନ ଦେଉନାହାନ୍ତି, ଖଦଡ଼ର ପ୍ରଚାର ଓ ପ୍ରବର୍ତ୍ତନ ଏବଂ ଖଦଡ଼ ନିମନ୍ତେ ଅର୍ଥ ସଂଗ୍ରହ କରିବାକୁ ସେ ଦେଶର ଚାରିଆଡ଼େ ବୁଲୁଛନ୍ତି । ତାଙ୍କ ବୁଲିବାଦ୍ୱାରା ଯଥାର୍ଥରେ ଖଦଡ଼ କାର୍ଯ୍ୟ ଅନେକ ଦୂର ଅଗ୍ରସର ହେଉଅଛି । ଓଡ଼ିଶାବାସୀ ଆଉ କିଛି ନ ଦେଖାଇ କେବଳ ଖଦଡ଼କାର୍ଯ୍ୟର ଉନ୍ନତି ଦେଖାଇଲେ ମହାତ୍ମା ଗାନ୍ଧୀ ଆନନ୍ଦ ଓ ଆଶ୍ୱସ୍ତ ହୁଅନ୍ତେ ଏବଂ ଓଡ଼ିଶାର କୃତିତ୍ୱ ଓ ଗୌରବ ପ୍ରକାଶ ପାଆନ୍ତା । ଓଡ଼ିଶାର ଦୁଃଖ ଦରିଦ୍ରତା ଲାଗି ମହାତ୍ମା ଗାନ୍ଧି ନିତାନ୍ତ ବ୍ୟଥିତ । ନାନା ଘଟନାରେ ସେ ଓଡ଼ିଶାର କଥା ଉଲ୍ଲେଖ କରିଥାନ୍ତି । ଆଜି ଗୁଜରାଟ ଓ ଓଡ଼ିଶାର ବନ୍ୟା ବଜ୍ରପାତ ଯୋଗେ ସମାନ ଦଶା । ଗୁଜରାଟ ପକ୍ଷେ ଏ ବଜ୍ରପାତ ଆକସ୍ମିକ ଥିବାରୁ ସେଠା ଲୋକେ

ଅଧିକ କାତର ଏବଂ ସେ ପ୍ରଦେଶର ଅଧିକ ସ୍ଥାନ ନଷ୍ଟ ହୋଇଛି । ନିଜ ଘରେ ଏପରି ଘୋର ବିପତ୍ତିବେଳେ ମହାତ୍ମା ଗାନ୍ଧି ଓଡ଼ିଶା କଥା ଭୁଲିନାହାନ୍ତି । ଅଳ୍ପଦିନ ତଳେ ସେ ଆପଣା ଖବର କାଗଜରେ ଲେଖିଥିଲେ ଯେ ଗୁଜରାଟ ଆଡ଼େ ଅତ୍ୟଧିକ ମନଧ୍ୟାନ ଦେଇ ଗୁଜରାଟବାସୀ ଯେପରି ଓଡ଼ିଶା କଥା ଏକାବେଳକେ ଭୁଲି ନ ଯାନ୍ତି । ଓଡ଼ିଶା ଲୋକଙ୍କର ଅନ୍ନକଷ୍ଟ ନ ଘୁଞ୍ଚିବାଯାଏ ଏବଂ କଙ୍କାଳ ନ ଲୁଚିବାଯାଏ ଭାରତରେ ସ୍ୱରାଜ୍ୟ ହେବନାହିଁ ଏବଂ ହେଲେ ସୁଦ୍ଧା ତାହା ଲୋଡ଼ାନୁହେଁ ବୋଲି, ମହାତ୍ମା ଗାନ୍ଧି ଏକାଧିକ ଥର କହିଛନ୍ତି । ଓଡ଼ିଶାର ଦୁଃଖ ଦାରିଦ୍ର୍ୟ ଘୁଞ୍ଚିବା ନିମନ୍ତେ ଖଦଡ଼ ଏକ ପ୍ରକୃଷ୍ଟ ପନ୍ଥା ବୋଲି ତାଙ୍କର ବିଶ୍ୱାସ ଏବଂ ସବୁବେଳେ ସେ ଏହା ପ୍ରକାଶ କରି ଆସୁଛନ୍ତି । ଆଜି ଓଡ଼ିଶାର ଏ ଦାରୁଣ ବିପତ୍ତି କାଳରେ ମହାତ୍ମାଗାନ୍ଧିଙ୍କର ଶୁଭାଗମ ଓଡ଼ିଶାପକ୍ଷରେ ସୌଭାଗ୍ୟର ଘଟନା । ସେ ଓଡ଼ିଶାର ଉପସ୍ଥିତ ଦୁରବସ୍ଥା ଦେଖି ଅତ୍ୟଧିକ ବ୍ୟଥିତ ଓ ମର୍ମାହତ ହେବେ ସନ୍ଦେହ ନାହିଁ । ମାତ୍ର ତାହିଁ ସଙ୍ଗେ ସଙ୍ଗେ ଯେବେ ଦେଶରେ ସର୍ବତ୍ର ଖଦଡ଼ର ଟିକିଏ ବହୁଳ ପ୍ରଚାର ଦେଖିବେ ତାହାହେଲେ ଟିକିଏ ଆଶା ଓ ଆଶ୍ୱାସନା ପାଇବେ । ତେଣୁ ମହାତ୍ମାଙ୍କ ଆଗମନ ଉପଲକ୍ଷରେ ଓଡ଼ିଶାବାସୀ ଆଉ ଯାହା କରନ୍ତୁ ସବୁ ପ୍ରଥମେ ସମସ୍ତେ ଖଦଡ଼ ପିନ୍ଧିବା ସ୍ଥିର କରନ୍ତୁ । ଯେଉଁମାନେ ତାଙ୍କ ବକ୍ତୃତା ଶୁଣିବାକୁ ଆସିବେ, ଯେଉଁମାନେ ତାଙ୍କୁ ସାକ୍ଷାତ କରିବେ ବା ତାଙ୍କ ସଭାରେ ଯୋଗ ଦେବେ ସେମାନେ ସମସ୍ତେ ଯେପରି ଦେହରେ ଖଦଡ଼ଲୁଗା ଧାରଣ କରି ଆସନ୍ତି, ସେଥି-ଲାଗି ଦେଶବାସୀ ସକଳଶ୍ରେଣୀ ଓ ସକଳ ଅବସ୍ଥାର ଲୋକଙ୍କୁ ମୁଁ ଆଜିଠୁଁ କରଯୋଡ଼ି ପ୍ରାର୍ଥନା କରୁଅଛି । କଳଲୁଗା ବା ପୋଷାକ ପିନ୍ଧିଥିବା କେହି ବ୍ୟକ୍ତି ଯେପରି ଓଡ଼ିଶାରେ ମହାତ୍ମାଗାନ୍ଧିଙ୍କ ଦୃଷ୍ଟିରେ ନ ପଡ଼ନ୍ତି । କହିବା ବାହୁଲ୍ୟ ଯେ ଏହଦ୍ୱାରା ତାଙ୍କ ଗୁଡ଼ିଏ କାଣ୍ଡ ମାଇଲ୍‌ପଥ ହେବ । ମହାତ୍ମା ଗାନ୍ଧୀ ଯେଉଁ ପ୍ରଦେଶକୁ ଯାଇଛନ୍ତି ଧନୀ ଦରିଦ୍ର ସମସ୍ତେ ଖଦଡ଼ ପିନ୍ଧି ତାଙ୍କ ପାଖକୁ ଆସିଛନ୍ତି । ତାଙ୍କ ସଭାରେ ଉପସ୍ଥିତ ହୋଇଛନ୍ତି । ଏଥିର ଫଳରେ ହଜାର ହଜାର ଟଙ୍କାର ଖଦଡ଼ ବିକ୍ରୀ ହୋଇଛି । ଓଡ଼ିଶାରେ ଖଦୀବୋର୍ଡ଼ ପୁଣି ଦୁର୍ଭିକ୍ଷ ଖଦୀ ବିଭାଗ, ଚମ୍ପାପୁର ଗାନ୍ଧି ଆଶ୍ରମ, ଅଳକାଶ୍ରମ, ସମବାୟ ସଂଘ ପ୍ରଭୃତିରେ ବିସ୍ତର ଖଦୀ ଠୁଳ ହୋଇ ରହିଛି । ଖଦୀ ବିକ୍ରୀ ହୋଇ ପାରୁ ନ ଥିବାରୁ ଏ ସବୁକାର୍ଯ୍ୟ ଚଳିବାରେ ଅର୍ଥର ଅଭାବ ହେଉଛି । ମହାତ୍ମାଗାନ୍ଧି ଆସି ଯେବେ ଦେଖନ୍ତି ଯେ ଏହି କେତୋଟି କ୍ଷୁଦ୍ର ଅନୁଷ୍ଠାନ ଉଦ୍ୟମରେ ଠୁଳ ହୋଇଥିବା ଖଦୀ ବିକ୍ରୀ ନ ହୋଇ ଚଦାହୋଇ ରହିଛି ଅଥଚ ଓଡ଼ିଶାରେ ଶିକ୍ଷିତ ସଙ୍ଗତିସମ୍ପନ୍ନ ଲୋକେ କଳଲୁଗା ପିନ୍ଧୁଛନ୍ତି ଏଣେ ପୁଣି ଗରିବ ଲୋକେ ଅନ୍ନ ଅଭାବରେ ବିକଳ ହୋଇ ହା ହା କରୁଛନ୍ତି,

ତାହାହେଲେ ଓଡ଼ିଶାପକ୍ଷେ ଏହା ବଡ଼ ଲଜ୍ଜା'ର କଥା ହେବ, ଏବ ଏ ଦୃଶ୍ୟ ତାଙ୍କ ହୃଦୟରେ ଦାରୁଣ ଆଘାତ ଦେବ । ଉତ୍କଳବାସୀ ଆଜିଠାରୁ ଖଦଡ଼ କିଣି ରଖନ୍ତୁ । ନିକଟରେ ଦଶହରା ଓ କୁମାର ପୂର୍ଣ୍ଣିମା ହେବ । ଏ ଉପଲକ୍ଷରେ ପ୍ରାୟ ପ୍ରତ୍ୟେକ ପରିବାରରେ ନୂଆଲୁଗା କିଣା ହେବ । ମୋର ସବିନୟ ଅନୁରୋଧ ଯେ ଗୃହିଣୀ ଆଉଣୀ ଅଧିକ ପଡ଼ୁ ପଛକେ ସମସ୍ତେ ଦଶହରା ଓ କୁମାରପୂର୍ଣ୍ଣମୀକି ଖଦଡ଼ କିଣନ୍ତୁ । ପାର୍ବଣର ଏହି ପବିତ୍ର ଖଦଡ଼ ମହାତ୍ମାଗାନ୍ଧୀଙ୍କ ଆଗମନ ସମୟରେ ଓଡ଼ିଶାବାସୀଙ୍କର ମାନ ମହତ୍ତ୍ୱ ରକ୍ଷା କରିବ ।

('ସମାଜ' ତା ୨୪ । ୯ । ୨୭)

---

# ଆତ୍ମଶକ୍ତି

ମହାତ୍ମାଗାନ୍ଧୀ ଆସିଲେ ତାଙ୍କ ଆଗେ ଓଡ଼ିଶାର ସମସ୍ତ ଦୁଃଖ ଗୁହାରି ଜଣାଇବାକୁ ହେବ ବୋଲି କେତେଲୋକ ଖବର କାଗଜରେ ଲେଖୁଛନ୍ତି । ଗାଁ ଅପରିଷ୍କାର ରହିଛି; ଓଡ଼ିଶା କବିମାନେ ଅନ୍ୟ ଦେଶର ଲେଖକଙ୍କଠାରୁ ନିମ୍ନଶ୍ରେଣୀର ଲେଖୁଛନ୍ତି, ଓଡ଼ିଆମାନେ ଅଳସୁଆ ଇତ୍ୟାଦି ନାନା ଦୋଷ ଦୁର୍ଗୁଣ କେହି କେହି ବର୍ଣ୍ଣନା କରୁଛନ୍ତି; ସତେ ଯେପରିକି ମହାତ୍ମାଗାନ୍ଧୀ ଗୋଟାଏ ଝାଡ଼ୁ ଧରି ଆସି ଓଡ଼ିଶାର ଗ୍ରାମମାନ ସଫା କରିବାରେ ଲାଗିବେ, କିମ୍ବା ଗୋଟାଏ ସାହିତ୍ୟ ସମାଜ ଖୋଲି ଲେଖକମାନଙ୍କର ସମାଲୋଚନା କରିବେ ବା ଗୋଟାଏ ଗୁରୁକୁଳ ଧରି ଓଡ଼ିଆ ଲୋକଙ୍କୁ ମାଡ଼ ଦେଇ ଚଞ୍ଚଳିଆ କରାଇବେ । ଆଉ କିଏ ଲେଖୁଛନ୍ତି ଓଡ଼ିଶାରେ ଜମିଦାର ପ୍ରଜାଙ୍କ ସମ୍ପର୍କ ଗୁରୁତର, ଦେବୋତ୍ତର ସମ୍ପତ୍ତିର ସଦ୍‌ବ୍ୟବହାର ହେଉନାହିଁ; ଗୋଚରଭୂମି ଯଥେଷ୍ଟ ପରିମାଣରେ ନାହିଁ; ମହାତ୍ମାଗାନ୍ଧୀ ଏ ସବୁ ସମସ୍ୟା ସମାଧାନ କରନ୍ତୁ । ଏ ସବୁ ଲେଖା ଦେଖିଲେ ହସମାଡ଼େ; ପୁଣି ଆମ ଦେଶ ଲୋକଙ୍କର ମତିଗତି କଥାଭାବି ଦୁଃଖ ବି ଆସେ । ଦୋଷ ଦୁର୍ଗୁଣ ସବୁ ଦେଶରେ ସବୁ ସମାଜରେ ଊଣା ଅଧିକେ ଅଛି; ସବୁଠି ନାନାବିଧ ସମସ୍ୟା ରହିଅଛି । ମାତ୍ର ମହାତ୍ମାଗାନ୍ଧୀ ଦଶ ପନ୍ଦର ଦିନ ବା ମାସକ ମଧ୍ୟରେ ଦେଶର ନାନା ସ୍ଥାନରେ ଏଠାରେ ଓଳିଏ ସେଠାରେ ଦିନେ ବୁଲି ଏ ସବୁର କିପରି କି ସମାଧାନ କରିବେ ଆମ୍ଭେମାନେ ଜାଣିପାରୁନାହୁଁ । ଏହା ଉପରେ ପୁଣି ଭିନ୍ନ ଭିନ୍ନ ମଫସଲ କେନ୍ଦ୍ରର ଲୋକଙ୍କର ଦାବୀ ଯେ ସେଠାକୁ ମହାତ୍ମା ଯାଇ ଲୋକଙ୍କୁ ଦର୍ଶନ ଦେଇ ଆସିବେ । ଲାଟସାହେବ ପ୍ରଭୃତି ଆସିବାବେଳେ ଅଭିନନ୍ଦନ ପତ୍ର ନାମରେ କେତେ ସମୟରେ ତାଙ୍କ ଆଗେ ଦେଶର ଗୁଡ଼ାଏ ବହୁ ଆପତ୍ତି ଅଭାବର ବର୍ଣ୍ଣନା କରାଯାଇଥାଏ । ଖବରକାଗଜ ନାନା ଅଭାବ ସମ୍ବନ୍ଧରେ ଲେଖିଥାନ୍ତି । ଆମ୍ଭେମାନେ ଅନେକ ଦିନ ହେଲା ଦେଖି ଆସିଛୁଁ; କାହିଁ କୌଣସି ଲାଟତ ଏ ସବୁ ବିଷୟରେ କିଛି କରନ୍ତି ନାହିଁ । ଗାନ୍ଧୀଙ୍କ ଆଗେ ହେଉ ବା ଲାଟସାହେବଙ୍କ ଆଗେ ହେଉ ଆପଣାର ଦୁଃଖ ଦୈନ୍ୟ ଦୁର୍ଗତି ବଖାଣିବା ଆମର ଗୋଟାଏ ପ୍ରକୃତି ହୋଇଗଲାଣି । ଏଟା ଦୁର୍ବଳ ଜାତିର ଲକ୍ଷଣ । ଏଥିରେ କିଛି ଫଳ ହୁଏ ନାହିଁ, କେବଳ ନିଜର ହୀନତା ଏବଂ ଅକର୍ମଣ୍ୟତା ପ୍ରକାଶପାଏ । ମହାତ୍ମାଗାନ୍ଧୀ କେବଳ ଓଡ଼ିଶାକୁ ଆସୁନାହାନ୍ତି, ଅନ୍ୟାନ୍ୟ କେତେ ପ୍ରଦେଶରେ ବୁଲିଆସିଲେଣି । ସେଠାରେ କଅଣ କରି ଆସିଛନ୍ତି । ସେ ସବୁ ପ୍ରଦେଶରେ କି ଗ୍ରାମ ଅପରିଷ୍କାର ନାହିଁ ? ପ୍ରଜା ଜମିଦାରଙ୍କ ମଧ୍ୟରେ କଳହ ବିବାଦ ନାହିଁ; ସେଠାରେ କି ଅସ୍ପୃଶ୍ୟତା ନାହିଁ, ବା ପୂର୍ବ ଖଦଡ଼ ପ୍ରଚୁର ହୋଇ-ଗଲାଣି ? ସେଠାରେ କ୍ଷୁଦ୍ର ବାଲ୍ୟ ବିଧବା ନାହାନ୍ତି ? ଗୋଚରଭୂମିର ଅଭାବ ନାହିଁ ?

ମହାତ୍ମାଜୀ ଏ ସବୁ ବିଷୟରେ ସେଠାରେ କଣ କରିଛନ୍ତି ବା ସେଠା ଲୋକେ ଏ ସବୁ ବିଷୟରେ କେତେ ସୁହାର କରିଛନ୍ତି ? ଲାଟ ସାହେବ ହୁଅନ୍ତୁ, ମହାତ୍ମାଗାନ୍ଧୀ ହୁଅନ୍ତୁ ବା ନିଜେ ଈଶ୍ୱର ହୁଅନ୍ତୁ କେହି କିଛି କରିପାରିବେ ନାହିଁ ଯେତେବେଳଯାଏ ମନୁଷ୍ୟ ନିଜେ ଜାଗିଛି ଓ ନିଜେ ନ ଲାଗିଛି । ଖଦଡ଼ ମହାତ୍ମାଗାନ୍ଧୀଙ୍କର ପ୍ରଧାନ ଦୀକ୍ଷା, ଏକମାତ୍ର ଧ୍ୟାନ । ସେ ସବୁଠାରେ ଓଡ଼ିଶାକୁ ଉଦାହରଣ ସ୍ୱରୂପ ଥୋଇ ଖଦଡ଼ ପ୍ରଚାରର ଆବଶ୍ୟକତା ଦେଖାଉଛନ୍ତି । ଏଥର ଓଡ଼ିଶାକୁ ଆସିବେ; ଯାହା ଯେଉଁଠାରେ କହିବେ ବା ଉପଦେଶ ଦେବେ ସେ ସବୁଥରେ ଯେ ଖଦଡ଼ କଥା ରହିବ, ସନ୍ଦେହ ନାହିଁ । ତାଙ୍କ ବିରାଟ ବ୍ୟକ୍ତିତ୍ୱ ଏବଂ ପ୍ରବଳ ପ୍ରେରଣାରେ ଅନେକେ ସେହି ମୁହୂର୍ତ୍ତରେ ଖଦଡ଼ ଦୀକ୍ଷାଗ୍ରହଣ କରିବା ମନେ ମନେ ସ୍ଥିର କରିବେ ସତ, କିନ୍ତୁ ସେ ଯିବାପରେ କେତେଦିନଯାଏ କେତେଜଣଙ୍କର ସଙ୍କଳ୍ପ ରହିବ ? କେହି ଯେବେ କିଛି ନ କରିବେ ମହାତ୍ମାଗାନ୍ଧୀଙ୍କ ଉପଦେଶ ଅରଣ୍ୟ ରୋଦନ ହୋଇଯିବ । ତେଣୁ ଆମ୍ଭେମାନେ କିଛି କେବଳ ନିଜ ଦୁଃଖ ଦୁର୍ବଳତା ଅନ୍ୟ ଆଗେ ବାହୁନିଲେ କିଛି ଫଳ ନାହିଁ । ନିଜର ଦୋଷ ଦୁର୍ଗୁଣ ନିଜେ ତ ଜାଣିପାରୁଛୁ; ତାହା ଦୂର କରିବାକୁ ନିଜେ ଚେଷ୍ଟାକର । ଦୁର୍ବଳତା ଜାଣି ତାହା ନିବାରଣର ଚେଷ୍ଟା ଏକ କଥା, ଦୁର୍ବଳତା ପ୍ରକାଶ କରିବା ଅନ୍ୟ କଥା । ଦୁର୍ବଳତା ନିବାରଣ ଚେଷ୍ଟାରେ ବୀରତ୍ୱ ଅଛି, ପୁରୁଷକାର ଅଛି, ଦୁର୍ବଳତା ପ୍ରକାଶ କରିବା କେବଳ ଆଳସ୍ୟ ଓ କାପୁରୁଷତାର ଲକ୍ଷଣ । ମହାତ୍ମାଗାନ୍ଧୀ ଆସୁଛନ୍ତି ଆମଲାଗି ସବୁ କରି ଦେଇଯିବେ ଏପରି ଭାବିବା ଅର୍ଥ ଯେ ଆମପାଇଁ ଆମେ କିଛି କରି ପାରୁନାହୁଁ, ଖାଲି ନୁହେଁ, ଆମପାଇଁ ଆମେ କିଛି କରିବୁ ନାହିଁ । ଏ ଅତି ଉତ୍କଟ ଶୋଚନୀୟ ଆଳସ୍ୟ ଅବସ୍ଥା; ଏହା ଶାରୀରିକ ଆଳସ୍ୟ ନୁହେଁ; ଶାରୀରିକ ଆଳସ୍ୟଯୋଗ୍ୟ ଲୋକ କିଛି କାମନା କରି ଦେହ ହାତ ନ ଚଳାଇ ବସି ରହେ; ମାତ୍ର ଏହା ମାନସିକ ଆଳସ୍ୟ, ଚିନ୍ତାର ଆଳସ୍ୟ । ଆମଲାଗି ଆମେ ଯେ କିଛି କରିପାରୁ ଆମ ନିଜ ହାତରେ ଯେ ଆମ ଉନ୍ନତି ରହିଛି ଏପରି ଚିନ୍ତା କରିବା ପ୍ରବୃତ୍ତି ସୁଦ୍ଧା ଆମ ଲୋକଙ୍କର ଲୋପ ପାଇ ଆସିଲାଣି । ବାହାରରୁ କେହି ଆସି ଆମକୁ ଟେକିଦେଲେ ଆମେ ଉଠିବୁ, ସବୁବେଳେ ଏହି ଆଶା । ବନ୍ୟା ଅଞ୍ଚଳର କେତେ ଲୋକ ଠାକା ବସିଛନ୍ତି, ଆମକୁ କିଏ ଆଣିଦେଲେ ଖାଇବୁ । ଓଡ଼ିଶା ଲୋକଙ୍କର ଏ ମତିଗତି ଫେରାଇବା ଲାଗି ପ୍ରବଳ ପ୍ରଯତ୍ନ ଆବଶ୍ୟକ । ଏ ଜାତିର ଆତ୍ମଶକ୍ତି ଜଗାଇବାକୁ ହେବ । ପ୍ରାଣରେ ଜାତୀୟ ଅଭିମାନ ଆଣିବାକୁ ହେବ । ବହୁସଂଖ୍ୟକ କର୍ମଠ ଶକ୍ତିଶାଳୀ କର୍ମୀଙ୍କର ଆତ୍ମବଳି ଏଥିଲାଗି ପ୍ରୟୋଜନ । ଉତ୍କଳ ଯୁବକ ଜାଗ୍ରତ ହୁଅ, ପ୍ରସ୍ତୁତ ହୁଅ. ତୁମ ତ୍ୟାଗ ତୁମ କର୍ମବଳରେ କେବଳ ଜାତି ଉଠିବ ।

('ସମାଜ' ତା ୧୯ । ୧ । ୨୭)

# ମହାତ୍ମାଙ୍କ ଅଭ୍ୟର୍ଥନା

ମହାତ୍ମାଗାନ୍ଧୀ ଆପଣା ଚରିତ୍ର ଓ କାର୍ଯ୍ୟ ବଳରେ ବର୍ତ୍ତମାନ ସାରା ଜଗତରେ ସମ୍ମାନିତ । ତାଙ୍କପରି ପ୍ରତିଷ୍ଠିତ ବ୍ୟକ୍ତିଙ୍କର ଶୁଭାଗମନ ସୌଭାଗ୍ୟ ଲାଭକରିବା ଯେକୌଣସି ଦେଶ ବା ପ୍ରଦେଶ ପକ୍ଷରେ ଦୁର୍ଲ୍ଲଭ । ବିଶେଷତଃ ସେ ଆଜିକାଲି ଯେ ନୀତି ଧରିଛନ୍ତି ସେଥିରେ ସରକାରଙ୍କର ତାଙ୍କ ବିପକ୍ଷରେ କିଛି କହିବାର ନାହିଁ । ବରଂ କେତେ ପ୍ରଦେଶର ସରକାର ତାଙ୍କ କାର୍ଯ୍ୟକୁ ସମର୍ଥନ କରୁଛନ୍ତି । କଂଗ୍ରେସ ସମୟରେ ମାନ୍ଦ୍ରାଜରେ ଯେ ନିଖିଳ-ଭାରତ ଖଦୀ ପ୍ରଦର୍ଶନୀ ହେବ ସେଥିଲାଗି ମାନ୍ଦ୍ରାଜ ସରକାର ୧୫ ହଜାର ଟଙ୍କା ଦେଉଛନ୍ତି । ସରକାର ଉକ୍ତ ରାଜା ମହାରାଜା ଆଦି ମହାତ୍ମାଙ୍କର ଆଦର ଅଭ୍ୟର୍ଥନା କରିଛନ୍ତି ଏବଂ ତାଙ୍କ କାର୍ଯ୍ୟରେ ନାନା ଭାବରେ ସହାନୁଭୂତି ଦେଖାଉଛନ୍ତି । ମହାତ୍ମାଙ୍କର ୧୯୨୧ ଓ ୨୨ ସାଲର କାର୍ଯ୍ୟ ମଧ୍ୟରେ ଅନେକ ତଫାତ୍ ଘଟିଅଛି । ସରକାର ବା ସରକାର ଭକ୍ତମାନେ ତାଙ୍କର ଯେ ନୀତିରେ ବିପଦ ଗଣୁଥିଲେ ଆଜି ସେ ନୀତି କାର୍ଯ୍ୟ କରୁନାହିଁ । ଯଥାର୍ଥ କହିବାକୁ ଗଲେ ମହାତ୍ମାଗାନ୍ଧୀଙ୍କର ବର୍ତ୍ତମାନ କାର୍ଯ୍ୟଗତି ଦେଖି ଅନେକଙ୍କର ଆଶଙ୍କା ଯେ, ସେ ଅସହଯୋଗର ଉଚ୍ଚ ସୋପାନରୁ କ୍ରମେ ଯେପରି ଖସି ଆସିଲେଣି ଆଉ ଚେଷ୍ଟାକଲେ ଦେଶକୁ ପୁଣି ସେ ଅବସ୍ଥାକୁ ଉଠାଇ ପାରିବେ କି ନାହିଁ ସନ୍ଦେହ । ସେ ଯାହାହେଉ, ମହାତ୍ମାଙ୍କର ରାଜନୈତିକ ମତ ବଦଳିପାରେ, ସେ ସାଧାରଣ କାର୍ଯ୍ୟକ୍ଷେତ୍ର ଛାଡ଼ି ଦେଇ ପାରନ୍ତି । ତଥାପି ତାଙ୍କର ବ୍ୟକ୍ତିତ୍ୱ, ସାଧନା, ଚରିତ୍ର ଏବଂ ଆଧ୍ୟାତ୍ମିକ ଭାବ ଏପରି ଉନ୍ନତ ଓ ଅସାଧାରଣ ଯେ ସବୁଦେଶରେ ସବୁସମୟରେ ଲୋକେ ତାଙ୍କୁ ଦୁର୍ଲ୍ଲଭ ପ୍ରତିଷ୍ଠିତ ପୁରୁଷଙ୍କ ଶ୍ରେଣୀରେ ଉଚ୍ଚଆସନ ଦେଇ ଆଦର ସମ୍ମାନ ଦେଖାଇବେ ସନ୍ଦେହ ନାହିଁ । ଏ ଯୁଗରେ ମହାତ୍ମାଗାନ୍ଧି ଭାରତୀୟ ଆର୍ଯ୍ୟ ଜୀବନର ଆଦର୍ଶ । ଏ ଆଦର୍ଶ ପୁରୁଷ ଓଡ଼ିଶାକୁ ଆସୁଛନ୍ତି, ଏହା ଓଡ଼ିଶା ପକ୍ଷେ ଗୌରବ । ଓଡ଼ିଶାବାସୀ କେତେଦୂର ଏ ଗୌରବ ଅନୁଭବ କରୁଛନ୍ତି ତାହା ସେମାନଙ୍କ ଆଦର ଅଭ୍ୟର୍ଥନାରୁ ଜଣାପଡ଼ିବ । ଜିଲ୍ଲାବୋର୍ଡ଼ ଓ ମ୍ୟୁନିସିପାଲିଟିମାନ ଜିଲ୍ଲାର ମଫସଲ ଏବଂ ସହରର ଲୋକ ସାଧାରଣଙ୍କ ପ୍ରତିନିଧି ସଭା । ଏହାସବୁ ଆଜିକାଲି ବେ-ସରକାରୀ ଲୋକଙ୍କ ହାତରେ । କୌଣସି ପ୍ରତିଷ୍ଠିତ ପ୍ରଧାନବ୍ୟକ୍ତିଙ୍କ ଆଗମନରେ ଜିଲ୍ଲାବୋର୍ଡ଼ ଓ ମ୍ୟୁନିସିପାଲିଟି ଯେ ଅଭ୍ୟର୍ଥନା ଓ ଅଭିନନ୍ଦନ କରିଥାଏ ତାହା ଜିଲ୍ଲାର ମଫସଲ ଓ ସହର ଲୋକଙ୍କ ପକ୍ଷରୁ ହୁଏ । ସେଥିରୁ ଜିଲ୍ଲାବାସୀଙ୍କର ଆଗନ୍ତୁକ ଅତିଥିଙ୍କ ପ୍ରତି ଆସ୍ଥା ଆଦର ସ୍ନେହ ସମ୍ମାନ

ଜଣାପଡ଼େ ଏବଂ ସେମାନଙ୍କ ଆକାଂକ୍ଷା ଅଭାବ ଅଭିପ୍ରାୟ ମଧ୍ୟ ପ୍ରକାଶ ପାଏ । ଆଗେ କେବଳ ବଡ଼ଲାଟ ଗ୍ରେଟଲାଟମାନଙ୍କୁ ମ୍ୟୁନିସିପାଲିଟି ଜିଲାବୋର୍ଡ଼ମାନେ ଅଭିନନ୍ଦନ ଦେଉଥିଲେ । ସେଥିରେ ଜିଲାର ଜନସାଧାରଣଙ୍କର କିଛି କହିବାର ଅଧିକାର ନ ଥିଲା । କାରଣ ଜିଲ୍ଲାବୋର୍ଡ଼କୁ ଲୋକେ ନିର୍ବାଚନ କରି ମେମ୍ବର ପଠାଉ ନ ଥିଲେ । ଜିଲ୍ଲା ହାକିମଙ୍କ ଅନୁଗ୍ରହରେ ମେମ୍ବର ବଛା ହେଉଥିଲେ ଏବଂ ସରକାରଙ୍କ ଏ ଅନୁଗ୍ରହ ଚିରସ୍ଥାୟୀ କରିବାଲାଗି ମେମ୍ବରମାନେ ବଡ଼ କର୍ତ୍ତାଙ୍କୁ ସମ୍ମାନ ସତ୍କାର କରିବା ସ୍ୱାଭାବିକ । ଏବେ ଜିଲ୍ଲାବୋର୍ଡ଼ ଓ ମ୍ୟୁନିସିପାଲିଟିମାନଙ୍କରେ ବେସରକାରୀ ପ୍ରଭାବ ଅଧିକ ହେବାଦ୍ୱାରା ତ୍ୟାଗୀ ପରୋପକାରୀ ପ୍ରତିଷ୍ଠିତ ଦେଶ ନେତାମାନଙ୍କୁ ବିଶେଷ ବିଶେଷ ଘଟନାରେ ଅଭିନନ୍ଦନ ଦିଆଯାଉଅଛି । ଏହା ଯେ ଦେଶର ଜନସାଧାରଣଙ୍କ ଇଚ୍ଛା ଅନୁରୂପ କାର୍ଯ୍ୟ ବୋଲିବା ବାହୁଲ୍ୟ । ମହାତ୍ମାଗାନ୍ଧୀଙ୍କୁ ପ୍ରତ୍ୟେକ ପ୍ରଦେଶର ମ୍ୟୁନିସିପାଲିଟି ଓ ଜିଲାବୋର୍ଡ- ମାନେ ଅଭିନନ୍ଦନ ଦେଉଛନ୍ତି । ଦେଶର ଜନସାଧାରଣଙ୍କର ତାଙ୍କଠାରେ ଯେପରି ଆନ୍ତରିକ ଭକ୍ତି ଓ ଶ୍ରଦ୍ଧା ରହିଛି ଅଭିନନ୍ଦନ ଦେବା ସେମାନଙ୍କର ଏକାନ୍ତ ଇଚ୍ଛା । ଜିଲାବୋର୍ଡ ମ୍ୟୁନିସିପାଲିଟିମାନେ ଅଭିନନ୍ଦନ ନ ଦେଲେ ଦେଶର ଜନସାଧାରଣଙ୍କ ଇଚ୍ଛା ଅପୂର୍ଣ୍ଣ ରହିବ, କର୍ତ୍ତବ୍ୟରେ ତ୍ରୁଟି ହେବ, "ପୂଜ୍ୟ ପୂଜା ବ୍ୟତିକ୍ରମ" ଘଟିବ ।

ଓଡ଼ିଶା ପ୍ରତି ମହାତ୍ମାଗାନ୍ଧୀଙ୍କର ବିଶେଷ ମମତା ଓ ସହାନୁଭୂତି । ଓଡ଼ିଶାବାସୀ ତାଙ୍କ ମତି ଅନୁସାରେ କାର୍ଯ୍ୟ କରି ନ ପାରିଲେ ସୁଦ୍ଧା ତାଙ୍କ ପ୍ରତି ଯେ ଅନ୍ତରରେ ଗାଢ଼ ଆଦର ଭକ୍ତି ରଖିଛନ୍ତି ସନ୍ଦେହ ନାହିଁ । ମାତ୍ର ଅତ୍ୟନ୍ତ ଦୁଃଖର କଥା ଓଡ଼ିଶା ମ୍ୟୁନିସିପାଲିଟି ଓ ଜିଲ୍ଲାବୋର୍ଡ଼ରେ ମହାତ୍ମାଙ୍କ ଅଭିନନ୍ଦନ ନେଇ ନାନା ଆପତ୍ତି । ସମ୍ବଲପୁର ମ୍ୟୁନିସିପାଲିଟି ବଡ଼ ବାହାଦୂର । ତାଙ୍କର ଆଗମନବାର୍ତ୍ତା ପ୍ରଚାର ହେବାମାତ୍ରେ ସମ୍ବଲପୁର ମ୍ୟୁନିସିପାଲ କମିଶନରମାନେ ଅଭିନନ୍ଦନ ଦେବା ଠିକ୍ କଲେ । ମାତ୍ର ଓଡ଼ିଶାର ଅନ୍ୟାନ୍ୟ ଜିଲାରେ ମ୍ୟୁନିସିପାଲିଟି ଓ ଜିଲ୍ଲାବୋର୍ଡର ଅତିଭକ୍ତ 'ରାଜବଲ୍ଲଭ ମହାପାତ୍ର- ମାନଙ୍କର ଅଭିନନ୍ଦନ ପ୍ରସଙ୍ଗ ପାଇବାଲାଗି ନାନା କୌଶଳ ଚଳାନ୍ତି ଲାଗିଛି । ପୁରୀ ଜିଲାବୋର୍ଡ଼ରେ ଅଧିକାଂଶଙ୍କ ମତରେ ଅଭିନନ୍ଦନ ଦେବା ଠିକ୍ ହେଲା । ତାହା କାର୍ଯ୍ୟରେ ପରିଣତ ନ କରାଇ ଦେବାଲାଗି ସ୍ଥାନୀୟ କର୍ତ୍ତାମାନଙ୍କର ଚେଷ୍ଟା ।" ଶୁଣାଯାଏ ଏଥିଲାଗି ଏ ମାସ ମଧ୍ୟରେ ବୋର୍ଡର ବୈଠକ ପର୍ଯ୍ୟନ୍ତ ହେଉନାହିଁ । ପୁରୀ ମ୍ୟୁନିସିପାଲିଟି "ବରି ମାଡ଼ ଦେଖି କୋଳଥ ଚେପଟା" କାଳେ ବୈଠକ ହେଲେ ଏ ପ୍ରସ୍ତାବ ଉଠିବ ଏଥିଲାଗି ଆଗରୁ ସାବଧାନ ହୋଇ ମିଟିଂ ଡକା ହେଉନାହିଁ । କଟକ ମ୍ୟୁନିସିପାଲିଟି

କମିଶନରମାନେ ଆପଣା ଆପଣା ଭିତରେ ମାରପିଟରେ ଲଗିଛନ୍ତି, ଲାଟସାହେବଙ୍କୁ ଅଭିନନ୍ଦନ ଦେବା ଠିକ୍ କରିଛନ୍ତି । ଯାହାହେଉ, ବଡ଼ ଆନନ୍ଦର କଥା, ଏଥିମଧ୍ୟରେ ମହାତ୍ମାଙ୍କୁ ମଧ୍ୟ ଅଭ୍ୟର୍ଥନା ଦେବାର ସ୍ଥିର କରିଛନ୍ତି । କଟକ ଜିଲ୍ଲାବୋର୍ଡ଼ର ରାଜବଲ୍ଲଭ ଅତିଭକ୍ତ ସରକାରୀ ବେସରକାରୀ ମେମ୍ବରମାନେ ମହାତ୍ମାଗାନ୍ଧୀଙ୍କୁ ଅଭିନନ୍ଦନ ଦେବା ସଙ୍ଗତ ମନେ କଲେନାହିଁ; ତେଣୁ ପ୍ରସ୍ତାବ ଅଗ୍ରାହ୍ୟ ହେଲା । ବାଲେଶ୍ୱର ଜିଲାବୋର୍ଡ ଓ ମ୍ୟୁନିସିପାଲିଟି ଯେ ସର୍ବସମ୍ମତିକ୍ରମେ ଏଭଳି ପ୍ରସ୍ତାବ ଗ୍ରହଣ କରିବ, ତେତେ ସମ୍ଭବପର ନୁହେଁ । ଜିଲ୍ଲାବୋର୍ଡ ମ୍ୟୁନିସିପାଲିଟିମାନଙ୍କର ଏପରି ବ୍ୟବହାର ଦେଖିଲେ ମନରେ ଦୁଃଖ ଏବଂ ଲଜ୍ଜା ଆସେ । ମହାତ୍ମାଗାନ୍ଧୀଙ୍କୁ ଅଭିନନ୍ଦନ ଦେବାରେ ତାଙ୍କର ସମ୍ମାନ ବଢ଼ିବ ନାହିଁ । ବୋର୍ଡ଼ର ସମ୍ମାନ ବଢ଼ିବ, ଓଡ଼ିଶାର ସମ୍ମାନ ବଢ଼ିବ । ଲାଟସାହେବମାନେ ସରକାରଠାରୁ ଦରମା ପାଆନ୍ତି, ଚାକିରୀ କରନ୍ତି, ଚାକିରୀ ସମ୍ପର୍କରେ ସରକାରୀ କାମରେ ଯାହା କରିବାର କରନ୍ତି । ସେଥିର ଫଳ ଲୋକେ ଦେହରେ ମୁଣ୍ଡରେ ସର୍ବଦା ଅନୁଭବ କରୁଛନ୍ତି । ଯଥାର୍ଥ କହିବାକୁ ହେଲେ ଏ ଶ୍ରେଣୀର ଆଗନ୍ତୁକଙ୍କ ପ୍ରତି ଲୋକଙ୍କର ଶ୍ରଦ୍ଧା ନ ଥାଏ କି ଭକ୍ତି ନ ଥାଏ । ମାମୁଲିଗଡ଼ରେ ଅଭିନନ୍ଦନ ଦିଆହୁଏ; କିନ୍ତୁ ମହାତ୍ମାଗାନ୍ଧୀଙ୍କ ପରି ଆଗନ୍ତୁକ ଅତିଥିଙ୍କଠାରେ ଲୋକଙ୍କର ସ୍ୱାଭାବିକ ଭକ୍ତି, ସ୍ନେହ ଓ ସମ୍ମାନ । ଏଥିରେ ପରିଚୟ ଦେବାଲାଗି ବୋର୍ଡର ମେମ୍ବରମାନଙ୍କର ଯେବେ ସାହସ ନ ହୁଏ, ଏପରି ଅତି ନିର୍ଦ୍ଦୋଷ ବ୍ୟାପାରରେ ଏମାନେ ଯେବେ ସ୍ଥାନୀୟ କର୍ତ୍ତାମାନଙ୍କ ଭୟ ଓ ଇଙ୍ଗିତରେ ଚାଳିତ ହୁଅନ୍ତି, ତାହେଲେ ଲୋକପ୍ରତିନିଧି ହୋଇ କୌଣସି ବୋର୍ଡ଼ରେ ବସିବାରେ ଏମାନଙ୍କର କି ଅଧିକାର ବା ଦାବୀ ଅଛି ? ଓଡ଼ିଶାର କି ସହର କି ମଫସଲର ଲୋକ-ସାଧାରଣଙ୍କର ରାଜନୈତିକ ଜୀବନ ଏପର୍ଯ୍ୟନ୍ତ ଜାଗିନାହିଁ, ପ୍ରତିନିଧିମାନଙ୍କୁ ବହୁତ ତାଡ଼ନା ଦେବାକୁ ସେମାନେ ଶିଖିନାହାନ୍ତି । ତାହାହେଲେ ଆଜି ବୋର୍ଡ଼ର ଅତିଭକ୍ତ ମେମ୍ବର-ମାନେ ମୁଣ୍ଡଟେକି କାଟରେ ଚାଲନ୍ତେ ନାହିଁ । ମହାତ୍ମାଗାନ୍ଧୀଙ୍କ ବର୍ତ୍ତମାନ ନୀତି ଓ କାର୍ଯ୍ୟ ଦୃଷ୍ଟିରେ ତାଙ୍କୁ ଅଭିନନ୍ଦନ ଦେବାରେ କିଛି ବାହାଦୁରୀ ନାହିଁ; ସେପରି ହୋଇଥିଲେ ସରକାର ଅନୁଗତ ରାଜା ମହାରାଜାମାନେ ତାଙ୍କୁ ଅଭ୍ୟର୍ଥନା କରିବାକୁ ସାହସୀ ହେଉ ନ ଥାନ୍ତେ । ମାତ୍ର ଓଡ଼ିଶାର ଜିଲାବୋର୍ଡ଼ ମ୍ୟୁନିସିପାଲିଟିମାନଙ୍କର ଏତେସୁଦ୍ଧା ସାହସ ହେଉନାହିଁ । ଏହାଠାରୁ ବଳି ଉତ୍କଳ ପକ୍ଷରେ ଅଧିକ ନିନ୍ଦାର ବିଷୟ କଅଣ ହୋଇ ପାରେ ? ଯେଉଁମାନେ ଦେଶକୁ ଏପରି ନିନ୍ଦାରେ ପକାଇ ସ୍ଥାନୀୟ କର୍ତ୍ତାମାନଙ୍କ ନିକଟରେ ବାହାଦୁରୀ ନେଉଛନ୍ତି, ସମୟରେ ଦେଶର ଜନସାଧାରଣ ସେମାନଙ୍କୁ ଯେ ଦାୟୀ କରିବେ ଏହା ସେମାନେ ମନେ ରଖନ୍ତୁ ।

('ସମାଜ' ତା ୩ । ୧୨ । ୨୭)

# ସାଧାରଣ କାର୍ଯ୍ୟକ୍ଷେତ୍ରରେ ଭୀରୁତା

ଜମା ନ ହେବା ଅପେକ୍ଷା ବରଂ ବଳାତ୍କାରରେ ହେବା ଭଲ । ପୁରୀ ମ୍ୟୁନିସିପାଲିଟିରେ ମହାତ୍ମାଗାନ୍ଧୀଙ୍କୁ ଅଭିନନ୍ଦନ ଦେବା ଅବଶେଷରେ ଧାର୍ଯ୍ୟ ହୋଇଅଛି । ଏ ସମ୍ପର୍କରେ ପୁରୀର ଉଦୀୟମାନ ଯୁବକ ଶ୍ରୀମାନ ଜଗନ୍ନାଥ ମିଶ୍ରଙ୍କ ଉଦ୍ୟମ ନିଶ୍ଚୟ ପ୍ରଶଂସନୀୟ । ମ୍ୟୁନିସିପାଲିଟିର ଗଲା ବୈଠକରେ ସେ ଏ ପ୍ରସ୍ତାବ ଉଠାଇଥିଲେ । ପ୍ରଥମେ ତାଙ୍କ ପ୍ରସ୍ତାବର ଅନୁମୋଦନ କରିବାକୁ କେହି ଉଠି ନ ଥିଲେ । ପରେ ସେ କହିଥିଲେ ଯେ ପ୍ରସ୍ତାବ ଅତି ନିର୍ଦ୍ଦୋଷ ; ମହାତ୍ମାଗାନ୍ଧୀଙ୍କୁ ଅନେକ ସ୍ଥାନରେ ମ୍ୟୁନିସିପାଲିଟି ଓ ଜିଲ୍ଲାବୋର୍ଡ଼ମାନେ ଅଭିନନ୍ଦନ ଦେଇଛନ୍ତି; ଏ ପ୍ରସ୍ତାବ ଅନୁମୋଦିତ ହେଲେ ବୋର୍ଡ଼ର ବିଚାରରେ ଆସିବ, ନ ହେଲେ ମୂଳରୁ ଉପେକ୍ଷିତ ହେବ । ଏହିପରି କେତେକ କଥା କହିବା ପରେ ପ୍ରସ୍ତାବ ଅନୁମୋଦିତ ହୋଇଥିଲା । କେତେକ ତର୍କ ବିତର୍କ ପରେ ଭୋଟ ନିଆଯିବାରେ ଦେଖାଗଲା ଯେ କେବଳ ପାଞ୍ଚଜଣ ମାତ୍ର କମିଶନର ଏ ପ୍ରସ୍ତାବ ସପକ୍ଷରେ ଭୋଟ ଦେଲେ । ନିଜେ ଚେୟାରମାନ ଶ୍ରୀ ଶଚନ୍ଦ୍ର ଘୋଷ ଏବଂ ଶିକ୍ଷା ବିଭାଗୀୟ ଜିଲ୍ଲା ଇନସ୍‌ପେକ୍‌ଟର ବିପକ୍ଷରେ ଭୋଟ ଦେଲେ । ବାକିମାନେ କୌଣସି ଆଡ଼େ ଭୋଟ ନ ଦେଇ ମଧ୍ୟସ୍ଥ ଏବଂ ନୀରବ ହୋଇ ରହିଲେ । ଶିକ୍ଷା ବିଭାଗୀୟ ଜିଲ୍ଲା ଇନସ୍‌ପେକ୍‌ଟର ବିପକ୍ଷରେ ଭୋଟ ଦିଅନ୍ତେ ଏହା ଜଣାଶୁଣା କଥା, ମାତ୍ର ଶ୍ରୀଶ ବାବୁ ସଫା ବିପକ୍ଷରେ ଭୋଟ ଦେବେ ଏହା ତେତେ ଆଶଙ୍କା କରାଯାଇ ନ ଥିଲା । ଦିନେ ପୁରୀରେ ସାଧାରଣ କାର୍ଯ୍ୟକ୍ଷେତ୍ରରେ ସ୍ୱର୍ଗୀୟ ହରିଶ୍ଚନ୍ଦ୍ର ଘୋଷ ନାନା ଘଟଣାରେ ଯେ ସ୍ୱାଧୀନତା ଓ ନିରପେକ୍ଷତା ଦେଖାଇଥିଲେ ତାହି ସଙ୍ଗେ ତାଙ୍କ ଜ୍ୟେଷ୍ଠାତ୍ମଜଙ୍କର ଏ ଗତିବିଧି ତୁଳନା କଲେ ମନକୁ ଆସେ "କିସ ପୁଣି ଦେଖା ନ ଯାଇ ବଞ୍ଚିଥିଲେ ଜୀବରେ ।" କଟକ ମ୍ୟୁନିସିପାଲିଟି ଚେୟାରମାନ ସରକାରୀ ପେନ୍‌ସନ ଭୋଗୀ ହୋଇ ସୁଦ୍ଧା ଏଭଳି ପ୍ରସ୍ତାବ ସପକ୍ଷରେ ପ୍ରକାଶ୍ୟରେ ଭୋଟ ଦେବାକୁ ସାହସ ନ କରି ବିପକ୍ଷରେ ଭୋଟ ନ ଦେଇ ନୀରବ ରହିବାଦ୍ୱାରା ନିଜର ଅଭିପ୍ରାୟ ସଫା ଜଣାଇ ଦେଇଛନ୍ତି । ମାତ୍ର ବେସରକାରୀ ସ୍ୱାଧୀନଜୀବୀ ପୁରୀ ମ୍ୟୁନିସିପାଲିଟି ଚେୟାରମାନ ଗାନ୍ଧୀ ଘଟଣାରେ ଦେବାନବାହାଦୁରଙ୍କୁ ବଳିଗଲେ । ପୁରୀ ମ୍ୟୁନିସିପାଲିଟିର ଅନ୍ୟ ଯେ ମେମ୍ବରମାନେ କୌଣସିଆଡ଼େ ଭୋଟ ନ ଦେଇ ନୀରବ ରହିଲେ ସେମାନଙ୍କ ବିଚକ୍ଷଣତାକୁ କେହି ପ୍ରଶଂସା କରିବେ ନାହିଁ । ନୀରବତାରୁ ପ୍ରସ୍ତାବରେ ଏମାନଙ୍କର ସମ୍ମତି ସହଜରେ ଜଣା ପଡ଼ୁଛି । ମାତ୍ର ଅନ୍ୟଆଡ଼ୁ ଭୟର ଆଶଙ୍କା ବା ଅନୁଗ୍ରହର ଆଶାରଖି ସମ୍ମତି ପ୍ରକାଶ

କରିବାକୁ ଏମାନଙ୍କର ସାହସ ନାହିଁ । ସାଧାରଣ କାର୍ଯ୍ୟକ୍ଷେତ୍ରରେ ଏପରି କ୍ଳୀବତ୍ୱ ଆମ ଦେଶରେ ଅନେକଙ୍କଠାରେ ଦେଖାଯାଏ । ଏମାନେ କୌଣସି କୁଳର ନୁହନ୍ତି । ଏଭଳି ଭୀରୁତା ଅତୀବ ଶୋଚନୀୟ । ଏଭଳି ଭୀରୁତା ସାଧାରଣ କାର୍ଯ୍ୟକ୍ଷେତ୍ରରେ ଯେତେ କମ୍ ପ୍ରକାଶ ପାଏ ତେତେ ଭଲ । ଜୀବନର ଅନ୍ୟାନ୍ୟ କ୍ଷେତ୍ରରେ ଯେପରି, ସାଧାରଣ କାର୍ଯ୍ୟକ୍ଷେତ୍ରରେ ସେହିପରି ସତ୍ୟ ଓ ସାହସ ପ୍ରଧାନ ଅବଲମ୍ବନ । ଯାହା ଭଲ ବୋଲି ବୁଝୁଛ ଓ ବିଶ୍ୱାସ କରୁଛ କାହାରି ଅପେକ୍ଷାରେ ବା ଭୟ ନ ରଖି ତାହା ପ୍ରକାଶ କର । ଅବଶ୍ୟ ବୁଝିବାରେ ଭୁଲ ରହିପାରେ, ସେଥିଲାଗି କାହାକୁ ଦୋଷ ଦିଆଯାଇ ନ ପାରେ କିମ୍ବା କୌଣସି ପ୍ରସଙ୍ଗରେ କେହି ଯେବେ ହଠାତ୍ କିଛି ସିଦ୍ଧାନ୍ତ କରି ନ ପାରି ସପକ୍ଷ ବା ବିପକ୍ଷରେ ମତ ନ ଦେଇ ପାରନ୍ତି ତାହା ଦୋଷାବହ ନୁହେଁ । ମାତ୍ର ମନରେ ଯାହା ବୁଝିଥିବ, ତହିଁର ଠିକ୍ ବିପରୀତ ଦିଗରେ ମତ ଦେବା ବା ଆଦୌ କୌଣସି ମତପ୍ରକାଶ ନ କରିବା ଆତ୍ମହତ୍ୟା, ଭୀରୁତା ଏବଂ କାପୁରୁଷତା । ଅନେକେ ରାଜନୀତି କ୍ଷେତ୍ରରେ ଏହାକୁ ହିଁ ଚତୁରତା ଓ ବିଚକ୍ଷଣତା ବୋଲି ମନେ କରନ୍ତି । ଏଥିରେ ସେମାନଙ୍କର ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି କେତେକାଂଶେ ହୋଇପାରେ ମାତ୍ର ସାଧାରଣଙ୍କର ଅନିଷ୍ଟ । ଆଜିକାଲି ଯୁଗରେ ଗୋଟାଏ ଗୋଟାଏ ଭୋଟ ଏପାଖ ସେପାଖ ହେବା ଫଳରେ ଆକାଶ ପାତାଳର ପାର୍ଥକ୍ୟ ଘଟିଥାଏ । ଭୁମ୍ବିଚ କହିବାର ଶକ୍ତି ନାହିଁ ? ନ କହ, ନେତୃତ୍ୱ ନେବାର ଶକ୍ତି ନାହିଁ । ନ ନିଅ, ମାତ୍ର ମତ ଦିଆଯିବାବେଳେ ସାହସ କରି ନିଜ ସ୍ୱାର୍ଥକୁ ନ ଗୁହିଁବା, କାହାରି ଅପେକ୍ଷା ନ ରଖି ଯାହା ସର୍ବସାଧାରଣଙ୍କ ଶ୍ରେୟ ବୋଲି ବୁଝୁଛ ତାହା ସମର୍ଥନ କରିବା ଲାଗି ହାତଟା ଟେକ । ଅବଶ୍ୟ ଆମ୍ଭେମାନେ ବୁଝୁଛୁଁ ଅନେକଙ୍କ ପକ୍ଷେ ଏହି ହାତଟେକାଟା ତେତେ ସହଜ ନୁହେଁ ମାତ୍ର ଯେଉଁମାନେ ଏତେଦୂର ଦୁର୍ବଳ ଏବଂ ଯେଉଁମାନଙ୍କର ଏତିକିକ ସାହସ ନାହିଁ ସେମାନେ ସାଧାରଣଙ୍କ କାର୍ଯ୍ୟକ୍ଷେତ୍ରରେ ନ ପଶିବା ଭଲ । ସ୍ୱାର୍ଥସିଦ୍ଧି ବା ବ୍ୟକ୍ତିଗତ ପ୍ରତିପତ୍ତି ଲାଗି ଅନ୍ୟାନ୍ୟ ଅନେକ କ୍ଷେତ୍ର ଅଛି । ସାଧାରଣ କାର୍ଯ୍ୟକ୍ଷେତ୍ର ଏକ ପ୍ରକାର ସଂଗ୍ରାମଭୂମି, ସେଠାରେ ସାହସୀ ବୀର କେବଳ ଲୋଡ଼ା । ଆମ୍ଭେମାନେ କେବଳ ଗାନ୍ଧୀ ଅଭ୍ୟର୍ଥନା ସମ୍ପର୍କରେ ବା କେବଳ ପୁରୀ ବା କଟକ ମ୍ୟୁନିସିପାଲିଟି ବିଷୟରେ ଏହା କହୁନାହୁଁ । ମ୍ୟୁନିସିପାଲିଟି ଜିଲ୍ଲାବୋର୍ଡ଼ କାଉନ୍‌ସିଲ୍ ଆସେମ୍ବ୍ଲି, ସିନେଟ, ସିଣ୍ଡିକେଟ ବା ଅନ୍ୟ ଯେ କୌଣସି ରାଷ୍ଟ୍ରୀୟ ବା ସାଧାରଣ ଅନୁଷ୍ଠାନରେ ସ୍ୱାଧୀନ ମତ ପ୍ରକାଶିତ ନ ହେଲେ ସେ ଅନୁଷ୍ଠାନର ଉଦ୍ଦେଶ୍ୟ ସିଦ୍ଧ ହେଇ ନାହିଁ । ବଡ଼ ବଡ଼ ସରକାରୀ ଲୋକେ ମଧ୍ୟ ଏଭଳି ଭୀରୁତାକୁ ପସନ୍ଦ କରନ୍ତି ନାହିଁ । ଏହାଦ୍ୱାରା ସେମାନଙ୍କ ଉଦ୍ଦେଶ୍ୟ ସିଦ୍ଧ ହୋଇପାରେ; ସୁତରାଂ ଏପରି ଦୁର୍ବଳ ଭୀରୁଙ୍କ ପିଠିରେ

ସାବାସ୍ ସାବାସ୍ କହି ହାତ ମାରି ପାରନ୍ତି । ସେଥିରେ ତୁମେ ସପ୍ତସ୍ୱର୍ଗ ଉପରକୁ ଉଠିଲପରି ମନେ କରୁଥିଲବେଳେ ସେମାନେ ହୁଏତ ଭିତରେ ଭିତରେ ହସୁଥାନ୍ତି, ନ ହେଲେ ତୁମକୁ କୃପାର ପାତ୍ର ବୋଲି ମନେ ଭାବୁଥାନ୍ତି । ପରେ ହୁଏତ ତୁମକୁ ଉପାଧିରେ ମଣ୍ଡି ଦେବେ । ତାହାର ଅର୍ଥ ଯେ ତୁମକୁ ଦୁର୍ବଳ ଦେଖି ତୁମ ବେକରେ ଗୋଟାଏ ଶିକୁଳି ବାନ୍ଧିଦେବେ । ତୁମେ ସେଥିରେ ଆପଣାକୁ ଭାଗ୍ୟବାନ ମନେ କରିବ, ବିଚାରିବ ତୁମେ ତାଙ୍କର ଭାରି ପ୍ରିୟ । ମାତ୍ର ତାଙ୍କ କୁକୁରଠାରୁ ତମେ ଅଧିକ ପ୍ରିୟ କି ? ତୁମେ ଯାହା ବିଚାର, ଯାହାର ସାହସ ଅଛି, ସତ୍ୟପ୍ରକାଶ କରିବାକୁ ହୃଦୟରେ ବଳ ଅଛି ଶତ୍ରୁ ସୁଦ୍ଧା ତା ପାଖରେ ମୁଣ୍ଡ ନୁଆଁଇବ । ଯାହାର ସେତକ ନାହିଁ ସେ ଭୀରୁ, ପ୍ରତି ମୁହଁରେ ଯେ ଯେତେ ଆଦର ଦେଖାନ୍ତୁ ପଛେ ଅନ୍ତରରେ ତାହାର ଖାତିର, ଆସ୍ଥା ବା ଗୌରବ ନ ଥାଏ । ସାଧାରଣ କାର୍ଯ୍ୟକ୍ଷେତ୍ରରେ ଯେଉଁମାନେ ଦେଖାଯାଆନ୍ତି ସେହିମାନେ ହିଁ ଦେଶର ପ୍ରତିନିଧି ସ୍ଥାନୀୟ ବ୍ୟକ୍ତି । ସେମାନଙ୍କ ଭାବ, ଗତି ଓ କାର୍ଯ୍ୟରୁ ଜାତୀୟ ଚରିତ୍ର ଜଣାପଡ଼େ ଏବଂ ସେମାନଙ୍କ ମତ ଓ କାର୍ଯ୍ୟଦ୍ୱାରା ଅନେକ ସମୟରେ ଲୋକସାଧାରଣଙ୍କ ମତ ପ୍ରଭାବିତ ହୁଏ । ତେଣୁ ସାଧାରଣ କାର୍ଯ୍ୟ କ୍ଷେତ୍ରରେ ନିରପେକ୍ଷ, ସତ୍ୟନିଷ୍ଠ, ସାହସୀବ୍ୟକ୍ତି ଯେତେ ଅଧିକ ସଂଖ୍ୟାରେ ପଶନ୍ତି ସେତେ ମଙ୍ଗଳ ।

(‘ସମାଜ’, ତା ୧୦ । ୧୨ । ୨୭)

---

# ଓଡ଼ିଶାରେ ମହାତ୍ମାଗାନ୍ଧୀଙ୍କ ଉପଦେଶ

ଏଥର ମହାତ୍ମାଗାନ୍ଧୀ ମୁଖ୍ୟଭାବରେ ଓଡ଼ିଶାବାସୀଙ୍କୁ ଚାରୋଟି ଉପଦେଶ ଦେଇଛନ୍ତି ।

୧ । ଭୟତ୍ୟାଗ; ରାଜା ଜମିଦାର, ପୋଲିସ ବା ଅନ୍ୟ କାହାରିକୁ ଡରନାହିଁ; ମନୁଷ୍ୟକୁ ମନୁଷ୍ୟ ଡରିବାର କାରଣ ନାହିଁ; କେବଳ ଈଶ୍ୱରଙ୍କୁ ଡର ।

୨ । ଆଳସ୍ୟରେ ବୃଥା ସମୟ କଟାଅ ନାହିଁ । ସତ୍ ଉପାୟରେ ଆପଣାର ଜୀବିକା ଅର୍ଜ୍ଜନ କର । ଯେତେବେଳେ ସମୟ ପାଉଛ ସୂତାକାଟ; ଖଦଡ଼ ପିନ୍ଧ ।

୩ । ମନୁଷ୍ୟ ମନୁଷ୍ୟ ଭିତରେ ଭେଦ ରଖନାହିଁ । କୌଣସି ମନୁଷ୍ୟକୁ ଅଛୁଆଁ ଜ୍ଞାନ କରନାହିଁ, ଘୃଣା କର ନାହିଁ ।

୪ । ମଦ, ଅଫିମ, ଗଞ୍ଜା, ଆଦି ନିଶା ଖାଅନାହିଁ; ବ୍ୟଭିଚାର ଦୁରାଚାର କରନାହିଁ ।

ଏ ସବୁ ପୁରୁଣା କଥା; ମହାତ୍ମାଗାନ୍ଧୀ ମଧ୍ୟ କୌଣସି ନୂଆକଥା ଉପଦେଶ ଦେଉଛନ୍ତି ବୋଲି କହୁ ନାହାନ୍ତି । ଭାରତରେ ବା ଅନ୍ୟାନ୍ୟ ଦେଶରେ ମହାପୁରୁଷମାନେ, ଶାସ୍ତ୍ରକାର ଏବଂ ପ୍ରଧାନ ଆଚାର୍ଯ୍ୟମାନେ ଯାହା କହି ଯାଇଛନ୍ତି ସେ କେବଳ ତାହାହିଁ କହୁଛନ୍ତି । ଆଜକାଲି ମଧ୍ୟ ଆଉ ଅନେକ ଲୋକଙ୍କଠାରୁ ଏ ଉପଦେଶ ଶୁଣାଯାଏ । ତେବେ ମହାତ୍ମାଗାନ୍ଧୀଙ୍କର ବିଶେଷତ୍ୱ ଏହି ଯେ ସେ ଯାହା କହୁଛନ୍ତି ନିଜେ କାର୍ଯ୍ୟରେ ତାହାହିଁ କରୁଛନ୍ତି । ସାଧନ ବଳରେ ନିଜର ଜୀବନକୁ ଏପରି କରିଛନ୍ତି ଯେ ତାଙ୍କ ଉପଦେଶରେ ସେ ଜୀବନ ପ୍ରକାଶ ପାଉଛି ।

ଓଡ଼ିଶାବାସୀ ପକ୍ଷରେ ଏ ଚାରୋଟି ଉପଦେଶ ଏକାନ୍ତ ଆବଶ୍ୟକ ଏବଂ ଉପାଦେୟ । ଓଡ଼ିଆମାନେ ଡରରେ ମରି ଯାଉଛନ୍ତି । ରାଜାକୁ ଡର, ଜମିଦାରକୁ ଡର, ପୋଲିସକୁ ଡର, ଷ୍ଟେସନ ଟିକଟ କଲେକ୍ଟରକୁ ଡର । ଓଡ଼ିଆ ନ ଡରୁଛି କାହାକୁ ଏବଂ ତାକୁ ନ ଡରାଉଛି କିଏ ? ଡରରେ ଓଡ଼ିଆପ୍ରାଣ ଏପରି ସଙ୍କୁଚିତ ହୋଇଗଲାଣି ଯେ ସେ ବଞ୍ଚିଥାଇ ମଲାପରି ।

ଓଡ଼ିଆ ଦରିଦ୍ର, ପେଟପୂରାଇ ଦୁଇବେଳା ଅଧେଲୋକ ଖାଇବାକୁ ପାଆନ୍ତି ନାହିଁ । ମାତ୍ର ଅବସ୍ଥା ଭଲ କରିବାକୁ ଉଦ୍ୟମ ନାହିଁ ? ଜଣେ ସାମାନ୍ୟ କାଳ ରୋଜଗାର କରୁଛି ତ ଘରର ଆଉ ସମସ୍ତେ ତାକୁ ଗୁହିଁ ରହିଛନ୍ତି । ଅଣ୍ଟାରେ ଯେବେ ଦୁଇଅଣା ପଇସା ଅଛି ବା ଉପରବେଳା ଖାଇବାକୁ ଅଛି ଓଡ଼ିଆ କାମ କରିବାକୁ ବାହାରିବ ନାହିଁ । କୁଣ୍ଠା ଖଣ୍ଡେକ ଉଖଣ୍ଡ ନ କରି ଯେବେ ତା ମୁହଁରେ କେଉଁଆଡ଼ୁ ଆସି ଆହାର ପଡ଼ନ୍ତା ତାହାହେଲେ ତାର ମହାଆନନ୍ଦ । ଉଦ୍ୟମ ଏବଂ ଅଧ୍ୟବସାୟ ନ କଲେ ଜଗତରେ କାହାରିକୁ ସୁଖ ମିଳେନାହିଁ, ଓଡ଼ିଆମାନେ ଏହା ବୁଝି ନାହାନ୍ତି । ମହାତ୍ମାଗାନ୍ଧୀ କହନ୍ତି . ଯେ ଯାହାର ଜୀବିକା କରନ୍ତୁ ଏବଂ ସେ ଅର୍ଜନ ସଙ୍ଗେ କିଛି ମିଶାଇବା ଲାଗି ଯେତେବେଳେ ସମୟ ମିଳୁଛି ସୂତା କାଟନ୍ତୁ । ଯାହାର ଅନ୍ୟ କୌଣସି ଜୀବିକା ନାହିଁ ସେ, କେବଳ ସୂତା କାଟୁ । ବୃଥାରେ ଖାଲି ବସି ମୁହୂର୍ତ୍ତେ ନଷ୍ଟ ନ କରୁ, ଏଥିରେ ଦରିଦ୍ରତା ଘୁଞ୍ଚିବ ।

ମନୁଷ୍ୟକୁ ଅଛୁଆଁ ଜ୍ଞାନ କରିବାଦ୍ୱାରା ମନୁଷ୍ୟ ପ୍ରତି ମନୁଷ୍ୟର ଘୃଣା ହେଉଛି; ଅଛୁଆଁ ଜାତିମାନେ କ୍ରମେ ସମାଜରୁ ଅନ୍ତର ହୋଇ ଯାଉଛନ୍ତି ଏବଂ ଅନେକେ ସେମାନଙ୍କ ମଧ୍ୟରୁ ହିନ୍ଦୁଧର୍ମ ଛାଡ଼ି ଅନ୍ୟ ଧର୍ମରେ ପଶୁଛନ୍ତି । ନ୍ୟାୟ ଓ ଧର୍ମପଥରେ ରହି ଯେ ଯାହାର ବ୍ୟବସାୟ ଓ ଜୀବିକା କରୁ; କୌଣସି ହାନିନାହିଁ । ତାହାହିଁ କରିବା ଉଚିତ । ମେହେନ୍ତରଠାରୁ ବ୍ରାହ୍ମଣ ପର୍ଯ୍ୟନ୍ତ ଯେ ଯାହା କରୁଛନ୍ତି ସମାଜର ହିତ ଲାଗି । ଏଥିରୁ କାହାରି କାମ ବନ୍ଦହେଲେ ସମାଜ ଯନ୍ତ୍ର ଚାଲିବନାହିଁ । ତେଣୁ କାହାର କାର୍ଯ୍ୟ ହେୟ ବା ଘୃଣ୍ୟ ନୁହେଁ । ଏହି ଦୃଷ୍ଟିରେ ସମାଜର ଭିନ୍ନ ଭିନ୍ନ ଶ୍ରେଣୀ ଏବଂ ବର୍ଣ୍ଣର ଲୋକେ ପରସ୍ପର ସଙ୍ଗେ ଏକ ସୂତ୍ରରେ ବନ୍ଧ ହୋଇଛନ୍ତି । କେହି କାହାରିକୁ ଛାଡ଼ି ପାରିବ ନାହିଁ । ତେଣୁ କେତେ ଲୋକଙ୍କୁ ଅଛୁଆଁ ରଖି ଦୂର ଦୂର କରିବା ସମାଜର ଅନିଷ୍ଟ ଏବଂ ଜାତିର କଳଙ୍କ ।

ଓଡ଼ିଶା ଦରିଦ୍ର ଏବଂ ବର୍ଷକୁ ବର୍ଷ ବନ୍ୟା ଓ ଦୁର୍ଭିକ୍ଷରେ ଆକ୍ରାନ୍ତ ହେଲେ ସୁଦ୍ଧା ଏଠାରେ ଅବକାରୀ ବିଭାଗର ଉପାର୍ଜନ କମ୍ ନୁହେଁ । ଅଫିମ, ମଦ, ଗଞ୍ଜା ଦିନକୁ ଦିନ ଅଧିକ ଖର୍ଚ୍ଚ ହେଉଛି । ସରକାର ଏ ସବୁ ଜିନିଷର ଦର ବଢ଼ାଇଲେ ସୁଦ୍ଧା ଲୋକେ ଛାଡ଼ୁନାହାନ୍ତି । ଏହାଦ୍ୱାରା ଅକର୍ମଣ୍ୟ ହେଉଛନ୍ତି । ଅନେକେ ଜମିବାଡ଼ି ଘରଦ୍ୱାର ବିକୁଛନ୍ତି, ତଥାପି ଚେତୁ ନାହାନ୍ତି କିମ୍ବା ସେମାନଙ୍କ ଦୁର୍ଦ୍ଦଶା ଦେଖି ଅନ୍ୟମାନେ ଶିଖୁ,

ନାହାନ୍ତି । ନିଶାନିବାରଣ ନ ହେଲେ ଓଡ଼ିଆଙ୍କ ପ୍ରକୃତି ବଦଳିବ ନାହିଁ, ଆଳସ୍ୟ ଗ୍ରୁଚିବ ନାହିଁ କି ସେମାନଙ୍କ ହୃଦୟରେ ଦମ୍ଭ ସାହସ ଓ ଶକ୍ତି ଆସିବ ନାହିଁ । ..

ଓଡ଼ିଆ ଜାତିର ନାଡ଼ୀ ପରୀକ୍ଷା କରି ମହାତ୍ମାଗାନ୍ଧୀ ରୋଗ ଠିକ୍ କରିଛନ୍ତି । ଅନ୍ୟମାନେ ଯେ ଏହା ନ ଜାଣିଥିଲେ, ନୁହେଁ; ଆମ୍ଭେମାନେ କ୍ରମାଗତ ଏହି ବିଷୟରେ ଲେଖି ଆସୁଅଛୁଁ । ତେବେ ତାଙ୍କପରି ମାନବ ଚରିତ ବୁଝିବା ଜଣେ ବିଚକ୍ଷଣ ବିଶିଷ୍ଟ ବ୍ୟକ୍ତିଙ୍କର ରୋଗ ପରୀକ୍ଷା ଏବଂ ଆରୋଗ୍ୟ ବ୍ୟବସ୍ଥାରେ ଜନସାଧାରଣଙ୍କର ଅଧିକ ଆସ୍ଥା ଓ ବିଶ୍ୱାସ ହେବାର କଥା । ଏହି ଗୁରୁ ବିଷୟରେ ବର୍ତ୍ତମାନ ଓଡ଼ିଶାରେ ସଦୁବିଦ୍ଧ ଉଦ୍ୟମ ଆବଶ୍ୟକ । ଏ ଗୁରୋଟି ବିଷୟ ପରସ୍ପର ସଙ୍ଗେ ଜଡ଼ିତ । ଓଡ଼ିଆ ଆଳସ୍ୟ ଗ୍ରୁଚିଲେ କାର୍ଯ୍ୟରେ ତତ୍ପର ହେବ, ମୁହୂର୍ତ୍ତେ ସମୟ ନଷ୍ଟ କରିବ ନାହିଁ । ବୃଥା ବ୍ୟସନ, ପରଚର୍ଚ୍ଚା, ପର ଦ୍ରୋହରେ ସମୟ ନ କଟାଇ ସେହି ସମୟରେ ପଇସା ଉପାର୍ଜନ କରିବାକୁ ସଚେଷ୍ଟ ହେବ; ଏପରି ଚେଷ୍ଟାରେ ପ୍ରବର୍ତ୍ତିଲେ ସେ ସୂତା କାଟିବାକୁ କୁଣ୍ଠିତ ହେବନାହିଁ । ଆଳସ୍ୟ ଗ୍ରୁଚି କାମରେ ଲାଗିଲେ ନିଶାଖିଆ ଗ୍ରୁଚିବ; ଏବଂ ନିଶାଖିଆ ଗ୍ରୁଚିଲେ ଅଳସୁଆ ଓ ନିଷ୍କର୍ମା ହୋଇ ବସି ରହିବ ନାହିଁ । ଏଥିରେ ତାହାର ଅବସ୍ଥା କ୍ରମେ ଭଲ ହେବ । ନିଜେ ଉଦ୍ୟମଶୀଳ ଓ ଉତ୍ସାହୀ ହୋଇ ଅବସ୍ଥା ଭଲ କରିପାରିଲେ ସେ କାହାରିକୁ ଡରିବନାହିଁ । ଦୀନ ଦରିଦ୍ର ଅଛୁଅଁ ଜାତିମାନଙ୍କ ପ୍ରତି ତାହାର କ୍ରମେ ସହାନୁଭୂତି ହେବ; ସେ କୌଣସି କାର୍ଯ୍ୟକୁ ନୀଚ ବା ଘୃଣ୍ୟ ବିଚାରିବ ନାହିଁ ।

ମହାତ୍ମାଗାନ୍ଧୀଙ୍କ ଉପଦେଶ ପ୍ରତି ମନଧ୍ୟାନ ଦେଇ ତାହା ପାଳନ କରିବାଲାଗି ଆମ୍ଭେମାନେ ପ୍ରତ୍ୟେକ ଉତ୍କଳବାସୀଙ୍କୁ ଅନୁରୋଧ କରୁଅଛୁଁ ।

('ସମାଜ' ତା ୨୪ । ୧୨ । ୨୭)

---

# ଗଡ଼ଜାତ ଗଞ୍ଜଣା

ନୀଳଗିରିର ସହସ୍ରାଧିକ ପ୍ରଜା ଆଜି ଷ୍ଟେଟ ଛାଡ଼ି ଚାଲି ଆସିଛନ୍ତି । ବାଲେଶ୍ୱର ଷ୍ଟେସନ ପାଖେ ଖୋଲା ପଡ଼ିଆରେ ଖରା ଶୀତ ସହି ସେମାନେ ପଡ଼ି ରହିଛନ୍ତି ଏବଂ ଆପଣାର ଦୁଃଖଦୁର୍ଗତି ସରକାରଙ୍କୁ ଓ ଦେଶର ଜନସାଧାରଣଙ୍କୁ ଜଣାଉଛନ୍ତି । ନୀଳଗିରି ଅତ୍ୟାଚାର ବୋଲି ଖଣ୍ଡେ ପୁସ୍ତିକାରେ ସେମାନେ ଷ୍ଟେଟର ସକଳପ୍ରକାର ଅତ୍ୟାଚାରର ବର୍ଣ୍ଣନା କରି ସାଧାରଣରେ ପ୍ରଚାର କରୁଛନ୍ତି । ଆମ୍ଭେମାନେ ସେଥିରୁ ଖଣ୍ଡେ ପାଇଅଛୁ । ଏ ପୁସ୍ତିକାରେ ଲେଖାଯାଇଥିବା ଘଟନା ଓ ଅତ୍ୟାଚାରମାନ ଆମ୍ଭମାନଙ୍କ ପକ୍ଷରେ ନୂତନ ନୁହେଁ । ଊଣାଅଧିକେ ଅଧିକାଂଶ ଗଡ଼ଜାତରେ ଏହିପରି ଘଟୁଅଛି । ତେବେ ଅନ୍ଧାରି ମୂଳକରେ ବାହାର ଆଲୁଅ ପ୍ରାୟ ପଡ଼େ ନାହିଁ; ତେଣୁ ସବୁକଥା ସାଧାରଣରେ ପ୍ରକାଶ ପାଏ ନାହିଁ । ଓଡ଼ିଶା ଗଡ଼ଜାତମାନଙ୍କର ଆଜିକାଲି ମୋଗଲବନ୍ଦି ସଙ୍ଗେ କୌଣସି ସମ୍ପର୍କ ନାହିଁ । ଓଡ଼ିଶାର କମିଶନର ଆଗେ ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟ ଥିଲାବେଳେ ଗଡ଼ଜାତ ପ୍ରଜାମାନେ କଟକ ଯିବା ଆସିବା କରୁଥିଲେ; କମିଶନର ସାହେବଙ୍କଠାରେ ଅପିଲ ଅଭିଯୋଗ କରୁଥିଲେ; ସେ ସୂତ୍ରରେ ମୋଗଲବନ୍ଦିର ଉକିଲ ଓ ଅନ୍ୟାନ୍ୟ ଶିକ୍ଷିତ ବ୍ୟକ୍ତିଙ୍କ ଦୃଷ୍ଟିରେ ଗଡ଼ଜାତର ଅଧିକାଂଶ ଗୁରୁତର ଘଟନା ପଡ଼ୁଥିଲା । ଆଗେ ମୋଗଲବନ୍ଦିର ପଣ୍ଡିତ ଓ ଶିକ୍ଷିତ ଲୋକେ ନାନା ଘଟନାରେ ଗଡ଼ଜାତକୁ ଯାଉଥିଲେ । ଗଡ଼ଜାତ ରାଜା ମହାରାଜାମାନେ ସେମାନଙ୍କର ଯଥୋଚିତ ଆଦର ସମ୍ମାନ କରୁଥିଲେ । ଏହିପରି ବାହାର ସହିତ ସମ୍ପର୍କ ଦ୍ୱାରା ଗଡ଼ଜାତ ସେତେ ଅନ୍ଧାରିମୂଳକ ହୋଇ ରହି ନ ଥିଲା । ଆଜିକାଲି ମୋଗଲବନ୍ଦିର ଶିକ୍ଷିତ ଲୋକମାନଙ୍କର ଗଡ଼ଜାତକୁ ପ୍ରାୟ ଯାତାୟାତ ନାହିଁ । ଗଡ଼ଜାତ ରାଜାମାନଙ୍କର ସେମାନଙ୍କ ପ୍ରତି ପୂର୍ବ ଆସ୍ଥା ଆଉ ନାହିଁ । ଗଡ଼ଜାତର ମାମଲା ମକଦ୍ଦମା ମୋଗଲବନ୍ଦିକୁ ଆସୁନାହିଁ । ପଲିଟିକାଲ ଏଜେଣ୍ଟ ସାହେବ ଗଡ଼ଜାତର ସର୍ବେସର୍ବା । ତାଙ୍କ ପାଖକୁ ଉକିଲ ମୁକ୍ତିଆର କେହି ଯାଆନ୍ତି ନାହିଁ । ଷ୍ଟେଟ ପ୍ରଜାମାନଙ୍କର ଆପତ୍ତି ଅଭିଯୋଗ ରାଜା ଓ ପଲିଟିକାଲ ଏଜେଣ୍ଟଙ୍କ ମଧ୍ୟରେ କି ରୀତିରେ ନିଷ୍ପତ୍ତି ହୁଏ ତାହା କେହି ପ୍ରାୟ ଜାଣନ୍ତି ନାହିଁ । ଏଥିର ଫଳ ଏହା ହେଉଅଛି ଯେ ପ୍ରଜାମାନେ ନୀରବରେ ସବୁ ସହି ସହି ଯେତେବେଳେ ଅତ୍ୟାଚାର ଅତି ଅସହ୍ୟ ହୋଇ ପଡ଼ୁଛି ହଠାତ୍ ଗୋଳ ବାନ୍ଧୁଛନ୍ତି ଏବଂ ବିଦ୍ରୋହ ଆରମ୍ଭ କରୁଛନ୍ତି । ଅତି ନିରାଶ ହେଲେ ମନୁଷ୍ୟର ଆଉ ଗତି କଅଣ ? ନୀଳଗିରି ପ୍ରଜାମାନେ ଯେକୌଣସି ଚକ୍ରଗୋଳ ଅତ୍ୟାଚାର

ଉପୃାତ ଆରମ୍ଭ ନ କରି ଶାନ୍ତିରେ ଷ୍ଟେଟରୁ ଚୂଲି ଆସିଛନ୍ତି ଏବଂ ଏପର୍ଯ୍ୟନ୍ତ ଶାନ୍ତିରକ୍ଷା କରି କର୍ତ୍ତୃପକ୍ଷଙ୍କ ସୁବିଚାର ଆଶାରେ ବାହାରେ ପଡ଼ି ରହିଛନ୍ତି । ଏହା ଷ୍ଟେଟପକ୍ଷରେ ସୌଭାଗ୍ୟର କଥା ଏବଂ ସେମାନଙ୍କ ପକ୍ଷରେ ମଙ୍ଗଳ । ଯେ ଯାହା କହନ୍ତୁ ମହାତ୍ମାଗାନ୍ଧୀଙ୍କ ପ୍ରଚାରିତ ଅହିଂସାମୂଳକ ଅସହଯୋଗ ଯେ ଅଲକ୍ଷିତ ଭାବରେ ଅଶିକ୍ଷିତମୂଢ଼ ପ୍ରଜାଙ୍କ ମତିଗତି ବଦଳାଇ ସେମାନଙ୍କୁ ଶାନ୍ତିପୂର୍ଣ୍ଣ ଆନ୍ଦୋଳନର ରାସ୍ତା ଦେଖାଇଛି ନୀଳଗିରି ପ୍ରଜାଙ୍କର ଉପସ୍ଥିତ କାର୍ଯ୍ୟ ଓ ପନ୍ଥା ତହିଁର ଜ୍ୱଳନ୍ତ ପ୍ରମାଣ । ଆମ୍ଭେମାନେ କେତେଥର ଗଡଜାତର ଅତ୍ୟାଚାର ଅବିଚାର କଥା ଲେଖିଆଉଁ; କେତେ ଘଟନାରେ ରାଜା ମହାରାଜାମାନଙ୍କୁ ଆପଣାର ଗତିବିଧି ବଦଳାଇ ପ୍ରଜାବତ୍ସଳ ନୀତି ଅନୁସରଣ କରିବାକୁ ଅନୁରୋଧ କରିଥାଉଁ, କୌଣସି ଗଡ଼ଜାତ ରାଜାଙ୍କ ସମ୍ବନ୍ଧରେ କିଛି ଲୋକହିତକର ଶୁଭ ସମ୍ବାଦ ପାଇଲେ କେତେ ଆଶା ଓ ଆନନ୍ଦର ସହିତ ତାହା ପ୍ରକାଶ କରିଥାଉଁ । ଗଡଜାତଗୁଡ଼ିକ ଓଡ଼ିଶାର ମେରୁଦଣ୍ଡ; ସେଠାରେ ରାଜା ମହାରାଜାମାନେ ପ୍ରଜାବତ୍ସଳ ହୋଇ ସୁଶାସନ କଲେ ତାଙ୍କର ଗୌରବ ବଢ଼ନ୍ତା, ଷ୍ଟେଟର କଲ୍ୟାଣ ହୁଅନ୍ତା ଏବଂ ମୋଟରେ ଓଡ଼ିଆ ଜାତିର ଉନ୍ନତି ହୁଅନ୍ତି । ମାତ୍ର ଦୁଃଖରକଥା ଅବସ୍ଥା ଭଲହେବା ଦୂରେ ଥାଉ ଅଧିକାଂଶ ଷ୍ଟେଟରେ ଦିନକୁଦିନ ଖରାପ ହେଉଛି । "ନୀଳଗିରି ଅତ୍ୟାଚାର"ରେ ଯାହା ବର୍ଣ୍ଣିତ ହୋଇଅଛି ସେ ଅବସ୍ଥାରେ ମନୁଷ୍ୟ କେତେଦିନ ସହିପାରେ ? ଆଜିକାଲି ଯୁଗରେ ବର୍ଷସାରା ଲୋକ ଦିନରାତି ଖଟି ଖଟି ସୁଖସ୍ୱଚ୍ଛନ୍ଦରେ ଜୀବିକା ନିର୍ବାହ କରିବା ଦୁଃସାଧ୍ୟ ହେଉଛି । ଏଥିରେ ମାସରୁ ୨୦ ଦିନ ଯଦି ପ୍ରଜା ବେଠି ଖଟେ ସେ ଚଳେ କିପରି ? ସେ ପୁଣି ହାତରୁ ଖାଇ ବେଠି ଖଟିବ; ସାମାନ୍ୟ ହେଲା ବା ଅସାବଧାନତା ହେଲେ ପ୍ରହାର ଖାଇବ; ଷ୍ଟେଟରେ ତାର ଧନ ପ୍ରାଣ ନିଶ୍ଚିତ ନୁହେଁ; ସ୍ତ୍ରୀ ଜାତିର ମାନମର୍ଯ୍ୟାଦା ସୁରକ୍ଷିତ ନୁହେଁ, ଇଚ୍ଛାମତେ ମାଗଣ, ଇଚ୍ଛାମତେ କରପୀଡ଼ା, ଯେତେବେଳେ ସେତେବେଳେ ପ୍ରଜା ଉପରେ ମାଡ଼ମାରି, ଯେତେବେଳେ ସେତେବେଳେ ତାର ଘରଦ୍ୱାର ଲୁଟି; ଶାସକମାନେ ଯଦି ଏହାହିଁ କରନ୍ତି ରକ୍ଷକମାନେ ଯଦି ଭକ୍ଷକ ହୁଅନ୍ତି, ପ୍ରଜାର ଉପାୟ କଅଣ ? ଯେ ରାଜ୍ୟରେ ଏସବୁ କାଣ୍ଡ ଚାଲିଛି ସେଠାରେ ଶାସନ ଅଛି ବୋଲି କିପରି କୁହାଯିବ ? ତାହା ଅରାଜକ ମୂଳକ ; ଚକ୍ରବର୍ତ୍ତୀ ଇଂରେଜ ଶାସନ ଏଥିଲାଗି ଅନେକ ପରିମାଣରେ ଦାୟୀ । ସେ ଯାହାହେଉ, ଦେଶୀୟ ରାଜା ମହାରାଜାମାନେ ପ୍ରଜାମାନଙ୍କ ପ୍ରତି ଏପରି ଦୁର୍ବ୍ୟବହାର କରିବା ଦ୍ୱାରା ଆପଣାର ସ୍ୱାର୍ଥ ଆପଣା ହାତରେ ଯେ ନଷ୍ଟ କରୁଛନ୍ତି ଏହା ବୁଝି ପାରୁନାହାନ୍ତି । ଆଜିକାଲି ସମୟର ଗତି ବଦଳିଗଲାଣି । ରାଜଶକ୍ତିର ସେ ପୂର୍ବ ଅପ୍ରତିହତ କ୍ଷମତା ନାହିଁ । କେତେ ପ୍ରବଳ ପରାକ୍ରାନ୍ତ ରାଜଶକ୍ତି ପୃଥିବୀରେ ଲୋପ ପାଇଲେଣି । ପ୍ରଜାମାନେ ଅତ୍ୟାଚାର

ସହ ସହ କମେ ଉଠୁଛନ୍ତି । ଅତି ଅନ୍ୟାୟ ଦେବତାକୁ ପାରନାହିଁ ବୋଲି ଗୋଟିଏ କଥା ଅଛି । ପୃଥିବୀରେ ରାଜଶକ୍ତିର ଏବେ କମେ ମେଦ୍ଧ ଦଶା ହେଉଅଛି । ବିଶେଷତଃ ଭାରତବର୍ଷର ବଡ଼ ବଡ ଦେଶୀୟ ରାଜ୍ୟ କେତେକର ଗଲ କେତେ ସମୟ ମଧ୍ୟରେ ଯେ ଦୁର୍ଦ୍ଦଶା ଘଟିଛି ଓଡ଼ିଶା ରାଜା ମହାରାଜାମାନେ ତାହା ଦେଖି ସାବଧାନ ନ ହେବା ଆଶ୍ଚର୍ଯ୍ୟର କଥା । ଦେଶୀୟ ରାଜାମାନଙ୍କ ପ୍ରତି କମେ ସାଧାରଣର ଦୃଷ୍ଟି ପଡ଼ୁଛି । ଭାରତ ଜାତୀୟ ସଭାସମିତିରେ ଏଥିର ଆଲୋଚନା ଆରମ୍ଭ ହୋଇଛି । ଦେଶୀୟ ରାଜ୍ୟର ପ୍ରଜାଗଣ ସଭାସମ୍ମିଳନୀ କରି ଆପଣା ଆପଣା ରାଜ୍ୟର ସୁଶାସନ ବିଷୟରେ ଚେଷ୍ଟା କରୁନନ୍ତି । ବର୍ତ୍ତମାନ ଦିଲ୍ଲୀଠାରେ ସବୁ ଦଳର ଲୋକେ ମିଳି ଯେ ଭାରତୀୟ ଶାସନସଂସ୍କାର ପ୍ରସ୍ତାବର ଚର୍ଚ୍ଚା କରୁଛନ୍ତି, ଦେଶୀୟ ରାଜ୍ୟର ପ୍ରତିନିଧିମାନେ ସେଥିରେ ଉପସ୍ଥିତ ରହି ଯୋଗ ଦେଉଛନ୍ତି । ଏଣେ ପୁଣି ବିଲାତରୁ ବଟଲର କମିଶନ ଦେଶୀୟ ରାଜାମାନଙ୍କ ସ୍ଥିତି, ଗତି ଓ ନୀତି ଅନୁସନ୍ଧାନ କରିବାକୁ ଆସୁଛି । ଏତେବେଳେ ଦେଶୀୟ ରାଜା ମହାରାଜା-ମାନେ ଆପଣାର ପ୍ରକୃତି ବଦଳାଇ ଭଲବାଟରେ ଚାଲିବା ଦରକାର । ଭାରତ ଶାସନ ବର୍ତ୍ତମାନ ସନ୍ଧିସ୍ଥଳରେ ଉପସ୍ଥିତ । ଭାରତର ଇଂରେଜ ଶାସନ ଅଂଶ ସଙ୍ଗେ ଦେଶୀୟ ରାଜ୍ୟମାନଙ୍କର ଭାଗ୍ୟ ବନ୍ଧା । ଭାରତ ଶାସନ ପରିବର୍ତ୍ତନ ସଙ୍ଗେ ସଙ୍ଗେ ଦେଶୀୟ ରାଜ୍ୟରେ ଯେ ପରିବର୍ତ୍ତନ ନିଶ୍ଚୟ କିଛି ହେବ ଏହା ଜାଣି ରଖିବା ଉଚିତ । ଆମ୍ଭେମାନେ ଦେଶୀୟ ରାଜ୍ୟମାନଙ୍କର ଏକାନ୍ତ କଲ୍ୟାଣ କାମନା କରୁଁ । ନିଜର ଶାସନ ନୀତି ବଦଳାଇ ପ୍ରଜାମାନଙ୍କ ପ୍ରତି ସଦୟ ଓ ନ୍ୟାୟସଙ୍ଗତ ବ୍ୟବହାର କରିବାକୁ ପ୍ରାର୍ଥନା କରୁଁ । ନୀଳଗିରି ରାଜାଙ୍କର ନିର୍ଦ୍ଦିଷ୍ଟ ହୋଇ ରହିବା ନିରାପଦ ନୁହେଁ; ନିରାପଦ ହେଉ ବା ନ ହେଉ କଦାପି ସଙ୍ଗତ ଓ ଶୋଭନୀୟ ନୁହେଁ । ସେ ଦୁଇବର୍ଷ ହେଲି ରାଜ୍ୟ ପାଇଛନ୍ତି । ଏଥିମଧ୍ୟରେ ଏଭଳି ଗୁରୁତର ଅଭିଯୋଗ ତାଙ୍କ ବିରୁଦ୍ଧ ବିପକ୍ଷରେ ହେବା ନିନ୍ଦନୀୟ ।

"ସମ୍ଭାବିତସ୍ୟଚାକୀର୍ତ୍ତି
ମରଣାଦତିରିଚ୍ୟତେ ।

କ୍ଷତ୍ରିୟ ରାଜପକ୍ଷରେ ଅକୀର୍ତ୍ତି ମରଣଠାରୁ ବଳେ । ଶୀଘ୍ର ପ୍ରଜାମାନଙ୍କୁ ବୁଝାଇ ସୁଝାଇ ଅଭୟ ଆଶ୍ୱାସନା ଓ ନିର୍ଭର ଦେଇ ଫେରାଇ ନେଇଯିବା ବୁଦ୍ଧିମାନର କାର୍ଯ୍ୟ ହେବ ।

('ସମାଜ' ତା ୨୨ । ୨ । ୨୮)

———

# ଗ୍ରାମ ସଂଗଠନ

ଗ୍ରେଟଲକ୍ଟ ଓ ବଡ଼ଲାଟ ସଭା ବୈଠକ ଏବେ ସରିଲା । ମେମ୍ବରମାନେ ସାଧମତେ ଲଢ଼ି ଛନ୍ତି, ବହୁତ ତର୍ଜନ ଗର୍ଜନ କରିଛନ୍ତି; ସରକାରକୁ ଅନେକ କଥାରେ ପରାସ୍ତ କରିଛନ୍ତି । ଏଥର ଯେଝାଘରକୁ ଫେରିବେ । ସରକାର ନିଶ୍ଚିନ୍ତ । ଏ ତର୍ଜନ ଗର୍ଜନ ଧମକ ଚମକର ଅର୍ଥ ସରକାର ବେଶ୍ ଜାଣେ । ମେମ୍ବରମାନେ ଯାହା କହନ୍ତୁ ବା ଯାହା କରନ୍ତୁ ସରକାର ହାତେ ରହିବ । ଲାଟ ସାହେବମାନଙ୍କ ଖୁସିହେଲେ ମେମ୍ବରମାନଙ୍କ କଥା ରଖିବେ, ନ ହେଲେ ନାହିଁ; ମାତ୍ର ଯେତେଦିନଯାଏ ସରକାର ବୁଝିଛି ଯେ ଏ ମେମ୍ବର-ମାନଙ୍କ ଧମକ ପଛଆଡ଼େ ଆଉ କିଛି ବଳନାହିଁ, ସେ ଏମାନଙ୍କ କଥାରେ ଟଳିବ କାହିଁକି ? ଲାଟସଭା ମେମ୍ବରମାନେ ଲୋକଙ୍କ ଭୋଟନେଇ କାଉନ୍‌ସିଲକୁ ଯାଇଛନ୍ତି ସତ, ମାତ୍ର କାଉନ୍‌ସିଲକୁ ଯିବାପରେ ଲୋକଙ୍କ ସଙ୍ଗେ ସେମାନଙ୍କର କୌଣସି ସଂପର୍କ ରହୁନାହିଁ । କାଉନ୍‌ସିଲରେ ସେମାନେ ଯାହା କରୁଛନ୍ତି, ଲୋକେ ତାହା କିଛି ଜାଣୁନାହାନ୍ତି; ଖବର-କାଗଜରେ ଯାହା ବାହାରୁଛି କେତେଜଣ ଶିକ୍ଷିତ ଲୋକଙ୍କ ଛଡ଼ା ମଫସଲର ସାଧାରଣ ଭୋଟରମାନଙ୍କ ନିକଟରେ ତାହା ପହଞ୍ଚୁନାହିଁ । ଲୋକଙ୍କ ମଧ୍ୟରେ ସେପରି ବହୁଳ ପ୍ରଚାର ହୋଇନାହିଁ । ଖବରକାଗଜ ଅତି ଅଳ୍ପ ଲୋକ ପଢ଼ନ୍ତି । ସୁତରାଂ ମେମ୍ବରମାନଙ୍କ କାର୍ଯ୍ୟ କଳାପ ସମ୍ବନ୍ଧରେ ଲୋକ ସାଧାରଣଙ୍କର ମତାମତ ଦେବାର ସୁବିଧା ନାହିଁ । ମେମ୍ବର-ମାନଙ୍କର କେଉଁକଥା ସରକାର ରଖିଲା, କେଉଁକଥା ନ ରଖିଲା ତାହା ଜାଣି ନ ପାରିଲେ ଲୋକେ ବା ସେ ସବୁ ବିଷୟରେ କହିବେ କଅଣ ? ଲୋକେ ବୁଝିଲେ ଯେ ଲୁଣ ଟିକସ କମିଲା ନାହିଁ, ପୋଷ୍ଟକାର୍ଡ଼ ଲଫାପାର ପୂର୍ବ ମୂଲ୍ୟ ରହିଲା; ବନ୍ଦୋବସ୍ତ ଜମାବୃଦ୍ଧିର କିଛି ପ୍ରତିକାର ହେଲନାହିଁ । ଏଥିର ଫଳରେ ମେମ୍ବରମାନଙ୍କ ପ୍ରତି କ୍ରମେ ସେମାନଙ୍କର ଆସ୍ଥା ତୁଟିବାର କଥା । ସେମାନେ କହିବେ ଯେ କଂଗ୍ରେସ ଲୋକେ କାଉନ୍‌ସିଲ୍‌କୁ ଯାଇବା କଅଣ କଲେ, ଆଉ କିଏ ଯାଇଥିଲେ ବା କଅଣ ନ କରିଥାନ୍ତି । ମୋଟକଥା କାଉନ୍‌ସିଲ ବ୍ୟାପାର ଲୋକେ ନ ବୁଝିବା ଯାଏ ଧୂଆମୂଳା ଅଧିଆମୂଳା ସଦସ୍ୟଙ୍କୁ ଯଦି ସମାନ କରନ୍ତି ସେଥିରେ ତାଙ୍କୁ ଦୋଷ ଦିଆଯାଇ ନ ପାରେ । ମେମ୍ବରମାନଙ୍କର ନିଜ ସ୍ୱାର୍ଥଲାଗି ଲୋକ ସାଧାରଣଙ୍କୁ ଏହାସବୁ ବୁଝାଇବାର ବ୍ୟବସ୍ଥା କରିବା ଆବଶ୍ୟକ । ଏହାଛଡ଼ା ସରକାର୍ ପାଖେ ମେମ୍ବରମାନେ ନିଜ କଥାର କିଛି ଯଦି ମୂଲ୍ୟ ରଖିବାକୁ

ଗୃହୀତ ତାହାହେଲେ ଅର୍ଣ୍ଣେଟରେ ଲୋକଙ୍କ ନେବା ଦରକାର । କୌଣସି ପ୍ରସ୍ତାବ ଆଗ୍ରାହ୍ୟ କଲେ କାଉନ୍‌ସିଲର କେବଳ କେତେଜଣ ମେମ୍ବରଙ୍କ ଅବଜ୍ଞା ହେବନାହିଁ । ମାତ୍ର ସେମାନଙ୍କ ପଛରେ ଯେ ସହସ୍ର ସହସ୍ର ଭୋଟଦାତା ଓ ଦେଶର ଲକ୍ଷ ଲକ୍ଷ ଜନସାଧାରଣ ଅଛନ୍ତି ସେମାନଙ୍କ ବିରକ୍ତି ଓ ଅସନ୍ତୋଷ ଘଟିବ ବୋଲି ଜାଣିଲେ କୌଣସି ପ୍ରସ୍ତାବ ଅଗ୍ରାହ୍ୟ କରିବା ପୂର୍ବରୁ ସରକାର ଠିକ୍‌ଏ ଭଲରୂପେ ଭାବିଚିନ୍ତି କାର୍ଯ୍ୟ କରିବ । ଯଥାର୍ଥ କହିବାକୁ ଗଲେ ସରକାରର ଭୟ କାଉନ୍‌ସିଲ ମେମ୍ବର ନୁହେଁ, ଭୟ ଲୋକ-ସାଧାରଣଙ୍କୁ ଏବଂ ସେମାନଙ୍କ ମତାମତକୁ । ଯାହା ପଛିଆଡ଼େ ଲୋକସାଧାରଣ ଅଛନ୍ତି ବୋଲି ସରକାର ଜାଣେ ସରକାର ତାଙ୍କୁ ହିଁ ଡରେ । ଦେଶର ଜନସାଧାରଣଙ୍କର ନେତାମାନଙ୍କଠାରେ ଆସ୍ଥା ଓ ବିଶ୍ୱାସ ଅଛି ସତ୍ୟ, ମାତ୍ର ସେମାନେ ସଂଗଠିତ ନୁହନ୍ତି ଏବଂ ନେତାମାନଙ୍କ କାର୍ଯ୍ୟକଳାପ ଜାଣିବାର ସୁବିଧା ସେମାନଙ୍କର ନାହିଁ । ତେଣୁ ନେତାମାନଙ୍କ ଇଙ୍ଗିତରେ ଚାଳିତ ହେବା କିମ୍ବା ନେତାମାନଙ୍କୁ ଆପଣାର ଅଭିମତ ସମଷ୍ଟିଭାବରେ ଜଣାଇବା ସୁଯୋଗ ସେମାନଙ୍କର ନାହିଁ । ଏଥିର ବ୍ୟବସ୍ଥା ନ ହେବାଯାଏ କାଉନ୍‌ସିଲମାନଙ୍କ ଉପରେ ଲୋକସାଧାରଣଙ୍କ ପ୍ରଭାବ ପଡ଼ିବାର କୌଣସି ଆଶା ବା ଉପାୟ ନାହିଁ । ଏଥିଲାଗି ଲୋକ ସଂଗଠନ କରିବାକୁ ହେବ । ଅସହଯୋଗ ଆନ୍ଦୋଳନ ଆରମ୍ଭରେ ଯେ ଲୋକ ସଂଗଠନ ଆରମ୍ଭ ହୋଇଥିଲା ତାହା ଏଥିମଧ୍ୟରେ ଅନେକ ପରିମାଣରେ ନଷ୍ଟ ହୋଇଅଛି । ସେ ଗ୍ରାମସଭା ବା ଥାନା କମିଟିମାନ ବର୍ତ୍ତମାନ ନାହିଁ । କଂଗ୍ରେସ ମେମ୍ବର ସଂଖ୍ୟା ବହୁତ କମିଯାଇଛି । କଂଗ୍ରେସ ଜିଲ୍ଲା କମିଟି ବା ପ୍ରାଦେଶିକ କଂଗ୍ରେସ କମିଟିରୁ ଯାହାମତ ନିର୍ବାଚିତ ହୋଇ ମେମ୍ବର ଆସୁଛନ୍ତି ବୋଲି କୁହାଯାଇ ନ ପାରେ । ଲୋକସାଧାରଣଙ୍କ ନାମରେ ସେ ସ୍ପନ୍ଦନ ନାହିଁ ବା ଆନ୍ଦୋଳନ ନାହିଁ । ଦେଶର ହାଲଚାଲ ଜାଣିବାକୁ ସେମାନେ ବର୍ତ୍ତମାନ ତେତେ ଆଗ୍ରହାନ୍ୱିତ ନୁହନ୍ତି । ଅସହଯୋଗ ଆନ୍ଦୋଳନ ଦବିଯିବା ଫଳରେ ଏହା ଘଟିଛି, ସମସ୍ତେ ସ୍ୱୀକାର କରୁଛନ୍ତି । କଂଗ୍ରେସ ପକ୍ଷରୁ ସ୍ୱରାଜୀ ମେମ୍ବରମାନେ କାଉନ୍‌ସିଲକୁ ଯିବାବେଳେ ଲୋକସାଧାରଣଙ୍କୁ ପୁନଶ୍ଚ ଜଣାଇବା ଲାଗି ମନସ୍ଥ କରିଥିଲେ, ଦେଶକୁ ସେହି ଆଶା ଓ ବିଶ୍ୱାସ ଦେଇଥିଲେ, ମାତ୍ର ଗଲା ଦୁଇ ତିନି ବର୍ଷ ହେଲା ସେମାନେ କାଉନ୍‌ସିଲକୁ ଗଲେ; ଏଥିମଧ୍ୟରେ ଏ ଦିଗରେ ସେମାନଙ୍କ ମଧ୍ୟରୁ କେହି କିଛି କରିନାହାନ୍ତି । ଆମ୍ଭେମାନେ କେବଳ ଓଡ଼ିଶା କଥା କହୁନାହୁଁ; ଭାରତର ସବୁ ପ୍ରଦେଶରେ ଏହି ଦଶା । ସଭା ସମିତିରେ ବକ୍ତୃତା କରିବା, ଖବର-କାଗଜରେ ଆନ୍ଦୋଳନ କରିବା ଛଡ଼ା ବଡ଼ ବଡ଼ ନେତାମାନେ ଆଉ କିଛି କରୁନାହାନ୍ତି । ଯଥାର୍ଥ କହିବାକୁ ଗଲେ ଆଉ କିଛି କରିବା ଶକ୍ତି ସେମାନଙ୍କର ଅଛି କି ନାହିଁ ସନ୍ଦେହ ।

ତଥାପି ଲୋକ ସଂଗଠନ ଆଡ଼େ ସେମାନଙ୍କର ମତ ଗତ ଥିଲେ ନିଜେ ନ କଲେ ସୁଦ୍ଧା ଅନ୍ୟମାନଙ୍କ ସାହାଯ୍ୟରେ କିଛି ଯେ କରିପାରିଥାନ୍ତେ ଏଥିରେ ସନ୍ଦେହ ନାହିଁ । ଓଡ଼ିଶାର ବଡ଼ଲାଟ ସଭା ମେମ୍ବର ପଣ୍ଡିତ ନୀଳକଣ୍ଠ ଦାସ ଏ ପ୍ରସଙ୍ଗରେ ଗଲା କେତେ ସପ୍ତାହ ଧରି କଲିକତା ବମ୍ବେଇର ଖବରକାଗଜମାନଙ୍କରେ କେତେଟା ପ୍ରବନ୍ଧ ଲେଖିଛନ୍ତି । ଲୋକ-ସଂଗଠନ ବିଷୟରେ ଉଦାସୀନ ଥିବାରୁ ସେ ବଡ଼ ବଡ଼ ନେତାମାନଙ୍କ ପ୍ରତି ଆକ୍ଷେପ କରିଛନ୍ତି । ଗ୍ରାମସଂଗଠନ ବିଷୟରେ ଆମ୍ଭେମାନେ ଏକାଧିକ ଥର ଲେଖିଅଛୁଁ । ଯଥାର୍ଥରେ ଗ୍ରାମସଂଗଠନ ନ ହେବାଯାଏ ସ୍ୱରାଜ୍ୟର ମୂଳଦୁଆ ପଡ଼ିନାହିଁ । ପଣ୍ଡିତ ନୀଳକଣ୍ଠ ଭାରତର ବଡ଼ ବଡ଼ ନେତାଙ୍କ ବିପକ୍ଷରେ ଯେ ଅଭିଯୋଗ କରିଛନ୍ତି ଓଡ଼ିଶାର ସେତେଲୋକ ତାଙ୍କ ବିପକ୍ଷରେ ବା ତାଙ୍କ ସହକର୍ମୀ କଂଗ୍ରେସ ପକ୍ଷୀୟ ଅନ୍ୟାନ୍ୟ କାଉନ୍‌ସିଲ ମେମ୍ବରମାନଙ୍କ ବିପକ୍ଷରେ ସେହି ଅଭିଯୋଗ ଆଣିବା ଆଶ୍ଚର୍ଯ୍ୟ ନୁହେଁ । ଗ୍ରାମସଂଗଠନର ଆବଶ୍ୟକତା ସମସ୍ତେ ଜାଣୁଛନ୍ତି; ମାତ୍ର ଯେ କାର୍ଯ୍ୟରେ ବାହାରୁଛନ୍ତି କେତେଜଣ । ଏଠାରେ କହିବା ଆବଶ୍ୟକ ଯେ ଗ୍ରାମସଂଗଠନ ବିଷୟରେ ଏକ ଖସଡ଼ା ପ୍ରସ୍ତାବ ନୀଳକଣ୍ଠ ବାବୁଙ୍କଠାରୁ ନିଖିଳଭାରତ କଂଗ୍ରେସ କମିଟି ନିକଟରେ ଦେଇଛନ୍ତି । ପ୍ରଚୁର ଅର୍ଥ ସଂଗ୍ରହ କରି କାର୍ଯ୍ୟ ବସ୍ତୁତଃଭାବରେ ଲଗାଇବା-ଲାଗି ନେତାମାନଙ୍କର ସାହସ ବା ସୁବିଧା ହେଉନାହିଁ ବୋଲି ବା ଅନ୍ୟ କୌଣସି କାରଣରୁ ତାଙ୍କ ପ୍ରସ୍ତାବ ଉପରେ ଭାରତ କଂଗ୍ରେସ କମିଟି ଏ ପର୍ଯ୍ୟନ୍ତ କୌଣସି ସିଦ୍ଧାନ୍ତ କରିନାହିଁ । ଆମ୍ଭମାନଙ୍କ ମତରେ ନିଖିଳଭାରତ କଂଗ୍ରେସ କମିଟିର ସିଦ୍ଧାନ୍ତକୁ ଅପେକ୍ଷା କରି ନ ରହି ନୀଳକଣ୍ଠବାବୁ ଆପଣା କ୍ଷେତ୍ରରେ ଆପଣା ପ୍ରସ୍ତାବକୁ କାର୍ଯ୍ୟରେ ପରିଣତ କରିବାର ଚେଷ୍ଟାକଲେ ବଡ଼ ଭଲ ହୁଅନ୍ତା । ଅବଶ୍ୟ ଏ କାର୍ଯ୍ୟ ନିମନ୍ତେ ଧନ ଜନ ଉଭୟ ଆବଶ୍ୟକ । ନିଖିଳଭାରତ କଂଗ୍ରେସ କମିଟି ସିଦ୍ଧାନ୍ତ କଲେ ସୁଦ୍ଧା ପ୍ରତ୍ୟେକ ପ୍ରଦେଶ ସେ ପ୍ରଦେଶ ଲାଗି ଧନ ଜନ ଯୋଗାଇବା ଛଡ଼ା କାର୍ଯ୍ୟ ସାଧନର ତ ଅନ୍ୟ ପନ୍ଥା ନାହିଁ । ଦେଶରେ ବର୍ତ୍ତମାନ କାର୍ଯ୍ୟ ଆରମ୍ଭର ସୁଯୋଗ ଆସିଅଛି । ସାଇମନ କମିଶନ ଯୋଗୁଁ ଗୋଟାଏ ନୂଆ ଆନ୍ଦୋଳନର କାରଣ ଘଟି ଅଛି । ଲାଟ ସଭାମାନଙ୍କରେ ବନ୍ଦୋବସ୍ତ ପ୍ରଭୃତି ପ୍ରସଙ୍ଗରେ ମେମ୍ବରମାନେ ଯାହା କରିଛନ୍ତି ଏବଂ ସରକାର ସେ ସବୁକୁ ଯେ ଭାବରେ ଗ୍ରହଣ କରିଛି ତାହା ସବୁ ଲୋକ ସାଧାରଣଙ୍କୁ ବୁଝାଇବା ଆବଶ୍ୟକ ହୋଇଅଛି । କାଉନ୍‌ସିଲ ମେମ୍ବରମାନଙ୍କୁ ବର୍ତ୍ତମାନ କେତେମାସ ଅବକାଶ ମିଳିବ, ଲୋକଙ୍କର ମଧ୍ୟ ଚାଲବାଡ଼ି କାମ ସେତେନାହିଁ; ଏବେ ଦୁଇତିନିମାସ ନାନା ସ୍ଥାନରେ ମେଳଣ ହେବ ଏବଂ ଓଡ଼ିଶାର କେତେ ଜିଲ୍ଲାରେ ଜିଲ୍ଲା ସମ୍ମିଳନୀମାନ ହେଉଅଛି । ଏହିସବୁ ସୁଯୋଗରେ ଲୋକସାଧାରଣଙ୍କ ମଧ୍ୟରେ ପ୍ରଚାରକାର୍ଯ୍ୟ ଆରମ୍ଭ କରିବାଲାଗି ଆମ୍ଭେମାନେ କାଉନ୍‌ସିଲ

ମେମ୍ବରମାନଙ୍କୁ ଅନୁରୋଧ କରୁଅଛୁଁ । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିରେ, ନ ହେଲେ ଆପଣା ଜିଲ୍ଲା କଂଗ୍ରେସ କମିଟିରେ ନିଜ ଝସଡ଼ା ପ୍ରସ୍ତାବ ପକାଇ, କୌଣସି ଏକ କ୍ଷେତ୍ରରେ ସଂଗଠନ କାର୍ଯ୍ୟ ଆରମ୍ଭ କଲେ ନୀଳକଣ୍ଠ ଅନେକଙ୍କଠାରୁ ସାହାଯ୍ୟ ସହାନୁଭୂତି ପାଇବେ, ସନ୍ଦେହ ନାହିଁ । ଗ୍ରାମସଂଗଠନ କାର୍ଯ୍ୟରେ କଂଗ୍ରେସ ବେ-କଂଗ୍ରେସ ସବୁ ଦଳ ଲୋକଙ୍କର ସୁଯୋଗ ଦେବାରେ ବାଧା ନାହିଁ । ମାତ୍ର ଯଥାର୍ଥ କହିଲେ ଅନ୍ୟମାନଙ୍କ ଅପେକ୍ଷା କଂଗ୍ରେସ-ଦଳୀୟ ମେମ୍ବରମାନଙ୍କ ଉପରେ ଏ ଦାୟିତ୍ୱ ଅଧିକ । ଦେଶଲୋକେ ସେମାନଙ୍କଠାରୁ ଏହା ଆଶା କରନ୍ତି । କେବଳ କାଉନ୍‌ସିଲ ବା ଆସେମ୍ବ୍ଲି ମେମ୍ବର ନୁହନ୍ତି, ଜିଲ୍ଲାବୋର୍ଡ଼ ମେମ୍ବରମାନଙ୍କର ଏ ବିଷୟରେ ଦାୟିତ୍ୱ ରହିଅଛି । ଶୀଘ୍ର ଏ ପ୍ରସଙ୍ଗରେ ପରାମର୍ଶ କରିବା-ଲାଗି ପ୍ରାଦେଶିକ କଂଗ୍ରେସ କମିଟିର କର୍ମୀ ତହିଁ ସଙ୍ଗେ ଲୋକ ସଭା ଓ ଜିଲ୍ଲାବୋର୍ଡ଼ର ମେମ୍ବରମାନଙ୍କର ଗୋଟିଏ ସମ୍ମିଳନୀ ହେଲେ ଭଲ ହୁଅନ୍ତା । ଓଡ଼ିଶାର କୌଣସି ଅଞ୍ଚଳରେ କାର୍ଯ୍ୟ ଆରମ୍ଭ କରି ଫଳ ଦେଖାଇ ପାରିଲେ ନୀଳକଣ୍ଠଙ୍କ ପ୍ରବନ୍ଧ ଓ ପ୍ରସ୍ତାବର ସାର୍ଥକତା ପ୍ରମାଣିତ ହୁଅନ୍ତା । ଗ୍ରାମ ସଂଗଠନ ବର୍ତ୍ତମାନ ସର୍ବପ୍ରଧାନ ଜାତୀୟ କାର୍ଯ୍ୟ । ତାହା ନ କରି ପାରିଲେ କାଉନସିଲ ତର୍ଜନ ଗର୍ଜନ କେବଳ ଅରଣ୍ୟେ ରୋଦନ ।

'ସମାଜ', ତା ୨୮ । ୩ । ୨୮



# ଦେଶହାଲ

ଇଂରେଜ ସାମ୍ରାଜ୍ୟର ପାର୍ଲିଆମେଣ୍ଟାରି ଆସୋସିଏସନ୍ ଗୋଟିଏ ନୂଆ ଅନୁଷ୍ଠାନ । ଭାରତରେ ତାର ଶାଖା ଅଛି, କାନାଡ଼ା ଉପନିବେଶ ସରକାର ଏ ଅନୁଷ୍ଠାନର ବାର୍ଷିକ ଉତ୍ସବ ତାଙ୍କ ରାଜ୍ୟରେ କରାଉଛନ୍ତି । ସାମ୍ରାଜ୍ୟର ପ୍ରତ୍ୟେକ ଅଞ୍ଚଳରୁ ଏଠାକୁ ପ୍ରତିନିଧି ଯିବେ । ଏମାନଙ୍କ ଖର୍ଚ୍ଚ କାନାଡ଼ା ସରକାର ବହନ କରିବେ । ଭାରତର ବଡ଼ଲାଟ ସଭାରୁ ଏଥିପାଇଁ ପ୍ରତିନିଧି ବଚ୍ଛା ହୋଇଛନ୍ତି । ପଣ୍ଡିତ ମୋତିଲାଲ, ଦେବାନ ଚମନଲାଲ, ଶ୍ରୀଯୁକ୍ତ ତୁଳସୀ ଗୋସ୍ୱାମୀ ଓ ସାର ଲିଣ୍ଡ୍ସେ ପ୍ରତିନିଧିରୂପେ ଯିବେ । ବଡ଼ଲାଟ ସଭାରେ ଏ ବିଷୟରେ ଭୋଟ ନଆହେଲାବେଳେ ସରକାର ପକ୍ଷ ପରାସ୍ତ ହେଲେ । ଅଧିକାଂଶ କଂଗ୍ରେସ ପକ୍ଷୀୟ ଲୋକ ନିର୍ବାଚିତ ହୋଇଛନ୍ତି । ଯୋଗ୍ୟ ବ୍ୟକ୍ତି ଯେ ମନୋନୀତ ହୋଇଛନ୍ତି ଏଥିରେ ସନ୍ଦେହ ନାହିଁ ।

× × ×

ଗଲା ସପ୍ତାହ ବଡ଼ଲାଟ ସଭାରେ ଆୟବ୍ୟୟ ବଜେଟର ଶେଷ ବିଚାର ଯେତେବେଳେ ହେଲା, ଲାଲା ଲଜପତ ରାୟ ଛିଡ଼ା ହୋଇ କହିଲେ—"ବର୍ଷକୁ ବର୍ଷ ଆୟବ୍ୟୟ ବଜେଟ ତୁମ୍ଭେମାନେ ତିଆରି କରୁଛ ; କିନ୍ତୁ ଯେଉଁ ଲୋକଙ୍କ ପଇସା ନେଇ ଆୟବ୍ୟୟ ହେଉଛି ସେମାନଙ୍କ କଥା ଥରେ ହେଲେ ବିଚାରୁଛ କି ? ଖଜଣା, ଟିକସ, ବାଣିଜ୍ୟ, ବ୍ୟବସାୟ ସୂତ୍ରରେ ଏ ଦେଶର ଧନସମ୍ପଦ ଲୁଟି ହେଉଛି । ଅଥଚ ଭାରତର ମଫସଲରେ ଗରିବ ଜନସାଧାରଣ ଖାଇବା ବିନା ମରୁଛନ୍ତି । ବାସ୍ତବିକ୍ ଏ ଗରିବଲୋକେ ସ୍ୱରାଜ୍ୟ ସ୍ୱାଧୀନତା ବୁଝନ୍ତି ନାହିଁ । ଏମାନେ ମୁଠିଏ ଖାଇ, ଖଣ୍ଡିଏ ପିନ୍ଧି ଚଳିଲେ ସ୍ୱରାଜ୍ୟ ପାଇଲେ ବୋଲି ଜାଣନ୍ତି; କିନ୍ତୁ ଏଥିପାଇଁ ସରକାର କୌଣସି ପ୍ରତିକାର କରୁନାହିଁ । ଶେଷରେ ସେ ସରକାରକୁ କହିଲେ—ତୁମରି କର୍ମଚାରୀଙ୍କ ମଧ୍ୟରୁ କେହି କେହି ସ୍ୱୀକାର କରିଛନ୍ତି ଯେ ଭାରତବାସୀ ଅନ୍ନବିନା ମରୁଛନ୍ତି । ଏଥିର ପ୍ରତିକାର ଯଦି ନ କର, ତୁମ ରାଜନୀତିର ଗତି ଯଦି ନ ବଦଳାଅ, ଜାଣିଥାଅ ଏ ଦେଶରେ ବଲସେଭି ନୀତି ପ୍ରଚାରିତ ହେବ । ଶତ ହିମାଳୟ ପର୍ବତ ଏହାର ଗତିରୋଧ କରିପାରିବ ନାହିଁ । ଏହାର ପରିଣାମରେ ତୁମର ଧ୍ୱଂସ ହେବ । ଲାଟସଭା ଭାଙ୍ଗିପାରେ; କିନ୍ତୁ ଗରିବ ଲୋକଙ୍କର ଦୁଃଖ ଦୂର କର । ସେମାନେ ଯେଉଁଦିନ ଉଠିବେ, ସେଦିନ ତୁମର ଆଉ ରକ୍ଷା ନାହିଁ ।"

ଲାଲଜୀ ଯାହା କହୁଛନ୍ତି ତାହା ଯେ କେତେଦୂର ସତ୍ୟ ପ୍ରତ୍ୟେକ ମଫସଲବାସୀ ତାହା ବୁଝୁଥିବେ । ସେମାନେ ଦଳବଦ୍ଧ ହୁଅନ୍ତୁ, ନିଜର ଦାବୀ ବୁଝନ୍ତୁ । ତେବେ ଦୁଃଖ ମେଣ୍ଟିବ ନଚେତ୍ ନାହିଁ ।

× × ×

ସାଇମନ ସଙ୍ଘ ସାମାନ୍ୟ କେତୋଟି ଯାଗା ବୁଲି ଗାଁକୁ ବାହୁଡ଼ିବାର ଯୋଗାଡ଼ କଲେଣି । ଏଥିମଧ୍ୟରେ ପଞ୍ଜାବରୁ ଫେରି ଦିଲ୍ଲୀ ବାହୁଡ଼ିଛନ୍ତି । ଦିଲ୍ଲୀରୁ ମାର୍ଚ୍ଚ ୩୧ ତାରିଖ ବମ୍ବେଇ ବାଟେ ସେମାନେ 'ସ୍ୱସ୍ଥାନଂ ଗତାଃ' ହେବେ । ସେମାନଙ୍କୁ ଏଠାରେ ଯେ ଅଭ୍ୟର୍ଥନା ମିଳିଲି, ସ୍ଥାନେ ସ୍ଥାନେ ସେମାନେ ଯେପରି ଅପଦସ୍ଥ ହେଲେ ଏବଂ ଏ କମିଶନ ବିରୁଦ୍ଧରେ ଲୋକଙ୍କର ଯେ ଦୃଢ଼ମତ ସେ ଅବଶ୍ୟ ଜାଣି ଯାଇଥିବେ । ଦାଣ୍ଡରେ ନ କହିଲେ ହେଲେ ଭିତରେ ଅବଶ୍ୟ ନିଜ ଗାଁରେ ଏକଥା କହିବେ । କିନ୍ତୁ କ'ଣ ହେବ ? ଗାଲୁଆଙ୍କର ବାରବାଟୀ ଗୃହ । ଦେହବଳ ନ ଦେଖିବା ପର୍ଯ୍ୟନ୍ତ ମୁହଁବଳରେ କିଣ ସେମାନେ ମାନିବେ ?

× × ×

ବିହାର ଓଡ଼ିଶା କାଉନ୍‌ସିଲରେ କଂଗ୍ରେସ ଦଳର ନେତା ଶ୍ରୀକୃଷ୍ଣ ସିଂହ ଜଣେ ଶାନ୍ତ ଶିଷ୍ଟ ଓ ବିଜ୍ଞବ୍ୟକ୍ତି । କିନ୍ତୁ ଏହାଙ୍କର ବିରୁଦ୍ଧରେ ଗଲା ଜିଲାବୋର୍ଡ ନିର୍ବାଚନ ସମ୍ପର୍କରେ ମାରପିଟ ଗୋଳମାଳ କରିଥିବା ଅପରାଧରେ ସରକାର ଏକ ଫୌଜଦାରୀ ମକଦ୍ଦମା ରୁଜୁ କରିଦେଲେ । ଶ୍ରୀକୃଷ୍ଣ ସିଂହଙ୍କ ଭଳିଆ ଲୋକ ମାରପିଟ କରିବା ଅସମ୍ଭବ ; କିନ୍ତୁ କର୍ତ୍ତାଙ୍କ ଇଚ୍ଛାହେଲେ ଧଳା କଳା, କଳା ଧଳା ହୋଇପାରେ । ଦୌରା ବିଚାରରେ ଶ୍ରୀକୃଷ୍ଣ ସିଂହଙ୍କୁ ଟ ୫୦୦୯ ଜରିମାନା ହେଲା । ହାଇକୋର୍ଟରେ ସେ ଅପିଲ୍ କଲେ । ଜଜ୍ ଜୁଆଲାପ୍ରସାଦଙ୍କ ପାଖରେ ମକଦ୍ଦମା ବିଚାର ହେଲା । ସେ ତାଙ୍କୁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ବୋଲି ଖଲାସ ଦେଲେ । ଏ ଘଟଣାରେ ସରକାରର ଶ୍ରେଷ୍ଠବୁଦ୍ଧି ଏବଂ ପ୍ରତିହିଂସା ପ୍ରବୃତ୍ତି ବେଶ୍ ଜଣାପଡ଼େ । ବାଘ ସଙ୍ଗେ ତର୍କଶାସ୍ତ୍ରର ବିଚାରକଲେ ସେ କଣ କହିବ ? କହିବ, "ଆଉଁ" ଏହାହିଁ ତାହାର ଯୁକ୍ତି । ସରକାରର ପ୍ରକୃତି ଠିକ୍ ଏଇଆ ।

× × ×

ଇଜିପ୍‌ଟ ବା ମିଶର ଏପର୍ଯ୍ୟନ୍ତ ଇଂରେଜଙ୍କ କବଳରୁ ମୁକ୍ତି ପାଉନାହିଁ । ସୁଦାନ ବାସ୍ତବିକ ମିଶରର ରାଜ୍ୟ ; କିନ୍ତୁ ଇଂରେଜମାନଙ୍କର ଏହା ଗୋଟିଏ ଅତି ଆବଶ୍ୟକୀୟ ସୈନ୍ୟ ଛାଉଣୀ ହୋଇଥିବାରୁ ସେମାନେ ତାକୁ ଛାଡ଼ିବାକୁ ନାରାଜ । ଏ ହେତୁରୁ ଇଜିପ୍‌ଟ

ଓ ଇଂଲଣ୍ଡ ମଧ୍ୟରେ ଅନେକ ଦିନରୁ ଭିଡ଼ା ଓଟରା ଲାଗିଛି । ଇଂରେଜମାନେ ସାମ, ଦାନ, ଦଣ୍ଡ, ଭେଦ ସବୁପ୍ରୟୋଗ କରି ଏତକ ହାତରେ ରଖିବା ଉଦ୍ୟମ ଲଗାଇଛନ୍ତି । ମିଶରବାସୀ କାହିଁରେ ଭୁଲୁ ନାହାନ୍ତି । ବର୍ତ୍ତମାନ ଏହି ପ୍ରସଙ୍ଗ ନେଇ ଉଭୟ ଦେଶ ମଧ୍ୟରେ ଘୋର ଝଗଡ଼ା ଲାଗିଛି । ମିଶର ଯେ ଏକତା ବଳରେ ସ୍ୱାଧୀନତା ଲାଭକଲା, ସେହି ଏକତା ବଳରେ ସୁଦାନ ଲାଭ କରିବ । ଭାରତରେ ସେତକ ନାହିଁ, ତେଣୁ ଏପରି ହୀନ ଅବସ୍ଥା ।

× × ×

ବିଲାତରେ ବର୍ତ୍ତମାନ ୧୭ ଲକ୍ଷ ୭ଶହ ଲୋକ କାମ ଅଭାବରେ ବସି ରହିଛନ୍ତି । ସରକାର ଏମାନଙ୍କୁ ନିୟମ ଅନୁସାରେ ଖୋରାକି ଦେଇ ପୋଷିବେ । ତେଣୁ ପୃଥିବୀର ଯେକୌଣସି ଅଞ୍ଚଳରେ ଏମାନଙ୍କୁ ରୋଜଗାରର ପନ୍ଥା ଲଗାଇ ଦେବା ସରକାରର ଏକ ଗୁରୁଦାୟିତ୍ୱ । ସମସ୍ତ ଇଂରେଜ ସାମ୍ରାଜ୍ୟ ମଧ୍ୟରେ ଭାରତ ଆକାରରେ ବଡ଼ । ଏଠା ଲୋକେ ରେଳ । ଏମାନଙ୍କୁ ଅନାହାରରେ ମାରିଦେଲେ କେହି ପାଟି ଫିଟାଇ ପାରିବେ ନାହିଁ । ତେଣୁ ଯେତେଦୂର ସମ୍ଭବ ଏହି ଦେଶରେ ଏ ଅକର୍ମୀମାନଙ୍କୁ ଗୁଞ୍ଜିବାର ଫିକର ହେଉଛି । ସୈନ୍ୟବିଭାଗ ଏଥିପାଇଁ ପ୍ରଶସ୍ତ କ୍ଷେତ୍ର । ସେହି ହେତୁରୁ ଭାରତର ଅଧିକାଂଶ ଆୟ ଏ ବିଭାଗରେ ଖର୍ଚ୍ଚ । ଏ ଦେଶ ଲୋକେ ଯେ‌ଂ ଅନ୍ନ ବିନା ମରୁଛନ୍ତି ସେକଥା ବୁଝୁଛି କିଏ ? ଭାରତକୁ ସ୍ୱାୟତ୍ତଶାସନ ଦେବାର ଏହା ଯେ ମୂଳ ଆପତ୍ତି । ତଥାପି ଆମ ଦେଶ ଲୋକେ ବୁଝୁ ନାହାନ୍ତି । ଦଳେ ତାଙ୍କର ପାଖରେ ଗୁଞ୍ଜି ହୋଇ ସବୁ ଉଦ୍ୟମ ପଣ୍ଡ କରୁଛନ୍ତି । କେବେ ଏ କୁଳ ଲୋପ ପାଇବ ଭଗବାନ ଜାଣନ୍ତି ।

× × ×

ରୁଷିଆର ଜନୋଭିଫ୍ ଇଂରେଜ ଶାସନକୁ ବିଧ୍ୱସ୍ତ କରିବାପାଇଁ ଷଡ଼ଯନ୍ତ୍ର କରି ବିଲାତକୁ ଏକ ଚିଠି ଲେଖିଥିଲେ ବୋଲି ୧୯୨୪ ସାଲରେ ବିଲାତରେ ଏକ ଘୋର ଚହଳ ପଡ଼ିଲା । ଏ ଚିଠିର ଏକ ନକଲ ମଧ୍ୟ ଖବରକାଗଜରେ ବାହାରିଲା । ସେତେବେଳେ ଶ୍ରମଜୀବୀଦଳଙ୍କ ହାତରେ ଶାସନଭାର ଥାଏ । ଏହି ଚିଠି ଶ୍ରମଜୀବୀ ଦଳ ବିରୁଦ୍ଧରେ ଗୋଟିଏ ଅସ୍ତ୍ର ରୂପେ ପ୍ରୟୋଗ କରାଗଲା । ସଙ୍ଗେ ସଙ୍ଗେ ଯେ ପାର୍ଲିଆମେଣ୍ଟକୁ ନୂଆ ନିର୍ବାଚନ ହେଲା ସେଥିରେ ଏହାର ଫଳରେ ଶ୍ରମଜୀବୀ ଦଳର ବଳ କମିଗଲା । ରୁଷ ଏବଂ ବିଲାତ ଶ୍ରମଜୀବୀ ଦଳର ଅଭିଯୋଗ ଯେ ଏ ଚିଠି ଏକ ଜାଲ ଲେଖା, ପ୍ରକୃତରେ ଏପରି କେହି ଲେଖି ନାହିଁ । ଜର୍ମାନ ରାଜଧାନୀ ବର୍ଲିନଠାରେ ଏହା ଜାଲ ହୋଇଛି । ଇଂରେଜ

ଜାଠଧାଲ ଏ ଷଡଯନ୍ତ୍ର ଭିତରେ ଅଛନ୍ତି, ଇତ୍ୟାଦି··· । ଜାଠଦଲ କହନ୍ତି ଏ ଚଠି ଜାଲ ନୁହେଁ, ସେ ଏଥିର ପ୍ରମାଣ ପାଇଛନ୍ତି । କିନ୍ତୁ ଏ ଚଠି ବିଷୟରେ ଅନୁସନ୍ଧାନ କରିବାପାଇଁ ଏକ କମିଟି ବସିବ; କାରଣ ରୁଷ ଦାବୀ କରେ । ଜାଠମାନେ ସେଥିରେ ରାଜି ନୁହନ୍ତି । ମିଥ୍ୟା, କପଟ, ଲାଞ୍ଚ, ଶଠତା ପାଶ୍ଚାତ୍ୟ ରାଜନୀତିର ମୂଳମନ୍ତ୍ର ପରି ଜଣାଯାଏ । ଜାଲ, କପଟ ବଳରେ ଏମାନେ ସାରା ଦୁନିଆ ଆଖିରେ ଧୂଳିଦେବା ଉଦ୍ୟମରେ ଅଛନ୍ତି । ଏହାର ପରିଣାମ ଯେ ବିଷମୟ, ଦିନେ ଏହା ଧରାପଡ଼ିବ ଏବଂ ସେଥିପାଇଁ ଘୋର ଦୁଃଖ ସହିବାକୁ ହେବ, ଏହା ନିଶ୍ଚୟ । ଏ ରାଜନୀତିର ସେହି ଅବସ୍ଥା ପାଖେଇ ଆସୁଛି ।

× × ×

ମହାତ୍ମାଗାନ୍ଧୀ ନିକଟରେ ଇଉରୋପ ବୁଲିଯିବେ ବୋଲି ଖବରକାଗଜରେ ପ୍ରକାଶ ପାଇଛି । ତାଙ୍କ ସ୍ୱାସ୍ଥ୍ୟ ଏଥିମଧ୍ୟରେ ଭଲ ହୋଇଯାଇଛି । ତେବେ ସମ୍ପୂର୍ଣ୍ଣ ଭଲ ହେବା ପାଇଁ ଜଳବାୟୁ ପରିବର୍ତ୍ତନ ଆବଶ୍ୟକ ବୋଲି ଡାକ୍ତରମାନେ ମତ ଦେଇଛନ୍ତି । ଏଥିମଧ୍ୟରେ ୟୁରୋପର ନାନାଆଡ଼ୁ ମହାତ୍ମାଙ୍କଠାକୁ ଆମନ୍ତ୍ରଣ ଆସିଛି । ଭିଏନାଠାରେ ପୃଥିବୀର ଯୁବକ ସମ୍ମିଳନୀ ବସିବ । ଏଥିରେ ଯୋଗଦେବା ପାଇଁ ମହାତ୍ମାଙ୍କୁ ବାରମ୍ବାର ଅନୁରୋଧ ଆସୁଛି । ୟୁରୋପରେ ବର୍ତ୍ତମାନ ଭୀଷଣ ଯୁଦ୍ଧର ସମ୍ଭାବନା । ଚାରିଆଡ଼େ ଯୁଦ୍ଧର ଭୟ ଓ ଯୁଦ୍ଧର ଉଦ୍ୟମ । ଏ ଅବସ୍ଥାରୁ ୟୁରୋପକୁ ରକ୍ଷା କରିବାପାଇଁ ଏବଂ ଅହିଂସ ଧର୍ମ ପ୍ରଚାର କରିବାପାଇଁ ୟୁରୋପର ଅନେକ ରାଜ୍ୟରୁ ବଡ ବଡ଼ ମହତମାନ ଲୋକମାନେ ମହାତ୍ମାଙ୍କୁ ଅନୁରୋଧ କରୁଛନ୍ତି । ଖୁବ୍ ସମ୍ଭବ ଅପ୍ରେଲ ବା ମଇ ମାସରେ ମହାତ୍ମା ୟୁରୋପ ଯାତ୍ରା କରିବେ । ସେ ସର୍ବସୁଖରେ ଯଶସ୍ୱୀ ହୋଇ ବାହୁଡ଼ନ୍ତୁ ଏହାହିଁ ଆମ୍ଭମାନଙ୍କର କାମନା ।

('ସମାଜ', ତା ୨୮ । ୩ । ୨୮)

# ରାଜନୀତି

ସାଇମନ କମିଶନ ଭାରତକୁ ଆସି ଦୁଇମାସ ରହି ଗଲ ମାର୍ଚ୍ଚ ମାସ ୩୧ ତାରିଖରେ ନିଜ ରାଜ୍ୟକୁ ବାହୁଡ଼ିଛନ୍ତି । ସାଇମନ ଗଲବେଳେ କହିଛନ୍ତି ସେମାନେ ପୁଣି ଅକ୍ଟୋବର ମାସରେ ଆସି କାମ ଆରମ୍ଭ କରିବେ । ଏ ଦୁଇମାସରେ ସେ କେତେ ଜାଗା ବୁଲି ଦେଶ ନେତା ଓ ଦେଶ ଲୋକଙ୍କର ମତିଗତି, ନାଡ଼ି ଲକ୍ଷଣ ବାରୁଥିଲେ । ଆସେମ୍ବ୍ଲି ସେମାନଙ୍କ-ଠାରେ ବିଶ୍ୱାସ ନ ଥିବା ସ୍ପଷ୍ଟ କହିଲେ । ଏ ସଭାର ଏକ କମିଟିକୁ ପାଖରେ ରଖି ଅନୁସନ୍ଧାନ କାର୍ଯ୍ୟ ଚଳାଇବାର ଯେ ବ୍ୟବସ୍ଥା ମୂଳରୁ ହୋଇଥିଲା, ସେ ଆଶା ବର୍ତ୍ତମାନ ତୁଟିଛି । ଆସେମ୍ବ୍ଲି ପକ୍ଷରୁ କୌଣସି କମିଟି ହୋଇ ପାରିଲା ନାହିଁ । ଯୁକ୍ତପ୍ରଦେଶ, ମଧ୍ୟପ୍ରଦେଶ, ମାନ୍ଦ୍ରାଜ ପ୍ରଭୃତି ପ୍ରଦେଶର ବ୍ୟବସ୍ଥାସଭାରେ ମଧ୍ୟ ଏ କମିଶନ ବିରୁଦ୍ଧରେ ନିର୍ଦ୍ଧାରଣମାନ ଗୃହୀତ ହୋଇଛି । ଏସବୁ ପ୍ରଦେଶର ବ୍ୟବସ୍ଥାସଭା ପକ୍ଷରୁ କୌଣସି କମିଟି ବସି ସାହାଯ୍ୟ କରିବେ ନାହିଁ । କଂଗ୍ରେସ ଦଳତ ଏମାନଙ୍କ ପାଖ ମାଡ଼ିବେ ନାହିଁ । ଏପରିକି ମୁସଲିମ୍ ଲିଗ୍, ହିନ୍ଦୁ ମହାସଭା, ଶିଖମଣ୍ଡଳ, ଲିବରାଲ ଫେଡ଼ରେସନ ବା ନରମଦଳ, ହୋମରୁଲ ଲିଗ୍ ଓ ଅନ୍ୟାନ୍ୟ ଶ୍ରେଷ୍ଠବଡ଼ ଅନେକ ବିଭିନ୍ନ ଅନୁଷ୍ଠାନ ସାଇମନ କମିଶନ ସହିତ ଅସହଯୋଗ ସ୍ଥିର କରିଛନ୍ତି । ଦେଶରେ ଶିକ୍ଷିତ, ବୁଝିବାସୁଝିବା ଲୋକେ ବିଭିନ୍ନ ଦଳ ଓ ବିଭିନ୍ନ ମତରେ ବିଭକ୍ତ ହୋଇଥିଲେ ସୁଦ୍ଧା ଉପରୋକ୍ତ କେତୋଟି ଅନୁଷ୍ଠାନ ସେ ସମସ୍ତଙ୍କର କ୍ଷେତ୍ର । ଏସବୁ ଅନୁଷ୍ଠାନ ବା ଏଥିମଧ୍ୟରୁ କୌଣସିଟିରୁ ଅଲଗା ହୋଇ ପ୍ରାୟ କେହି ନାହାନ୍ତି । ଯଦି କେହି କୌଣସିଠାରେ ଏହିପରି ଅଲଗା ହୋଇ କାର୍ଯ୍ୟ କରୁଥାଏ, ସତ କହିବାକୁ ଗଲେ, ସେମାନେ କେବଳ ବ୍ୟକ୍ତିଗତ ଭାବରେ ବ୍ୟକ୍ତିଗତ ଲାଭକୁ ଚାହିଁ ଏ ଗୋଠଖଣ୍ଡି ଆପଣ ଧରୁଛନ୍ତି । ଭାରତର ଏ ମୁଣ୍ଡ ସେମୁଣ୍ଡ ପର୍ଯ୍ୟନ୍ତ ସବୁଦଳ, ସବୁମତ ଲୋକେ ଏକମେଳ ବାନ୍ଧିଛନ୍ତି । ଗଲ ଦଶନ୍ଧି ଭିତରେ ଏପରି କୌଣସି ଘଟଣାରେ ଏପରି ଏକମେଳ ଘଟି ନ ଥିଲା । ବହୁ ଉଦ୍ୟମ, ବହୁଚିନ୍ତା, ବହୁ ବିଚାର ପରେ ପ୍ରତି ଦଳ ଏବଂ ପ୍ରତ୍ୟେକ ଲୋକ ଆପଣା ଆପଣା ସଂପ୍ରଦାୟ, ମଣ୍ଡଳ ଓ ଆପଣା ଆପଣା ଭାବରେ ନିଜ ଦେଶର ସ୍ୱାର୍ଥ ବିଚାର କରି ଯେ ସାଇମନ ସଂଘ ସହିତ ଅସହଯୋଗ କରିବାକୁ ସ୍ଥିର କରିଛନ୍ତି, ଏଥିରେ ସନ୍ଦେହ ନାହିଁ । ସାଇମନ କମିଶନ ଯେପରି ଭାବରେ ଗଠିତ ହେଲା ସେଥିରେ ଯେ କେହି ଭାରତୀୟ ନିଜର ବୁଦ୍ଧିବିବେକ ଓ ଆତ୍ମସମ୍ମାନ ଜ୍ଞାନ ବଜାଏ ରଖି ଏହା ସହିତ ସହଯୋଗ କରିବ କିପରି ? ଯେଉଁମାନେ

ଏତେକାଳ ସରକାର ସହିତ ଲେଗଡେଇ ଥିଲେ କଠୋର ଭାବରେ କହିବାକୁ ଗଲେ ଯେଉଁମାନେ ବିଶ୍ୱସ୍ତ କୁକୁରପରି ସେମାନଙ୍କ ପଛରେ ବହୁକାଳରୁ ଗୋଡ଼ାଇଛନ୍ତି, ଯେଉଁମାନଙ୍କର ରକ୍ତମାଂସ, ଅସ୍ଥି ମଜ୍ଜା ସେମାନଙ୍କର ବାମ୍ଫ ଆଣିରେ ସିଝିସାରଲାଣି, ସେମାନଙ୍କ ଭିତରୁ ଜଣଙ୍କଠାରେ ସୁଦ୍ଧା ଏ ଘଟଣାରେ ଇଂରେଜ ଜାତିର ପରାମର୍ଶ ପାଇଲା ନାହିଁ। ଏପରି କାହାକୁ ଜଣେହେଲେ ସେମାନେ ସାଙ୍ଗକୁ ରଖିଲେ ନାହିଁ। ଆମେ ଦଳେ ସମସ୍ତେ ଯଦି ସ୍ୱେର ଚୁଟି କରି। ତେବେ ଆମେ କେଉଁ ମୁହଁରେ ତୁମ ପାଖକୁ ଯିବୁ ? ତୁମ ସଙ୍ଗରେ ବସିବାର ଅଧିକାର ଆମର ନାହିଁ, କାରଣ ଆମେ ଅବିଶ୍ୱାସୀ ବା ଅଯୋଗ୍ୟ ବୋଲି ତ ? କଂଗ୍ରେସ ଦଳ କଥା ଛାଡ଼। ଯେ ନରମଦଳ ଓ ତହୁଁ ନିମ୍ନ ରାଜଭକ୍ତ, ଏତେକାଳ ଲେଗଡ଼େଇଲେ, ସେମାନଙ୍କୁ ସୁଦ୍ଧା ଟିକିଏ ପଚାରିଲେ ନାହିଁ। ଏ ଅବସ୍ଥାରେ ଭାରତୀୟ ପକ୍ଷରେ ଅସହଯୋଗ ଛଡ଼ା ଅନ୍ୟ କୌଣସି ପନ୍ଥା ଅଛି କି ? ଆହୁରି ଏକ କଥା—ଏ କମିଶନ ଭାରତକୁ ଆଉ କି ଅଧିକାର ଦେବେ ଏହି କଥା ବିଚାର କରିବେ।

କି ବିଚାର କରିବେ ? ଇଂରେଜମାନଙ୍କ ରାଜ୍ୟ ନିତାନ୍ତ ଗ୍ରେଟ—ଲକ୍ଷେ କୋଡ଼ିଏ ହଜାର ବର୍ଗମାଇଲ। ଲୋକସଂଖ୍ୟା ପାଞ୍ଚକୋଟିରୁ କମ୍। ଭାରତର ଆକାର ୧୮ ଲକ୍ଷ ବର୍ଗମାଇଲରୁ ଅଧିକ। ଲୋକସଂଖ୍ୟା ପ୍ରାୟ ବତିଶକୋଟି। ସାମାନ୍ୟ ଟିକିଏ ରାଜ୍ୟ ଓ ମୁଷ୍ଟିମେୟ କେତେକ ଲୋକ ଏତେ ବଡ ରାଜ୍ୟ ଓ ଏତେ ଲୋକଙ୍କୁ କବଳରେ ରଖିଛନ୍ତି। ଏଥିପାଇଁ କେଣ କମ୍ ଉଦ୍‌ବେଗ ଓ ଉଦ୍ୟମ ! ନିମ୍ନଲିଖିତ ହିସାବରୁ ତାହାର ମର୍ମ ବୁଝାପଡ଼ିବ। ଇଂରେଜ ରାଜ୍ୟର ଆମଦାନି ଦ୍ରବ୍ୟର ମୂଲ୍ୟ ୧୯୨୦-୨୧ ସାଲରେ ୪୩୨ କୋଟି ଟଙ୍କା, ରପ୍ତାନି ଦ୍ରବ୍ୟର ମୂଲ୍ୟ ୪୪୧ କୋଟି ଟଙ୍କା। ସେହି ସାଲରେ ଭାରତର ଆମଦାନି ଦ୍ରବ୍ୟର ମୂଲ୍ୟ ୫୪୦ କୋଟି ଓ ରପ୍ତାନି ଦ୍ରବ୍ୟର ମୂଲ୍ୟ ୪୩୨ କୋଟି ଟଙ୍କା। ଆମର ଆମଦାନି ଦ୍ରବ୍ୟର ମୂଲ୍ୟ ବେଶି ଅର୍ଥ ଆମର ସେତିକ କ୍ଷତି। ତାଙ୍କର ରପ୍ତାନି ଦ୍ରବ୍ୟର ମୂଲ୍ୟ ବେଶି ଅର୍ଥ, ତାଙ୍କର ସେତିକ ଲାଭ। ଏହାବାଦ୍ ଆମରାଜ୍ୟ ତାଙ୍କ ରାଜ୍ୟର ପ୍ରାୟ ୧୫ ଗୁଣ, ଅଥଚ ଆମ ବାଣିଜ୍ୟ ବିଭବ ତାଙ୍କ ବାଣିଜ୍ୟ ବିଭବଠାରୁ ନ୍ୟୂନ। ସେମାନଙ୍କର ଏ ବିଶାଳ ବାଣିଜ୍ୟ ବିଭବର ମୂଳ ଭାରତବର୍ଷ। ଏହାକୁ ଅଧୀନସ୍ଥ କରି ରଖିଥିବାରୁ ଶସ୍ତାରେ ଏଠାରୁ ପଣ୍ୟଦ୍ରବ୍ୟ କିଣି ନେଉଛନ୍ତି। ମହଙ୍ଗାରେ ମାଲ ଆଣି ବିକୁଛନ୍ତି। ଏଠାରେ ମଧ୍ୟ ରାଜସୁଖ ଓ ରାଜପଦ ପାଇ ବେତନ ସୂତ୍ରରେ କୋଟି କୋଟି ଟଙ୍କା ନେଉଛନ୍ତି। ଭିତରି ଉପାୟରେ ଯେ କେତେ ଯାଉଛି, ଅଶାତ ଇତିହାସରୁ ତାହା ବେଶ୍

ଜଣାପଡ଼େ । 'ରାଜା ହରନ୍ତ ସର୍ବସ୍ୱଂ; ତସ୍ୟ କା ପର ବେଦନା' ଏଥିକି ଆଉ ଆମର ଗୃହ କ'ଣ ? ଏ ଅବସ୍ଥାରେ ସେମାନେ ଭାରତକୁ ଛାଡ଼ିବେ କପରି ? ଛାଡ଼ିଲେ ବା ଚଳିବେ କପରି ? ଭାରତ ଯେଉଁଦିନ ସେମାନଙ୍କ ହାତରୁ ଯିବ, ସେଦିନ ସେମାନଙ୍କର ବଳ ବୁଦ୍ଧି ଚୂର୍ଣ୍ଣ ହେବ ।

ଏଥିରେ ଭାରତକୁ କୌଣସି ପ୍ରକୃତ ଅଧିକାର ସେମାନେ ଦେବେ କି ? ଦେବା ସମ୍ଭବ କି ? ସେମାନେ ଚିରଦିନ ଭାରତକୁ ହାତରେ ରଖିବାର ସଂକଳ୍ପ କରିଛନ୍ତି । ଯେତେ କମିଶନ ବସୁ, ଯେତେ ଖୋସାମତ କର, ଯେତେ ସହଯୋଗ କର, ସେଥିରେ ତାଙ୍କର ଭ୍ରମ ପ୍ରତି ତିଳେ ଦୃଷ୍ଟିମାତ୍ର ନାହିଁ । ଏ ଅବସ୍ଥାରେ ସାଇମନ କମିଶନ ଯେ କ'ଣ କରିବେ ତାହା ନିଶ୍ଚୟ ଆଗରୁ ସ୍ଥିର ହୋଇ ସାରିଛି । ସେ କଥାଟା ଘୋଷଣା କରିବା ପୂର୍ବରୁ ଲୋକ ଲଜ୍ଜାକୁ ଏ ଅନୁସନ୍ଧାନ ଗୋଟାଏ ଛଳନା । ଏପରି ଗୋଟାଏ ଅନୁସନ୍ଧାନ ହାଉଆ ଉଡ଼ାଇ ଶେଷରେ ଅସଲ କଥାଟା କହିଲେ, ଲୋକେ ବୁଝିବେ ଯେ ହଁ ଏଟା ଅନୁସନ୍ଧାନର ଫଳ ।

ଏପରି କ୍ଷେତ୍ରରେ ଆମେ ତାଙ୍କ ସଙ୍ଗେ ଅପମାନ ସହି, ତାଙ୍କୁ ପ୍ରଭୁରୂପେ ପୂଜା କରିବାରେ ଆମର କି ଲାଭ ? ଅଯଥା ଗୁଡ଼ାଏ ପଇସା ଖରଚ, ଦେହରେ ମୁଣ୍ଡରେ ପୀଡ଼ା । ସେମାନେ ଆସିଛନ୍ତି, ଦେଖନ୍ତୁ; ଯାହା କରିବାର କରନ୍ତୁ । ତାଙ୍କର ପ୍ରତିନିଧିମାନେ ଏ ରାଜ୍ୟରେ ଦେଢ଼ଶ ବର୍ଷ ହେଲା ରହି ରାଜ୍ୟ ଚଳାଉଛନ୍ତି । ସେମାନେ କ'ଣ ଆମର ଦୁଃଖ ଦୁର୍ଦ୍ଦଶା ଓ ଦାବୀ ବୁଝିନାହାନ୍ତି ନା ଜଣାଇ ନାହାନ୍ତି ? ସେଥିରେ ଯଦି କିଛି ଫଳ ନ ହୋଇଛି; ଏ ସାତଭାଇଆ ସାତସପ୍ତା ବୁଲିଯାଇ କ'ଣ କରିବେ ? ଆମ୍ଭମାନଙ୍କର ଏକମାତ୍ର କର୍ତ୍ତବ୍ୟ ଏ କ୍ଷେତ୍ରରେ ସେମାନଙ୍କଠାରୁ ଅଲଗା ହୋଇ ରହିବା । ସେମାନେ ତାଙ୍କ ମନକୁ କ'ଣ କରୁଛନ୍ତି ଦେଖିବା ।

ଅଧିକାର ପାଇବାର ଏକମାତ୍ର ଉପାୟ ନିଜର ବଳ, ବପୁ ଓ ଅକ୍ତିଆର ବଢ଼ାଇବା ଲୋକେ ତାଙ୍କର ଦାବୀ ବୁଝିବେ, ସେମାନେ ସୁସ୍ଥ ସବଳ ହୋଇ ବଞ୍ଚି ରହିବେ ଏବଂ ନିଜ ମାମଲତ ବୁଝିବାପାଇଁ ତିଆର ହେବେ । ନେତୃସ୍ଥାନୀୟ ଓ ପଢ଼ାଶୁଣା ଲୋକେ ଦେଶର ଗୁରିଆଡ଼େ ଲାଗିପଡ଼ି ଏଥିପାଇଁ କାର୍ଯ୍ୟ କରିବା ଦରକାର । ଦେଶର ଲୋକ ସାଧାରଣ ମଧ୍ୟ ଏକଥା ବୁଝିବା ଆବଶ୍ୟକ ।

('ସମାଜ' ତା ୧୧ । ୪ । ୨୮)

---

# ବ୍ରିଲାତ ଓ ଭାରତର ସ୍ଥିତି

ବିଲାତର ଶ୍ରମଜୀବୀଦଳଙ୍କର ବର୍ତ୍ତମାନ ଘୋର ଉଦ୍‌ବେଗ ପଡ଼ିଅଛି । ଏ ଦଳରେ ବାଁ ଡାହାଣ ଦୁଇଟି ଫାଙ୍କ । ଡାହାଣିଆଙ୍କର ଡାହାଣହାତ ଟିକିଏ ଟଳେ । ବାଉଁଆଙ୍କର କପାଳ ବଡ଼ ବାମ । ଏହାବୋଲି ଜାତିଦଳଙ୍କ ସଙ୍ଗେ କେହି ସମାନ ନୁହନ୍ତି । ଏ ଦଳର ପ୍ରାୟ ସମସ୍ତେ ଧନୀ ଓ ମଧ୍ୟବିତ୍ତ ଶ୍ରେଣୀର ଲୋକ । ବାଣିଜ୍ୟ ବ୍ୟବସାୟର ମାଲିକମାନେ ଏହି ଦଳରେ । ଫଳରେ ଏମାନଙ୍କ ହାତରେ ବହୁତ ଟଙ୍କା । ଏ ଦୁଇଦଳ ବାଦ ପୁଣି ବଳସେବୀ ଦଳ ଅଛନ୍ତି । ବିଲାତରେ ଏ ଦଳର ଶକ୍ତି କ୍ରମେ ବଢ଼ୁଛି । ଏବେ ଜାତି ଏବଂ ବଳସେବୀ ଦଳ ମଧ୍ୟରେ ଶ୍ରମଜୀବୀଦଳ ଚପି ହୋଇଯିବା ଉପରେ ବସିଲେଣି । ବେଶି ଡାହାଣିଆଙ୍କ ଅବସ୍ଥା ଶୋଚନୀୟ । ଏଥିମଧ୍ୟରେ ଶ୍ରମଜୀବୀଦଳର ମତଭେଦ କ୍ରମେ ବିକୃତ ଆକାର ଧରୁଛି । ଜାତିଦଳଙ୍କର ତ ଏମାନଙ୍କୁ ଏକାବେଳକେ ଲୋପ କରିବା ପାଇଁ ଉଦ୍ୟମ, ବିଶେଷତଃ ଡାହାଣିଆ ନେତା ମାକଡୋନାଲ୍‌ଡ ଓ ଥମାସ ପ୍ରଭୃତିଙ୍କ ବଳସେବୀ ଦଳମାନେ ବିଶେଷ ଉତ୍ତେଜିତ ହୋଇଛନ୍ତି । ଏପରିକି ଏ ନେତାମାନେ ଭୋଟବେଳେ ଯେଉଁଠାରେ ଛିଡ଼ାହେବେ ବଳସେବୀମାନେ ସେଠାରେ ଷଡ଼ଯନ୍ତ୍ର କରି ଏମାନଙ୍କୁ ହରାଇବାର ଫିକର କରୁଛନ୍ତି । ଏ ବିପତ୍ତିବେଳେ ଶ୍ରମଜୀବୀଙ୍କ ହାତରେ ପୁଣି ଟଙ୍କାପଇସା କିଛି ନାହିଁ । ସେଥିପାଇଁ ନେତାମାନେ ବର୍ତ୍ତମାନ ଭିକ୍ଷା ଝୁଲିଧରି ବୁଲୁଛନ୍ତି ଏବଂ କେତେକ ଧନୀ ଲୋକଙ୍କୁ ଅକ୍ତିଆର କରିବାର ମଧ୍ୟ ଫିକର ହେଉଛି । ଏପରି ଅବସ୍ଥାରେ ଆସନ୍ତା ଭୋଟବେଳେ କେଉଁଦଳର କି ଅବସ୍ଥା ହେବ କୁହାଯାଇ ନ ପାରେ ।

× × ×

ଏଥିରେ ଆମର ଅବଶ୍ୟ କିଛି ଯାଏ ଆସେ ନାହିଁ । ବର୍ତ୍ତମାନ ସଫା ଜଣା ପଡ଼ିଲାଣି "ମଇଁଷୀ ଶିଙ୍ଘ ଫଟା, ଯୁଝିଲା ବେଳକୁ ଗୋଟା ।" ଏ ଧଳାମୁହାଁଯାକ ଆପଣା ଭିତରେ ସବୁ ବାଡ଼ିଆପିଟା ଲଗାଇଛନ୍ତି । ଭାରତକଥା ପଡ଼ିଲାବେଳକୁ ସମସ୍ତେ ଏକ ଜୋଟ । ମୂଳଆଦଳ ଆଗେ ଭାରତ ଲୋକଙ୍କପାଇଁ କେତେ କାନ୍ଦୁଥିଲେ । ଏବେ ସାଇମନ କମିଶନ କଥା ପଡ଼ିଲାବେଳକୁ ଜାତିଙ୍କ ସଙ୍ଗେ ଜୋଟ ବାନ୍ଧିଦେଲେ । କେତେକ ପ୍ରୀତି କରୁଥିଲେ; ଏବେ ସେ ପ୍ରୀତି ଗଲା କୁଆଡ଼େ ? ନ ଜାଣି କବି କହିଥିଲେ—ଦୂରୁ କହାର କେତକୀ ଗୋଶ୍ୱ ପ୍ରୀତି କି ।

× × ×

ଆଫଗାନ ଓ ଜାପାନ ମଧ୍ୟରେ ବର୍ତ୍ତମାନ ବନ୍ଧୁତା ଓ ସନ୍ଧି ହୋଇଅଛୁ । ଲଣ୍ଡନଠାରେ ଆଫଗାନ ମନ୍ତ୍ରୀ ଜାପାନ ଦୂତ ଅପ୍ରେଲ ୪ ତାରିଖ ଦିନ ଏ ସନ୍ଧି ପତ୍ରରେ ସ୍ୱାକ୍ଷର କଲେ । ଏଠାରୁ ଫେର ଫ୍ରାନ୍ସ ଜର୍ମାନିବାଟେ ଆଫଗାନର ଅମୀର ଅମାନୁଲା ରୁଷିଆ ରାଜ୍ୟ ବୁଲିବାକୁ ଯାଉଛନ୍ତି । ସେଠାରେ ୬୧ ଦିନ ରହିବେ । ଆଗେ ଆଗେ ଇଂଲଣ୍ଡ ଫ୍ରାନ୍ସ ଆଦି ବୁଲି ପରେ ରୁଷ ରାଜ୍ୟରେ ଯାଇ ଏତେକାଳ ରହିବାରୁ ଅନୁମାନ ହୁଏ, ଅମୀରଙ୍କର ସେ ରାଜ୍ୟ ହାଲ ଦେଖାଶୁଣା କରିବା ଓ ସେମାନଙ୍କ ସଙ୍ଗେ ମେଳ ବାନ୍ଧିବାର ବେଶୀ ଆଗ୍ରହ । ଅମୀର ସବୁଠା ଗୁଣି ଗୁଣି ଶେଷରେ ମନ ଏଠାରେ ଲଖାଇବା ବିଚିତ୍ର ନୁହେଁ । କଥାରେ ଅଛି କହନ୍ତି—ବୁଢ଼ାର ସାନ (ଶେଷ) 'କନ୍ୟା'ରେ ବେଶୀ ସ୍ନେହ ।

× × ×

ବିଲାତର ଲଙ୍କାସାୟାର ଲୁଗାକଲରେ ବର୍ତ୍ତମାନ ଭାରି ଆତଙ୍କ । ସେମାନଙ୍କ ଲୁଗା କାରବାର ବହୁତ କମିଯାଉଥିବାରୁ କେତେଗୁଡ଼ାଏ କଲୱାଲା ପୁଣି ଅଲଗା କୋମ୍ପାନୀ କାରଖାନା କରି ଲୁଗା ଉଆରର ବିସ୍ତାର କରୁଛନ୍ତି । ଉପରି ଆହୁରି ଶସ୍ତାକଲେ ଲୋକେ ଦେଶୀ ଗୁଡ଼ ବଳଦ ଧରିବେ ସେଥିର ଭାଲେଣି ପଡ଼ିଛି ।

କେଁ କେଁ କେଁ ଅରଟ
ଦରିଆ ପାରରେ ଲାଗିଛି ନାଟ

× × ×

ଗୌରାଙ୍ଗୀ କୁଳଚନ୍ଦ୍ରମା ଆମେରିକାର ମିସ୍ ମେଓ ଏବେ ମିଶର ରାଜ୍ୟକୁ ଶୁଭାଗମନ କରୁଛନ୍ତି । ଏ ଚରକୁମାରୀ ଆମ ଭାରତରେ ଦିନ କେତେଟା ବୁଲି ଏ ଦେଶରେ ଥିବା ସରକାରୀ ବେସରକାରୀ ଗୋରାଙ୍କ ଘରେ ରହି ମଉଜ ମଜଲିସ କରି ଏକ ଲେଖା ଲେଖିଲେ । ସେଥିରେ ଆମ ଦେଶ ନାରୀମାନଙ୍କୁ ଅସତୀ ଓ ଆମ ଲୋକଙ୍କୁ ଅସଭ୍ୟ ବୋଲି ରଚିତ ହୋଇଛି । ମିଶରରେ ବର୍ତ୍ତମାନ ସେଠା ଅଧିବାସୀଙ୍କ ସହିତ ଇଂରେଜଙ୍କର ଭିଡ଼ା ଓଟରା ଲାଗିଛି । ଏ ମଉକା ଦେଖି ପୁଣି ଏ ମେଳ୍ହଡ଼ୀ ସେଠାକୁ ଗଡ଼ୁଛନ୍ତି । ସେଠାର କି କୁତ୍ସା ଗାଇବ କେଜାଣି । ଇଂରେଜମାନେ ଭିଡ଼ାଦେଇ ଏ ସ୍ତ୍ରୀଲୋକଟାକୁ ନ ନେଉଥିଲେ ସେ କେବଳ ଇଂରେଜ ମୁଲକ ବୁଲନ୍ତା କିଆଁ ?

× × ×

ଭାରତ ଦେଶୀୟ ରାଜ୍ୟ ଓ ଗଡ଼ଜାତ ଶାସନ ଅନୁସନ୍ଧାନ କରିବାପାଇଁ ଯେ କମିଟି ବସିଛି ସେ କମିଟି ସଙ୍ଗେ ଦେଖା କରିବାପାଇଁ ବିଭିନ୍ନ ଗଡ଼ଜାତର ଦେବାନମାନେ ନାକଟରେ ବମ୍ବେଇ ଯାଉଛନ୍ତି । ଏ କମିଶନ ଅପ୍ରେଲ ୨୫ ତାରିଖ ଭାରତ ଛାଡ଼ି ବିଲାତ ଯିବେ । ଶୁଣାଯାଏ ଏ କମିଟି ରାଜାମାନଙ୍କୁ କୌଣସି ଅଧିକାର ଦେବେ ନାହିଁ । ଭାରତ ସରକାରଙ୍କର ଆଉ ଜଣେ କାର୍ଯ୍ୟକାରୀ ମେମ୍ବର ରହିବେ । ସେ ରାଜନୈତିକ ଏବଂ ଦେଶୀୟ ରାଜ୍ୟ ଶାସନ ବୁଝିବେ ।

(‘ସମାଜ’ ତା ୧୧ । ୪ । ୨୮)

# ବିଲାତ ଲୋକଙ୍କ ଆଖିରେ ଭାରତ

ସାଇମନ ଦଳ ଗଲା ୧୪ ତାରିଖ ବିଲାତରେ ପହଞ୍ଚିଛନ୍ତି । ତାଙ୍କୁ ଅଭ୍ୟର୍ଥନା କରିବାପାଇଁ ବଡ଼ ବଡ଼ ସରକାରୀ ଲୋକ ଆସିଥିଲେ । ସାଇମନ ସେଠାରେ ଯାଇ ଭାରତରେ ତାଙ୍କୁ ଯେ ଅପୂର୍ବ ଅଭ୍ୟର୍ଥନା ମିଳିଲା ସେକଥା ବହୁତ ବଖାନ କଲେ । ସେ କହିଲେ—"ଭାରତରେ ଆମକୁ ଅନେକ ଲୋକ ଅଭ୍ୟର୍ଥନା କରିଛନ୍ତି । ଯେଉଁ ଦଳକ ବୟ୍କଟ କରିବାପାଇଁ ବଦ୍ଧପର ବାନ୍ଧିଥିଲେ, ଏବେ ତାଙ୍କ ମନ ସୁଦ୍ଧା ଗୁଡ଼ୁ ପୁଡ଼ୁ ହେଲାଣି । ଅନେକେ କପର ଖସିଆସି ଆମ ସଙ୍ଗେ ସହଯୋଗ କରିବେ ସେହିକଥା ବିଚାରୁଛନ୍ତି । ଆମ୍ଭମାନଙ୍କର ଆଶା ଏପରି ନିର୍ବୋଧ ଭାବରେ କେହି ଅଲଗା ନ ରହି ଆମେ ଆରଥର ଗଲାବେଳକୁ ଆମ ସଙ୍ଗେ ସହଯୋଗିତା କଲେ ଭାରତ ଯୋଗ୍ୟ ବୋଲି ଜାଣିବାକୁ ହେବ ।

ଯେପରି ଦେଖାଯାଉଛି ଏ ସାଇମନ ଦଳ ଗୋଟେ ନିଲଠା ଦଳ । ଏ ଦେଶରେ ସ୍ଥାନେ ସ୍ଥାନେ ତଡ଼ା ପାଇଲେ । ଲାଞ୍ଛନା ଅପମାନ ଭୋଗିଲେ । ଏହି ଅପମାନ ଫାଶରେ ଦିଲ୍ଲୀରୁ କଲିକତା ପଳାଇ ଆସିବାକୁ ବେଳ ଅଣ୍ଟିଲା ନାହିଁ । ତଥାପି କହୁଛନ୍ତି ଏ ସବୁରେ ତାଙ୍କର ବିରାଟ ଅଭ୍ୟର୍ଥନା । ଗୋଟାଏ ଗଉଡ଼ ତା ଭାରିଯାକୁ କଥା କଥାକେ ଠାଙ୍କେ ଠାଙ୍କେ ଛେଚେ । ଭାରିଯା କିନ୍ତୁ ସାଇପଡ଼ିଶାଯାକ ବୁଲି ବୁଲି କହେ 'ମୋ ଘଇତା ମୋତେ ଭାରି ସୁଖ ପାଏ' ସାଇ ମାଇପେ କହନ୍ତି—'କିଲୋ, ନିତି ତ ଠାଙ୍କେ ଲେଖେଁ ଖାଉଛୁ, ଆଉ ସୁଖ ପାଉଛୁ ବୋଲି କହୁଛୁ କଣ ? କାଲି ପରା ବିଧା ଗୃପୁଡ଼ା ଖାଇଲୁ ? 'ଗଉଡ଼ୁଣୀ କହିଲା—ମଲା, ମଲା

ଗୃପୁଡ଼ା ଚନ ଉଖୁଡ଼ା
' ମୁଁ ତାଇ ନ ଲେଖଇ ମାଡ଼ରେ
ବିଧା— ପିଠି ସିଧା
ମୁଁ ତାଇ ନ ଲେଖଇ ମାଡ଼ରେ

ସାଇ ମାଇପେ କହିଲେ, 'ଅଠଦିନ ତଳେ ଯେ ଯୁଅଳି ଚିହ୍ନ ଖାଇଲୁ' ? ଗଉଡ଼ୁଣୀ କହିଲା—

ଫୁଆଲା ଡ୍ରହ ଘଷି ଦେଲାପରି ଲଗଇ ଦାହ
ମୁଁ ତାଇ ନ ଲେଖଇ ମାଡ଼ରେ ।

ଯେପରି ଦେଖାଯାଉଛି ଏ ସାଇମନ ଦଳ ଏ ଗାଲେଇ ଗଉଡ଼ୁଣୀ ଢଙ୍ଗ ଧରିଛନ୍ତି ।

× × ×

ମିସ୍ ମେଓ ଭାରତ ବିଷୟରେ ଯେଉଁ ବହି ଲେଖିଛନ୍ତି, ସେଥିରେ ସେ ଉଲ୍ଲେଖ କରିଛନ୍ତି—"ଭାରତରେ ହିନ୍ଦୁମାନେ ପ୍ରକୃତ ପ୍ରଣୟ ଜାଣନ୍ତି ନାହିଁ । ବର ାଇପଙ୍କୁ ଛନ୍ଦି ଦେଲାପରେ ସ୍ତ୍ରୀ ପୁରୁଷ ମଧ୍ୟରେ ପ୍ରଣୟ ଥାଉ ନ ଥାଉ ବୈବାହିକ ସ୍ନେହ ଦେଖାଇବାକୁ ଉଭୟ ବାଧ୍ୟ । ପାଶ୍ଚାତ୍ୟ ଦେଶରେ ଆମର ତାହା ନୁହେଁ, ଏ ଦେଶରେ ଆମର ବିବାହ ପ୍ରଣୟ ବନ୍ଧନ । ଜଣେ ଜଣକୁ ଆଗ ପ୍ରେମ କରେ । ତାପରେ ବିବାହ ହୁଏ ।" ସତକଥା, ଆମ ଦେଶରେ ବିବାହ ବନ୍ଧନ ବୈବାହିକ ପ୍ରଣୟର ମୂଳ । ଜଣେ ଜଣକୁ ବିବାହ କଲେ, ସେ ବନ୍ଧନକୁ ପବିତ୍ର ବନ୍ଧନ ବୋଲି ଜ୍ଞାନ କରେ । ଉଭୟେ ପରସ୍ପର ସୁଖ ଦୁଃଖରେ ଭାଗୀ ହୋଇ ଚିରଜୀବନ କଟାନ୍ତି ! ବିଲାତରେ ତାହା ନୁହେଁ । ସେ ଦେଶର ପ୍ରଣୟ କ୍ଷଣସ୍ଥାୟୀ । ବିବାହ ବନ୍ଧନ - ବନ୍ଧନ ନୁହେଁ । ଏହା ଅସ୍ଥାୟୀ କାଳିକ ବନ୍ଧନ । ଗୋଟିଏ ଗୋଟିଏ ସ୍ତ୍ରୀଲୋକ ଗୋଟାକ ପରେ ଗୋଟାଏ କରି ୮।୧୦ଟା ପତି ମଧ୍ୟ ବିବାହ କରି ପାରନ୍ତି । ଆମେରିକାରେ ବର୍ଷରେ ବିବାହ ଯେତେ ସେଥିରୁ ଅଧେ ଛାଡ଼ପତ୍ର । ଏଥିରୁ ବେଶ୍ ବୁଝାଯାଉଛି ଏମାନଙ୍କ ପ୍ରଣୟର ମହତ୍ତ୍ୱ କେତେ ଓ ଗୁରୁତା କେତେ । ହିନ୍ଦୁର ଏ 'ପବିତ୍ର ବିବାହ ବନ୍ଧନ ସମାଜକୁ ଏତେକାଳ ଦୃଢ଼ୀଭୂତ କରି ରଖିଛି । ଆମ ସମାଜର ଅବଶ୍ୟ ଦୋଷ ଅଛି । କିନ୍ତୁ ଆମଦେଶ ଲୋକେ ଘନଘନ ହାତ ପତି କରିବା ଆମ ଦେହରେ ସୁହାଇବ ନାହିଁ । ବିଲାତର ବୈବାହିକ ପ୍ରଥା ଦେଖିଲେ ମନେହୁଏ, ସେ ଦେଶ ଲୋକଙ୍କର ବୋଧହୁଏ ଧାରଣା—

ଯାହାର ଯେତେକ ପତି
ସେ ନାରୀ ସେତେକ ସତୀ ।

('ସମାଜ' ତା ୧୮ । ୪ । ୨୮)

——

# ବର୍ଦ୍ଦୋଲିରେ ସତ୍ୟାଗ୍ରହ

ବର୍ଦ୍ଦୋଲିରେ ସତ୍ୟାଗ୍ରହ ସଂଗ୍ରାମ ଯେ ଆକାର ଧରିଲାଣି ନିକଟରେ ତାହାର ମୀମାଂସାର ଆଶା ନାହିଁ । "ମନ୍ତ୍ରଂ ବା ସାଧୟେତ୍ ଶରୀରଂ ବା ପାତୟେତ୍" ଲୋକେ ଏହି ସଂକଳ୍ପ କରି ବସିଛନ୍ତି । ସରକାର ଆପଣା ଜିଦ୍ ଛାଡ଼ୁ ନାହିଁ । ସରକାର୍ ବର୍ଦ୍ଦୋଲି ପ୍ରଜାଙ୍କ ପାଖେ ହାରିଲେ ଯେ ଯେ ଭାରତ ଜାତି ପାଖେ ହାରିଲେ । ସୁତରାଂ ବର୍ଦ୍ଦୋଲି ସତ୍ୟାଗ୍ରହର ଜୟ କେବଳ ସେଠା ଲୋକଙ୍କ ଜୟ ନୁହେଁ, ସମଗ୍ର ଭାରତର ଜୟ । ଯଥାର୍ଥରେ ମହାତ୍ମାଗାନ୍ଧୀ କହିଛନ୍ତି, ବର୍ଦ୍ଦୋଲି ସମସ୍ୟା ସ୍ଥାନୀୟ ବା ପ୍ରାଦେଶିକ ସମସ୍ୟା ନୁହେଁ; ଏହା ସମଗ୍ର ଭାରତୀୟ ସମସ୍ୟା । ବର୍ଦ୍ଦୋଲିର ଜୟ ପରାଜୟ ଉପରେ ସମଗ୍ର ଭାରତର ଭବିଷ୍ୟତ ଭାଗ୍ୟ ନିର୍ଭର କରୁଛି । ଆମ୍ଭେମାନେ ଆଗରୁ କହିଛୁଁ ବର୍ଦ୍ଦୋଲି ଭାରତୀୟ ସ୍ୱରାଜ୍ୟ ସଂଗ୍ରାମର ଅବତରଣିକା । ଏ ଅବସ୍ଥାରେ ସମଗ୍ର ଭାରତର ବର୍ଦ୍ଦୋଲି କାର୍ଯ୍ୟରେ ପୂର୍ଣ୍ଣ ସାହାଯ୍ୟ ସହାନୁଭୂତି ରହିବା ଆବଶ୍ୟକ । ବର୍ଦ୍ଦୋଲି ଲୋକେ ନିଜ ବଳରେ ବଳୀୟାନ ଅଛନ୍ତି । ସେମାନଙ୍କୁ ଗୁଜରାଟ ଭାଇମାନେ ଯଥାସମ୍ଭବ ସହାୟତା କରୁଛନ୍ତି । ମାତ୍ର ସେମାନଙ୍କୁ ଇଂରେଜ ସରକାର ସଙ୍ଗେ ମୁଣ୍ଡ ପକାଇବାକୁ ହୋଇଛି । ସେଥିଲାଗି ଯେ କେତେ ସମ୍ବଳ କେତେ ଆୟୋଜନ ଆବଶ୍ୟକ ତାହା ଅଧିକ କାହାକୁ ବୁଝାଇବାକୁ ହେବ ନାହିଁ । ବର୍ଦ୍ଦୋଲି ପ୍ରଜାମାନଙ୍କ ଉଦ୍ୟମ ପଛଆଡ଼େ ସମଗ୍ର ଭାରତର ସହାୟତା ଅଛି, ଏହା ସେମାନେ ଜାଣିଲେ ଅଧିକ ଉତ୍ସାହିତ ହେବେ ଏବଂ ଇଂରେଜ ସରକାର ଜାଣିଲେ ଅଧିକ ଅଗ୍ରସର ହେବା ପୂର୍ବରୁ ଆଜି ଠିକିଏ ଭାବି ବିଚାର କାର୍ଯ୍ୟ କରିବ । ବର୍ଦ୍ଦୋଲି ଲୋକେ ଲୋଡ଼ନ୍ତୁ ବା ନ ଲୋଡନ୍ତୁ ପ୍ରତ୍ୟେକ ଭାରତବାସୀର ସହାନୁଭୂତି ଓ ସହାନୁଭୂତି କୌଣସି ନା କୌଣସି ପ୍ରକାରରେ ଦେଖା ହେବା ଉଚିତ । ମହାତ୍ମା ଗାନ୍ଧୀ ବର୍ଦ୍ଦୋଲି ନିମନ୍ତେ ଅର୍ଥ ସାହାଯ୍ୟ ଲାଗି ଭାରତବାସୀଙ୍କ ନିକଟରେ ପ୍ରାର୍ଥନା କରିଛନ୍ତି । ମୁଁ ମହାତ୍ମାଙ୍କର ଏ ନିବେଦନ ଓଡ଼ିଶାବାସୀଙ୍କୁ ଜଣାଇ ବର୍ଦ୍ଦୋଲି ନିମନ୍ତେ ଅର୍ଥ ସାହାଯ୍ୟ ଦେବା କାରଣ ସବିନୟ ପ୍ରାର୍ଥନା କରୁଅଛି । ଓଡ଼ିଶାର ବିପଦ ଆପଦରେ ବାହାର ଲୋକେ ତାକୁ ସବୁବେଳେ ସାହାଯ୍ୟ କରୁଛନ୍ତି । ଆବଶ୍ୟକ ବେଳେ ଓଡ଼ିଶା ଅନ୍ୟ ପ୍ରଦେଶ ପ୍ରତି ସ୍ନେହ ସୋଦରତା ଦେଖାଇ ନିଜ ସାଧ୍ୟମତେ ଯତ୍କିଞ୍ଚିତ୍ ସାହାଯ୍ୟ ନ କଲେ କେବଳ ଅସୁନ୍ଦର ହେବନାହିଁ, କୃତଘ୍ନତା ହେବ । ବିଶେଷତଃ ବର୍ଦ୍ଦୋଲିର ଉପସ୍ଥିତ ପ୍ରସଙ୍ଗରେ ଓଡ଼ିଶାବାସୀ ସମଦଶାଭୋଗୀ । ବର୍ଦ୍ଦୋଲି ଲୋକଙ୍କ ଉପରେ ଜମାବୃଦ୍ଧି ହୋଇଛି । ଚଳିତ

ବନ୍ଦୋବସ୍ତରେ ଓଡ଼ିଶା ଲୋକଙ୍କ ସେହି ଦଶା ପଡ଼ିଛି । ବର୍ଦ୍ଧୋଲି ଲୋକଙ୍କର ବଳ ପରାକ୍ରମ ଅଛି ବୋଲି ସେମାନେ ସତ୍ୟାଗ୍ରହ କରି ଲଢ଼ୁଛନ୍ତି । ଓଡ଼ିଶା ଲୋକେ ଡରିମରି ଘରକଣରେ କାନ୍ଦୁଛନ୍ତି । ସୁତରାଂ ବର୍ଦ୍ଧୋଲି ଲୋକଙ୍କ ଜୟରେ ଓଡ଼ିଶା ପ୍ରଜାର ଭବିଷ୍ୟତକୁ ହେଲେ ଟିକିଏ ଆଶା ଆଶ୍ୱାସନା ହେବ । ମୋର ସମ୍ପୂର୍ଣ୍ଣ ଆଶା ଏବଂ ବିଶ୍ୱାସ ଯେ ବର୍ଦ୍ଧୋଲିର ଉପସ୍ଥିତ ଆନ୍ଦୋଳନରେ ଉତ୍କଳବାସୀ ସମସ୍ତେ ଆଗ୍ରହ ସହକାରେ ସହାୟତା କରିବେ । ଉତ୍ସାହୀ ସ୍ଥାନୀୟ କର୍ମୀମାନେ ଅପଣା ଆପଣା ଅଞ୍ଚଳରେ ଲୋକସାଧାରଣଙ୍କଠାରୁ ଅର୍ଥସଂଗ୍ରହ କରନ୍ତୁ । ବର୍ଦ୍ଧୋଲି ନିମନ୍ତେ ଯେ ଯାହା ସାହାଯ୍ୟ ଦେବାକୁ ଇଚ୍ଛା କରନ୍ତି ସମାଜ ଅଫିସ ଗୃହନାମ୍ରେ କିମ୍ବା କଟକ ଠିକଣାରେ ପଠାନ୍ତୁ । ସମାଜରେ ପ୍ରାପ୍ତିସ୍ୱୀକାର କରାଯିବ । ଯାହାର ଯାହା ଶକ୍ତି ହେବ ସେ ତାହା ଅସଙ୍କୁଚିତ ଭାବରେ ଦିଅନ୍ତୁ । ଅତି ସାମାନ୍ୟ ଦାନ ସୁଦ୍ଧା ହେୟ ନୁହେଁ । ଏ ସାହାଯ୍ୟ କେବଳ ଆନ୍ତରିକ ସ୍ନେହସହାନୁଭୂତିର ପ୍ରମାଣ । ପାଞ୍ଚଜଣରେ ଓଡ଼ିଶାର ନାଁ ପଡ଼ୁ । ଓଡ଼ିଶା ଅନ୍ୟମାନଙ୍କଠାରୁ ବହୁତ ସାହାଯ୍ୟ ପାଉଛି । ସେ ଖୁଦ ଗଣ୍ଡାଏ ହେଲେ କୋଠଥାଳରେ ପକାଉ । ଏହି ଭାବ ମନରେ ରଖି ଉତ୍କଳବାସୀ ବର୍ଦ୍ଧୋଲିକି ସାହାଯ୍ୟ କରନ୍ତୁ, ଏହାହିଁ ମୋର ପ୍ରାର୍ଥନା ।

('ସମାଜ' ତା ୧୩ । ୫ । ୨୮)

---

# ଜାତୀୟ କର୍ମ ଉତ୍କଳ ଯୁବକ

ଭାରତର ସବୁଦଳ ନେତାମାନେ ଶାସନ ବ୍ୟବସ୍ଥା ଗଠନ କରିବା ସ୍ଥିର କରିଛନ୍ତି । ମାସେ ଖଣ୍ଡିକ ଭିତରେ ଗୋଟାଏ ଗଠନ ପ୍ରସ୍ତୁତ ହେବ । ମାତ୍ର ଏଥିର ଫଳ କଅଣ ହେବ ? ବିଲାତ ପାର୍ଲିଆମେଣ୍ଟ ଏ ଗଠନ ଅନୁସାରେ ଭାରତକୁ ଶାସନ ବ୍ୟବସ୍ଥା ଦେବ କି ? ପୃଥିବୀରେ ଏହା କେବେ କେହି ଦେଇଛି ? ଇଂରେଜ ବିଦେଶୀ ସରକାର, ଭାରତ ତ ପରାଧୀନ ଜାତି । ପରାଜିତ ଜାତିର ଇଚ୍ଛା ବିଦେଶୀ ସରକାର ଏତେ ସହଜରେ ପୂର୍ଣ୍ଣ କରିବ ବୋଲି ଯଦି ଆମ ନେତାମାନଙ୍କର କ୍ଷୀଣ ବିଶ୍ୱାସ ଥାଏ ତାହାହେଲେ ଇତିହାସର "ରିଭିଜନିଷ୍ଟ" ସେମାନେ ଆରମ୍ଭ କରିନାହାନ୍ତି । ନିଜ ଦେଶର ପ୍ରଜାମାନଙ୍କୁ କୌଣସି ରାଜଶକ୍ତି ଏତେ ସହଜରେ ଅଧିକାର ଦେଇନାହିଁ । ନିଜ ବିଲାତରେ ଆଜି ପ୍ରଜାସାଧାରଣ ଯେ କ୍ଷମତା ଓ ଅଧିକାର ପାଇଛନ୍ତି ତାହା କେତେକାଳର କେତେ ସଂଗ୍ରାମ, କେତେ ରକ୍ତପାତ ଏବଂ କେତେ ସ୍ୱାର୍ଥତ୍ୟାଗର ଫଳ । ରାଜଶକ୍ତି କିଛି ଦେବାକୁ ଚାହେଁ ନାହିଁ, ସବୁବେଳେ କ୍ଷମତା ଜାରି କରି ପ୍ରଜାଶକ୍ତିକୁ ଚପାଇବାର ଚେଷ୍ଟା କରିଛି; ସବୁବେଳେ ପ୍ରଜାଶକ୍ତିକୁ ନିଜ ପ୍ରଭାବ ବଳରେ ଭୟଭୀତ କରି ରଖିବାକୁ ଉଦ୍ୟମ କରିଛି । ନାନା ଅତ୍ୟାଚାର ଅବିଚାର, ନାନା ଅନ୍ୟାୟ ଉତ୍ପାତ ମଧ୍ୟରେ ପ୍ରଜାଶକ୍ତି ଲକ୍ଷ୍ୟ ନିଗ୍ରହ ନିର୍ଯ୍ୟାତନା ଭୋଗକରି କ୍ରମେ ନିଜର ଅଧିକାର ପାଇଛି । ଆଜିସୁଦ୍ଧା ପୃଥିବୀର କେତେ ଦେଶରେ ପ୍ରଜାଶକ୍ତି ଓ ରାଜଶକ୍ତି ମଧ୍ୟରେ ଏହି ବିବାଦ ଲାଗିଛି । ଶାସନ ବ୍ୟବସ୍ଥାର ଗଠନକରି କୌଣସିଠାରେ ପ୍ରଜାଶକ୍ତି ଉଠିନାହିଁ । ହଁ, ଶାସନ ବ୍ୟବସ୍ଥାର ଗଠନଦ୍ୱାରା ଭାରତବାସୀର ଆକାଂକ୍ଷା ଅଭିପ୍ରାୟ ପ୍ରକାଶ ପାଇ ପାରେ । ଏହା ଆଗରୁ ପ୍ରକାଶ ପାଇନାହିଁ କି ? ବିଲାତି ରାଜପୁରୁଷମାନେ କହନ୍ତି ଯେ ଭାରତରେ ନାନା ଦଳ, ନାନାମତ । ହିନ୍ଦୁର ଗୋଟିଏ ପ୍ରକାର ଦାବୀହେଲେ ମୁସଲମାନର ଦାବୀ ଅନ୍ୟପ୍ରକାର, ସ୍ୱରାଜ୍ୟ ଦଳର ଗୋଟାଏ ହେଲେ ଲିବରାଲ ବା ନରମପନ୍ଥୀଙ୍କର ଅନ୍ୟମତ; ଉଚ୍ଚବର୍ଣ୍ଣମାନେ ଅଛୁଆଁ ବର୍ଣ୍ଣଙ୍କ ଶ୍ରେଷ୍ଠ ସୁବିଧାକୁ ଚାହୁଁ ନାହାନ୍ତି । ଏହିପରି ଭେଦ ଓ ପାର୍ଥକ୍ୟ ଥିବାରୁ ଇଂରେଜ ଭାରତ ଶାସନର ସୁବ୍ୟବସ୍ଥା କରିପାରୁ ନ ଥିବା ସତ କି ? ପୃଥିବୀର ସବୁ ଦେଶରେ ଗୁଣାଅଧିକେ ଏହିପରି ଭେଦଥାଇ ସେମାନେ ରାଜଶକ୍ତି ସଙ୍ଗେ ମୁଣ୍ଡ ପକାଇ ଲଢ଼ିଛନ୍ତି ଏବଂ ଆପଣାର ଅଧିକାର ଛଡ଼ାଇ ନେଇଛନ୍ତି; ଅଧିକାର ପାଇଲା ପରେ ହୁଏତ ନିଜ ମଧ୍ୟରେ ଟଣାଓଟରା ଲଗାଇଛନ୍ତି । ପରେ ପୁଣି ଶାନ୍ତି ଓ ସୁମୀମାଂସା ହୋଇଛି । ଯଥାର୍ଥରେ ଇଂରେଜ ଭାରତବାସୀଙ୍କି କିଛି ଅଧିକାର ଦେବାକୁ

ଗ୍ରହେଁ ନାହିଁ । ଭାରତବାସୀଙ୍କ ଯେତେ ଯେତେ ଚେତନା ଆସୁଛି ଇଂରେଜ ତତେଁ ତତେଁ ଅଧିକ ସାବଧାନ । ଭେଦ ବିବାଦ କଥାଗୁଡ଼ାକ କେବଳ ଛଳନା; ଭାରତବାସୀଙ୍କର ମୁହଁ ବନ୍ଦ କରିବାରି ଚେଷ୍ଟା ଏବଂ ଅନ୍ୟାନ୍ୟ ଦେଶ ଆଗରେ ନିଜକୁ ଭଲଲୋକ ହେବାର କୌଶଳ । ବେଶ, ଇଂରେଜର ଆପତ୍ତିକୁ ଖଣ୍ଡନ କରିବାଲାଗି ଆମ ନେତାମାନେ ଗୋଟାଏ ଛଟା ତିଆର କରିବେ । ସେଥିରେ ସକଳ ଦଳ ଓ ସକଳ ମତର ସମ୍ମତି ହେବ; ତାହାକୁ ଭାରତର ଜାତୀୟ ଦାବୀ ବୋଲି ଜଗତ ସମକକ୍ଷରେ ଥୋଇବାକୁ ହେବ । ଏ ଛଟା ହେବ ଭାରତରେ କେହି ଯେ ଏହାର ପ୍ରତିବାଦ ନ କରିବେ ତାହା କୁହାଯାଇ ନ ପାରେ; କେହି ପ୍ରସ୍ତୁତ ନ ଥିଲେ ସୁଦ୍ଧା ସରକାର ଗୋଟାଏ ଭେଦ ସୃଷ୍ଟି ନ କରାଇ ଛାଡ଼ିବ କି ? ଅଛୁଆଁ ବର୍ଣ୍ଣମାନଙ୍କୁ କପରି ଉତ୍ତେଜନା ଓ ପ୍ରବଞ୍ଚନା ଦିଆଯାଉଛି ତାହା କଅଣ ଲୁଚି ରହିଛି ? କୌଣସି ଟିକିଏ ଭେଦ ଦେଖାଗଲେ ବିଲାତ ପାର୍ଲିଆମେଣ୍ଟ ସେହି ଆପତ୍ତି ଦେଖାଇବେ । କେହି କାହାରିକୁ ଠକିବାକୁ ବସିଲେ ସେଥିଲାଗି ଯୁକ୍ତିର ଅଭାବ ହୁଏ କି ? ଭାରତୀୟ ନେତାମାନେ ଏହା ଯେ ନ ବୁଝି ଛନ୍ତି ନୁହେ । ତେବେ ଭାରତର ଜାତୀୟ ଆକାଂକ୍ଷାରୂପେ ଯେ ଛଟା ପ୍ରସ୍ତୁତ କରୁଛନ୍ତି ତାହା ଅଗ୍ରାହ୍ୟ ହେଲେ ତାପରେ ଉପାୟ ? ଜାତୀୟ ଦାବୀର ଉପେକ୍ଷା ଓ ଅବମାନନା କଲେ ତହିଁର ପ୍ରତିକାର ? ଜଗତର ଇତିହାସର ଭିନ୍ନ ଭିନ୍ନ ଯୁଗରେ ଲୋକ ସାଧାରଣ ଆପଣାର ଦାବୀ ପ୍ରଥମେ ଜଣାଇ ଦେଉଛନ୍ତି ।

ତାହା ରାଜଶକ୍ତି ସ୍ୱୀକାର ନ କଲେ ନିଜ ବଳରେ ନେବାକୁ ଲାଗିଛନ୍ତି ଏବଂ ନେଇଛନ୍ତି । ଆମ୍ଭମାନଙ୍କ ଛଟା ପଛ ଆଡ଼େ ସେପରି ଆୟୋଜନ ଅଛି କି ? ନେତାମାନଙ୍କ ପ୍ରସ୍ତାବର ଅବମାନନା ହେଲେ ସମଗ୍ର ଜାତି ଅବମାନନା ଅନୁଭବ କରି ରାଜଶକ୍ତିଠାରୁ ନିଜର ନ୍ୟାଯ୍ୟ ଅଧିକାର ନେବାକୁ ଜାଗି ଉଠିବ କି ? ସେଥିଲାଗି ଦେଶ ପ୍ରସ୍ତୁତ ହୋଇଛି କି ? ଦେଶକୁ ପ୍ରସ୍ତୁତ କରିବା ଲାଗି ଚେଷ୍ଟା କାହିଁ ? ଅସହଯୋଗ ଆନ୍ଦୋଳନର ପ୍ରଥମ ଦୁଇବର୍ଷ ଜାତୀୟ କର୍ମୀମାନେ ଲୋକସାଧାରଣଙ୍କୁ ଯେ ସ୍ୱରାଜ୍ୟ ବାର୍ତ୍ତା ଶୁଣାଇଥିଲେ ତାହା ଅତି କ୍ଷୀଣ ଭାବରେ କେବଳ ଆଜିସୁଦ୍ଧା ସେମାନଙ୍କ ହୃଦୟ କନ୍ଦରରେ ପ୍ରତିଧ୍ୱନିତ ହେଉଛି । ମାତ୍ର ସଙ୍ଗଠନ ଓ ସମ୍ମିଳିତ ଶକ୍ତି ଜାଗରଣ ଉଦ୍ୟମ କାହିଁ ? କଂଗ୍ରେସ ହେବାର ଛ ମାସ ଆସି ହେଲା । ଦେଶ ନେତାମାନେ ଦେଶକୁ କେତେଦୂର ପ୍ରସ୍ତୁତ କଲେ ? କାଉନ୍‌ସିଲ ଓ ଆସେମ୍ବ୍ଲିରେ କେବଳ ଧମକ ଦେବାଇ ସାର ହୋଇଛି । ଏ ଧମକର ଜୋର କେତେ ଇଂରେଜ ସରକାର ବୁଝି ନାହାଁନ୍ତି କି ? ସର୍ବଦଳ ସମ୍ମିଳନୀରେ କଂଗ୍ରେସ ସଭାପତି ଆନସାରୀ ସାହେବ କହିଛନ୍ତି, ଏଥର ଦେଶ ଭିତରେ ପଶି କାମ କରିବାକୁ

ହେବ । ଏଭଳି ବର୍ଷକୁ ବର୍ଷକୁ କାଳ ବଢ଼ିଯିବ । ମାତ୍ର କାମ ହେବନାହିଁ । ଶାସନ ବ୍ୟବସ୍ଥାର ଛାଂଚ ପ୍ରସ୍ତୁତ କରିବା ଲାଗି ଭାରତବାସୀର ସାମର୍ଥ୍ୟ ଅଛି, ଏହା ଇଂରେଜ ଜାଣେ । ମାତ୍ର ଭାରତବାସୀର କାର୍ଯ୍ୟ ସେହିଠାରେ ଶେଷ, ଏହା ମଧ୍ୟ ଜାଣେ । ଯେଉଁ ଦିନ ଇଂରେଜ ସରକାର ବୁଝିବ ଯେ କେବଳ ଛାଂଚ ଉପଲକ୍ଷ ମାତ୍ର, ଏହା ପଛରେ ସମଗ୍ର ଜାତିର ପ୍ରବଳ ଶକ୍ତି ରହିଛି, ସେ ଦିନ ଏତେ ସହଜରେ ଅବଜ୍ଞା ଅବହେଳା ଦେଖାଇବାକୁ ସାହସ କରିବନାହିଁ । ଛାଂଚ ପ୍ରସ୍ତୁତ କରିବା ବର୍ତ୍ତମାନ ପ୍ରକୃତ କାର୍ଯ୍ୟ ନୁହେଁ, କାର୍ଯ୍ୟ ଲୋକ ସାଧାରଣଙ୍କୁ ପ୍ରସ୍ତୁତ କରିବାଲାଗି ଦଶ ଏଗାର ଜଣରେ ସବ୍‌କମିଟି ଲୋଡ଼ା; ମାତ୍ର ଲୋକ ପ୍ରସ୍ତୁତ କରିବାକୁ ସହସ୍ର ସହସ୍ର କର୍ମୀ ଆବଶ୍ୟକ, ନାନା କ୍ଷେତ୍ରରେ କାର୍ଯ୍ୟ ପ୍ରସାର ଆବଶ୍ୟକ । ଶିକ୍ଷା ସାଧନା ଓ ସଙ୍ଗଠନ ବିନା ଜାତୀୟ ଶକ୍ତିର ପ୍ରକାଶ ପାଇବ ନାହିଁ । ଏହାହିଁ ବର୍ତ୍ତମାନ ଦେଶର କାର୍ଯ୍ୟ । ଓଡ଼ିଶାରେ ଏ କାର୍ଯ୍ୟ ଚଳାଇବାକୁ ହେଲେ ପ୍ରଥମେ କର୍ମୀସଙ୍ଘ ପ୍ରସ୍ତୁତ କରିବାକୁ ହେବ । ଅନ୍ୟାନ୍ୟ ପ୍ରଦେଶରେ କର୍ମୀର ସେତେ ଅଭାବ ନାହିଁ । ଗୁଜରାଟ ବନ୍ୟାବେଳେ ଶତ ଶତ କର୍ମୀ ସ୍ୱେଚ୍ଛାସେବକ ହୋଇ ବାହାରି ପଡ଼ିଲେ । ଏତେ ବାହାରିଲେ ଯେ ଅନେକଙ୍କୁ ନିଆଗଲା ନାହିଁ । ତହିଁ ପଛେ ପଛେ ଆଜି ବରଦୋଲିରେ ସତ୍ୟାଗ୍ରହ ସଂଗ୍ରାମରେ କେତେ କର୍ମୀ ପ୍ରାଣ ପ୍ରାୟଶ୍ଚିତ୍ତ କରି ଲାଗି ଯାଇଛନ୍ତି । ଜେଲ ଯିବାକୁ ପ୍ରସ୍ତୁତ ହୋଇ ବସିଛନ୍ତି; ମାତ୍ର ଓଡ଼ିଶା ବନ୍ୟା ଅଞ୍ଚଳରେ କାମ କରିବାକୁ ସ୍ୱେଚ୍ଛାସେବକ ଲାଗି କେତେ ଚିତ୍କାର କରିବାକୁ ହେଲା । ସ୍ୱେଚ୍ଛାସେବକ ହୋଇ ଆସିବା ଯେପରି ଦେଶପ୍ରତି ବା ଉଦ୍ୟୋକ୍ତାମାନଙ୍କ ପ୍ରତି ଗୋଟାଏ ଅନୁଗ୍ରହ ବୋଲି ଅନେକେ ମନେକଲେ, ଏ ଅବସ୍ଥାରେ ଓଡ଼ିଶାରେ ଜାତୀୟ ଜାଗରଣ ଚେଷ୍ଟା ବିଡ଼ମ୍ବନା ବୋଲି କେହି କେହି ମନେ କରି ପାରନ୍ତି । ମାତ୍ର ଏପରି ହତାଶାର କାରଣ ନାହିଁ । ଉତ୍କଳ ଯୁବକପ୍ରାଣ ଏକାବେଳକେ ନିସ୍ତେଜ, ନୀରସ ବା ଦେଶାନୁରାଗହୀନ ନୁହେଁ । ନାନା ଅଭାବ ଅସୁବିଧା ଦୁଃଖ ଦୈନ୍ୟ ଫଳରେ ଯୁବଭାବ ସେମାନଙ୍କର ମ୍ଳାନ ହୋଇଥିଲେ ହେଁ ମରିନାହିଁ । ଉପଯୁକ୍ତ ଆହ୍ୱାନ ଶୁଣିଲେ ଉତ୍କଳ ଯୁବକ ହୃଦୟରେ ଦେଶାନୁରାଗ ବହ୍ନି ପ୍ରଜ୍ୱଳିତ ହୋଇ ଉଠିବ । ମାତ୍ର ଉତ୍କଳ ଯୁବକ, ତୁମକୁ ଡାକିବାକୁ କେହିନାହିଁ । ସମଗ୍ର ଦେଶ ଡାକୁଛି । ନିଜେ ନିଜେ ତାହା କାନଡେରି ଶୁଣ, କାର୍ଯ୍ୟଦ୍ୱାରା ତାହାର ଉତ୍ତର ଦିଅ ।

('ସମାଜ' ତା ୩୦-୬-୧୯୨୮)

---

# ବର୍ଦ୍ଧୋଲ ସାହାଯ୍ୟ ପ୍ରାର୍ଥନା

ଭାରତର ଭିନ୍ନ ଭିନ୍ନ ପ୍ରଦେଶରୁ ବର୍ଦ୍ଧୋଲ ଲୋକଙ୍କ ସାହାଯ୍ୟ ନିମନ୍ତେ ଟଙ୍କା ଯାଉଁଛି । ଯଥାସମ୍ଭବ ହେଲେ ଓଡ଼ିଶାରୁ ଯିବା ଆବଶ୍ୟକ ବୋଲି ମୁଁ ଏଥିପୂର୍ବେ ସମାଜରେ ଉତ୍କଳବାସୀଙ୍କଠାରେ ପ୍ରାର୍ଥନା କରିଥିଲି । ଏ ପର୍ଯ୍ୟନ୍ତ କୌଣସିଆଡ଼ୁ କିଛି ଆସିନାହିଁ । ସୁଖର କଥା, ବାଲେଶ୍ୱର ଜିଲ୍ଲା ଇରମର ନୀରବ କର୍ମୀ ଶ୍ରୀମାନ ଲକ୍ଷ୍ମୀନାରାୟଣ-ପାଢ଼ୀ ମୋତେ ଆଜି ପତ୍ରଦ୍ୱାରା ଜଣାଇଛନ୍ତି ଯେ ସେ ଗ୍ରାମର କେତେକ ଉତ୍ସାହୀ ଯୁବକ ଓ ଭଦ୍ରଲୋକଙ୍କଠାରୁ ସେଠାକାର ବର୍ଦ୍ଧୋଲ ସାହାଯ୍ୟ ଲାଗି ମୋଠାକୁ ଟ ୧୫୯ ପଠାଇଛନ୍ତି । ପରେ ଆଉ କିଛି ପଠାଇବାର ଚେଷ୍ଟାରେ ଅଛନ୍ତି । ବାସୁଦେବପୁର ଥାନା ଲୋକେ ବନ୍ୟା ଦୁର୍ଭିକ୍ଷରେ କ୍ରମାଗତ ଦୁଇବର୍ଷ କାଳ ଦାରୁଣ କଷ୍ଟ ଅଭାବରେ ପଡ଼ିଛନ୍ତି । ତଥାପି ଯେତେବେଳେ ବାହାରୁ ସେମାନଙ୍କ କାନରେ ଡାକ ବାଜୁଛି; ସାଧ୍ୟମତେ ନିଜ ପେଟରୁ କାଟି ସାହାଯ୍ୟ ଦେବାକୁ ଚେଷ୍ଟା କରିଛନ୍ତି । ପୂର୍ବବଙ୍ଗ କଥା, କପିଳେଶ୍ୱର ଘରପୋଡ଼ି, ଡଗ୍ରାଗ ଘୂର୍ଣ୍ଣିବାୟୁ ଘଟନାରେ ବାସୁଦେବପୁର ଲୋକେ ସାହାଯ୍ୟ ପଠାଇ ଥିଲେ । ଆଜି ଘୋର ଅଭାବ ଓ ଅନ୍ନକଷ୍ଟରେ ପଡ଼ି ମଧ୍ୟ ବାସୁଦେବପୁର ଆପଣାର ଉଦାରତା ଓ ପରୋପକାର ପ୍ରବୃତ୍ତି ରଖିଅଛି । ଉତ୍କଳର ସବୁଅଞ୍ଚଳର ଲୋକଙ୍କଠାରେ ଏହିଭାବ ଦେଖାଗଲେ ଓଡ଼ିଆ ଜାତିର ସହୃଦୟତା ଏବଂ ପୂର୍ଣ୍ଣପ୍ରାଣତା ପ୍ରକାଶ ପାଆନ୍ତା । ବର୍ଦ୍ଧୋଲ ଆନ୍ଦୋଳନରେ ଯଥାସମ୍ଭବ ସାହାଯ୍ୟ କରିବାଦ୍ୱାରା ଭାରତୀୟ ମୁକ୍ତି ସେତୁରେ ଗୁଣ୍ଡିଚମୂଷା ଧୂଳି ଝାଡ଼ିବା ହୋଇପାରେ । ମାତ୍ର ଗୁଣ୍ଡିଚର ସେତୁବନ୍ଧ ନିର୍ମାଣରେ ଯେ ଭାଗ ଅଛି, ଏକଥା ଆଜି ଯୁଗ ଯୁଗାନ୍ତର ପରେ ସୁଦ୍ଧା ତ ରହିଛି । ତାହାପରି କୌଣସି ଜାତୀୟ ଆନ୍ଦୋଳନରେ ସାହାଯ୍ୟ କରିବାଦ୍ୱାରା ଓଡ଼ିଆମାନଙ୍କର କୂପ ମଣ୍ଡୂକତା ଓ ସଙ୍କୀର୍ଣ୍ଣତା ଦୂରହେବ ଏବଂ ପ୍ରାଣରେ ଉଦାର ଜାତୀୟଭାବ ପ୍ରକାଶିବ । ମୁଁ ଆଶାକରେ, ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ସଦାଶୟ ଦେଶାନୁରାଗୀ ଉତ୍ସାହୀ କର୍ମୀମାନେ ଶ୍ରୀମାନ୍-ଲକ୍ଷ୍ମୀନାରାୟଣଙ୍କ ପରି ନିଜ ନିଜ ଅଞ୍ଚଳରେ ଚେଷ୍ଟା କଲେ ବର୍ଦ୍ଧୋଲ ନିମନ୍ତେ ଅବଶ୍ୟ କିଛି ସଂଗ୍ରହ କରିପାରିବେ । ଓଡ଼ିଶାର ବିପଦ ଆପଦବେଳେ ଭାରତର ଭିନ୍ନ ଭିନ୍ନ ପ୍ରଦେଶ ଲୋକେ ସର୍ବଦା ଅଳ୍ପ ବହୁତ ସାହାଯ୍ୟ ଦେଉଛନ୍ତି; ସେମାନଙ୍କ ପ୍ରୟୋଜନ ବେଳେ ଆମ୍ଭେମାନେ ଏକାବେଳକେ ଉଦାସୀନ ରହିଲେ ନିତାନ୍ତ ଅମନୁଷ୍ୟତା ଓ କୃତଘ୍ନତା ହେବ । ସେମାନେ ସହସ୍ର ଟଙ୍କା ଦେଇ ପାରନ୍ତି, ମାତ୍ର ଓଡ଼ିଆ ଟଙ୍କାଏ ଦେଲେ ତାଙ୍କ

ସହସ୍ରଙ୍କୁ ବଳିବ । ବର୍ଦ୍ଦୋଲିର ମହାଜାତୀୟ ଯଜ୍ଞରେ ଓଡ଼ିଶା ନାମରେ ଆହୁତ ହେଲେ ପଡ଼ୁ । ଯେ ଯାହା ଦେବେ ସମାଜରେ ଯଥା ସମୟରେ ପ୍ରାପ୍ତି ସ୍ୱୀକାର କରାଯିବ ଏବଂ ପରେ ଯଥା ସ୍ଥାନକୁ ପଠାଇ ଦିଆଯିବ । ଏ ମାସ ୧୨ ତାରିଖ ଭିତରେ ସର୍ବତ୍ର ବର୍ଦ୍ଦୋଲି ଦିନ ପାଳିତ ହେବ । ସେ ଦିନ ସ୍ଥାନେ ସ୍ଥାନେ ଲୋକେ ସଭା କରି ବର୍ଦ୍ଦୋଲିଠାରେ ସରକାର କାର୍ଯ୍ୟ ଓ ପ୍ରଜାଙ୍କ ସତ୍ୟାଗ୍ରହ ଆଲୋଚନା କରିବେ ଏବଂ ବର୍ଦ୍ଦୋଲି ସାହାଯ୍ୟ ନିମନ୍ତେ ଅର୍ଥ ସଂଗ୍ରହ କରାଯିବ । ଓଡ଼ିଶାର ଯେଉଁଠା ଲୋକେ ସେ ଦିନ ପାଳି ପାରିବେ ସେଠାରେ ଅନ୍ୟ କୌଣସି ଦିନ ପାଳିବାର ସୁବିଧା କରାଯାଇପାରେ । ଏହିପରି ନାନା ସୂତ୍ରରେ ଜାତୀୟ ଜୀବନ ଜାଗ୍ରତ ହୁଏ । ବର୍ଦ୍ଦୋଲି ବିଷୟରେ ଯେଉଁଠାରେ ଯାହା କରାଯିବ ବା ଅର୍ଥ ସଂଗୃହୀତ ହେବ ଯଥା ସମୟରେ ତାହା ମତେ ଜଣାଇଲେ ସମାଜରେ ପ୍ରକାଶିତ ହୋଇପାରେ ।

('ସମାଜ' ୩ । ୭ । ୨୮)

---

# ପରିଶିଷ୍ଟ

## ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଭ୍ରମଣ ବୃତ୍ତାନ୍ତ

### ବାଲେଶ୍ୱର

ବାଲେଶ୍ୱର ଜିଲାରେ ଅସହଯୋଗ ଆନ୍ଦୋଳନର କାର୍ଯ୍ୟ ଅଦ୍ୟାବଧି ତେତେ ଅଗ୍ରସର ହୋଇନାହିଁ । ଭଦ୍ରକ ସବ୍‌ଡିଭିଜନରେ ବରଂ ସାମାନ୍ୟ କିଛି ହୋଇଛି । ମାତ୍ର ସଦର ସବ୍‌ଡିଭିଜନ ଏକାବେଳକେ ନୀରବ ଥିଲା । ଅପ୍ରେଲ ମାସ ଆଦ୍ୟରୁ ବ ବୁ ହରେକୃଷ୍ଣ ମହତାବ ସେଠାରେ ଟିକିଏ ଚହଲ ପକାଇ ଅଛନ୍ତି । ଲୋକେ ବେଶ୍ ଆଗ୍ରହ ଦେଖାଇ ଅଛନ୍ତି । ଅପ୍ରେଲ ୨୧ ତାରିଖ ପଣ୍ଡିତ ଗୋପବନ୍ଧୁ ଦାସ ସମ୍ବଲପୁର ଯିବା ରାସ୍ତାରେ ଦିନକ ଲାଗି ବାଲେଶ୍ୱରରେ ଓହ୍ଲାଇ ଥିଲେ । ତାଙ୍କ ଆଗମନ ଦ୍ୱାରା ସହରର ଭାବ ଅନେକ ବଦଳି ଯାଇଅଛି । ନୂତନ ସ୍ଥାପିତ ସ୍ୱରାଜ୍ୟ ମନ୍ଦିରରେ ସେ ରହିଥିଲେ । ୨୨ ତାରିଖ ସକାଳେ ସ୍ୱେଚ୍ଛାସେବକ ଏବଂ ଅନ୍ୟାନ୍ୟ ପ୍ରଚାରକମାନଙ୍କୁ ଉପଦେଶ ଦେଇଥିଲେ । ଅପରବେଳା ପରମିଟ୍ ପଡ଼ିଆରେ ସଭା ହୋଇଥିଲା । ପ୍ରାୟ ହଜାରର ସଶଙ୍କ ଲୋକ ଉପସ୍ଥିତ ଥିଲେ । ଗୋପବନ୍ଧୁ ଦାସ ଅସହଯୋଗ ସମ୍ବନ୍ଧେ ସାମାନ୍ୟ ବୁଝାଇ ବର୍ତ୍ତମାନ କଂଗ୍ରେସ ଚାହିଁଥିବା ଏକ କୋଟି ମେମ୍ବର ଓ ସ୍ୱରାଜ୍ୟ ଫଣ୍ଡ ନିମନ୍ତେ ଏକକୋଟି ଟଙ୍କା ଏବଂ କୋଡ଼ିଏ ଲକ୍ଷ ଚରଖାରୁ ବାଲେଶ୍ୱର ଭାଗରେ ହିସାବରେ ଯାହା ପଡ଼ିଲା ତାହା ଯୋଗାଇବା ଲାଗି ବାଲେଶ୍ୱରବାସୀଙ୍କୁ ବହୁତ ଉତ୍ସାହିତ କରିଥିଲେ । ସଭାରେ ତିଳକ ସ୍ୱରାଜ୍ୟ ଫଣ୍ଡ ନିମନ୍ତେ ନଗଦ କିଛି ଅର୍ଥ ସଂଗ୍ରହ କରାଯାଇଥିଲା । ପରେ ବାଲେଶ୍ୱର ମୁସଲମାନମାନଙ୍କୁ ଖିଲାଫତ୍ ବିଷୟରେ ସେ ଗୋଟିଏ କ୍ଷୁଦ୍ର ବକ୍ତୃତା ଦେଇଥିଲେ । କଟକର ଡାକ୍ତର ସଏଦ ଏକରାମ ରସୁଲ ଅଳ୍ପଦିନତଳେ ବାଲେଶ୍ୱର ଯାଇ ଗୋଟିଏ ଖିଲାଫତ୍ କମିଟି ବସାଇ ଆସିଥିଲେ । କ୍ରମେ ସେ କମିଟିକି ଜାଗ୍ରତ ଏବଂ ସବଳ କରିବା ଲାଗି ଗୋପବନ୍ଧୁ ବାବୁ ମୁସଲମାନମାନଙ୍କୁ ଉପଦେଶ ଦେଇଥିଲେ । ଏହାପରେ ବାଲେଶ୍ୱର ଜିଲା କଂଗ୍ରେସ

କମିଟିର ଏକ ବୈଠକ ହୋଇଥିଲା । କମିଟିର କାର୍ଯ୍ୟ ପରିଚାଳନା ନିମନ୍ତେ କେତେକ ନିୟମ ଗୃହୀତ ହୋଇଥିଲା । ଜିଲାରେ ଅସହଯୋଗ କାର୍ଯ୍ୟ ପ୍ରଚାର ନିମନ୍ତେ ଏକ କାର୍ଯ୍ୟ ନିର୍ବାହକ ସମିତି ଗଠିତ ହୋଇ ସେ ଦିନର କାର୍ଯ୍ୟ ଶେଷହେଲା । ପରେ ସେହିଦିନ ରାତି ମାନ୍ଦ୍ରାଜ ଡାକଗାଡ଼ିରେ ଗୋପବନ୍ଧୁ ଦାସ ସମ୍ବଲପୁର ଆଡେ ଚାଲିଲେ ।

## ସିଂହଭୂମି ( ଚକ୍ରଧରପୁର)

ଅପ୍ରେଲ ୨୩ ତାରିଖ ଅପରବେଳା ବମ୍ବେଇ ଡାକ ଗାଡ଼ିରେ ଚକ୍ରଧରପୁର ଅତିକ୍ରମ କଲାବେଳେ ସେଠାରେ ସ୍ଥାନୀୟ ଓଡ଼ିଆ ହିନ୍ଦୁ ବହୁସଂଖ୍ୟକ ଭଦ୍ରବ୍ୟକ୍ତି ଓ ସ୍ୱେଚ୍ଛାସେବକ ଗୋପବନ୍ଧୁ ବାବୁଙ୍କୁ ଅପେକ୍ଷା କରି ରହିଥିଲେ । ସେହିଦିନ ଅଳ୍ପ ଆଗରୁ ବିହାରର ନେତା ବାବୁ ରାଜେନ୍ଦ୍ର ପ୍ରସାଦ ଚକ୍ରଧରପୁରଠାରେ ପହଞ୍ଚି ଥିଲେ । ରାଜେନ୍ଦ୍ର ବାବୁଙ୍କ ଆଗମନ ବାର୍ତ୍ତା ପାଇ ଲୋକଙ୍କ ଅନୁରୋଧରେ ଗୋପବନ୍ଧୁ ଦାସ ସେଠାରେ ଓହ୍ଲାଇ ଥିଲେ । ସନ୍ଧ୍ୟାରେ ଏକ ସାଧାରଣସଭା ହୋଇଥିଲା । ବାବୁ ରାଜେନ୍ଦ୍ର ପ୍ରସାଦ ଓ ଗୋପବନ୍ଧୁ ଦାସ ବକ୍ତୃତା ଦେଇଥିଲେ । ଟ ୭୫୯ ସରିକି ନଗଦ ତିଲକ ସ୍ୱରାଜ୍ୟ ଫଣ୍ଡ ଲାଗି ସଭା ଶେଷରେ ଚାନ୍ଦା ଆଦାୟ ହୋଇଥିଲା । ସିଂହଭୂମିରେ ଆଦିମ ଅଧିବାସୀଙ୍କୁ ଛାଡ଼ିଦେଲେ ଓଡ଼ିଆମାନଙ୍କ ସଂଖ୍ୟା ଅଧିକ ବୋଲି ବାବୁ ରାଜେନ୍ଦ୍ର ପ୍ରସାଦ ସଭାରେ ବ୍ୟକ୍ତ କରିଥିଲେ ଏବଂ ହିନ୍ଦିଭାଷୀ ବିହାରୀମାନଙ୍କୁ ବୁଝାଇଥିଲେ ଯେ ସେମାନେ ସିଂହଭୂମିରେ ଉପନିବେଶ କରିଛନ୍ତି ମାତ୍ର; ସୁତରାଂ ଭେଦବାଦ ନ କରି ଓଡ଼ିଆମାନଙ୍କ ସଙ୍ଗେ ମିଶି ସେ ଜିଲାରେ କଂଗ୍ରେସ କାର୍ଯ୍ୟରେ ଯୋଗଦେବା ଉଚିତ । ମାତ୍ର ତାଙ୍କର ଏ ଉପଦେଶରେ ବିଶେଷ କିଛି ଫଳ ହେଲାପରି ଦେଖାଗଲା ନାହିଁ । ପରେ ଯେତେବେଳେ ସିଂହଭୂମି କଂଗ୍ରେସ କମିଟି ଉତ୍କଳ ପ୍ରାଦେଶିକ କମିଟିକି ବିହାର ପ୍ରାଦେଶିକ କମିଟିରୁ ସାମିଲ ହେବାର କଥା ଉଠିଲା; କେତେଜଣ ଅବୁଝା ବିହାରୀ ଆପଣାର ଟାଣ ଛାଡ଼ିଲେ ନାହିଁ । ଫଳରେ ସିଂହଭୂମି ପ୍ରସଙ୍ଗ ନିଷ୍ପତ୍ତି ହୋଇ ପାରିନାହିଁ ।

## ଚାଇଁବସା

୨୪ ତାରିଖ ସକାଳେ ମଟର ଯୋଗେ ବାବୁ ରାଜେନ୍ଦ୍ର ପ୍ରସାଦ ଓ ଗୋପବନ୍ଧୁ ଦାସ ଚାଇଁବସା ଯାଇଥିଲେ । ଚକ୍ରଧରପୁରର ଆଉ କେତେକ ବିଶିଷ୍ଟ ବ୍ୟକ୍ତି ମଧ୍ୟ ଯାଇଥିଲେ । ପଣ୍ଡିତ ଜଗନ୍ନାଥ ପାଣ୍ଡେ ଚାଇଁବସା ଓ ଚକ୍ରଧରପୁରରେ ଅସହଯୋଗ କାର୍ଯ୍ୟରେ ବେଶ୍ ଉତ୍ସାହ ଦେଖାଇ ଥିଲେ । ଚାଇଁବସାରେ ଦିନ ୧୨ଟା ବେଳେ ସଭା ହୋଇଥିଲା ।

ଏତେବଡ଼ ଖବର ଟେଲିଲେ ଯେପରି ଉତ୍ସାହରେ ସଭାରେ ଆସି ଯୋଗ ଦେଇଥିଲେ ସେଥିରୁ ସେମାନଙ୍କର ଅସହଯୋଗ ପ୍ରତି ଆଗ୍ରହ ଓ ମମତା ବେଶ୍ ପ୍ରକାଶ ପାଉଥିଲା । ରାଜେନ୍ଦ୍ର ବାବୁ ଓ ଗୋପବନ୍ଧୁ ବାବୁ ଉଭୟେ ଅସହଯୋଗ ବିଷୟରେ ବକ୍ତୃତା କରି-ଥିଲେ । ୫୦ ଟଙ୍କା ଉପରେ ସ୍ୱରାଜ୍ୟ ଫଣ୍ଡକୁ ଚାନ୍ଦା ନଗଦ ଆଦାୟ ହୋଇଥିଲା । ସେଦିନ ୨ଟା ବେଳେ ମଟରଯୋଗେ ସମସ୍ତେ ଫେରିଲେ ଏବଂ ୪ଟାବେଳେ ବମ୍ବେ ଡାକ ଗାଡ଼ିରେ ଗୋପବନ୍ଧୁ ଦାସ ସମ୍ବଲପୁର ଗଲେ ।

## ସମ୍ବଲପୁର

୨୫ ତାରିଖ ଦିନ ସକାଳେ ଗୋପବନ୍ଧୁ ବାବୁ ସମ୍ବଲପୁରରେ ପହଞ୍ଚିଲେ । ସମ୍ବଲପୁରର ବୃଦ୍ଧ, ଯୁବକ, ହିନ୍ଦୁ, ମୁସଲମାନ ବହୁସଂଖ୍ୟକ ଲୋକେ ତାଙ୍କୁ ଡକାଇ ଷ୍ଟେସନରେ ରହିଥିଲେ । ଆଗ ଦୁଇ ଚାରିଦିନ ମଧ୍ୟରେ ସମ୍ବଲପୁରରେ ଅସହଯୋଗ ସମ୍ବନ୍ଧେ କେତେକ ଘଟନା ହୋଇଯାଇଥିଲା । ଗୋପବନ୍ଧୁ ବାବୁଙ୍କୁ ଦେଖି ଲୋକେ ଉତ୍ସାହିତ ହେବାର କଥା । ସନ୍ଧ୍ୟା ସମୟରେ ମହାନଦୀ ବାଲିରେ ସଭା ହୋଇଥିଲା । ପାଞ୍ଚହଜାରୁ ସରିକି ଲୋକ ଉପସ୍ଥିତ ଥିଲେ । ପଣ୍ଡିତ ଧରଣୀଧର ମିଶ୍ର ବାନପ୍ରସ୍ଥି ପ୍ରଥମେ ବେଦ ମନ୍ତ୍ର ପାଠକରି ଗୋପବନ୍ଧୁଙ୍କୁ ଆପଣା ବକ୍ତବ୍ୟ ପ୍ରକାଶ କରିବାଲାଗି ଅନୁରୋଧ କରିଥିଲେ । ଅସହଯୋଗ ସ୍ୱାଧୀନତା ନିମନ୍ତେ ଧର୍ମଯୁଦ୍ଧ ଏଥିରେ "ହତୋ ବା ପ୍ରାପ୍ସ୍ୟସେ ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷସେ ମହୀଂ" ଏହି ଭାବକୁ ଗୋପବନ୍ଧୁ ବାବୁ ବିସ୍ତାରିତ ରୂପେ ଲୋକ-ମାନଙ୍କୁ ବୁଝାଇଥିଲେ । ସମ୍ବଲପୁର ଭାଗରେ ଯେ ସଂଖ୍ୟାରେ କଂଗ୍ରେସ ମେମ୍ବର ଓ ଅରିଟ ଯେ ପରିମାଣ ସ୍ୱରାଜ୍ୟ ଫଣ୍ଡ ଲାଗି ଟଙ୍କା ପଡ଼ୁଛି ଆଗାମୀ ଜୁନ୍‌ମାସ ଭିତରେ ତାହା ପ୍ରସ୍ତୁତ ରଖିବାକୁ କହିଲେ । ସଭା ଶେଷହେଲା ବେଳକୁ ଟିକିଏ ବିଳମ୍ବ ହୋଇଥିଲେ ସୁଦ୍ଧା କେତେଜଣ କଂଗ୍ରେସ ମେମ୍ବର ହେବାକୁ ନାମ ଲେଖାଇଲେ ଏବଂ ନଗଦ ସ୍ୱରାଜ୍ୟ ଫଣ୍ଡ ନିମନ୍ତେ କିଛି ଚାନ୍ଦା ଉଠିଥିଲା । ୨୬ ତାରିଖ ସମ୍ବଲପୁରର କେତେକ ବିଶିଷ୍ଟ ନେତାଙ୍କ ସହିତ ପରାମର୍ଶ ହୋଇଥିଲା । ସେଥିରେ ସମ୍ବଲପୁର ଜିଲ୍ଲାରେ ଉପସ୍ଥିତ କାର୍ଯ୍ୟ ପ୍ରଚାର ନିମନ୍ତେ ଥାନା ବିଭାଗ ହୋଇ ଭିନ୍ନ ଭିନ୍ନ ତତ୍ତ୍ୱାବଧାରକଙ୍କ ଉପରେ ଭାର ନ୍ୟସ୍ତ କରା-ଗଲା । ଉପରବେଳା ସମ୍ବଲପୁର ଖିଲାଫତ୍ କମିଟିର ମେମ୍ବରମାନଙ୍କ ଅନୁରୋଧରେ ସ୍ଥାନୀୟ ମସଜିଦ୍‌ରେ ପଣ୍ଡିତ ଗୋପବନ୍ଧୁ ଖିଲାଫତ୍ ସମ୍ପର୍କରେ ମୁସଲମାନମାନଙ୍କ ଉପସ୍ଥିତ କର୍ତ୍ତବ୍ୟ ବିଷୟରେ ଏକ ବକ୍ତୃତା ଦେଇଥିଲେ ଏବଂ ସଙ୍ଗେ ସଙ୍ଗେ ସନ୍ଧ୍ୟା ଗାଡ଼ିରେ ପୁରୁଲିଆ ଆଡ଼େ ଚାଲିଲେ ।

('ସମାଜ' ତା ୩୦ । ୪ । ୨୧)

# ଝାରସୁଗୁଡ଼ା

ସମ୍ବଲପୁରରୁ ଗାଡ଼ି ଝାରସୁଗୁଡ଼ାରେ ପହଞ୍ଚିଲା । ସେଠାରେ ଦୁଇଶ ତିନିଶ ସରଳ ଲୋକ ଉପସ୍ଥିତ ହୋଇଥିଲେ । ଝାରସୁଗୁଡ଼ାରେ ଏଥିମଧ୍ୟରେ ଅରଟ ପ୍ରଚୁର ବେଶ୍ ହୋଇଛି । ଆଗରୁ ଏଠା ଅଘରିଆମାନେ ଚରଖାରେ ସୂତା କାଟି ଆସୁଅଛନ୍ତି । ଏବେ ସେମାନଙ୍କର ନୂତନ ଉତ୍ସାହ ଆସିଅଛି । ଏଠାରେ ଗୋପବନ୍ଧୁ ବାବୁ ଉପସ୍ଥିତ ଲୋକଙ୍କୁ କେତେକ କଥା କହିଥିଲେ ଏବଂ ସ୍ୱରାଜ୍ୟ ଫଣ୍ଡ ନିମନ୍ତେ କିଛି ଟଙ୍କା ସଂଗ୍ରହ କରିଥିଲେ । ସ୍ଥାନୀୟ ଠିକାଦାର ମହାବୀର ସିଂହ ଏଠା କାର୍ଯ୍ୟରେ ତତ୍ତ୍ୱାବଧାରକ ଓ ଜଣେ ପକ୍କା ଅସହଯୋଗୀ ଏବଂ ଖୁବ ଉତ୍ସାହର ସହିତ କାର୍ଯ୍ୟ କରୁଛନ୍ତି । ସଂଗୃହୀତ ଟଙ୍କା ତାଙ୍କଠାରେ ରଖାଗଲା ।

# ପୁରୁଲିଆ

ପୁରୁଲିଆର କୌଣସି କୌଣସି ବଙ୍ଗାଳୀ ବନ୍ଧୁ ଏବଂ ବାବୁ ରାଜେନ୍ଦ୍ରଙ୍କ ଅନୁରୋଧରେ ପଣ୍ଡିତ ଗୋପବନ୍ଧୁ ଦାସ ୨୭ ତାରିଖ ସକାଳେ ପୁରୁଲିଆରେ ପହଞ୍ଚିଲେ । ସନ୍ଧ୍ୟାରେ ଏକ ସାଧାରଣ ସଭା ହୋଇଥିଲା । ସ୍ଥାନୀୟ ଓକିଲ, ମୁକ୍ତାର, ମହାଜନ, ହିନ୍ଦୁ, ମୁସଲମାନ ନାନା ଶ୍ରେଣୀର ଲୋକ ଉପସ୍ଥିତ ଥିଲେ । ଗୋପବନ୍ଧୁ ବାବୁ ଓଡ଼ିଆ ଭାଷାରେ ବକ୍ତୃତା ଦେଇଥିଲେ । ତାହା ଯେପରି ସୁବୋଧ ହୋଇଥିଲା ଉପସ୍ଥିତ ସମସ୍ତେ ମଧ୍ୟ ସେଥିରୁ ସେହିପରି ଉତ୍ସାହିତ ଓ ଉଦ୍‌ବୋଧିତ ହୋଇଥିଲେ । ପୁରୁଲିଆର ତିନିଜଣ ନାମଜାଦା ପ୍ରସାର ଥିବା ଓକିଲ ଆଗାମୀ ଜାନୁଆରୀ ଶେଷଠାରୁ ଓକିଲାତି ବନ୍ଦ କରିବାର ଏ ଦିନ ସ୍ଥିର ହେଲା । ସେହିଦିନ ସନ୍ଧ୍ୟା ରାଞ୍ଚି ଏକ୍‌ପ୍ରେସରେ ଗୋପବନ୍ଧୁ ଦାସ ପୁରୁଲିଆ ଛାଡ଼ି କଟକ ଗଲେ ।

('ସମାଜ', ତା ୭ । ୫ । ୨୧)

———

## 'ସମାଜ' ସମ୍ପାଦକଙ୍କ ନାମରେ ମକଦ୍ଦମା

ପାଠକମାନଙ୍କର ସ୍ମରଣ ଥିବ କେତେଦିନ ତଳେ ବେଗୁନିଆ ହାଟ ନିକଟରେ ଜଣେ ସ୍ତ୍ରୀଲୋକର ଆତ୍ମହତ୍ୟା ଘଟିଥିବା ଜନରବ ସମାଜରେ ପ୍ରକାଶିତ ହୋଇଥିଲା । ସେ ସମ୍ବନ୍ଧରେ ପୁଣି ଦୁଇ ସଂଖ୍ୟାରେ କେତେକ କଥା ବାହାରିଥିଲା । ସେ ବିଷୟରେ ଲେଖାଯାଇଥିବା ସମୁଦାୟ ବୃତ୍ତାନ୍ତ ଆଦ୍ୟ ପ୍ରାନ୍ତ ପାଠକଲେ ସଫା ଜଣାଯିବ ଯେକୌଣସି ବ୍ୟକ୍ତିବିଶେଷ ପ୍ରତି ସେଥିରେ ଆକ୍ଷେପ ବା ଅଭିଯୋଗ ନାହିଁ । ତଥାପି ବେଗୁନିଆ ଥାନାର କାଶୀମ ମହମ୍ମଦ ଓଗେର କେତେ ଜଣ କନଷ୍ଟେବଲ ଏହି ପତ୍ରିକାର ସମ୍ପାଦକ ଓ ପ୍ରିଣ୍ଟର ଗୋପବନ୍ଧୁ ଦାସଙ୍କ ନାମରେ ଦଣ୍ଡବିଧି ଆଇନର ୫୦୦ ଦଫାରେ ମାନହାନି ଫୌଜଦାରି ମକଦ୍ଦମା ଖୋର୍ଦ୍ଧା ସବ୍‌ଡିଭିଜନ ମେଜେଷ୍ଟ୍ରେଟଙ୍କ ଅଦାଲତରେ ଦାଏର କରିଅଛନ୍ତି । ଗଲା କାଲି ୨୮ ତାରିଖ ଏ ମକଦ୍ଦମାର ତାରିଖ ଧାର୍ଯ୍ୟ ଥିଲା ।

ଏ ସମ୍ପର୍କରେ ସମାଜରେ ଯାହା ବାହାରିଥିଲା ତାହା ପାଠକମାନଙ୍କର ସମ୍ଭବତଃ ମନେ ନ ଥିବ । ସର୍ବସାଧାରଣ ଉପସ୍ଥିତ ମକଦ୍ଦମାର ନ୍ୟାୟାନ୍ୟାୟ ବିଚାର କରିବା ନିମନ୍ତେ ତଳେ ସେ ସମୁଦାୟ ଉଦ୍ଧାର ଦିଆଗଲା ।

## ସତ୍ୟ ହୋଇଥିଲେ ସାଙ୍ଘାତିକ

('ସମାଜ' ତା ୧୩ । ୮ । ୦୧ — ସଂଖ୍ୟା ୪୨)

ଶୁଣାଯାଏ ଗଲା ସପ୍ତାହ ଗୋଟିଏ ପିଲା ଜଣେ ମୂଲିଆ ସହିତ ତାର ଯୁବତୀ ଭଉଣୀକି ଶାଶୁଘରୁ ନେଇ ବେଗୁନିଆ ବାଟେ ଯାଉଥିଲା । ବେଗୁନିଆ ହାଟର କିଛିଦୂରରେ ଠିକ୍ ସନ୍ଧ୍ୟା ପୂର୍ବରୁ ଭାଇଟି ଭଉଣୀ ଓ ଲୋକକୁ ବାଟପାଖରେ ବସାଇ ଦେଇ ପୋଖରୀପାଣି ଗଲା । ଲୋକ ଯୁବତୀଟିକୁ ସେଠାରେ ଗୁଡ଼ି ପାନ କିଣିବାପାଇଁ ଯାଇଛି, ଏହି ଅବସରରେ ଦୁଇଜଣ କନେଷ୍ଟବଲ ମାଇପିଟିକୁ ଓଟାରି ଓଟାରି ନେଇ କିଛିଦୂରରେ ଗୋଟିଏ ଘର ଭିତରେ ବନ୍ଦ କରିଦେଲେ । ଦୁଆରରେ ଗୋଟାଏ ତାଲା ପକାଇ ଚାବି ନିଜ ହାତରେ ରଖି ବାହାରେ ବସି ରହିଲେ । ଭାଇ ପୋଖରୀପାଣି ଆସି ଭଉଣୀକି ନ ଦେଖି କାନ୍ଦି କାନ୍ଦି ନାନା ଲୋକଙ୍କୁ ପଚାରିଲା । ପାଖରେ କେତେଗୁଡ଼ିଏ ପିଲା ଖେଳୁଥିଲେ । କନେଷ୍ଟବଲ ଦୁହେଁ ମାଇପିଟିକୁ ଟାଣି ନେଲାବେଳେ ଏମାନେ ଦେଖିଥିଲେ । ଭାଇ ଏମାନଙ୍କଠାରୁ ସମ୍ବାଦ ପାଇ କନେଷ୍ଟବଲଙ୍କ ପାଖକୁ ଗଲା । କନେଷ୍ଟବଲଙ୍କୁ ଭଉଣୀ କଥା ପଚାରିବାରେ

ସେମାନେ ନାସ୍ତି କଲେ । ଦ୍ୱାର ଫିଟାଇବାପାଇଁ ଅନେକ ପ୍ରକାର ପ୍ରାର୍ଥନା କଲା । କନେଷ୍ଟବଲମାନେ ଓଲଟି ତାଙ୍କୁ ଖୁବ୍ ମାଡ଼ଦେଲେ । ମିଲଟି ମାଡ଼ଖାଇ କାନ୍ଦି କାନ୍ଦି ଆସୁଛି, ଏହି ସମୟରେ ଖୋର୍ଦ୍ଧାର ସବ୍‌ଡିଭିଜନ ଅଫିସର ଅଜୟବାବୁଙ୍କ ମଟରକାରରେ ଆସିବାର ଦେଖି ପାରିଲା । ସେ ଦୌଡ଼ି ଦୌଡ଼ି ଯାଇ ସଡ଼କରେ ପଡ଼ି ତାଙ୍କଠାରେ ଗୁହାରି କଲା । ଅଜୟବାବୁ ମଟରକାର ବନ୍ଦ କରି ଘଟଣା ସ୍ଥାନକୁ ଗଲେ । କନେଷ୍ଟବଲମାନଙ୍କୁ ଘର ଫିଟାଇଦେବା ସକାଶେ ଗୃହ ମାଗିଲେ । କନେଷ୍ଟବଲମାନେ ନାସ୍ତି କରିବାରୁ ନିଜ ଗୋଡ଼ରେ କବାଟ ଭାଙ୍ଗି ଘର ଭିତରେ ପଶିଲେ । ଦେଖିଲେ ଯୁବତୀଟି ଲଙ୍ଗଳା ହୋଇ ନିଜ ପିନ୍ଧା ଲୁଗାରେ ଦୌଡ଼ିଦେଇ ପ୍ରାଣ ହରାଇ ଦେଇଛି । ଏସବୁ ଏକଘଣ୍ଟାର ଘଟଣା । ସେ ଲିସ ଓ କନେଷ୍ଟବଲଙ୍କୁ ଚାଲାନ ଦେଇଛନ୍ତି । ଉପରିସ୍ଥ ପୋଲିସ କର୍ମଚାରୀ କେହି କେହି ଚାଲାନ ହୋଇଥିବାର ଶୁଣାଯାଏ । ଏହାର ସଠିକ ବିବରଣ ଆମ୍ଭେମାନେ ଜାଣୁନାହିଁ ।

× × ×

## ବେଗୁନିଆ

ଗତ ୧୭ ତାରିଖ ସମାଜରେ ବେଗୁନିଆ ଘଟଣା ବିଷୟରେ ଯେ ଜନରବ ପ୍ରକାଶ ପାଇଥିଲା ତାହାର ସତ୍ୟାସତ୍ୟ ଏପର୍ଯ୍ୟନ୍ତ ଜଣା ଯାଇନାହିଁ । ଆମ୍ଭେମାନେ ଏ ବିଷୟରେ ତଦନ୍ତ କରୁଛୁ । ସମ୍ବାଦ ପାଇଲେ ଯଥାସମୟରେ ପ୍ରକାଶ କରିବୁ ।

× × ×

## ଅମୂଳକ ଜନରବ

(‘ସମାଜ’ ତା୨୪ । ୯ । ୨୧—୪୮ ସଂଖ୍ୟା)

୧୩-୮-୨୦ ତାରିଖ ୪୨ ସଂଖ୍ୟା ସମାଜରେ ‘ସତ୍ୟ ହୋଇଥିଲେ ସାଙ୍ଘାତିକ’ ଶୀର୍ଷକ ଲେଖାରେ ଯେ ଘଟଣା ପ୍ରକାଶିତ ହୋଇଥିଲା ତହିଁର ତଥ୍ୟ ଅନୁସନ୍ଧାନ କରି ପାଠକମାନଙ୍କୁ ଯଥା ସମୟରେ ଜଣାଇବୁ ବୋଲି ଆମ୍ଭେମାନେ ଉକ୍ତ ସଂଖ୍ୟା ଓ ତହିଁର ପରବର୍ତ୍ତୀ ୨୭-୮-୨୧ ତାରିଖର ୪୪ ସଂଖ୍ୟା ସମାଜରେ ଲେଖିଥିଲୁ । ଉକ୍ତ ଘଟନାର କଥା ଆମ୍ଭେମାନେ ନାନା ଲୋକଙ୍କ ମୁଖରୁ ଶୁଣିଥିଲୁ । ଅବଶ୍ୟ ତାହା ଜନରବ । ମାତ୍ର ସେ ସମୟରେ ଏହି ଜନରବ ମଫସଲର ନାନା ସ୍ଥାନରେ ଯେପରି ଆକାର ଧରିଥିଲା

ସତ୍ୟାସତ୍ୟ ଜାଣିବା କାରଣ ତାହା ପରିକାସ୍ତ କରିବା ଆମ୍ଭେମାନେ କର୍ତ୍ତବ୍ୟ ବିବେଚନା କରିଥିଲୁ । ଜନରବ ସବୁବେଳେ ଅମୂଳକ ହୋଇ ନଥାଏ । ଏପରିକି ଜନରବରୁ କେତେ ସମୟରେ ଅନେକ ଗୂଢ଼ ସତ୍ୟକଥା ବାହାରେ ଏହି ଜନରବ ପରିକାସ୍ତ କରିବାଦ୍ୱାରା ସ୍ଥାନୀୟ କର୍ତ୍ତୃପକ୍ଷ ବା ଲୋକସାଧାରଣଙ୍କ ପକ୍ଷରୁ ପ୍ରକୃତକଥା ପ୍ରକାଶ ପାଇବ ବୋଲି ଆମ୍ଭେମାନେ ଆଶା କରିଥିଲୁ । ଆମ୍ଭେମାନେ ମଧ୍ୟ ଏଥିମଧ୍ୟରେ ନିଶ୍ଚିନ୍ତ ନ ଥିଲୁ । ଓସେ ଯାହାହେଉ ଆମ୍ଭମାନଙ୍କର ଅନୁସନ୍ଧାନରେ ଏ ଜନରବର ନିମ୍ନଲିଖିତ ରୂପେ ଉତ୍ପତ୍ତି ହୋଇ ଥିବାର ପ୍ରକାଶ ।

ଜନରବ ଅନୁସାରେ ଏ ଘଟଣା ଯେଉଁ ସମୟରେ ଘଟିଥିଲା ସେହି ସମୟରେ ଜଣେ ପଞ୍ଜାବୀ ବେଗୁନିଆ ଅଞ୍ଚଳର ଜଣେ ସ୍ତ୍ରୀ ଲୋକକୁ ନେଇ ଯାଉଥିବାବେଳେ ଜଟଣୀ-ଠାରେ ଧରାପଡ଼ିଲା ଓ ସେଠାରେ ତାକୁ ଗୁଡ଼ା ଗଲା । ଏଥିର ଅଳ୍ପଦିନ ପୂର୍ବେ ବୋଲଗଡ଼ ଅଞ୍ଚଳରେ ଏକ ନରହତ୍ୟା ହୋଇଥିଲା । ଖୋର୍ଦ୍ଧା ସବ୍‌ଡିଭିଜନ ଅଫିସର ବାବୁ ଅଜୟଚନ୍ଦ୍ର ଦାସ ତାହା ସେହି ସମୟରେ ତଦନ୍ତ କରୁଥିଲେ ।

ଏହି ଉଭୟ ଘଟଣାର ମିଶ୍ରଣରେ ଏ ଜନରବର ଉତ୍ପତ୍ତି ବୋଲି ବର୍ତ୍ତମାନ ନିଷ୍ପତ୍ତି କରା ଯାଇପାରେ ।

## ଗୋପବନ୍ଧୁଙ୍କ ଉପରେ ୧୪୪

୧୧ । ୧ । ୧୯୨୨ ତାରିଖ ସନ୍ଧ୍ୟାରେ ଗୋପବନ୍ଧୁ ଦାସଙ୍କର କଟକ କାଠଯୋଡ଼ି ବାଲିରେ ବକ୍ତୃତା ଦେବାର ଥିଲା । ଆଗରୁ ନୋଟିସ ବଣ୍ଟା ଯାଇଥିଲା । ମାତ୍ର ୧୦ ତାରିଖ ଉପରବେଳା ତାଙ୍କ ଉପରେ କଟକ ମେଜେଷ୍ଟ୍ରର ୧୪୪ ଧାରା ଅନୁସାରେ ହୁକୁମ କଲେ, ସେଥିରେ ଲେଖାଥିଲା କି କଟକର ପୋଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କ ରିପୋର୍ଟରୁ ପ୍ରକାଶ ଯେ ତୁମ୍ଭେ କାଲି ଏ ସହରରେ ପୁଣି ବକ୍ତୃତା ଦେବ; ସେଥିରେ ଶାନ୍ତିଭଙ୍ଗ ହେବାର ସମ୍ଭାବନା, ସୁତରାଂ ଆଗାମୀ ଦୁଇମାସ ମଧ୍ୟରେ ଏ ଜିଲାରେ ତୁମେ ସଭାକରି ପାରିବ ନାହିଁ, ସଭାରେ ଉପସ୍ଥିତ ହୋଇ ପାରିବ ନାହିଁ, ବକ୍ତୃତା ଦେଇ ପାରିବ ନାହିଁ ଇତ୍ୟାଦି । ଗୋପବନ୍ଧୁ ଦାସେ ଏ ଆଦେଶ ମାନି ସଭାରେ ଯୋଗ ଦେଇ ନ ଥିଲେ, କେତେକ କଥା ଲେଖି ପଠାଇ ଥିଲେ । ନିର୍ଦ୍ଦିଷ୍ଟ ସମୟରେ ସଭାହେଲା । ଶ୍ରୀଯୁକ୍ତ ଭାଗୀରଥି ମହାପାତ୍ର ଗୋପବନ୍ଧୁ ଦାସଙ୍କ ଲେଖା ପଢ଼ିଥିଲେ ଏବଂ ନିଜେ ଅହମଦାବାଦ କଂଗ୍ରେସ ସମ୍ପର୍କରେ ଅନେକ କଥା କହିଥିଲେ । ଗୋପବନ୍ଧୁ ଦାସ ଏ ଆଦେଶ ନ ଭାଙ୍ଗିବାର କାରଣ ତାଙ୍କ ଲିଖିତ

ବକ୍ତୃତାରେ ଲେଖିଥିଲେ । ପାଠକମାନଙ୍କ ଜାଣିବା କାରଣ ବକ୍ତୃତାର୍ଦ୍ଧ ଉକ୍ତ ଅଂଶ ଅନ୍ୟ ସ୍ତମ୍ଭରେ ପ୍ରକାଶ କରାଗଲା ।

ଅଳ୍ପଦିନ ପୂର୍ବେ ଗୋପବନ୍ଧୁଙ୍କ ଉପରେ କଟକ ଜିଲାରେ ୧୪୪ ଧାରା ହୋଇ ଥିଲା । ଆଇନ ଅନୁସାରେ ପ୍ରାଦେଶିକ ସରକାରଙ୍କ ବିନା ଅନୁମତିରେ ପୁନର୍ବାର ସେହି ବିଷୟରେ ୧୪୪ ଧାରାର ହୁକୁମ ହୋଇ ନ ପାରେ । ମାତ୍ର ସେକଥା କହୁଛି କିଏ ? ସ୍ଥାନୀୟ ହାକମମାନେ ବୋଧହୁଏ ଶାନ୍ତିଭଙ୍ଗ ଚିନ୍ତାରେ ବିବ୍ରତ ହୋଇ ଆଇନ ବେଆଇନ ବିଚାର ଛାଡ଼ି ଦେଲେଣି । ଅନେକ ଦିନ ପୂର୍ବେ କାଳିଦାସ ଲେଖିଥିଲେ "କାମାର୍ତ୍ତାହି ପ୍ରକୃତି କୃପଣା ଶ୍ଚେତ ନା ଚେତନେଷୁ" ଏ ସମୟର ହାକମମାନଙ୍କ ସମ୍ବନ୍ଧରେ ଏହିପରି କିଛି କହିଲେ ଅସଙ୍ଗତ ହେବ ନାହିଁ ।

ହାକମାଃ ଶାନ୍ତି ଭଙ୍ଗାର୍ତ୍ତାଃ<br>
ଆଇନେଚ ବେ ଆଇନେ<br>
ପ୍ରକୃତି କୃପଣାଃ ଯଦ୍ୱା<br>
ଆଶ୍ଚର୍ଯ୍ୟଂ ତତ୍ର କିଂ ବଦ ।

('ସମାଜ' ତା ୧୪ । ୧ । ୨୨)

———

# ଗୋପବନ୍ଧୁ ଦାସଙ୍କ ବିରୁଦ୍ଧେ ସରକାରଙ୍କ ମକଦ୍ଦମା

## ହାଇକୋର୍ଟ ଅପିଲ୍ ନାମଞ୍ଜୁର—ଡେପୁଟି ମେଜେଷ୍ଟ୍ରରଙ୍କ ରାୟ ବାହାଲ

ସମାଜ ସମ୍ପର୍କୀୟ ମାନହାନି ମକଦ୍ଦମାରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ଖୋର୍ଦ୍ଧାର ଡେପୁଟି ମେଜେଷ୍ଟ୍ରର ଶ୍ରୀଯୁକ୍ତ ସୁରେଶଚନ୍ଦ୍ର ବୋଷ ନିର୍ଦ୍ଦୋଷରେ ଖଲାସ ଦେବାପରେ ସରକାର ତରଫରୁ ହାଇକୋର୍ଟରେ ଅପିଲ ହୋଇଥିଲା। ଗୋପବନ୍ଧୁ ଦାସ ସେଥିରେ ହାଜର ହୋଇ ନ ଥିଲେ। ସେ ଓକିଲ ସାହାଯ୍ୟ ଲୋଡ଼ନ୍ତି କି ନାହିଁ ବୋଲି ହାଇକୋର୍ଟ ରେଜିଷ୍ଟ୍ରାର ତାଙ୍କୁ ପଚାରି ଥିଲେ ସୁଦ୍ଧା ଅସହଯୋଗ ଦୀକ୍ଷା ପାଳନ କରି ସେ ଓକିଲ ଦେଇ ନଥିଲେ। ଗଲା ଫେବୃଆରୀ ମାସ ୨୭ ତାରିଖ ଅପିଲ ବିଚାର ହୋଇଥିଲା। ପାଟନା ହାଇକୋର୍ଟରେ ଚିଫ୍‌ଜଷ୍ଟିସ ଓ ବିଚାରପତି ଚମ୍ ସାହେବଙ୍କ ପାଖେ ମକଦ୍ଦମା ପଡ଼ିଥିଲା। ସରକାରଙ୍କର ଆଡ଼ଭୋକେଟ ନ ଥିବାରୁ ଆସିଷ୍ଟାଣ୍ଟ ଆଡ଼ଭୋକେଟ ଅପିଲ ସମର୍ଥନ କରି ବକ୍ତୃତା କରିଥିଲେ। ୨୭ ତାରିଖ ଦିନ କିଛି ଶୁଣିବା ପରେ ଜଜ୍‌ମାନେ ଉଠିଯିବାରୁ ୨୮ ତାରିଖ ଦିନ ପୁଣି ଶୁଣାଣି ହେଲା। ଗୋପବନ୍ଧୁ ଦାସଙ୍କଠାରୁ ଅନୁମତି ବା ଉପଦେଶ ନ ଥିଲେ ସୁଦ୍ଧା ଓଡ଼ିଶାର ସୁପରିଚିତ ହାଇକୋର୍ଟ ଓକିଲ ବାବୁ ଗଜେନ୍ଦ୍ର ପ୍ରସାଦ ଦାସ ଅଯାଚିତ ଭାବରେ ବିଚାରରେ ସାହାଯ୍ୟ କରିବା କାରଣ ରେସପଣ୍ଡେଣ୍ଟ ତରଫରୁ ମକଦ୍ଦମାରେ ବକ୍ତୃତା କରିବା ନିମନ୍ତେ ଜଜ୍‌ମାନଙ୍କ ଅନୁମତି ମାଗିଥିଲେ। ମକଦ୍ଦମାର କେବଳ ଆଇନଗତ ପ୍ରସଙ୍ଗରେ ବକ୍ତୃତା ଦେବା ସକାଶେ ଜଜ୍‌ମାନେ ତାଙ୍କୁ ଅନୁମତି ଦେଇଥିଲେ। ୨୮ ତାରିଖ ଦିନ ଶୁଣାଣି ଶେଷ ହୋଇ ରାୟ ଦେବା ମଜୁଦ ରହିଲା। ଏ ମାସ ପହିଲାଦିନ ଜଜ୍‌ମାନଙ୍କର ରାୟ ପ୍ରକାଶ ହୋଇଅଛି। ସେ ନିମ୍ନ ଅଦାଲତ ଡେପୁଟି ମେଜେଷ୍ଟ୍ରରଙ୍କ ରାୟ ବାହାଲ ରଖିଅଛନ୍ତି। ସରକାରଙ୍କ ଅପିଲ୍ ନାମଞ୍ଜୁର ହେଲା।

('ସମାଜ' ତା ୪।୩।୨୨)

———

# ଆମର ଏବଂ ତାଙ୍କର କଳଙ୍କ

ଓଡ଼ିଶା ଭ୍ରମଣ ପ୍ରସ୍ତାବ ବହୁତ ଦିନରୁ ବନ୍ଦ ହୋଇ ଆସୁଥିଲା । ଯେତେବେଳେ ସମୟ ଆସିଲା ସେତେବେଳେ ତାହା ମୋର ଦୁଃଖ ଓ ମନସ୍ତାପକୁ ବଢ଼ାଇ ଆସିଲା । ରେଲ ଷ୍ଟେସନଠାରୁ ୩୯ ମାଇଲ ଦୂରରେ ଥିବା ଅନୁଗୁଳଠାରୁ ନିକଟତମ ସ୍ଥାନ ବୋଲଗଡ଼ରେ ଦୀନବନ୍ଧୁ ଏଣ୍ଡ୍ରୁଜ୍ଙ୍କ ସାଙ୍ଗରେ ବସି କଥାବାର୍ତ୍ତା କରୁଥିଲି । ସେହି ସମୟରେ କେବଳ ଖଣ୍ଡିଏ ଲେଙ୍ଗୁଟି ପିନ୍ଧି, କମର ବଙ୍କାଇ ଝୁଲି ଝୁଲି ଜଣେ ଲୋକ ମୋ ନିକଟକୁ ଆସିଲା । ସେ ଭୂମି ଉପରୁ ମାଟି ନେଇ ପ୍ରଥମେ ପାଟିରେ ଦେଲା ଏବଂ ମୋ ଆଗରେ ସାଷ୍ଟାଙ୍ଗ ପଡ଼ିଗଲା । ପୁଣି ଉଠି ପ୍ରଣାମ କରି ମାଟି ନେଇ ମୁଣ୍ଡରେ ଲଗାଇଲା ଏବଂ ଚାଲିଗଲା । ଏ ଦୃଶ୍ୟ ଦେଖି ଦୁଃଖରେ ମୁଁ ବ୍ୟଥିତ ହେଉଥିଲି । ଏ ଦୃଶ୍ୟ ସମାପ୍ତ ହେବା ପରେ ମୁଁ ଜଣେ ଦୋଭାଷୀକୁ ଡାକି ସେ ଭାଇ ସହିତ କଥାବାର୍ତ୍ତା କରିବାକୁ ଲାଗିଲି । ଜାଣିଲି ଯେ—ସେ ଜଣେ ଅସ୍ପୃଶ୍ୟ । ବୋଲଗଡ଼ଠାରୁ ଛ ମାଇଲ ଦୂରରେ ରହେ । ବୋଲଗଡ଼କୁ କାଠ ବିକିବାକୁ ଆସିଥିଲା । ଏଠାକୁ ଆସି ସେ ମୋ କଥାଶୁଣି ମୋତେ ଦେଖିବାକୁ ଆସିଥିଲା । ମୁହଁରେ ମାଟି କାହିଁକି ଦେଲା ପଚାରିବାରୁ ସେ କହିଲା ଯେ, ଆପଣଙ୍କୁ ସମ୍ମାନ ଜଣାଇବାପାଇଁ । ଲାଜରେ ମୋ ମୁଣ୍ଡ ନଇଁଗଲା । ସେ ସମ୍ମାନର ମୂଲ୍ୟ ମୋତେ ବହୁତ ଅସହ୍ୟ ବୋଧହେଲା । ମୋର ହିନ୍ଦୁ ଭାବନାରେ ବଡ଼ ଆଘାତ ଲାଗିଲା, ମୁଁ ତାଙ୍କୁ କହିଲି, "ମୋତେ କିଛି ଦେବ ?" ସେ ବିଚରା ଗୋଟିଏ ପଇସାପାଇଁ କମର ଅଣ୍ଟାଳିଲା । ମୁଁ କହିଲି "ମୋର ତୁମ ପଇସାର ଆବଶ୍ୟକତା ନାହିଁ । ତାଠାରୁ ଆହୁରି କିଛି ଭଲ ଜିନିଷ ମାଗିବି ।" ସେ କହିଲା ଦେବ । ଏହା ପୂର୍ବରୁ ସେ ମଦ ଖାଉଥିବାର ଏବଂ ମୃତ ମାଂସ ଖାଉଥିବାର ମୁଁ ପଚାରି ଜାଣି ପାରିଥିଲି । ମୁଁ ତାଙ୍କୁ କହିଲି, "ତୁମେ ମୋତେ ଜବାବ ଦିଅ କି ପୁନଆଉ କୌଣସି ଲୋକପାଇଁ ମାଟି ମୁହଁରେ ଦେବ ନାହିଁ; କାରଣ ଏହା ମନୁଷ୍ୟତାର କାମ ନୁହେଁ; ପୁଣି ମଦ ଖାଇବ ନାହିଁ, କାରଣ ତା ମନୁଷ୍ୟକୁ ପଶୁ କରିଦିଏ; ମୃତ ମାଂସ ଖାଇବ ନାହିଁ, କାରଣ ତାହା ହିନ୍ଦୁ ଧର୍ମର ବିରୁଦ୍ଧ ଓ କୌଣସି ସଭ୍ୟ ଲୋକ ତାହା ଖାଆନ୍ତି ନାହିଁ ।

ସେ ଲୋକ ଜବାବ ଦେଲା, ମୁଁ ମଦ ନ ଖାଇଲେ ଏବଂ ମୃତ ମାଂସ ନ ଖାଇଲେ ମୋର ଜ୍ଞାତିମାନେ ମୋତେ ଜାତିରୁ ବାହାର କରିଦେବେ ।"

ମୁଁ କହିଲି ତୁମେ ଅଜାତି ହେବାର କଷ୍ଟ ସହ ଏବଂ ଆବଶ୍ୟକ ହେଲେ ଗ୍ରାମ ଛାଡ଼ିଦିଅ । ସେ ପଦଦଳିତ ଗରିବ ଲୋକଟି ମୋତେ ଜବାବ ଦେଲା, ଯଦି ସେ ନିଜର କଥା

ଉପରେ ଦୃଢ଼ ରହନ୍ତି ତାର ଦାନ ମୋର ଧନୀ ଦେଶବାସୀଙ୍କ ଦାନ ଧନ ଅପେକ୍ଷା ବହୁ ମୂଲ୍ୟ ହେବ ।

ଏ ଅସ୍ପୃଶ୍ୟତା ସବୁଠାରୁ ବଡ଼ କଳଙ୍କ । ଏହାର ଜ୍ୱାଳା ଦିନକୁଦିନ ବଢ଼ି ଚାଲିଛି । ମାତ୍ର ଏ ଅବାଞ୍ଛନୀୟ ଘଟଣା ତ ସବୁଠାରୁ ବଡ଼ ଲଜ୍ଜା ଓ ଦୁଃଖର ଏକ ଅଂଶ । '୧୭ ଚମ୍ପାରଣ ପରେ ମୁଁ ପୁଣି କେବେ ଏପରି ଶ୍ମଶାନ ଶାନ୍ତି ଦେଖି ନ ଥିଲି, ଯାହା କାଣପୁରଠାରୁ ଓଡ଼ିଶାରେ ପହଞ୍ଚି ଦେଖିଲି । ମୋ ମତରେ, ଓଡ଼ିଶାର ଶାନ୍ତି ଚମ୍ପାରଣ ଶାନ୍ତିଠାରୁ ବି ଅଧିକ ଖରାପ । ସେଠାର ପ୍ରଜାଙ୍କ ମଧ୍ୟରେ ଜାଗରଣ ହେବା ପରେ ସେମାନଙ୍କ ମଧ୍ୟରେ ଉତ୍ସାହ ଆସିଲା । ମାତ୍ର ଓଡ଼ିଶାରେ ଏତେଶୀଘ୍ର ଉତ୍ସାହ ଆସିବାରେ ମୋତେ ଆଶଙ୍କା ଜନ୍ମାଉଛି । ମୋତେ କୁହାଗଲା କି ଜମିଦାର ରାଜା ଓ ସ୍ଥାନୀୟ ପୋଲିସମାନେ ପ୍ରଜାମାନଙ୍କୁ ମୋ ନିକଟକୁ ଆସିବାକୁ ଡରାଇ ଦେଲେ । ମୁଁ ତ ଏହି ବିଶ୍ୱାସରେ ଆଶ୍ୱସ୍ତ ଥିଲି କି ଜମିଦାର, ରାଜା ଓ ଶ୍ରେଷ୍ଠ ଶ୍ରେଷ୍ଠ ପୋଲିସ ଅଫିସର ମୋତେ ଆଉ ଡରୁନାହାନ୍ତି; ମାତ୍ର ଏଠାକୁ ଆସି ମୋର ଧାରଣା ବଦଳି ଗଲା । ମୁଁ ନିଜେ ଏଣେତେଣେ ବୁଲିବାଦ୍ୱାରା ଦୁର୍ବଳ ହୋଇ ପଡ଼ିଥିବାରୁ ମୋର ସାଥିମାନଙ୍କୁ ଲୋକଙ୍କ ନିକଟକୁ ପଠାଇ ଏହାର କାରଣ ଅନୁସନ୍ଧାନ କଲି । ସେମାନେ ଆସି ମୋତେ କହିଲେ ଯେ, ଲୋକଙ୍କୁ କୁହାଯାଇଛି, "ଗାନ୍ଧିଜୀଙ୍କ ପାଖକୁ ଯାଅନାହିଁ । ତାଙ୍କୁ ସମ୍ମାନ ଦିଆଯିବାପାଇଁ ଯେଉଁ ଉତ୍ସବ ଅନୁଷ୍ଠିତ ହେଉଛି ସେଠାକୁ ଗଲେ ତୁମ୍ଭମାନଙ୍କୁ ଦଣ୍ଡ ଦିଆଯିବ ।" ଏ ପ୍ରକାର ସୂଚନା ଅନ୍ୟ ପ୍ରଦେଶରେ ବି ଦିଆ ଯାଇଥିଲା । ମାତ୍ର ଏହାର ପ୍ରଭାବ କୌଣସିଠାରେ ପଡ଼ି ନଥିଲା । ଓଡ଼ିଶାର ପ୍ରଜାମାନେ ଏପରି ଜଣାଗଲେ ଯେ ସେମାନେ ସର୍ବଦା ଭୟଭୀତ ରହନ୍ତି ଏବଂ ସାମାନ୍ୟ ଘଟଣାରେ ମଧ୍ୟ ସେମାନଙ୍କୁ ବିଚଳିତ କରାଯାଇପାରେ ।

ଏ ଏପରି କଳଙ୍କ ଯାହା ଆମର ଏବଂ ଆମ ଶାସକ ବୁଦ୍ଧିଙ୍କର ମୁଣ୍ଡ ଉପରେ ଲଦା ଯାଇଛି । ଏକଥା ସତ୍ୟ ଯେ ରାଜା ଜମିଦାର ଏବଂ ପୁଲିସଙ୍କର ଶ୍ରେଷ୍ଠଭାଇ ସମସ୍ତେ ଆମର ଭାଇ ଏବଂ ସମସ୍ତଙ୍କ ଦେହରେ ଏକା ରକ୍ତ । ମାତ୍ର ଏ ଭୟ ଏବଂ ଡରର ମୂଳ ତ ଆମର ଶାସକ । କାରଣ ତାଙ୍କର ଶାସନର ଆଧାର ହେଉଛି ଭକ୍ତି । ସେମାନେ ନିଜର ପ୍ରତିଷ୍ଠା ଅକ୍ଷୁଣ୍ଣ ରଖିବାପାଇଁ ଆମର ବଡ଼ରୁ ବଡ଼ଙ୍କୁ ମଧ୍ୟ କୌଣସି କୌଣସି ଉପାୟରେ ମୁଣ୍ଡ ନୁଆଁଇବା ପାଇଁ ବାଧ୍ୟ କରନ୍ତି । ଯେଉଁଠି ସେମାନେ ଏ ଭୀରୁତା ଉପୁଜାଇ ପାରି-ନାହାନ୍ତି ସେଠାରେ ସେମାନେ ଏହା ବଢ଼ାଇ ଦେଇଛନ୍ତି । ସେମାନଙ୍କୁ ପ୍ରଜାମାନଙ୍କ

ମଧ୍ୟରେ ଏହି ମାଛ ଭସ୍ମ ହେବାର ଜଣାଅଛି । ମାତ୍ର କେଉଁଠି କେଉଁଠି ସେମାନେ ଆପଣା ରାଜ୍ୟର ହିତ ଦ୍ୱାହିଦେଇ ସେମାନଙ୍କୁ ଏବଂ ସେହି କାରଣରୁ ନିଜର ଜୀବନ ପରି ରକ୍ଷା କରିନାହାନ୍ତି, ସେଠାରେ ତାହା ଦୂର କରିବାକୁ ବି କୌଣସି ପ୍ରଯତ୍ନ କରିନାହାନ୍ତି । ଏଥିପାଇଁ ଏହି ଦୁଃଖଦ ଦୁର୍ଣ୍ଣୀ ପାଇଁ ପ୍ରତ୍ୟକ୍ଷ ଭାବରେ ଦୋଷୀ ବି ହୋଇପାରିବେ ନାହିଁ । ମାତ୍ର ତଥାପି ମଧ୍ୟ ଏଥିରେ ସେମାନଙ୍କର ବହୁତ ବଡ ହାତ ଥିବାରୁ ସେମାନେ ନିର୍ଦ୍ଦୋଷ ହୋଇପାରିବେ ନାହିଁ ।

ମାତ୍ର ଆମର କଳଙ୍କ ତ ଆହୁରି ବଡ଼ । ବସ୍ତୁତଃ ଆମେ ସକଳ, ସ୍ୱାଭିମାନୀ ଏବଂ ନିର୍ଭୟ ହେଲେ ବିଦେଶୀ ଶାସକ ଆମର କୌଣସି ଅନିଷ୍ଟ କରି ପାରନ୍ତେ ନାହିଁ । ଯେଉଁ ଲୋକ ତରକୁଲା ହୁଅନ୍ତି କେବଳ ସେହିମାନେ ହିଁ ଅନ୍ୟକୁ ଡରନ୍ତି ଏବଂ ଏହା ସ୍ୱୀକାର କରିବାକୁ ହେବ ଯେ ଇଂରେଜଙ୍କର ଆସିବାର ବହୁତ ଦିନ ଆଗରୁ ଆମ ନିଜ ଜମିଦାର ଓ ରାଜାଙ୍କୁ ଡରିବାର ସ୍ୱଭାବ ରହିଆସିଛି । ବର୍ତ୍ତମାନର ଶାସକମାନେ କେବଳ ତାକୁ ଏକ ଶାସ୍ତ୍ରରୂପେ ଠିଆ କରିଛନ୍ତି ଯାହା ଆଗରୁ ଉଣାଅଧିକେ ସ୍ଥୂଳରୂପରେ ଥିଲା । ଏଥିପାଇଁ ଓଡ଼ିଶାର କାର୍ଯ୍ୟକର୍ତ୍ତାମାନଙ୍କୁ ଲୋକଙ୍କୁ ଶିଖାଇବାକୁ ହେବ ଯେ ଏ ଭୀରୁ ତାକୁ ଗୁଣ୍ଡିବାକୁ ହେବ ଏବଂ ଏହା ଜମିଦାର, ରାଜା ଓ ପୋଲିସମାନଙ୍କୁ ଗାଳିଦେବାରେ ହେବନାହିଁ । ଏ ସମସ୍ତ ଯେତେବେଳେ ଦେଖାଯିବ ଯେ ପ୍ରଜାମାନେ ନିଜର ଖରାପ ସ୍ୱଭାବ ଭୁଲିଗଲେଣି ସେତେବେଳେ ସେମାନେ ନିଜେ ନରମି ଯିବେ ବା ମିତ୍ର ବି ହୋଇଯିବେ ।

(ୟଙ୍ଗ ଇଣ୍ଡିଆ) ନବଜୀବନ ତା ୨୨ । ୧୨ । ୧୯୨୭
ମୋହନ ଦାସ କରମଚାନ୍ଦ ଗାନ୍ଧୀ

———

# ଶ୍ମଶାନ ଶାନ୍ତି

ଏକ ସଭାରେ ଗାନ୍ଧୀଜୀ ବହୁତ ଥକା ପଡ଼ିଥିବା ଅବସ୍ଥାରେ ଆସି ପହଞ୍ଚିଲେ । ସେ କହିଲେ ମୋର ବହୁତ ଆନନ୍ଦ ଯେ ମାନପତ୍ର ସେ ପଢ଼ିବା ମାନେ ପଢ଼ାଯିବା ସ୍ୱୀକାର କରି ନଆଗଲା । ମୋର ଭାଷଣ ବି ଦିଆଗଲା ବୋଲି ସ୍ୱୀକାର କରି ନଆଯାଆନ୍ତା ଯାହାକି ବିନାଥିଲରେ ଦିଆଯାଇ, ଦିଆଗଲା ବୋଲି ସ୍ୱୀକାର କରାହୋଆନ୍ତା ସେଥିରେ ମୁଁ ଆନନ୍ଦିତ ହୁଅନ୍ତି । ତାଙ୍କର ଆଖପାଖ ଏବଂ ଆଗପଛରେ ବସିଥିବା ଲୋକମାନେ ଏ ପ୍ରକାର ଗମ୍ଭୀର କରୁଣାଜନକ ରହସ୍ୟ ବୁଝିପାରିଲେ ନାହିଁ । ଗାନ୍ଧୀଜୀଙ୍କର ସ୍ୱଭାବ ଯେ ସେ ବିନାକାମରେ କେବଳ ଭାଷଣରେ କୁହାଯାଉଥିବା କଥାକୁ ସ୍ୱୀକାର କରନ୍ତି ନାହିଁ, ପରନ୍ତୁ ଘରେ ବସି ଭ୍ରମଣ କରୁଛନ୍ତି ବୋଲି ମାନନ୍ତିନାହିଁ ମାତ୍ର ଦୁଃଖର ବିଷୟ ଆମ୍ଭେମାନେ ତାହା ଧିରେ ଧିରେ ବୁଝନ୍ତି ।

ଏହି ଭ୍ରମଣର ନିୟନ୍ତ୍ରକ ବନ୍ଧୁ ବି ଶେଷରେ ବୁଝିଲେ ଯେ ଗାନ୍ଧୀଜୀଙ୍କ କାର୍ଯ୍ୟ-କ୍ରମର କେତେକ ଅଂଶ ପୂର୍ଣ୍ଣ କରିବାକୁ ହେଲେ ଧିରେ ଧିରେ ଚାଲିବାକୁ ହେବ । ଏଥିପାଇଁ ଉତ୍କଳ ଯାତ୍ରାର ଏକ ଅଂଶ ଛାଡ଼ି ଦିଆଗଲା । ମାତ୍ର ତଥାପି ବି ନିସ୍ତାର କାହିଁ ? ଆମେ ବୋଲଗଡ଼ ଯିବାପଥରେ, (ଯେଉଁଠିକି ଗାନ୍ଧୀଜୀ ବିଶ୍ରାମ ନେବାର ବିଚାର ଥିଲା) ବାଣପୁର ଲୋକେ ଦୌଡ଼ିଆସି କହିଲେ ଯେ ପୋଲିସ ଆମକୁ ନିର୍ଯ୍ୟାତନା ଦେଉଛି । ଗାନ୍ଧୀଜୀଙ୍କ ସଭାକୁ ଯିବା ଲୋକଙ୍କୁ ସେମାନେ ଧମକ ଦେଉଛନ୍ତି, ଗାନ୍ଧୀଜୀ ସେଠାକୁ ନିଜେ ନ ଗଲେ ପୋଲିସଙ୍କ କଥା କାଏମ ରହିବ ଲୋକେ ଡରିଯିବେ ଇତ୍ୟାଦି । ବର୍ତ୍ତମାନ ଏହାର ହଁା ଜବାବ କିଏ ? ଶେଷରେ ସେଠାକୁ ଯିବାକୁ ପଡ଼ିଲା । ବାଣପୁର— ପୁରୀଜିଲାର ଦକ୍ଷିଣ ପ୍ରାନ୍ତରେ ଅବସ୍ଥିତ । ଆମେମାନେ ଗଞ୍ଜାମଜିଲାରେ ଓଡ଼ିଆ ଦେଖିଥିଲୁ ଏବଂ ବାଣପୁରରେ ଦେଖିଲୁ । ଗଞ୍ଜାମରେ ତ ଓଡ଼ିଆଙ୍କର ଏପରି ଭିଡ଼ ହେଲା ଯେ ଅସହ୍ୟ ହଇହଲା ଉପୁଜିଲା, ଯେପରିକି ହିନ୍ଦୁସ୍ଥାନର ଅନ୍ୟତ୍ର ସାଧାରଣ ଉପୁଜେ ମାତ୍ର ଏଠାରେ ଅନ୍ୟ ସଂସାର ଥିଲା । ଏଠାକୁ ଆସି ମନେ ହେଲା ଯେ ଏମାନେ ବି ଓଡ଼ିଆ ମାତ୍ର ଅନ୍ୟ ଦୁନିଆର । ସଭା ବିଲକୁଲ ଶାନ୍ତ ଥିଲା । କେଉଁଠି ହଇହଲା ନ ଥିଲା ଏବଂ ଦର୍ଶନ ବା ପାଦ ଛୁଇଁବାରେ ଠେଲାପେଲା ନ ଥିଲା । ବାବୁ ଗୋଦାବରୀଶ ମିଶ୍ର ଏମ୍. ଏଲ୍. ସି. ସଭାର ଆୟୋଜନ କରିଥିଲେ । ସେ ଜଣେ ପୁରୁଣା ଦେଶ ସେବକ । ସେ ନିଜେ ମାନପତ୍ର ପଢ଼ିଲେ ମାତ୍ର ଗୋଟିଏ ବିଷୟ ନିରସ ବୋଧହେଲା । ମାନପତ୍ରରେ ଯେଉଁ ଭାବନା ଯେଉଁ

ବିଗ୍ରହ ପ୍ରକଟିତ କରାଯାଇଥିଲା ଯହିଁରେ ଲୋକଙ୍କ ମଧ୍ୟରେ କୌଣସି ପକ୍ଷ ବା ମିଳନ ଥିଲା । ଏ ଭାବନା ବି କେବଳ ଖିଆଲଠାରୁ ବଡ଼ ନ ଥିଲା । ଯାହା କୌଣସି ଲୋକ କୌଣସି ମୁଖିଆଙ୍କଠାରୁ ଶୁଣିବାକୁ ଆଶା ରଖନ୍ତି ନାହିଁ । ଗାନ୍ଧୀଜୀ କହିଲେ ତୁମେ ଡରୁଛ କାହିଁକି ? ସତ୍ୟର ବିପଦ ନାହିଁ । ଯେ କୌଣସି ଦୋଷ କରିନାହିଁ ତାର ଡର କଣ ? ମନେରଖ ତୁମେ ଯଦି ଡରିବନାହିଁ ତେବେ ତୁମକୁ କେହି ଡରାଇ ପାରିବେ ନାହିଁ । ପୋଲିସ ଲୋକ ତ ଆମର ଭାଇବନ୍ଧୁ । ସେମାନେ ତୁମକୁ ଧମକାଇବାକୁ ଆସିଲେ ପଚାର ଭାଇ ତୁମେ କଣ କରିବାକୁ ଚାହୁଁଛ । ଏଥିରେ କଣ ହେବ । ଏଥିରେ ସେମାନେ ଜେଲକୁ ନେଇଯିବେ ତ ତୁମେ ତାଙ୍କୁ ବିରୋଧ କରନାହିଁ, ଚାଲିଯାଅ ସେମାନେ ଗାଳି ଦିଅନ୍ତି ତ ତୁମେମାନେ ଗାଳି ଦିଅନାହିଁ ବରଂ ଗାଳିକୁ ହସି ହସି ଉଡ଼ାଇଦିଅ । ସେମାନେ ତୁମକୁ ମାରନ୍ତି ତ ତୁମେ ତାଙ୍କୁ ମାରନାହିଁ ବରଂ ନିକଟରେ ଥିବା କୌଣସି କର୍ତ୍ତୃପକ୍ଷଙ୍କ ନିକଟକୁ ଯାଇ ରିପୋର୍ଟ ଦିଅ । ମୁଁ ତୁମକୁ ଏ କଥାରେ ମକଦ୍ଦମା ଲଢ଼ିବାପାଇଁ ଉତ୍ସାହ ଦେବାକୁ ଚାହେଁ । କାରଣ ଆମେ ପୋଲିସକୁ ଦଣ୍ଡ ଦିଆଇବାକୁ ଚାହାନ୍ତି ନାହିଁ । ବରଂ ପଶ୍ଚାତାପ କରାଇବାକୁ ଚାହାନ୍ତି, ଏଥିରେ ମକଦ୍ଦମା ଲଢ଼ିବାରେ ଆବଶ୍ୟକତା ପଡ଼ିବ ତ ମକଦ୍ଦମା ବି କରିପାର । ଯେ କୌଣସି ଅବସ୍ଥାରେ ହେଉ ଡରନାହିଁ । ଡର ତ ବେମାରଠାରୁ ବଡ଼ ଖରାପ ଜିନିଷ । ଯେଉଁଲୋକ ଅନ୍ୟକୁ ଡରେ ସେ ମଣିଷ୍ୟତ୍ୱର ପଛରେ ପଡ଼ିଯାଏ । କେବଳ ଗୋଟିଏ କଥା ଭଗବାନଙ୍କୁ ଡର, ମୁଁ ଏଠାରେ କାଲି ଦିନ ୧ଟା ପର୍ଯ୍ୟନ୍ତ ରହିଛି । ତୁମମାନଙ୍କର ଯାହାକିଛି କହିବାର କଥା ମୋତେ ଆସି କୁହ ।

ଦ୍ୱିତୀୟ ଦିନ ଆମ୍ଭେମାନେ ଚରଖାସଂଘର ଉତ୍ପତ୍ତି କେନ୍ଦ୍ର ବୋଲଗଡ଼କୁ ଆସିଲୁ । ସେଠାରେ ବି ସେହି ଶ୍ମଶାନ ଶାନ୍ତି ବିରାଜମାନ କରିଥିଲା । ଲୋକ ତ ଥିଲେ କିନ୍ତୁ ଗାନ୍ଧୀଜୀଙ୍କ ସହିତ କଥାବାର୍ତ୍ତା କରିବାକୁ କାହାର ସାହସ ନ ଥିଲା । ଡ୍ରିଷ୍ଟ୍ରିକ୍ଟ ବୋର୍ଡ଼ ଡାକବଙ୍ଗଳାରେ ଆମ୍ଭେମାନେ ଦୁଇଦିନ ଅବସ୍ଥାନ କରିଥିଲୁ । ତାହାମଧ୍ୟ ଭଡ଼ାରେ ନେବାପାଇଁ ଆମକୁ ବହୁକଷ୍ଟ ସହିବାକୁ ପଡ଼ିଥିଲା ।

ବାଣପୁରରେ ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର କୌଣସି ପ୍ରକାର ଏକ ଶ୍ରେଷ୍ଠ ଅଳ୍ପ ଆୟୋଜନ କରିପାରିଥିଲେ । ମାତ୍ର ବୋଲଗଡ଼ରେ ତ ଏହାର ବିଚାର ବି କରାଯାଇ ପାରେନାହିଁ । ମାତ୍ର ସଭାରେ ଦୁଇ ସ୍ଥାନରେ ଚାନ୍ଦାର ପ୍ରଶ୍ନ ଉଠିଥିଲା ଏବଂ ପଇସା ଅଧିକ ଖୁବ୍ ମିଳିଥିଲା । ବାଣପୁରରେ ଏକ ଆଦିମ—ଅସ୍ପୃଶ୍ୟ କନ୍ଧ ଜାତିର ଲୋକ ଗାନ୍ଧୀଜୀଙ୍କ ପାଇଁ କିଛି ବାଇଗଣ ଓ ଲଉ ଆଣିଥିଲା । ତାହାକୁ ନିଲାମ କରି ଦିଆ-

ଯାଇଥିଲା । ମାତ୍ର ଏଠାରେ ଲୋକଙ୍କର ଗରିବ ପଣିଆର ସୂଚନା ମିଳିଥିଲା । ଯେ କେବଳ ଦୁଇଜଣ ଲୋକ ଏକ ଏକ ଟଙ୍କାରେ ଏକ ଏକ ବାଇଗଣ ବା ଲାଉ ଆଣିଥିଲେ, ବାକି ସମସ୍ତ ଦୁଇ-ଦୁଇ, ତିନି-ତିନି ଅଣାରେ ଅର୍ଥାତ୍ ବଜାର ଭାଉରେ ବିକ୍ରୀ କରାଯାଉଥିଲା ।

# ଗ୍ରାମର ଆକର୍ଷଣ

ଗାନ୍ଧୀଜୀଙ୍କୁ ବାଧହୋଇ ଦୁଇ ତିନିଦିନ ବିଶ୍ରାମ କରିବାକୁ ପଡ଼ିଲା । ଏଥିପାଇଁ ଆମକୁ ବି ଗ୍ରାମରେ ବୁଲିବାପାଇଁ ସୁବିଧା ମିଳିଲା । ଆମେ ତିନିଚାରିଟି ଗ୍ରାମ ଦେଖିଲୁ । ଏଠାରେ ସେପରି ଗରିବ ଦେଖାଗଲେ ନାହିଁ , ଯାହାଙ୍କ ପାଇଁ ଗାନ୍ଧୀଜୀ ଦୌଡ଼ାଦୌଡ଼ି କରିବାପାଇଁ ନିଜ ଜୀବନର ଉଦ୍ଦେଶ୍ୟ କରି ନେଇଥିଲେ । ଏ ମଧ୍ୟରେ ବ୍ରାହ୍ମଣମାନଙ୍କର ଏକ ସାଧାରଣ ଗ୍ରାମଥିଲା । କୌଣସି ସୁନ୍ଦର ସ୍ଥାନରେ ସୁନ୍ଦର ବ୍ରାହ୍ମଣ ଶାସନ ନ ଥିଲା । ସେମାନଙ୍କ ଘରର ଚେୟାର ମାଟିରେ ତିଆରି ହୋଇଥିଲା ଏବଂ କାନ୍ଥ ବି ମାଟିରେ ତିଆରି ହୋଇଥିଲା । ସାନଟି ଛୋଟ ଛୋଟ କୋଠରୀ, ଯହିଁରେ ଝରକା ନ ଥିଲା । ଗୋରୁଙ୍କ ପାଇଁ ଏକ ଛୋଟ ଗୁହାଳ ଏବଂ ମଝିରେ ଅଗଣା ବା ଚୌପାଢ଼ୀ ଥିଲା । ଏହି ହିଁ ତାଙ୍କର ଘର । ଏଥିରେ ବହୁତ ଘର କଳା ବା ସୌନ୍ଦର୍ଯ୍ୟ ଦୃଷ୍ଟିରୁ ବଡ଼ ସୁନ୍ଦର ଥିଲା । କାନ୍ଥରେ ଉଜ୍ଜ୍ୱଳ ମାଟିର ଭଲ ଭଲ ଚିତ୍ର ତିଆରି କରାଯାଇଥିଲା । କେବଳ ଗୋଟିଏ ଘରକୁ ଛାଡ଼ି ସ୍ତ୍ରୀମାନଙ୍କୁ ପଦା ବାହାରକୁ କେଉଁଠାକୁ ଡକାଯାଇ ପାରିଲା ନାହିଁ ; କିନ୍ତୁ ଶ୍ରୀମତୀ ମୀରା ଭଉଣୀଙ୍କୁ ଡକାଇ ସେମାନେ କଥାବାର୍ତ୍ତା କରିବାକୁ ସବୁବେଳେ ପ୍ରସ୍ତୁତ ଥିଲେ । ଗୋରୁ ତ ସମସ୍ତଙ୍କର ଖୁବ୍ ପ୍ରିୟ; ମାତ୍ର ଦେଶରୁ ଗୋରୁଗୁଡ଼ିକ ଲୋପ ପାଇଯାଇଥିଲେ । ଡାକ୍ତର ହଣ୍ଟର ନିଜ ଓଡ଼ିଶା ନାମକ ପୁସ୍ତକରେ ଚାରି-ଚାରି ସେର ଦୁଧ ଦେବାଭଳି ଗାଈ ପନ୍ଦର-ପନ୍ଦର ଟଙ୍କାରେ ମିଳିବା କଥା ଲେଖିଥିଲେ; କିନ୍ତୁ ଏଠାରେ ଆମେ ଯେଉଁ ଗାଈ ଦେଖିଲୁ ସେମାନଙ୍କ ସମ୍ପର୍କରେ କୁହାଯାଇ ପାରେ ଯେ ସେମାନେ ଅଧସେର ଦୁଧ ବି ଦେଇପାରିବେ ନାହିଁ । ଆମେ ପଚାରିଲୁ, ଆପଣମାନେ କଣ ଗାଈକୁ ଭୂଷି ବା ଶସ୍ୟ ଖାଇବାକୁ ଦେଉନାହାନ୍ତି ? ନିଜ ପେଟ ପୂରାଇବାକୁ ତ ଶସ୍ୟ ମିଳୁନାହିଁ; ତାଙ୍କ କଥା ପଚାରେ କିଏ ? ଏକଥା ଜଣେ ବ୍ରାହ୍ମଣ କହିଲା, ଯାହାର କି ଦୁଇଯୋଡ଼ା ବଳଦ ଦଶଟି ଗାଈ ଏବଂ କୋଡ଼ିଏ ଏକର ଜମିଅଛି ।

—ଆପଣଙ୍କୁ ଏକ ଏକର ଜମିରେ କେତେ ଫସଲ ମିଳେ ?

—ଚାଳିଶ ଟଙ୍କାର ।

—ତେବେ କଣ ଆପଣ କହନ୍ତ ଯେ ୫୦୦୦ର ଧାନ ଉତ୍ପନ୍ନ କଲେ ବି ଆପଣ କାଟୁଦିନ୍ ଉପବାସରେ ଦିନ କାଟନ୍ତ ? ଆପଣଙ୍କର କଣ କୌଣସି ଋଣ ଅଛି ?

—ନାଁ ତ ?

ତେବେ ଏଥିରେ ଆଶ୍ଚର୍ଯ୍ୟ କଣ ଯେ—ଡାକ୍ତର ହଣ୍ଟରଙ୍କ କଥା ଅନୁସାରେ ଏଠାକାର ଲୋକ ଗରିବ ଏବଂ ଯେତେ ଗରିବ ତାଠାରୁ ଅଧିକ ଦେଖାଇ ହୁଅନ୍ତ ।

ଦ୍ୱିତୀୟ ଗ୍ରାମ ଚରଖାର ଗ୍ରାମ ଥିଲା । ସେଠାରେ ଘରେ ଘରେ ଚରଖା ଚଲେ ଏବଂ ଘର ଘରର ଚରଖା ବାହାରେ ସଜାଯାଇ ବାରନ୍ଦାରେ ରଖାଯାଇଥିଲା; କାରଣ ଗାନ୍ଧୀଜୀଙ୍କର ଆସିବାର ଥିଲା । ଚରଖାସଂଘ ତରଫରୁ ସ୍ତ୍ରୀ ଲୋକମାନଙ୍କୁ ସେରେ ସୂତା ବଦଳରେ ଦେଢ଼ ସେର ତୂଳା ଦିଆ ଯାଉଥିଲା । ଏହା ଅତ୍ୟନ୍ତ ଆନନ୍ଦର ବିଷୟ ଯେ ସେମାନେ ସେ ତୂଳାକୁ ବିକୁ ନ ଥିଲେ ବରଂ ତାକୁ ସୂତାକାଟି ଲୁଗା ତିଆରି କରୁଥିଲେ । ପ୍ରକୃତରେ କହିବାକୁ ଗଲେ କି ହିନ୍ଦୁ କି ମୁସଲମାନ ପ୍ରତ୍ୟେକ ଘରେ ମଜୁରିରୁ ମିଳୁଥିବା ତୂଳାର ସୂତାରେ ତିଆରି ଲୁଗାଥିଲା । ଏହି ଚରଖା ଜାଗୃତିର ପ୍ରଥମ ବ୍ରି ଏଠାରେ ଚରଖା ଚଳୁଥିଲା ଏବଂ ବୋଲଗଡ଼ର ଆଖପାଖରେ ପାଞ୍ଚହଜାର ଚରଖା ଚଳେ । ଚରଖା ସେହି ପୁରୁଣା ଧରଣର ଥିଲା, ବଳଣା ବି ଏଣୁ ତେଣୁ ଛୁଡ଼ା ତୂଳାରେ ତିଆରି ହୋଇଥିଲା ଏବଂ ତକଲି କାହାରି କାହାରି ସିଧା ଥିଲା । ଆମେ ପଚାରିଲୁ ଆପଣ ଭଲ ଚରଖା ଏବଂ ଭଲ ଭଣା କାହିଁକି ଆଣୁ ନାହାନ୍ତ ? ଜବାବ ମିଳିଲା—ସ୍ତ୍ରୀ ଲୋକମାନେ ସେମାନଙ୍କ ପୁରୁଣା ଢଙ୍ଗ ଛାଡ଼ିବାକୁ ଚାହାନ୍ତ ନାହିଁ । ଆମେ ପୁଣି ଅନ୍ୟ ଏକ ବଡ଼ ଗ୍ରାମକୁ ଗଲୁ । ସେଠା ଲୋକଙ୍କର ଘର ବଡ଼ ବଡ଼ ଏବଂ ଖୁବ୍ ସଫା ସୁତୁରା ଥିଲା । ତାହା କୌଣସି ଏକ ଦେଶୀୟ ରାଜ୍ୟରେ ଅବସ୍ଥିତ । ଜଣାଯାଉଥିଲା କି ଗ୍ରାମର ପ୍ରାଚୀନକାଳର ସଙ୍ଗଠନ ବିଲକୁଲ ଯେପରି ସେପରି ବର୍ତ୍ତମାନ ତିଆରି କରାଯାଇଛି; କିନ୍ତୁ ଦୁଃଖର ବିଷୟ, ଗୋଟିଏ ଚରଖାର ବି ସୂଚନା ନ ଥିଲା । ଏକ ଅଶୀବର୍ଷର ବୁଢ଼ୀ ତନ୍ତୀ ଲୁଗାବୁଣୁଥିବା ଅବସ୍ଥାରେ ଆମକୁ ଦେଖିବାକୁ ମିଳିଲା । ସେ କହିଲା ପଚିଶବର୍ଷ ଆଗରୁ ଆମେ ସବୁ ଦିଗରୁ ସୁଖୀଥିଲୁ ।

କଳାସୂତା ଆମ୍ଭମାନଙ୍କୁ ମାରି ଦେଇଛି । ଆମେ ପଚାରିଲୁ ବର୍ତ୍ତମାନ ତୁମେ କେତେ ରୋଜଗାର କରୁଛ ?

—ଚାରିଅଣା ।

—ସେତେବେଳେ କେତେ ରୋଜଗାର କରୁଥିଲ ?
— ଦିନକୁ ଦଶଅଣା ।

ସେ ଆମକୁ କହିଲା ଯେ ସେ ସମୟରେ ଅଧିକ ଖଟିବାକୁ ମିଳୁ ନ ଥିଲା; କିନ୍ତୁ ତା କାମର ଏତେ ସୁନାମ ଥିଲା ଯେ ସାରା କାମ ପୂରା କରିବାକୁ ମୁସ୍କିଲ୍ ହୋଇ ପଡ଼ୁଥିଲା । ବର୍ତ୍ତମାନ ମିଲ ସୂତାରେ ବୁଣା ଖଦଡ଼ ଲୁଗାକୁ କେହି ପଚାରୁ ନାହାନ୍ତି । କାରଣ ଭଲ ଭଲ ବିଲାତିଲୁଗା ଶସ୍ତାରେ ମିଳୁଛି । ରାସ୍ତାରେ ଏକ ମୋଟର ସହିତ ଦେଖାହେଲା । ସେ କଟକର ଠିକାଦାରପାଇଁ ଚମଡ଼ା ନେଇ ଯାଉଥିଲା ଯେ କି ଦେଶସାରା ସବୁ ପଶୁଙ୍କର ଚମଡ଼ା ଦଶହଜାର ଟଙ୍କାରେ କିଣି ନେଇଥିଲା, ଅର୍ଥାତ୍ କେଉଁଠି କେଉଁ ପଶୁ ମଲେ କୃଷକର ତା ଉପରେ ଅଧିକାର ରହୁ ନ ଥିଲା । ସେ ଲୋକର ନିଜପାଇଁ ଏକଇଞ୍ଚ ଚମଡ଼ା କାଟିବାର ବି ଅଧିକାର ନ ଥିଲା । ସମସ୍ତ ଚମଡ଼ା ସେ ଠିକାଦାର ନେଉଥିଲା । ଆମକୁ କୁହାଗଲା ଯେ ଏ ପ୍ରଥା ଏଠାର ସବୁ ଦେଶୀୟ ରାଜ୍ୟରେ ପ୍ରଚଳିତ । ଏ ଗ୍ରାମରେ ଏକ ଅଫିମ ଦୋକାନ ବି ଥିଲା ଯେଉଁଠି ଟ ୪୦।୫୦ ର ଅଫିମ ପ୍ରତିଦିନ ବିକ୍ରି ହେଉଥିଲା । ଆମେ ପଚାରିଲୁ ତୁମେ ଅଫିମ କେଉଁଠୁ ଆଣ ? ରାଜକୋଷରୁ । ଏହା କହି ସେ ଦ୍ୱିତୀୟ ପ୍ରଶ୍ନର ଉତ୍ତର ଦେବାପାଇଁ ଏଣେ ତେଣେ ଗୁହିଁଲା । ବର୍ତ୍ତମାନ ଆମେ ଗାନ୍ଧୀଙ୍କର ଲୋକ ବୋଲି ଜଣା ପଡ଼ିବାରୁ ଗ୍ରାମର ମୁଖିଆ ମଧ୍ୟ ଆମକୁ କୌଣସି କଥା କହିଲେ ନାହିଁ । ଜଣେ ଲୋକ ଆମକୁ ନିଜ ଘରକୁ ଡ଼ାକିଲା । ସେ ଆମ କାନରେ କହିଲା ଯେ ଲୋକମାନଙ୍କୁ ଗାନ୍ଧିଙ୍କ ପାଖକୁ ଯିବାକୁ ମନା କରାଯାଇଛି । ଗ୍ରାମର ଚୌକିଦାରକୁ ଆମେ ପଚାରିଲୁ "ତୁମେ ଗାନ୍ଧିଜୀଙ୍କୁ ଜାଣ ?" ସେ କହିଲା "ଯେତେବେଳେ ବଡ଼ ଲୋକମାନେ ତାଙ୍କ ବିଷୟରେ କିଛି ଜାଣନ୍ତି ନାହିଁ, ସେତେବେଳେ ମୁଁ କଣ ଜାଣିବି ।" ଏ ପ୍ରକାର ପ୍ରଗତିଶୀଳ ଧନୀ ଗ୍ରାମ୍ୟଙ୍କର ପୋଲିସ ଗ୍ରୁପୁକୁ ମଧ୍ୟ ଲୋକ ଖୁବ୍ ଡରନ୍ତି ଏବଂ ଗାନ୍ଧିଜୀଙ୍କ ନାମ ମଧ୍ୟ ସେମାନଙ୍କୁ ଡରାଇବାକୁ ବହୁତ ଥିଲା ।

## ଅସଲ ରୋଗ

ଏଠାର ଅସଲ ରୋଗ ହେଉଛି ଡର । ଏହି ଡରରୁ ଲୋକମାନଙ୍କର ଏ ପ୍ରକାର ମନୋଭାବ ଜାଗ୍ରତ ହୋଇଥିଲା ଯେ କଲଗୋଲରେ ପଶୁଛି କିଏ, ଯାହାର ହେଉଛି ହୋଇଯାଉ । ଏଥିପାଇଁ ତ ଲର୍ଡ଼ କର୍ଜନ ଏଠା ଅଧିବାସୀମାନଙ୍କୁ ପ୍ରଶଂସାପତ୍ର ଦେଇଥିଲେ କି "ଏମାନେ ଆନ୍ଦୋଳନକାରୀ ନୁହନ୍ତି ।" ଅନ୍ୟ ଏକ ଶାସକ କହିଥିଲେ, "ଏମାନେ ନିୟମ ପାଳନକାରୀ; ହଇହଲ୍ଲା, କାନଫୁସି କରିବା ଲୋକ ନୁହନ୍ତି । ଓଡ଼ିଆଙ୍କର

ଏକମାତ୍ର ଦାବୀ ଥିଲା ଯେ ଆମେ ଗୋଟିଏ ଶାସନରେ ରହିବୁ; କିନ୍ତୁ ଯେତେବେଳେ ବଙ୍ଗଳାର ଆନ୍ଦୋଳନକାରୀଙ୍କ ବଦଳରେ ବଙ୍ଗଭଙ୍ଗ ରଦ୍ଦ ହେଲା; ସେତେବେଳେ ଓଡ଼ିଆ-ମାନଙ୍କୁ ଯେପରି ଅଲଗା କରି ଦିଆଯାଇଥିଲା ସେପରି ଅଲଗା ରଖାଗଲା । ଦୀନବନ୍ଧୁ ଏଣ୍ଡ୍ରୁଜ୍ କହିଥିଲେ ଗୁଜରାଟ ନିଜ ବଳରେ, କାର୍ଯ୍ୟକର୍ତ୍ତାଙ୍କ ବଳ ଉପରେ ଏତେ ଗୋଳ କଲେ ଯେ ସରକାରଙ୍କ ଦୃଷ୍ଟି ବି ଆକର୍ଷିତ ହେଲା ଏବଂ ସମସ୍ତ ମିଳାଇ ଦୁଇ କୋଟିରୁ ଅଧିକ ଟଙ୍କା ଜମା କରିନେଲେ ସେତେବେଳେ ଗରିବ ଓଡ଼ିଶାକୁ ସବୁ ମିଳାଇ ଚାରି ପାଞ୍ଚ ଲକ୍ଷର ଆମଦାନୀ ବ୍ୟତୀତ ଆଉ କିଛି ମିଳିଲା ନାହିଁ । କିନ୍ତୁ ଏଠି ଓଡ଼ିଶାର ସଙ୍କଟ ଗୁଜରାଟର ଏକତୃତୀୟାଂଶରୁ କମ ନ ଥିଲା । ଲୋକଙ୍କର ସ୍ୱାବଲମ୍ବନର ତ ନାମ ନିଶାଣ ନାହିଁ । ଲୋକ ନିଜେ ନିଜେ କୌଣସି କାମ କରିପାରେ ନାହିଁ ଏବଂ କାର୍ଯ୍ୟକର୍ତ୍ତା ବି ନାହାନ୍ତି । ଏ ସମସ୍ତ ଡର ଯୋଗୁଁ ଉତ୍ପନ୍ନ । ଏ ଡର ବି ସେ ଡରିବାର ଫଳ ଯାହା ବିଦେଶୀ ଶାସନ ତଳେ ଏତେଦିନରୁ ଚାଲିଆସୁଛି । ଓଡ଼ିଶାର ବେମାରୀ ଏହି ଡର ଏବଂ ଏହି ଡର ବନ୍ୟା ବା ଅକାଳଠାରୁ ଆହୁରି ସଙ୍କଟଜନକ । ଗାନ୍ଧିଜୀ ବୋଲଗଡ଼ରେ କହିଥିଲେ, ଡର ତ ମ୍ୟାଲେରିଆ ଓ କଳାଜ୍ୱରଠାରୁ ଅଧିକ ଖରାପ ବେମାରୀ । ସେ ବେମାରୀରେ ଶରୀର ମରେ; ମାତ୍ର ଡର ଆତ୍ମାକୁ ମାରିଦିଏ । ଡରକୁଳା ଲୋକ ଭଗବାନଙ୍କୁ କେବେହେଲେ ଜାଣିପାରେ ନାହିଁ । ଯେ ଭଗବାନଙ୍କୁ ଜାଣିପାରେ ସେ କେବେ ମନୁଷ୍ୟକୁ ଡରେ ନାହିଁ । ତୁମେମାନେ ଡର ଛାଡ଼ିଦିଅ ନଚେତ୍ ତୁମର ଜୀବନ ବିପଦାପନ୍ନ । ଜ୍ୱଳନ୍ତ ହୃଦୟରେ ଏକଥା ଏ କାନରେ ପଶି ସେକାନରେ ବାହାରିଗଲା । ସେଠାରେ ଦିନେ ବା ଦୁଇଦିନରେ କୌଣସି କାମ ହୋଇପାରେ ନା । ଗାନ୍ଧିଜୀ କହିଲେ, ମୋତେ ଏଠାରେ ତିନିଦିନ ବା ତିନିମାସ ନୁହେଁ ତିନିବର୍ଷ ରହିବା ଆବଶ୍ୟକ ।

## ସାକ୍ଷୀଗୋପାଳ

ଉତ୍କଳର ଏକ ସାଧୁ ସେବକ ବାବୁ ଗୋପବନ୍ଧୁ ଦାସଙ୍କ ଘର ସାକ୍ଷୀଗୋପାଳରେ । ସେ ସେଠାରେ ପୁରୀ ଜିଲାର ଆଖପାଖ ଅଞ୍ଚଳରେ ଗ୍ରାମମାନଙ୍କରେ ଖଦୀ ସହଯୋଗରେ ବନ୍ୟା ପ୍ରପୀଡ଼ିତମାନଙ୍କର ସହାୟତା କରନ୍ତି । ଦୁଃଖର ବିଷୟ ଯେ ଆମେ ସେ ଗ୍ରାମକୁ ଯାଇ ପାରିଲୁ ନାହିଁ; କିନ୍ତୁ ଏଠାକାର ଖଦୀ ଭଣ୍ଡାରମାନଙ୍କରେ ସେଠାର ତିଆରି ସମସ୍ତ ପ୍ରକାର ଖଦଡ଼ର ନମୁନା ରଖାଯାଇଥିଲା । ବର୍ତ୍ତମାନ ତାହାର ତିନି କେନ୍ଦ୍ର, ଯହିଁରେ ୩୭ଟି ଗ୍ରାମର ୬୪୭ କଟାଳି ଅଛନ୍ତି । ସେମାନଙ୍କର ମାସିକ ରୋଜଗାର ଟ ।୍ୟ/ରୁ ଟ୫୍ୟ/୩ ପର୍ଯ୍ୟନ୍ତ ପଡ଼େ । ଜୁଲାଇ ୨୯ ତାରିଖ, ଯେଉଁ ମାସକୁ ସେମାନଙ୍କର ଅଧିକ

ରୋଜଗାର ଥିଲା ଂ ୧୯୧ ଗତ ନଭେମ୍ବର ପର୍ଯ୍ୟନ୍ତ ଶେଷ ହୋଇଥିବା ବର୍ଷରେ ଏହି ଉପୁରେ ୫ ୧୧,୭୬୮ ର ଖର୍ଚ୍ଚ ବନ୍ଦି ହୋଇଥିଲା ।

ସାର୍ବଜନୀନ ସଭାରେ ଏକ ଶ୍ରେଷ୍ଠଥାଳ ଉପହାର ଦିଆଯାଇଥିଲା । ସ୍ତ୍ରୀମାନଙ୍କ ସଭାରେ ବି ଥାଳ ମିଳିଥିଲା ଏବଂ ସେମାନେ ନିଜ ମାନପତ୍ରରେ କହିଥିଲେ, "ପୁରୁଷମାନେ କପାଗୃହ ନହେବା ପାଇଁ ଆପଣ ପରାମର୍ଶ ଦିଅନ୍ତୁ ।"

## ପୁରୀ କଥା

ପୁରୀ—ଯାହାପାଇଁକି ଓଡ଼ିଶାକୁ ସର୍ବପାପହରଣ ଦେଶ କୁହାଯାଏ ଏବଂ ଯେଉଁଠି କି ଭଗବାନ ଜଗନ୍ନାଥ ଗରିବ ଅମିର ସମସ୍ତଙ୍କୁ ଏକ ଦୃଷ୍ଟିରେ ଦେଖନ୍ତି; ଗାନ୍ଧିଜୀ ସେଠାକୁ ଯିବାକୁ ଅସ୍ୱୀକାର କରିଦେଲେ । ସେଠାରେ ତ ବର୍ତ୍ତମାନ ଲଜରେ ମୁଣ୍ଡ ନୁଆଁଇବା ବା ଦୁଃଖୀ ହେବା ବ୍ୟତୀତ ଆଉ କଣ ଅଛି ? ତାଙ୍କୁ କୁହାଗଲା ଯେ ପୁରୀ ମନ୍ଦିରକୁ ଅସ୍ପୃଶ୍ୟମାନେ ଯାଇପାରନ୍ତି ନାହିଁ । ତେଣୁ ସେ କାକା ସାହେବଙ୍କୁ ପୁରୀ ମନ୍ଦିର ନିଜେ ଦେଖିଆସିବାକୁ ପଠାଇଲେ । କାକା ସାହେବ ସେଠାରେ ଯାଇ କେବଳ ମଇଳା ଦେଖିଲେ । ମନ୍ଦିରର ପଣ୍ଡା କହିଲେ ଯେ ପର୍ଯ୍ୟନ୍ତ ଲୋକ ନିଜକୁ ଅସ୍ପୃଶ୍ୟ ବୋଲି ନ କହୁଛି ସେ ପର୍ଯ୍ୟନ୍ତ ଯେ ଗୃହିବ ସେ ଯାଇପାରିବ । ସେ ଯେ କିଏ ସେଥିରେ ମୋର କଣ ଅଛି । କାକା ସାହେବ ମନ୍ଦିରର ଏକ ସୁଚୀପତ୍ର ବି ପାଇଲେ ଯହିଁରେ ମନ୍ଦିର ସମ୍ବନ୍ଧ ଲୋକମାନଙ୍କର (ଯାହାକୁ ମୁଁ ମନ୍ଦିରର ଜୀବାଣୁ କହେଁ) ସୂଚୀଥିଲା । ସେଥିରେ ପେଶାଦାର ସ୍ତ୍ରୀଲୋକ (ଯେଉଁମାନେ କି ଭଗବାନଙ୍କ ଆଗରେ ନାଚନ୍ତି ଏବଂ ତାଙ୍କର ସେବା କରନ୍ତି) ସାମିଲ ଥିଲେ ।

ପୁରୀ ମ୍ୟୁନିସିପାଲିଟିର ଏକ ସଦସ୍ୟ ବହୁତ ଜୋରସହକାରେ ନିମନ୍ତ୍ରଣ କଲେ । ବହୁତ କଡ଼ା ବିରୋଧ ହେଲେ ବି ସେ ଗାନ୍ଧିଜୀଙ୍କୁ ମାନପତ୍ର ଦେବାପାଇଁ ସ୍ୱୀକାର କରାଇ ନେଇଥିଲା । ସେ କହିଲା "ଆପଣ ନ ଯିବେ ତ ବଡ଼ ଖରାପ କଥାହେବ । ଗାନ୍ଧୀଜୀ କହିଲେ" ଅଚ୍ଛା, ମୋ ଚରଫରୁ ମୋର ପରାମର୍ଶ ଉଠାଇ ନିଆଗଲେ ସେଠାରେ କଣ ଖାଇବାପାଇଁ ମୋତେ କିଛି ମିଳିବ ? ସେ କିଛି ଦେବାକୁ ପ୍ରତିଶ୍ରୁତି ଦେଲା ଏବଂ ଗାନ୍ଧିଜୀ ପୁରୀରେ ଭାଷଣ ଦେବାକୁ ରାଜିହେଲେ । ସଭା ସମୟ ୪ଟା ବେଳକୁ ଧାର୍ଯ୍ୟ ହୋଇଥିଲା । ଆମେ ଯିବାରୁ ବାହାର ଲୋକ ବି ଆସିଥିଲେ । କିନ୍ତୁ ଲୋକ ଯେତେବେଳେ ଆସିଲେ ଫୁଲମାଳା ନେଇ ଆସିଲେ । କେହି ଥାଳ ଆଣିବାର ଦେଖାଗଲା ନାହିଁ । ଗାନ୍ଧିଜୀ

କହିଲେ ଏଠାରେ ବଙ୍ଗାଳୀ ଓ ମାରୱାଡ଼ି ବି ତ ଅଛନ୍ତି। ସେମାନେ କଣ ଓଡ଼ିଶାର ଗରିବ ଲୋକଙ୍କପାଇଁ କିଛି ଦେଇ ପାରିବେ ନାହିଁ। ଏହାର ଉତ୍ତର ସଙ୍ଗେ ସଙ୍ଗେ ମିଳିଲା। ଗାନ୍ଧିଜୀଙ୍କୁ ବନ୍ୟା ସହାୟକ ସମିତି ପକ୍ଷରୁ ଏକ ସୁନ୍ଦର ଆସନ ଓ ବିଛଣାଚାଦର ଉପହାର ଦିଆଯାଇଥିଲା। ଗାନ୍ଧିଜୀ ତାହା ନିଲାମ କରିବାକୁ ନେଇଥିଲେ। ମାତ୍ର କେହି ନିଲାମ ଡାକିଲେ ନାହିଁ।

ବାଲେଶ୍ୱର ଆସିବାପରେ ଜଣେ ମାରୱାଡ଼ି ଭାଇ ଶହେଟଙ୍କା ଦେଇ ଆସନଟି ନେଇଗଲେ। ଏଠାରେ ଗୁଜରାଟୀ ଓ ମାରୱାଡ଼ିମାନେ ବି ଖୁବ୍ ଭେଟି ଦେଇଥିଲେ।

ମୋଟ ଉପରେ କେବଳ ଓଡ଼ିଶା ଧନପାଇଁ ନୁହେଁ; କାର୍ଯ୍ୟକର୍ତ୍ତା ବି ଗୁହେଁ ଯେ କି ସେଠାକାର ଅଧିବାସୀଙ୍କୁ ନିର୍ଭୟତା ଓ ସ୍ୱାବଲମ୍ବନ ପାଠ ପଢାଇବା ପାଇଁ ସେମାନଙ୍କ ମଧ୍ୟରେ ନିମଜ୍ଜିତ ହୋଇଯିବ ଏବଂ ନିଜକୁ ପାଶୋରି ପକାଇବ ।

ୟଙ୍ଗଇଣ୍ଡିଆ-ମହାଦେବ ଦେଶାଇ
ନବଜୀବନ ତା ୨୨ । ୧୨ । ୧୯୨୭

---

# ସାପ୍ତାହିକ ପତ୍ର

## ବିଶ୍ରାମ କାହିଁ?

ଏ ସପ୍ତାହର କାର୍ଯ୍ୟକ୍ରମ କମାଇ ଦିଆଯାଇଥିଲା । ବାଲେଶ୍ୱରଠାରେ ଦୁଇଦିନରେ ମାତ୍ର ଗୋଟିଏ ସାଧାରଣ ସଭା ଧାର୍ଯ୍ୟ କରାଯାଇଥିଲା । ବନ୍ୟାପୀଡ଼ିତ ଅଞ୍ଚଳରେ ଗ୍ରାମବାସୀଙ୍କ ସଙ୍ଗରେ ଦୁଇଦିନ କଟିଲା । ଏଥିରେ ଯେତିକି ବିଶ୍ରାମ ଦିଆଯିବାର କଥା ଦିଆ ଯାଇଥିଲା । କଟକଠାରେ ଚକ୍ରଗୃପ ଅଧିକ ଜଣା ଯାଉଥିଲା । ସେଠାର ସମସ୍ତ କାର୍ଯ୍ୟକ୍ରମ ସେହିପରି ଗ୍ରହଣ ଦିଆ ଯାଇଥିଲା । ଚମ୍ପାପୁର ହାଟରେ ଶ୍ରୀଯୁକ୍ତ ଗୋବିନ୍ଦ ମିଶ୍ର ଗାନ୍ଧିଜୀଙ୍କ ସ୍ୱାଗତ ପାଇଁ ଖୁବ୍ ଆୟୋଜନ କରିଥିଲେ । ମାତ୍ର ତାଙ୍କ କଥା ଅନୁସାରେ ସେଠାକୁ ଯିବା ବନ୍ଦ କରି ଦିଆଗଲା । ଗୋପବନ୍ଧୁ ଚୌଧୁରୀ ତାଙ୍କ ଖଦୀ ଉତ୍ପାଦନ କେନ୍ଦ୍ରକୁ ଗାନ୍ଧିଜୀଙ୍କ ଏପରି ଅବସ୍ଥାରେ ଯିବା ସ୍ୱୀକାର କଲେ ନାହିଁ । ଅବସ୍ଥା ତ ଏପରି; ମାତ୍ର ବିଶ୍ରାମ କାହିଁ ଓ କେଉଁଠି ? ଏ ଦିନଗୁଡ଼ିକ ବି ପରିଶ୍ରମ ଓ କ୍ଲାନ୍ତ ଅବସ୍ଥାରେ କଟିଲା । ସମସ୍ତେ ଗାନ୍ଧିଜୀଙ୍କୁ ବିଶ୍ରାମ ଦେବାପାଇଁ ଚେଷ୍ଟା କରୁଥିଲେ; ମାତ୍ର ସମସ୍ତଙ୍କ ମନରେ ଅନ୍ୟ ଭାବନା ଲାଗି ରହିଥିଲା । ସେମାନେ ପ୍ରାୟ ମନକୁ ମନ କହୁଥିଲେ, 'ମନୁଷ୍ୟର ଜନ୍ମ କାମପାଇଁ—ବିଶ୍ରାମ ପାଇଁ ନୁହେଁ ।' ସେମାନେ ଭାବୁ ନ ଥିଲେ ଯେ, ଶ୍ରାମାସ୍ଥ କର୍ମକର୍ତ୍ତା ତାଙ୍କର ଏକ ଭାଷଣର ଉଦ୍ଦେଶ୍ୟ ଭୁଲ ବୁଝିବେ ତ ସେମାନେ ତାଙ୍କୁ ଓ ଅନ୍ୟ କାର୍ଯ୍ୟକର୍ତ୍ତାମାନଙ୍କୁ ବଡ଼ ଉତ୍ସାହ ସହକାରେ ସମାଲୋଚନା କରିବେ । ଓଡ଼ିଶାକୁ ଯେତେବେଳେ ଆସିଛନ୍ତି ସେତେବେଳେ ଏଠା ଲୋକଙ୍କୁ ଯାହା କୁହାଯାଇପାରେ ସବୁ ନ କହି କାହିଁ ଫେରିବେ ? ଡାକ୍ତରଙ୍କ ବାରଣ ସତ୍ତ୍ୱେ ଦୈନିକ ଏକଘଣ୍ଟା କଥାବାର୍ତ୍ତା କରୁଥିଲେ । ଥକି ପଡ଼ିବା ପରେ ଘଣ୍ଟାଏ କଥାବାର୍ତ୍ତା ବନ୍ଦ ରଖୁଥିଲେ । ପୁଣି ଘଣ୍ଟାକ ପରେ କଥାବାର୍ତ୍ତା ଆରମ୍ଭ କରି ପୂର୍ବାପେକ୍ଷା ଅଧିକ ଥକି ପଡ଼ୁଥିଲେ । ମାତ୍ର ସେଥିରେ ବି ସେ ସନ୍ତୋଷ ଲାଭ କରୁଥିଲେ । ଏକ ସମୟରେ ତାଙ୍କର ଦୃଷ୍ଟି କୌଣସି କାର୍ଯ୍ୟକର୍ତ୍ତାଙ୍କ ଉପରେ ପଡ଼ିଲା । ଗାନ୍ଧିଜୀ ଦେଖିଲେ ଯେ ତାଙ୍କ ମୁହଁରେ ନିରାଶର ଛାୟା ପଡ଼ିଛି । ସେ ନିଶ୍ଚୟ କରିନେଲେ ଯେ ଯିବା ଆସିବା ପୂର୍ବରୁ ତାଙ୍କ ସହିତ କଥା ହୋଇଯିବା । ସେ ଜାଣିଥିଲେ ଯେ ଏଠାରେ ଏକ କୁଷ୍ଠାଶ୍ରମ ଅଛି, କାରଣ ଦୁଇବର୍ଷ ପୂର୍ବରୁ ସେ ତାହା ଦେଖି ନେଇଥିଲେ । ରୋଗୀ

ଯୁଗୀମାନଙ୍କ ସହିତ ସାକ୍ଷାତ କରିବା ଆବଶ୍ୟକ ହେଲା । ଜଣେ ମିତ୍ର କଲିକତାରୁ ଏକ ଫୁଲତୋଡ଼ା ଉପହାର ପଠାଇ ଥିଲେ । ତାକୁ ନେଇ ଉପହାର ଦେବାକୁ ଗଲେ । କୁଷ୍ଠାଶ୍ରମ ଅଧ୍ୟକ୍ଷଙ୍କରତ ଗାନ୍ଧିଜୀ ସେଠାକୁ ଯିବା ସାଧାରଣତଃ ଇଚ୍ଛାହେବା ସ୍ୱାଭାବିକ । ଗାନ୍ଧିଜୀ ଅନ୍ୟ ଏକ ମିତ୍ରକୁ ପଠାଇ ଏକ କମଳା ଟୋକେଇ ନେଇ ସେଠାରେ ପହଞ୍ଚିଲେ । ସେ ରୋଗୀମାନଙ୍କ ସହିତ ଅନେକ ସମସ୍ତ କଥାବାର୍ତ୍ତା କରି ସେମାନଙ୍କୁ ଉତ୍ସାହ ଦେଲେ । ଏଣେ ଅଧ୍ୟକ୍ଷ ତାଙ୍କୁ ସବୁ ସ୍ଥାନ ବୁଲାଇ ଦେଖାଇବାକୁ ଚାହୁଁଥିଲେ । ତେଣୁ ତାଙ୍କୁ ବୁଲାଇବାକୁ ନେଇଗଲେ । ଅଧଘଣ୍ଟା ଏଣେତେଣେ ବୁଲିଲେ । ଏହା ତାଙ୍କ ସ୍ୱାସ୍ଥ୍ୟପକ୍ଷେ ହାନିକାରକ ହେଲା । ସନ୍ଧ୍ୟାବେଳକୁ ଡାକ୍ତର ଆସିଲେ, ରକ୍ତ ମାପ କଲେ । ବ୍ୟତିବ୍ୟସ୍ତ ସହକାରେ କହିଲେ, ଦେଖନ୍ତୁ, ସକାଳୁ ଏପର୍ଯ୍ୟନ୍ତ ରକ୍ତର ଚାପ ବଢ଼ିବାରେ ଲାଗିଛି । ମାତ୍ର ଏଣେ ଗାନ୍ଧିଜୀ ଡାକ୍ତରଙ୍କ ପୁଅ ସଙ୍ଗରେ ଖେଳ ଆରମ୍ଭ କରିଦେଲେ । ତାର ସୁନାର ଗହଣା ମାଗିନେଲେ । କହିଲେ "ଦେଖ ଭାଇ ! ମୋର ରକ୍ତଚାପ ବହୁତ ବଢ଼ିଯାଇଛି । ଏଥିପାଇଁ ତୁମେ ମୋତେ ଠିକ୍ ଠିକ୍ ପ୍ରଣାମ କର । ସମସ୍ତେ ହସି ଉଠିଲେ ।" ଗାନ୍ଧିଜୀ ଏହିପରି ହସି ହସି ନିଜର କଷ୍ଟ ପାଶୋରି ଦିଅନ୍ତି । ଡାକ୍ତରଙ୍କ କଥା ଅଣ୍ଟାରେ ଅଣ୍ଟାରେ ଉଡ଼ିଯାଏ । ଯାହା ତାଙ୍କର କରିବାର କଥା ତାହା ସେ କରନ୍ତି, ସେଥିରେ ଡାକ୍ତରଙ୍କ ପରାମର୍ଶ ଯାହା ଥାଉନା କାହିଁକି , ଏଥିପାଇଁ କେବଳ କହନ୍ତି, 'ସ୍ୱଭାବ ନୈବମୁଚ୍ୟତେ ।'

## ଏକ ଗ୍ରାମ

ବାଲେଶ୍ୱରର ପୂର୍ବ ଭାଗକୁ ଓଡ଼ିଶାର ବନ୍ୟାପ୍ରପୀଡ଼ିତ ଅଞ୍ଚଳ କୁହାଯାଏ । ଆମେ ଏଠାରେ ପ୍ରଥମେ ହୁଳହୁଳି, ହରିବୋଲ ସ୍ୱାଗତ ଧ୍ୱନି ସହିତ ଓଡ଼ିଆ ଲୋକଙ୍କ ଭିଡ଼ ଦେଖିଲୁ । ଗାନ୍ଧିଜୀ ଗୁଡ଼ବୋଟିଆ ଗ୍ରାମରେ ରହିଲେ । ଆଖପାଖ ଶହ ଶହ ଗ୍ରାମର ଲୋକ ଆସି ପହଞ୍ଚିଲେ । ବଡ଼ ଭଲ ସଭାଟିଏ ହେଲା । ସେଠାକାର ଚାନ୍ଦା ସେଠାର କାମରେ ଲଗାଇବାର ଥିଲା । ସେଠାରେ ସମସ୍ତେ ଚାନ୍ଦା ଆଦାୟ କରିଦେଲେ । ଏପରି କୌଣସି ସ୍ତ୍ରୀଲୋକ ଆସି ନ ଥିଲେ ଯେ କି ଏକ, ଦୁଇପଇସା ନ ଦେଇଛନ୍ତି । ଭିନ୍ନ ଭିନ୍ନ ଗ୍ରାମର ପ୍ରତିନିଧିମାନଙ୍କ ସହିତ ଆମର ଆଲୋଚନା ହେଲା । ସେମାନଙ୍କର କେବଳ ଗୋଟିଏ କଥା—ବନ୍ୟା ଆସିଲା, ବଡ଼ରୁ ସାନ ପର୍ଯ୍ୟନ୍ତ ସମସ୍ତ ଘର ସମସ୍ତ ଯାଗାର ଫସଲ ସମସ୍ତ ଧୋଇନେଲା । ପଶୁମାନେ କିଏ ଭାସିଗଲେ, କିଏ ବା ଖାଇବାକୁ ନ ପାଇ ମଲେ । ଏଣେ ଅକସ୍ମାତ ମହାମାରୀ ଦେଖାଦେଲା, ଲୋକ ବାଧ୍ୟହୋଇ କଲିକତା ପଳାଇ ଗଲେ ଇତ୍ୟାଦି ଇତ୍ୟାଦି ।

ଏ ମଧ୍ୟରେ ଗୋଟିଏ ଲୋକର ଦୃଶ୍ୟ ପାଠକମାନଙ୍କ ପାଖରେ ବର୍ଣ୍ଣନା କରି ଯାଇପାରେ । ଲୋକଟି ସଫା ପୋଷାକ ପିନ୍ଧିଥିଲା । ଅନୁସନ୍ଧାନରୁ ଜଣାଗଲା ଯେ ସେ ଜଣେ ସ୍କୁଲ୍ ଶିକ୍ଷକ । ତାଙ୍କୁ ଦଶଟଙ୍କା ଦରମା ମିଳେ । ତଥାପି ମଧ୍ୟ ସେ ସେହି ଗ୍ରାମରେ ଧନୀଲୋକ ବୋଲି କୁହାଯାଉଥିଲା । କିନ୍ତୁ ଏତିକ ଟଙ୍କାରେ ସେ କିପରି ଚଳେ ସେବିଷୟ ଜାଣିବାପାଇଁ ତାଙ୍କୁ ପଚରାଗଲା, ଆପଣଙ୍କର କେତୋଟି ପିଲା ।

—ଏକ ପତ୍ନୀ ଓ ଦୁଇଟି ପିଲା ।

—ତେବେ ଆପଣ ଦଶଟଙ୍କାରେ କିପରି ପରିବାର ପ୍ରତିପୋଷଣ କରନ୍ତି ଏବଂ କଣ ଖାଆନ୍ତି ?

—ଭାତ ଓ ମାଛ ।

ଡାଲି, ଶାଗ, ଦୁଧ ଘିଅ ଖାଆନ୍ତି ନାହିଁ ?

କେବେ କେବେ ଡାଲି ଶାଗ ମିଳେ । ମାତ୍ର ଡାଲି ମିଳିଲେ ତରକାରି ମିଳେ ନାହିଁ । ତରକାରି ମିଳିଲେ ଡାଲି ମିଳେ ନାହିଁ—ଦୁଧ କେଉଁଠୁ ମିଳିବ ?

ତେବେ ଆପଣ କେବଳ ସିଝା ତରକାରି ଖାଆନ୍ତି ?

—ଆଜ୍ଞା ନାଁ, ସୋରିଷତେଲରେ ତରକାରି ଖାଉଁ, ମାସକୁ ଏଥିପାଇଁ ୪୦ ତୋଳା ତେଲ ଖର୍ଚ୍ଚ ହୁଏ ।

—ନାଁ, ଆପଣ କୁହନ୍ତୁ, ଆପଣଙ୍କର ଉପୁରି ରୋଜଗାର କଣ ? କୌଣସି କଥା କମ୍ ବେଶୀ କରିବାର ଆବଶ୍ୟକ ନାହିଁ । ଗ୍ରାମବାସୀମାନେ ପିଲାଙ୍କ ପଢ଼ିବା ବାବଦ କଣ ଆପଣଙ୍କୁ କିଛି ଦିଅନ୍ତି ?

—ଆଜ୍ଞା ନାଁ, ପ୍ରଥମେ ମୋ ବାପା କଲିକତାରୁ ମାସିକ ସାତ ଆଠଟଙ୍କା ଦେଉଥିଲେ । ଏବେ ତାଙ୍କ ମରିବାର ଦୁଇବର୍ଷ ହୋଇଗଲାଣି ।

—ଆଚ୍ଛା, ତେବେ ଆପଣ ଗତ ଦୁଇବର୍ଷ କିପରି ଧରି ଚଳୁଛନ୍ତି ?

—ବଡ଼ କଷ୍ଟରେ କୌଣସିପ୍ରକାର ଚଳିଯାଉଛି ।

ଗାନ୍ଧିଜୀ ଆଉ କିଛି ପ୍ରଶ୍ନ ପଚାରି ଜାଣିପାରିଲେ ଯେ ଲୋକଟି ସ୍କୁଲ ସେକ୍ରେଟାରୀ ଓ ଜମିଦାରଙ୍କ ଘରେ ମଝିରେ ମଝିରେ ଖାଏ । ଗାନ୍ଧିଜୀ କହିଲେ, "ହଁ...ମୁଁ ବୁଝିଲି ଯେ ତୁମେ ଏବଂ ତୁମ ଘରଲୋକ ସେକ୍ରେଟେରୀଙ୍କ ଘରେ ଖାଅ ।"

—ଲୋକଟି ବିରୋଧ କରି କହିଲା, "ନାଁ, ନାଁ, ମୁଁ ଏକା କେବେ କେବେ ଖାଏଁ ।"

ଗାନ୍ଧିଜୀ କହିଲେ ହଁ, ମୁଁ ଏବେ ବୁଝିଲି । ମାତ୍ର ତୁମ୍ଭ ଗ୍ରାମରେ କେତେ ଲୋକ ତୁମଠାରୁ ଅଧିକ ଭଲରେ ଚଳନ୍ତି ଓ କେତେଲୋକ ଖରାପରେ ଚଳନ୍ତି ? ଲୋକଟି କିଛି ସମୟ ଚିନ୍ତାକରି, "ଜମିଦାରଙ୍କ ବ୍ୟତୀତ ମୁଁ କେବଳ ଏକୁଟିଆ ଭଲରେ ଚଳେ । ଗ୍ରାମରେ ୭୦ ଘର ମଧ୍ୟରୁ ୪୦ ଘର ମୋ ପରି ଚଳନ୍ତି ଓ ବାକୀ ୨୦ ଘର ନିତାନ୍ତ କଦର୍ଯ୍ୟ ଭାବରେ । ଜମିଦାରଙ୍କ ମୁଁ ଅର୍ଜିନବିଶ ଯୋଗୁଁ ତାଙ୍କ ଉପରେ ମୋର କିଛି ପ୍ରଭାବ ଅଛି । ତାଙ୍କର କୌଣସି ଅର୍ଜି ଲେଖିବା ଆବଶ୍ୟକ ପଡିଲେ ସେ ମୋ ନିକଟକୁ ଆସନ୍ତି ।

ଗାନ୍ଧିଜୀ ଦୋଭାଷୀଙ୍କୁ କହିଲେ, "ତାଙ୍କୁ ବୁଝାଇ ଦିଅ ଯେ ମୁଁ ବନ୍ୟାକୁ ବନ୍ଦକରି ପାରିବି ନାହିଁ । ମୋର ତ ବନ୍ଧ ବାନ୍ଧିବାର ଶକ୍ତି ନାହିଁ କି ବହିଯିବା ପାଣିକୁ ଅଟକାଇ ରଖିବାର ଶକ୍ତି ନାହିଁ । ଆପଣଙ୍କର ଶକ୍ତି ଅଛି ତ ଏ ନୀଚସ୍ଥାନ ଛାଡି ଉଚ୍ଚ ସ୍ଥାନରେ ବାସକର । କିନ୍ତୁ ଲୋକେ ଯେପରି କଲିକତା ଯାଆନ୍ତି ସେପରି ଯାଅ ନାହିଁ । ବରଂ ବଡ଼ ସାନ ଜମିଦାରଙ୍କୁ ସଙ୍ଗରେ ନେଇ ଏବଂ ୨୦ ଘର ଗରିବଙ୍କୁ ସଙ୍ଗରେ ନେଇ ସମସ୍ତେ ଏକ ସଙ୍ଗରେ ଦେଶ ପରିବର୍ତ୍ତନ କର । ମାତ୍ର ମୁଁ ଜାଣେ ଯେ ଆପଣଙ୍କର ସେ ଶକ୍ତିନାହିଁ । ତେଣୁ ଅବସ୍ଥା ସୁଧାରିବାପାଇଁ ଆପଣଙ୍କୁ ଏହି ପରାମର୍ଶ ଦେବି—ଆପଣ ଚରଖା କାଟନ୍ତୁ । ଆପଣଙ୍କର ଏଠାରେ ଗୋଟିଏ ଫସଲ ହୁଏ ଏବଂ ତାପରେ ଆଠମାସ ଲୋକେ କେବଳ ବସନ୍ତି । ଆପଣ ଫୁରୁସତ ସମୟରେ କେବଳ ଚରଖା ଚଳାନ୍ତୁ । ଆପଣଙ୍କ ମଧ୍ୟରେ କିଛି ଲୋକ ବୁଣାଇ ଶିଖି ନିଅନ୍ତୁ । ତାପରେ ନିଜ ଗ୍ରାମକୁ ସବୁପ୍ରକାର ସ୍ୱୟଂସମ୍ପୂର୍ଣ୍ଣ କରି ଗଢ଼ି ତୋଳନ୍ତୁ । ଚରଖା ଚାଲିଲେ ତେଲି, କମାର, ବଢ଼େଇ, ଧୋବା ସମସ୍ତେ ପୁଣି ବଞ୍ଚି ଉଠିବେ । ଲୋକଙ୍କ ଉପରେ ଆପଣ ପ୍ରଭାବ ପକାଇ ପ୍ରଥମେ ନିଜ ପିଲାଙ୍କଦ୍ୱାରା ସୂତାକାଟନ୍ତୁ ଏବଂ ବଡ଼ଙ୍କ ଦ୍ୱାରା ବି ଏ କାମ କରନ୍ତୁ ।

ଏକଥା ସମସ୍ତଙ୍କୁ କୁହନ୍ତୁ ଏବଂ ଆପଣମାନେ ସମସ୍ତେ ରାଜିହେଲେ ଆପଣଙ୍କୁ ଶିଖାଇବାପାଇଁ ମୁଁ ଜଣେ ଭଲ କର୍ମୀ ଦେବି । ଏକଥା ତାଙ୍କୁ ଓଡ଼ିଆରେ ବୁଝାଇ ଦେବାରୁ ସେ ଧୈର୍ଯ୍ୟସହକାରେ ଶୁଣିଲେ ଏବଂ ଚରଖା ଚଳାଇବା ପାଇଁ ସମସ୍ତେ ଉତ୍ସାହ ପ୍ରକାଶ କଲେ ।

## ଆଶାର ସୂଚନା

ଦ୍ୱିତୀୟଦିନ ଆମ୍ଭେମାନେ ମଲ୍ଲେଇ ନଦୀରେ ନାଆରେ ବସି ଆଗକୁ ଚାଲିଲୁ । ନଈର ଦୁଇକୂଳରେ ଲୋକଙ୍କର ଭିଡ଼ ଲାଗି ରହିଥିଲା । ହରିବୋଲ ଧ୍ୱନି ଗୁରିଆଡ଼େ

ଶୁଭୁଥିଲା । ଏ ଲୋକମାନେ ଅନ୍ୟପ୍ରକାରର ଥିଲେ । ଏଥିରେ ଉତ୍ସାହ ଓ ଆଶା ଦୁଇଟିର ସୂଚନା ମିଳୁଥିଲା । ଜଣାଗଲା ଯେ ସେମାନେ କନକା ରାଜାଙ୍କ ପ୍ରଜା । ସେମାନେ ରାଜାଙ୍କ ସହିତ ଏ ସମସ୍ତ ବିଷୟ ଆଲୋଚନା କରିବାକୁ ଚାହାନ୍ତି । ତେଣୁ ଏହା ଏଠାରେ ଛାଡ଼ି ଦିଆଗଲା ।

ଗୋଟିଏ ସ୍ଥାନରେ ଆଶାର ସୂଚନା ଥିଲା । ମାତ୍ର ଗାନ୍ଧିଜୀ ସେଠାକୁ ଯାଇ ପାରିଲେ ନାହିଁ । ତାଙ୍କ ପ୍ରତିନିଧିରୂପେ ମିସ୍ ଭଜଣୀ, କାକା ସାହେବ ଓ ମୋତେ ସେଠାକୁ ଯିବାକୁ ପଡ଼ିଲା । ସେ ଯାଗାଟା ହେଉଛି ଚମ୍ପାପୁର ହାଟ । ଶ୍ରୀଯୁକ୍ତ ଗୋବିନ୍ଦଚନ୍ଦ୍ର ମିଶ୍ରଙ୍କୁ କୌଣସି ଦେଶୀୟ ରାଜ୍ୟରେ ବହୁତ କଷ୍ଟ ଓ ଜୁଲୁମ ସହିବାକୁ ପଡ଼ିଥିଲା । ସେବେ ଗତ ଦୁଇବର୍ଷ ଧରି ଚମ୍ପାପୁର ହାଟ ପାଖରେ କଟକଠାରୁ କିଛି ଦୂରରେ ଘରିକରି ରହିଛନ୍ତି ଏବଂ ଆଖପାଖ ଗ୍ରାମଗୁଡ଼ିକର ଅବସ୍ଥା ସୁଧାରିବା ପାଇଁ ଚେଷ୍ଟା କରୁଛନ୍ତି । ସେ ସେଠାରେ ବାନ୍ଧି ହୋଇ ରହିଲେଣି ଏବଂ ସେଠାରେ ଏକ ସ୍ଥାୟୀ ଆଶ୍ରମ ସ୍ଥାପନ କରିବାପାଇଁ ଇଚ୍ଛା ପ୍ରକାଶ କରିଛନ୍ତି ଯାହାର ମୂଳପତ୍ତନ ସେ ଗାନ୍ଧିଜୀଙ୍କ ଦ୍ୱାରା କରିବାକୁ ଚାହିଁଥିଲେ । ଆଖପାଖରୁ ପ୍ରାୟ ହଜାରେ ଲୋକ ଆସିଥିଲେ । ଏକଥା ପରିଷ୍କାର ଜଣାଗଲା ଯେ କେହି ଯାଇ ନ ଥିଲେ ସେ ନିରାଶ ହୋଇ ପଡ଼ି ଥାଆନ୍ତେ । ଗୋବିନ୍ଦବାବୁଙ୍କୁ ବହୁ କଷ୍ଟ ସହିତ ଯୁଦ୍ଧ କରିବାକୁ ପଡ଼ିଲା । ଲୋକଙ୍କ ଖାମଖିଆଲି, ସରକାରଙ୍କ କୋପଦୃଷ୍ଟି ପ୍ରଭୃତି କେଣ ତାଙ୍କ ପାଖକୁ ନ ଆସିଛି ! ମାତ୍ର ସେ ଏଣେତେଣେ କେତେକ ଜମିଦାରଙ୍କ ସହାୟତା ପାଇଲେ । ତାଙ୍କ ସେଠାରେ ୮୭ କଟାଳି ଏବଂ ଚାରିଜଣ ବୁଣାଳୀ ଅଛନ୍ତି । ସେ କୃଷକମାନଙ୍କୁ କପା ଚାଷପାଇଁ ଉତ୍ସାହ ଦିଅନ୍ତି । ମାଗଣାରେ ଗ୍ରାମରେ ଔଷଧ ଦିଅନ୍ତି ଯାହା ଫଳରେ ତାଙ୍କର ପ୍ରଭାବ ଖୁବ୍ ବଢ଼ି ଯାଇଛି । ଆଶାକରାଯାଏ ଯେ ସେ ଆଗକୁ ବଢ଼ି ବଢ଼ି ଯିବେ ।

## କାର୍ଯ୍ୟକର୍ତ୍ତାଙ୍କ ସହ ଆଲୋଚନା

ଗାନ୍ଧିଜୀ କାର୍ଯ୍ୟକର୍ତ୍ତାଙ୍କ ସହ ଅନେକଥର କଥାବାର୍ତ୍ତା କରିଛନ୍ତି । ପ୍ରଥମ ଆଲୋଚନା ତାଙ୍କର ଶ୍ରୀଯୁକ୍ତ ଗୋପବନ୍ଧୁ ଦାସଙ୍କ ସହ ହୋଇଥିଲା । ସେ ଗୋଟିଏ କାମ ନିର୍ଦ୍ଦିଷ୍ଟ ଭାବରେ କରିବା ଏବଂ ଏଣେତେଣେ ମନକୁ ଚଞ୍ଚଳ ନ କରିବା ବିଷୟ ଆଲୋଚନା କଲେ । ଗୋପବନ୍ଧୁ ବାବୁ କହିଲେ, ଆପଣଙ୍କ ସହିତ ଝଗଡ଼ା ବା ମତଭେଦରେ ମୋତେ ବଡ଼ କଷ୍ଟ ହେଉଛି । କେବେ କେବେ ମୋର ମନେ ହେଉଛି କୌଣସି ଏକ ଦୂର ଗ୍ରାମରେ

ଯାଇ ରହି ସେଠି ନିଜେ ନିଜକୁ ପୋଡିଦେଇ, ସଂସାରର ଝଗଡ଼ାଠାରୁ ମୁକ୍ତ ରହିବ ।
ଗାନ୍ଧିଜୀ କହିଲେ—ନିଶ୍ଚୟ । ନିଜକୁ ପୋଡାଇ ଦିଅନ୍ତୁ କିନ୍ତୁ ଜୀବିତାବସ୍ଥାରେ । ଆପଣ ଚେଷ୍ଟା ସନ୍ନ୍ୟାସ ନିଅନ୍ତୁ ଏବଂ କନ୍ୟା ଆସୁ ପଛକେ ନିଜ ସ୍ଥାନରେ ବିଚଳିତ ହୁଅନ୍ତୁ ନାହିଁ । ଆପଣ ମହାରାଜ ଜନକଙ୍କ ପୌରାଣିକ ଉପାଖ୍ୟାନ ତ ଜାଣନ୍ତି—ତାଙ୍କର ବକ୍ତବ୍ୟ ଥିଲା, "ମଥୁରାରେ ନିଆଁ ଲାଗିଗଲେ ମୋର କ'ଣ ଅଛି ?" ଆପଣ ନିଜର ମର୍ଯ୍ୟାଦା ବୁଝନ୍ତୁ । ନିଜପାଇଁ କାମ ନିଶ୍ଚୟ କରି ନିଅନ୍ତୁ । ତା ବାହାରକୁ ଭୁଲରେ ବି ଯାଆନ୍ତୁ ନାହିଁ । ମୁଁ ସ୍ୱୀକାର କରୁଛି ଯେ ତାହା ଅତ୍ୟନ୍ତ ଦୁଃଖଦାୟକ । ଏ ମନୋବୃତ୍ତି ଅତ୍ୟନ୍ତ ପରିଶ୍ରମୀ ଓ ଧର୍ମଭୀରୁ ପୁରୁଷଙ୍କ ବ୍ୟତୀତ ଆଉ କାହା ଦ୍ୱାରା ସମ୍ଭବ ନୁହେଁ । ନଚେତ୍ ଲୋକେ ମହାରାଜ ଜନକ ହେବାକୁ ଯାଇଁ ଯାଇଁ ରୋମର ସମ୍ରାଟ ନିରୋ ବା ଖରାପତର ବେଶ ପାଲଟିଯିବେ ।

ଜଣେ ଭାଇ କାଣପୁରରେ ଗାନ୍ଧିଜୀଙ୍କ ଭାଷଣ ଠିକ୍ ବୁଝିପାରି ନ ଥିଲା ।

ସେ କହିଲା, "ଆପଣ ଏ ଲୋକମାନଙ୍କୁ ଆଘାତ ସହିବାକୁ ଶିଖାଇଲେ କାହିଁକି ?"

୧୯୨୦ ମସିହାରେ ବେତିଆରେ ଆପଣ ଲୋକମାନଙ୍କୁ ଲାଠି ଉଠାଇବାକୁ ତ ଶିକ୍ଷା ଦେଇଥିଲେ । ଏମାନେ ତ ଆପଣଙ୍କ ଉପରେ ମରିଯାଉଛନ୍ତି । ଆପଣଙ୍କ ଶିକ୍ଷାରେ ଏମାନଙ୍କର ଦୁର୍ଗତି ଆହୁରି ବଢ଼ିଯିବ । ଏ ଉପଦେଶ ଶୁଣି ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା, ଗାନ୍ଧୀଜୀ କହିଲେ, ।

"ଏ ବଡ଼ ଭଲକଥା ଯେ ଆପଣ ଏକଥା ପଚାରିଲେ; ମାତ୍ର ଏସବୁ କଥା ଆପଣଙ୍କୁ ସେହି ସଭାରେ ପଚାରିବାର ଥିଲା । ଏ ପ୍ରଶ୍ନରେ ଦୁଇଟି ଧାରା ଅଛି । ପ୍ରଥମ କଥା ହେଉଛି ମାଡର ଜବାବ ମାଡରେ ଦେବା, ଏହା ମୋର ଶିଖାଇବାର ଥିଲା । ମାତ୍ର ଆପଣଙ୍କୁ ବୁଝିବାକୁ ହେବ ଯେ ଯଦ୍ୟପି ମୁଁ ଜଣେ ଅହିଂସାବାଦୀ, ମୋର ଧର୍ମ; ମାତ୍ର ମୁଁ ହିଂସାକୁ ବି ସିଦ୍ଧାନ୍ତ ଓ ପ୍ରୟୋଗ କରିପାରେ । କାଣପୁରରେ ଯେପରି ଲୋକଥିଲେ, ସେପରି ଲୋକଙ୍କୁ ପ୍ରତିଶୋଧ ନେବାକୁ ଶିକ୍ଷା ଦେବା କଥା କେବଳ କଥାରେ କହିଦେଲେ ହେବନାହିଁ । ହିଂସାର ସିଦ୍ଧାନ୍ତ ଓ ପ୍ରୟୋଗକୁ କୌଣସି ଅଭ୍ୟାସୀ ଲୋକକୁ ପଚାରିଲେ ସେ କ'ଣ କହିବ ? ସେ କହିବ ଯେ ପ୍ରତ୍ୟେକ କାର୍ଯ୍ୟକୁ ବିଚାର କରି ଧିରସ୍ଥିର ବିବେଧ ବୁଦ୍ଧିରେ କରିବ ତ ସେ ଦଳ ହୋଇଯିବ । ପୁଣି ସେ ଉଠି ପାରିବ ନାହିଁ । ପ୍ରଥମେ ତ

ତାଙ୍କୁ ନିଜ ଶକ୍ତିର ପରୀକ୍ଷା କରିବାକୁ ହେବ । ସେମାନେ ତ ଏ ପର୍ଯ୍ୟନ୍ତ ନେତାମାନଙ୍କ ପାଖକୁ ଯିବାକୁ ସାହସ କରିନାହାନ୍ତି ।

ମାତ୍ର ମୋତେ ହିଂସାର ପାଠ ପଢ଼ାଇବା ନ ଥିଲା । ଏଥିପାଇଁ ମୁଁ ବ୍ୟାଇଏକ ରାସ୍ତା ବତାଇ ଦେଲି ଯଦ୍ଵାରା ବିନା ହିଂସା କରି ବି କିଛି ସଂଘର୍ଷ କରିପାରିବେ । ଏଣେ ମୋ ଆଗରେ ଚମ୍ପାରଣର ଉଦାହରଣ ରହିଛି । ମୁଁ ଚମ୍ପାରଣ ରୈୟତମାନଙ୍କୁ ପ୍ରତିଶୋଧ ନେବାପାଇଁ କହିଥିଲେ ସେମାନେ ନିଶ୍ଚୟ ଲାଞ୍ଛିତ ହୋଇଥାଆନ୍ତେ । ମୁଁ ଯାହାକିଛି ସେଠାରେ କରି ପାରିଲି ତାହାର କାରଣ ଏହାଥିଲା ଯେ ସେମାନଙ୍କୁ ହିଂସାରୁ ଦୂରରେ ରଖିପାରିବି । ହଁ, ମୋତେ ଅହିଂସା ସମ୍ପୃକ୍ତ ସିଦ୍ଧାନ୍ତର ବିବେଚନା ବାଣପୁର ଲୋକଙ୍କ ଆଗରେ କରିବାର ଆବଶ୍ୟକତା ନ ଥିଲା; କାରଣ କୌଣସି ଯୋଗ୍ୟ ଡାକ୍ତରଙ୍କୁ ନିଜ ଔଷଧର ଦୋଷ ଗୁଣ ଉପରେ ରୋଗୀର ମନ୍ତବ୍ୟକୁ ଆବଶ୍ୟକ ମନେ କରନ୍ତି ନାହିଁ । ତାଙ୍କ କାମ ହିଁ କେବଳ ଔଷଧ ଦେବାରେ ନିବଦ୍ଧ ଥାଏ ।

ବର୍ତ୍ତମାନ ବେତିଆର ପରିସ୍ଥିତି ସହିତ ଏହାର ବିଶ୍ଳେଷଣ କରାଯାଉ । ଏଠାରେ ଏବଂ ସେଠାରେ ଆକାଶ ପାତାଳ ପ୍ରଭେଦ । (ଗାନ୍ଧୀଜୀ ନିଜ ଚମ୍ପାରଣ ଯିବା ଏବଂ ୧୯୧୭ରେ ସେଠାରେ କାମ କରିବା କଥା କହି ଶୁଣାଇଲେ) ମୁଁ ଯେତେବେଳେ ୧୯୨୦ରେ ବେତିଆ ଯାଇଥିଲି ଲୋକେ ମୋତେ କହିଲେ ଯେ, ପୋଲିସ ଆମ ସ୍ତ୍ରୀ ଲୋକଙ୍କର ଗହଣା ଲୁଟି ନେଇଛନ୍ତି, କେଉଁଠି କେଉଁଠି ମୁହଁରେ ହାତ ବି ଲଗାଇଛନ୍ତି । ଆମେମାନେ ଏ ସମସ୍ତ ଦେଖି ପିଲାପିଲି ଧରି ଘରବାଡ଼ି ଛାଡ଼ି ପଳାଇ ଆସିଲୁ । ମୁଁ ପଚାରିଲି, "ତୁମେମାନେ ପଳାଇ ଆସିଲ କାହିଁକି ? ଉତ୍ତର ମିଳିଲା "ଆପଣ ତ ଆମକୁ ଅହିଂସା ଶିଖାଇଛନ୍ତି । ଆମେ ପୋଲିସର ଜୋର ଜୁଲମର ପ୍ରତିରୋଧ କିପରି କରିବୁ ?" ମୋତେ ଏଥିରେ ଆଘାତ ଲାଗିଲା । ମୁଁ ସେମାନଙ୍କୁ ଅହିଂସାର ମର୍ମ ବୁଝାଇଲି । ମୁଁ କହିଲି, "ଅହିଂସା ଭୀରୁତା ନୁହେଁ । ଏ ସବୁଠାରୁ ବଡ଼ ବୀରତା । ତୁମେ ସେଠାରେ ରହି ପାରିଲ ନାହିଁ ତ ପଳାଇ ଆସିବା ଉଚିତ ହୋଇନାହିଁ । ବରଂ ପୋଲିସ ସଙ୍ଗରେ ଲଢ଼ି ନିଜ ପିଲାପିଲିଙ୍କ ଜୀବନ ଓ ସମ୍ମାନ ବଞ୍ଚାଇବା ପାଇଁ ମରିଯିବା ଉଚିତ ଥିଲା । ଯେଉଁମାନେ ମୋତେ ଏବଂ ମୋ ଶିକ୍ଷାକୁ ଜାଣିଥିଲେ ମୁଁ ସେଠାରେ ସେହିମାନଙ୍କ ସହିତ କଥାବାର୍ତ୍ତା କରୁଥିଲି । ବାଣପୁରରେ ମୋତେ ଜଣା ନ ଥିଲା ଯେ ଲୋକଙ୍କର କଣ ହେଉଛି । ମୁଁ ଶୁଣିଥିଲି ଯେ ପୋଲିସ ଲୋକମାନଙ୍କୁ ମୋ ସଭାକୁ ଆସିବାକୁ ମନାକରୁଛନ୍ତି ଏବଂ ଦଣ୍ଡ ଦେବାକୁ ଧମକ ଦେଉଛନ୍ତି । ମୁଁ ଲୋକମାନଙ୍କୁ କହିଲି, ତୁମ୍ଭମାନଙ୍କର କିଛି

କହିବାର ଅଛି ତ ମୋତେ ଆସି କୁହ । ମୋ ପାଖକୁ କେହି କିଛି କହିବାକୁ ଆସିଲେ ନାହିଁ । ଏପରି ଅବସ୍ଥାରେ ମୁଁ ଅନ୍ୟ କୌଣସି ପରାମର୍ଶ ଦେଇ ପାରିଲିନାହିଁ ।

ଏ ହେଉଛି ତାଙ୍କର ବହୁ ଆଲୋଚନାର ସାରାଂଶ । ଦ୍ୱିତୀୟଥର ସାହାଯ୍ୟ ଓ ସହଯୋଗ ସମ୍ପର୍କରେ କଥାବାର୍ତ୍ତା ହେଲା । ଏଠାରେ ଖଦୀ ଉତ୍ପାଦନ ପାଇଁ ଚାରିଟି ସଂସ୍ଥା ଥିଲା । ଗୋଟିଏ ହେଉଛି ଅଖିଳ ଭାରତୀୟ ଚରଖାସଂଘ ଶାଖା, ଦ୍ୱିତୀୟ ହେଉଛି ଦୁର୍ଭିକ୍ଷ ପୀଡ଼ିତ ସହାୟକ ସଂଘ, ତୃତୀୟ ଗୋପବନ୍ଧୁ ଚୌଧୁରୀଙ୍କ ସହଯୋଗ ସଂସ୍ଥା ଏବଂ ଚତୁର୍ଥରେ ଚମ୍ପାପୁର ହାଟରେ ଶ୍ରୀଯୁକ୍ତ ଗୋବିନ୍ଦ ମିଶ୍ରଙ୍କ ନାମ । ଏସବୁ ଭିତରେ କେତେ ଭୁଲଭଟକା, ଏବଂ ଭେଦଭାବ ତ ରହିବାର କଥା । କେବଳ ଏତିକି ବୁଝାଯାଇପାରେ ଯେ ଯାହା ହେଉନା କାହିଁକି ସାହାଯ୍ୟ ଓ ସହଯୋଗର ଅଭାବ ଥିଲା । କାର୍ଯ୍ୟକର୍ତ୍ତାମାନେ ବି କେତେକ ପ୍ରଶ୍ନ ପଚାରିଥିଲେ । ସେମାନଙ୍କୁ ମଧ୍ୟ ଜବାବ ଦିଆଯାଇଥିଲା ।

ଯେଉଁମାନେ ଖଦୀ ଢଅଣ୍ଟପାଇଁ ସଂଯୁକ୍ତ କୋମ୍ପାନୀ ଖୋଲିବା ଚାହୁଁଥିଲେ ସେମାନଙ୍କୁ ଗାନ୍ଧୀଜି ଏହି ପରାମର୍ଶ ଦେଲେ ଯେ, ଏହି ସଂସ୍ଥାର ସଞ୍ଚାଳକ ଏପରି, ସଚେତ ଓ ସଂସ୍ଥାର ଶୁଭ ଚିନ୍ତକ ହେବା ଆବଶ୍ୟକ ଯେପରିକି 'ବେଙ୍କ ଅଫ ଇଣ୍ଡିଆ' ହୋଇଛନ୍ତି ଏବଂ ଏହା ଦୁନିଆର ସବୁଠାରୁ ବଡ଼ ସହଯୋଗୀ ସଂଘ ହୋଇପାରିଛି । ଆହୁରିମଧ୍ୟ ସେ ବ୍ୟାଙ୍କର ସଞ୍ଚାଳକ ଠାରୁ ଆମର ସଞ୍ଚାଳକ ଆହୁରି ନିସ୍ୱାର୍ଥ ହେବା ଆବଶ୍ୟକ । କାରଣ ଖଦୀ କୋମ୍ପାନୀ ସ୍ୱାର୍ଥପାଇଁ ନୁହେଁ; ଗରିବଙ୍କ ହେବାପାଇଁ ଖୋଲିଯିବ । ସେମାନଙ୍କର ଯୋଗ୍ୟତା ଏପରି ହେବ କି ସାଧାରଣରୁ ସାଧାରଣ କଥା ଉପରେ ବି ସେମାନେ ଧ୍ୟାନ ଦେବେ ଏବଂ ଚରଖା ଶାସ୍ତ୍ରରେ ନିପୁଣ ହେବେ । ଯେ ପର୍ଯ୍ୟନ୍ତ ଚରଖା ଶାସ୍ତ୍ରରେ ଭଲ ବିଶେଷଜ୍ଞ ଏବଂ ଯୋଗ୍ୟ ସଂଗଠନ କର୍ତ୍ତା ନ ମିଳିବେ ସେ ପର୍ଯ୍ୟନ୍ତ କିଛି କାମହେବ ନାହିଁ ।

ଆପଣମାନଙ୍କର କେତେକ ପ୍ରଶ୍ନରୁ ଜଣାଯାଉଛି ଯେ ଆପଣମାନେ କିପରି ଅବ୍ୟାବହାରିକ ଲୋକ । ଆପଣଙ୍କ ପ୍ରଶ୍ନ ହେଉଛି ଲେଙ୍ଗୁଟି ପିନ୍ଧିବା ଏବଂ କେତେକ ନିର୍ଦ୍ଦିଷ୍ଟ ଖାଦ୍ୟ ଖାଇବାର ଆବଶ୍ୟକତା କଣ ? ନା ଭାଇ । ମୁଁ ଆପଣଙ୍କ ଲୁଗା ଏବଂ ଖାଦ୍ୟର ପ୍ରକାର ନିର୍ଦ୍ଦିଷ୍ଟ କରିବା ଚାହେଁନା । ମୁଁ କେବଳ ଏତିକି ଚାହେଁ କି ଆପଣ ଏ ଆନ୍ଦୋଳନର ରହସ୍ୟ ବୁଝନ୍ତୁ ଏବଂ ସେହିପରି ଜୀବନ ଗଢ଼ନ୍ତୁ ।

ଆପଣମାନଙ୍କ ମଧ୍ୟରୁ ଯେଉଁମାନେ ଓଡ଼ିଶାର ସେବା କରିବାକୁ ଚାହାନ୍ତି ମୁଁ କହିବି ଯେ ସେମାନେ ଓଡ଼ିଶାକୁ ସାରା ଭାରତ ବର୍ଷର ଖଦୀ ଦୋକାନ ବନାଇ ଦିଅନ୍ତୁ ।

ଯେ ପର୍ଯ୍ୟନ୍ତ ଆପଣମାନଙ୍କ ଭିତରେ ଭେଦଭାବ ଅଛି ଆପଣମାନେ ସମସ୍ତେ ମିଳି କେବଳ ଖଦୀ ତିଆରିରେ ଲାଗନ୍ତୁ ନାହିଁ, ଏହାମଧ୍ୟ ହୋଇ ପାରିବ ନାହିଁ । ଖଦୀରେ ଭେଦାଭେଦ କିଣ ? ମୁଁ ଏହା ବୁଝି ପାରୁଛି ଯେ ଅନ୍ୟ ପ୍ରଦେଶରୁ ଖଦୀ ଆଣିବାକୁ ଆପଣି ବିରୋଧ କରିବେ ; କିନ୍ତୁ ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରେ ତିଆରି ହେଉଥିବା ଖଦୀରେ ତ ଆପଣଙ୍କର ପୃଥକତା ଆଣିବାର କୌଣସି କାରଣ ନାହିଁ । ଆପଣମାନେ ସମସ୍ତେ ମିଳିମିଶି ଖଦୀ ବିକ୍ରିରେ ଲାଗିଯାଆନ୍ତୁ ।

ଏକ ଦିନ କେତେକ ଯୁବକ କୃଷିର ଉନ୍ନତି ସମ୍ବନ୍ଧରେ କଥାବାର୍ତ୍ତା ହେଉଥିବାର ଶୁଣିଥିଲି । ମାତ୍ର ମୋ ଆଗରେ କେହି ପ୍ରମାଣ କରିଦେଇ ପାରିବେ କି କୃଷିର ଉନ୍ନତି ହେଲେ ସମସ୍ତ ଗରିବ ଲୋକଙ୍କର ଗରିବପଣିଆ ଦୂର ହୋଇଯିବ ? ଏ ଯୋଜନା ବ୍ୟାବହାରିକ ଏବଂ ଆମର କୋଟି କୋଟି ଲୋକଙ୍କପାଇଁ ଏହାର ପ୍ରୟୋଗ କରାଯାଇପାରେ ତ ମୁଁ ଚରଖା ସମ୍ବନ୍ଧରେ ମୋ ମତ ବଦଳାଇ ଦେବି । ମାତ୍ର ମୁଁ ଆପଣମାନଙ୍କୁ ସୂଚାଇ ଦେବାକୁ ଚାହେଁ ଯେ ଆଜିକାଲିର ପରିସ୍ଥିତିରେ ଏହା ସଫଳ ହୋଇପାରିବ ନାହିଁ । ମୁଁ ଏକ ଆଦର୍ଶ କ୍ଷେତ୍ର ତିଆରି କରିବାପାଇଁ ଚେଷ୍ଟା କରୁଛି । ମୋର କେତେକ ଅବୁଝା ମିତ୍ର ଏହାର ପ୍ରୟୋଗ ପାଇଁ ମୋତେ ମଧ୍ୟ ଅର୍ଥ ଦେଉଛନ୍ତି । ମୁଁ ମଧ୍ୟ ତାହାର ପରୀକ୍ଷାରେ ପାଣିପରି ଟଙ୍କା ଖର୍ଚ୍ଚ କରୁଛି । ମୁଁ ସ୍ୱର୍ଗୀୟ ସାର ଗଙ୍ଗାରାମଙ୍କ ସହିତ କଥାବାର୍ତ୍ତା କରି ତାଙ୍କ ଆଗରେ ମୋ କ୍ଷେତର ସମସ୍ତ ପରିସ୍ଥିତି ରଖିଦେଲି; ମାତ୍ର ସେ ବି କ୍ଷେତର ଉନ୍ନତିପାଇଁ କୌଣସି ଯୋଜନା ଦେଇପାରିଲେ ନାହିଁ ।

ଆପଣମାନେ ଗାଆଁକୁ ଯାଆନ୍ତୁ ଏବଂ ସେଠାରେ ନିଜକୁ ନିବର ଦେଇ ଦିଅନ୍ତୁ । ମାତ୍ର ଗାଁ ଲୋକଙ୍କର ମାଲିକ ନ ହୋଇ ସେମାନଙ୍କର ସେବକ ହୁଅନ୍ତୁ । ଆପଣମାନେ ଏପରି ଜୀବନ ବିତାନ୍ତୁ ଯାହାକୁ ଦେଖି ସେମାନେ ନିଜ ଜୀବନ ସୁଧାରି ନେବେ । କେବଳ ଭାବନାରେ ହିଁ କିଛି ହେବ ନାହିଁ ଯେପରିକି ବାଷ୍ପ ଇଞ୍ଜିନ ଭିତରକୁ ନ ଗଲେ କୌଣସି କାମରେ ଲାଗେନାହିଁ । ଆପଣ ଏହା ଚିନ୍ତା ଆଦୌ କରନ୍ତୁ ନାହିଁ କି ଆପଣଙ୍କ ତିଆରି ଖଦୀ କିଣି ହେବ ? ଆବଶ୍ୟକ ହେବ ତ ମୁଁ ସେ ସମସ୍ତ ଆପଣଙ୍କଠାରୁ ଖରିଦ କରି ନେବାର ଦାୟିତ୍ୱ ନେବି । ଖଦଡ଼ ତିଆରି ପାଇଁ ଓଡ଼ିଶାଠାରୁ ଆଉ ବଡ଼ କ୍ଷେତ୍ର କିଏ ଅଛି ? ଖଦଡ଼ର ଆବଶ୍ୟକତା ଏବଂ ଶକ୍ତିକୁ କେବଳ ଓଡ଼ିଶା ହିଁ ପ୍ରମାଣ କରିଦେଇ ପାରେ । ମୋ ମନରେ ଏ ପ୍ରଶ୍ନ ୧୯୦୮ ମସିହାରେ ଉଠିଥିଲା, ବର୍ତ୍ତମାନ ତାହାର ପ୍ରମାଣ ଦେଖାଇବା

ଆପଣମାନଙ୍କର କାମ । ଆପଣମାନେ ବର୍ତ୍ତମାନ ଦୁନିଆକୁ ଦେଖାଇ ଦିଅନ୍ତୁ ଯେ ଆମେ ଖଦୀ ବିନା ବଞ୍ଚିପାରିବୁ ନାହିଁ ।

ଆପଣ ନିଜର ବିଶ୍ୱାସ ମୋଠାରୁ ନିଅନ୍ତୁ ନାହିଁ । ବରଂ ନିଜ ମନରେ ଏପରି ପକ୍କା ବିଶ୍ୱାସ ଜନ୍ମାନ୍ତୁ କି ଗାନ୍ଧିଙ୍କ ବିଗୃହଧାରୀ ପଛେ ବଦଳି ଯାଉ ମାତ୍ର ମୁଁ ଏଥିରେ ନିର୍ଦ୍ଦିଷ୍ଟ ରହିବି । ଲୋକଙ୍କୁ ଆପଣ ଦେଖାଇ ଦିଅନ୍ତୁ ଯେ ପେଟ ଖାଇବାକୁ ଚାହୁଁଛୁ ତ ସେଥିପାଇଁ ମୋତେ କାତ କରିବାକୁ ହେବ । ଏ କାମ କେବଳ ଆପଣମାନେ ଆପଣଙ୍କ ଶକ୍ତିରେ କରିପାରନ୍ତି । ଲୋକଙ୍କ ଦେଶଭକ୍ତି ଉପରେ ବି ଆପଣମାନେ ନିର୍ଭର କରନ୍ତୁ ନାହିଁ । ଆପଣଙ୍କୁ ଏପରି ଭଲ ଖଦୀ ତିଆରି କରିବାକୁ ପଡ଼ିବ ଯାହା ଯେ କୌଣସି କପଡ଼ା ସହିତ ପ୍ରତିଦ୍ୱନ୍ଦିତା କରି ପାରିବ ।

ମନେ ରଖନ୍ତୁ କି ଯେପର୍ଯ୍ୟନ୍ତ ଲୋକଙ୍କର ଏ ବିଶ୍ୱାସ ନ ହୋଇଛି ଯେ ଆମେ ଖଦୀ ବିନା ବଞ୍ଚି ପାରିବୁ ନାହିଁ ସେପର୍ଯ୍ୟନ୍ତ ଆପଣମାନଙ୍କୁ ସଫଳତା ମିଳି ପାରିବ ନାହିଁ । ଆପଣ ଜାଣି ରଖନ୍ତୁ କି ମୁଁ ଏ ଆନ୍ଦୋଳନ ବିଦେଶୀ ଲୁଗା ବହିଷ୍କାରପାଇଁ କରୁନାହିଁ; ଏହା ଆମ ଜୀବନପାଇଁ ପରମ ଆବଶ୍ୟକ ।

ଆପଣ ଗ୍ରାମକୁ ଯାଆନ୍ତୁ । ଗ୍ରାମବାସୀଙ୍କ ସହିତ ନିଜକୁ ମିଳାଇ ଦିଅନ୍ତୁ । ସେମାନଙ୍କଠାରୁ ନିଜକୁ ଅଲଗା ବିଚାରନ୍ତୁ ନାହିଁ । ସେମାନଙ୍କ ସୁଖ ଦୁଃଖରେ ମିଶିଯାଇ ସେମାନଙ୍କୁ କାଟିବା ଶିଖାଇ ଦିଅନ୍ତୁ । ଭଣିବାର ଢଙ୍ଗ ବତାଇ ଦିଅନ୍ତୁ । ସେମାନଙ୍କ ଚାଲିଚଳନରେ ଦୋଷ ବୁଝାଇ ଦିଅନ୍ତୁ । ସଫାଇର ପ୍ରାଥମିକ ନିୟମ ବୁଝାଇ ଦିଅନ୍ତୁ ଏପ୍ରକାର କଟାଇଲେ ସ୍ୱରାଜ୍ୟ ମିଳିବ । ଆପଣ ପ୍ରତ୍ୟେକ ଗ୍ରାମକୁ ସ୍ୱୟଂସମ୍ପୂର୍ଣ୍ଣ କରି ଗଢ଼ି ତୋଳନ୍ତୁ । ପ୍ରତ୍ୟେକ ଘରର ସୂତାକୁ ସେଠାରେ ବୁଣାଇ ଦିଅନ୍ତୁ । ଏହାବ୍ୟତୀତ ଆପଣମାନଙ୍କ ନିକଟରେ ଆଉ କିଛି ଖଦୀ ବଳିପଡ଼ିବ ତ ତାହା ଠିକ୍‌କରି ମୋତେ ଲେଖିଲେ ମୁଁ ତାହା କିଣିନେବି । ମନେରଖନ୍ତୁ କି ସେହି ହିଁ ଠିକ୍ କାର୍ଯ୍ୟକର୍ତ୍ତାରୂପେ ଗଣାଯିବେ—ଯେ ଯେଉଁଠି ରହିବେ ସେ ସେଇ ଗ୍ରାମକୁ ସ୍ୱାବଲମ୍ବୀ କରି ଗଢ଼ିପାରେ; ମାତ୍ର ଏକଥା ତ ଲୋକ ମଧ୍ୟରେ ନିର୍ଭର କରେ । ଏଥିପାଇଁ ପ୍ରେମର ପାଠଶାଳା ଛଡ଼ା ଅନ୍ୟ କେଉଁ ବିଦ୍ୟାର ଆବଶ୍ୟକତା ନାହିଁ । ଆମ ପାଖରେ କଣ ସତ୍ୟବାଦୀ, ମିତବାଦୀ, ବୀର ଓ ଦେଶପ୍ରେମୀ କାର୍ଯ୍ୟକର୍ତ୍ତା ଅଛନ୍ତି ?

ପରିଶିଷ୍ଟ—ଡାକ୍ତର ଅନସାରି ଗାନ୍ଧିଜୀଙ୍କ ଶରୀର ପୂର୍ଣ୍ଣ ପରୀକ୍ଷା କଲେ । ତାଙ୍କର କଥା ଯେ ଚିନ୍ତାର କୌଣସି କାରଣ ନାହିଁ । ତାଙ୍କ ପରୀକ୍ଷାରେ ରକ୍ତର ଝାର ସାମାନ୍ୟରୁ ଅଳ୍ପକିଛି ଅଧିକ ହେଲା । ଏଥିପାଇଁ ଗାନ୍ଧିଜୀଙ୍କୁ ଆରାମ ଓ କମ୍ କାମ କରିବା ଆବଶ୍ୟକ ; କିନ୍ତୁ ଚିନ୍ତାର କୌଣସି କାରଣ ନାହିଁ ।

## ମହାଦେବ ଦେଶାଇ

(ୟଙ୍ଗ ଇଣ୍ଡିଆ ତା ୨୯ । ୬ । ୧୯୨୭)

---

ମୋତେ ବର୍ତ୍ତମାନ ତାର ମିଳିଲା ଯେ ପଣ୍ଡିତ ଗୋପବନ୍ଧୁ ଦାସଙ୍କର ପରଲୋକ ହୋଇଯାଇଛି । ଦୁଃଖ ଓ ବିପତ୍ତି ପ୍ରପୀଡ଼ିତ ଓଡ଼ିଶାର ସେ ସର୍ବଶ୍ରେଷ୍ଠ ପୁତ୍ରମାନଙ୍କ ମଧ୍ୟରୁ ଜଣେ । ଗୋପବନ୍ଧୁ ବାବୁ ଓଡ଼ିଶାକୁ ନିଜର ସର୍ବସ୍ୱ ସମର୍ପଣ କରି ଦେଇଛନ୍ତି । ୧୯୧୭ ମସିହାରେ ଯେତେବେଳେ ଦୁର୍ଭିକ୍ଷ ପ୍ରପୀଡ଼ିତ ଜନତାକୁ ସାହାଯ୍ୟ ଦେବାପାଇଁ ଶ୍ରୀଯୁକ୍ତ ଅମୃତଲାଲ ଠକ୍‌କରଙ୍କୁ ଓଡ଼ିଶା ପଠାଯାଇଥିଲା ସେତେବେଳେ ମୁଁ ଗୋପବନ୍ଧୁ ବାବୁଙ୍କ ବିଷୟରେ ତାଙ୍କ ନିର୍ମଳଙ୍କ ଚରିତ୍ର ତଥା ଦୃଢ଼ତା ବିଷୟରେ ଶୁଣିଥିଲି । ଶ୍ରୀଯୁକ୍ତ ଠକ୍‌କର ମୋ ପାଖକୁ ଲେଖିଥିଲେ ଯେ କିପରି ଅସହାୟଙ୍କୁ ସାହାଯ୍ୟ କରିବାପାଇଁ ଗୋପବନ୍ଧୁ ବାବୁ କଷ୍ଟ ଓ ରୋଗ ସହିତ ଲଢ଼ୁଥିଲେ । ଅସହଯୋଗ ସମୟରେ ସେ ନିଜ ଓକିଲାତି ଓ କାଉନ୍‌ସିଲ ମେମ୍ବର ପଦ ଛାଡ଼ି ଦେଇଥିଲେ ଏବଂ କେବେହେଲେ ସେଥିରେ ବିଚଳିତ ହୋଇନାହାନ୍ତି । ଏଥିପାଇଁ ବରଂ ତାଙ୍କର ବଡ଼ ତ୍ୟାଗ ଥିଲା ଯେ ସେ ନିଜର ପ୍ରିୟତମ କୃତୀ ସତ୍ୟବାଦୀ ସ୍କୁଲ୍‌କୁ ବି ବିପଦରେ ପକାଇ ଦେଇଥିଲେ । ଏଥିପାଇଁ ତାଙ୍କୁ ତାଙ୍କର ନିକଟତମ ବନ୍ଧୁଙ୍କଠାରୁ ବିଦ୍ରୂପ କଥା ଶୁଣିବାକୁ ପଡ଼ିଥିଲା ଏବଂ ଯନ୍ଧିରେ ସେ ତାଙ୍କୁ ମୂର୍ଖ ବୋଲି ବୁଝି ତାଙ୍କ ପଛରେ ଲଗି ଯାଇଥିଲେ । ତାଙ୍କ ପଛରେ ଲାଗିଥିବା ଯୋଗୁଁ ତାଙ୍କ କୀର୍ତ୍ତି ସବୁଦିନପାଇଁ ଅମର ହୋଇ ରହିବ । ତାଙ୍କ ଜୀବନର ଏକମାତ୍ର ଅଭିଳାଷ ଥିଲା, ଖଣ୍ଡ ଖଣ୍ଡ ହୋଇ ପଡ଼ିଥିବା ଉତ୍କଳକୁ ଏକତ୍ରୀକରଣ କରିବା ଏବଂ ତାର ସୁଖ ଦେଖିବା । ପରେ ସେ ଲାଲା ଲଜପତ୍ ରାୟଙ୍କ ସମିତିରେ ସାମିଲ ହୋଇ ଯାଇ ଥିଲେ । ଗରିବ ତଥା ବନ୍ୟାପ୍ରପୀଡ଼ିତ ଉତ୍କଳକୁ ଆର୍ଥିକ ସହାୟତା ପହଞ୍ଚାଇବା ଉଦ୍ଦେଶ୍ୟରେ ଖଦୀକୁ ଉପଯୋଗୀ ସାଧନ କରିବାପାଇଁ ଯୋଜନା କରିଥିଲେ । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଅବସାନରେ ଦେଶ ଗରିବ ହୋଇଗଲା । ଯାହାହେଉ ସେ ସଶରୀର ଆଜି ଆମ ଭିତରେ ନାହାନ୍ତି ସତ; ମାତ୍ର ତାଙ୍କର ଆତ୍ମା ଅଛି । ତେଣୁ ସେ ପୁଣ୍ୟାତ୍ମା

ରାଷ୍ଟ୍ରୀୟ କାର୍ଯ୍ୟକର୍ତ୍ତାଙ୍କ ପଥପ୍ରଦର୍ଶକ ହୋଇ ମୃତ୍ୟୁର ଫଳସ୍ୱରୂପ ରାଷ୍ଟ୍ରୀୟ ଆବଶ୍ୟକତା ପାଇଁ ଯାହାକିଛି ଅଛି, ତାହା ଏଣେତେଣେ ଥିବା କାର୍ଯ୍ୟକର୍ତ୍ତାମାନେ ସେବାପାଇଁ ଅଧିକ ଜୋର୍ ଲଗାଇ ଏବଂ ଅଧିକ ଆତ୍ମନିୟନ୍ତ୍ରଣ କରି ଅଧିକ ଏକନିଷ୍ଠ ହୁଅନ୍ତୁ । ମୁଁ ଏହି ସ୍ୱର୍ଗୀୟ ଦେଶଭକ୍ତଙ୍କ ଆତ୍ମୀୟସ୍ୱଜନ ତଥା ଶିଷ୍ୟମାନଙ୍କୁ ସମବେଦନା ଜଣାଇ ଦେଉଛି ।

( ୟଙ୍ଗ ଇଣ୍ଡିଆ )

**ମୋହନଦାସ କରମଚାନ୍ଦ ଗାନ୍ଧୀ**

ତା ୨୧ । ୬ । ୨୮

———

# THE SPIRIT OF ORISSA.

(By. C. F. Andrews )

If love is the first act of Service, then it is easy to begin to Serve Orissa; for a more loveable people I have never met with elsewhere in the whole of India. They win your heart from the first moment that you come among them. It is not easy to analyse how or why this is. It is certainly not merely because there is such suffering every where to be seen, which is patiently borne. That is evident to everyone who comes to stay among the Oriya people and the patience which it has produced is very full of appeal to the heart. But there is much else besides.

One thing is clear. In spite of calamity after calamity, such as would have led other people to 'Curse God and die' to quote the tellocible words from the Book of Job, that Job's wife utters in her desperate misery, the people of Orissa have maintained their faith in God's goodness. This morning, I watched the faithful women going down in a long procession to the Great River, the Mohanadi, in order to bathe in its cold waters and then make their offerings at the shrines along the river bank. There were objects in those shrines, which I could not personally appreciate, and whose meaning I could not understand. But the spirit of reverence and sacrifice and devotion, which I witnessed, is common to all religious rites and ceremonies in East and West alike. I had been taught, from the day when my own mother first took me to church in England, to understand the meaning of this faith in God. Indeed, religion was the foundation of my own mother's life of sacrifice. Therefore, to doubt the value of religion would be to doubt the value of my own mother's life of devotion, to which I owe everything I cherish and admire.

As I saw those Hindu Women going to their worship, my thoughts turned to the great drama in Soviet Russia to-day, where outside all the old churches the new words have been written, 'Religion is the opium of the people'. I know that evils, gross superstition, masquerading in the name of pure religion, can accomplish, not only in India and Russia, but all over Europe. It is hideously apparent in some modern cults today, which are degrading the West before our eyes, especially in America. The story told, in Mr. Upton Sinclair's books, about new-fangled religious orgies in the Far West, make us literally nauseated, as we read on, page after page. I can quite understand, therefore, how the ardent Russian reformers have wished to sweep away at a stroke debasing superstitions where they exist. Mustafa Kemal, the President of the Republic in Turkey, has had to face out worn religious customs of another character, such as purdah and polygamy, and he has employed this wholesale sweeping method in his own country. Possibly, such purging processes have their own part to play throughout each country's progress forward. In England they led to puritanism and produced Cromwell and Milton. In France, they created the French Revolution, with its noble watch word of human liberty. Such methods cannot therefore be condemned outright, when they appear in the checquered story of humanity. We advance by leaps sometimes, even though we fall back again.

But there is no quality in human life, that needs more careful touch and handling than the flower of pure religion, when it actually blossoms. For its fruit, in art, music, literature, as well as in moral characters, which are the outward expression of idealism,—is by far the most precious heritage that human life has ever been able to ripen as a seed of the future. Humanity could well afford to do without the blood-stained war triumphs of a Julius Caesar, or a Genghis Khan. But it could never afford to do without the triumphs, in the realm of gentle peace, of a Christ or a Buddha.

I have dwelt on this point at some length, in this analysis of the spirit of Orissa, because the central factor in the life of the Oriya today is Religion. This alone has enabled them to bear suffering, such as no other part of India has been called upon to bear. We must therefore deal with it tenderly. At the same time, we must face the truth about if.

There is a Latin proverb which says, that the worst in human nature is a corruption of the best. That saying contains a profound truth while religion has saved Orissa and made the Oriya character so beautiful in its goodness.

---

## ପଣ୍ଡିତ ଗୋପବନ୍ଧୁଙ୍କର

# ଐତିହାସିକ ଖୋର୍ଦ୍ଧା ବିଚାର

### ସ୍ୱର୍ଗୀୟ ସୁରେଶଚନ୍ଦ୍ର ବୋଷ

( ଲେଖକ ସ୍ୱର୍ଗୀୟ ସୁରେଶଚନ୍ଦ୍ର ବୋଷ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ବଡ଼ ଭାଇ । ୧୯୨୧ରେ ସେ ଖୋର୍ଦ୍ଧାରେ ଡେପୁଟି ମାଜିଷ୍ଟ୍ରେଟ ଥିଲେ । 'ସମାଜ'ରେ "ସତ୍ୟ ହେଲେ ସାଙ୍ଘାତିକ" ଶୀର୍ଷକ ଏକ ଲେଖା ପ୍ରକାଶ ପାଇ-ଥିବାରୁ ପୋଲିସ ପକ୍ଷରୁ ସମ୍ପାଦକ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ବିରୁଦ୍ଧରେ ମକଦ୍ଦମା ହୋଇଥିଲା ଓ ଲେଖକ ତାର ବିଚାରପତି ଥିଲେ । ସେତେବେଳେ ଅସହଯୋଗ ଆନ୍ଦୋଳନକୁ ଦବାଇଦେବା ଉଦ୍ଦେଶ୍ୟରେ ସରକାର ସବୁମତେ ଉଦ୍ୟମ କରୁଥିଲେ ଓ ଓଡ଼ିଶା କଂଗ୍ରେସର ପ୍ରଧାନ ନେତା ପଣ୍ଡିତ ଗୋପବନ୍ଧୁଙ୍କୁ କଠିନ ଦଣ୍ଡ ଦେବାଲାଗି ବଦ୍ଧପରିକର ହୋଇଥିଲେ । ଶ୍ରୀଯୁକ୍ତ ବୋଷ ବିଚାରରେ ପଣ୍ଡିତ ଗୋପବନ୍ଧୁଙ୍କୁ ଖଲାସ କରି ଦେଇଥିଲେ ଏବଂ ତାର କେତେକ ଦିନ ପରେ ଚାକିରୀରୁ ଇସ୍ତଫା ଦେଇଥିଲେ । )

୧୯୨୧ ସାଲରେ ସମଗ୍ର ଭାରତରେ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଅହିଂସ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ଏହି ବିରାଟ ଆନ୍ଦୋଳନରେ ଉତ୍କଳମଣି ଗୋପବନ୍ଧୁଙ୍କ ନେତୃତ୍ୱରେ ସମଗ୍ର ଓଡ଼ିଶା ଉଦ୍‌ବୁଦ୍ଧ ହୋଇ ଉଠିଲା । ବ୍ରିଟିଶ ଶାସନ ବିରୁଦ୍ଧରେ ଏହି ଆନ୍ଦୋଳନ ସମଗ୍ର ଭାରତବାସୀଙ୍କୁ ଜାତୀୟ ଭାବରେ ଏପରି ଉଦ୍‌ବୁଦ୍ଧ କଲା ଯେ ସରକାରୀ ଚାକିରୀରେ ଥିବା ଇଂରେଜ ରାଜ କର୍ମଚାରୀମାନେ ପ୍ରମାଦ ଗଣିଲେ । ଭାରତରେ ଥିବା ଇଂରେଜ କର୍ମଚାରୀ ତଥା ଇଂରେଜ ବ୍ୟବସାୟୀମାନଙ୍କ ମନରେ ବଦ୍ଧମୂଳ ଧାରଣା ହୋଇଗଲା ଯେ, ଭାରତ ଛାଡ଼ି ନ ଗଲେ ସେମାନଙ୍କର ଆଉ ରକ୍ଷାନାହିଁ ।

ସେତେବେଳେ ମୁଁ ବିହାର-ଓଡ଼ିଶା ସରକାରଙ୍କ ଅଧୀନରେ ପୁରୀ ଜିଲ୍ଲାର ଖୋର୍ଦ୍ଧା ସବ୍‌ଡ଼ିଭିଜନରେ ପ୍ରଥମ ଶ୍ରେଣୀ ଡେପୁଟି ମାଜିଷ୍ଟ୍ରେଟ ଓ ଡେପୁଟି କଲେକ୍ଟର କାର୍ଯ୍ୟରେ ନିଯୁକ୍ତ ଥାଏ । ସେତେବେଳେ ମିଷ୍ଟର ଆର. ଇ. ରସେଲ, ଆଇ. ସି. ଏସ.

ଜଣେ ଅୟର୍ଲାଣ୍ଡବାସୀ ପୁଲିସ ଜିଲା ମାଜିଷ୍ଟ୍ରେଟ ଓ କଲେକ୍ଟରେ ଥାନ୍ତି । ସେ ସେହି ସମୟରେ ଛୁଟି ନେଇ ତାଙ୍କ ଦେଶକୁ ଫେରୁଥାନ୍ତି । ଖୋର୍ଦ୍ଧାଠାରେ ତାଙ୍କୁ ବିଦାୟ ସମ୍ବର୍ଦ୍ଧନା ଦେବାଲାଗି ମୁଁ ଆୟୋଜନ କଲି । ଏହି ସମୟରେ ତାଙ୍କ ସହିତ କଥାବାର୍ତ୍ତା ଛଳରେ ଆମ ଦୁହିଁଙ୍କ ମଧ୍ୟରେ ବହୁ ବିଷୟରେ ଆଲୋଚନା ହୋଇଥିଲା । ସେ ମୋତେ କହିଲେ ଯେ, ତାଙ୍କ ଦେଶରେ ସେ ମାସକୁ ଅନ୍ତତଃ ୩ ଶହ ଟଙ୍କା ଦରମାରେ ଯଦି ଖଣ୍ଡିଏ ଗୁଡ଼ୁଖି ଟ୍ରଙ୍ଗାଡ଼ି କରିପାରନ୍ତି ତେବେ ସେ ଅଉ ଭାରତକୁ ଫେରିଆସିବେ ନାହିଁ । ମିଷ୍ଟର ରସେଲ ଉଚ୍ଚବଂଶର ଲୋକ । ତାଙ୍କ ପିତା ଡବ୍ଲିନ ବିଶ୍ୱବିଦ୍ୟାଳୟର ଦର୍ଶନ ବିଦ୍ୟାରେ ଡ଼ିନ ଅଫ୍ ଫାକଲ୍ଟି ।

କେତେମାସ ପରେ ମୁଁ ଶିଳ୍ପ ଶିକ୍ଷା ଲାଗି ୟୁରୋପ ଯାତ୍ରା କଲାବେଳେ ଜାହାଜରେ ଇଂଲଣ୍ଡ ଫେରି ଯାଉଥିବା କେତୋଟି ଇଂରେଜ ପରିବାର ସହିତ ଆଳାପ କରିବାର ମୋର ସୁଯୋଗ ଘଟିଥିଲା । ସେମାନେ ଭାରତରୁ ଚିର ବିଦାୟ ନେଇ ତାଙ୍କ ନିଜ ଦେଶକୁ ଫେରି ଯାଉଥିଲେ । ଏମାନଙ୍କ ମଧ୍ୟରେ ଆସାମର କେତେକ ଇଂରେଜ ଗୁହା ବଗିଗୁ ମାଲିକଙ୍କ ପରିବାର ଥିଲେ । ଏମାନଙ୍କ ମଧ୍ୟରୁ ଜଣେ ବ୍ୟକ୍ତିଙ୍କଠାରୁ ଆଳାପ ପ୍ରସଙ୍ଗରେ ମୁଁ ଜାଣିପାରିଲି ଯେ ସେମାନେ ସେମାନଙ୍କର ଖୁବ୍ ଦରକାରୀ ଜିନିଷପତ୍ର ଛଡ଼ା ଆଉ କିଛି ସଙ୍ଗରେ ଆଣି ପାରିନାହାନ୍ତି । କେବଳ ଯେତିକି ସଙ୍ଗରେ ନିଜେ ବୋହି ନେଇପାରିବେ ସେତିକି ମାତ୍ର ଆଣିଛନ୍ତି । ଏହାର କାରଣ ସେଠାର କୁଲିମାନେ ସେମାନଙ୍କର ଜିନିଷପତ୍ର ବୋହି ନେବାପାଇଁ ରାଜି ହେଲେ ନାହିଁ । ସାଧାରଣ ମଜୁରିଆଙ୍କ ଭିତରେ ଏପରି ଚେତନାର ସଞ୍ଚାର ବାସ୍ତବରେ ଅଭିନବ । ଗୁହା ବଗିଗୁର କୁଲିମାନେ ମୂକ ପଶୁଭଳି ଥାନ୍ତି ଓ ସେମାନେ ନାନାଭାବରେ ଶୋଷିତ ଏବଂ ଅତ୍ୟାଚରିତ ହୋଇ ଦାସତ୍ୱର ନିମ୍ନତମସ୍ତରରେ ପଡ଼ିଥାନ୍ତି ବୋଲି ସମସ୍ତଙ୍କୁ ଜଣା । ଅସହଯୋଗ ଆନ୍ଦୋଳନ ଏହି ମୂକ ମଜୁରିଆମାନଙ୍କ ଭିତରେ ଏପରି ଅଭିନବ ଜାତୀୟ ଚେତନା ଆଣି ଦେଇଥିଲା ।

ସେ ସମୟରେ ଅସହଯୋଗ ଆନ୍ଦୋଳନକାରୀମାନଙ୍କୁ କଠୋର ଦଣ୍ଡ ଦେବାପାଇଁ ବଙ୍ଗଳା ସରକାର ସ୍ୱତନ୍ତ୍ର ଆଇନ କଲେ । କିନ୍ତୁ ବିହାର-ଓଡ଼ିଶା ସରକାର ଅସହଯୋଗ ଆନ୍ଦୋଳନକାରୀମାନଙ୍କୁ ଭାରତୀୟ ପିଙ୍ଗଲକୋଡ଼ ଅନୁସାରେ ଦଣ୍ଡବିଧାନର ବ୍ୟବସ୍ଥା କଲେ । ବିହାର-ଓଡ଼ିଶା ସରକାରଙ୍କ ଏହି ନୀତି ଅନୁସାରେ ୧୯୨୧ ମସିହାରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ସରକାର ଏକ ଫୌଜଦାରୀ ମକଦ୍ଦମା କଲେ । ୧୯୨୧ ମସିହା ଅଗଷ୍ଟ ୧୩ ତାରିଖ 'ସମାଜ'ରେ 'ସର୍ତ୍ତ ହେଲେ ସାଙ୍ଘାତିକ'

ଏହି ଶିରୋନାମ ରେ ଏକ ସମ୍ବାଦ ପ୍ରକାଶ ପାଇଥିଲା । ପୁରୀ ଜିଲ୍ଲାର ବେଗୁନିଆ ଥାନାରେ ବେଗୁନିଆ ହାଟ ନିକଟରେ ଜଣେ ନାରୀ ଉପରେ ଦୁଇଜଣ ପୁଲିସ କନେଷ୍ଟବଲ ଅତ୍ୟାଚାର କରିଥିବାର ଏ ସମ୍ବାଦରେ ଉଲ୍ଲେଖ ଥିଲା ।

ସରକାରଙ୍କ ପକ୍ଷରୁ ପୁଲିସ ବିରୁଦ୍ଧରେ ଏଭଳି ଅଭିଯୋଗ ସମ୍ବନ୍ଧରେ ଗୁପ୍ତ ତଦନ୍ତ ହେଲା । ଏହାପରେ ସରକାର 'ସମାଜ'ର ମୁଦ୍ରାକର, ପ୍ରକାଶକ ଓ ସମ୍ପାଦକ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ବିରୁଦ୍ଧରେ ପୁଲିସ ବିରୁଦ୍ଧରେ ମାନହାନି ଅଭିଯୋଗରେ ଭାରତୀୟ ପିଙ୍ଗଲକୋଡ଼ର ୪୪୯।୫୦୦ ଧାରା ଅନୁସାରେ ଏକ ଫୌଜଦାରୀ ମକଦ୍ଦମା କଲେ । ପ୍ରଥମରୁ ଏହି ମକଦ୍ଦମା ବିଚାରର ଭାର ମୋ ଉପରେ ପଡ଼ିଲା । ପଣ୍ଡିତ ଗୋପବନ୍ଧୁଙ୍କୁ ଅଭିଯୁକ୍ତ ଆସାମୀରୂପେ କୋର୍ଟରେ ହାଜର ହେବାପାଇଁ ସମନ ହେଲା ଓ ତାଙ୍କୁ ଗିରଫ କରାଗଲା । ସେତେବେଳେ ଅସହଯୋଗ ଆନ୍ଦୋଳନକାରୀମାନେ ଇଂରେଜ ସରକାରଙ୍କ ଅଦାଲତ ଓ ତାଙ୍କର ବିଚାରକୁ ସ୍ୱୀକାର କରନ୍ତୁ ନାହିଁ ବୋଲି ସ୍ପଷ୍ଟ ଭାବରେ ଘୋଷଣା କରିଥିଲେ । ଅସହଯୋଗ ଆନ୍ଦୋଳନର ନେତା ପଣ୍ଡିତ ଗୋପବନ୍ଧୁ ଏହି ମକଦ୍ଦମାରେ କୌଣସିପ୍ରକାରେ ତାଙ୍କର ପକ୍ଷ ସମର୍ଥନ କରି ନ ଥିଲେ ଓ ତାଙ୍କର ପ୍ରତିପକ୍ଷ ସାକ୍ଷୀମାନଙ୍କୁ ଜେରା ବା କୌଣସି ପ୍ରଶ୍ନ ପଚାରି ନ ଥିଲେ । ହାର୍ଦ୍ଦିକ, ନିଶ୍ଚିନ୍ତ ଓ ନିସ୍ପୃହ ଭାବରେ ସେ ବିଚାରରେ ଚରମ ଦଣ୍ଡଲାଗି ପ୍ରସ୍ତୁତ ହୋଇ ରହିଥିଲେ । ଅଭିଯୁକ୍ତ ଆସାମୀ ତାହାର ପକ୍ଷ ସମର୍ଥନ କରୁ ନ ଥିବାବେଳେ ବିଚାରପତି ମାଜିଷ୍ଟ୍ରେଟଙ୍କ ପକ୍ଷରେ ତାହା ପ୍ରତି କଠୋରତମ ଦଣ୍ଡବିଧାନ କରିବା ଅତି ସହଜ । ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତି ଏହିଭଳି ଦଣ୍ଡବିଧାନ କରିବା ମଧ୍ୟ ସରକାରଙ୍କ ଉଦ୍ଦେଶ୍ୟ ଥିଲା । ଏହା ଯେପରି ଠିକଣା ଭାବରେ ସମ୍ପାଦିତ ହୁଏ ସେଥିଲାଗି ସରକାରଙ୍କ ପକ୍ଷରୁ ମୋତେ ନାନା ଭାବରେ ପ୍ରବର୍ତ୍ତା ଯାଉଥିଲା । ଏହା କରି ପାରିଲେ ଶୀଘ୍ର ମୋର ପଦୋନ୍ନତି ଘଟିବ ଓ ଉଚ୍ଚ ଉପାଧିରେ ଭୂଷିତ ହେବି ବୋଲି ସୂଚନା ଦିଆ ଯାଇଥିଲା । ଏପରିକି ମକଦ୍ଦମାର ବିଚାର ପୂର୍ବରୁ ମକଦ୍ଦମା ପ୍ରସଙ୍ଗରେ ଲିଗାଲ ରିମେମବ୍ରାନ୍ସର (ଆଇନ ବିଭାଗ ସେକ୍ରେଟାରୀ)ଙ୍କ ମତର ଏକ ପ୍ରସ୍ତ ନକଲ ମଧ୍ୟ ମୋ ପାଖକୁ ପଠାଗଲା । ଆଇନ ସେକ୍ରେଟେରୀ ଆବଶ୍ୟକ ଆଲୋଚନା ଓ ବିଚାର ପରେ ସରକାର ପକ୍ଷରୁ ହୋଇଥିବା ଅଭିଯୋଗ ଯୁକ୍ତିଯୁକ୍ତ ଓ ଟାଣୁଆ ବୋଲି ମତ ଦେଇଥିଲେ ।

ଏହି ମତ ଅନୁସାରେ ବିହାର-ଓଡ଼ିଶା ସରକାରଙ୍କ ଚିଫ୍ ସେକ୍ରେଟେରୀ ପୁଲିସ ବିଭାଗ ଆଇ. ଜି.ଙ୍କୁ ଏକ ପତ୍ରଲେଖି ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ଅଣା ଯାଇଥିବା

ଫୌଜଦାରୀ ମକଦ୍ଦମା ଯେପରି ଠିକଣା ଭାବରେ ଚଳେ ଓ ଅଭିଯୁକ୍ତ ଆସାମୀ ପଣ୍ଡିତ ଗୋପବନ୍ଧୁ ଯେପରି ବିଗୃହରେ ସାମାନ୍ୟ ଦଣ୍ଡ ପାଇ ଖଲାସ ହୋଇ ନ ଯାନ୍ତି ସେ ଦିଗକୁ ଧ୍ୟାନ ଦେବାଲାଗି ନିର୍ଦ୍ଦେଶ ଦେଇଥିଲେ । ଏହି ମକଦ୍ଦମାରେ ଅଭିଯୁକ୍ତ ଆସାମୀ କୌଣସି ପ୍ରକାରେ ନିଜ ପକ୍ଷ ସମର୍ଥନ କରୁନାହାନ୍ତି । ଏପରି ଅବସ୍ଥାରେ ଆସାମୀ ପ୍ରତି କଠୋର ଦଣ୍ଡବିଧାନ ସରକାରଙ୍କ ପକ୍ଷରେ ଖୁବ୍ ସୁବିଧାଜନକ ।

ମକଦ୍ଦମା ହରିଗିରିଦନ ପଣ୍ଡିତ ଗୋପବନ୍ଧୁଙ୍କ ବିଗୃହ ଦେଖିବାପାଇଁ ଓ ତାଙ୍କର ଦର୍ଶନପାଇଁ ଦୂରଦୂରାନ୍ତ ଗ୍ରାମମାନଙ୍କରୁ ପ୍ରାୟ ପଚିଶ ତିରିଶ ହଜାର ଲୋକ ଖୋର୍ଦ୍ଧା ଭଳି ଛୋଟ ସହରରେ ଆସି ଅଦାଲତ ଗୃହପଟେ ରୁଣ୍ଡ ହୋଇଥିବା ମୁଁ ଦେଖିଛି । ସମସ୍ତେ ଉଦ୍‌ଗ୍ରୀବ, ପଣ୍ଡିତ ଗୋପବନ୍ଧୁ ବିଗୃହରେ କିପରି ମୁକ୍ତି ପାଇବେ । ଦୂରଦୂରାନ୍ତ ଗାଁଗହଳରୁ ୫ ଶହ କି ୬ ଶହ ବଳଦ ଗାଡ଼ିରେ ଲୋକେ ତାଙ୍କ ପ୍ରିୟତମ ନେତାଙ୍କ ବିଗୃହ ଦେଖିବାଲାଗି ଆସିଥାନ୍ତି । ଗୃହଆଡ଼େ ବିଷମ ପାଟିଗୋଳ । କଚେରୀ ଘରେ ବସି ବିଗୃହ କଲେ ବିଷମ ଗୋଲମାଲରେ କାମ କରି ହେବ ନାହିଁ ବୋଲି ମୁଁ ଭାବିଲି । ତେଣୁ ଅଫିସ ହତା ଭିତରେ ଗୋଟିଏ ଗଛମୂଳେ ଚୌକି ମେଜ ପକାଇବାକୁ ମୁଁ ଆଦେଶ ଦେଲି । ସେହିଠାରେ ରାୟ ଶୁଣାଇ ଦିଆଯିବ ।

ସାକ୍ଷୀମାନଙ୍କ ଜମାନବନ୍ଦୀ ଉପରେ ନିର୍ଭର କରି ମୁଁ ଯେତେବେଳେ ରାୟ ଲେଖୁଥିଲି ସେତେବେଳେ ମୋର ଧାରଣା ହୋଇଥିଲା ଯେ, ଅଭିଯୁକ୍ତ ଆସାମୀ ଗୋପବନ୍ଧୁ ନିଶ୍ଚୟ ଦଣ୍ଡିତ ହେବେ । କାରଣ ଏହି ମାନହାନି ଅଭିଯୋଗ ଯେପରି ସନ୍ତୋଷଜନକ ଭାବରେ ପ୍ରମାଣିତ ହୋଇପାରିବ ସେ ଦିଗରେ ସରକାର ପୂର୍ଣ୍ଣ ଉଦ୍ୟମ ସହିତ ନିଖୁଣ୍ଟ ଭାବରେ କାଗଜପତ୍ର ପ୍ରସ୍ତୁତ କରିଥିଲେ । କେବଳ ସେତିକି ନୁହେଁ, ସମ୍ବାଦପତ୍ରର ସମ୍ପାଦକଙ୍କ ପ୍ରତି ଦିଆଯାଇଥିବା ଆଇନଗତ ସ୍ୱତନ୍ତ୍ର ସୁବିଧାର ସୁଯୋଗ ନେଇ ମଧ୍ୟ ଯେପରି ପଣ୍ଡିତ ଗୋପବନ୍ଧୁ ମୁକ୍ତି ପାଇ ନ ଯାନ୍ତି ସେ ଦିଗରେ ମଧ୍ୟ ସରକାର ସତର୍କ ଥିଲେ । ସରକାରଙ୍କ ପକ୍ଷରୁ ଯେଉଁସବୁ କାଗଜପତ୍ର ଓ ସାକ୍ଷ୍ୟ ଦିଆଯାଇଥିଲା ସେଥିରେ ପଣ୍ଡିତ ଗୋପବନ୍ଧୁ ଅପରାଧୀ ବୋଲି ସାବ୍ୟସ୍ତ ହେବାର କଥା । ଏଣେ ପୁଣି ତାଙ୍କ ପକ୍ଷ ସମର୍ଥନ କରି କୌଣସି ପ୍ରକାର ସାକ୍ଷ୍ୟ ବା ପ୍ରମାଣ ପ୍ରଦର୍ଶନ କରାଯାଇ ନ ଥିଲା । ଏଣୁ ମୋ ରାୟର ପ୍ରଥମ ଅଂଶରେ ତାଙ୍କର ଦଣ୍ଡ ସମ୍ବନ୍ଧରେ ହିଁ ଉଲ୍ଲେଖ ଥିଲା ।

ପୂର୍ବେ କୁହାଯାଇଛି ଯେ, ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ଯେଉଁ ମାନହାନି ମକଦ୍ଦମା ଦାଏର ହୋଇଥିଲା ତାହା ଯେପରି ସବୁ ଦିଗରୁ ଖୁବ୍ ଦକ୍ଷତାର ସହିତ ଓ

ସନ୍ତୋଷଜନକ ଭାବରେ ପରିଗୃହୀତ ହୁଏ ଓ ତାଙ୍କ ପ୍ରତି ଯେପରି ଚାଣୁଆ ଦଣ୍ଡବିଧାନ କରାଯାଏ ସେ ପ୍ରସଙ୍ଗରେ ବିହାର-ଓଡ଼ିଶା ସରକାର କଡ଼ା ଆଦେଶ ଦେଇଥିଲେ । ଏପରିକି, ସେ ଯେପରି ସାମାନ୍ୟ ଦଣ୍ଡପାଇ ଖସି ନ ଯାନ୍ତି ସେ ଦିଗରେ ସରକାରି ପ୍ରାଣପଣ ଉଦ୍ୟମ କରିଥିଲେ । ଏଥିପାଇଁ ଇଂରେଜ ପୁଲିସ ସୁପରିନ୍‌ଟେଣ୍ଡେଣ୍ଟ ମିଷ୍ଟର ଗାଇସଙ୍କୁ ପ୍ରଥମ ଓ ପ୍ରଧାନ ସାକ୍ଷୀରୂପେ ଠିଆ କରାଇ ତାଙ୍କର ଜମାନବନ୍ଦି ନିଆଯାଇଥିଲା । କେବଳ ସେତିକି ନୁହେଁ, ବହୁ ପୁଲିସ ଇନ୍‌ସପେକ୍‌ଟର, ସବ୍‌ଇନ୍‌ସ୍‌ପେକ୍‌ଟର, ଆସିଷ୍ଟାଣ୍ଟ ସବ୍‌ଇନ୍‌ସପେକ୍‌ଟର ଓ କନେଷ୍ଟବଲ ସରକାରଙ୍କ ପକ୍ଷରୁ ସାକ୍ଷ୍ୟ ଦେଇଥିଲେ । ଦୁଇଜଣ ପୁଲିସ କନେଷ୍ଟବଲଙ୍କ ବିରୁଦ୍ଧରେ ଆସିଥିବା ଅଭିଯୋଗ ଯେପରି ପୂରା ମିଥ୍ୟା ବୋଲି ପ୍ରମାଣିତ ହୁଏ ସେଥି ମର୍ମରେ ସାକ୍ଷୀମାନେ ଯେପରି ଜମାନବନ୍ଦି ଦିଅନ୍ତି ସରକାରଙ୍କ ପକ୍ଷରୁ ତହିଁର ଯଥାସାଧ୍ୟ ବ୍ୟବସ୍ଥା କରାଯାଇଥିଲା । ସେମାନେ ତାଙ୍କ ଜମାନବନ୍ଦିରେ ପ୍ରକାଶ କରିଥିଲେ ଯେ କେତେକ ଲୋକଙ୍କ ଆଖିରେ ସେମାନେ ହୀନ ପ୍ରତିପନ୍ନ ହୁଅନ୍ତି ଓ ଲୋକେ ସେମାନଙ୍କୁ ହେୟଜ୍ଞାନ କରି ଅପମାନ କରିଥାନ୍ତି । ଏପରିକି ସାଧାରଣ ସ୍ଥାନରେ ଲୋକେ ସେମାନଙ୍କୁ ବ୍ରିଟିଶ ସରକାରଙ୍କ ଗୋଲାମ ବୋଲି କହି ଘୃଣାରେ ଛେପ ପକାନ୍ତି । "ସମାଜ"ରେ ପ୍ରକାଶ ପାଇଥିବା ସମ୍ବାଦ ଯୋଗୁଁ ସାଧାରଣ ଲୋକେ ପୁଲିସ ବିଭାଗରେ ଚାକିରି କରୁଥିବା ଲୋକଙ୍କୁ ଯେ ପ୍ରକାଶ୍ୟ ଭାବରେ ଅପମାନିତ କରୁଛନ୍ତି, ଏହାହିଁ ପ୍ରମାଣ କରାଇବା ଲାଗି ମଧ୍ୟ ସରକାରଙ୍କ ପକ୍ଷରୁ ଆହୁରି ଅନେକ ଲୋକ ସାକ୍ଷ୍ୟ ଦେଇ-ଥିଲେ । 'ସମାଜ'ରେ ପୁଲିସର ଅତ୍ୟାଚାର ସମ୍ବନ୍ଧୀୟ ସମ୍ବାଦ ପ୍ରକାଶ ପାଇବା ଦ୍ୱାରା ତଳିଆ ପୁଲିସ କର୍ମଚାରୀମାନେ ବଡ଼ ମର୍ମାହତ ହୋଇଥିଲେ । ଏଣୁ ଏଥିର ସତ୍ୟାସତ୍ୟ ଅନୁସନ୍ଧାନ କରିବା ଲାଗି ସେମାନେ ସେମାନଙ୍କ ଉପରିସ୍ଥ ଅଫିସରମାନଙ୍କ ନିକଟରେ ଗୁହାରି କରି-ଥିଲେ । ଏଭଳି ସମ୍ବାଦରେ ସେମାନଙ୍କ ବିରୁଦ୍ଧରେ ଅଣାଯାଇଥିବା ଅଭିଯୋଗ ସମ୍ପୂର୍ଣ୍ଣ ମିଥ୍ୟା ତାହା ସେମାନେ ସେମାନଙ୍କ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ନିର୍ଭର ଭାବରେ ଜଣାଇ ଥିଲେ । ମୋର ଧାରଣା ତଳିଆ ପୁଲିସ କର୍ମଚାରୀମାନଙ୍କ ପ୍ରାର୍ଥନା ଅନୁସାରେ ଉଚ୍ଚପଦସ୍ଥ ପୁଲିସ ଅଫିସରମାନେ ଘଟଣାର ତଦନ୍ତ କରିଥିଲେ ଓ ଅଭିଯୋଗ ମିଥ୍ୟା ବୋଲି ରିପୋର୍ଟ କରିଥିଲେ । ଏ ରିପୋର୍ଟ ବଳରେ ବିହାର-ଓଡ଼ିଶାର ପୁଲିସ ଆଇ. ଜି. ଏହି ଅଭିଯୋଗ-ମୂଳକ ସମ୍ବାଦ ପ୍ରକାଶ କରିଥିବା ବ୍ୟକ୍ତିଙ୍କ ବିରୁଦ୍ଧରେ ମାନହାନି ମକଦ୍ଦମା ଦାଏର କରିବାକୁ ସରକାରଙ୍କୁ ଅନୁରୋଧ କରିଥିଲେ । ମାନହାନି ମକଦ୍ଦମା ଦାଏରି କରିବା ପୂର୍ବରୁ ଅଭିଯୋଗ ସମ୍ବନ୍ଧରେ ଆଉ ଏକ ବିଶେଷ ତଦନ୍ତ କରିବା ବିଜ୍ଞତାର କାର୍ଯ୍ୟ ହେବ ବୋଲି ସରକାର ଭାବିଥିଲେ; ମୋର ବିଶ୍ୱାସ । ଏଣୁ ଓଡ଼ିଶା ଡ଼ିଭିଜନର କମିଶନର ଘଟଣାସ୍ଥଳରେ

ଏକ ଗୁପ୍ତ ଅନୁସନ୍ଧାନ ଚଳାଇଲେ ବୋଲି ମୋର ଧାରଣା । ଅବଶ୍ୟ ଏ ଅନୁସନ୍ଧାନ ସମ୍ବନ୍ଧରେ ମୁଁ ନିଜେ କିଛି ଜାଣିନାହିଁ । ତେବେ ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ଦାଏର ହୋଇଥିବା ମୋକଦ୍ଦମାର ବିଚାର ଆରମ୍ଭ ହେବାର ଅଳ୍ପ କେତେଦିନ ପୂର୍ବେ କମିଶନର ସାହେବ ଥରେ ଖୋର୍ଦ୍ଧାକୁ ଆସିଥିବାର ମୁଁ ଜାଣେ ।

'ସମାଜ'ରେ ପ୍ରକାଶ ପାଇଥିବା ସମ୍ବାଦରେ ଅନ୍ୟତ୍ର ମଧ୍ୟ ଉଲ୍ଲେଖ ଥିଲା ଯେ ଯୁବକଟି ତାହାର ତରୁଣୀ ଭଉଣୀକୁ ବେଗୁନିଆ ହାଟ ନିକଟରେ ଗୋଟିଏ ଯାଗାରେ ବସାଇ ବାହାରକୁ ଯାଇଥିଲା । ଫେରି ଆସି ସେ ତାହାର ଭଉଣୀକୁ ସେଠାରେ ନ ପାଇ ହାଟ ନିକଟରେ ଥିବା ଦୁଇଜଣ ପୁଲିସ କନେଷ୍ଟବଲ ହାଟ ଘରେ ତାହାକୁ ଲୁଚାଇ ରଖିଛନ୍ତି ବୋଲି ତାହାର ସନ୍ଦେହ ହେଲା । ପୁଲିସ କନେଷ୍ଟବଲଙ୍କୁ ସେ ହାଟ ଘର ଖୋଲି ଦେବାପାଇଁ ଅତି ବ୍ୟାକୁଳ ଭାବରେ ପ୍ରାର୍ଥନା କରି ଜଣାଇଲେ ସୁଦ୍ଧା ସେମାନେ ତା କଥା ଶୁଣିଲେ ନାହିଁ କି ହାଟ ଘର ଖୋଲିଲେ ନାହିଁ । ଅନ୍ୟ କିଛି ଉପାୟ ନ ଦେଖି ସେ ହତାଶ ହୋଇ ପଡ଼ିଲା । ସେତିକିବେଳେ ହାଟ ସମ୍ମୁଖ ଦେଇ ଗୋଟିଏ ମଟରଗାଡ଼ି ଯାଉଥିଲା । ଯୁବକଟି ବିକଳରେ ଦୌଡ଼ିଯାଇ ରାସ୍ତା ଉପରେ ମଟରଗାଡ଼ି ଆଗରେ ଶୋଇପଡ଼ିଲା ଓ ମଟର ଅଟକିଲା । ସେହି ମଟରରେ ଖୋର୍ଦ୍ଧାର ସବ୍‌ଡିଭିଜନ ଅଫିସର ରାୟବାହାଦୁର ଅଜୟଚନ୍ଦ୍ର ଦାସ ଥିଲେ । ଯୁବକଟି ସବ୍‌ଡିଭିଜନ ଅଫିସର ରାୟବାହାଦୁର ଦାସଙ୍କୁ ଘଟଣା ଜଣାଇଲା । ଶ୍ରୀ ଦାସ ସଙ୍ଗେ ସଙ୍ଗେ ମଟରରୁ ଓହ୍ଲାଇ ହାଟ ପହରାରେ ଥିବା ଦୁଇଜଣ କନେଷ୍ଟବଲଙ୍କୁ ହାଟଘରର ଦୁଆର ଖୋଲି ସେହି ଘରେ ବନ୍ଦ କରି ରଖି-ଥିବା ସ୍ତ୍ରୀଲୋକକୁ ଛାଡ଼ି ଦେବା ଲାଗି ଆଦେଶ ଦେଲେ । କିନ୍ତୁ କନେଷ୍ଟବଳମାନେ ସବ୍‌ଡିଭିଜନ ଅଫିସରଙ୍କ ଏ ଆଦେଶ ନ ମାନିବାରୁ ସବ୍‌ଡିଭିଜନ ଅଫିସର ଶ୍ରୀ ଦାସ ନିଜେ ଗୋଇଠାମାରି କବାଟ ଖୋଲିଲେ । ଦୁଆର ଖୋଲିବା ପରେ ସେ ଦେଖିଲେ ଯେ ସ୍ତ୍ରୀଲୋକଟି ତାହାର ନିଜର ଲୁଗା ବେକରେ ବାନ୍ଧି ଗଳାରେ ଦଉଡ଼ି ଦେଇ ମରିଯାଇଛି । ଅପବାଦରୁ ରକ୍ଷା ପାଇବାଲାଗି ସେ ଦଉଡ଼ି ଦେଇ ମରିଥିବାର ସ୍ପଷ୍ଟ ଜଣାପଡ଼ୁଛି । ସବ୍‌ଡିଭିଜନ ଅଫିସର ଦୁଇଜଣ କନେଷ୍ଟବଲଙ୍କୁ ଗିରଫ କଲେ ଓ ସ୍ତ୍ରୀଲୋକଟିର ଶବକୁ ଡାକ୍ତର ମାଇନାପାଇଁ ଖୋର୍ଦ୍ଧା ପଠାଇଲେ । ସମ୍ବାଦରେ ଶେଷରେ ଉଲ୍ଲେଖ ଥିଲା ଯେ ଦୁଇଜଣ କନେଷ୍ଟବଲଙ୍କ ବିରୁଦ୍ଧରେ ଏହି ଅଭିଯୋଗ ଯଦି ସତ୍ୟହୁଏ ତାହାହେଲେ ଏହା ଅତି ସାଙ୍ଘାତିକ ।

ବେଗୁନିଆ ହାଟ ନିକଟରେ ଦୁଇଜଣ କନେଷ୍ଟବଲଙ୍କର ଗୋଟିଏ ସ୍ତ୍ରୀଲୋକ ଉପରେ ଅତ୍ୟାଚାର ସମ୍ବନ୍ଧରେ ଯେଉଁ ସମ୍ବାଦ 'ସମାଜ'ରେ ପ୍ରକାଶ ପାଇଲା ତାହା ତତ୍କାଳୀନ ସରକାରୀ ଟ୍ରାନ୍ସଲେଟର ରାୟ ସାହେବ ମଧୁସୂଦନ ଦାସ ଇଂରାଜୀରେ ଅନୁବାଦ କରି ସରକାରଙ୍କୁ ଦେଲେ । ଏହାର ଉପରେ ବିହାର-ଓଡ଼ିଶା ସରକାରଙ୍କ ଲିଗାଲ ରିମେମ୍ବ୍ରେନ୍ସରଙ୍କ ମତାମତ ନିଆଯାଇଥିଲା । ଏଣେ ପୁଲିସ ବିଭାଗର ଆଇ. ଜି. ବିହାର-ଓଡ଼ିଶା ସରକାରଙ୍କ ଚିଫ-ସେକ୍ରେଟାରୀଙ୍କ ନିକଟକୁ ପତ୍ର ଲେଖି 'ସମାଜ'ର ମୁଦ୍ରାକର, ପ୍ରକାଶକ ଓ ସମ୍ପାଦକ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ବିରୁଦ୍ଧରେ ମାନହାନି ମକଦ୍ଦମା କରିବାକୁ ମଧ୍ୟ ସରକାରଙ୍କୁ ଅନୁରୋଧ କରିଥିଲେ । ଲିଗାଲ ରିମେମ୍ବ୍ରେନ୍ସରଙ୍କ ଆଇନ ସମ୍ବନ୍ଧୀୟ ମତାମତ ଓ ଆଇ. ଜି.ଙ୍କ ଅନୁରୋଧ ବିଚାର କରି ସରକାର ଏ ସମ୍ବନ୍ଧରେ ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ମାନହାନି ଅଭିଯୋଗ ଆଣିବା ଲାଗି ପୁରୀ ଜିଲ୍ଲାର ତତ୍କାଳୀନ ଜିଲା ମାଜିଷ୍ଟ୍ରେଟ ରାୟବାହାଦୁର ଦୟାନିଧି ଦାସଙ୍କୁ ନିର୍ଦ୍ଦେଶ ଦେଲେ । ଜିଲାମାଜିଷ୍ଟ୍ରେଟ ମଧ୍ୟ ଭାରତୀୟ ପିଙ୍ଗଲକୋର୍ଡ଼ର ୪୯୯-୫୦୦ ଧାରା ଅନୁସାରେ ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ମାନହାନି ମୋକଦ୍ଦମା ଦାଏର କରିବାକୁ ଖୋର୍ଦ୍ଧାର ସବ୍‌ଡିଭିଜନ ଅଫିସର ରାୟବାହାଦୁର ଅଜୟଚନ୍ଦ୍ର ଦାସଙ୍କୁ ଆଦେଶ ଦେଲେ ।

ସେତେବେଳେ ମୁଁ ଖୋର୍ଦ୍ଧାରେ ସେକେଣ୍ଡ ଅଫିସର ରୂପେ ନିଯୁକ୍ତ ଥିଲି । ଡେପୁଟି ମାଜିଷ୍ଟ୍ରେଟ ଓ ଡେପୁଟି କଲେକ୍ଟର ରୂପେ ମୋର ଚାକିରୀକାଳ ସେତେବେଳକୁ ମାତ୍ର ସାଢ଼େ ୬ ବର୍ଷ ହୋଇଥାଏ । ଏ ଦୃଷ୍ଟିରୁ ସେତେବେଳେ ମୁଁ ଜଣେ ଜୁନିୟର ଅଫିସର କହିଲେ ଚଳେ । ଏହା ମାନହାନି ମକଦ୍ଦମା ଏକ ଗୁରୁତ୍ୱପୂର୍ଣ୍ଣ ମକଦ୍ଦମା । ଏଥିରେ ପୁଣି ସରକାରଙ୍କ ମୌଳିକ ସ୍ୱାର୍ଥଜଡ଼ିତ ରହିଛି । ଏଣୁ ଏଭଳି ଗୁରୁତ୍ୱପୂର୍ଣ୍ଣ ମକଦ୍ଦମାର ବିଚାର ମୋଭଳି ଅଳ୍ପ ଅଭିଜ୍ଞତାସମ୍ପନ୍ନ ଅଫିସରଙ୍କଦ୍ୱାରା କରାଇବା ଯୁକ୍ତିଯୁକ୍ତ ହେବ ନାହିଁ ବୋଲି ଜିଲାମାଜିଷ୍ଟ୍ରେଟ ଇଚ୍ଛାପ୍ରକାଶ କରିଥିବା ମୋର ଅନୁମାନ । ଏଣୁ ଖୋର୍ଦ୍ଧାର ସବ୍‌ଡିଭିଜନ ମାଜିଷ୍ଟ୍ରେଟ ନିଜେ ଏ ମକଦ୍ଦମାର ବିଚାର କରିବେ ବୋଲି ଜିଲା ମାଜିଷ୍ଟ୍ରେଟ ଆଦେଶ ଦେଲେ ।

ପଣ୍ଡିତ ଗୋପବନ୍ଧୁ ଦାସ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନର ମୁଖ୍ୟ ନେତା ଓ ପରିଚାଳକ ଏବଂ ଓଡ଼ିଶାର ପ୍ରିୟତମ ଓ ଅପ୍ରତିଦ୍ୱନ୍ଦ୍ୱୀ ଜନନାୟକ । ବ୍ରିଟିଶ ସରକାର ତାଙ୍କ ବିରୁଦ୍ଧରେ ଏ ଯେଉଁ ମାନହାନି ମକଦ୍ଦମା ଦାଏର କଲେ ସେଥିରେ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତି ନିଷ୍ଠୁର କଠୋର ଦଣ୍ଡବିଧାନ କରାଯିବ ଓ ସେ କୌଣସିମତେ ମୁକ୍ତିଲା

ଯାଇ ପାରିବେ ନାହିଁ ବୋଲି ସମସ୍ତଙ୍କ ନିଶ୍ଚିତ ଧାରଣା ଜନ୍ମିଥିଲା । ଖୋର୍ଦ୍ଧାର ସବ୍‌ଡ଼ିଭିଜନ ମାଜିଷ୍ଟ୍ରେଟ ରାୟବାହାଦୁର ଅଜୟଚନ୍ଦ୍ର ଦାସ ଦେଖିଲେ ଯେ ତାଙ୍କରି ଉପରେହିଁ ଏହି ମକଦ୍ଦମାର ବିଚାର ଦାୟିତ୍ୱ ପଡ଼ୁଛି । ଓଡ଼ିଶାର ବରେଣ୍ୟ ଓ ଜନପ୍ରିୟ ନେତାଙ୍କୁ ଦଣ୍ଡବିଧାନ ତାଙ୍କରଦ୍ୱାରା ହେବା ଫଳରେ ଭବିଷ୍ୟତରେ କାଳକାଳକୁ ଓଡ଼ିଶାର ଜାତୀୟ ଇତିହାସରେ ତାଙ୍କର ନାମ କାଳିମା ଲିପ୍ତ ହୋଇ ରହିବ । ଏହି ଚିନ୍ତା ତାଙ୍କୁ ବିଚଳିତ କଲା । ସେ ଜିଲା ମାଜିଷ୍ଟ୍ରେଟଙ୍କୁ ଓଲଟି ଲେଖିଲେ ଯେ ବେଗୁନିଆ ହାଟ ନିକଟରେ ଘଟିଥିବା ଘଟଣା ସମ୍ବନ୍ଧରେ ତାଙ୍କର ପ୍ରତ୍ୟକ୍ଷ ଜ୍ଞାନ ରହିଛି ବୋଲି ସମ୍ବାଦରେ ପ୍ରକାଶ ପାଇଛି । ଏଣୁ ଏହି ଘଟଣା ସଂକ୍ରାନ୍ତ ମକଦ୍ଦମାରେ ତାଙ୍କୁ ମଧ୍ୟ ସରକାରଙ୍କ ପକ୍ଷରୁ ସାକ୍ଷୀ ଦେବାକୁ ଡାକରା ଆସିପାରେ । ପୁଣି ଖୋର୍ଦ୍ଧାର ସେକେଣ୍ଡ ଅଫିସର ଶ୍ରୀ ସୁରେଶ-ଚନ୍ଦ୍ର ବୋଷ ଜଣେ ନୂଆ ଲୋକ । ସେ ଜଣେ ପୁରୁଣା ହାକିମ ନୁହନ୍ତି । ତାଙ୍କର ଅଭିଜ୍ଞତା ଖୁବ୍ କମ ଓ ତାଙ୍କର ଚାକିରି ମଧ୍ୟ ଅଳ୍ପଦିନର । ତେଣୁ ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ମକଦ୍ଦମାର ବିଚାର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ କରିବା କଦାପି ସମୀଚୀନ ହେବ ନାହିଁ । ଏହାଛଡ଼ା ଖୋର୍ଦ୍ଧାରେ ଏହି ମକଦ୍ଦମାର ବିଚାରରେ ଆସାମୀ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତି ଦଣ୍ଡବିଧାନ ଫଳରେ ଏଠା ପରିସ୍ଥିତି ଅତି ଜଟିଳ ହୋଇପଡ଼ିବ ଓ ନାନାପ୍ରକାର ଭୀଷଣ ଗଣ୍ଡଗୋଳ ଘଟି ଅବସ୍ଥା ଅସମ୍ଭାଳ ହୋଇପଡ଼ିବାର ଆଶଙ୍କା ରହିଛି । ଖୋର୍ଦ୍ଧା ହେଉଛି ସରକାରଙ୍କ ଖାସମାହାଲ ଅଞ୍ଚଳ । ସରକାର ହେଉଛନ୍ତି ଏ ଅଞ୍ଚଳର ଜମିଦାର । ଲୋକେ ଉତ୍ତେଜିତ ହୋଇ ସରକାରଙ୍କୁ ହୁଏତ ଖଜଣା ଦେବା ବନ୍ଦ କରି ଦେବେ, ସରକାରଙ୍କ ଦ୍ୱାରା ସଂରକ୍ଷିତ ଜଙ୍ଗଲମାନ କାଟି ପକାଇବେ ବା ନିଆଁ ଲଗାଇ ପୋଡ଼ିଦେବେ, ସରକାରୀ ସମ୍ପତ୍ତି ନଷ୍ଟ କରିବେ ଓ ନାନା ଲୁଟତରାଜ ଲଗାଇବେ । କେବଳ ସେତିକି ନୁହେଁ, ଏଭଳି ଉତ୍ତେଜନା ଓ ଗଣ୍ଡଗୋଳ ସୃଷ୍ଟି ହେବା ଫଳରେ ଖୋର୍ଦ୍ଧାରେ ଥିବା ସରକାରୀ ଅଫିସରଙ୍କ ଧନଜୀବନ ଉପରେ ମଧ୍ୟ ବିପଦର ସମ୍ଭାବନା ରହିଛି । ଏଭଳି ପରିସ୍ଥିତିରେ ଖୋର୍ଦ୍ଧାରେ ଏ ମକଦ୍ଦମାର ବିଚାର କରିବା କୌଣସିମତେ ବିଜ୍ଞତାର କାର୍ଯ୍ୟ ହେବନାହିଁ । ଏଣୁ ଏ ମକଦ୍ଦମାର ବିଚାର ଖୋର୍ଦ୍ଧାଠାରେ କରା ନ ଯାଇ ପୁରୀ ସଦରରେ କରାଯାଉ ବୋଲି ସେ ଜିଲାମାଜିଷ୍ଟ୍ରେଟଙ୍କୁ ଅନୁରୋଧ କଲେ ।

ସେତେବେଳେ ରାୟସାହେବ ନିକୁଞ୍ଜ ପୂଜାରୀ ପୁରୀ ସଦର ସବ୍‌ଡ଼ିଭିଜନ ଅଫିସର ଥାନ୍ତି । ଜିଲା ମାଜିଷ୍ଟ୍ରେଟ ପୁରୀ ସଦରରେ ଏ ମକଦ୍ଦମାର ବିଚାର କରିବା ସମ୍ପର୍କରେ ତାଙ୍କୁ ପରାମର୍ଶ ଦେଲେ । କିନ୍ତୁ ଶ୍ରୀଯୁକ୍ତ ପୂଜାରୀ ଏଥିରେ ମଙ୍ଗିଲେ ନାହିଁ ।

ସେ ଲେଖିଲେ ଯେ ଏ ମକଦ୍ଦମା ସଂକ୍ରାନ୍ତ ଘଟଣା ଖୋର୍ଦ୍ଧା ସବ୍‌ଡିଭିଜନ ଅଞ୍ଚଳରେ ଘଟିଥିବାର ପ୍ରକାଶ ପାଇଛି । ଏଣୁ ମକଦ୍ଦମାର ବିଚାର ଖୋର୍ଦ୍ଧାଠାରେ ହିଁ ହେବା ଉଚିତ; ପୁରୀ ସଦରରେ ହେବାର ପ୍ରଶ୍ନ ଉଠୁନାହିଁ ।

ଏସବୁ ବିଷୟର ବିଚାର କରି ପୁରୀଜିଲା ମାଜିଷ୍ଟ୍ରେଟ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ବିରୁଦ୍ଧରେ ମାନହାନି ମକଦ୍ଦମାର ବିଚାର ଖୋର୍ଦ୍ଧାଠାରେ ହିଁ ଚଳାଇବାର ସିଦ୍ଧାନ୍ତ କଲେ ଓ ଖୋର୍ଦ୍ଧା ସବ୍‌ଡିଭିଜନ ମାଜିଷ୍ଟ୍ରେଟଙ୍କୁ ତାହା ଜଣାଇଦେଲେ । ଏହାପରେ ମଧ୍ୟ ଖୋର୍ଦ୍ଧାର ସବ୍‌ଡିଭିଜନ ଅଫିସର ଖୋର୍ଦ୍ଧାରେ ଏ ମକଦ୍ଦମାର ବିଚାର କରାଇଲେ କି ବିଭ୍ରାଟ ଉପୁଜିବାର ଆଶଙ୍କା ରହିଛି ତାହା ପୁଣି ଥରେ ଚେତାଇ ଦେଇ ଖୋର୍ଦ୍ଧାଠାରେ ଏହା କରା ନ ଯାଉ ବୋଲି ଅନୁରୋଧ କଲେ । ସେ ଜଣାଇଲେ ଯେ ପୁରୀ ସଦରରେ ମକଦ୍ଦମାର ବିଚାର ଯଦି ଯୁକ୍ତିଯୁକ୍ତ ବୋଲି ବିବେଚିତ ନ ହୁଏ, ତେବେ ତାଙ୍କ ମତରେ ଏହା କଟକଠାରେ କିମ୍ବା ଓଡ଼ିଶାର ଅନ୍ୟ ଯେ କୌଣସି ଜିଲାରେ କରାଯାଉ; କିନ୍ତୁ କୌଣସିମତେ ଖୋର୍ଦ୍ଧାରେ କରା ନ ଯାଉ । ଏତେ ଲେଖାଲେଖି ଓ ପରାମର୍ଶ ସତ୍ତ୍ୱେ ଜିଲା ମାଜିଷ୍ଟ୍ରେଟ ତାଙ୍କ ପ୍ରସ୍ତାବକୁ ସମର୍ଥନ କଲେ ନାହିଁ ।

ଶେଷରେ ସବ୍‌ଡିଭିଜନ ଅଫିସର ଚରମଭାବରେ ଜିଲା ମାଜିଷ୍ଟ୍ରେଟଙ୍କୁ ଲେଖିଲେ ଯେ ଏ ମକଦ୍ଦମାର ବିଚାର ଖୋର୍ଦ୍ଧାଠାରେ ହେଲେ ଯେ ଏକ ବିରାଟ ଓ ବ୍ୟାପକ ବିପ୍ଲବ ସୃଷ୍ଟି ହେବ ସେଥିରେ ତାଙ୍କର ତିଳେମାତ୍ର ସନ୍ଦେହ ନାହିଁ । ପୁଣି ଏଭଳି ସାଙ୍ଘାତିକ ଧରଣର ଗଣ୍ଡଗୋଳ ଘଟି ଯେଉଁ ଅଣଆୟତ୍ତ ପରିସ୍ଥିତି ସୃଷ୍ଟି ହେବ ତହିଁର ପରିଣାମରେ ଯେ କେବଳ ନାନାକ୍ଷତି ଓ ବିପଦ ଘଟିବ ସେତିକି ନୁହେଁ, ତାଙ୍କର ସୁନାମରେ ମଧ୍ୟ ଆଞ୍ଚ ଆସିବ । ଦୀର୍ଘକାଳ ଧରି ଦକ୍ଷତା ଓ କର୍ମପଟୁତା ସହିତ ସେ ଶାସନ କାର୍ଯ୍ୟ ଚଳାଇ ପ୍ରଶଂସାଲାଭ କରି ଆସିଛନ୍ତି । ଏଣୁ କର୍ମଜୀବନର ଶେଷ କାଳରେ ସେ ଆଉ ବଦନାମ ବା କଳଙ୍କ ମୁଣ୍ଡାଇବାକୁ ଚାହାନ୍ତି ନାହିଁ । ଏସବୁ ସତ୍ତ୍ୱେ ଜିଲାମାଜିଷ୍ଟ୍ରେଟ ଯଦି ଖୋର୍ଦ୍ଧାରେ ହିଁ ଏ ମକଦ୍ଦମା ବିଚାର କରାଯିବ ବୋଲି ଶେଷ ସିଦ୍ଧାନ୍ତ କରନ୍ତି ତେବେ ତାଙ୍କୁ ପୂର୍ବରୁ ଖୋର୍ଦ୍ଧାରୁ ଅନ୍ୟତ୍ର ବଦଳି କରି ଦିଆଯାଉ । ସେ ପୁଣି ଜିଲାମାଜିଷ୍ଟ୍ରେଟଙ୍କୁ ଅନୁରୋଧ କଲେ ଯେ ଖୋର୍ଦ୍ଧାଠାରୁ ଅନ୍ୟସ୍ଥାନକୁ ମକଦ୍ଦମା ଉଠାଇ ନେଇଯିବା ଲାଗି ସରକାରଙ୍କ ମଞ୍ଜୁରି ଦରକାର । ଏଣୁ ଖୋର୍ଦ୍ଧାର ପରିସ୍ଥିତି ଦର୍ଶାଇ ଜିଲାମାଜିଷ୍ଟ୍ରେଟ ଏଥିଲାଗି ସରକାରଙ୍କଠାରୁ ଅନୁମତି ଆଣନ୍ତୁ; କିନ୍ତୁ କେଜାଣି କାହିଁକି ଜିଲାମାଜିଷ୍ଟ୍ରେଟ ସରକାରଙ୍କୁ ଏ ସମ୍ବନ୍ଧରେ

ଲେଖିବାପାଇଁ ଅନିଚ୍ଛା ପ୍ରକାଶ କଲେ ଓ ଅନ୍ୟ କେଉଁଠାରେ ଏ ମକଦ୍ଦମାର ବିଚାର କରି ନ ଯାଇ ଖୋର୍ଦ୍ଧାଠାରେ ହିଁ ବିଚାର ହେବ ବୋଲି ନିର୍ଦ୍ଧାର୍ଯ୍ୟ ଆଦେଶ ଦେଲେ । ଏହି ଆଦେଶ ଅନୁସାରେ ଖୋର୍ଦ୍ଧାଠାରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ବିରୁଦ୍ଧରେ ମାନହାନି ମକଦ୍ଦମା ଦାଏର ହେଲା । ପଣ୍ଡିତ ଗୋପବନ୍ଧୁଙ୍କ ଭଳି ଓଡ଼ିଶାର କୋଟି ଜନସାଧାରଣଙ୍କ ପୂଜ୍ୟ ବରେଣ୍ୟ ନେତାଙ୍କ ବିରୁଦ୍ଧରେ ଅଭିଯୋଗ ଓ ତାଙ୍କ ପ୍ରତି ଦଣ୍ଡଆଦେଶ ସହିତ ଜଡ଼ିତ ହୋଇ ସେ ନିଜକୁ ଓଡ଼ିଆ ଜାତିର ଭବିଷ୍ୟତ ବଂଶଧରମାନଙ୍କ ନିକଟରେ ଘୃଣ୍ୟ ପ୍ରତିପନ୍ନ କରିବାକୁ ଚାହିଁ ନ ଥିଲେ । ତେଣୁ ଯେଉଁଦିନ ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ମକଦ୍ଦମାର ବିଚାର ଆରମ୍ଭ ହେଲା, ସେଦିନ ସେ ଖୋର୍ଦ୍ଧାରେ ରହିଲେ ନାହିଁ । ଜାଣିଶୁଣି ଗସ୍ତରେ ଅନ୍ୟ ସ୍ଥାନକୁ ଚାଲିଗଲେ । ସବ୍‌ଡିଭିଜନ ମାଜିଷ୍ଟ୍ରେଟଙ୍କ ଅନୁପସ୍ଥିତିରେ ମକଦ୍ଦମାର ବିଚାର ଭାର ମୋ ଉପରେ ପଡ଼ିଲା । ସବ୍‌ଡିଭିଜନ ମାଜିଷ୍ଟ୍ରେଟ ଅନୁପସ୍ଥିତ ଥିବା ହେତୁ ମୋତେ ମକଦ୍ଦମାର ବିଚାର ଲାଗି ସବ୍‌ଡିଭିଜନ ମାଜିଷ୍ଟ୍ରେଟଙ୍କ ପୂର୍ଣ୍ଣ କ୍ଷମତା ଦିଆଗଲା । ସବ୍‌ଡିଭିଜନ ମାଜିଷ୍ଟ୍ରେଟଙ୍କ ଦାୟିତ୍ୱରେ ଦିଆଯାଇଥିବା ସବୁକାର୍ଯ୍ୟ ପରିଚାଳନାର ଭାର ମଧ୍ୟ ମୋ ଉପରେ ନ୍ୟସ୍ତ କରାଗଲା ।

ଏହାର କିଛିଦିନ ପରେ ଦିନେ ସକାଳେ ହଠାତ୍ ଆମ କୋର୍ଟର ପୁଲିସ ପ୍ରସିକ୍ୟୁଟର ବୋଧହୁଏ ତାଙ୍କ ନାମ ନରସିଂହଚରଣ ଦାସ, ବଙ୍ଗଳାରେ ମୋ ସହିତ ସାକ୍ଷାତ କରିବାକୁ ଆସିବାର ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗିଲା । ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ସରକାର ଯେ ମାନହାନି ମକଦ୍ଦମା ଦାଏର କରିବେ ଏବଂ ତହିଁର ବିଚାରର ଭାର ଯେ ମୋ ଉପରେ ନ୍ୟସ୍ତ ହେବ, ତାହା ମୁଁ ପ୍ରଥମେ ଏହାଙ୍କଠାରୁ ଶୁଣିଲି । ଏଭଳି ପରିସ୍ଥିତିରେ ପୁଲିସ ପ୍ରସିକ୍ୟୁଟର ମୋ ପାଖକୁ କାହିଁକି ଆସିଲେ, ତହିଁର କାରଣ ମୁଁ କିଛି ଅନୁମାନ କରିପାରିଲି ନାହିଁ । ସେ କହିଲେ "ଗୁରୁତ୍ୱପୂର୍ଣ୍ଣ ଅଭିଯୋଗମୂଳକ କେତେ-ଗୁଡ଼ିଏ ଦରଖାସ୍ତ ଆସିଛି । ସେଗୁଡ଼ିକ ଆଜି କୋର୍ଟରେ ହଜୁରଙ୍କ ପାଖରେ ଦାଖଲ ହେବ । ଏଗୁଡ଼ିକ ଉପରେ ହଜୁର ଯେଉଁ ଅର୍ଡ଼ର ଦେବେ, ତହିଁର ନକଲମାନ ଆଜି ଉପରଓଳି ସୁଦ୍ଧା ଟ୍ରେନରେ ପୁରୀକୁ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଓ ଜିଲା ମାଜିଷ୍ଟ୍ରେଟଙ୍କ ନିକଟକୁ ପଠାଇବାକୁ ହେବ; ଏହା ଖୁବ୍ ଜରୁରୀ । ଏଣୁ ଟିକିଏ ଚଞ୍ଚଳ କୋର୍ଟକୁ ଯାଇ ପ୍ରଥମେ ଏହିସବୁ ଦରଖାସ୍ତ ଗ୍ରହଣ କରି ତାହା ଉପରେ ଅର୍ଡ଼ର ଦେବାପାଇଁ ସେ ମୋତେ ଅନୁରୋଧ କରିଥିଲେ । ମୁଁ ତ ପ୍ରତିଦିନ ଠିକ୍ ସମୟରେ କୋର୍ଟକୁ ଯାଏ, ପୁଲିସ ପ୍ରସିକ୍ୟୁଟରଙ୍କଠାରୁ ଏକଥା ଶୁଣି ମୋତେ ବଡ଼ ବିଚିତ୍ର ଲାଗିଲା । ମୁଁ ବୁଝିପାରିଲି ଯେ

ମୋ ପାଖକୁ ତାଙ୍କର ଆସିବାର ଏହା ଅସଲ ଉଦ୍ଦେଶ୍ୟ ନୁହେ । ବଙ୍ଗଳାକୁ ମୋ ସହିତ ସାକ୍ଷାତ କରିବାକୁ ଆସିବାର ଏ ଗୋଟାଏ ଆଳ । ସତକୁ ସତ ସେ ମଧ୍ୟ ତାଙ୍କ ଉଦ୍ଦେଶ୍ୟ ପ୍ରକାଶ କଲେ । ସେ କହିଲେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ବିରୁଦ୍ଧରେ ମାନହାନି ମକଦ୍ଦମା ଦାଏର କରିବା ସମ୍ବନ୍ଧ ଲିଗାଲ ରିମେମ୍ବ୍ରାନ୍‌ସରଙ୍କ ମତାମତ; ଏହା ସହିତ ବିହାର-ଓଡ଼ିଶା ପୁଲିସ ଇନ୍‌ସପେକ୍‌ଟର ଜେନେରାଲଙ୍କ ନିକଟକୁ ଚିଫ୍-ସେକ୍ରେଟେରୀ ଲେଖିଥିବା ଚିଠି ଓ ତାହା ସହିତ ଓଡ଼ିଶା ସର୍କଲ ପୁଲିସ ଇନ୍‌ସପେକ୍‌ଟର ଜେନେରାଲଙ୍କ ନିକଟକୁ ଇନ୍‌ସପେକ୍‌ଟର ଜେନେରାଲ ଲେଖିଥିବା ଚିଠି ଏବଂ ଡେପୁଟି ପୁଲିସ ଇନ୍‌ସ-ପେକ୍‌ଟର ଜେନେରାଲ ପୁରୀର ପୁଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କ ନିକଟକୁ ଲେଖିଥିବା ଚିଠି ଆଦି କାଗଜପତ୍ର ମୋତେ ଦେଖାଇବା ଲାଗି ଆସିବା ତାଙ୍କର ଉଦ୍ଦେଶ୍ୟ । ମୁଁ ଜାଣିପାରିଲି ଯେ; ବାସ୍ତବରେ ଏହାହିଁ ତାଙ୍କର ଅସଲ କଥା । କେବଳ ତାଙ୍କର କାହିଁକି ତାଙ୍କର ଉପର କର୍ମଚାରୀମାନଙ୍କର—ଏପରିକି ବିହାର-ଓଡ଼ିଶା ସରକାରଙ୍କର ଉଦ୍ଦେଶ୍ୟ ମଧ୍ୟ ସେଇଆ ଥିଲା । ଏହି ମାନହାନି ମକଦ୍ଦମାର ଗୁରୁତ୍ୱ ଓ ଏଥିସହିତ ସରକାରଙ୍କ ସ୍ୱାର୍ଥ କପରି ଗଭୀରଭାବରେ ଜଡ଼ିତ ରହିଛି, ସେ ସମ୍ବନ୍ଧରେ ମୋତେ ଚେତାଇ ଦେବା ଓ ଠିକଣା ଭାବରେ ସରକାରଙ୍କ ସ୍ୱାର୍ଥରକ୍ଷା ଯେପରି ହେବ, ସେଥିଲାଗି ମୋ ଉପରେ ପ୍ରଭାବ ପକାଇ ମୋତେ ପ୍ରବର୍ତ୍ତାଇବା ପାଇଁ ସରକାରଙ୍କ ନିର୍ଦ୍ଦେଶ ଥିଲା । ପୁଲିସ ପ୍ରସିକ୍ୟୁଟରଙ୍କ ଜାଣନ୍ତି ଯେ, ମୁଁ ପ୍ରଥମେ ଯାଇ ପ୍ରସ୍ତୁତ ହୋଇ ରହିଥିବା ଫୌଜଦାରୀ ମକଦ୍ଦମାଗୁଡ଼ିକ ଷ୍ଟାଇପେଣ୍ଡିଆରୀ ମାଜିଷ୍ଟ୍ରେଟ କୋର୍ଟକୁ ପଠାଉଥିବେ ଓ ସାଧାରଣ ମୁଡଫର୍କା ବା କମ ଗୁରୁତ୍ୱପୂର୍ଣ୍ଣ ମକଦ୍ଦମାଗୁଡ଼ିକୁ ଦରକାର ପଡ଼ିଲେ ଅନରାରୀ ମାଜିଷ୍ଟ୍ରେଟମାନଙ୍କ ବିଚାରଲାଗି ଦେଉଥିବେ । କାରଣ ସେତେବେଳର ଅନରାରୀ ମାଜିଷ୍ଟ୍ରେଟମାନଙ୍କ ସୁବିଚାର ଓ ନିରପେକ୍ଷତାରେ ମୋର କେମିତି ଗୋଟାଏ ସନ୍ଦେହ ଥିଲା । ସେତେବେଳେ ଖୋର୍ଦ୍ଧାରେ ସବ୍‌ଡିଭିଜନାଲ ଅଫିସରଙ୍କ ଛଡ଼ା ମୁଁ ବୋଧହୁଏ ଏକମାତ୍ର ଷ୍ଟାଇପେଣ୍ଡିଆରୀ ମାଜିଷ୍ଟ୍ରେଟ ଥିଲି ।

ଲିଗାଲ ରିମେମ୍ବ୍ରାନ୍‌ସର ମାନହାନି ଅଭିଯୋଗ ସମ୍ବନ୍ଧ ତାଙ୍କର ମତାମତରେ ଏକ ପରାମର୍ଶ ଦେଇଥିଲେ ଯେ, ଧୌଲିକେଣ୍ଟି ଉପରେ ବେଗୁନିଆ ଥାନାର ଦୁଇଜଣ କନେଷ୍ଟବଲ ଅତ୍ୟାଚାର କରିଥିଲେ ବୋଲି ଯାହା ସମ୍ବାଦରେ ପ୍ରକାଶ ପାଇଛି ସେ ସମ୍ପର୍କରେ ଘଟଣା ତାରିଖରେ ବେଗୁନିଆଁ ଥାନାରେ ଯେଉଁସବୁ ପୁଲିସ କନେଷ୍ଟବଲ ଥିଲେ, ପ୍ରତ୍ୟେକେ ସ୍ୱତନ୍ତ୍ର ଭାବରେ 'ସମାଜ'ର ମୁଦ୍ରାକର, ପ୍ରକାଶକ ଓ ସମ୍ପାଦକ ପଣ୍ଡିତ

ଗୋପବନ୍ଧୁ ଦାସଙ୍କ ବିରୁଦ୍ଧରେ ଦରଖାସ୍ତ କରି ଅଭିଯୋଗ ଆଗତ କରିବା ଉଚିତ। ଲିଗାଲ ରିମେମବ୍ରାନ୍ସରଙ୍କ ଏହି ମତ ସମ୍ବନ୍ଧରେ ପୁଲିସ ପ୍ରସିକ୍ୟୁଟର ମୋ ସହିତ ଟିକିନିଖି ଭାବରେ ଆଲୋଚନା କଲେ। ଯାହାହେଉ ଲିଗାଲରିମେମବ୍ରାନ୍ସରଙ୍କ ପରାମର୍ଶ ଅନୁସାରେ ଠିକଣା ଭାବରେ କାର୍ଯ୍ୟ ହେଲା। ଅବଶ୍ୟ ବେଗୁନିଆ ଥାନାର ଗୁରିଜଣ ଯାକ କନେଷ୍ଟବଲ ଘଟଣା ତାରିଖରେ ଉକ୍ତ ସ୍ଥାନରେ ନ ଥିଲେ। ତାଙ୍କ ମଧ୍ୟରୁ କେବଳ ମାତ୍ର ଦୁଇ ଜଣ ଥିଲେ ଓ ବାକିତକ ଅନ୍ୟତ୍ର ନିଯୁକ୍ତ ଥିଲେ। ଗୁରି ଜଣଯାକ କନେଷ୍ଟବଲଙ୍କ ମୌଖିକ ଅଭିଯୋଗ ମଧ୍ୟ ମୁଁ ଗ୍ରହଣ କରି ରେକର୍ଡ଼ କଲି। ଅଭିଯୋଗ ରେକର୍ଡ଼ ହୋଇ ସାରିଲା ପରେ ଭାରତୀୟ ପିଙ୍ଗଲ କୋର୍ଡ଼ର ୪୯୯।୫୦୦ ଧାରା ଅନୁସାରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ନିର୍ଦ୍ଦିଷ୍ଟ ତାରିଖରେ କୋର୍ଟରେ ଆସି ହାଜର ହେବାଲାଗି ସମନ ଜାରି କରିବାପାଇଁ ମୁଁ ଆଦେଶ ଦେଲି। ସମନ ଜାରି ହେଲା। ପଣ୍ଡିତ ଗୋପବନ୍ଧୁ ସମନ ପାଇ ନିର୍ଦ୍ଦିଷ୍ଟ ତାରିଖରେ କୋର୍ଟରେ ହାଜର ହେଲେ। ଆଇନ ଚକ୍ଷୁରେ ସେତେବେଳେ ସେ ଜଣେ ଆସାମୀ। କିନ୍ତୁ ତଥାପି ଭଦ୍ରବ୍ୟକ୍ତିଙ୍କ ଉପଯୁକ୍ତ ସମ୍ମାନ ଦାନ ଦୃଷ୍ଟିରୁ କୋର୍ଟର କାଠଗଡ଼ା ଭିତରେ ବସିବାକୁ ମୁଁ ତାଙ୍କୁ ଆସନ ଦେଲି।

ସାକ୍ଷୀମାନଙ୍କର ଜମାନବନ୍ଦୀ ଆରମ୍ଭ ହେଲା। ସରକାରଙ୍କ ପକ୍ଷରୁ ପ୍ରଥମ ସାକ୍ଷୀ ହେଉଛନ୍ତି ପୁରୀର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର ଗାଇସ। ପୁରୀର ସରକାରୀ ଓକିଲ ଓ ପବ୍ଲିକ ପ୍ରସିକ୍ୟୁଟର ଶ୍ରୀ ରାଧାଶ୍ୟାମ ମହାନ୍ତି ସରକାରଙ୍କ ପକ୍ଷରୁ ମକଦ୍ଦମା ଚଳାଉଥାନ୍ତି ଓ ଖୋର୍ଦ୍ଧା ସବ୍‌ଡ଼ିଭିଜନ କୋର୍ଟର ପୋଲିସ ପ୍ରସିକ୍ୟୁଟର ତାଙ୍କୁ ସାହାଯ୍ୟ କରୁଥାନ୍ତି। ଆମ ପ୍ରଥମ ଓ ପ୍ରଧାନ ସରକାରୀ ସାକ୍ଷୀ ମିଷ୍ଟର ଗାଇସଙ୍କ ଜମାନବନ୍ଦୀ ଶେଷ ହେଲା। ଏହି ସାକ୍ଷୀଙ୍କୁ ଜେରା କରିବାପାଇଁ ଆସାମୀ ଗୋପବନ୍ଧୁ ଦାସ ଗୁହାନ୍ତି କି ବୋଲି ମୁଁ ତାଙ୍କୁ ପଗ୍ଚରିଲି। ମୋ ପ୍ରଶ୍ନର ଉତ୍ତର ଦେଇ ସେ କହିଲେ "ମୁଁ ଆଗେ ଜାଣିବାକୁ ଗୁହେଁ, ମୋ ବିରୁଦ୍ଧରେ ଦାଏର ହୋଇଥିବା ମକଦ୍ଦମା ଏହି କୋର୍ଟ ବିଗ୍ଚର କରିବେ ନା ଏହା ଦୋହରା ବିଗ୍ଚରଲାଗି କଟକ ପଠାଯିବ ?" ଏଭଳି ପ୍ରଶ୍ନରେ ମୁଁ ହଠାତ୍ କି ଉତ୍ତର ଦେବି କିଛି ସ୍ଥିର କରିପାରିଲି ନାହିଁ।

ପଣ୍ଡିତ ଗୋପବନ୍ଧୁଙ୍କ ପ୍ରଶ୍ନରେ ମୁଁ କ୍ଷଣକପାଇଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲେ ସୁଦ୍ଧା ସଙ୍ଗେ ସଙ୍ଗେ ଉତ୍ତର ଦେଇ କହିଲି, "ମୁଁ ଜାଣେ, ଆପଣ ଓକିଲାତି ପରୀକ୍ଷାରେ ପାଶ କରି ବି. ଏଲ୍‌. ହୋଇଛନ୍ତି। ଆପଣ ଜଣେ ଆଇନଜ୍ଞ ବ୍ୟକ୍ତି। ଅବଶ୍ୟ

ଆପଣ ଓକିଲାତ କରନ୍ତି କି ନା ମୋତେ ଜଣା ନାହିଁ । ତେବେ ଆପଣଙ୍କ ପ୍ରଶ୍ନର ଉତ୍ତରରେ ଆପଣ କୋର୍ଟଙ୍କଠାରୁ ଅସ୍ତି କି ନାସ୍ତି ବାଣୀ ଶୁଣିବାକୁ ଚାହାନ୍ତି । "ଅନ୍ୟ କୋର୍ଟକୁ ଏ ମକଦ୍ଦମା ସ୍ଥାନାନ୍ତରିତ କରିବା ଦଗରେ ମୋର ହିଁ ଭରିବା ଦ୍ୱାରା ଉପର ଅଦାଲତରେ ଏଥିପାଇଁ ଦରଖାସ୍ତ କରିବା ଲାଗି ଏହା ଏକ ପ୍ରଧାନ କାରଣ ବୋଲି ବିବେଚିତ ହେବ—ଏ ବିଷୟ ଆପଣଙ୍କୁ ଭଲଭାବରେ ଜଣା । ଏପର୍ଯ୍ୟନ୍ତ ଏହି ମକଦ୍ଦମାରେ କେବଳ ଜଣେ ମାତ୍ର ସାକ୍ଷୀଙ୍କ ଜମାନବନ୍ଦୀ ନିଆଯାଇଛି । ପୁଣି ଫିରାଦବାଦୀ ପକ୍ଷରୁ ମକଦ୍ଦମାରେ କୌଣସି ପ୍ରକାରେ ଆତ୍ମପକ୍ଷ ସମର୍ଥନ କରାଯାଇ ନାହିଁ । ଏପରି ଅବସ୍ଥାରେ ମକଦ୍ଦମା ଦୋହରାକୁ ପଠାଇବା ସମ୍ବନ୍ଧରେ ମୋର ହିଁ ଭରିବା ଅର୍ଥ ଅନ୍ୟ କୌଣସି ସାକ୍ଷ୍ୟ ନ ନେଇ ଆସାମୀକୁ ଦୋଷୀ ସାବ୍ୟସ୍ତ କରିବା । ଗୋଟିଏ ମାତ୍ର ସାକ୍ଷୀର ଜମାନବନ୍ଦୀ ନେଇ ଆସାମୀଙ୍କୁ ଦୋଷୀ ସାବ୍ୟସ୍ତ କରିବା ସୁବିଚାରକର କାର୍ଯ୍ୟ ନୁହେଁ । ଏଥିରେ ବିଚାରକ ସବୁକଥା ନ ବିଚାରି ଆସାମୀକୁ ପୂର୍ବରୁ ଦୋଷୀ ବୋଲି ସିଦ୍ଧାନ୍ତ କରିବା ନ୍ୟାୟ ନୁହେଁ । ତେଣୁ ଆପଣଙ୍କ ପ୍ରଶ୍ନର ଉତ୍ତରରେ ହିଁ କି ନା ବୋଲି କହିବାର ମୋର ଅଧିକାର ନାହିଁ । ଏହା ମୋର ନୀତି ବିରୁଦ୍ଧ ଓ ଆଇନ ବିରୁଦ୍ଧ ମଧ୍ୟ । ଏଭଳି ପରିସ୍ଥିତିରେ ଆପଣ କୋର୍ଟଙ୍କୁ ଏ ପ୍ରକାର ପ୍ରଶ୍ନ ପଚାରିବାର ଯଥାର୍ଥତା କେତେଦୂର ତାହା ବିଚାରନ୍ତୁ ।'

ପଣ୍ଡିତ ଗୋପବନ୍ଧୁ ମୋ ପ୍ରଶ୍ନର କିଛି ଉତ୍ତର ଦେଲେ ନାହିଁ । ମୋର ଧାରଣା ହେଲା, କୌଣସି ଜଣେ ବିଚକ୍ଷଣ ଓକିଲଙ୍କ ପରାମର୍ଶରେ ପଣ୍ଡିତ ଗୋପବନ୍ଧୁ ଏଭଳି ଏକ ଜଟିଳ ପ୍ରଶ୍ନ ପଚାରିଛନ୍ତି ।

ପ୍ରଥମ ଓ ପ୍ରଧାନ ସରକାରୀ ସାକ୍ଷୀ ମିଷ୍ଟର ଗାଇସଙ୍କୁ ସେ ଜେରା କରିବାକୁ ଚାହାନ୍ତି କି ବୋଲି ମୁଁ ପୁଣି ଥରେ ତାଙ୍କୁ ପଚାରିଲି । ସେ ଉତ୍ତରରେ କହିଲେ, ମୁଁ ଜଣେ ଅହିଂସବାଦୀ ଅସହଯୋଗୀ । ଜଣେ ଅସହଯୋଗୀରୂପେ ମୁଁ ବ୍ରିଟିଶ ସରକାରଙ୍କ ଅଦାଲତକୁ ସ୍ୱୀକାର କରେ ନାହିଁ କି ବ୍ରିଟିଶ ଅଦାଲତ ଯେଉଁ ନ୍ୟାୟ ଦିଅନ୍ତି ମୁଁ ତାହା ମାନେନାହିଁ । ଏ ଦୃଷ୍ଟିରୁ ସାକ୍ଷୀଙ୍କୁ ଜେରା କରିବାକୁ ସେ ଅନିଚ୍ଛା ପ୍ରକାଶ କଲେ ଓ ଅନ୍ୟ କୌଣସି ସାକ୍ଷୀଙ୍କୁ ଜେରା କରିବେ ନାହିଁ ବୋଲି କହିଲେ ।

ପ୍ରଥମ ସରକାରୀ ସାକ୍ଷୀଙ୍କ ଜମାନବନ୍ଦୀ ଶେଷ ହେଲାପରେ ସେ ଦିନର କୋର୍ଟ କାମ ସରିଲା । ଏହା ପର ତାରିଖରେ ମକଦ୍ଦମାର ଶୁଣାଣି ବେଳକୁ ଆସାମୀଙ୍କୁ ପୁଣି କୋର୍ଟରେ ହାଜର ହେବାକୁ ହେବ । ଏଣୁ କେତେ ଟଙ୍କାର ଜାମିନରେ ଆସାମୀ ପଣ୍ଡିତ

ଗୋପବନ୍ଧୁଙ୍କୁ ବର୍ତ୍ତମାନ ଛାଡ଼ି ଦିଆଯାଇ ପାରେ ବୋଲି ମୁଁ ଅର୍ଡ଼ର ସିଟରେ ଆଦେଶ ଲେଖିଲି । ଏଭଳି ଆଦେଶ ପଣ୍ଡିତ ଗୋପବନ୍ଧୁଙ୍କ କେତେ ଜଣ ବନ୍ଧୁ ଓ ସହକର୍ମୀଙ୍କୁ ଏକ ସମସ୍ୟାରେ ପକାଇଲା । ସେମାନେ ଦେଖିଲେ ଯେ ଅସହଯୋଗୀ ପଣ୍ଡିତ ଗୋପବନ୍ଧୁ ତ କେବେହେଲେ ଜାମିନରେ ଛାଡ଼ ପାଇବାପାଇଁ ଦରଖାସ୍ତ କରିବେ ନାହିଁ । ଏଣେ ସେତେବେଳେ କୌଣସି ଉଚ୍ଚବର୍ଣ୍ଣର ଭଦ୍ରବ୍ୟକ୍ତି ଦଣ୍ଡପାଇ ଜେଲ ଭୋଗିଲେ କିମ୍ବା ବିଚାରାଧୀନ ଅବସ୍ଥାରେ ଜେଲଖାନାରେ ରହିଲେ ସମାଜରେ ଜାତିଚ୍ୟୁତ ବୋଲି ପ୍ରତିପନ୍ନ ହେଉଥିଲେ । ତେଣୁ ପଣ୍ଡିତ ଗୋପବନ୍ଧୁଙ୍କ ଭଳି ବ୍ୟକ୍ତି କିପରି ଜେଲଖାନାକୁ ନ ଯିବେ ଓ ଜାମିନରେ ଛାଡ଼ ପାଇବେ, ତହିଁର କୌଣସି କୂଳ କିନାର ସେମାନେ ଖୋଜି ପାଉ ନ ଥିଲେ । ସେମାନଙ୍କ ଭିତରେ ମଧ୍ୟ ଏ ପ୍ରସଙ୍ଗରେ ଖୁବ୍ ଜୋରସୋର ଆଲୋଚନା ଚାଲିଥାଏ । କିନ୍ତୁ ପଣ୍ଡିତ ଗୋପବନ୍ଧୁ ନିଶ୍ଚିନ୍ତ ନିର୍ବିକାର ଭାବରେ ହସ ହସ ମୁହଁରେ ବସିଥାନ୍ତି ।

ମୁଁ ଦେଖିଲି ଯେ, ଅହିଂସ ଅସହଯୋଗ ନୀତି ଅନୁସରଣ କରୁଥିବା ଆସାମୀ ଯେ କି ବ୍ରିଟିଶ କୋର୍ଟକୁ ସ୍ୱୀକାର କରନ୍ତି ନାହିଁ, ତାଙ୍କୁ ଜାମିନରେ ଖଲାସ କରାଇ ନେବା ଲାଗି ଦରଖାସ୍ତ କରିବା କିପରି ଅସୁବିଧାଜନକ, ତାହା ଗୋପବନ୍ଧୁଙ୍କ ସହକର୍ମୀମାନେ ଭାବୁଛନ୍ତି ଓ ସେମାନଙ୍କ ମନରେ ଏହା ଯେକି ଉଦ୍‌ବେଗ ପ୍ରକାଶ ପାଉଛି । ପଣ୍ଡିତ ଗୋପବନ୍ଧୁ ଜେଲଖାନାକୁ ଯାଆନ୍ତୁ ଏହା ମୋର ଆନ୍ତରିକ ଇଚ୍ଛା ନ ଥିଲା । ଏଣୁ ମୁଁ ତାଙ୍କୁ ଜାମିନ ମଞ୍ଜୁର କଲି ଓ ଭାବିଲି ଯେ ସେ ଅନାୟାସରେ ଜାମିନ ଦାଖଲ କରିବେ । ଅବଶ୍ୟ ଅସହଯୋଗୀ ହିସାବରେ ଜାମିନରେ ଛାଡ଼ ପାଇବାପାଇଁ ପଣ୍ଡିତ ଗୋପବନ୍ଧୁଙ୍କ ପକ୍ଷରେ ଜାମିନପାଇଁ ଆବେଦନ କରିବା ସମ୍ଭବ ନୁହେଁ । କିଛିକ୍ଷଣ ଆଲୋଚନା ପରେ ପଣ୍ଡିତ ଗୋପବନ୍ଧୁଙ୍କ ସହକର୍ମୀମାନେ ଏକ ଜାମିନ ଦରଖାସ୍ତ ଦାଖଲ କଲେ । ପଣ୍ଡିତ ଗୋପବନ୍ଧୁଙ୍କୁ ଜାମିନରେ ଖଲାସ କରି ଦିଆଯାଉ ବୋଲି ଜନସାଧାରଣଙ୍କ ପକ୍ଷରୁ ଏ ଦରଖାସ୍ତରେ ପ୍ରାର୍ଥନା କରାଯାଇଥିଲା ।

ଏହି ଦରଖାସ୍ତ ଉପରେ ମୁଁ ଲିଖିତ ଆଦେଶ ଦେଲି ଯେ ଆସାମୀ ନିଜେ ଜାମିନରେ ଛାଡ଼ ପାଇବାଲାଗି ଦରଖାସ୍ତ କରିବାକୁ ଅନିଚ୍ଛା ପ୍ରକାଶ କରୁଥିବା ସ୍ଥଳେ ଜନସାଧାରଣଙ୍କ ପକ୍ଷରୁ ତାଙ୍କୁ ଜାମିନ ଦେବାଲାଗି ଆବେଦନ କରିବା ଫୌଜଦାରୀ କାର୍ଯ୍ୟବିଧି ଆଇନର ବ୍ୟବସ୍ଥାରେ ନାହିଁ । ଏହି କାରଣରୁ ଜନସାଧାରଣଙ୍କ ପକ୍ଷରୁ ଦିଆଯାଇଥିବା ଜାମିନ ଦରଖାସ୍ତ ମୁଁ ଅଗ୍ରାହ୍ୟ କଲି । ଏପରି ଅବସ୍ଥାରେ ଆସାମୀ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ

ଜେଲଖାନାକୁ ପଠାଇବା ଛଡ଼ା ଅନ୍ୟ କୌଣସି ଉପାୟ ନ ଥିଲା । ଏହିପରି ଭାବରେ ମକଦ୍ଦମାର ପ୍ରଥମ ଦିନର ଶୁଣାଣି ଓ କୋର୍ଟ କାମ ସରିଲା । ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର ଗାଇସଙ୍କ ଛଡ଼ା ସରକାରଙ୍କ ପକ୍ଷର ଆହୁରି ଅନେକ ସାକ୍ଷୀଙ୍କ ଜମାନବନ୍ଦୀ ନେବାକୁ ବାକି ଥିଲା । ଏହା ପରି ତାରିଖମାନଙ୍କରେ କ୍ରମେ ଏହିସବୁ ସାକ୍ଷୀମାନଙ୍କ ଜମାନବନ୍ଦୀ ନିଆ ଯାଇଥିଲା ।

ପ୍ରତି ତାରିଖରେ ମକଦ୍ଦମାର ଶୁଣାଣି ଆରମ୍ଭ ହେବା ପୂର୍ବରୁ ମୁଁ ଦେଖିଛି ଯେ, ସବ୍‌ଜେଲରୁ ପଣ୍ଡିତ ଗୋପବନ୍ଧୁଙ୍କୁ କୋର୍ଟକୁ ଅଣାଯିବା ବେଳେ ଫୁଲମାଳରେ ସେ ଯେପରି ପୋତି ହୋଇ ପଡ଼ୁଥାନ୍ତି । ନାନା ଜାତୀୟ ସଙ୍ଗୀତ ଓ ସଙ୍କୀର୍ତ୍ତନ ସହିତ ଏକ ବିରାଟ ଜନତା ତାଙ୍କୁ ପ୍ରତିଦିନ ପଛୁଆରରେ କୋର୍ଟକୁ ଆଣନ୍ତି । ଏହାଛଡ଼ା ପ୍ରତି ତାରିଖରେ ହଜାର ହଜାର ଲୋକ କୋର୍ଟ ହତା ଭିତରେ ଓ କଚେରୀ ଗୃହପଟେ ଜମା ହୋଇ ପଣ୍ଡିତ ଗୋପବନ୍ଧୁଙ୍କ ବିଚାର ବ୍ୟାକୁଳ ଭାବରେ ଲକ୍ଷ୍ୟ କରୁଥିବା ମଧ୍ୟ ମୁଁ ଦେଖିଛି । କେବଳ ସେତିକି ନୁହେଁ, ପ୍ରତି ତାରିଖରେ ଶୁଣାଣି ସରିବା ପରେ ମୋ ବଙ୍ଗଳା ପାଖ ପଡ଼ିଆରେ ସନ୍ଧ୍ୟାବେଳେ ବିରାଟ ସାଧାରଣସଭା ମଧ୍ୟ ହେଉଥିଲା ।

ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ମାନହାନି ମକଦ୍ଦମାର ଶୁଣାଣି ଚାଲିଥିଲାବେଳେ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର ଗାଇସ ପ୍ରତି ତାରିଖରେ ପୁରୀକୁ ଆସି କୋର୍ଟରେ ଜମାନବନ୍ଦୀ ଲକ୍ଷ୍ୟ କରୁଥିଲେ । ଗୋଟିଏ ତାରିଖରେ କଚେରୀ ହତା ଭିତରେ ଓ ଗୃହପଟେ ଅସମ୍ଭାଳ ଲୋକଭିଡ଼ ହେଲା । ଲୋକଗହଳିରେ ଏଭଳି ପରିସ୍ଥିତି ହେଲା ଯେ, କୋର୍ଟ ଭିତରେ ବସି ଧୀରସ୍ଥିର ଭାବରେ କାର୍ଯ୍ୟ କରିବା ମୋ ପକ୍ଷରେ ଅସମ୍ଭବ ହୋଇ ଉଠିଲା । ବହୁ ଉଦ୍ୟମ ସତ୍ତ୍ୱେ ଲୋକଙ୍କୁ ନାନାଭାବରେ ଅନୁରୋଧ କରି ବୁଝାଇଲେ ମଧ୍ୟ ଗୋଳମାଳ ବନ୍ଦ ହେଲା ନାହିଁ । ତହୁଁ ମୁଁ ବାଧ୍ୟ ହୋଇ ବାହାରେ କଚେରୀ ହତା ଭିତରେ ବିଚାର କରିବାଲାଗି ସିଦ୍ଧାନ୍ତ କଲି । କୋର୍ଟ ନାଜରଙ୍କୁ ଡକାଇ ମୁଁ କଚେରୀ ହତା ଭିତରେ ଥିବା ଗୋଟିଏ ବଡ଼ ଗଛ ତଳେ ଆବଶ୍ୟକମତେ ଟେବୁଲ, ଚୌକି ବେଞ୍ଚ ଆଦି ଚଞ୍ଚଳ ପକାଇବା ଲାଗି ଆଦେଶ ଦେଲି । ଆଦେଶ ପାଳିତ ହେଲା । ମୁଁ କୋର୍ଟର କର୍ମଚାରୀ, ଆସାମୀ ଓକିଲଙ୍କୁ ସଙ୍ଗରେ ନେଇ ସେଠାକୁ ଗଲି । ଯେଉଁ ସାଧାରଣ ଭଦ୍ରବ୍ୟକ୍ତିମାନେ ମକଦ୍ଦମା ବିଚାର ଦେଖିବା ପାଇଁ ଆମ ସଙ୍ଗେ ଗଲେ ସେମାନଙ୍କୁ ମଧ୍ୟସ୍ଥ ବସିବା ଲାଗି ସ୍ଥାନ ଦିଆଗଲା ।

ମୁଁ କାର୍ଯ୍ୟ ଆରମ୍ଭ କଲି । ଚାରିଆଡ଼େ ଜନସମୁଦ୍ର ଘେରି ରହିଥାନ୍ତି । ମୋର ମନେପଡ଼ୁଛି ଦୁଇଦିନ ଏହିପରି ବାହାରେ ବିଚାର ଚାଲିଥିଲି । ଯେ କେତୋଟି ଦିନ ବାହାରେ ଖୋଲା ଯାଗାରେ ବିଚାର ଚାଲିଲା, ସେହି ଦିନମାନଙ୍କରେ ବିରାଟ ଜନତା କୌଣସି ଗୋଲମାଲ ବା ପ୍ରାଟିଭୁଣ୍ଡ ନ କରି ଶାନ୍ତ ରହୁଥିବାର ମୁଁ ଲକ୍ଷ୍ୟ କରିଛି । ଏହାର କାରଣ ଲୋକେ ହାକିମଙ୍କୁ ଓ ଆସାମୀ ପଣ୍ଡିତ ଗୋପବନ୍ଧୁଙ୍କୁ ଦେଖି ପାରୁଥିଲେ ଓ ମକଦ୍ଦମା ବିଚାରବେଳେ ଜମାନବନ୍ଦି ଓ ଆଲୋଚନା ଆଦି ଶୁଣି ପାରୁଥିଲେ । ଖୋର୍ଦ୍ଧା ସହର ବାହାରୁ ଦୂରଦୂରାନ୍ତରୁ ବହୁତ ଲୋକ ଏ ବିଚାର ଦେଖିବାକୁ ଆସିଥିଲେ । ମକଦ୍ଦମାର ଶୁଣାଣି ଯେତେଦିନ ଚାଲିଲା ପ୍ରତିଦିନ ସନ୍ଧ୍ୟାରେ ସେମାନେ ପାଙ୍କ ପଡ଼ିଆରେ ଯାଇ ବିରାଟ ସାଧାରଣ ସଭାମାନ କରୁଥିଲେ ।

ଆଇନ ଅନୁସାରେ ଏହି ଧରଣର ମକଦ୍ଦମାରେ ଆସାମୀ ବିରୁଦ୍ଧରେ ପ୍ରଥମେ ନିର୍ଦ୍ଦିଷ୍ଟ ଅଭିଯୋଗ ଆଗତ କରିବା ହେଉଛି ନିୟମ । ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ତେଣୁ ଭାରତୀୟ ପିଙ୍ଗଲକୋଡ଼ର ୪୧୪।୫୦୦ ଧାରା ଅନୁସାରେ ଅଭିଯୋଗ ଆଗତ କରା ଯାଇଥିଲା । ଏହି ଅଭିଯୋଗର କାରଣ ମଧ୍ୟ ବିଚାର ଆରମ୍ଭବେଳେ ଆସାମୀଙ୍କୁ ବିଧାନ ଅନୁସାରେ ବୁଝାଇ ଦିଆଗଲା ଓ ତାଙ୍କ ବିରୁଦ୍ଧରେ ଆଗତ କରା ଯାଇଥିବା ଅଭିଯୋଗ ଦୃଷ୍ଟିରୁ ସେ ଦୋଷୀ କି ନିର୍ଦ୍ଦୋଷ, ତାହା ପ୍ରକାଶ କରିବାକୁ ତାଙ୍କୁ ପଚରାଗଲା ।

ପଣ୍ଡିତ ଗୋପବନ୍ଧୁ ଅହିଂସ ଅସହଯୋଗୀ; ତେଣୁ ବ୍ରିଟିଶ ଅଦାଲତର ନ୍ୟାୟ ଓ ସତ୍ୟତାକୁ ସେ ସ୍ୱୀକାର କରନ୍ତି ନାହିଁ । ଏହି କାରଣରୁ ଏ ପ୍ରସଙ୍ଗରେ କୌଣସି ଉତ୍ତର ବା ବିବୃତି ଦେବାକୁ ସେ ନାସ୍ତି କଲେ ବୋଲି ମୋର ମନେ ପଡ଼ୁଛି । ଆଇନର ବ୍ୟବସ୍ଥା ଅନୁସାରେ ଦୋଷୀ କି ନିର୍ଦ୍ଦୋଷ ବୋଲି ପଚାରିବା ପରେ ତାଙ୍କ ବିରୁଦ୍ଧରେ ସାକ୍ଷୀମାନଙ୍କୁ ସେ ଜେରା କରିବାକୁ ଚାହାନ୍ତି କି ନା ବୋଲି ପୁଣି ଥରେ ତାଙ୍କୁ ପଚରା ଗଲା । ଏଥର ମଧ୍ୟ ସେ କୌଣସି ଉତ୍ତର ଦେଲେ ନାହିଁ । ତାଙ୍କୁ ପଚରାଗଲା ଯେ, ସେ ଲିଖିତ ବା ମୌଖିକଭାବରେ କୌଣସି ଜବାବ ଦେବାକୁ ଚାହାନ୍ତି କି ନା ? ଏଥିରେ ମଧ୍ୟ ପଣ୍ଡିତ ଗୋପବନ୍ଧୁ ନିରୁତ୍ତର ରହିଲେ । ଜବାବ ଦାଖଲ କରାଯିବ କି ନାହିଁ ଏହା ଯେନି ସେ ଓ ତାଙ୍କ ସହକର୍ମୀମାନଙ୍କ ଭିତରେ ଜୋରସୋର ଆଲୋଚନା ଚାଲିଲା । କିଛିକ୍ଷଣ ପରେ ଜନସାଧାରଣଙ୍କ ପକ୍ଷରୁ ଏକ ଲିଖିତ ଜବାବ ଦାଖଲ କରାଗଲା । ଫୌଜଦାରୀ କାର୍ଯ୍ୟବିଧି ଆଇନରେ ଏଭଳି ଭାବରେ ଜବାବ ଦାଖଲ କରିବା ବ୍ୟବସ୍ଥା ବୋଧହୁଏ ନାହିଁ ବୋଲି

ମୁଁ ମତପ୍ରକାଶ କଲି । ଏହାପରେ ମୁଁ ଆସାମୀ ପଣ୍ଡିତ ଗୋପବନ୍ଧୁଙ୍କୁ ଲିଖିତ ଜବାବ ଦାଖଲ କରିବା ବିଷୟରେ ପଚାରିଲି । ଶେଷରେ ଜନସାଧାରଣଙ୍କ ପକ୍ଷରୁ ଜବାବ ଦାଖଲ ପରିବର୍ତ୍ତେ ପଣ୍ଡିତ ଗୋପବନ୍ଧୁ ହିଁ ଲିଖିତ ଜବାବ ଦାଖଲ କଲେ ବୋଲି ମୋତେ ମନେ ପଡ଼ୁଛି । ତାହା ନ ହୋଇଥିଲେ ତାଙ୍କ ପକ୍ଷ ସମର୍ଥନ କରି ଜନସାଧାରଣଙ୍କ ଆଡ଼ୁ ଜବାବ ଦାଖଲ କରିବାପାଇଁ ଆବେଦନ ମୁଁ ବୋଧହୁଏ ଅଗ୍ରାହ୍ୟ କରି ଦେଇ ନ ଥାନ୍ତି ।

ତାଙ୍କ ପକ୍ଷରୁ କୌଣସି ସାକ୍ଷୀ ଦେବାକୁ ବା ସାକ୍ଷୀଙ୍କୁ ଜେରା କରିବାକୁ ସେ ଚାହାନ୍ତି କି ବୋଲି ମୁଁ ଆଇନ ଅନୁସାରେ ଆଉଥରେ ଆସାମୀଙ୍କୁ ପଚାରିଲି । ଏଥିରେ ସେ ହଁ କି ନାହିଁ କୌଣସି ଉତ୍ତର ଦେଲେ ନାହିଁ ବୋଲି ମୋର ମନେହୁଏ । କିନ୍ତୁ କିଛି ସମୟ ପରେ ମୋ ନିକଟରେ ଗୋଟିଏ ଦରଖାସ୍ତ ପେଶ କରାଗଲା । ପଣ୍ଡିତ ଗୋପବନ୍ଧୁଙ୍କ ପକ୍ଷରୁ ସାକ୍ଷୀମାନଙ୍କୁ ଜେରା କରିବା ଲାଗି ଜନସାଧାରଣଙ୍କୁ ଅନୁମତି ଦିଆଯାଉ ବୋଲି ଏ ଦରଖାସ୍ତରେ ପ୍ରାର୍ଥନା କରାଯାଇଥିଲା । ଏହା ଉପରେ ଲିଖିତ ଆଦେଶ ଦେଇ ମୁଁ ଜଣାଇଲି ଯେ ଆସାମୀ ପକ୍ଷରୁ ଜନସାଧାରଣଙ୍କୁ ସାକ୍ଷୀମାନଙ୍କ ଜେରା କରିବା ନିମନ୍ତେ କୋର୍ଟ ଅନୁମତି ଦେବା ବ୍ୟବସ୍ଥା ଫୌଜଦାରୀ କାର୍ଯ୍ୟବିଧି ଆଇନରେ ଅଛି ବୋଲି ମୋତେ ଜଣା ନାହିଁ । ତେବେ ଏହି ଦରଖାସ୍ତରେ ମୁଁ ଉଲ୍ଲେଖ କଲି ଯେ, ନ୍ୟାୟ ବିଚାର ଦୃଷ୍ଟିରୁ ଆବଶ୍ୟକ ମନେକଲେ ଯେ କୌଣସି ସାକ୍ଷୀଙ୍କୁ ମୁଁ ନିଜେ ଜେରା କରିବି ଓ ସୁବିଚାର ଲାଗି କୋର୍ଟର ସାକ୍ଷୀ ହିସାବରେ ମୁଁ ଯେକୌଣସି ବ୍ୟକ୍ତିଙ୍କୁ ଜେରା କରିପାରିବି । କିନ୍ତୁ ଆବଶ୍ୟକ ନ ପଡ଼ିବାରୁ ମୁଁ କୋର୍ଟର କୌଣସି ସାକ୍ଷୀଙ୍କୁ ଜେରା କଲି ନାହିଁ ।

ଏହିପରି ଭାବରେ ଏ ମକଦ୍ଦମାରେ ସାକ୍ଷୀମାନଙ୍କ ଜମାନବନ୍ଦି ସରିଲା । ପୁଣିଥରେ ସରକାରୀ ଓକିଲ ସରକାରଙ୍କ ପକ୍ଷରୁ ଜବାବ ସୁଆଲ କଲେ । କିନ୍ତୁ ଆସାମୀଙ୍କ ପକ୍ଷରୁ କେହି ଆଉ ଜବାବ ସୁଆଲ କଲେ ନାହିଁ । ଏହାପରେ ରାୟ ଦେବାପାଇଁ ତାରିଖ ନିର୍ଦ୍ଦିଷ୍ଟ କରି ଦିଆଗଲା ।

ଯେଉଁ କେତେଦିନ ଧରି ମକଦ୍ଦମାର ବିଚାର ଚାଲିଲା ପ୍ରତିଦିନ ହଜାର ହଜାର ଲୋକ ବିଚାର ଦେଖିବାଲାଗି ଆସି ରୁଣ୍ଡ ହେଉଥିଲେ । ମଫସଲ ଅଞ୍ଚଳରୁ ଶହ ଶହ ଲୋକ ମଧ୍ୟ ଶଗଡ଼ରେ ଆସୁଥିଲେ । ଯେଉଁଦିନ ରାୟ ଶୁଣାଇ ଦିଆଯିବ, ତାହିଁ ପୂର୍ବଦିନ ପାଦରେ ଚାଲି, ବସ ଓ ଶଗଡ଼ରେ ଦଳ ଦଳ ହୋଇ ଦୂର ମଫସଲ ଅଞ୍ଚଳରୁ ବହୁ ଲୋକ ଖୋର୍ଦ୍ଧାରେ ଆସି ଜମା ହେବାକୁ ଲାଗିଲେ । ରାୟ ଶୁଣାଇବା ତାରିଖ ଦିନ ସକାଳେ

ଦେଖାଗଲା ଯେ, କଚେରୀ ଗୃହପଟେ ସହର ଭିତରେ ୮୯୦ ହଜାରରୁ ଊର୍ଦ୍ଧ୍ୱ ଲୋକ ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ମାନହାନି ମକଦ୍ଦମାର ରାୟ ଶୁଣିବାକୁ ଜମା ହୋଇଛନ୍ତି ।

ରାୟ ଶୁଣାଇବା ଦିନ ସକାଳେ ମୁଁ ଘରେ ରାୟ ଲେଖୁଥିଲାବେଳେ ସବ୍‌ଡିଭିଜନାଲ ଅଫିସର ରାୟବାହାଦୁର ଅଜୟଚନ୍ଦ୍ର ଦାସ ମୋ ବଙ୍ଗଳାକୁ ଆସିଲେ । ଖୋର୍ଦ୍ଧା ଭଳି ଗ୍ଲେଟ ସହରରେ ଯେପରି ଭାବରେ ଏ ବିରାଟ ଜନସମୁଦ୍ର ଗୃହଆଡ଼ ଘେରି ରହିଛି, ସେଥିରେ ସେ ଭାରି ଆତଙ୍କିତ ହୋଇ ପଡ଼ିଥିଲେ । ଏହା ଘେନି ମୋ ସହିତ ସେ ଅନେକ ବେଳ ଧରି ଆଲୋଚନା କଲେ ଓ ଏ ଜନସମୁଦ୍ର ଉତ୍ତକ୍ଷିପ୍ତ ହେଲେ ଯେ କି କାଣ୍ଡ ନ ଭିଆଇବେ ତାହା ସେ ଭୀତତ୍ରସ୍ତ ଭାବରେ ପ୍ରକାଶ କଲେ । ମୁଁ ଦେଖିଲି, ସେ ଭୟରେ ବଡ଼ ବିଚଳିତ ହୋଇ ପଡ଼ିଛନ୍ତି । ମକଦ୍ଦମାରେ ପଣ୍ଡିତ ଗୋପବନ୍ଧୁ କୌଣସି ପ୍ରକାରେ ଆତ୍ମପକ୍ଷ ସମର୍ଥନ କରି ନାହାନ୍ତି । ଏହା ଏକ ଏକଛତରଫା ମକଦ୍ଦମା । ଏଭଳି ଏକତରଫା ଫୌଜଦାରୀ ମକଦ୍ଦମାର ଫଳ ସ୍ୱଭାବତଃ କଅଣ ହୁଏ ତାହା କାହାରିକି ଅବିଦିତ ନାହିଁ । ଏଣୁ ପଣ୍ଡିତ ଗୋପବନ୍ଧୁ ବିଚାରରେ ଯେ ଦଣ୍ଡନୀୟ ହେବେ ଏବଂ ତାଙ୍କୁ ଯେ ଜେଲ ଦିଆଯିବ ଏହା ପୂର୍ବରୁ ସମସ୍ତଙ୍କର ବଦ୍ଧମୂଳ ଧାରଣା ହୋଇଥିଲା । ସବ୍‌ଡିଭିଜନାଲ ଅଫିସର ଶ୍ରୀଯୁକ୍ତ ଦାସ ମଧ୍ୟ ଏକଥା ଜାଣିଥିଲେ । କଥାବାର୍ତ୍ତା ହେଲାବେଳେ ସେ ନାନା ଆଶଙ୍କା ପ୍ରକାଶ କରି ମୋତେ କହିଲେ, "ସୁରେଶବାବୁ, କଚେରୀ ହତା ଭିତରେ ଓ କଚେରୀ ଗୃହପଟେ ଅସଂଖ୍ୟ ଲୋକ ଜମା ହୋଇଗଲେଣି । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ବିରୁଦ୍ଧରେ ଯେଉଁ ମାନହାନି ମକଦ୍ଦମା ଆପଣ ବିଚାର କରୁଛନ୍ତି, ସେଥିରେ ତ ତାଙ୍କୁ ନିଶ୍ଚୟ ଜେଲଦଣ୍ଡ ହୋଇଯିବ । ଏହାଫଳରେ ଲୋକେ ଉତ୍ତେଜିତ ଓ ଉତ୍ତକ୍ଷିପ୍ତ ହୋଇ ନାନା ଭୟାବହ ହିଂସାକାଣ୍ଡ ସୃଷ୍ଟି କରିବେ, ସନ୍ଦେହ ନାହିଁ ।

ଆସାମୀ ପଣ୍ଡିତ ଗୋପବନ୍ଧୁ ନିଜେ ଓଡ଼ିଶାରେ ଅହିଂସ ଅସହଯୋଗ ଆନ୍ଦୋଳନର ମୁଖ୍ୟ-ନେତା ହେଲେ ସୁଦ୍ଧା ସେ ଦଣ୍ଡ ପାଇଲେ ଲୋକେ ଉତ୍ତେଜିତ ହୋଇ ନାନା ଗଣ୍ଡଗୋଳ ଓ ହିଂସାକାଣ୍ଡ ଭିଆଇବେ ବୋଲି ତାଙ୍କର ପୂର୍ଣ୍ଣ ବିଶ୍ୱାସ ଜନ୍ମିଥିଲା । ଆସାମୀ ପଣ୍ଡିତ ଗୋପବନ୍ଧୁଙ୍କ ଭଳି ବିଖ୍ୟାତ ଓ ଲୋକପ୍ରିୟ ଜନନାୟକଙ୍କ ପ୍ରତି ଦଣ୍ଡାଦେଶରେ ଲୋକେ ଯେ ଉତ୍ତକ୍ଷିପ୍ତ ହୋଇ ଉଠିବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏହାର ପରିଣାମରେ ଲୋକେ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଲୁଟତରାଜ, ଭଙ୍ଗାରୁଜା ଏପରି କି ହତ୍ୟାକାଣ୍ଡ ଆଦି ହିଂସାତ୍ମକ କାର୍ଯ୍ୟ କରିବା ସ୍ୱାଭାବିକ ।

ମାନହାନି ମକଦ୍ଦମାରେ ପଣ୍ଡିତ ଗୋପବନ୍ଧୁଙ୍କ ଜେଲଦଣ୍ଡ ହୋଇଗଲେ ଲୋକେ ଉତ୍ତେଜିତ ହୋଇ ଯେ ନାନା ଗଣ୍ଡଗୋଳ ଓ ହିଂସାକାଣ୍ଡ ସୃଷ୍ଟି କରିବେ ଏହା- ପୋଖତ ସବ୍‌ଡିଭିଜନାଲ ଅଫିସର ରାୟବାହାଦୁର ଅଜୟଚନ୍ଦ୍ର ଦାସଙ୍କର ତ ପୂର୍ବ ବିଶ୍ୱାସ ହୋଇ ଯାଇଥିଲା । ଆତ୍ମପକ୍ଷ ସମର୍ଥନ କରି ନ ଥିବା ଏଭଳି ଏକ ଫୌଜଦାରୀ ମକଦ୍ଦମାରେ ଆସାମୀ ପଣ୍ଡିତ ଯେ ନିର୍ଦ୍ଦୋଷରେ ଖଲାସ ହୋଇ ଯାଇ ପାରନ୍ତି ଏକଥା ସେତେବେଳର ପରିସ୍ଥିତିରେ ମୋଟେ ଅନ୍ୟ କାହାର ହେଲେ ଚିନ୍ତାରେ ସ୍ଥାନ ପାଇ ନ ଥିଲା । ସେ ସମୟରେ ଖୋର୍ଦ୍ଧା ଡାକ୍ତରଖାନାର ସରକାରୀ ମେଡ଼ିକାଲ ଅଫିସର ଖୋର୍ଦ୍ଧା ସବ୍‌ଜେଲର ଡେପୁଟି ସୁପରିଣ୍ଟେଣ୍ଡେଣ୍ଟ ଥାନ୍ତି । ସେ ମୋତେ ଦିନେ କହିଥିଲେ ଯେ, ରାୟ ଶୁଣାଇବା ତାରିଖରେ ଯେତେବେଳେ ପଣ୍ଡିତ ଗୋପବନ୍ଧୁଙ୍କୁ ସବ୍‌ଜେଲରୁ କୋର୍ଟକୁ ଅଣାଗଲା, ସେତେବେଳେ ସେ ତାଙ୍କର ଲୁଗାପଟା ଜେଲରେ ଛାଡ଼ି ଦେଇ ଆସିଲେ । ପଚାରିବାରୁ ସେ କହିଲେ ଲୁଗାପଟା ସଙ୍ଗରେ ନେଇ ଯିବାର ଆବଶ୍ୟକତା ନାହିଁ । କାରଣ ମୁଁ ତ ଶୀଘ୍ର ଏଠାକୁ ପୁଣି ଫେରି ଆସିବି । କିନ୍ତୁ ଏଥର ବିଚାରାଧୀନ ଆସାମୀ ରୂପେ ଫେରିବି ନାହିଁ; ଏଥର ଆସିବି ପୂରାପୂରି ଜଣେ କଏଦୀ ଭାବରେ ।"

ସବ୍‌ଡିଭିଜନାଲ ଅଫିସର ବଙ୍ଗଳାରେ ମୋ ସହିତ କଥାବାର୍ତ୍ତା ହେଉଥିଲାବେଳେ ମୋତେ କହିଲେ ପଣ୍ଡିତ ଗୋପବନ୍ଧୁଙ୍କ ଜେଲ ହୋଇଯିବା ଫଳରେ ଯେପରି ଲୋକେ ଗଣ୍ଡଗୋଳ ଓ ବିଭ୍ରାଟ ସୃଷ୍ଟି ନ କରିବେ, ତାହାର ଉପାୟ ଆଗରୁ କରିବାକୁ ପଡ଼ିବ । ଶାନ୍ତି ଶୃଙ୍ଖଳାରକ୍ଷା କରିବାଲାଗି ଚୌକିଦାରମାନଙ୍କୁ ହୁକୁମ ଦେବା ଯୁକ୍ତିଯୁକ୍ତ ବୋଲି ସେ ମୋତେ ପରାମର୍ଶ ଦେଲେ । ଏତେ ଲୋକ ସମାଗମରେ ଯେପରି କୌଣସି ଗଣ୍ଡଗୋଳ ନ ଘଟେ ସେଥିପାଇଁ ସବ୍‌ଡିଭିଜନର ଚାରିଆଡ଼ୁ ବହୁସଂଖ୍ୟାରେ ଚୌକିଦାରମାନଙ୍କୁ ଖୋର୍ଦ୍ଧା ସହରକୁ ଅଣାଯାଇଥିଲା ।

ସବ୍‌ଡିଭିଜନାଲ ଅଫିସର କହିଲେ ଯେ, "ରାୟ ଶୁଣିବାଲାଗି ମଫସଲରୁ ହଜାର ହଜାର ସଂଖ୍ୟାରେ ଲୋକ ଆସୁଛନ୍ତି । ଚୌକିଦାରମାନେ ସେମାନଙ୍କୁ ନିଜ ଗାଁକୁ ଫେରି- ଯିବାକୁ କହିବେ । ଲୋକେ ଯଦି ନ ଶୁଣନ୍ତି, ତେବେ ଆବଶ୍ୟକ ପଡ଼ିଲେ ବଳପ୍ରୟୋଗ ଦ୍ୱାରା ସେମାନଙ୍କୁ ତଡ଼ିବାକୁ ପଡ଼ିବ ।" ସେ ଆହୁରି ମଧ୍ୟ କହିଲେ ଯେ, "ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର ଗାଇସ ସଶସ୍ତ୍ର ପୁଲିସ ନେଇ ଏଠାକୁ ଆସିବେ ବୋଲି ଜବାବ ଦେଇଛନ୍ତି ।" ସେପର୍ଯ୍ୟନ୍ତ ପୁଲିସବାହିନୀ କାହିଁକି ଆସି ପହଞ୍ଚିଲେ ନାହିଁ ବୋଲି ସେ ଚିନ୍ତିତ ଥାନ୍ତି । ମୁଁ ତାଙ୍କୁ କହିଲି ହୁକୁମ ଅନୁସାରେ ଚୌକିଦାରମାନେ ଅବଶ୍ୟ ମଫସଲରୁ

ବହୁସଂଖ୍ୟାରେ ଅସୁଥିବା ଲୋକଙ୍କୁ ଖୋର୍ଦ୍ଧା ସହରରେ ନ ପଶିବା ପାଇଁ ଫେରାଇ ନେବା ଦିଗରେ ଯଥାସମ୍ଭବ ଉଦ୍ୟମ କରିବେ । ଏଥିରେ ଲୋକେ ଅମାନିଆ ହୋଇ ଯଦି ବାଧା ଦିଅନ୍ତି, ତେବେ ନିଶ୍ଚୟ ସେମାନଙ୍କୁ ବଳପ୍ରୟୋଗ କରି ତାଙ୍କୁ ତଡ଼ିବାକୁ ପଡ଼ିବ । ଏହାଫଳରେ ଲୋକେ ଉତ୍ତେଜିତ ହୋଇ ପ୍ରତିରୋଧ କରିବେ ଓ ପ୍ରତିଶୋଧ ନେବାଲାଗି ବିକ୍ଷୋଭ ସୃଷ୍ଟି କରିବେ । ପୁଣି ଏହି ଲୋକ ଜମାଏତକୁ ବେଆଇନ ବୋଲି ଘୋଷଣା ନ କରିବାଯାଏ ଚୌକିଦାରି ବା ପୁଲିସ କନେଷ୍ଟବଳମାନଙ୍କ ବଳ ପ୍ରୟୋଗ ସମ୍ଭବ ହେବ ନାହିଁ ।" ମୁଁ ତାଙ୍କୁ ବୁଝାଇ କହିଲି, "ଆମ ଦେଶର ଲୋକେ ବିଶେଷ ଭାବରେ ଆମ ଓଡ଼ିଶାର ଜନସାଧାରଣ, ସେମାନଙ୍କୁ ବ୍ୟକ୍ତିଗତ ଭାବରେ ଉତ୍ତେଜିତ କରା ନ ଗଲେ ସେମାନେ କଦାପି କୌଣସି ହିଂସାତ୍ମକ କାର୍ଯ୍ୟ କରିବେ ନାହିଁ । ହିଂସାକାଣ୍ଡ ଘଟାଇବା ସେମାନଙ୍କର ମନୋବୃତ୍ତି ନୁହେଁ ।"

ମୁଁ ଦେଖିଲି ଯେ ସବ୍‌ଡିଭିଜନାଲ ଅଫିସର ଏହା ବିଶ୍ୱାସ କଲେ ନାହିଁ । ତାଙ୍କ ମନରେ ପୂର୍ବ ଧାରଣା ଜନ୍ମିଥିଲା, ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ରାୟ ପ୍ରକାଶ ପାଇଲାମାତ୍ରେ ଏହି ବିରାଟ ଜନତା ନାନା ହିଂସାତ୍ମକ ଗଣ୍ଡଗୋଳ ଲଗାଇବେ । ସେମାନେ କଚେରୀ ଘରେ ନିଆଁ ଲଗାଇ ଦେବେ; ପୁଲିସ ଥାନା, ବିଭିନ୍ନ ସରକାରୀ ଅଫିସରମାନଙ୍କ ଘର ପୋଡ଼ିଦେବେ; ଏଠାରେ ଥିବା ଖଜଣାଖାନା ଲୁଟି ନେବେ । ଏପରି କି ସରକାରୀ ଅଫିସରମାନଙ୍କ ଜୀବନ ବିପନ୍ନ ହେବା ମଧ୍ୟ ଅସମ୍ଭବ ନୁହେଁ । ମୁଁ ଦେଖିଲି ଯେ, ତାଙ୍କ ମନରେ ଏହି ଚିନ୍ତା ଓ ଭୟ ସଦାବେଳେ ଘାରୁଛି । ତାଙ୍କ ମନରେ ପୂରା ବିଶ୍ୱାସ ହୋଇ ଯାଇଥିଲା ଯେ, ବ୍ୟାପକ ଗଣ୍ଡଗୋଳ ଓ ହିଂସାକାଣ୍ଡ ସୃଷ୍ଟି ହୋଇଗଲେ ଯେଉଁ ଭୟାବହ ପରିସ୍ଥିତି ଉପୁଜିବ, ତାକୁ ସମ୍ଭାଳିବା ଖୋର୍ଦ୍ଧାଠାରେ ଥିବା ଅଳ୍ପସଂଖ୍ୟକ ପୁଲିସ ଲୋକଙ୍କର ସାଧ୍ୟ ନୁହେଁ । ଏପରିକି ପୁରୀର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ରାଇସ ସାହେବ ରିଜର୍ଭ ପୁଲିସ ଘେନି ଆସି ପହଞ୍ଚିଲେ ମଧ୍ୟ ଏ ଅବସ୍ଥାକୁ ସମ୍ଭାଳିବା ଅସମ୍ଭବ ହେବ ।

ମୁଁ ତାଙ୍କୁ ଅନୁରୋଧ କରି କହିଲି, "ଆପଣ ଖୋର୍ଦ୍ଧାର ସର୍କଲ ପୁଲିସ ଇନ୍‌ସପେକ୍ଟରଙ୍କୁ ଆଦେଶ ଦିଅନ୍ତୁ ଯେ, ତାଙ୍କ ଅଧୀନସ୍ଥ ପୁଲିସ ଲୋକେ ଯେପରି ଏହି ବିରାଟ ଜନତାର କୌଣସି ଲୋକ ପ୍ରତି ଖରାପ ବ୍ୟବହାର ନ କରନ୍ତୁ ଓ ସେମାନଙ୍କୁ ଠେଲାପେଲା ନ କରନ୍ତୁ ବା ମାଡ଼ ଆଦି ନ ଦିଅନ୍ତୁ । ପୁଲିସ ଇନ୍‌ସପେକ୍ଟର ପୁଲିସ ଲୋକଙ୍କୁ ସଂଯତ କରି ଆୟତ୍ତରେ ରଖିପାରିଲେ କୌଣସି ଗଣ୍ଡଗୋଳ ଘଟିବ ନାହିଁ ବୋଲି ମୋର ବିଶ୍ୱାସ ।

ମୁଁ ଯେତେ ଭରସା ଓ ପରାମର୍ଶ ଦେଲେ ସୁଦ୍ଧା ତାଙ୍କ ମନ ମାନିଲା ନାହିଁ । ସାଙ୍ଘାତିକ ପରିସ୍ଥିତି ଯେ ସୃଷ୍ଟି ହେବ, ଏହା ତାଙ୍କର ଦୃଢ଼ ପ୍ରତ୍ୟୟ ହୋଇଥିଲା । ସେ ଯେପରି ପ୍ରତିକାରର କୌଣସି ବାଟ ଖୋଜି ପାଉନାହାନ୍ତି ଏ ଭଳି ମନେ ହେଲା ।

ମୁଁ ତାଙ୍କୁ କହିଲି ଯେ, ମୋର ଏହି ଗ୍ରନ୍ଥ ଲେଖା ଶେଷ କରିବାକୁ ଆଉ ଟିକିଏ ସମୟ ଲାଗିବ । ଏଣୁ କୋର୍ଟକୁ ଯାଉଁ ଯାଉଁ ମୋର ବିଳମ୍ବ ଘଟିପାରେ ।

ସେତେବେଳେ ସବୁ ବିଷୟ ବିଚାର କରି ମୋ ମନରେ ପୂରା ଧାରଣା ହୋଇ-ସାରିଥିଲା ଯେ, ପଣ୍ଡିତ ଗୋପବନ୍ଧୁ ଅଭିଯୋଗରୁ ଖଲାସ ପାଇଯିବେ । ଏହା ଫଳରେ ଜନତା ଯେ କୌଣସି ଗଣ୍ଡଗୋଳ ବା ଧ୍ୱଂସାତ୍ମକ କାଣ୍ଡ କରିବେ ନାହିଁ, ଏହା ମୁଁ ମନେ ମନେ ଚିନ୍ତା କରୁଥିଲି । ବରଂ ସେମାନେ ତାଙ୍କର ଜନପ୍ରିୟ ପୂଜ୍ୟ ନେତାଙ୍କ ଖଲାସ ଖବର ଶୁଣିଲମାତ୍ରେ ଆନନ୍ଦରେ ଏଭଳି ଅଧୀର ହୋଇପଡ଼ିବେ ଓ ତାଙ୍କ ମନରେ ଏପରି ସନ୍ତୋଷ ଆସିବ—ଯହିଁରେ ସବ୍‌ଡିଭିଜନାଲ୍ ଅଫିସର ହେଉଁ ଅଫିସ ଭାଙ୍ଗିଦେବା, ଖଜଣାଖାନା ଲୁଟି ଓ ଅଫିସରମାନଙ୍କ ଉପରେ ଆକ୍ରମଣର କୋଳୁଆ ଭୟ ଦେଖୁଛନ୍ତି ତାହା ଲୋକଙ୍କ ମନରେ ସ୍ଥାନ ପାଇବ ନାହିଁ । ଏହା ମନେ ମନେ ଭାବି ମୋତେ ଭାରି ଆନନ୍ଦ ଲାଗୁଥାଏ ।

ଯାହାହେଉ ମୋର ଉପଦେଶ ଓ ପରାମର୍ଶରେ ସବ୍‌ଡିଭିଜନାଲ ଅଫିସର ଆଶ୍ୱସ୍ତ ହୋଇ ପାରିଲେ ନାହିଁ । ସେ ବଡ଼ ଦୁଶ୍ଚିନ୍ତାଗ୍ରସ୍ତ ଓ ବିଚଳିତ ମନରେ ମୋ ବଙ୍ଗଳାରୁ ବିଦାୟ ନେଲେ । ସେ ବଡ଼ ହତାଶ ଓ କିଂକର୍ତ୍ତବ୍ୟବିମୂଢ଼ ଦେଖାଯାଉଥିଲେ ।

ହେବୈବେଳକୁ କଚେରୀ ଶୁଣାପଡେ ଏପରି କି ମୋ ବଙ୍ଗଳା ହତା ଭିତରେ ମଧ୍ୟ ହଜାର ହଜାର ଲୋକ ଜମା ହୋଇ ଗଲେଣି । ମୁଁ ବଙ୍ଗଳାରେ ମୋ ଅଫିସ ଘରେ ଗ୍ରନ୍ଥ ଲେଖୁଛି । ଏତିକିବେଳେ ଖଦଡ଼ ପିନ୍ଧିଥିବା ଦୁଇଜଣ ତରୁଣ ଯୁବକ ମୋ ଅଫିସ ଘର ଭିତରକୁ ହଠାତ୍ ପଶି ଆସି ସେହି ତାରିଖର ଇଂରେଜୀ ଖବରକାଗଜ ପଢ଼ିବା ଲାଗି ମୋତେ ମାଗିଲେ । ମୁଁ ତାଙ୍କୁ ସଙ୍ଗେ ସଙ୍ଗେ କହିଲି, ଆସାମୀ ପଣ୍ଡିତ ଗୋପବନ୍ଧୁ ଖଦଡ଼ଧାରୀ । ଆପଣମାନେ ମଧ୍ୟ ଖଦଡ଼ ପିନ୍ଧିଛନ୍ତି । ଏଥିରୁ ଅନୁମାନ ହେଉଛି, ଆପଣମାନେ ପଣ୍ଡିତ ଗୋପବନ୍ଧୁଙ୍କ ସହିତ ସମ୍ପୃକ୍ତ ପକ୍ଷର ଲୋକ ଓ ଏ ମକଦ୍ଦମା ସହିତ ଆପଣମାନଙ୍କର ସ୍ୱାର୍ଥ ଜଡ଼ିତ ରହିଥିବା ମୁଁ ଭାବୁଛି । ଆପଣମାନଙ୍କ

ନେତା ବର୍ତ୍ତମାନ ଆସାମୀ । ତାଙ୍କ ବିରୁଦ୍ଧରେ ହୋଇଥିବା ମାମଲାର ବିଚାର ପରେ ମୁଁ ରାୟ ଲେଖୁଛୁ । ବିଚାରକ ଅଫିସର ରୂପେ ମୁଁ ହୁକୁମ ଦେବାକୁ ଯାଉଥିବାବେଳେ ଆପଣମାନଙ୍କର ମୋ ପାଖକୁ ଆସିବା ଉଚିତ ନୁହେ । ଆପଣମାନେ ମୋ ବଙ୍ଗଳା ହତା ଛାଡ଼ି ଚାଲିଯାଆନ୍ତୁ । ମୋ କଥାରେ ଅବଶ୍ୟ ଠିକଏ ରୂଢ଼ତା ପ୍ରକାଶ ପାଇଥିଲା । ପରେ ମୁଁ ଜାଣିଲି ଯେ, ମୋର ଏ କଡ଼ା ଆଦେଶ କଥା ସେମାନେ ଯାଇ ତାଙ୍କ ସାଙ୍ଗ ସାଥୀମାନଙ୍କ ଆଗରେ କହିଥିଲେ ଓ ଏକଥା ଶୁଣି ସେମାନଙ୍କ ଭିତରେ ନୈରାଶ୍ୟ ଖେଳି ଯାଇଥିଲା । ସେମାନେ କହିଥିବାର ମୁଁ ପରେ ଶୁଣିଛି ଯେ, ମକଦ୍ଦମାର ବିଚାର କରୁଥିବା ଏ ମାଜିଷ୍ଟ୍ରେଟ ବଡ଼ କଡ଼ା ହାକିମ; ସଦାବେଳେ କଡ଼ା ମିଜାସରେ ଥାନ୍ତି । ସ୍ୱାଙ୍କଠାରୁ ମକଦ୍ଦମାରେ ଦଣ୍ଡରୁ ରେହାଇ ମିଳିବା ଆଶା ବୃଥା । ଏ ଦୃଷ୍ଟିରୁ ତାଙ୍କର ଅତି ପ୍ରିୟ ଓ ପୂଜ୍ୟ ନେତା ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତି ବିଚାରରେ ମୁଁ ଯେ କଠୋର ଦଣ୍ଡାଦେଶ ଦେବି, ଏ ସମ୍ବନ୍ଧରେ ସେମାନଙ୍କର ବଦ୍ଧମୂଳ ଧାରଣା ଜନ୍ମିଥିଲା । ...

ମୁଁ ରାୟ ଲେଖୁଥିଲାବେଳେ ପଣ୍ଡିତ ଗୋପବନ୍ଧୁଙ୍କ 'ସମାଜ' ସମ୍ବାଦପତ୍ରରେ ପ୍ରକାଶ ପାଇଥିବା ମାନହାନି ଜନକ ସମ୍ବାଦର ବିଷୟ ପ୍ରଥମେ ବିଚାର କଲି । ବେଗୁନିଆ ଥାନାର ଦୁଇଜଣ ପୁଲିସ କନେଷ୍ଟବଲଙ୍କ ବିରୁଦ୍ଧରେ ଏହି ସମ୍ବାଦ ପ୍ରକାଶ ପାଇଥିଲା । ରାୟର ପ୍ରଥମ ଅଂଶ ଲେଖିଲାବେଳେ ମୁଁ ଦେଖିଲି ଯେ, ଆସାମୀ ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ଭାରତୀୟ ପିଙ୍ଗଲକୋଡ଼ର ୪୯୯-୫୦୦ ଧାରା ଅନୁସାରେ ଆଗତ କରାଯାଇଥିବା ଅଭିଯୋଗ ବଡ଼ ଦକ୍ଷତାର ସହିତ ପ୍ରମାଣିତ ହୋଇଛି । ଏହା ପ୍ରମାଣ କରିବାରେ ଯାହା ଯାହା ଆବଶ୍ୟକ, ସେଥିରେ ସରକାର ଢିଲେହେଲେ ତ୍ରୁଟି ରଖିନାହାନ୍ତି । ସମ୍ବାଦପତ୍ରର ସମ୍ପାଦକ ଓ ମୁଦ୍ରାକରଙ୍କୁ ଆଇନରେ କେତେକ ସୁଯୋଗ ସୁବିଧା ଅଧିକାର ଦିଆଯାଇଛି । କିନ୍ତୁ ପଣ୍ଡିତ ଗୋପବନ୍ଧୁଙ୍କ ସମ୍ବାଦପତ୍ରରେ ପ୍ରକାଶ ପାଇଥିବା ସମ୍ବାଦ ଅଭିଯୋଗମୂଳକ ବୋଲି ଯେଉଁ ପ୍ରମାଣମାନ ଦର୍ଶାଯାଇଛି, ସେଥିରେ ସମ୍ବାଦପତ୍ରର ସମ୍ପାଦକ ହିସାବରେ ସେ ମୁକୁଳି ଯାଇ ପାରିବେ ନାହିଁ ବୋଲି ମୋର ବିଶ୍ୱାସ ହେଲା । ମୁଁ ମଧ୍ୟ ଆସାମୀଙ୍କ ବିରୁଦ୍ଧରେ ଏ ଅଭିଯୋଗ ପ୍ରମାଣସିଦ୍ଧ ବୋଲି ଗ୍ରହଣ କରିନେଲି । ତେବେ ଗୋଟିଏ ସୂକ୍ଷ୍ମ ବିଷୟ ନେଇ ମୋ ମନରେ ଦ୍ୱିଧା ଜନ୍ମିଥିଲା । ମୁଁ ଭାବିଲି, ସମ୍ବାଦରେ ବେଗୁନିଆ ଥାନାର ଯେଉଁ ଦୁଇ ଜଣ କନେଷ୍ଟବଲ ଅତ୍ୟାଚାର କରିଥିବା ଉଲ୍ଲେଖ ଥିଲା, ସେମାନଙ୍କୁ ନିର୍ଦ୍ଦିଷ୍ଟ ଭାବରେ ସନାକ୍ତ କରାଯାଇଛି କି ନା । ଅଭିଯୋଗ

କରିଥିବା ବେଗୁନିଆ ଥାନାର ସବୁ କନେଷ୍ଟବଲଙ୍କ ଭିତରୁ ଏହି ନିର୍ଦ୍ଦିଷ୍ଟ ଦୁଇ ଜଣ ଯେ କିଏ, ଏହା କିପରି ଜାଣି ହେବ କିପରି ଓ ସେମାନଙ୍କୁ ଚିହ୍ନଟ କରାହେବ— ଏ ରହିଲା ସମସ୍ୟା । ଏ ସମସ୍ୟାର ସମାଧାନ ଯେଉଁ ତନ୍ତ୍ର ଦରକାର ସେଥିରେ ମୁଁ ଚିନ୍ତା କଲି । ଆସାମୀଙ୍କ ପକ୍ଷରୁ ତ କୌଣସି ଓକିଲ ଦିଆ ଯାଇ ନାହିଁ । ପୁଣି ଏ ସମସ୍ୟାର ସମାଧାନ ଲାଗି ଆସାମୀଙ୍କ ତରଫରୁ କୌଣସି ଯୁକ୍ତି ମଧ୍ୟ ମିଳି ନାହିଁ । ଏହି ବିଷୟ ଉପରେ ହାଇକୋର୍ଟର କୌଣସି ହାଇକୋର୍ଟଙ୍କ କିଛି ନଜିର ମଧ୍ୟ ନାହିଁ । ଏଣୁ ମୁଁ ବଡ଼ ଅଡ଼ୁଆରେ ପଡ଼ିଲି । ଏଭଳି ପରିସ୍ଥିତିରେ ମୋର ନିଜ ବିବେକ ଓ ବିଚାରବୁଦ୍ଧି ଉପରେ ନିର୍ଭର କରିବା ଛଡ଼ା ସମାଧାନର ଅନ୍ୟ ବାଟ ନାହିଁ ବୋଲି ମୁଁ ସ୍ଥିର କଲି । ସମ୍ବାଦରେ ପ୍ରକାଶ ପାଇଥିବା କେବଳ ଦୁଇ ଜଣ କନେଷ୍ଟବଳଙ୍କୁ ଜେରା ନ କରି ଘଟଣା ତାରିଖରେ ବେଗୁନିଆଁ ଥାନାରେ ଥିବା ସବୁ କନେଷ୍ଟବଳ ଯେଉଁ ଅଭିଯୋଗ କରିଛନ୍ତି ସେ ସମସ୍ତଙ୍କର ଜମାନବନ୍ଦି ନେବା ଦ୍ୱାରା ସରକାରଙ୍କ ପକ୍ଷରୁ ଆଣାଯାଇ କରାଯାଇଥିବା ଅଭିଯୋଗ ସୁନିଶ୍ଚିତ ଭାବରେ ପ୍ରମାଣିତ ହେବ ବୋଲି ଲିଗାଲ୍- ରିମେମ୍ବ୍ରାନ୍ସର ମତ ଦେଇଥିଲେ । ମକଦ୍ଦମା କି ପ୍ରଣାଳୀରେ କରାଯିବ, ସେ ବିଷୟରେ ମଧ୍ୟ ସେ ମତପ୍ରକାଶ କରିଥିଲେ । ଲିଗାଲ ରିମେମ୍ବ୍ରାନସରଙ୍କ ନିର୍ଦ୍ଦେଶ ଓ ପରାମର୍ଶମତେ ମକଦ୍ଦମା ଚଳାଇଲେ ସରକାର ଠିକଣା ଭାବରେ ମକଦ୍ଦମାରେ ଜିତିଯିବେ ଓ ପଣ୍ଡିତ ଗୋପବନ୍ଧୁ ସାମାନ୍ୟ ଦଣ୍ଡ ପାଇ ମୁକୁଳି ଯାଇପାରିବେ ନାହିଁ ବୋଲି ବିହାର-ଓଡ଼ିଶା ସରକାରଙ୍କ ଚିଫ୍-ସେକ୍ରେଟାରୀଙ୍କ ପୂରା ହୃଦବୋଧ ହୋଇଥିଲା । ଏଣୁ ଲିଗାଲ- ରିମେମ୍ବ୍ରାନ୍ସରଙ୍କ ମତ ଅନୁସାରେ ମକଦ୍ଦମା ଚଳାଇବା ଲାଗି ସେ ପୁଲିସ ଇନ୍ସପେକ୍ଟର ଜେନେରାଲଙ୍କୁ ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ ଲିଗାଲ ରିମେମ୍ବ୍ରାନ୍ସରଙ୍କ ମତାମତ ମୋ ମନରେ ଉପୁଜିଥିବା ବିଚାରଗତ ଜଟିଳ ସମସ୍ୟା ସମାଧାନ କରିପାରିବ ନାହିଁ ବୋଲି ମୋର ସ୍ପଷ୍ଟ ଧାରଣା ହେଲା । ଏହି ମାନହାନି ମକଦ୍ଦମାର ବିଚାର ଆରମ୍ଭ ଦିନ ପୁଲିସ ପ୍ରସିକ୍ୟୁଟର ବଙ୍ଗଳାରେ ମୋତେ ଏହିସବୁ କାଗଜପତ୍ର ଦେଖାଇଥିଲେ ।

ରାୟ ଲେଖିବାକୁ ଅବଶ୍ୟ ମୋତେ ଅଳ୍ପ କେତେଦିନ ଲାଗିଥିଲା । ରାୟର ଶେଷ ଅଂଶ ଲେଖିଲାବେଳକୁ ମୁଁ ସ୍ଥିର କରି ସାରିଥିଲି ଯେ, ପଣ୍ଡିତ ଗୋପବନ୍ଧୁ ଅଭିଯୋଗରୁ ମୁକ୍ତ ପାଇଯିବେ ।

ସମ୍ବାଦପତ୍ରରେ ଯେଉଁ ଦୁଇ ଜଣ କନେଷ୍ଟବଳଙ୍କ ବିରୁଦ୍ଧରେ ଲେଖାଯାଇଥିଲା, ସେଥିରେ ତାହାର ନାମ ନିର୍ଦ୍ଦିଷ୍ଟ ଭାବରେ ଉଲ୍ଲେଖ କରା ଯାଇନାହିଁ । ସରକାର ଯେ

ମାନହାନି ଅଭିଯୋଗ ଆଣିଲେ, ସେଥିରେ ଏହି ଦୁଇଜଣଙ୍କ ନାମ ଧାମ ଦେଇ ଚାର୍ଜସିଟ କରିବାର ଦରକାର ନ ପଡ଼ିଲେ ସୁଦ୍ଧା କୌଣସି ପ୍ରକାର ଜମାନବନ୍ଦି ବା ଅନ୍ୟ ଉପାୟରେ ଏହି ଦୁଇଜଣ ଯେ ପ୍ରକାଶିତ ସମ୍ବାଦରେ କୁହାଯାଇଥିବା କନେଷ୍ଟବଳ, ଏହା ଦର୍ଶାଇବା ଆବଶ୍ୟକ । କିନ୍ତୁ ସରକାରଙ୍କ ପକ୍ଷରୁ ତାହା କରାଯାଇ ନାହିଁ । ଏଭଳି ପରିସ୍ଥିତିରେ ସମ୍ପାଦକଙ୍କ ବିରୁଦ୍ଧରେ ମାନହାନି ମକଦ୍ଦମା ଯେ ଚଳି ପାରିବ ନାହିଁ ଏହା ମୋର ଦୃଢ଼ ପ୍ରତ୍ୟୟ ହୋଇଥିଲା । ପୁଲିସ ପ୍ରସିକିଉଟର ମୋତେ ଲିଗାଲ ରିମେମ୍ବ୍ରାନସରଙ୍କ ମତାମତ ଓ ଚିଫ୍-ସେକ୍ରେଟରୀଙ୍କ ନିର୍ଦ୍ଦେଶ ଆଦି ଯେଉଁ କାଗଜପତ୍ର ଦେଖାଇଥିଲେ, ସେଗୁଡ଼ିକର ନକଲ ମୋତେ ତୁରନ୍ତ ନେବାଲାଗି ମୁଁ ତାଙ୍କୁ କହିଥିଲି । ସେ ସେଗୁଡ଼ିକ ମୋତେ ଦେଇଥିଲେ । ଦେଲାବେଳେ ମୁଁ ଦେଖିଲି, ସେ ଭାରି ଖୁସି ଓ ଉତ୍ସାହିତ ହୋଇ ଏଗୁଡ଼ିକ ଦେଲେ । କାରଣ ତାଙ୍କ ମନରେ ଦୃଢ଼ ଧାରଣା ହୋଇଥିଲା ଯେ, ଲିଗାଲ ରିମେମ୍ବ୍ରାନସର ଯେଉଁ ମତାମତ ପ୍ରକାଶ କରିଛନ୍ତି ଓ ପଣ୍ଡିତ ଗୋପବନ୍ଧୁଙ୍କୁ କଠୋର ଜେଲଦଣ୍ଡ ଦେବାଲାଗି ଚିଫ୍-ସେକ୍ରେଟରୀ ଯେଉଁ ଅଭିଳାଷ ଜଣାଇଛନ୍ତି ସେହି ଅନୁସାରେ ହାକିମ କାମ କରିବେ ଓ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତି କଠୋର ଦଣ୍ଡବିଧାନ କରିବାଲାଗି ରାୟ ଦେବେ ।

କିନ୍ତୁ ଏହି କାଗଜପତ୍ରର ନକଲ ନେଇ ମୋ ପାଖରେ ରଖିବା ଉଦ୍ଦେଶ୍ୟ ମୋର ଅନ୍ୟପ୍ରକାର ଥିଲା । କାରଣ ମୁଁ ଜାଣିଥିଲି ଆସାମୀ ପଣ୍ଡିତ ଗୋପବନ୍ଧୁଙ୍କୁ ଅଭିଯୋଗରୁ ଖଲାସ ଦେଇସାରିଲା ପରେ ହୁଏତ ଏଭଳି ପରିସ୍ଥିତି ଉପୁଜିବ, ଯହିଁରେ ମୋତେ ସରକାରଙ୍କ ଘୃଣ୍ୟ ଓ ନିନ୍ଦନୀୟ ଉଦ୍ଦେଶ୍ୟ ପ୍ରକାଶ କରିଦେବା ଦରକାର ପଡ଼ିବ । ଓଡ଼ିଶାର ସର୍ବଜନବିଦିତ ପ୍ରାୟ ଦୁଇ କୋଟି ଓଡ଼ିଆର ପ୍ରାଣରେ ନେତା ପଣ୍ଡିତ ଗୋପବନ୍ଧୁଙ୍କୁ ଜାଣିଶୁଣି ଏକ ନିନ୍ଦନୀୟ ଚକ୍ରାନ୍ତମୂଳକ ଉପାୟରେ କଠୋର ଜେଲଦଣ୍ଡ ଦେବାଲାଗି ରାୟ ଲେଖିବା ପାଇଁ ସରକାର ମୋତେ ଯେପରି ଭାବରେ ପ୍ରବର୍ତ୍ତାଇଛନ୍ତି ଓ ପ୍ରଭାବିତ କରିଛନ୍ତି, ସିମାନଙ୍କର ଏସବୁ ହୀନ ଚକ୍ରାନ୍ତର ପ୍ରମାଣ ଲୋକ ସମକ୍ଷରେ ଉପସ୍ଥାପିତ କରିବାକୁ ହେଲେ ଏହି ନକଲଗୁଡ଼ିକ ଏକମାତ୍ର ସହାୟକ ହେବ ବୋଲି ମୁଁ ମନେ ମନେ ଭାବିଥିଲି ।

ସେଦିନ ରାୟ ଦେବାର ତାରିଖ । ସକାଳେ ବଙ୍ଗଳାରେ ବସି ମୁଁ ରାୟ ଲେଖା ଶେଷ କଲି । ସବ୍‌ଡିଭିଜନାଲ ଅଫିସର ରାୟବାହାଦୁର ଅଜୟଚନ୍ଦ୍ର ଦାସ ସକାଳେ ମୋ

ନିକଟକୁ ଆସିଥିଲେ, ଏହା ମୁଁ ପୂର୍ବରୁ କହିଛି । ରାୟ ଲେଖା ଶେଷକରି କୋର୍ଟକୁ ଯିବାକୁ ମୋର ବିଳମ୍ବ ହୋଇପାରେ ବୋଲି ମୁଁ ତାଙ୍କୁ ଜଣାଇ ଦେଇଥିଲି । ମୁଁ କୋର୍ଟକୁ ଆସି ଦେଖିଲି ଯେ, କଚେରୀ ଗୃହପରି ପେରି ଏକ ବିରାଟ ଜନସମୁଦ୍ର । ଏହି ହଜାର ହଜାର ଲୋକ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ବିରୁଦ୍ଧରେ ହୋଇଥିବା ମାନହାନି ମୋକଦ୍ଦମାର ରାୟ ଶୁଣିବାକୁ ଆସିଛନ୍ତି । ଏଭଳି ପରିସ୍ଥିତି ଘଟିବ ବୋଲି ମୁଁ ଆଗରୁ ଅନୁମାନ କରିଥିଲି । ରାୟ ଲେଖିଲାବେଳେ ମୋର ବଦ୍ଧମୂଳ ଧାରଣା ହୋଇଥିଲା ଯେ ଏ ମୋକଦ୍ଦମାରେ ପଣ୍ଡିତ ଗୋପବନ୍ଧୁ ଖଲାସ ପାଇଯିବେ । ରାୟ ଲେଖୁଥିଲାବେଳେ ଯେଉଁ ଆଇନଗତ ସୂକ୍ଷ୍ମ ବିଷୟଟି ମୋ ମନକୁ ଛୁଇଁଲା, ସେଥିରେ ମୋର ବ୍ୟକ୍ତିଗତ କୃତିତ୍ୱ କିଛି ନାହିଁ । ମୋଭଳି ଅପରିପକ୍ୱ ନୂଆ ଅଫିସର ମନରେ ଆସାମୀ ପଣ୍ଡିତ ଗୋପବନ୍ଧୁଙ୍କ ସପକ୍ଷରେ ଏକ ଅକାଟ୍ୟ ଓ ସୂକ୍ଷ୍ମ ଯୁକ୍ତି ଉଦୟ ହେବା ସ୍ୱାଭାବିକ ନୁହେଁ । ଏ ବିଷୟରେ ମଧ୍ୟ ମୁଁ ପୂର୍ବେ କେବେହେଲେ ଚିନ୍ତା କରି ନାହିଁ । ମାନହାନି ଅଭିଯୋଗରୁ ପଣ୍ଡିତ ଗୋପବନ୍ଧୁ ମୁକ୍ତି ପାଇବାର ଏହି ଅମୋଘ ବାଟଟି ମୋତେ ହଠାତ୍ ଦିଶିଗଲା । ଏହା ସର୍ବନିୟନ୍ତା ଭଗବାନଙ୍କର ନିର୍ଦ୍ଦେଶ ଛଡ଼ା ଅନ୍ୟ କିଛି ନୁହେଁ । ମୁଁ ଜାଣିଲି ଯେ, ପଣ୍ଡିତ ଗୋପବନ୍ଧୁ ମକଦ୍ଦମାର ଅଭିଯୋଗରୁ ଖଲାସ ବୋଲି ରାୟ ଦିଆଯିବ । କିନ୍ତୁ ରାୟ ଶୁଣାଇ ଦେଲା ପରେ ଏହି ଅକଳନ୍ତା ଜନସମୁଦ୍ରରେ ଯେଉଁ ଆନନ୍ଦ କୋଳାହଳ ସୃଷ୍ଟି ହେବ, ସେଥିରେ କୋର୍ଟରେ ବସି ଆଉ କାମ କରି ହେବ ନାହିଁ । ତେଣୁ ନିର୍ଦ୍ଦେଶ ନ ଦେଲାଯାଏ ଆସାମୀ ପଣ୍ଡିତ ଗୋପବନ୍ଧୁଙ୍କୁ କୋର୍ଟରେ ହାଜର କରିବା ଲାଗି ସବ୍‌ଜେଲରୁ ନ ଆଣିବାପାଇଁ ମୁଁ ପୁଲିସ ପ୍ରସିକିଉଟରଙ୍କୁ ଆଦେଶ ଦେଲି । କାରଣ ପଣ୍ଡିତ ଗୋପବନ୍ଧୁ କୋର୍ଟ ହାଜତରେ ରହିଥିଲେ ମଧ୍ୟ ସମବେତ ବିରାଟ ଜନସମୁଦ୍ରରେ ଅତ୍ୟଧିକ ଉତ୍ତେଜନା ଓ ଅସହିଷ୍ଣୁତା ପ୍ରକାଶ ପାଇବା ସ୍ୱାଭାବିକ ଓ କ୍ରମେ ଏହା ଅସମ୍ଭାଳ ହୋଇପାରେ ଏବଂ କୋର୍ଟ କାମରେ ବାଧା ସୃଷ୍ଟି କରିପାରେ ।

ରାୟ ଦେବା ତାରିଖରେ ଗଣ୍ଡଗୋଳ ସୃଷ୍ଟି ହେବାର ଆଶଙ୍କାକରି ସବ୍‌ଡିଭିଜନାଲ ଅଫିସର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଗାଇସ ସାହେବଙ୍କୁ ଆର୍ମ ପୁଲିସ ସେନା ପୁରୀରୁ ଖୋର୍ଦ୍ଧାକୁ ଆସିବାପାଇଁ ଲେଖିଥିଲେ ; କିନ୍ତୁ କେଜାଣି କାହିଁକି ସେ ବା ଆର୍ମ୍ଡ ପୁଲିସ ଫୋର୍ସ ଆସିଲେ ନାହିଁ ।

ଯାହାହେଉ କୋର୍ଟର ସେଦିନ ଅନ୍ୟାନ୍ୟ କାମ ଆଗେ ସାକ୍ଷ ଦେବାପାଇଁ ବସିଲି । ଖୋର୍ଦ୍ଧା ସବ୍‌ଟ୍ରେଜେରୀ ମୋ ଅଧୀନରେ । ସବ୍‌ଟ୍ରେଜେରୀ କଚେରୀ ପାଖରେ ଆଉ

ଗୋଟିଏ କୋଠାଘରେ ଥୁଏ । କୋର୍ଟରୁ ସବ୍‌ଜେଲକୁ ମୋର ଯିବାର କଥା । କିନ୍ତୁ କଚେରୀ ଚାରିପଟେ ଏତେ ଲୋକ ଜମା ହୋଇଥିଲେ ଯେ, ତିଳଧାରଣର ସ୍ଥାନ ନ ଥିଲା । ମୋତେ ଏହି ଲୋକଗହଳି ଭିତର ଦେଇ ଯିବାକୁ ହେବ । ମୁଁ ଗଲାବେଳେ ଲୋକଙ୍କୁ କୌଣସି ପ୍ରକାରେ ପାଖେଇ ଦେଇ ଯିବାଲାଗି ବାଟ କରାଗଲା । ଗଲାବେଳେ ଜଣେ ଅତି ବୁଢ଼ା ମୁସଲମାନ ଭଦ୍ରଲୋକ ହାତଯୋଡ଼ି ମୋ ଆଗରେ ଠିଆ ହେଲେ । ମୁଁ ଦେଖିଲି ତାଙ୍କ ମୁଣ୍ଡର ବାଳ, ଦାଢ଼ୀ ପାଚି ଝୋଟଭଳି ଧଳା ପାଲଟି ଯାଇଛି । ଭ୍ରୂର ବାଳ ମଧ୍ୟ ଧଳା, ଚର୍ମ ଢିଲା । ସେ ଅତି କଷ୍ଟରେ ଗହଳି ଭିତରେ ଠିଆ ହୋଇ ନ୍ୟୂନଭାବରେ ମୋତେ କହିଲେ, "ହଜୁରଙ୍କ ରାୟ ଶୁଣିବାକୁ ଲୋକେ ବହୁତ ଦୂରରୁ ଆସିଛନ୍ତି।" ମକଦ୍ଦମାର ବିଚାରରେ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତି ସରକାର କପଟ ନ୍ୟାୟ ଦେଉଛନ୍ତି, ତାହାହିଁ ଦେଖିବା ଲାଗି ଓ ତାଙ୍କର ପ୍ରାଣର ନେତାଙ୍କ ଦର୍ଶନ ଲାଗି ଏହି ଲୋଳିତ ଚର୍ମ, ପଳିତ କେଶ ବୃଦ୍ଧ ମୁସଲମାନ ଭଦ୍ରବ୍ୟକ୍ତି କେଉଁ ଘଞ୍ଚ ମଫସଲ ଗ୍ରାମରୁ ଧାଇଁ ଧାଇଁ ଆସିଛନ୍ତି । ପଣ୍ଡିତ ଗୋପବନ୍ଧୁଙ୍କର ଲକ୍ଷ ଲକ୍ଷ ଜନସାଧାରଣଙ୍କ ଉପରେ କି କାଉଁରୀ ସ୍ପର୍ଶ ! ଆଉ ଲୋକଙ୍କର ତାଙ୍କପ୍ରତି କି ଗଭୀର ଶ୍ରଦ୍ଧା, ଭକ୍ତି ! ମୁଁ ସ୍ତମ୍ଭିତ ହୋଇଗଲି ।

କୋର୍ଟର ସେଦିନର ଅନ୍ୟାନ୍ୟ କାମ ସାରିବାକୁ ମୋତେ ପ୍ରାୟ ଅଧଘଣ୍ଟାଏ ଲାଗିଲା । ଏହାପରେ ଆସାମୀଙ୍କୁ ସବ୍‌ଜେଲରୁ କୋର୍ଟକୁ ଆଣିବାଲାଗି ମୁଁ ପୁଲିସ ପ୍ରସିକ୍ୟୁଟରଙ୍କୁ ଆଦେଶ ଦେଲି । କିନ୍ତୁ ଦେଖିଲି, ଆସାମୀଙ୍କୁ କୋର୍ଟକୁ ଆଣିବାରେ ବହୁତ ବିଳମ୍ବ ହେଉଛି, ଏହାର କାରଣ କିଛି ଜାଣିପାରିଲି ନାହିଁ । ଏଥିରେ ମୁଁ ବିରକ୍ତ ହେଲି ଓ ପୁଲିସ ପ୍ରସିକ୍ୟୁଟରଙ୍କୁ ବିଳମ୍ବର କାରଣ ପଚାରିଲି । ସେ କହିଲେ "ହଜୁର, ସବ୍‌ଜେଲରୁ ଆସିବା ବାଟରେ ପଣ୍ଡିତ ଗୋପବନ୍ଧୁ ଦାସ ସମବେତ ବିରାଟ ଜନତାଙ୍କୁ ଶାନ୍ତ ରହିବାଲାଗି ଉପଦେଶ ଦେଇ ଭାଷଣ ଦେଉଛନ୍ତି ।' ସେ କହୁଛନ୍ତି, 'ଅହିଂସା ଆମର ନୀତି । ଆପଣମାନେ କୌଣସି ପ୍ରକାର ଗଣ୍ଡଗୋଳ କରନ୍ତୁ ନାହିଁ; ଏଥିକି ମୋର ନିବେଦନ । ମୋର ଆଶା, ଆପଣମାନେ ସାଧ୍ୟମତେ ଶାନ୍ତିଭଙ୍ଗ ହେଲାଭଳି କୌଣସି କାର୍ଯ୍ୟକରିବେ ନାହିଁ । ଆପଣମାନଙ୍କୁ ଉତ୍ତେଜିତ କରିବାଲାଗି ଉଦ୍ୟମ କରାଗଲେ ସୁଦ୍ଧା ଆପଣମାନେ କେବେହେଲେ ଉତ୍ତେଜିତ ହୋଇ କୌଣସି ଗଣ୍ଡଗୋଳ ବା ହିଂସାତ୍ମକ କାର୍ଯ୍ୟ କରିବେ ନାହିଁ, ମୋର ବିଶ୍ୱାସ । ଆପଣମାନେ ଶାନ୍ତ ରହନ୍ତୁ ।' ଶେଷରେ ସେ କହିଲେ, "ମୋ ପ୍ରତି କଠୋର ଜେଲଦଣ୍ଡ ହେବ, ମୁଁ ଅନୁମାନ କରୁଛି । ଏଣୁ ଆପଣମାନଙ୍କଠାରୁ କିଛିକାଳମୁଁ ବିଦାୟ ନେଇ ଯାଉଛି ।"

ଆସାମୀ ପଣ୍ଡିତ ଗୋପବନ୍ଧୁଙ୍କୁ କୋର୍ଟରେ ହାଜର କରିବାରେ ବହୁତ ବିଳମ୍ବ ହେଉଛି ଦେଖି, ତୁରନ୍ତ ତାଙ୍କୁ ଆଣିବା ଲାଗି ମୁଁ ଆଦେଶ ଦେଲି । ସମସ୍ତେ ଜାଣିଥିଲେ ଯେ ପଣ୍ଡିତ ଗୋପବନ୍ଧୁଙ୍କୁ କଠୋର ଜେଲଦଣ୍ଡ ହୋଇଯିବ । ରାୟ ଶୁଣିବା ସଙ୍ଗେ ସଙ୍ଗେ ଜନତା ଉତ୍କ୍ଷିପ୍ତ ହୋଇ ହିଂସାକାଣ୍ଡ ଓ ଗଣ୍ଡଗୋଳ ସୃଷ୍ଟି କରିବେ, ତାକୁ ସମ୍ଭାଳି ହେବନାହିଁ । ତେଣୁ ପଣ୍ଡିତ ଗୋପବନ୍ଧୁ ନିଜେ ଲୋକଙ୍କୁ ଶାନ୍ତ ଓ ଅହିଂସ ରହିବା ଲାଗି ଅନୁରୋଧ କରନ୍ତୁ ବୋଲି ସମସ୍ତେ ଚାହୁଁଥିଲେ ଏବଂ ତାଙ୍କ କଥାରେ ଲୋକଙ୍କ ଭିତରେ ଉପୁଜିଥିବା ଉତ୍ତେଜନା ଶାନ୍ତ ପଡ଼ିବ ବୋଲି ଅନେକେ ବିଶ୍ୱାସ କରୁଥିଲେ । ଫଳରେ ତାହାହିଁ ହେଲା; ଗୋଳମାଳ ଶାନ୍ତ ପଡ଼ିଲା । ମୁଁ କିନ୍ତୁ ଓଲଟା ଭାବୁଥିଲି । ମୁଁ ଭାବୁଥିଲି ଯେ ପଣ୍ଡିତ ଗୋପବନ୍ଧୁ ତ ଖଲାସ ହୋଇ ଯିବେ । ତେଣୁ ରାୟ ଶୁଣିବା ପରେ ଲୋକେ ପରମ ସନ୍ତୋଷଲାଭ କରି ଆନନ୍ଦରେ ମାତି ଉଠିବେ ।

ଆସାମୀ ପଣ୍ଡିତ ଗୋପବନ୍ଧୁଙ୍କୁ କୋର୍ଟରେ ମୋ ଆଗରେ ହାଜର କରାଗଲା । ତାଙ୍କର ସର୍ବାଙ୍ଗ ଫୁଲମାଳରେ ବୁଡ଼ି ରହିଥାଏ । ମୁଁ ତାଙ୍କୁ ପଚାରିଲି, "ରାୟର ଆମୂଳଚୂଳ ପଢ଼ି ଶୁଣାଇ ଦେବାକୁ ଆପଣ ଅବଶ୍ୟ କହିବେ । କାରଣ ଏହା ହିଁ ତ ହେଉଛି କୋର୍ଟର ଠିକଣା ରୀତି ।" ସେ ଉତ୍ତର ଦେଇ କହିଲେ "ମୁଁ ଅନେକ ଦିନ ହାଜତରେ ଆବଦ୍ଧ ରହିଲିଣି । ମୋ ପାଇଁ କି ଦଣ୍ଡବିଧାନ କରାଗଲା, ମୋତେ କେବଳ ସଂକ୍ଷେପରେ ତୁରନ୍ତ କହିଦିଅନ୍ତୁ । କେତେ ସମୟ ପାଇଁ ଜେଲ ଦଣ୍ଡ ଆଦେଶ ହୋଇଛି ସେତିକି ମାତ୍ର ମୁଁ ଶୁଣିବାକୁ ଚାହେଁ ।" ତାଙ୍କ କଥା ଅନୁସାରେ ମୁଁ ପୂରା ରାୟଟି ନ ପଢ଼ି କେବଳ ଶେଷ ଅଂଶଟିକୁ ଯେଉଁଥିରେ ମୋର ସିଦ୍ଧାନ୍ତର କାରଣମାନ ଉଲ୍ଲେଖ କରାଯାଇଛି, ତାହା ପଢ଼ିବାକୁ ଆରମ୍ଭ କଲି । ମୁଁ ଦେଖିଲି ରାୟ ପଢ଼ିଲାବେଳେ କୋର୍ଟରେ ଉପସ୍ଥିତ ଥିବା ସବୁ ଲୋକେ ବିଶେଷ ଭାବରେ ଓକିଲ ଓ ଯେଉଁମାନେ ଆଇନକାନୁନ ବିଷୟ କିଛି କିଛି ବୁଝନ୍ତି, ସେ ସମସ୍ତେ ମନପ୍ରାଣ ଦେଇ ଉତ୍କର୍ଣ୍ଣ ହୋଇ ଶୁଣୁଛନ୍ତି—ଦେଖା ପରେ କି ପରିଣାମ ଘଟିବ ! "ପଣ୍ଡିତ ଗୋପବନ୍ଧୁ ନିର୍ଦ୍ଦୋଷରେ ଖଲାସ" ଏତିକି ମୋ ତୁଣ୍ଡରୁ ବାହାରିବା ମାତ୍ରେ ଲୋକଙ୍କ ଭିତରେ ଆଖି ପିଛୁଳାକେ କିଭଳି ଆନନ୍ଦ ଓ ଉତ୍ସାହ ଖେଳିଗଲା, ଏପରି ଚହଳ ପଡ଼ିଗଲା ଓ ବିରାଟ ଜନତା ଆନନ୍ଦରେ ଏପରି ଅଧୀର ଓ ଉଦ୍‌ବେଳିତ ହୋଇ ପାଟିତୁଣ୍ଡ କରି ଉଠିଲେ ଯେ, ମୋର ରାୟର ବାକି ଅଂଶତକ ଶୁଣିବାର କାହାରି ଧୈର୍ଯ୍ୟ ରହିଲା ନାହିଁ କି ସେଥିରୁ ପଦେହେଲେ କେହି ଶୁଣିପାରିଲେ ନାହିଁ । ଜନସମୁଦ୍ରର ବିରାଟ ଆନନ୍ଦ କୋଳାହଳ ଭିତରେ ମୋର ପାଠ କୁଆଡ଼େ ଉଭେଇ ନଷ୍ଟ ହୋଇଗଲା ।

ମୋର ଦେହ ଆନନ୍ଦର ଅତିଶଯ୍ୟରେ ହେତେବେଳେ ଥରୁଥାଏ, ମୁଁ ପ୍ରକୃତିସ୍ଥ ଅବସ୍ଥାରେ ନ ଥାଏ । ଭଗବାନଙ୍କ ନିର୍ଦ୍ଦେଶରେ ପଣ୍ଡିତ ଗୋପବନ୍ଧୁ ଯେ ମୁକ୍ତି ପାଇଲେ ସିଆ ଭାବି ମୁଁ ଆନନ୍ଦରେ ଏପରି ଅଧୀର ହୋଇ ପଡ଼ିଲି ଯେ, ମୋର ସ୍ନାୟୁବିକ ଦୁର୍ବଳତା ଆସିଗଲା । ମୁଁ ଆଉ କୋର୍ଟରେ ବସିପାରିଲି ନାହିଁ । ସାଇକେଲ ଖଣ୍ଡିକ କୌଣସି ପ୍ରକାରେ ଧରି ମୁଁ ମୋ ବଙ୍ଗଳାକୁ ଗଲି । ଘରକୁ ଯାଇ ମୁଁ କଚେରୀ ପୋଷାକ ବଦଳାଉଥିଲାବେଳେ ପୁଲିସ ପ୍ରସିକ୍ୟୁଟର ମୋ ସହିତ ସାକ୍ଷାତ କରିବାକୁ ଆସିଛନ୍ତି ବୋଲି ଖବର ଦେଲେ । ସେହି ଅବସ୍ଥାରେ ମୁଁ ତାଙ୍କୁ ଡାକିଲି । ସେ ମୋ ହାତକୁ ଖଣ୍ଡିଏ ଦରଖାସ୍ତ ବଢ଼ାଇଦେଲେ । ଏହି ମୋକଦ୍ଦମାରେ ମୁଁ ଯେଉଁ ରାୟ ଓ ଆସାମୀ ନିର୍ଦ୍ଦୋଷ ବୋଲି ଯେଉଁ ଆଦେଶ ଦେଲି, ତାହାର ନକଲ ଦିଆଯାଉ ବୋଲି ଏ ଦରଖାସ୍ତରେ ପ୍ରାର୍ଥନା କରାଯାଇଥିଲା । ମୁଁ ଦରଖାସ୍ତ ପାଇଲାମାତ୍ରେ ମୋର ବେଞ୍ଚ କିରାଣିଙ୍କୁ ଡକାଇ ପଠାଇଲି ଓ ଯେତେ ଅସୁବିଧା ହେଉ ପଛକେ ସେତିକିବେଳେ ସଙ୍ଗେ ସଙ୍ଗେ ରାୟର ନକଲ ପୁଲିସ ପ୍ରସିକ୍ୟୁଟରଙ୍କୁ ଦେଇଦେବା ପାଇଁ ଆଦେଶ ଦେଲି ।

ଏବେ ଅତି ବିଶ୍ୱସ୍ତ ଓ ସମ୍ମାନିତ ସୂତ୍ରରୁ ମୁଁ ଜାଣିପାରିଛି ଯେ; ଜଣେ ସାଧାରଣ ଭଦ୍ରବ୍ୟକ୍ତି ମକଦ୍ଦମାର ରାୟରେ ପଣ୍ଡିତ ଗୋପବନ୍ଧୁଙ୍କୁ ଯଦି ଜେଲ ନ ହୁଏ, କଡ଼ା ଜୋରିମାନା ଦଣ୍ଡ ନିଶ୍ଚୟ ହେବ ବୋଲି ବିଶ୍ୱାସ କରି ମୋ କୋର୍ଟରେ ଉପସ୍ଥିତ ଥିଲେ । ସେ ନିଜର ବହୁ ଶ୍ରମଅର୍ଜିତ ନଗଦ ଏକ ହଜାର ଟଙ୍କା ସଙ୍ଗରେ ଧରି ଆସିଥିଲେ । ଯଦି ଜୋରିମାନା ହୋଇଯାଏ ତେବେ ସଙ୍ଗେ ସଙ୍ଗେ ଜୋରିମାନା ଟଙ୍କା ଦାଖଲ କରି ଦେଇ ପଣ୍ଡିତ ଗୋପବନ୍ଧୁଙ୍କୁ ଖଲାସ କରାଇ ନେଇଯିବେ, ଏହାହିଁ ଥିଲା ତାଙ୍କର ଲକ୍ଷ୍ୟ ।

କୋର୍ଟରୁ ଆସି ଲୁଗା ପାଲଟି ବସିବାର ଅଳ୍ପ ସମୟ ପରେ ମୁଁ ଦେଖିଲି ମୋ ବଙ୍ଗଳା ସମ୍ମୁଖ ପଡ଼ିଆରେ ପ୍ରାୟ ୩୦ ହଜାର ଲୋକଙ୍କର ଏକ ବିରାଟ ସାଧାରଣ ସଭା ହେଉଛି ଓ ପଣ୍ଡିତ ଗୋପବନ୍ଧୁ ଦାସ ଏହି ସଭାରେ ଭାଷଣ ଦେଉଥିବାର ମୁଁ ଅନୁମାନ କଲି । ବହୁ ସମୟ ଧରି ଏ ସଭା ଚାଲିଥିଲା ।

—୦—